# କମ୍ରେଡର କଥାଘର



ସଂପାଦନା

ଅସିତ ମହାନ୍ତି
ପ୍ରଦୀପ୍ତ ଶ୍ରୀଚନ୍ଦନ

# ସମୁଦ୍ରର ସମାଧିର

(ସ୍ୱର୍ଗତ କନ୍ହେଇଲାଲ ଦାସ ରଚନା-ସମଗ୍ର)

ସଂପାଦନା :

ଅସିତ ମହାନ୍ତି

ପ୍ରଦୀପ୍ତ ଶ୍ରୀଚଂଦନ



କନ୍ହେଇ କଥାଘର
Kanhei Kathaghar

ଲେଖକ : ୰ କନ୍ହେଇଲାଲ ଦାସ
Author : Late Kanheilal Das

ସଂପାଦନା : ଅସିତ ମହାନ୍ତି ଓ ପ୍ରଦୀପ୍ତ ଶ୍ରୀଚଂଦନ
Edited by : Asit Mohanty & Pradipta Srichandan



ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨
Publisher : Sahadev Pradhan
Friends' Publishers, Binodbehari,
Cuttack-753 002, Odisha (India)

ପ୍ରଥମ ସଂସ୍କରଣ : ୧୯୮୬
ଦ୍ୱିତୀୟ ସଂସ୍କରଣ (ପରିବର୍ଦ୍ଧିତ) : ୨୦୧୪
First Edition : 1986
Second Edition (Enlarged) : 2014

ପ୍ରଚ୍ଛଦ : ବିଜୟ ପ୍ରଧାନ
Cover : Bijay Pradhan

ଅକ୍ଷରସଜ୍ଜା : ମା' ଗ୍ରାଫିକ୍‌ସ, କଟକ
Typeset : Maa Graphics, Cuttack

ମୁଦ୍ରଣ : ଦି ଲକ୍ଷ୍ମୀ ପ୍ରେସ୍, କଟକ
Printer : The Lakshmi Press, Cuttack

ISBN 81-7401-782-8

Price : ₹ 350

# କଥନିକା

ଦୀର୍ଘ ୨୮ ବର୍ଷ ତଳେ, ୧୯୮୬ ମସିହା ପବିତ୍ର ନେତ୍ରୋତ୍ସବ ଅବସରରେ ପ୍ରକାଶ ପାଇଥିଲା 'କନ୍‌ହେଇ କଥାଘର'ର ପ୍ରଥମ ସଂସ୍କରଣ । ରାଜ୍ୟ ସୂଚନା ଭବନ (ଆଜିର ଜୟଦେବ ଭବନ) ପ୍ରେକ୍ଷାଳୟରେ ସେଦିନ ପୁସ୍ତକକୁ ଉନ୍ମୋଚନ କରିଥିଲେ ଆଜିର ଜ୍ଞାନପୀଠ ବିଜେତା କବି ସୀତାକାନ୍ତ ମହାପାତ୍ର । ସମ୍ଭବତଃ ସେଦିନ ପ୍ରଥମଥର ପାଇଁ, ନିରକ୍ଷରା, ଦୁଃଖୀ ଓ ବିଧବା ମାଆଟିଏ ରାଜଧାନୀ ସହରର ଶୀତତାପ ନିୟନ୍ତ୍ରିତ, ସମ୍ଭ୍ରାନ୍ତ ଉଜ୍ଜ୍ୱଳ ବିଦ୍ୟୁତ୍ ଆଲୋକ ଉଦ୍ଭାସିତ ମଞ୍ଚର ପାହାଚ ଉଠିଥିଲା– ନିଜ ପୁଅର ଲେଖା ବହିର ପ୍ରଥମ ଖଣ୍ଡଟି ଗ୍ରହଣ କରିବାପାଇଁ । ସେଦିନ ପ୍ରେକ୍ଷାଳୟ ଯେତେବେଳେ କରତାଳିରେ ଉଚ୍ଛୁଳି ପଡୁଥିଲା, ସେତେବେଳେ ଭରପୂର ପ୍ରେକ୍ଷାଳୟ ଦେଖିଥିଲା ସେଇ ମାଆଟିର ଆଖିର ଦୁଇବୁନ୍ଦା ଲୁହ । ଅନେକଙ୍କର ଆଖି ବି ସେଦିନ ଜକେଇ ଆସିଥିଲା ଲୁହରେ ।

ଆଜି କନ୍‌ହେଇଲାଲଙ୍କ ମୃତ୍ୟୁକୁ ହେଲାଣି ୩୯ ବର୍ଷ । ସେଦିନ ହୋଇଥିଲା ୧୧ ବର୍ଷ । ସେଦିନ 'କନ୍‌ହେଇ କଥାଘର'କୁ ଉନ୍ମୋଚନ କରି ସୀତାକାନ୍ତ ମହାପାତ୍ର କହିଥିଲେ, "ଏ ବହିଟି ଖାଲି ବହି ନୁହେଁ; ଗୋଟିଏ ଦରଦୀ ଲେଖକର ଆତ୍ମାର କାହାଣୀ । ଇଏ ସେମିତିଆ ବହି, ଯାହାକୁ ଛୁଇଁଲେ ଲେଖକର ହୃତ୍‌ପିଣ୍ଡର ସ୍ପନ୍ଦନ ସିଧା ବାରିହୁଏ । ସେଠି ଥିବା ହତାଶା, କ୍ଷୋଭ, ଆଶା, ଆନନ୍ଦ, ନିରାନନ୍ଦ, ସ୍ୱପ୍ନ, ବୈରାଗ୍ୟ– ସବୁ ମନକୁ ଆବୋରି ବସେ ।" ଖାଲି ଏତିକି ନୁହେଁ, ସେ ଆହୁରି କହିଥିଲେ, "ଏମିତି ଅନୋଉ ଅନୋଉ ୧୧ ବର୍ଷ ବିତିଗଲାଣି, ଆଉ ଆଜି ଶ୍ରଦ୍ଧେୟ ଅସିତ ଓ ପ୍ରଦୀପ୍ତ ତା'ରି କଥାଘରଟିକୁ ତୋଳି ଆମ ସାମ୍ନାରେ ଛିଡ଼ା କରେଇଛନ୍ତି । କାଠ, ବାଉଁଶ, ମାଟି, କାଠି, କୁଟା ସବୁ ଜମାକରି ପକେଇଦେଇ ବଢ଼େଇ ନିଜେ ଚାଲିଗଲା ଉତ୍ତାରୁ ଏଇ ମରମୀ, ସାହିତ୍ୟପ୍ରେମୀ ବନ୍ଧୁ ଦିଓଟି ତା'ର ଆହୁରି ଅନେକ ସମଧର୍ମୀଙ୍କ ସହାୟତାରେ ଗଢ଼ିଦେଇଛନ୍ତି ଏଇ କଥାଘର । ଉଦାସୀନତାରେ ଗଢ଼ା ଓଡ଼ିଆ ସାହିତ୍ୟ ପରିବେଶରେ ସେମାନଙ୍କର ଏ କାମ କେତେ ମନଛୁଆଁ, ତା' ସବୁ ବିଦଗ୍ଧ ସାହିତ୍ୟରସିକ ନିଶ୍ଚୟ ଅନୁଭବ କରୁଥିବେ ।"

ହଁ, ବିଦଗ୍ଧ ସାହିତ୍ୟରସିକ ଅନୁଭବ କରିଥିଲେ । ମାତ୍ର ବର୍ଷ ଦି'ଟା ଭିତରେ ସବୁ ବହି ସରିଯାଇଥିଲା ବଜାରରୁ । ବିଭିନ୍ନ ପତ୍ରପତ୍ରିକାରେ ସମୀକ୍ଷା, ସମ୍ବାଦପତ୍ରରେ ସମ୍ବାଦ ପ୍ରକାଶ ପାଇଥିଲା । କେନ୍ଦ୍ର ସାହିତ୍ୟ ଏକାଡେମୀର ଦ୍ୱିମାସିକ ଇଂରାଜୀ ପତ୍ରିକା 'ଇଣ୍ଡିଆନ୍ ଲିଟରେଚର୍'ର ୧୯୮୭ ନଭେମ୍ବର-ଡିସେମ୍ବର ସଂଖ୍ୟାରେ ୧୯୮୬ ମସିହାର ଉଲ୍ଲେଖନୀୟ ପ୍ରକାଶନ ଭାବରେ ସୁରେନ୍ଦ୍ର ମହାନ୍ତିଙ୍କ 'ପଥ ଓ ପୃଥିବୀ', ନୀଳମଣି ରାଉତରାୟଙ୍କ 'ସ୍ମୃତି ଓ ଅନୁଭୂତି', ନିତ୍ୟାନନ୍ଦ ମହାପାତ୍ରଙ୍କ 'ଘରଡିହ', ଭାନୁଜୀ ରାଓଙ୍କ 'ନଈ ଆରପାରି' ଓ ଶ୍ରୀଧର ମହାପାତ୍ରଙ୍କ 'ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ' ଆଦି ସହିତ ଏ ବହିର ଆଲୋଚନା ବି କରିଥିଲେ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି । ଏକାଧିକ ଗବେଷକ ଏ ଭିତରେ କନ୍‌ହେଇଲାଲଙ୍କ ଉପରେ ଗବେଷଣା ନିବନ୍ଧ ପ୍ରସ୍ତୁତ କରି ପିଏଚ୍.ଡି. ପାଇସାରିଛନ୍ତି । ଆହୁରି କେତେକ ଏବେ ଗବେଷଣାରତ । ଓଡ଼ିଶା ସାହିତ୍ୟ ଏକାଡେମୀ ମଧ୍ୟ ଏ ଭିତରେ 'କନ୍‌ହେଇ କଥାଘର'ରେ ସଂକଳିତ ୩୩ଟି ଗଳ୍ପକୁ ନେଇ ବହିଟିଏ ପ୍ରକାଶ କରିଛନ୍ତି ।

ଅଳ୍ପକିଛି ସାଉଁଟା କାଠିକୁଟାକୁ ଏକାଠି କରି ସେଦିନ ଆମେ ସେହି ପ୍ରଥମ ସଂସ୍କରଣଟି ପ୍ରକାଶ କରିଥିଲୁ । ମୃତ୍ୟୁ ପରେ ତାଙ୍କର ଘନିଷ୍ଠ ବନ୍ଧୁ ରତି ମିଶ୍ର ଗୋଟିଏ ଲେଖାରେ ଲେଖିଥିଲେ, କନ୍‌ହେଇ ନିଜେ ତାଙ୍କର ଚାରିଟି ଗଳ୍ପ ସଂକଳନର ଯୋଜନା କରିସାରିଥିଲେ । ସେଇ ଚାରି ସଂକଳନର ନାଆଁ ଥିଲା, ୧. ମାନସାଙ୍କ, ୨. ସାଙ୍କେତିକ, ୩. ଜୀବନଯାପନ, ୪. ଯାହା ଯେମିତି ହୁଏ । କିନ୍ତୁ ଖଣ୍ଡିଏ ବି ବହିକୁ ମୁଦ୍ରିତ ରୂପରେ ଦେଖି ନପାରି ଚାଲିଯାଇଥିଲେ କନ୍‌ହେଇଲାଲ । ଏପରିକି ସେ ଓ ଜଗଦୀଶ ମହାନ୍ତି ମିଶି ଗୋଟିଏ ଗଳ୍ପ ସଂକଳନ ପ୍ରକାଶ କରିବାର ସ୍ୱପ୍ନ ବି ସ୍ୱପ୍ନ ହୋଇ ରହି ଯାଇଥିଲା । ତାଙ୍କର ମୃତ୍ୟୁ ପରେ ଘୋଷିତ ପୂର୍ଣ୍ଣାଙ୍ଗ ସଂକଳନ ତ ପ୍ରକାଶ ପାଇଲା ନାହିଁ; ଶତାଧିକ ଗଳ୍ପର ପାଣ୍ଡୁଲିପି ଥିବା ଫାଇଲଟିଏ ବି ନିଖୋଜ ହୋଇଗଲା । ଏ ଯାଏ ସେ ନିଖୋଜ ଫାଇଲର ସନ୍ଧାନ ମିଳିନାହିଁ ।

କନ୍‌ହେଇଲାଲ ଦାସଙ୍କର ଚାରିଟି ଡାଏରି, ତାଙ୍କୁ ଲେଖା ୨୮ଟି ଚିଠି, ପ୍ରାପକଙ୍କଠାରୁ ଫେରସ୍ତ ଆସିଥିବା ତାଙ୍କ ଲେଖା ଚାରିଟି ଚିଠି ସମେତ ୧୫୭ଟି ଫଟୋ ମଧ୍ୟ ଏକାଠି ଥିଲା । ବହୁ ଉଦ୍ୟମ ପରେ ଆମେ ତିନିଟି ଡାଏରି ସଂଗ୍ରହ କରି ତାର ନିର୍ବାଚିତ ଅଂଶ ବିଶେଷକୁ ନେଇ ସେଦିନ ଆମେ 'କନ୍‌ହେଇ କଥାଘର'ର ସ୍ୱତନ୍ତ୍ର ପ୍ରସ୍ଥ 'କନ୍‌ହେଇ ଦିନଲିପି' ପ୍ରସ୍ତୁତ କରିଥିଲୁ । ବାକି ଗୋଟିଏ ଡାଏରି ଓ ବାକି ସବୁ ଚିଠି, ଲେଖା ଓ ଫଟୋ ଆଜି ବି ନିଖୋଜ ।

ଗତ ପଚିଶ ବର୍ଷ ଭିତରେ ଆମେ ଅନେକ ଚେଷ୍ଟା କରିଛୁ, ସେହି ଚିଠି, ଲେଖା ଓ ଫଟୋ ସବୁକୁ ସାଉଁଟିବା ପାଇଁ । ପ୍ରଥମ ସଂସ୍କରଣରେ ବିଜ୍ଞାପନଟିଏ ବି ଦିଆଯାଇଥିଲା- ପୂର୍ଣ୍ଣାଙ୍ଗ ସଂକଳନଟିର ପ୍ରକାଶପାଇଁ ସହଯୋଗ କରିବାକୁ । ଆଶା ଥିଲା, ଚାପି ରଖାଯାଇଥିବା ଫାଇଲ୍‌ଟି ଅନ୍ତତଃ ଅମୁହାଁ ଅନ୍ଧାର ଭିତରୁ ପ୍ରେରକଙ୍କ ବିନା ପରିଚୟରେ ହେଉପଛେ ଆମ ଠିକଣାରେ ଆସିବ ! କିନ୍ତୁ ତାହା ବି ହେଲା ନାହିଁ । ଜଣେ ଲେଖକର ମୃତ୍ୟୁ ପରେ ବି ତାର ଶେଷସ୍ୱପ୍ନକୁ କିପରି ନିଷ୍ଠୁର ଭାବରେ ହତ୍ୟା କରାଯାଏ– ଏହା ହୁଏତ ତାର ଶ୍ରେଷ୍ଠ ଉଦାହରଣ ହୋଇ ରହିବ ।

ତେବେ ବହୁ ବ୍ୟକ୍ତିବିଶେଷ କନ୍‌ହେଇଲାଲଙ୍କର ଦୁଷ୍ପ୍ରାପ୍ୟ ଲେଖା ଓ ତାଙ୍କ ସଂପର୍କିତ ଅନ୍ୟାନ୍ୟ ତଥ୍ୟ ଯୋଗାଇ ଦେଇ ଏ ସଂକଳନଟିକୁ ପୁଷ୍ଟ କରିଛନ୍ତି । ବିଶେଷକରି ରୋଗଶଯ୍ୟାରେ ଥାଇ ବି ଏଥିରେ ସହାୟତା କରିଥିଲେ ସ୍ୱର୍ଗତ ବ୍ରଜନାଥ ରଥ । ଫଳରେ ଆଉ ପନ୍ଦରଟି ଗଳ୍ପ ଓ ଗୋଟିଏ ମିନିଗଳ୍ପ, ଦୁଇଟି ଏଯାଏ ଅପ୍ରକାଶିତ ଥିବା ଗଳ୍ପ ଏବଂ ଚିଠିପତ୍ର, ଡାଏରିର ଲେଖା, ସମୀକ୍ଷା, ଆଲୋଚନା, ଅଭିଭାଷଣ ଓ ଆଲେଖ୍ୟ ଆଦିକୁ ନେଇ ଏହି ନୂଆ ଓ ସମୃଦ୍ଧ ସଂସ୍କରଣର 'କନ୍‌ହେଇ କଥାଘର' ଆଜି ପ୍ରକାଶ ପାଉଛି । ଯଥା ସ୍ଥାନରେ ସଂପୃକ୍ତମାନଙ୍କର ସୌଜନ୍ୟ ମଧ୍ୟ ସ୍ୱୀକାର କରାଯାଇଛି । 'କନ୍‌ହେଇ-କଥା' ଶୀର୍ଷକରେ ଏକ ତଥ୍ୟନିଷ୍ଠ ଜୀବନ ବୃତ୍ତାନ୍ତ ମଧ୍ୟ ଏଥିରେ ସଂଯୋଜିତ ହୋଇଛି । ଏ ଅବସରରେ ସଂପୃକ୍ତ ସମସ୍ତଙ୍କୁ ମୁଁ ଗଭୀର କୃତଜ୍ଞତା ଜଣାଉଛି ।

ତଥାପି ଆମେ ଆଶା କରୁ ଯେ ସେଇ ଅଜ୍ଞାତ ଅପହର୍ତ୍ତାଙ୍କଠାରୁ ବେନାମୀ ପ୍ରେରକ ଭାବରେ ହେଉପଛେ, କନ୍‌ହେଇଲାଲଙ୍କର ବାକି ଲେଖାଗୁଡ଼ିକ ଆମ ପାଖରେ ଆସି ପହଞ୍ଚିବ ଏବଂ ଆଗାମୀ ଦିନରେ ଆମେ 'କନ୍‌ହେଇ ସମଗ୍ର'ଟିଏ ଆପଣଙ୍କୁ ଉପହାର ଦେବାରେ ସମର୍ଥ ହୋଇପାରିବୁ ।

**ଅସିତ ମହାନ୍ତି**

୨୭ ଜୁଲାଇ, ୨୦୧୪

# କନ୍‌ହେଇ କଥାଘର



# କନ୍‌ହେଇ-କଥା

କନ୍‌ହେଇଲାଲ ଦାସ । ଛୋଟ ଗୋଟିଏ ଜୀବନ । ଜନ୍ମ- ୧୯୪୭ ମସିହା ଜୁନ୍‌ମାସ ୨୭ ତାରିଖ ଓ ମୃତ୍ୟୁ-୧୯୭୫ ମସିହା ଜୁଲାଇ ମାସ ୨୬ ତାରିଖ ଭୋର୍ ଅର୍ଥାତ୍ ୨୭ ତାରିଖ । ଏଇ ହିସାବରେ ତମାମ୍ ଆୟୁକାଳ ମାତ୍ର ୨୮ ବର୍ଷ । ତା' ଭିତରୁ ପ୍ରକୃତ ଲେଖାଲେଖିର ବୟସ ଆଠବର୍ଷ ବି ନୁହେଁ । କାରଣ 'କନ୍‌ହେଇ କଥାଘର'ରେ ସଂକଳିତ ତାଙ୍କର ପ୍ରଥମ ପ୍ରକାଶିତ ଗଳ୍ପ 'ବିବର୍ତ୍ତନବାଦ'ର ପ୍ରକାଶକାଳ ଫେବୃଆରି ୧୯୬୮ ଏବଂ ମୃତ୍ୟୁ ପରେ ପରେ ପ୍ରକାଶିତ ଶେଷଗଳ୍ପ 'ଧୃତରାଷ୍ଟ୍ରର ଆଖି'ର ପ୍ରକାଶକାଳ ଅଗଷ୍ଟ, ୧୯୭୫ । ଏ ଦୁଇ ଗଳ୍ପ ମଧ୍ୟରେ ସମୟ ବ୍ୟବଧାନ ମାତ୍ର ସାତବର୍ଷ ସାତମାସ ।

ଅବଶ୍ୟ ବାରିପଦା କଲେଜରେ ପଢୁଥିବାବେଳେ ଗୋଟିଏ ରମ୍ୟରଚନା (ଟକ୍‌କର) ଲେଖିଥିଲେ କନ୍‌ହେଇଲାଲ ଏବଂ ବିକ୍ଷିପ୍ତ ଭାବରେ ତାଙ୍କର କେତୋଟି କବିତା ବି ପ୍ରକାଶ ପାଇଥିଲା । ପୁଣି ତାଙ୍କର ଗୋଟିଏ ହାତଲେଖା କବିତା ଖାତା ମଧ୍ୟ ଆମର ହସ୍ତଗତ ହୋଇଛି- ଯେଉଁଥିରେ ପ୍ରଥମ ପର୍ଯ୍ୟାୟରେ ଅଛି ନଅଟି କବିତା ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ଚାରିଟି କବିତା । ପ୍ରଥମ ପର୍ଯ୍ୟାୟର ନଅଟିଯାକ କବିତାର ରଚନାକାଳ ୧୯୬୪ ଏବଂ ଦ୍ୱିତୀୟ ପର୍ଯ୍ୟାୟର ଚାରିଟିଯାକ କବିତାର ରଚନାକାଳ ୧୯୬୭ । ଏହି ଦୁଇ ପର୍ଯ୍ୟାୟର କବିତାଗୁଡ଼ିକ ମଧ୍ୟରେ ଲକ୍ଷ୍ୟ କରିହୁଏ ପ୍ରଚୁର ଭିନ୍ନତା । ପ୍ରଥମ ପର୍ଯ୍ୟାୟର କବିତାଗୁଡ଼ିକ ଛନ୍ଦୋବଦ୍ଧ ଏବଂ ବିଭିନ୍ନ କବିଙ୍କର ପ୍ରଭାବ ସେଥିରେ ସୁସ୍ପଷ୍ଟ । ଏହାର ଗୋଟିଏ ଉଦାହରଣ- 'ଦୁଃଖ ହେ ତୁମେ କିଆଁ ଆସ ସେତେବେଳେ', ଯେଉଁଥିରେ ରାଧାମୋହନ ଗଡ଼ନାୟକଙ୍କ 'ମୃତ୍ୟୁ ହେ ତୁମେ ସେତେବେଳେ କିଆଁ ଆସ'ର ସ୍ପଷ୍ଟ ପ୍ରଭାବ ଲକ୍ଷ୍ୟ କରିହୁଏ । କିନ୍ତୁ ପ୍ରାୟ ତିନିବର୍ଷ ପରର ଚାରିଟି କବିତାରେ ଏକ ଉଲ୍ଲେଖନୀୟ ଉତ୍ତରଣ ଲକ୍ଷ୍ୟଣୀୟ । ଯେମିତି-

"ଅୟି ରାଣୀ !
ମୁଁ ଜାଣେ ତୁମେ ମୋତେ ଘୃଣା କର

ମୁଁ ଜାଣେ ତୁମେ ବାଧହୋଇ ଦୟାକର
ମୁଁ ଜାଣେ ତୁମେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଭଲପାଅ
ତଥାପି ତ ତୁମେ ମୋତେ ଭଲପାଅ
ଆଃ, ଏତିକି ।।"

ଏସବୁରୁ ଜଣେ ଲେଖକ ଭାବରେ କନ୍‌ହେଇଲାଲଙ୍କର ଗଢ଼ିହେବାର ପର୍ଯ୍ୟାୟ ସହିତ ବିକାଶର ଆଭାସ ମିଳେ- ଯାହାର ଉତ୍ତରଣ ପରେ ହୋଇଛି ଜଣେ ଶକ୍ତିଶାଳୀ କଥାଶିଳ୍ପୀ କନ୍‌ହେଇଲାଲ ଭାବରେ ।

କିନ୍ତୁ ୧୯୬୮ରୁ ୧୯୭୫ର କନ୍‌ହେଇଲାଲ ଦାସଙ୍କୁ ଆମେ ଅନ୍ତେବହୁତେ ଜାଣିଲେ ମଧ୍ୟ ଏହାର ପୂର୍ବବର୍ତ୍ତୀ କନ୍‌ହେଇଲାଲଙ୍କୁ ପ୍ରାୟ ଜାଣୁନାହିଁ । ହେଲେ ୧୯୬୮ରୁ ୧୯୭୫ର ଲେଖକ କନ୍‌ହେଇଲାଲ ଠିଆ ହୋଇଛନ୍ତି ୧୯୬୮ ପୂର୍ବର ପ୍ରାୟ ୨୦ବର୍ଷର ଜୀବନ ଓ ୧୯୬୮ ପରର ପ୍ରାୟ ଆଠବର୍ଷର ଜୀବନର ଭିତ୍ତି ଉପରେ । ସେଇ ଦୃଷ୍ଟିରୁ କନ୍‌ହେଇଲାଲଙ୍କର ଏଇ ପ୍ରାୟ ୨୮ବର୍ଷର ଜୀବନ ଗୁରୁତ୍ୱପୂର୍ଣ୍ଣ ।

ବାଲେଶ୍ୱର ଜିଲ୍ଲାର ଭୋଗରାଇ ବ୍ଲକ୍ ଅନ୍ତର୍ଗତ କମର୍ଦ୍ଦାର କ୍ଷେତ୍ରମୋହନ ଦାସ କନ୍‌ହେଇଲାଲଙ୍କର ପିତା । ସେ ଫକୀର ମୋହନ ଦାସଙ୍କର ପୁତ୍ର ଓ ଜାତିରେ କରଣ । ଫକୀର ମୋହନ ଦାସଙ୍କ ସଂପର୍କରେ ଏକ ରୋଚକ ତଥ୍ୟ ଦେଇ କନ୍‌ହେଇଲାଲଙ୍କ ବାଲ୍ୟବନ୍ଧୁ ବିଷ୍ଣୁପଦ ମିଶ୍ର କହନ୍ତି, "କମର୍ଦ୍ଦା ଗ୍ରାମର ଲୋକେ ତାଙ୍କୁ 'କାନକଟା ଫକୀର' ବୋଲି ଡାକୁଥିଲେ । କାରଣ, ତତ୍‌କାଳୀନ ଜମିଦାରଙ୍କ ଶୋଷଣ ଓ ଅତ୍ୟାଚାରରେ ଅତିଷ୍ଠ ଓ କ୍ରୁଦ୍ଧ ହୋଇ ସେ ନିଜ ଚାଷଜମିଠାରେ ନିଜ ଦାଆରେ ନିଜର କାନକୁ କାଟିଦେଇ, ଜମିଦାରଙ୍କ ବିରୋଧରେ ଇଂରେଜ ସରକାରଙ୍କ ପାଖରେ ଫେରାଦ କରିଥିଲେ ।"

ବିଷ୍ଣୁପଦଙ୍କ ସୂଚନା ଅନୁସାରେ, କନ୍‌ହେଇଲାଲଙ୍କ ପିତା କ୍ଷେତ୍ରମୋହନ କଲିକତାଠାରେ ଏକ ଅଫିସ୍‌ରେ 'ରେକର୍ଡ କିପର' କାମ କରୁଥିଲେ । ତେବେ ଏ ସମ୍ପର୍କରେ କନ୍‌ହେଇଲାଲଙ୍କ ଭଣଜା କାଳିକିଙ୍କର ଦାସ କହନ୍ତି ଯେ କ୍ଷେତ୍ରମୋହନ କେଉଁ ଏକ ବର୍ଷଅଜଣା ସମୟରେ ପଶ୍ଚିମବଙ୍ଗ-ଓଡ଼ିଶା ସୀମାନ୍ତ ଅଞ୍ଚଳରୁ ରୋଜଗାର ସନ୍ଧାନରେ କମର୍ଦ୍ଦା ଆସିଥିବାର ଅନୁମାନ କରାଯାଏ । ପରେ କମର୍ଦ୍ଦାରୁ ଆପଣାର ପରିବାର ଛାଡ଼ି କଲିକତା ଯାଇଥିଲେ । କିନ୍ତୁ ବିଷ୍ଣୁପଦଙ୍କ ସୂଚନା ଯଦି ସତ୍ୟ ହୋଇଥାଏ- ତେବେ କନ୍‌ହେଇଲାଲଙ୍କ ଜେଜେ କ୍ଷେତ୍ରମୋହନଙ୍କ ସମୟରୁ ତାଙ୍କର ପରିବାର କମର୍ଦ୍ଦାରେ ରହୁଥିଲେ । ସ୍ୱଳ୍ପ ଚାଷଜମିର ସୀମିତ ଉପାର୍ଜନରେ ପରିବାରର ଗୁଜୁରାଣ ମେଣ୍ଟିବା ସମ୍ଭବ ନଥିବାରୁ କ୍ଷେତ୍ରମୋହନ ଜୀବିକା ସନ୍ଧାନରେ କଲିକତା ଚାଲିଯାଇ ସେଠାର ଶଶିଭୂଷଣ ଦେ' ଷ୍ଟ୍ରୀଟ୍‌ର ଏକ ଘରୋଇ ମାଲିକାନାଧୀନ ସଂସ୍ଥାରେ ଜଣେ ନିମ୍ନ ବେତନଭୋଗୀ କର୍ମଚାରୀ ଭାବରେ

କାମ କରୁଥିଲେ । ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ ସୂଚନା ଦେଇ କାଳିକିଙ୍କର କହନ୍ତି, "କନ୍ହେଇମାମୁଙ୍କର ପରିବାରର 'ଦହମୁଣ୍ଡା' ଓ 'ଆଗୁହାବୃତ୍ତି' ସହ ପାରିବାରିକ ବନ୍ଧୁତା ଥିଲା । ତାଙ୍କର ସମ୍ପର୍କୀୟ ମଉସା-ମାଉସୀ ମଧ୍ୟ ଦହମୁଣ୍ଡାରେ ରହୁଥିଲେ । ମଉସାଙ୍କର ନାମ ଥିଲା ନେତ୍ରାନନ୍ଦ ଦାସ । ସେମାନେ ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ଥିଲେ । ନେତ୍ରାନନ୍ଦବାବୁ କଲିକତାରେ ଚାକିରି କରୁଥିଲେ । ସେ ହିଁ କନ୍ହେଇମାମୁଙ୍କ ପିତା କ୍ଷେତ୍ରମୋହନଙ୍କୁ ସେଠାକୁ ନେଇଯାଇ ଚାକିରିରେ ଲଗାଇଥିବା ଜଣାଯାଏ ।"

ସେଇ କଲିକତା ଚାକିରିକାଳରେ ହିଁ କନ୍ହେଇଲାଲଙ୍କର ମାଆ ଅନିଲା ବାଲା ମାଇତିଙ୍କୁ ବିବାହ କରିଥିଲେ କ୍ଷେତ୍ରମୋହନ । ଅନିଲାବାଲାଙ୍କ ଘର ଥିଲା ପଶ୍ଚିମବଙ୍ଗ ଅନ୍ତର୍ଗତ ପୂର୍ବମେଦିନିପୁର ଜିଲ୍ଲାର କାନ୍ଥି ନିକଟ ଧାନଗାଁ । ସେ ଥିଲେ ଧାନଗାଁର ଗଙ୍ଗାରାମ ମାଇତିଙ୍କର ଝିଅ । କନ୍ହେଇଲାଲଙ୍କର ମାମୁ ବିଭୂତି ମାଇତି ଓ ମାଇଁ ଶେଫାଳି ମାଇତି ବି ସେଇ ଧାନଗାଁରେ ରହୁଥିଲେ । କ୍ଷେତ୍ରମୋହନଙ୍କ ସହ ବିବାହ ପରେ ଅନିଲାବାଲା ମାଇତିରୁ ହୋଇଯାଇଥିଲେ ଦାସ । ପ୍ରାକ୍-ସ୍ୱାଧୀନତା କାଳରେ, ୧୯୪୭ ମସିହା ଜୁନ୍ ମାସ ୨୭ ତାରିଖ ଦିନ କ୍ଷେତ୍ରମୋହନ ଓ ଅନିଲାବାଲାଙ୍କ ଜ୍ୟେଷ୍ଠପୁତ୍ର ଭାବରେ ଜନ୍ମଗ୍ରହଣ କରିଥିଲେ କନ୍ହେଇଲାଲ ।

ଅବଶ୍ୟ କେତେକ ଆଲୋଚକଙ୍କ ମତରେ କନ୍ହେଇଲାଲ ନୁହନ୍ତି, ତାଙ୍କ ଭଉଣୀ ମଙ୍ଗୁଳି ଓରଫ୍ ସାବିତ୍ରୀ ହିଁ କ୍ଷେତ୍ରମୋହନ ଓ ଅନିଲା ବାଲାଙ୍କ ପ୍ରଥମ ସନ୍ତାନ; କିନ୍ତୁ କନ୍ହେଇଲାଲ ହିଁ ଜ୍ୟେଷ୍ଠ ସନ୍ତାନ ବୋଲି ଜଣାଯାଏ । କଲିକତାଠାରେ କନ୍ହେଇଲାଲ ଜନ୍ମଗ୍ରହଣ କରିଥିଲେ । ପରେ ପରେ ତାଙ୍କର ତିନିଭଉଣୀ- ମଙ୍ଗୁଳି (ସାବିତ୍ରୀ), ବୁଢ଼ୀ (ଦୁର୍ଗାମଣି) ଓ ଖାନ୍ଦା ଏବଂ ସାନଭାଇ ରବୀନ୍ଦ୍ରଙ୍କର ଜନ୍ମ ହୋଇଥିଲା । କିନ୍ତୁ ୧୧ ବର୍ଷର ହୋଇଥିବାବେଳେ ରୋଗାକ୍ରାନ୍ତ ହୋଇ ଖାନ୍ଦାଙ୍କର ମୃତ୍ୟୁ ଘଟିଲା । ଏଇଥିପାଇଁ ହିଁ ପିତାମାତା ଓ ଦୁଇଭାଇ, ଦୁଇଭଉଣୀଙ୍କୁ ନେଇ ତାଙ୍କର ପୂରା ପରିବାରର ସଂଖ୍ୟା ଛଅ ବୋଲି ପ୍ରାୟ ସମସ୍ତେ ଉଲ୍ଲେଖ କରନ୍ତି । କିନ୍ତୁ କୈଶୋର କାଳରେ ମୃତ ଖାନ୍ଦାଙ୍କୁ ନେଇ ତାଙ୍କ ପରିବାରର ପ୍ରକୃତ ସଂଖ୍ୟା ଥିଲା ସାତ ।

ଘୋର ଦାରିଦ୍ର୍ୟ ଓ ଦୁଃସ୍ଥିତି ଭିତରେ ବିତିଥିଲା କନ୍ହେଇଲାଲଙ୍କର ଓ ତାଙ୍କର ଅନ୍ୟ ଭାଇଭଉଣୀଙ୍କର ପିଲାଦିନ । ସବା ସାନ ଭଉଣୀ ଖାନ୍ଦାଙ୍କର ତ ଅକାଳ ବିୟୋଗ ଘଟିଥିଲା; ତା' ସାଙ୍ଗକୁ ସବା ସାନ ଭାଇ ରବି ଥିଲେ ପୋଲିଓଗ୍ରସ୍ତ । ପିତାଙ୍କର ସ୍ୱଳ୍ପ ବେତନ ଭୂମିହୀନ ସାତଜଣିଆ ପରିବାରର ପରିପୋଷଣ ପାଇଁ, ଆବଶ୍ୟକତା ଠାରୁ ଥିଲା ଯଥେଷ୍ଟ କମ୍ ।

କନ୍ହେଇଲାଲଙ୍କର ଡାକନାମ ଥିଲା ଭାନୁ । ପୁଣି କେହି କେହି ତାଙ୍କୁ କୁନା ବୋଲି ବି ଡାକୁଥିଲେ । କିନ୍ତୁ ତାଙ୍କର ପରିବାର ପରମ୍ପରାରେ କାହାରି ନାଆଁ ପରେ 'ଲାଲ' ଯୋଡ଼ା ହୋଇନଥିବାବେଳେ, ତାଙ୍କ ନାଆଁରେ 'କନ୍ହେଇ' ସାଙ୍ଗକୁ 'ଲାଲ' କାହିଁକି ଯୋଡ଼ା ହେଲା- ଏହା ପଛରେ ଏକ କାହାଣୀ ଅଛି । ସେ କାହାଣୀ କହିଛନ୍ତି, କନ୍ହେଇଙ୍କର ଭୁବନେଶ୍ୱର ସମୟର ଅନ୍ୟତମ ଘନିଷ୍ଠ ବନ୍ଧୁ ସ୍ୱର୍ଗତ ରତି (ରଂଜନ) ମିଶ୍ର । କନ୍ହେଇଲାଲଙ୍କ ମୃତ୍ୟୁପରେ, 'ନବତରଙ୍ଗ' ପତ୍ରିକାର ୧୯୭୫ ମସିହା ପୂଜାସଂଖ୍ୟାରେ ସେ ଲେଖିଥିବା ଏକ ଲେଖାର ଶୀର୍ଷକ ଥିଲା "କନ୍ହେଇଲାଲ ଦାସଙ୍କ ଜୀବନସ୍ମୃତିର ଆଲେଖ୍ୟ- ଜୀବନ ଯାପନ" । ସେହି ଲେଖାର ଗୋଟିଏ ଉପ-ଶୀର୍ଷକ ହେଉଛି "ଏକ ଅଣଓଡ଼ିଆ ନାଆଁର ଇତିହାସ" । ସେଥିରେ ରତି ମିଶ୍ର ଲେଖିଛନ୍ତି, "ଶୁଣାଯାଏ, କନ୍ହେଇର ଘର ପାଖରେ ଏକ ସନ୍ତାନବିହୀନ ମାରୁଆଡ଼ି ଦମ୍ପତି ବାସ କରୁଥିଲେ । କନ୍ହେଇ ଏଇ ଦୁଇ ପରିବାରର ପ୍ରଥମ ଆକାଂକ୍ଷିତ ସନ୍ତାନ । ଏବଂ ସେଇ ଦମ୍ପତିଙ୍କ ଅନୁରୋଧରେ, ସେଇ ଦୁଇ ପରିବାରର ଅନ୍ତରର ପ୍ରଥମ ସନ୍ତାନର ନାମକରଣ ଏପରି କରାଯାଇଥିଲା ।" ଅର୍ଥାତ୍ ଓଡ଼ିଆ କ୍ଷେତ୍ରମୋହନ ଓ ଅନିଲାବାଳାଙ୍କର 'କନ୍ହେଇ' ହୋଇଯାଇଥିଲେ ସେଇ ମାରୁଆଡ଼ି ପରିବାରର 'ଲାଲ' ଏବଂ ଆମ ସମସ୍ତଙ୍କର ପରବର୍ତ୍ତୀ କାଳର ସୁପ୍ରସିଦ୍ଧ କଥାଶିଳ୍ପୀ କନ୍ହେଇଲାଲ । (ରତି ମିଶ୍ରଙ୍କର ସେହି ଲେଖାଟି 'କନ୍ହେଇ କଥାଘର'ର 'ପରିଶିଷ୍ଟ'ରେ ସଂଯୋଜିତ)

ଗାଆଁ ସ୍କୁଲରେ ହିଁ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାଲାଭ କରିଥିଲେ କନ୍ହେଇଲାଲ । ପ୍ରଥମରୁ ଚତୁର୍ଥଶ୍ରେଣୀ ଯାଏ କମର୍ଦ୍ଦା ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ଏବଂ ପଞ୍ଚମରୁ ସପ୍ତମଶ୍ରେଣୀ ଯାଏ କମର୍ଦ୍ଦା ଜଗନ୍ନାଥ ହାଇସ୍କୁଲରେ ସେ ପଢ଼ିଥିଲେ । ସେ ଖୁବ୍ ମେଧାବୀ ଛାତ୍ର ଥିଲେ । ସବୁବେଳେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଉଥିଲେ । ସାହିତ୍ୟ ଓ ବହିପତ୍ର ପ୍ରତି ଗଭୀର ଅନୁରାଗ ଦୃଷ୍ଟିରୁ ସେଇ ସ୍କୁଲପଢ଼ାବେଳେ 'ଶୁଭ୍ରାବରଣୀ ପାଠାଗାର' ନାମରେ ପାଠାଗାରଟିଏ ବି ଗଢ଼ିଥିଲେ । ପରେ ସେ ଆସି ପଢ଼ିଲେ ବାରିପଦାର ମହାରାଜା କୃଷ୍ଣଚନ୍ଦ୍ର ଉଚ୍ଚବିଦ୍ୟାଳୟରେ । ମାମୁ ବିଭୂତି ମାଇତିଙ୍କର ଜଣେ ସମ୍ପର୍କୀୟ ସେଠାରେ ରହୁଥିଲେ । ମାମୁଙ୍କ ସୂତ୍ରରେ ତାଙ୍କ ଘରେ ରହି, ପାଠପଢ଼ି ସେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କଲେ । ତା'ପରେ ଆସି ପଢ଼ିଲେ ବାଲେଶ୍ୱରର ଫକୀରମୋହନ କଲେଜରେ ।

ତେବେ, ଏ ଭିତରେ କେତୋଟି ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଥିଲା କନ୍ହେଇଲାଲଙ୍କ ଜୀବନରେ ଓ ତାଙ୍କ ପରିବାରରେ । ଶ୍ୱାସରୋଗରେ ଆକ୍ରାନ୍ତ ପିତା କ୍ଷେତ୍ରମୋହନଙ୍କର ୧୯୬୨ ମସିହାରେ ପରଲୋକ ହେଲା । ଘରଖର୍ଚ୍ଚ ଓ କନ୍ହେଇଲାଲଙ୍କ ପାଠପଢ଼ା ଖର୍ଚ୍ଚ ତୁଲାଇବାରେ ଅସମର୍ଥ ହୋଇ ଅନନ୍ୟୋପାୟା ମାଆ ଅନିଲାବାଳା ଅବଶିଷ୍ଟ ମାତ୍ର ୨୦



ଜଗନ୍ନାଥ ସରକାରୀ ଉଚ୍ଚ ବିଦ୍ୟାଳୟ, କମର୍ଦ୍ଧା

ଗୁଣ୍ଠ ଚାଷଜମିକୁ ବିକିଦେବାକୁ ବାଧ ହେଲେ । ଦୁଇ ଭଉଣୀ ମଙ୍ଗୁଳି ଓ ବୁଢ଼ୀଙ୍କର ବିବାହ ହେଲା । ମଙ୍ଗୁଳିଙ୍କର ସ୍ୱାମୀ ଥିଲେ ଗୌରହରି ଦାସ । କିନ୍ତୁ ଦାମ୍ପତ୍ୟ ଜୀବନରେ ଅଶାନ୍ତି ଫଳରେ ମଙ୍ଗୁଳିଙ୍କୁ ଫେରି ଆସିବାକୁ ପଡ଼ିଥିଲା ନିଜ ଗାଆଁକୁ । ଘରଡିହ ଖଣ୍ଡିକ ବି ବନ୍ଧକ ପଡ଼ିଥିବାରୁ ମୁଣ୍ଡ ଗୁଞ୍ଜିବା ପାଇଁ ନିଜର ଖଣ୍ଡିଏ ଜାଗା କି ଘର ନଥିଲା । ତେଣୁ ସେତେବେଳେ ତାଙ୍କ ସାରା ପରିବାରର ଭାର ନେଇଥିଲେ ମଙ୍ଗୁଳିଙ୍କର ତଳ ଭଉଣୀ ବୁଢ଼ୀ ଓରଫ ଦୁର୍ଗାମଣିଙ୍କର ସ୍ୱାମୀ, ଆରୁହାବୃତ୍ତିର ଅନନ୍ତ ଦାସ ।

ପରିବାରର ଏପରି ଆର୍ଥିକ ଦୁଃସ୍ଥିତି ଯୋଗୁଁ ବାଲେଶ୍ୱରରେ କଲେଜରେ ପଢ଼ିବାବେଳେ କନ୍‌ହେଇଲାଲଙ୍କୁ ଟ୍ୟୁସନ କରି ନିଜ ଖର୍ଚ୍ଚ ନିଜେ ତୁଲାଇବାକୁ ପଡୁଥିଲା । ସେ ପ୍ରଥମେ ଟ୍ୟୁସନ କରୁଥିଲେ ରତନ କିଶୋର ଦେ'ଙ୍କ ଘରେ, ତାଙ୍କ ଝିଅ ଶୁଭ୍ରା ଓରଫ ରାନୀ ଓ ଅନ୍ୟମାନଙ୍କୁ । ଏଇ ବାଲେଶ୍ୱରରୁ ହିଁ ତାଙ୍କ ଭିତରେ ଥିବା ସାହିତ୍ୟର କଳିକାଟି ଅନୁକୂଳ ଆଲୋକ ଓ ଉଷ୍ମା ପାଇ କ୍ରମେ ବିକଶିତ ହେବାକୁ ଆରମ୍ଭ କରିଥିଲା । ପ୍ରେମର ତିକ୍ତ-ମଧୁର ସ୍ମୃତି, ଦାରିଦ୍ର୍ୟର ତୀବ୍ର ଯାତନା ଏବଂ ବ୍ରଜନାଥ ରଥ ଓ ଅନ୍ୟ ସାହିତ୍ୟିକମାନଙ୍କ ସହିତ ପରିଚୟ ଓ ସଂସର୍ଗ ତାଙ୍କ ଅନ୍ତରରେ ଭରି ଦେଇଥିଲା ଏତେ ଆଲୋକ ଓ ଉଷ୍ମତା ଯେ ସେଥିରେ ସାହିତ୍ୟର ସେଇ କଳିଟି କ୍ରମେ ପାଖୁଡ଼ା ମେଲିବା ଆରମ୍ଭ କରିଥିଲା । ପରେ ପରେ ସେ ଡିଫେନ୍‌ସ ବିଭାଗର ଚାକିରି ପାଇ ଚାଲିଯାଇଥିଲେ ପାନ୍ନାଗଡ଼ ଏବଂ ନିଜର

ପ୍ରିୟ ସହର ଓ ପ୍ରିୟ ସଂପର୍କମାନଙ୍କୁ ଝୁରିଥିଲେ । ପରେ ଭୁବନେଶ୍ୱରର ଏ.ଜି. ଅଫିସରେ ଚାକିରି ପାଇବା ପରେ ହିଁ ସେ କିଛିଟା ଆଶ୍ୱସ୍ତ ହୋଇଥିଲେ । (ସେ ସମୟର ବହୁ ବାସ୍ତବ ଚିତ୍ର 'କନ୍ହେଇ କଥାଘର'ରେ ସ୍ଥାନିତ 'କନ୍ହେଇ ଦିନଲିପି' ଓ ତାହାର ପରିଶିଷ୍ଟରେ ସ୍ଥାନିତ 'କନ୍ହେଇଲାଲଙ୍କୁ ଚିଠି'ରେ ଅଛି)

ତେବେ ପାଠପଢ଼ା ପରେ, କିଛିଦିନ ଗାଁରେ ଆସି ରହିଥିଲେ କନ୍ହେଇଲାଲ । ସେ ଗାଆଁ ତାଙ୍କ ପିଲାଦିନର ପ୍ରିୟ ଗାଆଁ ହେଲେ ବି ସେତେବେଳକୁ ଗାଆଁରେ ଆଉ ନିଜର ବୋଲି ଗୋଟେ ଜମି ନଥିଲା । ଘରଡିହ ଖଣ୍ଡିକ ବି ବନ୍ଧକ ପଡ଼ିଥିଲା । ଗାଆଁର ସେଇ ଘରଖଣ୍ଡିକର ଅନ୍ତରଙ୍ଗ ବର୍ଣ୍ଣନା ଦିଅନ୍ତି କନ୍ହେଇଲାଲ ଦାସଙ୍କର ଭଣଜା କାଳିକିଙ୍କର । ସେ କହନ୍ତି, "କମର୍ଦ୍ଦା ଜଗନ୍ନାଥ ଉଚ୍ଚବିଦ୍ୟାଳୟ ଠାରୁ ପ୍ରାୟ ଅଧକିଲୋମିଟର ଦୂରରେ ତାଙ୍କର ଏକ ଛିଟାବେଢ଼ା ଚାଳଘର ଥାଏ । ଛିଟାବେଢ଼ା ଚାଳଘରର ଅର୍ଥ- ବାଉଁଶ, ବାଉଁଶ କଣି ଓ ଅନ୍ୟାନ୍ୟ କିଛି ଡାଳପତ୍ର ଦେଇ ମାଟିରେ ପ୍ରଲେପିତ ଘର । ଏସ୍କିମୋଙ୍କ ଇଗ୍‌ଲୁ ପରି ଚାଳରେ ଝୁଙ୍କି ପଡ଼ିଥିବା ଛୋଟ ଘର ।"

କିନ୍ତୁ ସେ ଘରଟି ମଧ୍ୟ ଆଜି ଆଉ ତାଙ୍କର ହୋଇ ନାହିଁ । କନ୍ହେଇଲାଲ ପାଠ ପଢୁଥିବାବେଳେ ଆର୍ଥିକ ଦୁରବସ୍ଥା ଯୋଗୁଁ ମାଆ ଅନିଳାବାଳା ତାହାକୁ ବନ୍ଧକ ଦେଇଥିଲେ ସେଇ ଗାଆଁର ନରେନ୍ଦ୍ର ମିଶ୍ରଙ୍କୁ । ଘରଡ଼ିହକୁ ଲାଗି ଛୋଟ ପୋଖରୀ ଖଣ୍ଡିଏ ବି ଥିଲା ।



ବିକ୍ରିହୋଇଯାଇଥିବା କନ୍ହେଇଲାଲଙ୍କ ଘରଡିହ ଓ ପୋଖରୀ


ବାଲେଶ୍ୱର ଦିନର କନ୍‌ହେଇଲାଲ

କନ୍‌ହେଇଲାଲଙ୍କ ମୃତ୍ୟୁର ଦୀର୍ଘବର୍ଷ ପରେ ତାହାକୁ ବିକ୍ରି କରିଦେବାକୁ ବାଧ ହୋଇଥିଲେ ଅନିଲାବାଲା । ତିନିବର୍ଷ ପରେ ନରେନ୍ଦ୍ର ମିଶ୍ର ପୁଣି ତାହାକୁ ବିକ୍ରି କରିଦେଇଥିଲେ ନାରାୟଣ ଚନ୍ଦ୍ର ଦାସଙ୍କୁ । ଏବେ ତାହାଙ୍କ ପୁତ୍ର ରବୀନ୍ଦ୍ର ସେଠାରେ ନୂଆ ଘର କରିଛନ୍ତି । ସେ ନିଜେ ପଣ୍ଡିଚେରୀରେ ରହୁଥିବା ଜଣାଯାଏ ।

ତେବେ ସେ ଯାହାହେଉ ନା କାହିଁକି, ନିଜ ଗାଆଁର ଜମି ଓ ଘର ହରାଇବାର ଦୁଃଖ ଆମୃତ୍ୟୁ ଥିଲା କନ୍‌ହେଇଲାଲ ଦାସଙ୍କର ସାଥୀ ।

ପାଠପଢ଼ା ପରେ କନ୍‌ହେଇଲାଲ କିଛିଦିନ ତାଙ୍କର ସେଇ ପ୍ରିୟ ଓ ଯନ୍ତଣାର ଗାଆଁକୁ ଆସିଥିଲେ । ସାହିତ୍ୟ ପ୍ରତି ତାଙ୍କର ଥିବା ସେଦିନର ନିଷ୍ଠାର ଅନ୍ତରଙ୍ଗ ଆଖିଦେଖା ଆଲେଖ୍ୟ ଆଙ୍କନ୍ତି ସୁକୁମାର ଦାସ । ସେ କହନ୍ତି, "କନ୍‌ହେଇଭାଇ ସେତେବେଳେ ଯୁବକ । ମୁଁ ଦେଖିଛି, ଦୁଇଖଣ୍ଡ ଡାଏରି ଓ ଖଣ୍ଡିଏ ଲମ୍ବା ଖାତା ତାଙ୍କ ପାଖରେ ପ୍ରାୟ ସବୁବେଳେ ଥାଏ । କେତେବେଳେ ନଦୀପଠାରେ ତ ପୁଣି କେବେ ଗଛ ମୂଳରେ ବସି କ'ଣ ସବୁ ଲେଖୁଥା'ନ୍ତି । ରାତିରେ ସମସ୍ତେ ଶୋଇଗଲା ପରେ ଲଣ୍ଠନ ଜାଳି କ'ଣ ସବୁ ଲେଖିପକାନ୍ତି । ସେଇ ଲେଖା ପରବର୍ତ୍ତୀ ସମୟରେ ଯେ ସାରସ୍ୱତ ଦସ୍ତାବିଜ୍ ପାଲଟିବ ସେଦିନ ସେକଥା ମୁଁ ଜାଣି ନଥିଲି ।" ସେଦିନର କନ୍‌ହେଇଲାଲଙ୍କୁ ନିକଟରୁ ଦେଖିଥିବା ସତ୍ୟଶିବ ଦାସ ଓ ସତ୍ୟବ୍ରତ ପ୍ରଧାନ ମଧ୍ୟ କହନ୍ତି, "କମର୍ଦ୍ଦା ହାଇସ୍କୁଲରେ ପାଠପଢ଼ିବାବେଳେ ତାଙ୍କ ସୃଜନଶୀଳତାର ବିକାଶ ଘଟିଥିଲା । ପିଲାଦିନୁ ସେ ଥିଲେ ଲାଜକୁଳା । ପତଳା ସ୍ୱାସ୍ଥ୍ୟ । ସବୁବେଳେ ନିରୋଳା, ନିଛାଟିଆ ମୁହୂର୍ତ୍ତ ଖୋଜୁଥିଲେ । ଏକାକୀ ଥିବାବେଳେ ନିରୋଳା ସ୍ଥାନରେ ସିନେତାରକା ଦେବାନନ୍ଦଙ୍କ 'ଗାଇଡ୍' ଫିଲ୍ମର ଗୀତ "ୱହାଁ କୌନ୍ ହେ ତେରା ମୁସାଫିର୍ । ଯାଏଗା କାହାଁ" ଗୁଣୁଗୁଣଉ ଥିଲେ ।" ପ୍ରକୃତରେ ନିଜ ଗାଆଁରେ ସେଦିନ, କନ୍‌ହେଇଲାଲ ଯାଯାବରଟିଏ ନଥିଲେ ତ ଆଉ କ'ଣ !

କନ୍‌ହେଇଲାଲଙ୍କର ମାତ୍ର ୨୮ ବର୍ଷର ସୀମିତ ଓ ସୃଜନଶୀଳ ଜୀବନକୁ ଏବଂ ତା'ର ସଂଘର୍ଷ ଓ ଯାତନାକୁ ଦେଖିଲେ ମନେହୁଏ; ସାରାଜୀବନ ସେ ପ୍ରେମ ଖୋଜିଛନ୍ତି-

ପାଇ ନାହାନ୍ତି; ଟିକିଏ ଆର୍ଥିକ ନିରାପତ୍ତା ଖୋଜିଛନ୍ତି, ପାଇ ନାହାନ୍ତି; ପରିବାରକୁ ଟିକିଏ ଭଲରେ ରଖିବାକୁ ଚାହିଁଛନ୍ତି, ସଫଳ ହୋଇନାହାନ୍ତି; ସମ୍ପର୍କ ଗୁଡ଼ିକ ଛଳନାହୀନ ହେଉ, ଏ ଆଶା ରଖିଛନ୍ତି, କିନ୍ତୁ ମିଳିଛି ନିରାଶା ଏବଂ ଏସବୁରୁ ମୁକ୍ତି ପାଇବାକୁ ସେ ଆଶ୍ରୟ ନେଇଛନ୍ତି- ସ୍ୱପ୍ନର, ସାହିତ୍ୟର । ଯେଉଁ ପ୍ରେମ, ଯେଉଁ ସମ୍ପର୍କ, ଯେଉଁ ସ୍ୱପ୍ନ ମିଳିନାହିଁ- ମିଳିବାର ଆଶା ହୁଏତ ଆଦୌ ନାହିଁ- ସେଇ ସ୍ୱପ୍ନକୁ ରୂପାୟିତ କରିଛନ୍ତି ନିଜର ସାହିତ୍ୟରେ । କ୍ରମେ ସେଇ ସ୍ୱପ୍ନ ସମାଜ-ବାସ୍ତବତାରେ ରୂପାନ୍ତରିତ ହେବାର ସନ୍ଧିକ୍ଷଣରେ ହିଁ ଏ ଦୁନିଆରୁ ବିଦାୟ ନେବାକୁ ପଡ଼ିଛି ତାଙ୍କୁ- ମାତ୍ର ୨୮ ବର୍ଷ ବୟସରେ ।

ପାନ୍ନାଗଡ଼ର ଡିଫେନ୍‌ସ ବିଭାଗ ଚାକିରିରୁ ଆସି ଭୁବନେଶ୍ୱରର ଏ.ଜି. ଅଫିସରେ ଯୋଗଦେବା ପରେ ବାଲେଶ୍ୱରର ଉଷ୍ମାରେ ପାଖୁଡ଼ା ମେଲିବା ଆରମ୍ଭ ହୋଇଥିବା ତାଙ୍କ ଭିତରର ସାହିତ୍ୟର କଢ଼ିଟି ଫୁଲ ହୋଇ ଫୁଟୁଥିଲା । ମାତ୍ର ତାହା ସମ୍ପୂର୍ଣ୍ଣ ମୁକୁଳିତ ହେବା ଆଗରୁ ଝରିଗଲା- ୧୯୭୫ ମସିହା ଜୁଲାଇ ମାସ ୨୬ ତାରିଖର ରାତି ଶେଷରେ- ୨୭ ତାରିଖର ପାହାନ୍ତିରେ । (ଏହାର ଅନ୍ତରଙ୍ଗ ଆଲେଖ୍ୟ 'କନ୍‌ହେଇ କଥାଘର'ର ପରିଶିଷ୍ଟରେ ସଂଯୋଜିତ ରତି ମିଶ୍ରଙ୍କ ଲେଖାରେ ଅଛି)

କନ୍‌ହେଇଲାଲଙ୍କର ସେଇ ସୃଜନ ପୁଷ୍ପଟିର ରଙ୍ଗ, ରୂପ ଓ ସୁବାସ ଆଜି ବି ମୁଗ୍ଧ ଓ ବିଭୋର କରୁଛି ଆମ କଥା-ସାହିତ୍ୟର ପରିସରକୁ ।

ଏତିକି ହେଉଛି କହ୍ନେଇ-କଥା । ଆଉ ଏତିକି ବି ସେଇ ଅସମାପ୍ତ ସ୍ୱପ୍ନର ଗାଥା ।

**ଅସିତ ମହାନ୍ତି**

# ସର୍ବଂସହା

ସେଦିନ ଆକାଶର ରୂପରଙ୍ଗ ଯେମିତି ଥିଲା, ଆଜି ବି ଠିକ୍ ସେମିତି ଅଛି; ଆଉ ଅକ୍ଷୟଯୌବନା ଧରିତ୍ରୀର ଦୃଷ୍ଟିରେଖା ତାରି ଆଡ଼େ ଠିକ୍ ସେମିତି ଲମ୍ବି ରହିଛି । କେବଳ ଏହା ମଧ୍ୟରେ ଲୟ-ବିଲୟ ଘଟିଲାଣି ଅନେକ ।

ସେଦିନ ଧରିତ୍ରୀ ଶୋଇଥିଲା, ଏକ ଦୁଗ୍ଧପୋଷ୍ୟ ଶିଶୁ...., ଆଜି ସେ ଶୋଇଛି ଏକ ଉଦ୍ଭିନ୍ନଯୌବନା ତନ୍ୱୀ ତରୁଣୀ ।

ଯେଉଁ ଶିଶୁ ଦିନେ ଅନନ୍ତ ବିଶ୍ୱରେ ଶୈଶବର ରାଜପଥ ଉପରେ ଚକା ଚକା ଭଉଁରୀ ଖେଳି ବୁଲୁଥିଲା, ହଠାତ୍ ନବତାରୁଣ୍ୟର ସ୍ପର୍ଶ ପାଇ ତା ଦେହରେ ଶୀତ୍କାର ଖେଳିଗଲା ।

–ତାରୁଣ୍ୟର ପ୍ରତ୍ୟୁଷରେ ଉତ୍ଥିତ ହେଲା ବକ୍ଷୋଜର ଉଲଗ୍ନ ଉଦ୍ଧତ ଶୈଳ ଶ୍ରେଣୀ... ସୃଷ୍ଟି ହେଲା, ସବୁଜ ସ୍ୱପ୍ନଭରା ଚିରହରିତ ଉଦ୍ଭିଦ-ଯୌବନ ।

ତରୁଣୀ ଧରିତ୍ରର ଆଖିର ଆଟଲାଣ୍ଟିକ୍‌ରେ ଉଦ୍ଦାମ ନୀଳ ଲହରୀ..., ମନର ଆମାଜନ ଅବବାହିକାରେ ଲକ୍ଷ ଫଗୁଣର ସ୍ୱପ୍ନ..., ଅପଘନର ଅଭ୍ୟନ୍ତରରେ ଅହେତୁକ ଉଦ୍‌ବେଳନ– ।

ଯୌବନ ଚାହେଁନି ଶୂନ୍ୟତା– ଚାହେଁନି ସାନ୍ନିଧ ! ଧରିତ୍ରୀ ଚତୁର୍ଦ୍ଦିଗକୁ ଦୃଷ୍ଟି ସଂଚାଳନ କଲା ।

ନିଜ ଅଜ୍ଞାତସାରରେ ଦୃଷ୍ଟିରେଖା ତାର ଲମ୍ବିଗଲା ଶୈଶବର ସାଥୀ ତପନ ଅଭିମୁଖେ । ତପନର ଲପନରେ କାମନାର ସ୍ୱାକ୍ଷର ।

ଲଜ୍ଜାଶୀଳା ଧରିତ୍ରୀ, ଆତ୍ମଗୋପନ କଲା ରାତ୍ରିର କଳା ପଣତ ତଳେ– ।

ଏମିତି ଏକ ସୁଯୋଗକୁ ଅପେକ୍ଷା କରୁଥିଲା ଶଶାଙ୍କ । ପୂର୍ବଦିଗରୁ ଆକ୍ରମଣ କଲା । ଧରିତ୍ରୀର କୃଷ୍ଣ ଝୀନ ବସନ ଖୋଲି ଫିଙ୍ଗିଦେଲା ଦୂରକୁ । –ତାପରେ ଆଲିଙ୍ଗନ– ନିବିଡ଼ ଆଶ୍ଲେଷ– ।

ବାଧା ଦେବାକୁ ଇଚ୍ଛା ହେଲାନି ଧରିତ୍ରୀର । ଅନ୍ୟ ନିକଟରେ ଅଜାଡ଼ି ଦେବାର ଆନନ୍ଦରେ ଶଶାଙ୍କର ରେଣୁରେଣୁ ଚନ୍ଦ୍ରିକା-ବାହୁର ବନ୍ଧନ ତଳେ ହଜିଗଲା ସେ ।

ଚାଲିଗଲା କ୍ଳାନ୍ତ ଶଶାଙ୍କ, ପୁଣି ଆସିଲା ତପନ । ଧରିତ୍ରୀର କୁମାରୀତ୍ୱର ଏଭରେଷ୍ଟ ଉପରେ ଥରେ ପାଦ ଚିହ୍ନ ପଡ଼ିସାରିଛି, ଆଉଥରେ ପଡ଼ିଲେ କ୍ଷତି କଣ ? ସେ ହେଲା ମୌନାବତୀ ।

କେବଳ ତପନ ଓ ଶଶାଙ୍କ ଯେ ଧରିତ୍ରୀର ଅକ୍ଷୟ ଯୌବନକୁ ନିଃଶେଷ କରିଚାଲିଲେ ତା ନୁହେଁ, ନିଦାଘର ଅଳସ ମଧ୍ୟାହ୍ନ ପରେ ଆସେ ଜଳଦ । ଧରିତ୍ରୀର ଆଖି ଝଲସାଇ ତାର ଆଲୁଅ ଦପ୍‌କରି ଜଳିଉଠେ । ବଜ୍ରଗମ୍ଭୀର ସ୍ୱରରେ ଧରିତ୍ରୀର ରୂପ-ଗୁଣର ପ୍ରଶଂସା କରେ ।

ଦେହର କବାଟ ଖୋଲେ ଧରିତ୍ରୀ । ଜଳଦ ରିମ୍‌ଝିମ୍ କରି ଆଦିମ ସଂଗୀତ ଗାଏ । ପୁଲକିତ ଧରିତ୍ରୀ ମୁଖରେ ଫୁଟିଉଠେ ବିଲୋଳ ହସ ।

ଆସେ ସମୀର । ଧରିତ୍ରୀ ତରୁଲତାର ହାତ ହଲାଇ ମିଛରେ ମନା କରେ । ସମୀର ମାନେନି । ଧରିତ୍ରୀର ସର୍ବାଙ୍ଗରେ ତାର ଦେହର ସ୍ପର୍ଶ ଆଙ୍କିଯାଏ ।

ସମସ୍ତେ ଆସନ୍ତି ଯାଆନ୍ତି– । ଧରିତ୍ରୀର ତନୁତ୍ରିବେଣୀରେ ସ୍ନାନ କରନ୍ତି । ତଥାପି ଗଗନ ପରି ତାକୁ କେହି ଆପଣାର କରିପାରି ନାହାନ୍ତି । ଗଗନର ଐକାନ୍ତିକ ନୀରବ ପ୍ରେମ, ପ୍ରଗାଢ଼ ଏକାଗ୍ରତା ଓ ଅସୀମ ଅନୁରକ୍ତି ନିକଟରେ ଦୁର୍ବଳ ହୋଇଯାଏ ଧରିତ୍ରୀ। ତା'ର ଦେହ ମନକୁ ଗଗନର ପାଦ ତଳେ ନୈବେଦ୍ୟ ରୂପେ ଅର୍ପଣ କରି ସେ ହୁଏ ଧନ୍ୟ। ଗଗନ ଏକ ଲୟରେ ଚାହେଁ ଧରିତ୍ରୀକୁ ଓ ଧରିତ୍ରୀ ଏକ ଲୟରେ ଚାହେଁ ଗଗନକୁ।

ଦୁହିଁଙ୍କ ବ୍ୟବଧାନ ଯେତେ ଆଲୋକବର୍ଷ ହେଲେ ମଧ୍ୟ ସେମାନଙ୍କର ମନ ଏକ ବିନ୍ଦୁଗାମୀ ଦୁଇଟି ସରଳରେଖା !

ଶତାବ୍ଦୀ ପରେ ଶତାବ୍ଦୀ ଓଲଟିଯାଏ । ଧରିତ୍ରୀର ପ୍ରେମିକ ତାଲିକାରେ ନାମ ଲେଖାଇବା ପାଇଁ ଲମ୍ବିଯାଏ ସୁଦୀର୍ଘ କ୍ୟୁ । କୃପଣତା କରେ ନାହିଁ ଧରିତ୍ରୀ । ତାର ଅସରନ୍ତି ପ୍ରଣୟ ପାତ୍ରରୁ ଯେ ଯାହା ପାରନ୍ତି ନେଇଯାନ୍ତି ନିଃସଙ୍କୋଚରେ ।

ଧରିତ୍ରୀର କୋଳ ପୂର୍ଣ୍ଣ କରି ଆସନ୍ତି ସନ୍ତାନସନ୍ତତି । ଅଦ୍ଭୁତ ବିଚିତ୍ର ଜୀବଗୁଡ଼ିକ । ଧରିତ୍ରୀ ସେମାନଙ୍କୁ ଖୁବ୍ ସ୍ନେହ କରେ । କାରଣ ସେମାନେ ତାର ଅବିନଶ୍ୱର ପ୍ରେମର ଜୀବନ ସ୍ମରଣିକା !

ଅମୃତର ସନ୍ତାନଗଣ ଧରିତ୍ରୀକୁ ଖୋଳି, କାଟି, ରକ୍ତ ବୁହାଇ ଦିଅନ୍ତି । ବୋମା ଡିନାମାଇଟରେ କ୍ଷତବିକ୍ଷତ କରିପକାନ୍ତି ତାର କୋମଳ ଦେହ । ତଥାପି ଧରିତ୍ରି କିଛି କହେ ନାହିଁ । ମା' ବୋଲି ସବୁ ସହିନିଏ ।

ସେଇଥିପାଇଁ ଧରିତ୍ରୀ ସର୍ବଂସହା... ।

ଧରିତ୍ରୀ କେବଳ ସହସ୍ର ଶଯ୍ୟାର ନାୟିକା ନୁହେଁ... ସେ ଆଦର୍ଶ ଜନନୀ... ! ଆଜି ବି ଅକ୍ଷୟ-ଯୌବନା ଧରିତ୍ରୀର ପ୍ରାଣରେ ତାରୁଣ୍ୟର ପ୍ରଥମ ସ୍ପନ୍ଦନ !!!

(ଜନସାଥୀ, ଏପ୍ରିଲ୍ ୧୯୬୮)



# ବିବର୍ତ୍ତନବାଦ

କେଉଁ ଏକ ବିବର୍ଣ୍ଣ ଅପରାହ୍ନରେ ମୁଁ ସ୍କୁଲରୁ ଫେରୁଥିବା ବେଳେ ତାକୁ ଦେଖିଥିଲି ନାଲିଗୋଡ଼ି ରାସ୍ତା ଉପରେ ଡେଙ୍ଗ ଡେଙ୍ଗ ଚାଲୁଥିଲା ସେ । ହାତରେ ଥିଲା ତାର ସ୍ଲେଟ୍ ।

ଆଉ ଏକ ନିରାନନ୍ଦ ବର୍ଷାଭିଜା ଅପରାହ୍ନରେ ବାଳିକା ବିଦ୍ୟାଳୟ ଗେଟ୍ ଆଗରେ ମୋର ସାଇକେଲ ପଇଁତରା ମାରୁଥିଲାବେଳେ ସାପ ପରି ଲମ୍ବା ବେଣୀ ଦୁଇଟି ଦୋଳାଇ ଭିତରକୁ ପଶିଯାଉଥିବାର ଦେଖିଥିଲି ମୁଁ ।

ତାର କେତେବର୍ଷ ପରେ ସେଦିନ ମୋର ସାଇକେଲ ଚକ ମୋ ଅଫିସ ଆଡ଼େ ଗଡ଼ି ଚାଲିଥିଲା । କଲେଜ ରାସ୍ତାର ଏକ ଚଳନ୍ତି ରିକ୍ସାରେ ବସିଥିଲା ସେ । ଚେହେରାର ଯଥେଷ୍ଟ ପରିବର୍ତ୍ତନ ହୋଇଯାଇଥିଲା । ଯଥାସମ୍ଭବ ସଂକ୍ଷିପ୍ତ ଓ ସୂକ୍ଷ୍ମଥିଲା ତାର ପରିଧେୟ ।

ତାର କିଛିଦିନ ଉତ୍ତାରୁ କଲେଜ ଷ୍ଟ୍ରାଇକରେ ଛାତ୍ରନେତାମାନଙ୍କ ଗହଣରେ ତାକୁ ଦେଖିଥିଲି ଛାତ୍ର ପଟୁଆରର ସମ୍ମୁଖରେ ସ୍ଲୋଗାନ ଉଚ୍ଚାରଣ କଲାବେଳେ ।

ସେଦିନ ରାତିରେ ବଜାରରୁ ଫେରୁଥିବା ରାସ୍ତାରେ ମୁଁ ଆଉଥରେ ତାକୁ ଦେଖିଥିଲି ଏକ ସୁସଜ୍ଜିତ ପ୍ରକୋଷ୍ଠରୁ ନିଷ୍କ୍ରାନ୍ତ ହେଲା ବେଳେ; ତରୁଣ ଇଂରାଜୀ ଅଧ୍ୟାପକ ବିଦାୟ ଅଭିନନ୍ଦନ ଜଣାଉଥିଲେ ।

ଆଉ ଦିନେ ଇଣ୍ଟରଭାଲରେ ମୋର ବନ୍ଧୁ ରାଜ୍ ସହିତ ତାକୁ ଦେଖିଥିଲି ବାଲ୍‌କୋନି ଉପରେ । ପରିଚିତ ହେବାର ସୌଭାଗ୍ୟ ପାଇଥିଲି । କେଇପଦ କଥାବାର୍ତ୍ତା ବି ହୋଇଥିଲି ସେଦିନ ।

ସେଦିନ ବନ୍ଧୁବର ସନାତନ ସହ ମୋନାଲିସା ରେସ୍ତୋଁରାରେ ତାର ପ୍ରଦତ୍ତ କଫି ପାନ କରି ଆପ୍ୟାୟିତ ହୋଇଥିଲି ମୁଁ ।

ଆଉ ଅନ୍ୟ ଏକ ଶୀତରାତିରେ କୁହେଳିକା ଆସ୍ତରଣ ମଧ୍ୟରେ ମୁଁ ତାକୁ ଦେଖିଥିଲି ଅନ୍ଧାରି ଆଲୁଅ ମଧ୍ୟରେ ମୋର ସାଥୀ ସୌମ୍ୟଦର୍ଶନ ମଦନ ସହ କୌଣସି ଏକ ଭିନ୍ନ ପରିବେଶ ମଧ୍ୟରେ ।

ସଂଜୀବ ଘରେ ସମୟ ଅସମୟରେ ତାର ଉପସ୍ଥିତି ମୁଁ ଦେଖିଥିଲି ଓ ବିସ୍ମିତ ହୋଇଥିଲି ।

ସେଦିନୁଁ ଆକାଶର ଛାତିରେ ଅନେକ ମେଘ ଭାସିଯାଉଛନ୍ତି । ଅନେକ ସକାଳ ସଂଜ ହୋଇଯାଇଛି ।

ରାଜର ସେ ସ୍ୱାସ୍ଥ୍ୟର ଅହମିକା ଆଜି ଆଉ ନାହିଁ । ଜୀର୍ଣ୍ଣଶୀର୍ଣ୍ଣ ଏକ ବୃଦ୍ଧର ଅଭିନୟ ଯେପରି କରୁଛି ସେ ।

ସନାତନ ରାତି ଉଜାଗର ରହି, ଚାରମିନାର ଟାଣି କବିତା ଲେଖୁଛି । ଓଡ଼ିଆ ପତ୍ରପତ୍ରିକାରେ ତାର ସନେଟ୍ କେତୋଟି ବାହାରିଲାଣି ।

ମଦନ ଚିରକୁମାର ରହିବ ବୋଲି ଶପଥ ନେଇଛି । ତାର ଯୌବନର ସହକାର କୁଞ୍ଜରେ କୋକିଳର କୂଜନ ଆଉ ଶୁଭୁନାହିଁ ।

ସଂଜୀବ ତାକୁ ଭୁଲିଯିବାକୁ ଚେଷ୍ଟା କରି ପଳାୟନପନ୍ଥୀର ଭୂମିକା ବାଛିନେଇ ଆତ୍ମହତ୍ୟା କରିଛି ।

ହେଉ କେତେଜଣ ଗୌରକାନ୍ତି ସୁଦର୍ଶନ ଯୁବକ ତାରି ସାନ୍ନିଧ୍ୟରେ ଲଟାରି ନିକଟ କିଣିବେ ବୋଲି ତା ପାଖେ ପାଖେ କଣ ସବୁ ମିଠା କଥା କହିବାର ଅଭ୍ୟାସ କରୁଛନ୍ତି ।

'ସେ' ସେମିତି ଆଗେଇ ଚାଲିଛି ସିନେମାହଲ ରାସ୍ତାରେ ।

(ଜନସାଥୀ, ଫେବ୍ରୁଆରୀ ୧୯୬୮)



# ଖେଳାଳି

**ଉପକ୍ରମ :**

ମୁଁ ଗୋଟିଏ ଗଳ୍ପ କହିବି । ଗୋଟିଏ ନୂତନ ଗଳ୍ପ । ଅବଶ୍ୟ ଏହା ବି ଗୋଟିଏ ପ୍ରେମର ଗଳ୍ପ । ଜାଣେ, ସବୁ ପ୍ରେମର ଗଳ୍ପଗୁଡ଼ା ପୁରୁଣା । ପ୍ରେମର ଗଳ୍ପରେ କିଛି ନୂଆ କଥା କହି ହୁଏନି । କିନ୍ତୁ କଣ କରିବି ? ଗଳ୍ପ ଉପନ୍ୟାସ ମୁଁ ଆଦୌ ଲେଖେନି । କେବେ କେମିତି ତା'ରି ପାଇଁ କବିତା ଲେଖୁଥିଲି । ଏବେ ଜୀବନର ପ୍ରଥମ ଗଳ୍ପ ବି ତାରି ପାଇଁ ଲେଖୁଛି । ଏ ଗଳ୍ପ ଲେଖୁଛି ମୋ ଝର୍କାରେ ବସି; କାରଣ ସେଇଠି ବସି ଏ ଗଳ୍ପର ସବୁ ଅଂଶ ଦେଖିଛି । ଏ ଗଳ୍ପ ମୋର ଗଳ୍ପ ନୁହେଁ (ସେ ଦୁହିଁଙ୍କର ଗଳ୍ପ) । ସେମାନେ ଯଦି ମୋ ଉପରେ ବିରକ୍ତ ହୁଅନ୍ତି, ତାହାହେଲେ ମୁଁ କଣ କରିବି ? ମୁଁ କେବଳ ଲେଖକ । ଯାହା ଦେଖିଛି ତାହାହିଁ ଲେଖିଛି । ମୁଁ ଗୋଟିଏ ବଲକୁ ଅନେକ ଖେଳାଳି ସାମ୍ନାରେ ଦେଖିଛି ; କିନ୍ତୁ କେବଳ କହିବି ତାରି କଥା ଯିଏ ଶେଷରେ ସମସ୍ତଙ୍କୁ ଠକାଇ ଆଗେ ଗୋଲ୍ ଦେଲା ।

**ଗଳ୍ପ :**

ସେଦିନ ମୁଁ କେମିତି ଜାଣିଥାଆନ୍ତି ଯେ ଏ ଖେଳର ପରିଣତି ଏମିତି ହେବ, ଯେଉଁଦିନ ଗୋଟିଏ ବଲ୍‌କୁ ଲକ୍ଷ୍ୟ କରି ପଡ଼ିଆର ସବୁଯାକ ଖେଳାଳି ଅଣନିଶ୍ୱାସୀ ଧାଇଁଥିଲେ ଆଗ ଗୋଲ ଦେବାପାଇଁ ।

ସେତେବେଳେ ବା ମୁଁ କେମିତି ଜାଣିଥାନ୍ତି ଯେ ଏଇ ଅମୁକ ନମ୍ବର ଖେଳାଳିର ପରିଣତି ଏଇଆ ହେବ, ଯେତେବେଳେ ସେ ଏଇ ଗଳିବାଟେ ଦୁଇଥର ଗଡ଼ିଗଲା ସେଇ ଘରଟାକୁ ବାରମ୍ବାର ଚାହିଁ ଚାହିଁ ।

ସେଇ ଘର ମାନେ ମୋ ବସାଇ ଠିକ୍ ଓଲଟା ଦିଗର ଘରଟା, ଦି' ମହଲା କୋଠା, ଯେଉଁ ଘରଟାକୁ ମୁଁ ବି ଅନେକ ସମୟରେ ଚାହେଁ । ଅନେକ କାମଧନ୍ଦା ଭିତରେ ବି ମୋ ରୁମ୍‌ର ଝରକା ଖୋଲି ସେଇ ଘରର ଏକ ନିର୍ଦ୍ଦିଷ୍ଟ ଝରକା ଦେଇ କିଛି ଦେଖିବାର ଚେଷ୍ଟା କରେ ।

ଅଧିକାଂଶ ଦିନ ଠିକ୍ ଦଶଟା ବେଳେ ମୁଁ ସବୁ କାମଦାମ ଛାଡ଼ି ମୋ ଝର୍କା ଖୋଲି ବସି ରହେ । ଠିକ୍ ସମୟରେ ଚଞ୍ଚଳ ଗତିରେ ଦୁଇଟି ସୁନ୍ଦର ପାଦ ବାହାରି ଆସେ । ପିଠି ଉପରେ ଗୋଟିଏ ବେଣୀ । ସାମ୍ନାପଟକୁ ଆଉ ଗୋଟିଏ । ସବୁଦିନ ଗୋଟିଏ ରଙ୍ଗର ସ୍କୁଲ ଡ୍ରେସ । ଅବଶ୍ୟ ଚାଲିରେ ଅନ୍ୟ ଏକ ପ୍ରକାର ଚପଳତା, ଆଖିରେ ଓଠରେ ବି କେମିତି ଏକ ଅନ୍ୟ ପ୍ରକାର ଭାବ, ଯେଉଁ ଭାବ ଯେମିତି ଗୋଟିଏ କାହାଠାରେ ଦେଖିଥିଲି । ଆଜି ତାହା ମନେପକାଇ ପାରୁନି ।

ମୁଁ ମୋ ଝର୍କା ଦେଇ ଝିଅଟିର ଅନେକ ମୁହୂର୍ତ୍ତର ଛବି ଦେଖିଛି । ଦେଖିଛି ତାର ଶୁଖିଲା ମୁହଁ, ଆଖିରେ ଉତ୍‌ଫୁଲ୍ଲତା, ପୁଣି ତାର ବଡ଼ ପାଟି, ଗୁଣୁଗୁଣୁ ଗୀତ; ସାନ ଭଉଣୀ ଭାଇ ଉପରେ ଅରାଜକତାପୂର୍ଣ୍ଣ ଶାସନ, ମା ପାଖରେ ଗପ, ପୁଣି ପଢ଼ା ଟେବୁଲରେ ଚେନାଚୁର ଆଉ ଗଳ୍ପ ବହି ଭିତରେ ଆତ୍ମନିମଜ୍ଜନ, ପୁଣି ପରୀକ୍ଷା ବେଳେ ରାତି ଉଜାଗର ହୋଇ ନୋଟ ମୁଖସ୍ଥ—ଯାହା ସାଧାରଣ ଝିଅମାନଙ୍କର ଏକ ଅପରିହାର୍ଯ୍ୟ-ପ୍ରଧାନ ବିଶେଷତ୍ୱ ।

ସୁନ୍ଦରୀ ଝିଅଙ୍କ ଘର ସାମ୍ନାରେ ସାଇକେଲର ବିଭିନ୍ନ ପ୍ରକାର ଘଣ୍ଟି ବାଜେ । ଅନେକ ପ୍ରକାରର ପାଦଶବ୍ଦ ଶୁଭେ । ବିଭିନ୍ନ କିସମର ଗୀତ ସୁସୁରି ଇଙ୍ଗିତ ଦେଖିବାକୁ ମିଳେ । ସେ ଘର ସାମ୍ନାରେ ବି ସେ ସବୁର କମ୍ ନଥିଲା । ତେଣୁ ମୁଁ ଝର୍କାରେ ବସି ବିଭିନ୍ନ ପୋଷାକ, ସ୍ୱାସ୍ଥ୍ୟ, ସାଇକେଲର ପ୍ରଦର୍ଶନୀ ଦେଖୁଥିଲି । ନିତି ସଞ୍ଜ ସମୟରେ ଦେଖୁଥିଲି ବିଭିନ୍ନ ପ୍ରକାର ବନିଶୀ ସହ ବିଭିନ୍ନ ଉପାୟର ଥୋପ । କେଉଁ ସ୍ୱାସ୍ଥ୍ୟବାନ ଟୋକାର ଜିମ୍‌ନାସିୟମ ସାଙ୍ଗମାନେ ଏ ଗଳିରେ ରହୁଥିଲେ ତ କିଏ ଏ ଗଳିର ଟୋକାଙ୍କୁ ସିନେମା ଟିକଟ ଦାନ କରି ବନ୍ଧୁ ବାନ୍ଧୁଥିଲା । କିଏ ଏ ଘର ପାଖରେ ଘରଭଡ଼ା ଖୋଜୁଥିଲା ତ କିଏ ଏ ଗଳିମୁଣ୍ଡ ଚା ଦୋକାନର ତେଲ ଚିକିଟା ବେଞ୍ଚରେ ବସି ଖାଲି ଖାଲି ହସୁଥିଲା । କେହି ବି ତା ସାନଭାଇଟି ସହ ହସ ବିନିମୟ କରି ଚାଲିଯାଉଥିଲା ଏବଂ ଦୁର୍ଗର ଛୋଟ ଦରୱାନକୁ ଜୟ କରିପାରିବାର ଗୌରବରେ ମନେ ମନେ କୁରୁଳି ଉଠୁଥିଲା । ଆହୁରି ବି ମୋ କଲେଜ ସାଙ୍ଗମାନେ ଠିକ୍ ଚାରିଟା ପରେ ମୋ ବସାକୁ ବହୁସଂଖ୍ୟାରେ ଆସି ଅଯଥା ମୋ ସହ ଗପ କରି ମୋତେ ସେମାନଙ୍କ ଶ୍ରେଷ୍ଠ ବନ୍ଧୁ ବୋଲି ପ୍ରମାଣ କରାଇବାକୁ ଛାଡୁନଥିଲେ ।

ମୁଁ କେବଳ କୌତୂହଳରେ ଅପେକ୍ଷା କରୁଥିଲି ଏତେ ଖେଳାଳି ମଧ୍ୟରୁ କେଉଁଦିନ କେଉଁ ଏକ ଅଜଣା ଖେଳାଳି ନିଜେ ଗୋଲ ଦେଇ ବିଜେତା ହେବ ଆଉ ଅନ୍ୟମାନେ କାନ ମୁଣ୍ଡ ଆଉଁଶି ସୁନା ପିଲାଟି ପରି ଆପଣା ରାସ୍ତାରେ ଚାଲିଯିବେ । ମୁଁ ନିଜେ ତ ରେଫ୍‌ରି ସାଜି ଗୋଟା ପଡ଼ିଆଟା ସାରା ଦଉଡୁଥିଲି । ଅବଶ୍ୟ ତା' ଭିତରେ ସୁଯୋଗ ମିଳିଲେ ଗୋଟିଏ ଫାଉଲ ଗୋଲ ଦେଇ ଦେବି, ଏ ବିଷୟରେ ଆଉ ଜମା ଦ୍ୱିଧା ନଥିଲା । ତଥାପି ଗୋଲ ପୋଷ୍ଟର ଏତେ ପାଖରେ ଥାଇ ବି ମୁଁ ଆଦୌ ସୁଯୋଗ ପାଉ ନଥିଲି ।

ହଠାତ୍ ଦିନେ ମୋ ଦର୍ଜାର କଡ଼ା ନଡ଼ି ଉଠିଲା । ମୁଁ କବାଟ ଖୋଲି ଦେଇ ଦେଖିଲି ସେଇ ଝିଅଟି । ଆଖିରେ ଆତଙ୍କ । ଯେପରି ଆଖିରେ ତରଙ୍ଗ ଉଠାଇ କଥାଗୁଡ଼ା କହିଲା :

—ଗୋଟେ ରିକ୍‌ସା ଡାକି ଦିଅନ୍ତୁ । ମୋ ସାନଭାଇଟା ପିଜୁଳି ଗଛରୁ ପଡ଼ି ହାତ ଭାଙ୍ଗି ପକାଇଛି । ଘରେ ବାପା ନାହାନ୍ତି କିମ୍ବା ଗଙ୍ଗା, ମାନେ ଚାକର ବି ନାହିଁ ।

ମୁଁ ଦେଖିଲି ମୋ ପାଖକୁ ଯେପରି ବଲ୍‌ଟା ଧୀରେ ଧୀରେ ଗଡ଼ି ଆସୁଛି । ମୁଁ ଆସୁଛି ବୋଲି କହି ଜାମା ପେଣ୍ଟ ପିନ୍ଧି ଦୌଡ଼ିଲି ରିକ୍‌ସା ଉଦ୍ଦେଶ୍ୟରେ । ଝିଅଟି ନିଜେ ତା ସାନଭାଇକୁ ନେଇ ଡାକ୍ତରଖାନା ଅଭିମୁଖେ ରିକ୍‌ସା ଚଢ଼ିଲା ବେଳେ ମୁଁ ବି ସାଇକେଲରେ ଚଢ଼ିଲି । ଯେପରି ଇଂରାଜୀରେ ନିୟମିତ ଫେଲ୍ ହେଉଥିବା ହରିହର ରାସ୍ତାଘାଟରେ ଝିଅମାନଙ୍କୁ ଦେଖିଲେ ବ୍ୟାକରଣ ଅଶୁଦ୍ଧି ସହ ଓଡ଼ିଆ ମିଶା ଇଂରାଜୀ ପେଲିଦିଏ, ସେହିପରି ମୁଁ ଡାକ୍ତରଖାନାରେ ପିଲାଟିର ହାତଭଙ୍ଗା ବିଷୟରେ ଅତ୍ୟଧିକ ଚଞ୍ଚଳ ହୋଇ ଡାକ୍ତରଙ୍କ ସହି ଇଂରାଜୀରେ କଥାବାର୍ତ୍ତା ହେବାକୁ ଲାଗିଲି । ବ୍ୟାଣ୍ଡେଜ ବନ୍ଧାରେ ନର୍ସମାନଙ୍କୁ ସାଂଘାତିକ ସାହାଯ୍ୟ କଲି । ଇଂଜେକ୍‌ସନ ଫୋଡ଼ିଲାବେଳେ ମୁଁ ଏପରିଭାବେ ମୁଖ କୁଞ୍ଚିତ କଲି ଯେପରିକି ମୋତେ ହିଁ ଇଞ୍ଜେକ୍‌ସନ ଫୋଡ଼ାଯାଉଛି । ଶେଷରେ ଅତ୍ୟଧିକ ସମବେଦନା ଜଣାଇ ବ୍ୟାଣ୍ଡେଜବନ୍ଧା ସାନଭାଇ ସହ ତାକୁ ରିକ୍‌ସାରେ ଚଢ଼ାଇ ଦେଇ ମୁଁ କୃତକୃତ୍ୟ ହୋଇ ରିକ୍‌ସା କଡ଼େ କଡ଼େ ସାଇକେଲ ଚଳାଇଲି । ଧୀରେ.ଧୀରେ ବଲ୍ ଉଦ୍ଦେଶ୍ୟରେ ଆଗେଇଯିବାକୁ ଇଚ୍ଛା କରି ପାଟି ଖୋଲିଲି :

—ତୁମ ନାଁ ?

—ପ୍ରୀତି ।

—ତୁମେ ପଢୁଛ ?

—ଦଶମ ଶ୍ରେଣୀ ।

ମୁଁ ଛେପ ଢୋକିଲି । ପ୍ରଶ୍ନର ଗାଡ଼ିଟାକୁ ଯେପରି ଉତ୍ତରର ଗାଡ଼ିଟା ହଠାତ୍ ଦୁଇଟି ଷ୍ଟେସନ ଅତିକ୍ରମ କରି କଥାର ପେଡ଼ିକୁ ବନ୍ଦ କରିଦେଲା ।

ତାପରେ ମୋର ଆଗ୍ରହର ପାରଦ ରେଖା ମନର ଥର୍ମୋମିଟରରେ ବିନ୍ଦୁ ପରେ ବିନ୍ଦୁ ଆଗକୁ ଡେଇଁ ଚାଲିଲା । ତା ସହ ଦେଖା ହେଲେ ପ୍ରଥମେ ତା ସାନଭାଇ 'କେମିତି ଅଛି' ବୋଲି ପଚାରି ମୋର କଥା କହିବାର ତାଲାକୁ ଫଟାଇବା ମାତ୍ରେ ସେ 'ଭଲ ଅଛି' ବୋଲି ଶୀଘ୍ର ଶେଷ କରି ମୋ ବାକ୍‌ସକୁ ବନ୍ଦ କରିଦେଇ ଚାଲିଯାଏ । ମୁଁ କେବଳ କିଛି ସମୟ ହତବାକ୍ ହୋଇ ତା ଚାଲିର ଛନ୍ଦ ଦେଖେ ।

ତାର ଇଚ୍ଛାକୃତ ସଂକ୍ଷେପଣ ଓ ମୋ ପ୍ରତି ତାର ଅନାଗ୍ରହ ଭାବ ମୋର ବର୍ଦ୍ଧିତ ଉତ୍ସୁକତାର ତଣ୍ଟି ଚିପିଦେଲା । ମୁଁ ଯେ କେହି ନୁହେଁ, କେବଳ ପଡ଼ୋଶୀ ଏବଂ ଅସମୟରେ ତାର ସାନ ଭାଇ ଭଉଣୀର ହାତଗୋଡ଼ ଭାଙ୍ଗିଗଲେ ଯେ କେବଳ ସାହାଯ୍ୟ

କରିବାର ଅଧିକାର ବ୍ୟତୀତ ଆଉ କିଛି, ଭାବିବା ବୃଥା । ଏହା ଜାଣିସାରିଲା ପରେ ମୁଁ କେମିତି ଉଦାସ ହୋଇପଡ଼ିଲି । ଖାଇସାରି ଶୋଇଲା ବେଳେ ମୋର ମନର ନଦୀରେ ଭାବପ୍ରବଣତାର ଜୁଆର ଉଠିଲା । କ୍ରମେ ତା ନାଁରେ କବିତା ଲେଖିବା ଆରମ୍ଭ କଲି । ସବୁଠୁଁ ଭଲ କବିତାକୁ କଲେଜ ମେଗାଜିନରେ ଛପାଇ ତା ସାନଭାଇକୁ ଦିନେ ଡାକି ପଢ଼ିବାକୁ ଦେଲି । ଯେତେବେଳେ ତା ସାନଭାଇ ମୋତେ ମେଗାଜିନଟା ଫେରାଇଲା ସେତେବେଳେ ଆଉ କେହି ପଢ଼ିଛି ବୋଲି ପ୍ରଶ୍ନ କରି ଜାଣିଲି ଲକ୍ଷ୍ୟ ମୋର ଅବ୍ୟର୍ଥ । କିନ୍ତୁ ମୋର ବିଶେଷ ପ୍ରଶ୍ନର ଉତ୍ତରରେ ଶୁଣିଲି ସେ କୁଆଡ଼େ ଜମା କବିତା ପଢ଼େନି, ଗଳ୍ପହିଁ ପଢ଼େ । ସେତେବେଳେ ମୋତେ ବଡ଼ ପାଟି କରି କାନ୍ଦିବାକୁ ଇଚ୍ଛା ହେଉଥିଲା । ଏକପ୍ରକାର ଜୋର୍ କରି ତା ସାନଭାଇ ହାତରୁ ମେଗାଜିନଟା ଛଡ଼େଇ ନେଇ ଗୋଟିଏ ଗାଳ୍ପିକ ସାଜିବି ବୋଲି ସେଦିନ ମନେ ମନେ ପ୍ରତିଜ୍ଞା କଲି । ସେଦିନରୁ ମୁଁ ଆଉ କବିତା ଲେଖିନାହିଁ ।

ସେଦିନ ଏକାନ୍ତ ଉଦାସ ମନରେ ଘରୁ ବାହାରି ଗଳିରେ ଚାଲୁଚାଲୁ ଦେଖିଲି ସେଇ ଟୋକାଟା, ମାନେ ସେଇ ଅମୁକ ନମ୍ବର ଖେଳାଳି ତା ଝର୍କାକୁ ଏମିତି ତନ୍ମୟ ହୋଇ ଚାହିଁ ଚାହିଁ ସାଇକେଲ ଚଳାଇଛି ଯେ ଠିକ୍ ମୋତେ ଧକ୍କା ଦେବା ଉପରେ । ମୁଁ ବିରକ୍ତ ହୋଇ ପାଟି କଲି :

—କିହୋ, ଟିକିଏ ମଣିଷ ଦେଖି ସାଇକେଲ ଚଳାଅ । ସେ ନିର୍ବିକାର ଭାବେ ମୁହଁରେ ହସ ଖେଳାଇ କହିଲା :

—ଏଭଳି ମଣିଷକୁ ଅନଉଁ ଅନଉଁ ଆପଣଙ୍କୁ ସିନା ଧକ୍କା ଦେଇଥାଆନ୍ତି । ଆଚ୍ଛା ମାଫି ।

ମୁଁ ଏକାଥରକେ ଅବାକ୍ । ଏତେ ଆସ୍ପର୍ଦ୍ଧା ଏ ଟୋକାଟାର ! ସାଇ ପିଲାଙ୍କୁ ପଚାରି ବୁଝିଲି ଟୋକାଟା କୁଆଡ଼େ ଆଗରୁ ପ୍ରୀତିକୁ ଟିଉସନ କରୁଥିଲା । ଥରେ ପାଖରେ ବସିଛି ତ ଭାବୁଛି ସେ ତାର ନିଜର ବିବି ହୋଇଗଲାଣି ।

ମୁଁ ସେ ଟୋକାଟାକୁ ଚିହ୍ନିଯାଇଛି । କଲେଜରେ ମୋରି ସାଥିରେ ପଢ଼େ ସେ । ଅବଶ୍ୟ ମୁଁ ବିଜ୍ଞାନ ସେ କଳା । ନାମ ଅଜୟ । ପତଳା ଲମ୍ବା ଚେହେରା, ଅପେକ୍ଷାକୃତ ଲମ୍ବା ନାକ, ଆଖିରେ ବେଶ୍ ଉଦାସ ଭାବ, ଲମ୍ବା କଲି, ନଳୀ ପେଣ୍ଟ, ଚେକ୍ ସାର୍ଟ । ତା କଥା କ୍ରମେ ଭୁଲିଯାଉଥିଲି କିନ୍ତୁ ସେଦିନ ସଞ୍ଜରେ ପୁଣି ତାକୁ ସେ ବିଶେଷ ପରିବେଶରେ ଦେଖି ସାଂଘାତିକ ରାଗିଗଲି, ଯେତେବେଳେ ସେ କଲେଜର ଦୁଇ ଦୁଇଟି ଗଳ୍ପ ପ୍ରତିଯୋଗିତାରେ ପ୍ରଥମ ପୁରସ୍କାର ଗ୍ରହଣ କରୁଥିଲା ଅସଂଖ୍ୟ ହାତ ତାଳି ଓ ଉଚ୍ଛ୍ୱସିତ ପ୍ରଶଂସା ମଧ୍ୟରେ । ମୁଁ ସେ ଗଳ୍ପ ଲେଖକ ପାଇଁ ଦଣ୍ଡର ବ୍ୟବସ୍ଥା କରି ଆମ ସାଇ ଟୋକାଙ୍କ ସଙ୍ଗରେ ମେଣ୍ଟ କଲି । ଯୁକ୍ତି କଲି ଏପଟେ ସଞ୍ଜରେ ସେ ଆଉଥରେ

ଚକ୍କର ମାରିଲେ ତାକୁ ସାବଧାନ କରାଇ ଦିଆଯିବ । ଦରକାର ହେଲେ ତାର ଧଳା କୋଲଗେଟିଆ ବତିଶରୁ ଗୋଟେ ଯୋଡ଼େ ଖସେଇ ମିଉଜିୟକୁ ପଠାଇ ଦିଆଯିବ ।

ତାର ତିନିଦିନ ପରେ ସଞ୍ଜରେ ଯେତେବେଳେ ସେ ଗଳିମୁଣ୍ଡରେ ଦେଖା ଦେଲା, ମୁଁ ସାଇଟୋକାକୁ ନେଇ ତା ସାଇକେଲ କେରିଅର୍‌ରେ ହାତ ପକେଇ ପଛରୁ ଘୋଷାଡ଼ି ଦେଲି ଏବଂ ତା ଉଦ୍ଦେଶ୍ୟରେ ପୂର୍ବ ପ୍ରସ୍ତୁତ ସାବଧାନ ବାଣୀ ଉଦ୍‌ଗାର କଲି । ସେ ତାର ପିତଳ ରଙ୍ଗର ଓଠରେ ହସି ଖେଳେଇ କହିଲା—ଦୁଃଖିତ । ମୁଁ ଆଜିଠାରୁ ପ୍ରୀତିକୁ ଟିଉସନ କରୁଛି । ତେଣୁ ପ୍ରତିଦିନ ଅନ୍ତତଃ ଦୁଇଥର ଲେଖାଏଁ ଏ ଗଳି ଅତିକ୍ରମ କରିବି । ତେଣୁ ଆପଣମାନଙ୍କ କଥା ରଖି ନ ପାରିବା ହେତୁ ମାଫି... ।

ମୋର ଦୁଃଖ, କ୍ଷୋଭ, ରାଗ, ଈର୍ଷା ସବୁ ମିଶି ଏକାକାର ହୋଇଗଲା । ମୁଁ ଦେଖିଲି ବଲ୍‌ଟା କ୍ରମେ ସେଇ ଅମୁକ ନମ୍ବର ଖେଳାଳି ଆଡ଼କୁ ମୁହଁ କରି ଗଡ଼ି ଚାଲିଛି । ସେଦିନ ମୁଁ ନ ଖାଇ ଝର୍କା ବନ୍ଦ କରି ସଞ୍ଜବେଳୁ ଶୋଇପଡ଼ିଲି । ସେଦିନଠାରୁ ପ୍ରୀତିକୁ ଦେଖିଲେ ମୋତେ ରାଗ ଆସୁଥିଲା । ଆଉ ଗଳ୍ପ ଲେଖକ ଶ୍ରୀମାନ୍ ଅଜୟକୁ ଦେଖିଲେ ମୋ ପାଟିରେ ଛେପ ଜକେଇ ଆସୁଥିଲା ।

ମୁଁ ଗୋଟିଏ ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରୁଥିଲି । କେଉଁଦିନ ଗାଳ୍ପିକ ଅଜୟ ସାହେବ ପ୍ରୀତି ଦ୍ୱାରା ତିରସ୍କୃତ ହୋଇ ତାଙ୍କ ସାନ୍ନିଧିଲାଭରୁ ବଞ୍ଚିତ ହେବେ ଏବଂ ସବୁଦିନ ପାଇଁ ଏ ଗଳିରୁ ନିର୍ବାସିତ ହୋଇଯିବେ । କାରଣ ପ୍ରୀତି ଘରେ ଚାରି ପାଞ୍ଚଦିନ ମଧ୍ୟରେ ଟିଉସନ ମାଷ୍ଟର ବଦଳି ହେବାର ମୁଁ ଲକ୍ଷ୍ୟ କରୁଥିଲି; କୁଆଡ଼େ ପ୍ରୀତିକୁ ପଢ଼େଇ ପାରିବାରେ ଅନୁପଯୁକ୍ତ ବୋଲି ସାର୍ଟିଫିକେଟ ସହ । ତେଣୁ ମୁଁ ଆଶା କରୁଥିଲି ଏ ଟୋକା ବି ଖୁବ୍ ଅଳ୍ପ ଦିନ ପରେ ଅଳ୍ପ ପରିଶ୍ରମରେ ସେମିତି ଏକ ସାର୍ଟିଫିକେଟ ଝୁଲାଇ ଆଖିକୁ ବେଶୀ ଉଦାସ କରି ଲମ୍ବା ନାକରେ କୋହ ସମ୍ଭାଳି ସବୁଦିନ ପାଇଁ ଏଠାରୁ ବିଦା ହୋଇଯିବ ।

କିନ୍ତୁ ଗୋଟେ ସପ୍ତାହ ଅଜୟ ପ୍ରତିଦିନ ଆସିଲା । ମୁଁ ଆତଙ୍କିତ ହୋଇ ଉଠିଲି । ଚଣ୍ଡୀମନ୍ଦିରରେ ଭୋଗ ମନାସିଲି । କିନ୍ତୁ କ୍ରମେ ଜାଣିଲି ଯେପରି ସବୁକୁ ଅତିକ୍ରମ କରି ବଲ୍‌ଟା ଦ୍ରୁତ ଗତିରେ ଅଜୟର ପାଦ ପାଖକୁ ମାଡ଼ିଯାଉଛି ।

ଗୋଟେ ମାସ ପରେ ବି ଅଜୟର ରୁଟିନ ବଦଳିଲା ନାହିଁ । ମୁଁ ସତରେ ଖୁବ୍ ଭାଙ୍ଗିପଡ଼ିଲି । ସାଇ ଟୋକାମାନଙ୍କୁ ଲଗାଇ ଅନେକ ମନ୍ତବ୍ୟ ପେଷିଲି । ଶେଷରେ ନୂଆ ପ୍ଲାନ କରି ଅଜୟର ସାଇକେଲ ପଛରୁ ଧକ୍‌କା ଦେଲି । କିନ୍ତୁ ନିର୍ବିକାର ଅଜୟର ସେଇ ଗୋଟିଏ ଶବ୍ଦ— ଆଚ୍ଛା ମାଫି ।

ଦିନେ ରାସ୍ତାରେ ମୁଁ ନିଜେ ଅଜୟ ଉଦ୍ଦେଶ୍ୟରେ ଗୋଟିଏ ଅସ୍ତ୍ର ଛାଡ଼ିଲି :

—କୁଆଡ଼େ ଚାଲିଲ ହେ ଗାଳ୍ପିକ ! ପ୍ଲଟ ପାଇଁ ରାଣୀହଂସପୁରକୁ ?

ସେ ହସି ହସି ଉତ୍ତର ଦେଲା—ତୁମ ଭଉଣୀ ଘରକୁ, ଅବଶ୍ୟ ଗୋଟିଏ ଇସ୍‌କ ପାଇଁ । ମନେ ହେଲା ସେ ରାଗରେ ମୋତେ ଶଳା ନକହି ଆଦରରେ ସେମିତି କିଛି କହିଲା ।

ବୈଚିତ୍ର୍ୟହୀନ ଦିନଗୁଡ଼ା ଚାଲିଥିଲା, କିନ୍ତୁ ସେ ରାତିରେ ମୁଁ ଝର୍କା ପାଖରେ ସାଙ୍ଘାତିକ ଆଶ୍ଚର୍ଯ୍ୟ ହୋଇଗଲି । ପ୍ରୀତିର ସବୁ ରସ ବିଭାବକୁ ମୁଁ ଦେଖିଥିଲେ ମଧ ସେଇ ସାଧାରଣ ବିଭାବରେ କେବେ ମୋର ଆଖି ପଡ଼ି ନଥିଲା । ମୋର ଧାରଣା ହୋଇଥିଲା ଝିଅଟିର ବୋଧହୁଏ ଲୁହ-ଗ୍ରନ୍ଥି ନାହିଁ । ଜୀବନରେ ପ୍ରଥମଥର ପାଇଁ ଦେଖିଲି, ଅଜୟ ସାମ୍ନାରେ ବସି ପ୍ରୀତି କାନ୍ଦୁଛି । ସତରେ କାନ୍ଦିଲେ ଝିଅମାନେ ଖୁବ୍ ସୁନ୍ଦର ଦେଖାଯାଆନ୍ତି, ପୁଣି ପ୍ରୀତି ପରି ଝିଅ !

ଅଜୟ କିନ୍ତୁ ନୀରବ । ଧୀରେ ବସି ଖାତାରେ ଯେପରି କଣ ଗୋଟେ ଆଙ୍କୁଥିଲା । କେବଳ କିଛି ସମୟ ପରେ ହାତ ପାପୁଲିରେ ପ୍ରୀତିର ଆଖି ପୋଛିଦେଲା । ଆଶ୍ଚର୍ଯ୍ୟ ! ପ୍ରୀତି ପରି ଝିଅ କିଛି କହିଲା ନାହିଁ । ସେଦିନ ଅଜୟ ଅନୁଚ୍ଚ ସ୍ୱରରେ ତାକୁ କଣ ସବୁ କହିଲା । ପ୍ରୀତି ପୁଣି ହସିଲା, ଅଜୟ ବି । ସେ ଘରେ ଚେୟାର, ଟେବୁଲ, ଝରକା, ବହି, ଆଲୁଅ ସମସ୍ତେ ହସି ଉଠିଲେ । ମୁଁ କିନ୍ତୁ ଅଜୟ ଉପରେ ଏତେ ରାଗିଗଲି ଯେପରି ସେହି ମୁହୂର୍ତ୍ତରେ ତାକୁ ପାଖରେ ପାଇଥିଲେ ଖୁନ୍ କରି ପକାଇଥାନ୍ତି ।

ମୁଁ ଦିନେ ପଢ଼ିବି ବୋଲି ପ୍ରୀତିର ସାନଭାଇ ହାତରେ କିଛି ପତ୍ରିକା ମଗାଇଲି । ପ୍ରୀତି ନିଃସଙ୍କୋଚରେ ପଠାଇଲା । ମୁଁ ସେ ପତ୍ରିକାଗୁଡ଼ାକର ସୂଚୀପତ୍ର ଦେଖି ସଙ୍ଗେ ସଙ୍ଗେ ଫେରାଇ ଦେଇଥିଲି, କାରଣ ସବୁ ପତ୍ରିକାରେ ହିଁ ଅଜୟର ଗଳ୍ପ ବାହାରିଥିଲା । ସେଦିନରୁ ମୁଁ ପ୍ରତିଠାରୁ କୌଣସି ବହି କିମ୍ବା ପତ୍ରିକା ମଗେଇ ନାହିଁ ।

ଦିନେ ଦେଖିଲି ଅଜୟ ତାଙ୍କ ଘରକୁ ଆସିଥିଲେ ମଧ ପ୍ରୀତିର ପଢ଼ାଘର ଅନ୍ଧକାର । କାରଣ ଜାଣିବାକୁ ପ୍ରୀତିର ଶୋଇବା ଘରକୁ ଚାହିଁ ଦେଖିଲି, ପ୍ରୀତି ଶୋଇଛି । ପାଖ ଚୌକୀରେ ଅଜୟ । ବୋଧହୁଏ ପ୍ରୀତିକୁ ଜର । ତାପରେ ଯେତେବେଳେ ସେତେବେଳେ ଅଜୟ ପ୍ରୀତିର ଶୋଇବା ଘରକୁ ସିଧା ଆସି ପଶିଯାଉଥିଲା । କେତେବେଳେ ପ୍ରୀତିର ହାତ ଧରି ଉତ୍ତାପ ପରୀକ୍ଷା କରେ ପୁଣି କେତେବେଳେ ବେକ ତଳର ଉତ୍ତାପ ଦେଖେ । ପ୍ରୀତି ଆଦୌ କିଛି କହେନି । କେତେବେଳେ ଅଜୟ ଆସେ, ସାଥିରେ ଡାକ୍ତର ଔଷଧ, ପୁଣି କେତେବେଳେ କମଳା, ବେଦନା । ବେଦନା ମୋର କିନ୍ତୁ ସାଙ୍ଘାତିକ ବଢ଼ିଚାଲିଥିଲା ।

ବେଶ୍ କିଛିଦିନ ପରେ ସୁସ୍ଥ ହେଲା ପ୍ରୀତି । ଦିନେ ଦେଖିଲି ଅଜୟକୁ ସାଥିରେ ନେଇ କୁଆଡ଼େ ବୁଲି ଗଲା, ଅବଶ୍ୟ ସାଥିରେ ତାର ସାନଭାଇ । ମୁଁ ବି ସାଇକେଲ ଛୁଟାଇଲି । ଦେଖିଲି, ତିନିଜଣଯାକ ମନ୍ଦିରକୁ ପ୍ରବେଶ କଲେ । ମୋର ଭୟ ହେଲା ହୁଏତ ପ୍ରୀତି ଏଇ ମନ୍ଦିରରେ ସିନ୍ଦୂର ଲଗାଇ ଘରକୁ ଫେରିବ । କିନ୍ତୁ ସେମାନେ କାଳି

ମନ୍ଦିରର ସେ ଛାୟାଛନ୍ନ ସିମେଣ୍ଟ ବେଞ୍ଚରେ ଅନେକ ସମୟ ବସିଲେ । ମୁଁ ମଧ୍ୟ ଅନ୍ଧକାରରେ ଟିକିଏ ଦୂରକୁ ବସି ତାଙ୍କ ଡାଇଲଗ୍ ହଜମ କରିବାର ଚେଷ୍ଟା କଲି ।

—ପ୍ରୀତି !

—ଉଁ ।

—ଜାଗାଟା କେମିତି ଲାଗୁଛି ?

—ନିହାତି ମନ୍ଦ ନୁହେଁ ।

—ସବୁଦିନେ ଆସିବ ?

—ନାଇଁ, ବାପା ଖରାପ ଭାବିବେ ।

—ଆଜି କାହିଁ ଖରାପ ଭାବିବେନି ? ·

—ଏ ତ ସିନେମା ଯିବା କଥା ନୁହେଁ । ମା'ଙ୍କର କିନ୍ତୁ ଅଗାଧ ବିଶ୍ୱାସ ।

—କାଲି ସେ ବିଶ୍ୱାସ ନଥିବ ?

—ସବୁଦିନେ ହେଲେ ଖରାପ; ସନ୍ଦେହ କରିବେ ।

—ତା ହେଲେ ଏମିତି ମଝିରେ ମଝିରେ... ?

—ଦେଖାଯିବ ।

— 'ମୁଁ ବି ଦିନେ ଦେଖିବି ।' କଥାଟା ମନେ ମନେ ଉଚ୍ଚାରଣ କରି ଘରକୁ ଫେରିଲି ।

ତାପରେ ଆସିଲା ପୂର୍ଣ୍ଣିମା ରାତି । ଝର୍କା ଦେଇ ସବୁଦିନ ପରି ପ୍ରୀତିର ପଢ଼ା ଘରକୁ ଉଙ୍କିମାରି ଦେଖିଲି ପ୍ରୀତି ମୁହଁ ତଳକୁ କରି ହସୁଥିଲା । ତା ପରେ ଉଠି ସେପଟ କବାଟଟା ବନ୍ଦ କରିଦେଇ ଆସିଲା । ତା'ପରେ ମୋ ଆଡ଼େ ଖୋଲାଥିବା ଝର୍କାଟା ସଶବ୍ଦେ ବନ୍ଦ କଲା । ମୁଁ ରାଗରେ ଅଥୟ ହୋଇପଡ଼ିଲି । ମୁଁ ଯେ ସେମାନଙ୍କର ଏସବୁ କଦର୍ଯ୍ୟ କାମ ଜାଣିପାରୁଛି ଜଣାଇଦେବା ପାଇଁ ଖୁବ୍ ଜୋରରେ କାଶିଲି । ବଡ଼ ପାଟିରେ ମୋ ଚାକର ଟୋକାକୁ ଡାକିଲି ଓ ଧମକେଇଲି । ଶେଷଥର ଆଉ ଉପାୟ ନ ପାଇ ମୋ ଝର୍କାଟାକୁ ଖୁବ୍ ଜୋରରେ ବନ୍ଦ କଲି ପୁଣି ଖୋଲିଲି । କିନ୍ତୁ ସବୁ ବୃଥା । ପ୍ରାୟ ପାଞ୍ଚ ମିନିଟ ପରେ ଝର୍କା ଖୋଲିଲା, ଦେଖିଲି ପ୍ରୀତିର ମୁହଁରେ ଅହେତୁକ ପ୍ରଶାନ୍ତି; ଆଖିରେ ଲୁହ । ସେ ଲୁହଟା ବହିଯାଇ ନଥିଲା, ଠିକ୍ ବହିବା ଉପରେ ହୋଇଥିଲା । ଅଜୟ କିନ୍ତୁ ସାଙ୍ଘାତିକ ଉଦାସ । ଦୁହିଁଙ୍କର ବେଶବାସ ଠିକ୍ ସେମିତି ଥିଲା । କେବଳ ଅଜୟର ହାତରେ ଗୋଟିଏ ରାକ୍ଷୀ ବନ୍ଧା ହୋଇଥିଲା । ଦୁହିଁଙ୍କର ଏକ ସଂପୂର୍ଣ୍ଣ ନୂତନ ଚାଲ୍ ଆଉ ଆସର୍ଦ୍ଧା ଘୋଡ଼ାଇବାର ବାଟ ଜାଣି ଓଠ ଉପରେ ଦାନ୍ତ ଚପେଇଲି ।

ତା' ପରେ ପ୍ରତ୍ୟହ ଯେଉଁସବୁ ଦୃଶ୍ୟ ହେବ ତା ଦେଖି ମୁଁ ସହ୍ୟ କରିପାରିବିନି ଜାଣି ମୋ ଝର୍କା କ୍ୱଚିତ୍ ରାତିରେ ଖୋଲୁଥିଲି । ତଥାପି ଦିନେ ରାତି ସାଢ଼େ ନଅ ପରେ

ଝର୍କା ଖୋଲି ଦେଖିଲି ଅଜୟ ସେତେବେଳଯାଏଁ ତା ଚେୟାର ଛାଡ଼ି ଉଠିନି । ଠିକ୍ ଉଠିବ ବୋଲି ଏକ ଗମ୍ଭୀର ଆଉ ବିଦାୟୀ ସ୍ୱରରେ ଯେପରି କଣ ସବୁ କହୁଛି । ଆଠ ଦଶ ମିନିଟ ପରେ ଅଜୟ ଛିଡ଼ାହେଲା । ପ୍ରୀତି ବି ଉଠିଲା । ଫ୍ରକ ସଜାଡ଼ିଲା । ଅଜୟର ହାତରେ ହାତ ରଖିଲା । ଆଉ ଅଜୟ ପ୍ରୀତିର ଗାଲରେ ଚୁମା ଦେଲା; ଯେପରି ସେ ଏକ ଗୁରୁତର ଅପରାଧ କରିନାହିଁ । ତାପରେ ଘରୁ ନିଷ୍କ୍ରାନ୍ତ ହୋଇଗଲା । ମୁଁ ସେମାନଙ୍କର କ୍ରମବର୍ଦ୍ଧିତ ଆସ୍ପର୍ଦ୍ଧାକୁ ସହ୍ୟ ନ କରି ଇତିମଧ୍ୟରେ କିଛି ଗୋଟେ କରିବି ବୋଲି ପ୍ରସ୍ତୁତ ହେଲି ।

ସବୁଦିନେ ସାଢ଼େ ନଅରେ ସେଇ ଗୋଟିଏ ଦୃଶ୍ୟ ଅନେକ ଦିନ ଦେଖିଲା ପରେ ଦିନେ ଦୃଶ୍ୟପଟର କିଞ୍ଚିତ୍ ପରିବର୍ତ୍ତନ ହୋଇଗଲା । ସେଦିନ ସେଇ ପୂର୍ବ କଥାର ପୁନରାବୃତ୍ତି କରିବ ବୋଲି ଅଜୟ ପ୍ରୀତିର ଖୁବ୍ ପାଖକୁ ପାଖେଇଗଲା ଏବଂ ଠିକ୍ ଓଠ ପାଖରେ ବନ୍ଦ ହୋଇ ଅନୁଚ୍ଚ ସ୍ୱରରେ କଣ ସବୁ କହିଲା । ପ୍ରୀତି ଅଳ୍ପ ହସି ଅସମ୍ମତିସୂଚକ ମୁଣ୍ଡ ହଲାଇଲା । ଅଜୟ ନୀରବରେ ବାହାରି ଯାଉଥିଲା । କିନ୍ତୁ ପ୍ରୀତି ପୁଣି ଡାକିଲା; ଅଜୟ ଫେରିଲା । ପ୍ରୀତି ନିଜେ ହିଁ ଅଜୟର ଓଠରେ ଓଠ ଲଗାଇଲା । ଅଜୟ ପ୍ରୀତିକୁ ଖୁବ୍ ଜୋର୍‌ରେ ନିଜ ଛାତିକୁ ଟାଣି ଆଣିଲା । ପ୍ରୀତି ଆଖିରେ କିନ୍ତୁ ଲୁହ । ମୁଁ ଜୋର୍‌ରେ ଝର୍କା ବନ୍ଦ କଲି ଏବଂ ଦେଖିଲି ପଡ଼ିଆରେ ସେଇ ଅମୁକ ନମ୍ବର ଖେଳାଳି ଅଜୟ ସ୍କୋର କରିଦେଲା । ମୁଁ ରେଫ୍‌ରି ସାଜି ଯେତେ ହୁଇସିଲ ଫୁଙ୍କିଲେ ମଧ୍ୟ ବଲ୍‌ଟା ଦ୍ରୁତ ଗତିରେ ଗୋଲ ପୋଷ୍ଟ ଭିତରକୁ ଗଡ଼ିଚାଲିଲା ।

ଅଜୟ ନ ଆସିଲେ ପ୍ରୀତି ବିବ୍ରତ ହୁଏ । ମୁଁ ଲକ୍ଷ୍ୟ କରେ । ସେ ଅନେକ ସମୟ ବସି ଭାବେ । ଥରେ ଥରେ କାରଣ ନଥାଇ ପଢ଼ା ଟେବୁଲରେ କାନ୍ଦେ । ପ୍ରୀତି ଅଜୟକୁ ଭଲପାଏ ଜାଣି ମଧ୍ୟ ମୁଁ ଅଜୟକୁ ଭଲ ପାଇବା ଆରମ୍ଭ କରିଦେଲି । ଅଜୟ ସାଙ୍ଗରେ ତା ଟିଉସନ ପରେ ରାସ୍ତାରେ ଛିଡ଼ା ହୋଇ ସାହିତ୍ୟ ଫାହିତ୍ୟ ବିଷୟ ଆଲୋଚନା କରିବାକୁ କ୍ରମେ ଆରମ୍ଭ କରିଦେଲି । ଯେଉଁ ପତ୍ରପତ୍ରିକାରେ ଅଜୟର ଲେଖା ପ୍ରକାଶ ପାଉଥିଲା ମୋ ନିଜ ବାପାଙ୍କ ପଇସା ଖର୍ଚ୍ଚ କରି ତାହା କିଣି ପ୍ରୀତିର ପଢ଼ିବା ଉଦ୍ଦେଶ୍ୟରେ ପଠାଇବାକୁ ଲାଗିଲି । ତାସହ କେବେ କଥା କହିବାର ସୁଯୋଗ ଆସିଲେ କେବଳ ଅଜୟର ପ୍ରଶଂସା ହିଁ କରିବାକୁ ଲାଗିଲି । ଏଥିରେ ମୁଁ ବେଶ୍ ଦ୍ରୁତ ଗତିରେ ଉନ୍ନତି କରିବାରେ ଲାଗିଲି । ପ୍ରୀତି ସହ ସମ୍ପର୍କ ତଥା ଅଜୟ ସହ ମୋର ବନ୍ଧୁତ୍ୱ କ୍ରମେ ଜମି ଉଠିଲା । ପ୍ରୀତିର ଖୁବ୍ ପାଖକୁ କ୍ରମେ ମୁଁ ପାଖେଇଗଲି ।

ବେଶ୍ ଅନେକ ଦିନ ପରେ ଦେଖିଲି ପ୍ରୀତି ଖୁବ୍ ଉତ୍‌ଫୁଲ୍ଲ ଦେଖାଯାଉଛି । ଆଉ ଅଜୟ ବି । ଦିନେ ପ୍ରୀତି ନିଜେ ମୋ ପାଖକୁ ଆସି କହିଲା– ଆପଣଙ୍କୁ ଗୋଟିଏ କାମ କରିବାକୁ ହେବ । ଆପଣ ସେ ଦିନକୁ ଗୋଟିଏ ଭଲ ମାଇକ୍ ସେଟ୍ ଠିକ୍ କରିଦେବେ ।

ମୁଁ ଭୟରେ କଳାକାଠ ପଡ଼ିଗଲି । ପ୍ରୀତି ଆଉ ଅଜୟ ତାହେଲେ ଗୋଟିଏ ରାସ୍ତାରେ ହାତ ଧରି ଚାଲିବାର ବନ୍ଦୋବସ୍ତ କରିନେଇ ସାରିଲେଣି । କିନ୍ତୁ...

—ଆପଣ କିଛି ରଜନୀଗନ୍ଧା ଫୁଲ ସଂଗ୍ରହ କରିପାରିବେ ?

ମୋ ପାଟିରେ ଭାଷା ନଥିଲା ।

—ଆରେ ଆପଣ ଏମିତି ବିବର୍ଣ୍ଣ ହୋଇଗଲେ କାହିଁକି ? ଶୁକ୍ରବାର ପରା ବାହାଘର ।

—କାହାର ? କେଉଁ ପ୍ରେତଲୋକରୁ ଶବ୍ଦ ଆସିଲା ଯେପରି ।

—ଆରେ, ଆପଣ ଜାଣିନାହାନ୍ତି ! ସାର୍‌ଙ୍କର ! ମୁଁ ସେଇଠି ଛିଡ଼ାହୋଇ ମୂର୍ଚ୍ଛା ଗଲି । ସେଦିନ ରାତିରେ ମୁଁ ଚାର୍‌ମିନାର୍ ଟାଣିଛି ଆଉ କବିତା ଲେଖିଛି ।

ସକାଳେ ପୁଣି ପ୍ରୀତି ସଜବାଜ ହୋଇ ସେଇ ରଜନୀଗନ୍ଧାର ହସ ।

—ଆପଣ ମୋତେ ଗୋଟିଏ କବିତା ଲେଖିଦେବେ ?

—କଣ ପାଇଁ ?

—ମୋ ଭାଉଜଙ୍କୁ ପ୍ରୀତି ଉପହାର ଦେବାପାଇଁ ।

—କେଉଁ ଭାଉଜ ?

—କାହିଁକି ? ସାର୍‌ଙ୍କ ସ୍ତ୍ରୀ !

—ମାନେ ?

—କଣ ମାନେ ?

—ଭାଇ କିଏ ?

—କାହିଁକି, ଅଜୟ ସାର୍ ।

—ସେ ପରା ବାହା ହେଉଛନ୍ତି ?

—ହଁ... । କଣ ହେଲା ? ଓହୋ ତାଙ୍କ ପ୍ରେମିକାଙ୍କୁ ପରା ସେ ବାହା ହେଉଛନ୍ତି ।

—ବାଜେ କଥା !

—ଆରେ ! ଆପଣ କହୁଛନ୍ତି କଣ ?

—ତୁମେ ତାଙ୍କୁ ଭଲପାଉଥିଲ ?

—ହଁ !

—ସେ ?

—ହଁ !

—ତାହେଲେ ?

—କାହାରିକୁ ଭଲପାଇବା କଣ ଅପରାଧ ?

—କିନ୍ତୁ ମୁଁ ଦେଖିଛି ତୁମେ ତାଙ୍କ ଓଠରେ...

—ହଁ ଦେଇ ତ କଣ ହେଲା ?

—କିପରି ?

—ସେ ଓ ମୁଁ ଦୁହେଁ ନିର୍ବିକାର ।

—ମାନେ ?

—ମାନେ...

ହଠାତ୍ ରିକ୍‌ସାରେ ଆସି ପହଞ୍ଚିଲା ଅଜୟ । ମୋତେ ଛାଡ଼ି ମୋ କଥା ଅସମାପ୍ତ ରଖି ତା'ଆଡ଼େ ଧାଇଁଗଲା ପ୍ରୀତି ।

ରିକ୍‌ସାରେ ଅଜୟ ପାଖରେ ବସି କଣ ସବୁ ଚୁପ୍ ଚୁପ୍ କହିଲା ।

ତାପରେ ଅଜୟ ରିକ୍‌ସାବାଲାକୁ କହିଲା—ଟ୍ରେନ୍ ଟାଇମ ହୋଇଗଲାଣି, ଜଲ୍‌ଦି ଷ୍ଟେସନ ।

ତାପରେ ରିକ୍‌ସାର ଚକ ବୁଲିଲା ଏବଂ ସେ ଦୁହିଁଙ୍କୁ ନେଇ ଗଳି ବାଙ୍କରେ ଅଦୃଶ୍ୟ ହୋଇଗଲା ।

ମୁଁ ଦେଖିଲି ପଡ଼ିଆରେ ବଲଟା ନାହିଁ । ସବୁ ଖେଳାଳି ଆକାଶକୁ ଅନେଇଛନ୍ତି । ଆଉ ସେଇ ଅମୁକ ନମ୍ବର ଖେଳାଳି ଅନେକଙ୍କୁ ଟପେଇ ବଲଟାକୁ ଜାଲ ଭିତରେ ଛନ୍ଦାଇ ଦେଇଛି ।

**ଉପସଂହାର :**

ମୋ କଥା ଆଉ କାହିଁକି ଭାବୁଛନ୍ତି ? ମୁଁ ତ ଦର୍ଶକ ଆଉ ଲେଖକ । ଖେଳରେ ଅନେକ ସମୟ ଖେଳିଛି, ରେଫ୍‌ରି ସାଜିଛି, ଶେଷରେ ବାଧ ହୋଇ ଲେଖିଛି । ଅବଶ୍ୟ ସେଦିନଠାରୁ ମୁଁ ଆଉ କବିତା ଲେଖି ନାହିଁ । ଗଳ୍ପ ଉପରେ ହାତ ପକେଇଛି । ଆଗରୁ ଯେଉଁ ଗଳ୍ପ ଲେଖୁଥିଲି ସେଗୁଡ଼ିକ କେବଳ ପ୍ରୀତି ପାଇଁ । ଏବେ ଆଉ କ'ଣ ଦର୍କାର ? ଏବେ ମୋରି ପାଇଁ ମୁଁ ନିଜେ ଲେଖୁଛି ।

(କନ୍‌ହେଇନାମା)



# ତାଙ୍କ ଠିକଣା

ମୁଁ ଏଠାରେ ଯାହାଙ୍କ କଥା କହୁଛି ତାଙ୍କୁ ଜୀବନରେ କେବେ ଦେଖି ନାହିଁ । ତଥାପି ଯେପରି ଅନେକ ଥର ତାଙ୍କ ସହ ମୋର ସାକ୍ଷାତ ହୋଇଛି ।

ମନେକର ମୁଁ ଈଶ୍ୱର ବିଶ୍ୱାସ କରେନା । ମୁଁ କିଛି ଗୋଟାଏ କିଛି ବିଶ୍ୱାସ କରେଁ, କାହାରିକୁ ଗୋଟେ ସ୍ମରଣ କରେଁ ।

ମନେକର ଖୁବ୍ ଅନ୍ଧକାର ରାତି, ମୁଁ ଘରେ ଏକା, ସେଦିନ ହୁଏତ ଚିଠି ପାଇଲି ମୋ ପ୍ରେମିକାର ବାହାଘର । ମୁଁ କେମିତି ବଞ୍ଚିବି ? ମନେକର ମୁଁ ଖୁବ୍ କାନ୍ଦିଲି । ଅନ୍ଧକାରକୁ କେତେ ବିଳାପ ବାଣ୍ଟିଲି । ଶେଷରେ ମୁଁ ତାଙ୍କୁ ସ୍ମରଣ କଲି ଓ ଧ୍ୟାନ କଲି । ସେ ଆସି ଛିଡ଼ାହେଲେ । ତାଙ୍କ ଆଖିରେ ଏକ ନିମଜ୍ଜନତାର ଭାବ–ଯେଉଁ ଭାବ ଦିନେ ଆମ କାଳିଗାଈଠାରେ ଦେଖିଥିଲି ତା ବାଛୁରୀକୁ କ୍ଷୀର ପିଆଉଥିବା ବେଳେ । ମୋର କୋହ ବଢ଼ିଗଲା । ଗଦ୍‌ଗଦ ହେଲି, ସେଇ ଅନ୍ଧାରରେ ହାତ ଯୋଡ଼ି ତାଙ୍କୁ ହିଁ ପ୍ରଣାମ କଲି, ସେଥିରେ ମୁଁ ବଞ୍ଚିଗଲି, ଯଦିବା ସେ ମନ୍ଦିରର କୌଣସି ଦେବଦେବୀ ନୁହଁନ୍ତି ।

ମନେକର ଅନ୍ୟ ଏକ କୌଣସି ବିବିକ୍ତ ମୁହୂର୍ତ୍ତ । ଚୈତ୍ରର ଏକ ଅଳସ ମଧ୍ୟାହ୍ନ । ଦିନଟି ରବିବାର । କାନ୍ଥରେ ସ୍ୱୀଲିଂଗୀ କ୍ୟାଲେଣ୍ଡର ଆଉ ବିଛଣାଟି ଖୁବ୍ ନରମ । ମୁଁ ଗୋଟେ କାହାରି ପ୍ରତୀକ୍ଷାରେ ଛଟପଟ ହେଲି, ଯଦିବା କାହାରି ଆସିବାର ନଥିଲା । ଶେଷରେ ତାଙ୍କୁ ହିଁ ସ୍ମରଣ କଲି । ସେ ଆସି ଛିଡ଼ାହେଲେ, କେମିତି ଅନ୍ୟ ଏକ ଆଖିରେ ଚାହିଁଲେ । ତାଙ୍କ ହାତର ସବୁଜ କାଚଚୁଡ଼ି ଭୀଷଣ ଭାବେ ରୁଣୁଝୁଣୁ ହେଲା । ମୋ ଦେହର କବାଟ ଖୋଲି କେତେ ବୁଲ୍‌ବୁଲ୍ ଉଡ଼ିଗଲେ । କିଛି ସମୟ ପରେ ଅନୁଭବ କଲି ଠିକ୍ ମଧ୍ୟାହ୍ନଟା ଗଡ଼ିଯାଉଛି, ବାହାରେ ହାଲୁକା ଉତ୍‌ଫୁଲ୍ଲ ଅପରାହ୍ଣ ।

ତାଙ୍କର ଅନେକ ରୂପ, ଅନେକ ରଙ୍ଗ ।

ମୁଁ ମେରୀ କିମ୍ବା ଯଶୋଦାଙ୍କୁ ଦେଖି ନାହିଁ । କିନ୍ତୁ ସେମାନଙ୍କ ନାଁ ଧରିଲେ ଯେଉଁ ଛବି ମୋ ଆଖି ସାମ୍ନାରେ ଭାସିଉଠେ, ସେତେବେଳେ ସେହି ଛବି ସହ ଅନେକ ସାମଞ୍ଜସ୍ୟ ଥାଏ ତାଙ୍କର । ଯେତେବେଳେ ନିର୍ଜନ ସ୍ଥାନରେ ମୋତେ ଡାକି କହନ୍ତି, 'କହ୍ନେଇରେ, ତୁ ଆଜିକାଲି ଏତେ ଶୁଖିଯାଉଛୁ କାହିଁକି ?' ପୁଣି ପିଙ୍ଗଳା ବା କ୍ରିଷ୍ଟିୟାନ କିଲରର ଦେହର ବାସ୍ନା ମୁଁ ଜାଣି ନଥିଲେ ମଧ୍ୟ ହଠାତ୍ ସେଇ ବାସ୍ନାରେ ମୁଁ ଆମୋଦିତ ହୋଇ ଉଠେ, ଯେତେବେଳେ ସ୍ନାନ ପରେ ସେ ମୋର ଖୁବ୍ ପାଖେ ପାଖେ ରହି ତାଙ୍କ ଦେହ ଓ ପିଠି ଉପର ଖୋଲା କେଶ ଶୁଖାନ୍ତି ।

ମୁଁ ତାଙ୍କୁ ପ୍ରଣାମ କରିଛି ପୁଣି କାମନା ବି କରିଛି ।

× × × × ×

ମୋ ଠିକ୍ ମନେ ଅଛି ଚାରିଆଡ଼େ ନିଆଁ । ଏକ ନଡ଼ାଗଦା ଭିତରେ ଚୁପ୍‌ଚାପ୍ ବସି ରହିଛି ମୁଁ । ରାଣୀ ଆସି କହିଲା, 'ନିଆଁ ଲାଗିଗଲାଣି ଶୀଘ୍ର ପଳେଇ ଯାଆନ୍ତୁ ।'

ମୁଁ କିନ୍ତୁ ଦୌଡ଼ିଲି ମୋ ରୁମ୍‌କୁ । ରୁମ୍‌ରେ ଅସୀମା ବସି ମୋ ଗପ ପଢୁଥିଲା । ସେ ମୋତେ ନେଇ ବାହାରି ଆସି ରୁମ୍‌ର ବିରାଟ ତାଲାଟା ବନ୍ଦ କରିଦେଇ ହାତରେ ଚାବିଟା ଧରାଇ ଦେଲା । ମୁଁ ପୁଣି ଅନ୍ୟଆଡ଼େ ଧାଇଁଲି । ରାସ୍ତାରେ ଅପା । ସେ କହିଲା, 'ସେ ତୋ ପଛରେ ଧାଇଁଛି । ଏଇଠି ଲୁଚିପଡ଼ ।' ମୁଁ ଗୋଟିଏ କୂଅ ଭିତରକୁ ଡିଆଁ ମାରିଦେଲି । ପାଣି ଭିତରେ ବେଳ ପର୍ଯ୍ୟନ୍ତ ବୁଡ଼ାଇ ବସି ରହିଲା ପରେ ମୋତେ ମନେ ହେଲା କିଏ ଯେପରି ଡାକୁଛି । ଉପରକୁ ଚାହିଁ ଦେଖିଲି– ମା, ଅପା, ରାଣୀ, ଅସୀମା, ପ୍ରଭାତ ସମସ୍ତେ । ପ୍ରଭାତ କିନ୍ତୁ ଆଗରୁ ତ ନଥିଲା, ସେ ବୋଧେ ମୋତେ ଖୋଜି ଖୋଜି ଆସିଛି । ଯାହାହେଉ ମୋତେ ଖୁବ୍ ଶୋଷ ସେତେବେଳେ । ମୁଁ ଉପରକୁ ଉଠି ଆସିଲି । କେମିତି ଆସିଲି ଜାଣେନି । କିନ୍ତୁ ଉପରେ କେହି ନଥିଲେ । ସେ କେବଳ ଛିଡ଼ା ହୋଇଥିଲେ ନିର୍ବିକାର ଭାବରେ । ତାଙ୍କୁ ହିଁ ପାଣି ମାଗିଲି । ଭଲ କରି ତାଙ୍କ ମୁଖ ଦେଖିବା ପୂର୍ବରୁ ଦେଖିଲି ତାଙ୍କର ଖୋଲା ସ୍ତନ । ସେଥିରୁ ଗୋଟିଏ ସ୍ରୋତ । ଆଖି ବୁଜି ପାଟି ଲଗାଇଲି । ଆକଣ୍ଠ ପାନ କଲି । ଉପରକୁ ଚାହିଁ ଦେଖିଲି ମୁଣ୍ଡ ତାଙ୍କର ଆକାଶ ସେପଟେ । ପିଠି ଉପରେ ନୀଳ କେଶ ।

ଶୃଙ୍ଗାରର ଉଦ୍ଦାମତା ଓ ପ୍ରଣିପାତର ଉତ୍କଣ୍ଠା ନେଇ ମୁଁ ସେ ପାହାଡ଼ି ଝରଣା କୂଳରେ ତାଙ୍କୁ ଚୁମ୍ବନ କଲି, ପ୍ରଣାମ କଲି, ଆଲିଙ୍ଗନ କଲି ।

ନିବିଡ଼ ଆଲିଙ୍ଗନରେ ତାଙ୍କ ଦେହରେ ସଂପୂର୍ଣ୍ଣ ଭାବେ ଲୀନ ହୋଇଯିବା ପୂର୍ବରୁ ମୁଁ ଅନୁଭବ କଲି ମୋ ଦେହର ପ୍ରତି ଖୋପରେ ଅସଂଖ୍ୟ ଚିଠି ଏବଂ ପ୍ରତି ଚିଠି ଉପରେ ତାଙ୍କ ଠିକଣା ଯାହାଙ୍କ କଥା ମୁଁ ଏଠାରେ କହୁଛି ।



[ 'ନବରବି' – ପ୍ରଥମ ବର୍ଷ ୭ମ ଜାନୁଆରୀ ୧୯୭୧ରେ ପ୍ରକାଶିତ । 'ନବରବି'ର ଏହି ସଂଖ୍ୟାଟି ଏକ ବିଶେଷାଙ୍କ ରୂପେ ଫୁଲବାଣୀ ଯୁବ ଲେଖକ ସମ୍ମେଳନ ଉପଲକ୍ଷେ ପ୍ରକାଶ ପାଇଥିଲା । ନୂତନ ଲେଖକ ଲେଖିକାମାନଙ୍କ ଉଦ୍ଦେଶ୍ୟରେ ଏକ ସ୍ୱତନ୍ତ୍ର ନିବନ୍ଧ ଓ ସମ୍ପାଦକୀୟ ସହିତ ଏହି ବିଶେଷାଙ୍କଟିରେ କନ୍‌ହେଇଲାଲ ଦାସଙ୍କ ସମେତ ୧୦୦ ଜଣ ପ୍ରତିଶ୍ରୁତିସମ୍ପନ୍ନ ଲେଖକ-ଲେଖିକାଙ୍କର ଫଟୋଚିତ୍ର ପ୍ରକାଶ ପାଇଥିଲା ।

'ତାଙ୍କ ଠିକଣା' ଗଳ୍ପ 'ଝଂକାର' (୨୨ଶ ବର୍ଷ ୧୦ମ ସଂଖ୍ୟା ମକର ୧୩୭୮ ଜାନୁଆରୀ ୧୯୭୧)ରେ ମଧ୍ୟ ପ୍ରକାଶ ପାଇଥିଲା । କିନ୍ତୁ ବିଷୟ ଓ ଗଠନଗତ କେତେକ ପାର୍ଥକ୍ୟରୁ ଏହା 'ନବରବି' (ପ୍ରଥମ ବର୍ଷ, ସପ୍ତମ ସଂଖ୍ୟା, ଜାନୁଆରୀ ୧୯୭୧)ରେ ପ୍ରକାଶିତ ଗଳ୍ପର ପୂର୍ବବର୍ତ୍ତୀ ସମୟରେ ଲିଖିତ ବୋଲି ଜଣାଯାଏ । ତେଣୁ 'ଝଙ୍କାର'ରେ ପ୍ରକାଶିତ ଗଳ୍ପଟିକୁ 'ପରିଶିଷ୍ଟ'ରେ ପତ୍ରସ୍ଥ କରାଯାଇଛି । ]

# ଚକ୍‌କର

...କିନ୍ତୁ ମୋର ଦୁଇ ଆଖି ଛୁଇଁ କହୁଛି, ଏଥିରେ ମୋର କିଛି ଦୋଷ ନାହିଁ । ଅଥଚ ସେଇଟା ବି ମୋର ପାଗଳାମି ନୁହେଁ । କଣ କରନ୍ତି ଭଲା । ଖରାଦିନ । ଲମ୍ବା ଗ୍ରୀଷ୍ମଛୁଟି । ଖରାବେଳଟା ଗଡ଼ିଗଲାଣି ଏଥିଭିତରେ । ମୁଁ ଏକା ଏକା ବିଛଣାରେ ପଡ଼ି ଛଟପଟ ହେଉଥିଲି । ଏଣେ ଛାରପୋକ ମହାରାଜ ତାଙ୍କ କାମରେ ବ୍ୟସ୍ତ । ତେଣେ ଗୋଟେ ଅଧେ ପିମ୍ପୁଡ଼ି ମହୋଦୟ ସେମାନଙ୍କୁ ସାହାଯ୍ୟ କରୁଥିଲେ ମୋ ରକ୍ତ ଶୋଷଣରେ । ଏହି ସମୟରେ  ବାପାଙ୍କ ବଜ୍ରଗମ୍ଭୀର ସ୍ୱର ଆସି କାନରେ ଧକ୍‌କା ମାରିଲା– "ଆରେ ଗଲୁ ! ଗଲୁ ଟିକେ ବଜାରକୁ । ଚା' ପୁଡ଼ିଆଟିଏ ନେଇ ଆସିବୁ । ଶୀଘ୍ର ଆସିବୁ । ମୁଁ ଚା' ପିଇ କାମକୁ ଯିବି ।"

ପିତୃ ଆଜ୍ଞା ଶିରୋଧାର୍ଯ୍ୟ । ଟିକିଏ ବିଳମ୍ବ ନୁହେଁ । ଚାହିଁଲି ବାହାରକୁ । ପାହାଡ଼ିଆ ଖରାବେଳ ପରି ମନେ ହେଉଛି । ଚାହିଁଲି କାନ୍ଥ ଘଣ୍ଟାକୁ । ଚାରିଟା ବାଜିବାକୁ ଏଗାର ମିନିଟ୍ । ଯାହାହେଉ ଚଟ୍‌ପଟ୍ ଜାମାଟା ପିନ୍ଧିନେଲି । କିନ୍ତୁ ପେଣ୍ଟଟା । ଟିକିଏ କସରତ ଜଣା ନଥିଲେ ମୁସ୍କିଲ । ତଥାପି ପୁରୁଣା ଲୋକ ମୁଁ । ତେଣୁ ଖୁବ୍ ଅଳ୍ପ ସମୟ ମଧ୍ୟରେ କାମଟା ଶେଷ କରିନେଲି ।

ମନ ପବନ ଡଙ୍ଗା ! ଖୁଟ୍ କରି ଟିକିଏ ଶବ୍ଦ । ବନ୍ଧନ ମୁକ୍ତ ହୋଇଗଲା ମୋର ସାଇକେଲ୍ । ଏବେ ମୋ ଆଦେଶ ମାନିବାକୁ ନିଆଁ-ପାଣି-କାଦୁଅ-କଣ୍ଟା କିଛି ଖାତର କରିବିନି । ପାଦ ଦୁଇଟି ଆକାଶର ଚଢ଼େଇ ପରି । ଗତି ବି ଚଢ଼େଇଠାରୁ କମ୍ ନୁହେଁ ।

ଆରେ ଆରେ.... ଗଗଲ୍‌ସ ଯେ ବାକି ରହିଗଲା । ଏମିତି ମୌକା କ'ଣ ଛାଡ଼ିବା କଥା । ଆଜି ସେ କଲକତି ବନ୍ଧୁଜଣକ ଯେତେବେଳେ ଗଗଲ୍‌ସଟା ଟେବୁଲ ଉପରେ ଥୋଇ ତାଙ୍କ ଗପର ଶେଷ ପୂର୍ଣ୍ଣଛେଦଟା ପକାଇ ଉଠିବାକୁ ଉଦ୍ୟତ ହେଲେ ସେତେବେଳେ ଜାଣିଶୁଣି ବି ତାଙ୍କୁ ମୁଁ ମନେପକାଇ ଦେଇନି– ତାଙ୍କ ଆଖିର ସେ ନୀଳ ଆବରଣ କଥା । ବନ୍ଧୁବର ଚାଲିଯାଆନ୍ତୁ । ଗଗଲ୍‌ସ ଆଉ ବେକାର ସମସ୍ୟା ସମାଧାନ ଅଫିସରେ କ୍ୟୁରେ ଛିଡ଼ା ହେବାକୁ ଦେବିନି । ବରଂ ବର୍ତ୍ତମାନ ତାକୁ ଗୋଟିଏ ଭଲ ନିଯୁକ୍ତି ପତ୍ର ଦେଇଦେବି ଯେ ! ଭଲ ଭାବରେ ନହେଲେ ବି ସେଇଟାକୁ କୌଣସିମତେ ମୋ ନାକ ଉପରେ ଚପାଇ ଦେଇ ବାହାରିଲି ।

ଗଡ଼ିଚାଲିଲା ମୋର ସାଇକେଲ୍ ମରୀଚିକା ନାଚୁଥିବା ନିରୋଳା ପିଚୁ ରାସ୍ତା ଉପର ଦେଇ । ବଢ଼ିଚାଲିଲା ତାର ଗତି । କୁଆଡ଼େ ବେଗ ହିଁ ଉନ୍ନତିର ଲକ୍ଷଣ ପରା ! ସେଇଥିପାଇଁ ମୁଁ ସାଇକେଲ୍ ପେଡ଼ାଲରେ ପାଦ ରଖିଲେ ନାଳିଗାର ପାରି କରାଇ ଛାଡ଼େ । ତଥାପି କାହିଁ ଟିକିଏ ବୋଲି ତ ଉନ୍ନତିର ସୁରଭି ମୁଁ ଆଘ୍ରାଣ କଲି ନାହିଁ । ମାଟ୍ରିକ୍ୟୁଲେସନରେ ବେଶି ନାଇଁ, ପାଞ୍ଚଥର ପାଞ୍ଚ ପ୍ରକାର ରତୁରେ ପରୀକ୍ଷା ହଲ୍‌ରେ ପ୍ରବେଶ କରିଛି । ପରୀକ୍ଷକଙ୍କ ଜିଭରେ ଲାଳର ଦରିଆ ସୃଷ୍ଟିକରି ଓ ଶେଷରେ ଚିରକୁଟ୍‌ର ଶରଣ ପଶି କୌଣସିମତେ ଅଭେଦ୍ୟ ଦୁର୍ଗ ଜୟ କରିଛି । ତଥାପି ଏଇ ବେଚଲାର ଡିଗ୍ରୀରେ ତ ରାଜ୍ୟଯାକର ଗୋଳମାଳ । ଯାହାହେଉ ସେଦିନ ଓଲଟି ବେଗ ହିଁ ଉନ୍ନତିର ଲକ୍ଷଣ ପରୀକ୍ଷା କରୁଁ କରୁଁ ମ୍ୟୁନିସିପାଲିଟିର ସେ ଅଳିଆବୁହା ଗାଡ଼ିଟା ମୋ ବେକରେ ଚଢ଼ିଯିବା ଉପରେ ହୋଇଥିଲା । କିନ୍ତୁ କି ମାହେନ୍ଦ୍ରବେଳାରେ ଘରୁ ବାହାରିଥିଲି କେଜାଣି ସେ ଯାତ୍ରାରୁ ବଂଚିଗଲି ।

ହେତ୍, ଏତେ ଜଲ୍‌ଦି ବଜାର ପହଞ୍ଚିଗଲାଣି ! ଗଗଲ୍‌ସର ନୀଳକାଚ ଭିତରଦେଇ ଦିଶୁଛି ଦୋକାନର ଚା'ପୁଡ଼ିଆଗୁଡ଼ିକ ଯେପରି ମୋତେ ହିଁ ଅପେକ୍ଷା କରି ଲୁହ ଢାଳୁଛନ୍ତି । କିନ୍ତୁ ଏତେ ଶୀଘ୍ର ଘରକୁ ଲେଉଟି ଗଲେ ସେଇ ପୁରୁଣା କଥା ! ଏପଟ ରାସ୍ତାରେ ବୁଲି ଆସିଲେ କେମିତି ହୁଅନ୍ତା ।

କଳ୍ପନା ସଙ୍ଗେ ସଙ୍ଗେ କାର୍ଯ୍ୟ । କଳ୍ପନାକୁ ସଙ୍ଗେ ସଙ୍ଗେ କାର୍ଯ୍ୟରେ ପରିଣତ କରିବାକୁ କେତେ କେତେ ମହାତ୍ମା କେତେ କେନେ ଉପଦେଶ ଦେଇଛନ୍ତି । ଏତେ ଦାମିକା ଉପଦେଶ କିପରି ବା ନମାନିବି ? ଏହିକଥା ଚିନ୍ତା କରୁକରୁ ମୋର ସାଇକେଲ୍ ମୋଡ଼ ବୁଲି କେତେବେଳେ ଯେ ଗଳିର ଅଧାଅଧି ହୋଇଗଲାଣି ତା ମତେ ଅଜଣା । ସତରେ ଏ ବିଶ୍ୱସ୍ତ ଜନ୍ତୁଟି ଦୁନିଆରେ ଏକା ମୋତେ ଭଲ କରି ଶୁଣିସାରିଛି ।

ଏ ବିଶେଷ ରାସ୍ତାରେ ଆସିବାର ବିଶେଷ ଉଦ୍ଦେଶ୍ୟ ହେଲା– ମୋ ସାନ ଭଉଣୀର ସାଙ୍ଗ ଲୁସିର ଘରଟା ଏଇ ଗଳିର ଶେଷଆଡ଼େ । ଆଃ ! କେତେ ସୁନ୍ଦର ତୋଫା ଝିଅଟି ! ସେ ପ୍ରାୟ ଅଧିକାଂଶ ଦିନ ଆମ ଘରକୁ ଯାଏ । ମୁଁ ତାଙ୍କ ଘରକୁ ଯାଇ ନ ପାରିଲେ ବି ତାଙ୍କ ଘର ଆଗରେ ମୋର ସାଇକେଲ୍ ବେଳ ଅବେଳରେ ପହଁରି ଆସେ । ଆପଣମାନେ ସେମିତି କିଛି ଖରାପ ଅର୍ଥରେ ନେବେନି ଆଜ୍ଞା, ମୁଁ ସେମିତି ଛତରାପିଲା ନୁହେଁ । ମୋର ଭଉଣୀର ସାଙ୍ଗ କ'ଣ ମୋର ଭଉଣୀ ହୋଇପାରିବ ନାହିଁ ?

ଖାଲି ବ୍ୟର୍ଥତା । ଝରକା କବାଟ ସବୁ ବନ୍ଦ । ଏ ଉଦୁଉଦିଆ ଦ୍ୱିପ୍ରହରେ ସେ କଣ ମୋତେ ଆଉ ଚାହିଁବସି ରହନ୍ତା ! ଯା ଦେଖୁଛି ପ୍ରଥମ ଶ୍ରେଣୀ ବୋକାଙ୍କ କୁଳିଗିରି ମୁଁ ନକଲେ ବି ଅତି ଚତୁରଙ୍କ ଉପଦେଷ୍ଟା ବୋଧହୁଏ ମୁଁ ହୋଇପାରିବିନି ।

ବିଫଳତା ହିଁ ପ୍ରକୃତରେ ସଫଳତାର ସୋପାନ । କଥାଟି ସର୍ବତୋଭାବେ ସତ୍ୟ । ଏଇ ଦୂରରେ କିଏ ଜଣେ ଲାଲ ଶାଢ଼ି ପିନ୍ଧି ଆସୁଛି ନା । ବାଃ, ଦେବୀଦର୍ଶନ ଭାଗ୍ୟରେ ଥିଲେ ମିଳେ । ଏଁ କଣ ହେଲା । ଲାଲଶାଢ଼ି ସେ ଡାହାଣ ପଟ ଗଳିରେ ପଶିଗଲା । ଯାଉ, ମୁଁ ବି ଯିବି । ଆହୁରି ଜୋରେ ଜୋରେ ମୋର ପାଦ ବୁଲାଇଲି । କିନ୍ତୁ କପାଳ ଉପରୁ ଝାଳପୋଛି ଯାହା ଯାହା ଦେଖିଲି ମୋ ଗୋଡ଼ଟା ହଠାତ୍ ଓଜନିଆ ହୋଇଗଲା । ସେ ଲାଲଶାଢ଼ି ଜଣେ ନୁହେଁ, ତିନିଜଣଙ୍କ ସମାହାର । ବୟସ୍କା ଭଦ୍ରମହିଳା ।.କାଖରେ ଗୋଟିଏ ଅମୃତର ସନ୍ତାନ ଓ ଅନ୍ୟଟି ତାଙ୍କର ଗର୍ଭାଶୟରେ ।

ଏ ଗଳିଟି ପାରି ହେଲେ କଲେଜ । ଅନେକଦିନ ପରେ ସେ ତୀର୍ଥଭୂମି ଦର୍ଶନ କରିବାର ଆକାଂକ୍ଷା ମନରୁ ହଟାଇ ପାରିଲିନି । ଯେପରି ଗ୍ରୀଷ୍ମ ସଂଧ୍ୟାର ଏ ଅଧାଲିଭା ଖରା ଭିତରେ ଶୋଇ ଶୋଇ କଲେଜଟା ହାଇ ମାରୁଛି । କେତେ ସ୍ମୃତିତୀର୍ଥ ଏଇ କଲେଜ । ମୋର ଚାରିବର୍ଷର ପାଠ୍ୟକ୍ରମକୁ ଏ ପର୍ଯ୍ୟନ୍ତ ମୋଟ ସାତବର୍ଷ ଲଗାଇ ଆସିଛି, ତଥାପି ସମାପ୍ତ ବୋଲି ଉଚ୍ଚାରଣ କରି ପାରିନି । ଯେପରି ଏ କଲେଜ ମୋ ପରି ଏକ କୃତୀଛାତ୍ରକୁ ତା କୋଳରୁ ଅଲଗା କରିବାକୁ ନାରାଜ ।

ଏଇ କଲେଜ–ଏଇ କମନ୍‌ରୁମ୍ । ଏଇ କଲେଜର ସହଶିକ୍ଷାର ରୋମାନ୍‌ସ କେତେଜଣଙ୍କୁ କବି କରିଛି, କେତେଜଣଙ୍କୁ ରାଞ୍ଚିକୁ ଟ୍ରାନ୍ସପୋର୍ଟ କରିଛି । ଆଉ ମୋ ଜୀବନରେ ସେ ଦିନର ସେଇ ଘଟଣା । ଏକ୍‌ସିଡ଼େଣ୍ଟ । ଗାଡ଼ି, ମଟର, ରେଲ, ସାଇକେଲ ସହ ନୁହେଁ, କଲେଜ କୁଇନ୍ ଉପାଳୀର ସାବୁନଫେଣର ତନୁ–ଟ୍ରେନ୍ ସହିତ ମୋର ଏ ବିଶାଳ ବପୁ ଏକ୍‌ସପ୍ରେସ୍‌ର । ତାପରେ ସେ ଦିନରୁ କେତେ ରାତି ଅନିଦ୍ରା ରହି ଆକାଶର ତାରାରେ ତାରାରେ ତାର ଆଖିମିଟିକା ଖୋଜିଛି । ତା' ଘର ଆଗରେ ସାଇକେଲ୍‌ରେ ପଇଁତରା ମାରି ମାରି କେତେଥର ସାଇକେଲ୍ ଚକ ପରିବର୍ତ୍ତନ କରିଛି– ତାର ଇୟତ୍ତା ନାହିଁ ।

ଶେଷରେ ସେଦିନ ଦର୍ପଣ ସାମ୍ନାରେ ଅଭିନୟ ଅଭ୍ୟାସ କରି ତା ଆଗରେ ବାଢ଼ିଦେଇଥିଲି କେତେ ଉପନ୍ୟାସରୁ ଋଣ କରିଥିବା ଭାଷା– "ଉପାଳି । ତୁମେ ମୋର ହୃଦୟ-ସରୋବରରେ ଏଇମାତ୍ର ନୀଳକଇଁ... ମୋ ମନର ଆକାଶରେ ତୁମେ ଏକମାତ୍ର ଅରୁନ୍ଧତୀ... ମୋ ମନର..."

ମୋର ବାକ୍ୟ ଶେଷ ହେବା ପୂର୍ବରୁ ତାର କଲରାପତରିଆ ହସ ଶୁଣି ସ୍ତବ୍ଧ ହୋଇ ଯାଇଥିଲି ମୁଁ । ସେ କହିଥିଲା – "ଆପଣଙ୍କୁ କେବେ କେଉଁଠି ଦେଖିଲା ପରି ତ କାହିଁ ମୋର ମନେ ହେଉନାହିଁ ।"

ମୁଁ ଆଶ୍ୱସ୍ତ ହୋଇଥିଲି ତାର କଥାଶୁଣି । ଦୁନିଆର ସବୁ ଝିଅମାନେ ଏମିତି । ପ୍ରଥମେ କେତେ ମନା କରନ୍ତି । କେତେପ୍ରକାର ହତାଶାଜନକ କଥା କହି ପରୀକ୍ଷା

କରନ୍ତି । କିନ୍ତୁ ଏ ତ ଆଉ ବିଶ୍ୱବିଦ୍ୟାଳୟ ପରୀକ୍ଷା ନୁହେଁ । ତେଣୁ ମୁଁ ଏ ପରୀକ୍ଷାରେ ନିଶ୍ଚୟ କୃତିତ୍ୱର ସହ ଉତୀର୍ଣ୍ଣ ହେବି । ସେ ଯାହାହେଉ ଏଇ ଯେ ପଡ଼ିଆ ସେପଟ ଘରଟା ଦିଶୁଛି ସେଇଟା ମୋର ସହପାଠିନୀ କୁମାରୀ ଚୌଧୁରୀ ଗୌରାଙ୍ଗୀ ମିତ୍ରଙ୍କର । ବହୁତ ସୁନ୍ଦରୀ ଝିଅଟି । ଅବଶ୍ୟ ଟିକେ ମୋଟୀ । ଆମ ଶ୍ରେଣୀର ସେ ଯେଉଁ ଦଳେ ଦରଛତରା ଅଧାବଜାରୀ ଟୋକା ଅଛନ୍ତି, ସେମାନେ ତାର କଳାରଙ୍ଗକୁ ନେଇ କେତେ ସମାଲୋଚନା କରନ୍ତି । କିନ୍ତୁ ମୁଁ କହିବି– 'ହେ କଳିଯୁଗର ସୁଦର୍ଶନ ଗୌର ଯୁବକଗଣ ! ଥରେ ଦ୍ୱାପରଯୁଗକୁ ଦୃଷ୍ଟି ନିକ୍ଷେପ କର । ଦେଖିବ କୃଷ୍ଣଚନ୍ଦ୍ରଙ୍କ ଦେହର ରଙ୍ଗକୁ । ସେ ସୁଲେଖା କାଳିର ରଙ୍ଗ ହୋଇ ବି ସହସ୍ର ନାୟିକାଙ୍କ ମନ-ମନ୍ଦିରର ଏକମାତ୍ର ଦେବତା ହୋଇପାରିଥିଲେ । ତେଣୁ ଗୌରାଙ୍ଗୀକୁ ତୁମେମାନେ ମା କାଳୀ ଓ ସରୁଚକୁଳି କହିଲେ ବି ମୁଁ ତାକୁ ବହୁତ ଭଲପାଏ ।'

ଗଗଲ୍‌ସର ନୀଳ କାଚ ଭିତରଦେଇ ଦିଶୁଛି 'ମେରିନ୍ ଡ୍ରାଇଭ୍' ରାସ୍ତାଛକରେ ଦଳେ କଲେଜପିଲା ଛିଡ଼ା ହୋଇଛନ୍ତି । ସେମାନେ ବଡ଼ ପାଟିରେ କଣ ସବୁ ଅଶ୍ଳୀଳ ଭାଷାରେ କଥାବାର୍ତ୍ତା ହେଉଛନ୍ତି । ଉଃ, ଏ ରାସ୍ତାର ଏ ସମାଜଟା କଣ ଏମାନଙ୍କର ଏକଚାଟିଆ ? କଣ ଏମାନେ ଏ ଗଣତନ୍ତ୍ର ଦେଶରେ ଏକଛତ୍ରବାଦ ପ୍ରଚଳନ କରି ଛାଡ଼ିବେ ? ଯେଉଁଠି ଛିଡ଼ାହେଲେ ଆଉ କିଛି ନାହିଁ– ଯୌନ-ସିନେମା-ନାରୀ । ଏ ତିନୋଟିର ଜୀବାଣୁ ଯେପରି ଏମାନଙ୍କ ଦେହ ମନର ବାୟୁମଣ୍ଡଳରେ ଭର୍ତ୍ତି ହୋଇଯାଇଛି ।

ତେଣେ ଅନ୍ଧକାର ଛାତିରେ ଛୁରୀ ଭୁସି ବିଜୁଳି ଖିଣ୍ଟ ଦାନ୍ତ ନିକୁଟିଲାଣି । ଏଥର ଫେରିବାକୁ ହେବ । ଘରଠାରୁ ଅନେକ ଦୂରରେ ମୁଁ । ଆଉ ସାଇକେଲ୍ ପେଡ଼ାଲଟି ମୋ କଥା ମାନିବାକୁ ନାରାଜ । ଅନ୍ଧକାର ତେଣେ କୃଷ୍ଣତର ହୋଇଆସୁଛି । ଏଇ ଦଳେ ଝିଅ ଆସୁଛନ୍ତି ନା । ବାଃ । ଚମତ୍କାର । ମୋ ମନଟା ବେଶ୍ ହାଲୁକା ହୋଇ ଉଠୁଛି ।

ସତରେ କେଡ଼େ ସୁନ୍ଦର ଜଗତର ଏଇ ଝିଅମାନେ । ବିଧାତାର ଅମୃତମୟ ସୃଷ୍ଟି । ସତକଥା ଏକା । କିନ୍ତୁ ନଷ୍ଟଚରିତ୍ରମାନଙ୍କ ଆଖିରେ, ନାରୀ ଉପଭୋଗର ସାମଗ୍ରୀ । କିନ୍ତୁ ନା, ମୁଁ କହିବି ସତ୍ୟ-ଶିବ-ସୁନ୍ଦରର ତ୍ରିବେଣୀ ସଂଗମରେ ଏମାନଙ୍କ ଅଙ୍କୁରୋଦ୍‌ଗମ ହୋଇଛି ।

ଏଁ, କଣ ହେଲା, ମୋତେ ଏମାନେ ଚାହିଁ ହସୁଛନ୍ତି । ସବୁଠାରୁ ବେଶି ହସୁଛି ସେ, ମାନେ– ତାର ନାମ ହୁଏତ ରଜନୀଗନ୍ଧା ବୋଧହୁଏ । କିନ୍ତୁ ସେଇ ତନୁପାତଳୀ ଝିଅଟିର ପିଆଜ କଟା ଆଖି ତଳେ କଇଁଫୁଲ ପାଖୁଡ଼ା ପରି ଲାଜୁରା ଓଠ ଦୁଇଟି ଥରି ଥରି ହସି ଉଠୁଛି । କାହିଁକି, କ'ଣ ହେଲା ? କଣ କିଛି ହୋଇଗଲା କି ? କ'ଣ ପ୍ରଥମ ଦର୍ଶନରେ ସେଇ ଡ୍ୟାସ୍‌ଟା ହୋଇଗଲା କି ? କିନ୍ତୁ ମୋ ସାଇକେଲଟା ଯେ ତାକୁ ଅତିକ୍ରମ କରି ଚାଲିଗଲା ।

ମୁଁ ଅନେକ ସାହସ ସଂଚୟ କରି ହାଣ୍ଡଲଟା ଠିକ୍ ରଖି ପଛକୁ ଚାହିଁଲି । ଲାଇଟ୍‌ପୋଷ୍ଟ ତଳେ ତାର ଓ ସେମାନଙ୍କର ଛବି ଦିଶୁଛି । ସେମାନେ ବି ପଛକୁ ଫେରି ମୋତେ ଚାହୁଁଛନ୍ତି । ସମସ୍ତଙ୍କ ମୁଖରେ ମନ୍ଦ ମନ୍ଦ ହସ ।

ମୋ ଦେହଟା କେମିତି ହୋଇଗଲା । ସତରେ କଣ ସେ ମୋତେ ଭଲପାଇ ବସିଲାଣି । ନ ହେଲେ ବା ସେ କାହିଁକି ହସିବ ? ଆଜି ମୋ ମୁଣ୍ଡ କୁଣ୍ଡାଇବାକୁ ଅନେକ ସମୟ ଲାଗିଥିଲା ଯେ ।

ଆଉ ଥରେ ସାଇକେଲ୍ ବୁଲାଇ ଦେଖି ଆସିବି କି ?

ନା, ଖରାପ ହେବ । ମୁଁ ଏତେ ଶସ୍ତା ପ୍ରେମିକ ନୁହେଁ । କାଲି ହୁଏତ ତା'ଠାରୁ ନୀଳ ପ୍ୟାଡ୍‌ରେ ଲେଖା ଚିଠି ପାଇବି । ସରୁ ସରୁ ନରମ ଆଙ୍ଗୁଳିର ଅକ୍ଷର । ସେ ଲେଖିଥିବ- କେତେ ଭଲ ପାଇବାର ଭାଷା । ସେ ଲେଖିଥିବ- 'ମୁଁ ତୁମକୁ ଭଲ ପାଏ ।' ମୁଁ ବି ଛାଡ଼ିବିନି – ମୁଁ ବି ଲେଖିବି– 'ମୁଁ ବି ତୁମକୁ ଭଲପାଏ – ଖୁବ୍ ଭଲପାଏ – ଏଇ ଆକାଶଠୁଁ ଆହୁରି ନିବିଡ଼ ଭାବରେ ।'

ଆଉଥରେ ପଛକୁ ଫେରି ଚାହିଁଲି । ପଛରେ ଆଉ ଆଲୁଅବତି ଛଡ଼ା କିଛି ଦିଶୁନି । କିନ୍ତୁ ସାମ୍ନାକୁ ମୁହଁ ବୁଲାଇଲା ପୂର୍ବରୁ ମୋ ଆଖି ଆଗରେ ସମଗ୍ର ବିଶ୍ୱ ଯେପରି ଅନ୍ଧକାର ହୋଇଗଲା । ଆକାଶଟା ଯେପରି ମୋ ବେକ ଉପରେ ମାଡ଼ି ବସିଲା । ସବୁ ଓଲଟପାଲଟ । ଉତ୍ତର-ଦକ୍ଷିଣ-ପୂର୍ବ-ପଶ୍ଚିମ-ଉର୍ଦ୍ଧ୍ୱ-ଅଧଃ ଏକ ସଙ୍ଗରେ ଫେଣ୍ଟାଫେଣ୍ଟି ହୋଇ ଯେପରି ମୋ ଉପରକୁ ଡେଇଁ ପଡ଼ିଲେ ।

ଯେତେବେଳେ ପ୍ରକୃତିସ୍ଥ ହେଲି, ଜାଣିଲି ଗୋଟିଏ ସାଇକେଲ୍ ରିକ୍ସାସହ ମୋର ଦୁର୍ଘଟଣା ଘଟିଯାଇଛି । ଏକ ସଙ୍ଗରେ ଥମିଯାଇଛି ମୋ ମନର ଓ ସାଇକେଲର ଦୁର୍ନିବାର ଗତି ।

ରିକ୍ସାରୁ ଦୁଇଜଣ ଗୁଣ୍ଡାଶ୍ରେଣୀର ଲୋକ ଓହ୍ଲାଇ ଆସିଲେ । ମୋତେ ଭୂଇଁରୁ ଉଠାଇ ସିଧାକରି ଛିଡ଼ା କରାଇଦେଇ କହିଲେ– "କ'ଣ ବାବୁ, କେତେଦିନ ହେଲା ସାଇକେଲ ଚଢ଼ା ଅଭ୍ୟାସ କରୁଛନ୍ତି କି ?" ଭଦ୍ରଲୋକଙ୍କୁ ଉତ୍ତର ଦେବାକୁ ଯାଇ ଦେଖିଲି ମୋ ଚାରିପାଖରେ ସେ ଲାଇଟପୋଷ୍ଟ ତଳେ ଅନେକ ଲୋକ ଜମିଯାଇଛନ୍ତି ।

ଅନ୍ୟଜଣକ ତାଙ୍କ ବନ୍ଧୁଙ୍କ ଉଦ୍ଦେଶ୍ୟରେ କହିଲେ- "ହେଇ ଦେଖୁନୁ ନା, ରାତି ଆଠଟାରେ ବାବୁ ଗଗଲ୍‌ସ ଆଖିରେ ଦେଇ ଘଣ୍ଟାକୁ ଶହେ କିଲୋମିଟର ବେଗରେ ସାଇକେଲ୍ ଚଳାଉଛନ୍ତି ! ଉପରେ ଚଢ଼ିଯିବେନି ତ ଆଉ କ'ଣ ?"

ଭୁଲିଯାଇଥିଲି, ସେତେବେଳ ପର୍ଯ୍ୟନ୍ତ ଆଖିରେ ଗଗଲ୍‌ସ ସେମିତି ରହିଥିଲା । ନୂଆକରି ଆଜି ଗଗଲ୍‌ସରେ ଶୁଭ ଦେଇଥିଲି ତ, ତେଣୁ ସନ୍ଧ୍ୟା ଆଗରୁ ଉତାରି ରଖିବାକୁ ଭୁଲିଯାଇଥିଲି ।

ସେ ରିକ୍‌ସା ଆରୋହୀଜଣକ ମୁଷ୍ଟିବଦ୍ଧ ହାତରେ ମୋ ଆଡ଼େ ଆଗେଇ ଆସିଲେ । ଭାବିଲି; ଏଇ ତାଙ୍କ ନରମ ହାତଟା ସ୍ନେହରେ ମୋର ଗାଲ ଆଉଁଶିଦେବ । ଆନନ୍ଦରେ କି ଭୟରେ ଜାଣେନି ଆଖି ପତା ମୋର ମିଞ୍ଜି ମିଞ୍ଜି ହୋଇଆସିଲା । କିନ୍ତୁ ଯାଃ ରକ୍ଷା । ସେ ମୋ ଆଖିରୁ ଗଗଲ୍‌ସଟା ବାହାର କରି ନେଇ ଯାଇ ରିକ୍ସାରେ ବସିଲେ ଓ ତା'ପରେ ରିକ୍ସାର ଚକ ବୁଲିଲା ।

ସାଇକେଲ୍‌ଟା ନର୍ଦ୍ଦମାର ଉପକୂଳରୁ ଟେକି ଆଣି ଦେଖିଲି, ତାର ଶକ୍ତି ଆଉ ନାହିଁ । ତାକୁ ଚଲାଇ ଚଲାଇ ଘର ଆଡ଼େ ପାଦ ଚଲାଇଲି ।

ଏତେବେଳେକେ ଜାଣିଲି ସେ ଝିଅଟା କାହିଁକି ହସୁଥିଲା । ରାତି ସାତଟା ସତାବନରେ ମୋ ଆଖିରେ ଗଗଲ୍‌ସ ଦେଖି ତାର ହସର ଝରଣା ଫିଟିଯାଇଥିଲା । ଅଥଚ ମୁଁ –।

– ଦୁଆରକୁ ଉଠୁ ଉଠୁ ଶୁଣିଲି– ବାପା ଘର ଭିତରେ କହୁଛନ୍ତି – "ମୁଁ ଜାଣେ ସେ ବଦ୍‌ମାସ ଟୋକା କୁଆଡ଼େ ଚକ୍‌କର ମାରୁଛି । ବୋଉ କାନ୍ଦ କାନ୍ଦ ହୋଇ କହୁଛି– ନାଇଁମ, ଚା ପୁଡ଼ିଆଟିଏ ଆଣିବାକୁ ଯାଇ ଦିନ ତିନିଟାରୁ ରାତି ଆଠଟା ଯାଏ ଚକ୍‌କର ମାରିବ ! ତୁମେ ଯାଆ ଟିକିଏ ହସ୍‌ପିଟାଲରେ ଖୋଜଖବର ନିଅ । କୁଆଡ଼େ କିଛି ଦୁର୍ଘଟଣା ଘଟିଲା ପରା ।"

ସେଇଠି ଛିଡ଼ାହୋଇ ଭାବିଲି– ନ୍‌ହେଁଯାକ ସାଙ୍ଘାତିକ ଭାବେ ସତ କହୁଛନ୍ତି । ଆଣ୍ଠୁରୁ ରକ୍ତ ପୋଛି ଚା ପୁଡ଼ିଆ କଥା ଭାବି ଆଉଥରେ ଫଁ କରି ନିଃଶ୍ୱାସଟିଏ ମାରିଲି ।

**(ଡଗର, ୩୫ ବର୍ଷ, ଦ୍ୱିତୀୟ ସଂଖ୍ୟା, ଅଗଷ୍ଟ ୧୯୭୧)**



# ଆତ୍ମପ୍ରକାଶ

ରାତିରେ ବା ଦିନରେ ଆଖି ବୁଜିଲେ ମୁଁ ଅଦ୍ଭୁତ ସ୍ୱପ୍ନ ସବୁ ଦେଖେ । ଦେଖେ କେଉଁଠି ମୁଁ ନଦୀରେ ବୁଡ଼ିଯାଉଛି, ନ ହେଲେ କୂଅରେ ଖସିପଡୁଛି ଅଥବା ନିଆଁରେ ଜଳିଯାଉଛି– କିନ୍ତୁ ମରୁନି । ସବୁ ସ୍ୱପ୍ନ ଭିତରେ ଦେଖେଁ ଜଣେ ଯେପରି କିଏ ମୋ ପାଖେ ପାଖେ ସବୁବେଳେ ଅଛି । ମୋତେ ଅନେକ କିଛି ପଚାରୁଛି, ବିବ୍ରତ କରୁଛି । କେତେବେଳେ ମୋତେ ବିପଦରୁ ଉଦ୍ଧାର କରୁଛି, ପୁଣି କେତେବେଳେ ବିପଦ ମଧ୍ୟକୁ ଠେଲି ଦେଉଛି । ମୁଁ ଜାଣେ ସେ ପୃଥିବୀର କୌଣସି ମଣିଷ ନୁହେଁ, ଯଦିବା ମଣିଷର ଚେହେରା ସହ ତାର ଅନେକ ସାମଞ୍ଜସ୍ୟ ଅଛି, ଅଥବା ସେ କୌଣସି ଅଶରୀରୀ ଭୂତ ପ୍ରେତ, ଦେବତା, ଗନ୍ଧର୍ବ କିନ୍ନର ବି ନୁହେଁ । ମୁଁ ତାକୁ ଅନେକଥର ଦେଖିଛି । ଜୀବନରେ ବହୁତଥର ତା ସଂସ୍ପର୍ଶରେ ଆସିଛି । ଜୀବନର ଅନେକ ମୁହୂର୍ତ୍ତ ତାକୁ ଚିହ୍ନିବାପାଇଁ ଖର୍ଚ୍ଚ କରିଛି । କିନ୍ତୁ କାଲି ରାତିରେ ସେ ଅତର୍କିତ ଭାବରେ ମୋ ସାମ୍ନାରେ ଧରା ପଡ଼ିଯାଇଛି । କାଲି ମୋ କୋଠରି ଅନ୍ଧକାର ଥିଲା । ଘରେ ମୁଁ ଏକା । ବାହାରେ ହଠାତ୍ ପାଦ ଶବ୍ଦ । ମୁଁ ଉତ୍କର୍ଣ୍ଣ ହୋଇ ଅପେକ୍ଷା କଲି । ମୋର ଠିକ୍ ମନେ ଅଛି, କବାଟ ଭିତର ପଟୁ ବନ୍ଦ ଥିଲା । କିନ୍ତୁ ସେ ଭିତରକୁ ପଶିଆସିଲା । ମୁଁ ଭୟରେ ସୁଇଚ୍‌କୁ ହାତ ବଢ଼ାଇଲି ।

କହ୍ନେଇ !

କିଏ ?

ଆଃ, ଥାଉ, ଆଲୁଅ ଜଳାଅ ନାହିଁ ।

କାହିଁକି ?

ମୁଁ ଆଲୁଅକୁ ଭୟ କରେ ।

କିନ୍ତୁ ତୁମେ କିଏ ?

ମୁଁ ! ତୁମେ ମୋତେ ଜାଣ ।

କାହିଁ ମନେ ପଡୁନି, ତୁମ ସ୍ୱର ତ କେବେ ଶୁଣିନି ।

ହୁଏତ ଭୁଲିଯାଇଥିବ ।

ନା, ମୁଁ କିଛି ଭୁଲେନା, ସବୁ ମନେ ରଖେ ।

କିନ୍ତୁ ତୁମର ସେ କଥା ମନେ ଅଛି ତ ?
କେଉଁ କଥା ?
ସେଦିନ ସାଙ୍ଗମାନଙ୍କ ସହ ଦେଶୀ ଜିନିଷ, ଡିବିରି ଜଳୁଥିବା ଚାଳିଆ ଘରେ ?
କିନ୍ତୁ... ।
କିନ୍ତୁ ତୁମେ ପରା ତୁମ ମା'ଙ୍କ ପାଖରେ ଶପଥ କରିଥିଲ ?
ହଁ ।
ତଥାପି... ?
ଖାଲି ବନ୍ଧୁମାନେ ଜିଦ୍ କଲେ ବୋଲି ।
ବାଃ, ସାବାସ୍ !
ଆଉ ଗୋଟିଏ କଥା ତୁମର ମନେ ଅଛି ?
କେଉଁ କଥା ?
ସେଦିନ ରାତିରେ... ?
ମନେ ପଡୁନି ତ ।
ସେ ହାଇଓ୍ୱେ ପୋଲ ପାଖରେ...
ନା, ମୁଁ କିଛି ଜାଣେନି ।
କିନ୍ତୁ ମୁଁ ଯେ ଜାଣେ ।
କ'ଣ ?
ଝିମନିକୁ କାହିଁକି ଦଶଟଙ୍କା ଦେଇଥିଲ ?
ତାର ଅଭାବ ଥିଲା ବୋଲି ।
ତାର ଅଭାବ ନା ତୁମର ଅଭାବ ?
ତାର ।
ନା, ତୁମର ବେଶୀ ଅଭାବ ଥିଲା, ଏକ ନାରୀ ଦେହର ।
ଚୁପ୍... ।
ଆଃ, ରାଗି ଲାଭ ନାହିଁ । ଆଚ୍ଛା, ଆଉ ଗୋଟିଏ କଥା ପଚାରିବି ?
କ'ଣ ?
ତୁମେ ତ ଅନେକ ତତ୍ତ୍ୱ ଜାଣ ?
କାହିଁକି ?
ଚୋରି କରିବା ପାପ ନୁହେଁ ?
ହଁ ।
ତୁମେ ତ କେବେ ଚୋରି କରିନ ?
ନା ।

ଓହୋ, ସେଦିନ ତୁମର ଅଭାବ ଥିଲା ବୋଲି ସାଙ୍ଗର ସୁନା ମୁଦିଟା ନେଇ ଚମ୍ପଟ ଦେଲ ?

ମୁଁ ତୁମର କିଛି କଥା ଶୁଣିବାକୁ ଚାହେଁନି ।

କିନ୍ତୁ ମୁଁ ଯେ ସବୁ କଥା ନ ଶୁଣାଇଲେ ଯିବିନି ।

ମୁଁ ଯଦି ନ ଶୁଣେ...

ତୁମେ ପ୍ରୀତିକୁ ଚିହ୍ନିଛ ?

ଚିହ୍ନିଲି ତ କ'ଣ ହେଲା ?

ରୋଜିକୁ ?

ହଁ ।

ତୁମେ ପ୍ରେମ କରୁଛ ?

ହଁ, କାହିଁକି ?

କାହାକୁ ?

ରୋଜିକୁ ।

କିନ୍ତୁ ପ୍ରୀତି ?

ତାକୁ କେବଳ ଚିହ୍ନେ ।

ସେ କିନ୍ତୁ ତୁମକୁ ଭଲପାଏ ।

ମୁଁ ପାଏ ନାହିଁ ।

ମିଛ !

ସତ !

ତେବେ ସେଦିନ କାହିଁକି ଭଲପାଅ ବୋଲି ତାକୁ ବାରମ୍ବାର କହିଥିଲ ?

ମୁଁ କିଛି ଜାଣେନି ।

କିନ୍ତୁ ତୁମେ ତାର ସ୍ନାୟୁଗ୍ରନ୍ଥିର ଉତ୍ତାପକୁ ଭଲକରି ଜାଣ ।

କିନ୍ତୁ ଏତେ କଥା କହିବାକୁ ତୁମେ କିଏ ?

କହିଲି ପରା ମୁଁ । ତୁମେ ରାଗୁଛ ?

ହଁ ।

ଆଉ ଗୋଟିଏ କଥା ପଚାରିବି ?

ନା, ମୁଁ ଆଉ କିଛି ଶୁଣିବାକୁ ଚାହେଁନି ।

ଏଇଟା ମୋର ଶେଷ କଥା ।

କ'ଣ ?

ଦେବୀ କିଏ ?

ମୋ ଭଉଣୀ ।

ମାଉସୀଝିଅ ?

ହଁ ।

ବିବାହିତା ?

ହଁ ।

ତୁମେ ତାର ସ୍ୱାମୀର ମୃତ୍ୟୁ କାମନା କର ?

ନିପଟ ବାଜେ କଥା ।

କିନ୍ତୁ ଏହା ଯେ ଅନ୍ଧକାର ଭଳି ସତ୍ୟ ।

ଚୁପ୍ ଇଡ଼ିୟଟ୍ ! ମୁଁ ତୋତେ ଏଇନେ ଖୁନ୍ କରିବି ।

ହାଃ ହାଃ ହାଃ ହାଃ ହିଃ ହିଃ ହୁଃ ହୁଃ...

ଛାୟାମୂର୍ତ୍ତି ପଛକୁ ବାଙ୍କିଯାଇ ଖୁବ୍ ଜୋରରେ ହସିଲା । ମୁଁ କ୍ରମେ ଅହସ୍ୟ ହୋଇ ଉଠିଲି । ବିଛଣା ଉପରୁ ଗୋଟିଏ ବହି ଉଠାଇ ଆଣି ତା' ଆଡ଼େ ଫିଙ୍ଗିଲି । ତଥାପି ଘରସାରା ତାର ସଂକ୍ରାମକ ହସର ସ୍ରୋତ । ମୁଁ ଏଥର ବିଛଣା ଛାଡ଼ି ଉଠି ତା' ଉପରକୁ ଡିଆଁଟିଏ ମାରିଲି । କିନ୍ତୁ ନିଷ୍ଫଳ । ସେ ସେତେବେଳେ ଆରାମରେ ଚେୟାର ଉପରେ ବସି ହସୁଥିଲା । ମୁଁ ଚେୟାର ପଛ ଆଡ଼େ ଯାଇ ମୋର ହାତ ମୁଠାକୁ ଶକ୍ତ କରି ତା' ମୁଣ୍ଡ ଉଦ୍ଦେଶ୍ୟରେ ବକ୍ସିଂଟିଏ ଛାଡ଼ିଲି । କିନ୍ତୁ ତାର କିଛି ହେଲା ନାହିଁ । କେବଳ ମୋ ହାତଟା ଚେୟାରରେ ବାଜି ଫାଟିଗଲା, ରକ୍ତ ବହିଲା । ତା'ପରେ ତାକୁ ଦେଖିଲି ଝରକା ପାଖରେ । ଧରିବି ବୋଲି ଗୋଡ଼ାଇଲି, କନ୍ତ୍ ପାରିଲି ନାହିଁ । ଶେଷରେ ତକିଆ ତଳୁ ରିଭଲଭର୍ ବାହାର କରି ତାର ଖପୁରିକୁ ଲକ୍ଷ୍ୟ କରି ଛ' ରାଉଣ୍ଡ ଗୁଳି ଫୁଟାଇଲି । ତଥାପି ସେ ନିର୍ବିକାର ଭାବେ ହସୁଥିଲା । ଶୀଘ୍ର ଯାଇ ସୁଇଚ୍‌ଟା ଅନ୍ କରିଦେଲି । ସେ ଚଟ୍‌କରି ମୁହଁ ଫେରାଇ ନେଲା । ଗୋଟିଏ ମୁହୂର୍ତ୍ତ ପାଇଁ ତାର ମୁହଁ ଦେଖି ମୁଁ ଅବାକ୍ ହୋଇଗଲି । ଏହାକୁ ଯେପରି କେଉଁଠି ଦେଖିଛି ! ଥରେ ନୁହେଁ, ଅନେକଥର । ମୁଁ ତାକୁ ଧରିବା ପୂର୍ବରୁ କବାଟ ଖୋଲି ବାହାରକୁ ପଳାଇଲା । ତାକୁ ଅନୁସରଣ କରି ଦେଖିଲି, କ୍ରମେ ଫାଟକ ପାରି ହୋଇ ଖୁବ୍ ଅଳ୍ପ ସମୟ ମଧ୍ୟରେ ଅନ୍ଧକାରର ଉପତ୍ୟକା ମଧ୍ୟରେ ହଜିଗଲା ସେ । ମୁଁ ମୋ ଶୋଇବା ଘରକୁ ଫେରିଆସି ଦେଖିଲି ମୋ ଘର ସାରା କେବଳ କାଚ ଟୁକୁରା ଆଉ ଧ୍ୱଂସାବଶେଷର ଚିହ୍ନ । ଛ' ରାଉଣ୍ଡ ଯାକ ଗୁଳି କାନ୍ଥରେ ଟଙ୍ଗା ହୋଇଥିବା ମୋର ଫଟୋର କପାଳରେ ହିଁ ବାଜିଥିଲା ।

କାନ୍ଥରୁ ଭଙ୍ଗା ଫଟୋଟିକୁ ତଳକୁ ଓହ୍ଲାଇ ଆଣି ମୁଁ ଅସମ୍ଭବ ଭାବେ ଚମକି ପଡ଼ିଲି । କାରଣ ରାତିର ଆଗନ୍ତୁକ ସହ ଏ ଫଟୋର ଯଥେଷ୍ଟ ସାମଞ୍ଜସ୍ୟ ଅଛି ।

(ସାମୟିକ ଗଳ୍ପ ସଂକଳନ-୩, ସେପ୍ଟେମ୍ବର, ୧୯୭୧)

●

# ସ୍ୱପ୍ନ ଏବଂ ଅବ୍ୟକ୍ତ କିଛି

ମୁଁ ସ୍ୱପ୍ନ ଭିତରେ ସ୍ୱପ୍ନ ଦେଖେଁ ତା' ଭିତରେ ବି ସ୍ୱପ୍ନ ସ୍ୱପ୍ନ ଶେଷ ହୁଏ ନାହିଁ ଆସେ ଯାଏ ଯାଏ ଆସେ ଗୋଟିଏ ସ୍ୱପ୍ନର ବୃତ୍ତ ଭିତରେ ଆଉ ଗୋଟିଏ ସ୍ୱପ୍ନର ବୃତ୍ତ ତା ଭିତରେ ଆଉ ଗୋଟିଏ ଭାଙ୍ଗିଯାଏ ତିଆରି ହୁଏ ପୁଣି ତିଆରି ହୁଏ ଭାଙ୍ଗିଯାଏ ଅନେକ କଥା ଅନେକ ଶବ୍ଦ ଦୃଶ୍ୟ ସ୍ମୃତିର ସହର ମୁଣ୍ଡ ଟେକେ ଉଠେଁ ପାହାଚରେ ଗୋଟିଏ ଚଟାଣ ପୁଣି ସେଇ ଚଟାଣ ପୁଣି ଆଲୋକ ଅସଂଖ୍ୟ ଆଲୋକର ଅଣୁ ପରମାଣୁ ଅନେକ ଅନ୍ଧକାର ଅନ୍ଧକାରର ଅସଂଖ୍ୟ ଅଣୁ ପରାମାଣୁ ଫେଣ୍ଟାଫେଣ୍ଟି ହୋଇ ହୋଇ ଏକ ଅଜବ ରଂଗ ଅଜବ ସ୍ମୃତି ଅଜବ ଶବ୍ଦ ସବୁ ଶବ୍ଦ ଭାଙ୍ଗିଗଲେ ଗୋଟିଏ ମାତ୍ର ଶବ୍ଦ ରହେ ଗୋଟିଏ ମାତ୍ର ଧ୍ୱନି ଗୋଟିଏ ମାତ୍ର ବ୍ୟଞ୍ଜନା ସର୍ବତ୍ର ଘୂରେ ଘୂରିବୁଲେ ପୃଥିବୀର ସର୍ବତ୍ର ମେରୁ ଅକ୍ଷାଂଶ ଦ୍ରାଘିମାର ସବୁ ସ୍ଥାନ ଏକାକାର କରି ସେ ଶବ୍ଦ ପ୍ରକାଶର ଶବ୍ଦ ଆତ୍ମପ୍ରକାଶର ବ୍ୟଞ୍ଜନା ସେଇଟା ଗୋଟିଏ ଅନୁଭବ ଗୋଟିଏ ଅସମ୍ଭବ ଉପଲବ୍ଧି ମୃତ୍ୟୁ ବି ଏକ ଅନୁଭବ ମୃତ୍ୟୁ କ'ଣ ଆତ୍ମପ୍ରକାଶ ଜୀବନ ମାନେ ଆତ୍ମପ୍ରକାଶ ସେମାନେ ବୋଧହୁଏ ଆଲୋକ ଯୁକ୍ତ ଅନ୍ଧକାର କିମ୍ୱା ଅନ୍ଧାକାର ବିଯୁକ୍ତ ଆଲୋକ ଅଥବା ଆଲୋକ ହରଣ ଅନ୍ଧକାର ନତୁବା ଅନ୍ଧକାର ଗୁଣନ ଆଲୋକ ମୁଁ ସବୁ ଜାଣେ ମୁଁ ଜାଣେ ଯେ ମୁଁ ଜାଣେ କିମ୍ୱା ମୁଁ ହୁଏତ ଜାଣେ ଯେ ମୁଁ ଏକ ପଦାର୍ଥ ମୁଁ ଏକ ନିର୍ଦ୍ଦିଷ୍ଟ ଅନୁଭବ ମୁଁ ଏକ ନିଶ୍ଚିତ ଉପଲବ୍ଧି ଯେଉଁ ଉପଲବ୍ଧି ଆକୁଳ ହୋଇ ଚିତ୍କାର କରେ ଦେବୀ ଦେବୀ ତୁ ମୋର ତୁ ଏକାନ୍ତ ଭାବେ ମୋର  ତୋରି ପାଇଁ ଅନେକ କିଛି ଦୃଶ୍ୟ ଶବ୍ଦ ସ୍ମୃତି ତୋରି ପାଇଁ ମୁଁ ଦେଖେ ସ୍ୱପ୍ନ ସ୍ୱପ୍ନ ଭିତରେ ସ୍ୱପ୍ନ ତା' ଭିତରେ ବି ସ୍ୱପ୍ନ ସ୍ୱପ୍ନ ଶେଷ ହୁଏ ନାହିଁ ଆସେ ଯାଏ ଯାଏ ଆସେ ଗୋଟିଏ ବୃତ୍ତ ଭିତରେ ଆଉ ଗୋଟିଏ ବୃତ୍ତ ଭିତରେ ଆଉ ଗୋଟିଏ ବୃତ୍ତ ତା' ଭିତରେ ଆଉ ଗୋଟିଏ ଅନେକ ଘଟଣା ଘୂରେ ତା' ଭିତରେ ଅନେକ ଚରମ ଘଟଣା ଦୁର୍ଘଟଣା ଅର୍ବୁଦ ବୃନ୍ଦ ଖର୍ବ ନିଖର୍ବ ପଦ୍ମ ସାଗର ଅନ୍ତ ମଧ୍ୟ ପରାର୍ଦ୍ଧ ଘଟଣା ମଧ୍ୟରେ ତୁ ତୁ ମାନେ ତୁ ଯେପରି ମୁଁ ମାନେ ମୁଁ ଏକାନ୍ତ ଭାବେ ମୁଁ ଆଉ କେହି ନୁହେଁ ସେହିପରି ତୁ ଏକକ ମୁଁ ମୌଳିକ ଓ ଯୌଗିକ ମୌଳିକ ଯୌଗିକ ନା ଯୌଗିକ ମୌଳିକ ସବୁ କଦର୍ଯ୍ୟ କେବଳ ଦେବୀ ତୁ ଏକମାତ୍ର ସୁନ୍ଦର ତେଣୁ ମୁଁ ତୋତେ ଚାହେଁ ଯଦିବା

ମୁଁ ପୃଥିବୀରେ ଅନେକ କିଛି ଚାହେଁ ଯଥା ମଦ ମାଂସ ମହିଳା ଆହୁରି ବି ଚାହେଁ ଭଦ୍ରତା ଅଶ୍ଲୀଳତା କିନ୍ତୁ ତୋତେ ଚାହେଁ ଏକ ଭିନ୍ନ ପ୍ରକାର କିପରି ଚାହେଁ ଠିକ୍ କେଉଁ ପ୍ରକାର ଚାହେ ସେ କଥା କହିବା ପାଇଁ ବୋଧେ ଏ ପର୍ଯ୍ୟନ୍ତ ଶବ୍ଦ ତିଆରି ହୋଇ ପାରିନି କାରଣ ସବୁ ଅନୁଭବକୁ ଶବ୍ଦରେ ପ୍ରକାଶ କରି ହୁଏ ନାହିଁ ଆଉ ସବୁ ଶବ୍ଦକୁ ଅନୁଭବ କରିହୁଏ ନାହିଁ ତେଣୁ ତୋତେ ମୁଁ ଚାହେଁ ଏଇ କଥାଟି ସବୁ ନୁହେଁ ଏକ ଅଂଶବିଶେଷ ବି ନୁହେଁ କେବଳ କହିବି ତୋତେ ମୋର ଏକାନ୍ତ ଆବଶ୍ୟକ ତୁ ବି ମୋତେ ସେମିତି କିଛି କହିବାକୁ ଚାହୁଁ ଏ କଥା ମୁଁ ଜାଣେ ତୋ ବାପା ଜାଣେ ତୋ ମା ଜାଣେ ଆଉ କିଏ ଜାଣେ ନ ଜାଣେ ମୁଁ ଜାଣେ ନାହିଁ ତେଣୁ ତୋ ବାପା ମୋତେ ଘୃଣା କରେ ତୋ ମା' ମୋତେ ସନ୍ଦେହ କରେ କିନ୍ତୁ ମୁଁ ଯେତେ ଆତ୍ମପ୍ରକାଶ କରେ ତୁ ସେତେ ଆତ୍ମଗୋପନ କରୁ ଏବଂ ମିଛରେ ହେଉ କି ସତରେ ହେଉ ତୁ କହୁ କୁଆଡ଼େ ଭୋଗ ହିଁ ଧର୍ମ ଉପଭୋଗଟା ପାପ ମୁଁ ଭୋଗ ଉପଭୋଗ ବୁଝେନା ଧର୍ମ ଅଧର୍ମ ଶବ୍ଦଗୁଡ଼ିକର ଅନେକ ଶବ୍ଦ ଏବଂ ଆକାର ଏଥିପାଇଁ ମୁଁ ଶୁଣିଛି ମୋ ଅଗଣାରେ ଅନେକ ନାରୀର ପାଦଶବ୍ଦ ମୁଁ ଦେଖିଛି ଅନେକ ଅଭିବ୍ୟକ୍ତି ଅନେକ ନିର୍ଦ୍ଦିଷ୍ଟ ସ୍ଥାନ ମୁଁ ଚାଖିଛି ଅନେକ ଓଠର ସ୍ୱାଦ ତଥାପି ଅନେକ ମୋଠାରୁ ଆହୁରି କିଛି ଆଶା କରିଛନ୍ତି ଆଜିବି ମନେପଡ଼େ ପ୍ରଥମେ ଯିଏ ମୋଠାରୁ ଆହୁରି କିଛି ଚାହିଁଥିଲା ତାକୁ ମୁଁ ଜଲିଅପା କହୁଥିଲି ସେ ଦିନେ ସକାଳେ ମୋତେ ଚୁମା ଦେଲେ ଆଉ ଶୀତରେ ଥରିଗଲେ ମୁଁ ଯେତେବେଳେ ମଣ୍ଡଉ ବାଜା ଆଉ ନୂଆ ଉଠୁଥିବା ନିଶ ଦାଢ଼ୀ ଏକ ସଙ୍ଗରେ କାଟେ ସେଦିନ ସେ ଏକ ନୂତନ ଭାଷାରେ ମୋ ସହ କଥା ହେଲେ ମୁଁ ନୂତନ ଭାବେ ତାଙ୍କର ଖୋଲା ଛାତି ଦେଖିଲି ଏବଂ ଆଶ୍ଚର୍ଯ୍ୟ ହୋଇ ମୋର ଶୈଶବ କଥା ମନେ ପକାଇଲି ମୁଁ ହସିଲି କାନ୍ଦିଲି କାନ୍ଦିଲି ହସିଲି ସେ ସଂଗମ ଚାହିଁଲେ ମୁଁ ଆଲିଙ୍ଗନ କଲି ଓ ତାଙ୍କୁ ଭୟ କଲି ଏବଂ ମୁଁ ତୋଠୁ କ'ଣ କ'ଣ ଚାହେଁ ଯେତେବେଳେ ତାର ତାଲିକା କରିବାକୁ ବସେ ତାଲିକାରେ ଗୋଟିଏ ବି ଅକ୍ଷର ଲେଖାହୁଏ ନାହିଁ ମୋ ଉପରକୁ ମାଡ଼ିଆସେ ଅସଂଖ୍ୟ ଅକ୍ଷରହୀନ ସ୍ୱପ୍ନ ସ୍ୱପ୍ନ ଭିତରେ ସ୍ୱପ୍ନ ତା' ଭିତରେ ବି ସ୍ୱପ୍ନ ସ୍ୱପ୍ନ ଶେଷ ହୁଏନାହିଁ ଆସେ ଯାଏ ଯାଏ ଆସେ ଗୋଟିଏ ଇଚ୍ଛା ତା' ପରେ ଆଉ ଗୋଟିଏ ଶେଷରେ ଆସେ ମୃତ୍ୟୁ ଇଚ୍ଛା ମୃତ୍ୟୁ ଇଚ୍ଛାର ପୂର୍ବ ଇଚ୍ଛାକୁ କୌଣସିମତେ ଜାବୁଡ଼ି ଧରି ଶବ୍ଦର ପଟୁଆର ତିଆରି କଲେ ହୁଏତ ଏ ପ୍ରକାର ହୋଇପାରେ ଦେବୀ ଦେବୀ ମୋର ତୋତେ ମୁଁ ଧୂପ ଦୀପ ଜଳୁଥିବା ଘରେ ଫୁଲ ଆମ୍ବ ପତ୍ରରେ ସଜା ହୋଇଥିବା ଘରେ ଆଦୌ କାମନା କରେ ନାହିଁ ମୁଁ ଚାହେଁନା ପୃଥିବୀରେ ନିର୍ବୋଧ ଲୋକଙ୍କ ଆଖିରେ ଧୂଳି ପକାଇ କେଉଁ ଏକ ଦ୍ୱିପ୍ରହରର ଉଜ୍ଜ୍ୱଳତାରେ ତୋତେ ବିବସ୍ତ୍ରା କରିଦେବାକୁ ମୁଁ ଚାହେଁ ତୋତେ ନେଇ ଏଠାରୁ ଖୁବ୍ ଦୂରକୁ ପଳାଇଯିବି କେଉଁ ଏକ ଅଗ୍ନାଅଗ୍ନି ବନସ୍ତରେ ପାହାଡ଼ ତଳେ ଆମେ ଦୁହେଁ ନିର୍ବିକାର ଚିତ୍ତରେ ଉଲଗ୍ନ ହେବା

ଆମେ ଖାଇବା ଗଛର ଫଳ ମୂଳ ପଥରରେ ଛେଚି ଛେଚି ଆମେ ଖାଇବା କେଉଁ ସବୁ ନାମ ନଜଣା ପଶୁପକ୍ଷୀର କଞ୍ଚାମାଂସ ତୁ ଆଉ ମୁଁ ଇଶାରାରେ ଭାବ ପ୍ରକାଶ କରିବା କେଉଁ ଏକ ଅଦୃଶ୍ୟ ଶକ୍ତି ବଳରେ ମୋ ଭିତରେ ପ୍ରେରଣା ସୃଷ୍ଟି ହେବ ମୁଁ ସବୁ ଆନୁଷଙ୍ଗିକ ଭୁଲି ସବୁ ନିୟମ କାନୁନ ଭୁଲି ଚରମ ସଂଗମ କରିବି ସେତେବେଳେ ଅରଣ୍ୟ ମୋର ପର୍ବତ ମୋର ବାୟୁ ଜଳ ଆକାଶ ସବୁ ମୋର ସଙ୍କଳରର ସବୁ ବନ୍ଧନୀ ଯୁକ୍ତ ବିଯୁକ୍ତ ଗୁଣନ ହରଣ ଚିହ୍ନ ଟପି ଗୋଟିଏ ସହଜ ଉତ୍ତର ମିଳିଲା ପରି କେବେ ଗୋଟିଏ ବ୍ୟଞ୍ଜନାରେ ବିଶ୍ୱବ୍ରହ୍ମାଣ୍ଡରେ ଏକାକାର ହୋଇଯିବ ସେ ବ୍ୟଞ୍ଜନା ଯୁଗ୍ମ ଆତ୍ମବିଲୀନତାର ମୁଁ ଦେଖେଁ ଅନେକ ସଞ୍ଜବେଳେ ସେଇ ବୃଦ୍ଧକୁ ଯିଏ ଅନେକ ସମୟରେ ଖୁକ୍ ଖୁକ୍ କାଶି ବଡ଼ ଆକାରର ହଳଦିଆ ଖଙ୍କାର ପକାଏ ଏବଂ ଯାହାର ଅଯତ୍ନ ଲୁଗାପିନ୍ଧା ମଧ୍ୟରୁ ଶ୍ଳଥ ନିମ୍ନାଂଗ ଗୋପନତାରୁ ମୁକ୍ତି ପାଏ ସେଇ ବୃଦ୍ଧ ଅନେକ ସମୟରେ ତା' ଘରର ବୟସ୍କା ଚାକରାଣୀ ସହ କଦର୍ଯ୍ୟ ସଂଗମ କରେ ମୁଁ ଠିକ୍ ସେ ପ୍ରକାର ଆତ୍ମପ୍ରକାଶ କିମ୍ବା ଆତ୍ମବିଲୀନତା ଚାହେଁନା କାରଣ ମୁଁ ପୃଥିବୀର କୋଟି କୋଟି ଦେହ ମଧ୍ୟରୁ ଗୋଟିଏ ଦେହ ଚାହେଁ କୋଟି କୋଟି ଜନନେନ୍ଦ୍ରିୟ ମଧ୍ୟରୁ ଗୋଟିଏ ମାତ୍ର ଜନନେନ୍ଦ୍ରିୟ ଚାହେଁ ଯାହାକୁ ମୁକ୍ତ ଆକାଶର ଜ୍ୟା ତଳେ ଚୁମ୍ବନ ଦେବି ଏବଂ ପ୍ରଣାମ କରି ପାରିବି ଯାହା ଭିତରେ ମୁଁ ବିଲୀନ ହେବି ଆତ୍ମପ୍ରକାଶ କରିବି ଏବଂ ମୁଁ ମୋରି ରୂପରେ ଜନ୍ମନେବି ଦେବୀ ତୁ ବି ତାହାହିଁ କରିବୁ ତୋର ମୋର ପାର୍ଥିବ ଆତ୍ମପ୍ରବଞ୍ଚନା ଆତ୍ମଗୋପନତା ସବୁ ବନ୍ଧ୍ୟାର ଜରାୟୁସ୍ଥ ଭ୍ରୂଣଭଳି ମିଳାଇ ଯାଇ ଏକ ନୂତନ ଏକ ସୁବିରାଟତ୍ୱର ପ୍ରକାଶ ହେବ ସେଇଟା ହେବ ଆମର ଯୁଗ୍ମ ଆତ୍ମପ୍ରକାଶ ଗୋଟିଏ ସତ୍ତା ମଧ୍ୟରେ ମୁଁ ଜାଣେ ନାହିଁ ହୁଏତ ହୋଇପାରେ ମୁଁ ଏଇ କଥାକୁ ନେଇ ଦିବାରାତ୍ରି ପ୍ରଚ୍ଛନ୍ନ ଭାବରେ ସ୍ୱପ୍ନ ଦେଖେ ସ୍ୱପ୍ନ ଭିତରେ ସ୍ୱପ୍ନ ତା' ଭିତରେ ବି ସ୍ୱପ୍ନ ସ୍ୱପ୍ନ ଆସେ ଯାଏ ଯାଏ ଆସେ ଗୋଟିଏ ସ୍ୱପ୍ନର ବୃତ୍ତ ଭାଙ୍ଗିଯାଇ ଆହୁରି ଗୋଟିଏ ପାଖାପାଖି ସ୍ୱପ୍ନର ବୃତ୍ତ ତିଆରି ହୋଇଯାଏ ଦେବୀ ମୋର ଅନେକ ସ୍ୱପ୍ନର ବିକ୍ଷିପ୍ତ ଯନ୍ତ୍ରଣାର ମେଘ ଓହ୍ଲାଇ ଯାଏ ତୋ ଦେହର ନଦୀ ପର୍ବତ ଉପରକୁ ତୋର ସାମୁଦ୍ରିକ ଜନନେନ୍ଦ୍ରିୟ ଆଡ଼େ ମୁହଁ କରି ଭୀଷଣ ଶୁକ୍ରକୀଟର ଶୋଭାଯାତ୍ରା ଲମ୍ବିଯାଏ ଅନେକ ଭାବନା ଶବ୍ଦ ଦୃଶ୍ୟ ସ୍ମୃତିର ସହର ଅନେକ ଉପଲବ୍ଧି ଅନୁଭବର ଜନପଦ ନିଶ୍ଚିହ୍ନ ହୋଇ ମୋର ସବୁ ସ୍ୱପ୍ନର ବିକ୍ଷିପ୍ତ ଯନ୍ତ୍ରଣାର ମେଘମାଳା ମଧ୍ୟରୁ ଅସଂଖ୍ୟ ବର୍ଷା ହୁଏ ଏବଂ ମୁଁ ସ୍ୱପ୍ନ ଦେଖେ ତୋରି ସ୍ୱପ୍ନ ସ୍ୱପ୍ନ ଭିତରେ ସ୍ୱପ୍ନ ତା' ଭିତରେ ବି ସ୍ୱପ୍ନ ତା' ଭିତରେ ବି ସ୍ୱପ୍ନ ତା ଭିତରେ ବି ସ୍ୱପ୍ନ ତା ଭିତରେ ବି ମୁଁ ସ୍ୱପ୍ନ ଭିତରେ ସ୍ୱପ୍ନ ଦେଖେଁ ତା ଭିତରେ ବି ସ୍ୱପ୍ନ ତା ଭିତରେ ବି ସ୍ୱପ୍ନ ସ୍ୱପ୍ନ ଶେଷ ହୁଏନାହିଁ ଆସେ ଯାଏ ଯାଏ ଆସେ ଗୋଟିଏ ସ୍ୱପ୍ନର ବୃତ୍ତ ଭିତରେ ଆଉ ଗୋଟିଏ ସ୍ୱପ୍ନର ବୃତ୍ତ ତା ଭିତରେ ଆଉ ଗୋଟିଏ ଭାଙ୍ଗିଯାଏ ତିଆରି

ହୁଏ ତିଆରି ହୁଏ ଭାଙ୍ଗିଯାଏ ଅନେକ ଶବ୍ଦ ଦୃଶ୍ୟ ସ୍ମୃତିର ଜନପଦ ନିଶ୍ଚିହ୍ନ ହୁଏ ପୁଣି ଅନେକ ଇଚ୍ଛା ଅନେକ ଅଭୀପ୍‌ସା ଅନେକ ଦୁରଭିସନ୍ଧିର ସହର ମୁଣ୍ଡ ଟେକେ ଶେଷରେ ସବୁ ତରଳିଯାଏ ସବୁ ବ୍ୟଞ୍ଜନା ଏକତ୍ରିତ ହୋଇ ଗୋଟିଏ ମୂର୍ତ୍ତି ତିଆରି କରେ ଯେଉଁ ମୂର୍ତ୍ତି ଧୀରେ ଧୀରେ ମେଘ ଆଉ ତାରାର ପାହାଚରେ ପାଦରଖି ଓହ୍ଲାଇ ଆସେ ମୋର ସ୍ତର ସ୍ତର ଚିନ୍ତା ଅନୁଚିନ୍ତା ଏବଂ ଭ୍ରାମ୍ୟମାଣ କଳ୍ପନାରେ ଅସମ୍ଭବ ତରଙ୍ଗ ଉଠେ ସେତେବେଳେ ଅନିମେଷତା ମୋତେ କ୍ଳାନ୍ତ କରାଇପାରେନା କେବଳ ମୋର ହାତ ଗୋଡ଼ ଆଖି କାନ ବେକ ସବୁ ଅଲଗା ହୋଇ ମୋତେ କବନ୍ଧ କରିଦିଏ ମୁଁ ନୀରବ ଦର୍ଶକ ହୋଇ ପଡ଼ିରହେ ନିଃସଙ୍ଗ ଦ୍ୱିପ୍ରହରରେ ଧୂସର ଚିଲର ଚିତ୍କାର ଶୁଣେ ପିଚୁ ରାସ୍ତାରେ ମରୀଚିକା ନାଚେ ଏବଂ କ୍ରମେ ସବୁ ଦୃଶ୍ୟ ଯାଇ ଗୋଟିଏ ଦୃଶ୍ୟ ମେଘ ଆଉ ତାରକାର ପ୍ରତୀକ୍ଷିତ ପାହାଚରୁ ଓହ୍ଲାଇ ଆସି ମୋ ପାଖରେ ଛିଡ଼ାହୁଏ ମୋ ହାତରେ ହାତ ରଖେ ମୋର ହାତ ଗୋଡ଼ ଆଖି କାନ ବେକ ଯେଝା ସ୍ଥାନକୁ ଫେରି ଆସନ୍ତି ହଠାତ୍ ମୋ ବାହୁ ତଳେ ଡେଣା ଗଜେଇ ଉଠେ ହଠାତ୍ ମୁଁ ସବୁ ଶକ୍ତି ଲଗାଇ ଚିତ୍କାର କରିଉଠେଁ ଦେବୀ ଦେବୀ ଦେବୀମୋର ଏ ମଧ୍ୟାହ୍ନରେ ତୋ ଶାଢ଼ିର ନୀଳ ଅଞ୍ଚଳ ବି ଡେଣା ହୋଇଯାଉଛି ତୁ ବି ଉଡୁଛୁ ମୁଁ ବି ଉଡୁଛି ମୁଁ ବି ଉଡୁଛି ତୁ ବି ଉଡୁଛୁ ତେଣୁ ତୋ ପାଇଁ ମୁଁ ଅନେକ କିଛି ମାନେ ଅବଶ୍ୟ ଅନେକ କିଛି ମାନେ ମୁଁ ତୋତେ ପାର୍କରେ ବସାଇ ଗପ କହିବି ନାହିଁ ଘର କୋଣରେ ଲୁଚି ଲୁଚି ଚୁମା ଖାଇବିନାହିଁ ତୋ ଛାତିରେ ମୁଣ୍ଡରଖି ସମୟର ଶବ୍ଦ ଶୁଣିବାକୁ ଚେଷ୍ଟା କରିବି ନାହିଁ ଗୋଟିଏ ବ୍ୟକ୍ତିଗତ ଶୂନ୍ୟ ମୁହୂର୍ତ୍ତପାଇଁ ତୋ ନିକଟରେ ଆଣ୍ଠୁମାଡ଼ି ବସି ପ୍ରାର୍ଥନା କରିବିନାହିଁ କାରଣ ତୋର ଡେଣା ଅଛି ବର୍ତ୍ତମାନ ବାୟୁମଣ୍ଡଳ ଆମର ମେଘ ଆମର ସୂର୍ଯ୍ୟ ଚନ୍ଦ୍ର ତାରା ଆମର ଲହରୀ ଦ୍ୱୀପ ବଣ ପର୍ବତ ସବୁ ଆମର ଦେବୀମୋର ଏଇ ମୁହୂର୍ତ୍ତକୁ ଆଉ ମୁହୂର୍ତ୍ତର ସବୁ ଅବ୍ୟକ୍ତ ବ୍ୟଞ୍ଜନା ଅନେକ ଅବ୍ୟକ୍ତ ଶବ୍ଦର ପଟୁଆର ତୋ ପାଇଁ ସଜାଗ ରହିଛି ଅନେକ ବିକ୍ଷିପ୍ତ ଚିନ୍ତା ଆଉ ଅସମ୍ଭବ କଳ୍ପନାକୁ ତୋ ପାଇଁ କାଗଜର ବାକ୍‌ସରେ ବନ୍ଦୀକରି ରଖିଛି ମୁଁ ଜାଣେ ମୋର ବର୍ତ୍ତମାନ ଦୁଃଖ ହୁଏନା ଅଭିମାନ ଆସେନା ଈର୍ଷା କରି ପାରେନା କେବଳ ସ୍ୱପ୍ନ ଦେଖେଁ ନିରାଲମ୍ବ ସ୍ୱପ୍ନ ସ୍ୱପ୍ନ ଭିତରେ ସ୍ୱପ୍ନ ତା' ଭିତରେ ବି ସ୍ୱପ୍ନ ସ୍ୱପ୍ନ ଶେଷହୁଏ ନାହିଁ ଆସେ ଯାଏ ଯାଏ ଆସେ ଗୋଟିଏ ଉପଲବ୍‌ଧିର ଶେଷ ନହେଉଣୁ ଆଉ ଗୋଟିଏ ଉପଲବ୍‌ଧି ଆଉ ଗୋଟିଏ ଅନୁଭବ ପୁଣି ଗୋଟିଏ ନୂତନ ଅନୁଭବ ଯେଉଁ ଅନୁଭବରେ ମୁଁ ଅନୁଭବ କରେ ମୁଁ ଗୋଟିଏ କୁକୁର ପାଲଟି ଯାଇଛି ଅବଶ୍ୟ ଜଣେ କିଏ କହିଥିଲେ ମୁଁ ମଣିଷର ପାଦ ପାଖରେ କୁକୁର ହୋଇ ବସେ ତା' ଭିତରର କୁକୁରଟାକୁ ଦେଖିବି ବୋଲି ମୁଁ କିନ୍ତୁ ଭିନ୍ନ ପ୍ରକାର କୁକୁର ସାଜେ କାରଣ ମୁଁ ଚେଇଁ ଚେଇଁ ସ୍ୱପ୍ନ ଦେଖେ ଅସଂଖ୍ୟ ଅଣାକାର ସ୍ୱପ୍ନ ଆଉ ମୁଁ ସାଂଘାତିକ ବିଶ୍ୱସ୍ତ ହୋଇଯାଏ ମୋ ଓଠ ପାଖରେ

ଅନେକ ନାରୀର ଓଠ ମୋ ବାହୁ ବେଷ୍ଟନୀ ମଧ୍ୟରେ ଅନେକ ନାରୀଦେହ ଆଉ ମୋ ଶଯ୍ୟାରେ ଛାରପୋକ ଭଳି ଅନେକ ନାରୀର ଚୁମ୍ବନ ଆଉ ମଶାପରି ଅନେକ ନାରୀର କଳଗୁଞ୍ଜନ ତଥାପି ମୁଁ ବିଶ୍ୱସ୍ତ ତେଣୁ ସେମାନଙ୍କ ଆଖିରେ ମୋ ପୌରୁଷସ୍ଥିତିର ସନ୍ଦେହ ପ୍ରକାଶିତ ହୁଏ ଯଦିବା ମୁଁ ଧର୍ମ ଅଧର୍ମ ନ୍ୟାୟ ଅନ୍ୟାୟ ମାନେନା ସେଗୁଡ଼ିକ ମୋ ପାଇଁ ଆପେକ୍ଷିକ ଶବ୍ଦ ତଥାପି ମୁଁ ଜାଣେନା କାହିଁକି ବଙ୍କା ଲାଞ୍ଜ ନେଇ ଇତସ୍ତତଃ ହୁଏଁ ତେଣୁ ତୋତେ କେବଳ ଚାହେଁ ସବୁବେଳେ ଚାହେଁ କି ନା ଠିକ୍ ରୂପେ ଜାଣେନା ଯଦିବା ମୁଁ ଭଲକରି ଜାଣେ ଅନେକ ଅନିରାମିଷାଶୀ ମୁହୂର୍ତ୍ତରେ ଭୀଷଣ ଶୁକ୍ରକୀଟର ଶୋଭାଯାତ୍ରା ଲମ୍ବିଯାଏ ତୋର ସାମୁଦ୍ରିକ ଜନନେନ୍ଦ୍ରିୟ ଆଡ଼େ ମୁହଁକରି ତଥାପି ସେଇଟା ସ୍ୱପ୍ନର ଟୁକୁରା ମାତ୍ର ସ୍ୱପ୍ନ ନୁହେଁ କାରଣ ସମୟ ଚାଲେ ମୁଁ ବି ଚାଲେ ତାର ହାତ ଧରି ମୋ ଶବକୁ କାନ୍ଧରେ ପକାଇ ତୋ ପାଇଁ ସ୍ୱପ୍ନର ଥଳିକୁ ହାତରେ ଝୁଲାଇ ଥରେ ଥରେ ଅଜବ ଖେୟାଲ୍ ସବୁ ହୁଏ ଖିଅର ହେଉ ହେଉ ବ୍ଲେଡ୍‌କୁ ହଠାତ୍ ବେକରେ ଲଗାଇ ସୂତାଖିଅ ପରି ରକ୍ତର ଧାର ଦେଖେ ମୁଁ କବାଟ ଝର୍କା ବନ୍ଦ କରି ଯୀଶୁଙ୍କ ଭଳି କ୍ରୁଶବିଦ୍ଧ ହୋଇ ଯନ୍ତ୍ରଣାର ସଂଜ୍ଞା ନିର୍ଣ୍ଣୟ କରିବାକୁ ଚେଷ୍ଟା କରେ ଫୁଲଗଛ ପାଖରେ ଛିଡ଼ା ହୋଇ ଫୁଲର ଯନ୍ତ୍ରଣା ଉପଲବ୍ଧି କରେ ମୁଁ ଶ୍ମଶାନକୁ ଯାଏ ମରିବା ପରିବର୍ତ୍ତେ ମୁଁ ଢୁଳେଇ ପଡ଼େ ଅସମ୍ଭବ ତନ୍ଦ୍ରାରେ ମୁଁ ମରିପାରେନା ଫୁଲ ହୋଇ ପାରେନା କ୍ରୁଶବିଦ୍ଧ ହୋଇପାରେନା କିମ୍ବା ବ୍ଲେଡ୍‌ରେ ମୋର ଶ୍ୱାସନଳୀ କାଟି ପାରେନା ମୁଁ କେବଳ ଯନ୍ତ୍ରଣା ପାଇବାର ସ୍ୱପ୍ନ ଦେଖେ ସ୍ୱପ୍ନ ଭିତରେ ସ୍ୱପ୍ନ ତା ଭିତରେ ସ୍ୱପ୍ନ ସ୍ୱପ୍ନ ଶେଷ ହୁଏନାହିଁ ଆସେ ଯାଏ ଯାଏ ଆସେ ଗୋଟିଏ ସ୍ୱପ୍ନର ବୃତ୍ତ ଭିତରେ ଆଉ ଗୋଟିଏ ଏହିପରି ଅସରନ୍ତି ସ୍ୱପ୍ନର ତରଙ୍ଗ ଉଠେ ସେ ତରଙ୍ଗରେ ଭାସୁଭାସୁ କାନ ଡେରି ଶୁଣେ ଏ ପଟେ ମୋ ମାଆର ଡାକ ଅନ୍ୟ ପଟେ ମୃତ୍ୟୁର ଆହ୍ୱାନ ମାଆ ଓ ମୃତ୍ୟୁ ଭିତରର ଶୂନ୍ୟସ୍ଥାନରେ ବସି ସ୍ୱପ୍ନ ଦେଖେ ତୋରି ସ୍ୱପ୍ନ ଗୋଟିଏ ନାରୀମୂର୍ତ୍ତିର ନିଥର ବକ୍ଷରେ ମୁହଁ ଲୁଚାଇ ମୁଁ ତ୍ରିଶଙ୍କୁ ହୋଇଉଠେଁ ହଠାତ୍ ବ୍ଲାକ୍ ଆଉଟ୍ ଭିତରେ ସାଇରେନ୍ ବାଜିଉଠେ ତାପରେ ଅସଂଖ୍ୟ ବୋମା ମୋ ଉପରେ ଖସିପଡ଼େ ମୁଁ ଅନ୍ଧ ହୁଏ ମୂକ ହୁଏ ପାଗଳ ହୁଏ ମୋ ଝୁଲରେ କେବଳ ଗନ୍ଧ ଥାଏ ଗନ୍ଧକ ନଥାଏ ତେଣୁ ମୁଁ ବିସ୍ଫୋରିତ ହୁଏନି କେବଳ ଦେହର ଟୁକୁରା ସବୁ ଟେକି ନେଇ ଶ୍ମଶାନକୁ ଛୁଟେ ଏବଂ ମରିବା ଇଚ୍ଛାକରି ସେଇଠି ଢୁଳେଇ ପଡ଼େଁ ତୁ ହଜିଯାଉ ତୋର ମୋର ଡେଣା କଟିଯାଏ ସମୁଦ୍ରପତ୍ତନର ନିମ୍ନତା ଆଉ ପର୍ବତ ଶ୍ରେଣୀର ଉଚ୍ଚତା ସବୁ ଏକାକାର ହୋଇ ପୁଣି ନୂତନ ସ୍ୱପ୍ନର ପଟୁଆର ତିଆରି ହୋଇଯାଏ ତୋର ଆଉ ମୋର ଅନେକ ରଙ୍ଗିନ ସ୍ୱପ୍ନର ଚିଠି ଆଉ କବିତାର ଥାକରେ ମୂଷା ତାର ଦାନ୍ତକୁ କାର୍ଯ୍ୟକାରୀ କରାଏ ମୂଷା ଦାନ୍ତର ନିରବଚ୍ଛିନ୍ନ କର୍‌କର୍ ଶବ୍ଦ ଶୁଣୁଶୁଣୁ ମୁଁ ନିଦ୍ରାର ଢେଉରେ ଚହଲି ଚହଲି ଯେତେବେଳେ ଦୂରକୁ ଆଗେଇ ଯାଏ ହଠାତ୍ କିଏ ଆସି ମୋ କାନରେ ଚୁପ୍‌ଚୁପ୍

କହେ କହ୍ନେଇ କହ୍ନେଇଟା ମୋର ତୋ ପାଇଁ ବଞ୍ଚିଛି ତୋ ଆତ୍ମାର ଡାକ ମୋ କାନରେ ବାଜିଛି ହଠାତ୍ ବିଛଣାରେ ଉଠି ବସେ ଦେଖେ ତୋରି ଚିଠି ମୋ ମଶାରି ଭିତରେ ଅନ୍ଧକାରରେ ଜୁଳୁଜୁଳିଆ ପୋକ ହୋଇ ଉଡ଼ିବୁଲୁଛି ମୁଁ ଦୁଇ ହାତରେ ସେଗୁଡ଼ିକ ସାଉଁଟି ଆଣିବାର ଚେଷ୍ଟାକରେ କିନ୍ତୁ ଦେଖେ ସେଗୁଡ଼ା ତୋର ହାତଲେଖା ଚିଠି ନୁହେଁ କେବଳ ସ୍ୱପ୍ନ ସ୍ୱପ୍ନ ଅସଂଖ୍ୟ ଆକାରହୀନ ସ୍ୱପ୍ନର ଟୁକୁରା ମୁଁ ବି ସ୍ୱପ୍ନ ହୋଇଯାଏ ଉଡ଼େ ଉଡ଼ିବୁଲେ ମଶାରି ଭିତରେ ମଶାରି ଟପି କୋଠରି ଭିତରେ କୋଠରି ଟପି ବାହାର ଜଗତରେ କ୍ରମେ ବାହାର ଛାଡ଼ି ଦେଶ ବିଦେଶରେ ଟୁକୁରା ଟୁକୁରା ଗ୍ୟାସୀୟ ସ୍ୱପ୍ନ ହୋଇ ମୁଁ ପରିବ୍ୟାପ୍ତ ହୋଇଯାଏ କ୍ରମେ ପୃଥିବୀର ମାନଚିତ୍ର ଛାଡ଼ି ଚନ୍ଦ୍ରର ଅଧିତ୍ୟକା ମଙ୍ଗଳର ସମାନ୍ତରାଳ କେନାଲ ଏବଂ କ୍ରମେ କ୍ରମେ ସମଗ୍ର ବିଶ୍ୱପରିବ୍ୟାପ୍ତ ହୋଇଯାଏଁ ଗ୍ରହ ନୀହାରିକା ନକ୍ଷତ୍ରର ବନ୍ଧନୀ ପାରିହୋଇ ସାମଗ୍ରିକ ବିସ୍ମୃତି ମଧ୍ୟରେ ମୁଁ ହଜିଯାଏ, ସେତେବେଳେ ଈଶ୍ୱର-ମୃତ୍ୟୁ-ଯୌନତା ଇତ୍ୟାଦି ସୀମିତ ପରିସୀମାର ସେପାରେ ଏକ ଅସମ୍ଭବ ପ୍ରଶାନ୍ତ ବ୍ୟାପ୍ତିରେ ଲୀନ ହୋଇ ପୁଣି ଫେରିଆସେ ତୋରି ପାଖକୁ ପୁଣି ଚିତ୍କାର କରେ ଦେବୀ ଦେବୀ ଦେବୀ ମୋର ତୋରି ପାଇଁ ସବୁ ନକ୍ଷତ୍ରରେ ଗୋଟିଏ ଅର୍ଥ ସବୁ ନୀହାରିକାରେ ଗୋଟିଏ ଧ୍ୱନି ସବୁ ଗ୍ରହ ଉପଗ୍ରହରେ ଗୋଟିଏ ମାତ୍ର ବ୍ୟଞ୍ଜନା ସବୁ ଅକ୍ଷାଂଶ ଦ୍ରାଘିମାରେ ସେଇ ଗୋଟିଏ ସୂଚନା ଜାଣେନାହିଁ ସେଇଟା କଣ ମୁଁ ବୁଝିପାରେନା ସେ ଶବ୍ଦ ଧ୍ୱନି ବ୍ୟଞ୍ଜନା ସୂଚନାର ଅର୍ଥ କଣ ମୁଁ କେବଳ ଅନୁଭବ କରେ ବୋଧହୁଏ ଏସବୁ ମିଥ୍ୟା କିମ୍ବା ସବୁ ସତ୍ୟ କିମ୍ବା ସବୁ ସତ୍ୟମିଥ୍ୟା ମିଥ୍ୟାସତ୍ୟ କେବଳ ଅନୁଭବ ଉପଲବ୍ଧି ଏବଂ ତଜ୍ଜନିତ ସ୍ୱପ୍ନ ସ୍ୱପ୍ନ ସ୍ୱପ୍ନ ନିରବଚ୍ଛିନ୍ନ ଅଣାକାର ଅବ୍ୟକ୍ତ ସ୍ୱପ୍ନ ଯାହାର ରୂପ ନାହିଁ ଗନ୍ଧ ନାହିଁ ରସ ନାହିଁ ମୁଁ ବୋଧହୁଏ ସବୁ ଜାଣେ ମୁଁ ଜାଣେ ଯେ ମୁଁ ଜାଣେ ମୁଁ ଜାଣେ ଯେ ମୁଁ ଜାଣେ ଯେ ମୁଁ ଜାଣେ ନା ମୁଁ ଜାଣେନା ଯେ ମୁଁ ଜାଣେନା ଏବଂ ଏହିପରି ଅନେକ ସୂକ୍ଷ୍ମ ଅବ୍ୟକ୍ତ ଶବ୍ଦର ତରଙ୍ଗ ନେଇ ଓ ତା ଭିତରେ ତୋତେ ଫେଣ୍ଟାଫେଣ୍ଟି କରି ଦିବାରାତ୍ରି ପ୍ରଚ୍ଛନ୍ନ ଭାବରେ ସ୍ୱପ୍ନ ଦେଖେ ସ୍ୱପ୍ନ ଭିତରେ ସ୍ୱପ୍ନ ତା ଭିତରେ ବି ସ୍ୱପ୍ନ ତା ଭିତରେ ସ୍ୱପ୍ନ ତା ଭିତରେବି...



**[‘ଯୁଗଭେରୀ’ ନବମ-ଦଶମ ଓ ଏକାଦଶ-ଦ୍ୱାଦଶ ସଂଖ୍ୟା, ୧୯୭୧; ପରେ ଫନୀ ମହାନ୍ତି ଓ ସୁବୋଧ ଦାସଙ୍କ ସଂଯୋଜନାରେ ଫ୍ରେଣ୍ଡସ୍ ପବ୍ଲିଶର୍ସ ପ୍ରକାଶିତ ‘କଥା-ଉପକଥା’, ପ୍ରଥମ ସଂଖ୍ୟା, ୧୯୭୫ରେ ପୁନର୍ମୁଦ୍ରିତ।]**

# ଜୀବନ ଯନ୍ତ୍ରଣା ଓ ଯାହା ଯେମିତି ହୁଏ

**ଉପକ୍ରମଣିକା :**

ଜୀବନରେ ଅନେକ ଭଲ ମୁହୂର୍ତ୍ତ ଆସିଲେ ବି ଗୋଟିଏ ଦୁଇଟି ମୁହୂର୍ତ୍ତ କେବଳ ପ୍ରକୃତଭାବେ ଭଲପାଇବାର, ଅନ୍ୟଗୁଡ଼ିକ ସେଇ ଭଲ ପାଇବାର ପ୍ରସ୍ତୁତି ଓ ଫଳାଫଳ । କାରଣ–

କେଉଁ ଏକ ଶ୍ମଶାନରେ ଏବେ ଏକ ପୁରୁଷ ଦେହର ଶେଷ ପୋଡ଼ା ହାଡ଼ର ଟୁକୁରା ଘାସ ଆଉ ଚୁଚୁଡ଼ିର ଚେର ତଳେ ମାଟିସହ କ୍ଷୟ ହୋଇ ଆସୁଥିବା କଥା, ଆଉ ଖୁବ୍ ଦୂର ଗାଁର ଏକ ଜୀର୍ଣ୍ଣ ଛପର ତଳେ ଗୋଟିଏ ନାରୀର ଚର୍ମ ପୃଥିବୀର ପାଣି ପବନରେ ବାର୍ଦ୍ଧକ୍ୟ ଆଡ଼କୁ ମୁହଁ କରି ଧୀରେ ଧୀରେ ଢିଲା ହୋଇ ଆସୁଥିବା କଥା ମୁଁ ଖୁବ୍ କମ୍ ଚିନ୍ତା କରିଛି, ଯଦିବା ମୋ ଜନ୍ମର କାରଣ ସେମାନେ । ଯେତେବେଳେ ପୃଥିବୀର ବ୍ୟସ୍ତତା ଭିତରେ ମେଲେଇ ଦେଇଥିବା ମୋର ଅସ୍ତିତ୍ୱକୁ ଗୋଟାଇ ଆଣି କେବଳ 'ମୁଁ'ରେ ପରିଣତ କରିଦିଏଁ, ସେତେବେଳେ କିଛି ସମୟ ପାଇଁ ଦେଖାଯାଏ ସେଇ ଦୁଇଯୋଡ଼ା ଆଖି । ସେ ଆଖିଗୁଡ଼ିକ ମୋ କାନ୍ଥରେ ଟଙ୍ଗା ହୋଇଥିବା ଷ୍ଟୁଡ଼ିଓର ଝାଳବୁହା ଆଲୋକ ତଳେ କ୍ୟାମେରା ଲେନ୍ସକୁ ସ୍ଥିର ଦୃଷ୍ଟିରେ ଚାହିଁରହିଥିବା ଆଖି ନୁହେଁ, ବରଂ ଏକ ଭିନ୍ନ ଧରଣର ଆଖି ।

**ପ୍ରଥମ ଆଖି, ଗୋଟିଏ ମୁହୂର୍ତ୍ତର :**

ବାପା ଶବ୍ଦଟି ଖୁବ୍ ଭିତରୁ ଉଚ୍ଚାରଣ କଲେ କାହିଁକି ଯେ ସେଇ ଗୋଟିଏ ପ୍ରକାର ଆଖି ମୋ ସାମ୍ନାରେ ଭାସି ଉଠେ, ତାହା ମୁଁ କହିପାରିବି ନାହିଁ । ଖୁବ୍ ଚେଷ୍ଟା କଲେ ବି ବାପାଙ୍କୁ ସମ୍ପୂର୍ଣ୍ଣ ଏକ ଅବୟବରେ ମୁଁ ମନେ କରିପାରେନି, କେବଳ ସେଇ ଦୁଇଟି ଆଖି ସହ ଗୋଟିଏ ଅଧା କାଳ୍ପନିକ ଚେହେରା ମୋ ସାମ୍ନାରେ କ୍ଷଣକ ପାଇଁ ଛିଡ଼ାହୁଏ ।

ଶୈଶବର ସୀମାନ୍ତରେ ସେତେବେଳେ ମୋର ବୟସ ପନ୍ଦରଟା ମାରୁଥାଏ । ହଠାତ୍ ଗୋଟିଏ ଦ୍ୱିପ୍ରହରରେ କଣ ଘଟିଗଲା ମୁଁ ବୁଝିପାରିଲି ନାହିଁ । ମୁଁ ଦେଖିଲି

ଅନେକ ପ୍ରକାର ଆଖି, ଆଉ ସବୁ ଆଖିରେ ଏକ ପ୍ରକାର ଭାଷା । ଆମ ଦାଣ୍ଡ ଗଡ଼ିଆର ଆମ୍ବଗଛ ମୂଳରେ ସେ ଆଖିମାନଙ୍କର ସମ୍ମିଳନୀ । ଗଡ଼ିଆରେ ଜାଲ ଓ ଅନେକ ବ୍ୟସ୍ତ ମୁହୂର୍ତ୍ତ । ଶେଷରେ ମାଛ ନୁହେଁ, ଗୋଟିଏ ସାତ ଆଠ ବର୍ଷର ଝିଅ ଜାଲରେ ଧରା ଦେଲା । ବେଲୁନ୍ ଭଳି ପେଟ ଆଉ ଅସ୍ୱାଭାବିକ ବଡ଼ ଆଖି । ଝିଅଟି ମୀନା, ମୋ ସାନଭଉଣୀ ।

ମୁଁ ସେତେବେଳେ ଦେଖିଲି ଦାଣ୍ଡ ଗଡ଼ିଆ ଆମ୍ବଗଛ ମୂଳରେ ଅନେକ ଆଖି ମଧ୍ୟରୁ ଦୁଇଟି ବିଶେଷ ଆଖି–ନିଷ୍ପ୍ରଭ, ଲୁହହୀନ, ତେଜହୀନ, ନିର୍ବାକ୍ । ଏକ ମୃତ ଇଲିଶିର ଆଖି ଭଳି ନିଷ୍ପଲକ । ସେ ଆଖି ଦୁଇଟି ମୋ ବାପାଙ୍କର ।

ମୁଁ ଆଜି ବୁଝିଛି, ଜୀବନର ଅନେକ ମୁହୂର୍ତ୍ତରେ ବାପା ମୋତେ ଖୁବ୍ ଭଲ ପାଉଥିଲେ ବି ଗୋଟିଏ ମୁହୂର୍ତ୍ତ ବ୍ୟତୀତ ଅନ୍ୟ ମୁହୂର୍ତ୍ତରେ ବାପାଙ୍କୁ ମୁଁ ଗଭୀର ଭାବେ ଭଲ ପାଇପାରି ନଥିଲି । କାରଣ ସେଇ ମୁହୂର୍ତ୍ତରେ ମୁଁ ହୁଏତ ଅନୁଭବ କରିଥିଲି ବାପା ଯେପରି ଠିକ୍ ନିର୍ଭୁଲଭାବେ ବଞ୍ଚିଛନ୍ତି ।

**ଦ୍ୱିତୀୟ ଆଖି, ଅନ୍ୟ ଏକ ମୁହୂର୍ତ୍ତର :**

ମୁଁ ଜାଣେ, ମା'ଙ୍କୁ ବି ସେମିତି ଗୋଟିଏ ମୁହୂର୍ତ୍ତରେ ମୋତେ ଖୁବ୍ ବେଶୀ ଭଲ ଲାଗିଥିଲା । କାରଣ ମା'ଙ୍କୁ ମନେ ପଡ଼ିଲେ ସେଇ ମୁହୂର୍ତ୍ତର ଆଖିଟା ହିଁ କେବଳ ଦେଖାଯାଏ ।

ଗାଁର ସେଇ ବୀଭତ୍ସ ଅନ୍ଧକାର ରାତି । ଝଡ଼ଟା ଅନେକ ବେଳୁ ଥମି ଯାଇଥିଲା, ବୃଷ୍ଟି ବି କ୍ଳାନ୍ତ; ଦୂରର ଆର୍ଦ୍ର ବାୟୁମଣ୍ଡଳରେ ଦାଣ୍ଡ ଗଡ଼ିଆରୁ କେଁ-କଟରର ଶ୍ରୁତିକଟୁ ଶବ୍ଦତରଙ୍ଗ ଘରର ବାରିପଟେ କେଉଁ ଏକ ପୁରୁଣା ଡବା କିମ୍ବା ଭଙ୍ଗା ଟିଣ ଉପରେ ଚାଳରୁ ଝରୁଥିବା ଅବଶେଷ ବର୍ଷା ବିନ୍ଦୁର ଏକ ଠପ୍-ଠପ୍ ଭୌତିକ ଶବ୍ଦ, ଦୂର ଦିଗ୍‌ବଳୟରେ ବିଜୁଳି ଆଉ ମେଘର ଗୁଡୁଗୁଡୁ ଗର୍ଜନ, ଝର୍କା ଉପରେ ଅଧା ବଳା ପଡ଼ି-ଯାଇଥିବା ଧୂମାୟିତ ଲଣ୍ଠନ ଏବଂ ବିଭିନ୍ନ ରଙ୍ଗର ଔଷଧ ଓ ପାଣି ଗ୍ଲାସ, ପାଖ ମସିଣାରେ ଏଣେ ତେଣେ ଗୋଡ଼ ମୁଣ୍ଡ ରଖି ଶୋଇପଡ଼ିଥିବା ତିନୋଟି ଭାଇ ଭଉଣୀ ସମେତ ମୁଁ । ମଝିରେ ମଝିରେ କେବଳ ମଶାର ଗୁଣୁଗୁଣୁ କାନ୍ଦ ଆଉ ମା'ଙ୍କ ପଣତର ହାଓ୍ୱା । ଯେତେବେଳେ ମୁଁ ତନ୍ଦ୍ରାର ଢେଉରେ ଚହଲି ଚହଲି ଦୂରକୁ ଆଗେଇ ଯାଉଥିଲି ହଠାତ୍ ମା'ଙ୍କ ଚିତ୍କାରରେ ପୂର୍ବ ସ୍ଥାନକୁ ଫେରିଆସିଲି । ବାପାଙ୍କ ମୁହଁ କମ୍ବଳରେ ଘୋଡ଼ା ହୋଇଥିଲା । ଝାଳ ସରସର ମୁହଁରେ ମା' ଏକାଦିକ୍ରମେ ଦୁଇଥର ଚିତ୍କାର କରି ମୋତେ ଚାହିଁ ନିଷ୍ପଲକ ହୋଇ ବସିଯିବା ଦେଖି ମୁଁ କିଛି ବୁଝିପାରି ନଥିଲି । କିନ୍ତୁ ଯେତେବେଳେ

ସେଇ ରାତିରେ ବାରିପଟେ ତେନ୍ତୁଳି ଗଛରେ କୁରାଢ଼ି ଚୋଟ ବସିଲା, ମା'ଙ୍କ ବ୍ୟତୀତ ଅନ୍ୟମାନେ ଭୌତିକ କାନ୍ଦ କାନ୍ଦିଲେ, ସେତେବେଳେ ମୋ ସାମ୍ନାରେ ସବୁ କଥା ପରିଷ୍କାର ହୋଇଗଲା । କିନ୍ତୁ ଆଜି ଅନେକ ଦିନ ପରେ ବିଦେଶରେ, ମା'ଙ୍କ କଥା ମନେ ପଡ଼ିଲେ, ମନେପଡ଼େ ଝର୍କାରେ କଳା ପଡ଼ିଯାଇଥିବା ଧୂମାୟିତ ଲଣ୍ଠନ ସହ ଝାଳ ସରସର ମୁଖମଣ୍ଡଳ ଭିତରେ ଦୁଇଟି ନିଷ୍ପଲକ ବାଷ୍ପହୀନ ଆଖି । ମୁଁ ଆଜି ବୁଝିଛି, ମା'ଙ୍କୁ ସେଇ ମୁହୂର୍ତ୍ତରେ ଯେତେ ଭଲ ପାଇ ପାରିଥିଲି ଜୀବନର ଅନ୍ୟ କୌଣସି ମୁହୂର୍ତ୍ତରେ ଏତେ ବେଶୀ ଭଲ ପାଇପାରି ନାହିଁ । କରଣ ସେଇ ମୁହୂର୍ତ୍ତରେ ହୁଏତ ଅନୁଭବ କରିଥିଲି ଯେ ମା' ଠିକ୍ ନିର୍ଭୁଲ ଭାବେ ବଞ୍ଚିଛନ୍ତି ।

**ମୁଁ ଯେମିତି ବଞ୍ଚେ :**

ଯେତେବେଳେ ଗାଁରୁ ଚିଠି ଆସେ, ପଇସା ଅଭାବରେ ଚୁଲି ଜଳୁନାହିଁ କିମ୍ବା ମା'ଙ୍କର ଇଞ୍ଜେକ୍‌ସନ ଦରକାର ଅଥବା ମୋ ପ୍ରେମିକାର ବାପା ହଠାତ୍ କେଉଁ ଏକ ଅଭିଜାତ ଘରକୁ ତାଙ୍କ ଝିଅର ଫଟୋ ଓ ଜାତକ ପଠାଇ ଦିଅନ୍ତି, ମୁଁ ଚୁପ୍‌ଚାପ୍ ବସି କାନ ଡେରି ଶୁଣେ ମୋ ଭିତର ମହାଦେଶରେ କେମିତି ଗୋଟିଏ ପ୍ରକାର କାରଖାନା ଚାଲିଛି । ଶୁଣେ ମୋ ଦେହରେ ପୃଥିବୀର ସମସ୍ତ ଜୀବକୋଷ କଥାବାର୍ତ୍ତା ହେଉଛନ୍ତି, ଚାଲବୁଲ କରୁଛନ୍ତି । ମନେହୁଏ ଅନେକ ବ୍ୟଞ୍ଜନାର ଅକ୍ଷର ଯୋଡ଼ାଯାଇ ଏକ ଅଦୃଶ୍ୟ ପାଣ୍ଡୁଲିପିର ଛପାକାର୍ଯ୍ୟ ଚାଲିଛି ମୋର ଭିତର ପ୍ରେସ୍‌ରେ । ଆଉ ରକ୍ତ ନଦୀରେ ଭାସି ଯାଉଥିବା ପ୍ରତିଟି ସ୍ନାୟୁକୋଷ ଭିତରେ ଯେତେବେଳେ ଦୁଃଖ ଆଉ ଯନ୍ତ୍ରଣାର ଶଫରୀ ଲାଞ୍ଜ ମୁଣ୍ଡ ହଲାଇ ଖେଳି ବୁଲେ, ସେତେବେଳେ ମୁଁ ଅନୁଭବ କରେ ମୁଁ ବେଶ୍ ବଞ୍ଚିଛି ଏବଂ ଖୁବ୍ ବଞ୍ଚିଛି । ସେତେବେଳେ ମୋତେ ମନେହୁଏ ଏ ପୃଥିବୀରେ ବଞ୍ଚିବାର ଯଥେଷ୍ଟ ମାନେ ଅଛି । ଗଛ, ରାସ୍ତା, ପ୍ରେମିକା, ସୁନ୍ଦରୀ ଝିଅ ପୁଣି ହିଂସା, ସନ୍ଦେହ ଓ ଘୃଣା ଇତ୍ୟାଦିର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଅର୍ଥ ଅଛି । ସେ ଅର୍ଥର ଅନୁଭବ ଶରୀରର ନିଭୃତତମ ଚେତନାର କେଉଁ ଏକ ଅଦୃଶ୍ୟ ତାରରେ ବାଜି ଏକ ଅବ୍ୟକ୍ତ ଝଙ୍କାର ତୋଳେ, ସେ ଝଙ୍କାର ମୋର ପାଦ ନଖଠାରୁ ମୁଣ୍ଡ ବାଳ ପର୍ଯ୍ୟନ୍ତ ସମଗ୍ର ସ୍ନାୟୁକୋଷରେ ସଞ୍ଚରିତ ହୋଇ ପ୍ରମାଣ କରେ—ମୁଁ ବଞ୍ଚିଛି ଏବଂ ସାଙ୍ଘାତିକ ଭାବେ ବଞ୍ଚିଛି ।

କିନ୍ତୁ ଯେତେବେଳେ ସମସ୍ତ ଆତ୍ମୀୟ ଅନାତ୍ମୀୟଙ୍କ ଦେହ ସମ୍ପୂର୍ଣ୍ଣ ସୁସ୍ଥ ଥାଏ, ଗାଁ ଠିକଣାରେ ମନିଅର୍ଡ଼ର ଫର୍ମ ପୂରଣ କରି ସାଙ୍ଗସାଥୀଙ୍କ ଗହଣରେ ଯେତେବେଳେ ରେଷ୍ଟୋରାଁର ଟେବୁଲ ଆଉ ସିନେମା ଖିଡ଼ିକିରେ ପଇସା ବଢ଼ାଏ ଅଥବା କୌଣସି ଏକ ମାହେନ୍ଦ୍ରବେଳାରେ ପ୍ରେମିକାର ଦେହର ବାସ୍ନା ମୋ ଦେହର ପ୍ରତି ଲୋମକୂପରେ ସଞ୍ଚିତ

ହୋଇଯାଏ, ସେତେବେଳେ ମନେହୁଏ ମୋ ଭିତର ପ୍ରେସରେ ଶ୍ରମିକ ଧର୍ମଘଟ ହୋଇଛି, ରକ୍ତ ନଦୀରେ ଯନ୍ତ୍ରଣା ଆଉ ଦୁଃଖର ଶଫରୀ ନିସ୍ତେଜ ହୋଇ ଶୋଇଯାଇଛି ଓ ମୁଁ ଧୀରେ ଧୀରେ ଶବ ପାଲଟି ଯାଇଛି ଏବଂ ମୋ ସାମ୍ନାର ଘର, ଗଛ, ରାସ୍ତା, ପ୍ରେମିକା ହିଂସା, ଘୃଣା ଓ ସନ୍ଦେହ ଇତ୍ୟାଦି ବିଭିନ୍ନ ସ୍ୱର ମିଶି ନୈଶବ୍ଦ ଓ ଜଡ଼ତାର ସ୍ୱରରେ ପରିଣତ ହୋଇଯାଇଛି ।

**ସ୍ୱଗତ ସଂଳାପ: ଏକ**

ମା, ତୁମେ ହୁଏତ କିଛି ପାପ କରିଥିଲ, ନ ହେଲେ ମୋର ମା' ହୁଅନ୍ତ ନାହିଁ । ତୁମେ ଯେତେବେଳେ ମାତୃତ୍ୱର ଗର୍ବ ଗୌରବକୁ ମୂଳଧନ କରି ମୋତେ ଗର୍ଭାଶୟର ନୀଳ ଅନ୍ଧକାରରେ ବଢ଼ାଇ ଚାଲିଥିଲ, ସେତେବେଳେ କ'ଣ ଜାଣିଥିଲ ତୁମର ସମସ୍ତ ଦୁଃଖର କାରଣ ମୁଁ ହେବି ବୋଲି ! ବିଶ୍ୱାସ କର, ପୃଥିବୀରେ ଅନ୍ୟମାନଙ୍କ ନିକଟରେ ବଞ୍ଚିବାର ଅର୍ଥ ଯାହା, ମୋ ପାଖରେ ଆଦୌ ତାହା ନୁହେଁ । ତେଣୁ ମୋର ଜ୍ୱର ଉତ୍ତାପରେ ତାତିଲା ମଥାରେ ତୁମର ହାତପାପୁଲି ପାଣିପଟିଠାରୁ ଆହୁରି ଥଣ୍ଡା ଲାଗୁଥିଲେ ବି, ପାଖରେ ବସି ମୋତେ ଖୁଆଇଲା ବେଳେ ତୁମ ଆଖିରେ ଏକ ନୂତନ ନିମଜ୍ଜନତା ଚକଚକ କରୁଥିଲେ ବି, କେବଳ ଗୋଟିଏ ମୁହୂର୍ତ୍ତରେ ମୁଁ ତୁମକୁ ଭୀଷଣ ଭଲପାଇଛି, କିନ୍ତୁ ତୁମେ ଯେତେବେଳେ ମୋ ପାଇଁ ଅସ୍ଥିର ହୋଇ ଉଠିଛ, ମୋ ଲାଗି ତୁମ ଆଖିରେ ଲୁହ ଜକେଇ ଆସିଛି, ସେତେବେଳେ ଅନୁଭବ କରିଛି ମୁଁ ଯେପରି ବଞ୍ଚିବାର ଅର୍ଥ ଭୁଲି ଶବ ପାଲଟିଯାଉଛି । କାରଣ ମୁଁ ଭଲଭାବେ ବଞ୍ଚିରହିପାରିବି ସେଇ ମୁହୂର୍ତ୍ତରେ ଯେତେବେଳେ ଯନ୍ତ୍ରଣାର ଶଫରୀ ମୋ ସମଗ୍ର ସ୍ନାୟୁକୋଷରେ ଗୁରୁଣ୍ଡି ଗୁରୁଣ୍ଡି ବଞ୍ଚିବାର ସମ୍ବାଦ ପ୍ରଚାର କରିପାରିବ । ତେଣୁ ବଞ୍ଚିବା ପାଇଁ ତୁମର ପଣତ ଛାଡ଼ି ସହରରେ ରହି ପାଠ ପଢ଼ିବା ଆଳରେ ତୁମଠାରୁ ଦୂରେଇ ଆସିଲି, ଯେଉଁଠି ଗୋଟିଏ ପରିପୂର୍ଣ୍ଣ ମାତୃମୂର୍ତ୍ତି ପାଇଁ ମୁଁ ସବୁବେଳେ ବ୍ୟାକୁଳ ହେଉଛି, ଗୋଟିଏ ମସିଆ ପଣତର ହାୱାପାଇଁ ଅଣନିଃଶ୍ୱାସୀ ହୋଇଉଠୁଛି;. ଗୋଟିଏ ହଳଦିଲଗା ହାତର ସ୍ପର୍ଶ ଅଭାବରେ ନୁଖୁରା ମୁଣ୍ଡ ନେଇ ଖରାବର୍ଷାରେ ବୁଲୁଛି, କେଉଁ ଏକ ବର୍ଷଣମୁଖର ରାତିରେ ଜ୍ୱର ଯନ୍ତ୍ରଣାରେ ମା' ମା' ବୋଲି ଚିତ୍କାର କରି ଉଠୁଛି । ମା' ତୁମେ ପାଖରେ ଥିଲେ ତୁମ ପାଇଁ ଏତେ ବ୍ୟାକୁଳତା ନଥାନ୍ତା । ମୁଁ ଜାଣି ନଥାନ୍ତି ତୁମେ କି ପଦାର୍ଥ । ମା' ତୁମେ ଯେତେବେଳେ ମୋର ମା' ହୋଇଛ, ମୋ ଭଳି ବଞ୍ଚିବାର ଉପାଦାନ ସଂଗ୍ରହ କର, ରକ୍ତ ନଦୀରେ ଶୋଇଯାଇଥିବା ଯନ୍ତ୍ରଣାର ଟିକି ମାଛକୁ ଉତ୍ତେଜିତ କରି ବଞ୍ଚିବାର ମୃତସଞ୍ଜୀବନୀ ସଂଗ୍ରହ କର । ସଂଘର୍ଷର ବେଦୀ ଉପରେ ବଞ୍ଚିରହିବାର ଅନୁଭବ ହିଁ ଜୀବନ । ତେଣୁ ମୋତେ କେବଳ କ୍ଷମା କର ।

**ସ୍ୱଗତ ସଂଳାପ, : ଦୁଇ**

ଦେବୀ, ତୁ କାନ୍ଦୁଛୁ, ସତରେ ମୋତେ ଖୁବ୍ ଭଲ ଲାଗୁଛି । ମୂର୍ତ୍ତି କାନ୍ଦିପାରେ ନାହିଁ, ତେଣୁ ତୁ ବଞ୍ଚିଛୁ । ମୋର ଦୋଷ କ'ଣ କହ ? ମୁଁ କ'ଣ ତୋତେ ପ୍ରେମ କରୁଥିଲି ଜାଣି ଜାଣି ? ତୁ ଯଦି ସତରେ ମୋତେ ଭଲପାଉ ତା'ହେଲେ ପୃଥିବୀର ଶ୍ରେଷ୍ଠ ପାପ କରିଛୁ ଏବଂ ବଞ୍ଚିଯାଇଛୁ । ବଞ୍ଚିବା ପାଇଁ ତୁ କେବଳ ମୋତେ ଭଲ ପାଆ, ତୋର ମହାଧମନୀରେ ଶୋଇଯାଇଥିବା ଯନ୍ତ୍ରଣାର ଶଫରୀକୁ ଉଠାଇ ସାରା ସ୍ନାୟୁକୋଷରେ ବଞ୍ଚିବାର ସମ୍ବାଦ ପଠାଇଦେ । ତୋର ଅଭ୍ୟନ୍ତରରେ ମୋ ପାଇଁ ଉଠିଆସୁ କଳାହାଣ୍ଡିଆ ମେଘ, ତୋର ଲୋମକୂପ ମୂଳରେ ବାଜିଉଠୁ ଦୂର ଦିଗ୍‌ବଳୟ ତଳର ପୁଞ୍ଜିଭୂତ ମେଘର ଗର୍ଜ୍ଜନ । ମୁଁ ଯଦି ତୋତେ ମୋ ଦୁଇ ହାତ ଭିତରେ ପାଇଯାଏ, ତାହେଲେ କୋଣାର୍କର ମୈଥୁନ ମୂର୍ତ୍ତି ଓ ତୋ-ମୋ ଭିତରେ ପାର୍ଥକ୍ୟ କ'ଣ ? ତେଣୁ କ୍ରମେ ତୁ ଦୂରକୁ ଘୁଞ୍ଚିଯା, ପ୍ରତ୍ୟାଖ୍ୟାନର ଶବ୍ଦ ମୋ ପାଇଁ ଉଚ୍ଚାରଣ କର, ଘୃଣାର ପାଣ୍ଡୁଲିପି ମୋତେ ପଢ଼ି ଶୁଣାଇବାକୁ ଆରମ୍ଭ କର । ମୁଁ ଯେପରି ସକାଳ ସଞ୍ଜରେ ତୋତେ ଭାବନା କରେ, ମଧ୍ୟାହ୍ନ ମଧ୍ୟରାତ୍ରିରେ ସ୍ମରଣ କରେ, ତୋ ପାଇଁ ପୃଥିବୀରେ ଯେପରି ଦରିଦ୍ରତମ ଭିକ୍ଷୁକ ସାଜେ । ତା'ହେଲେ ମୁଁ ଅନୁଭବ କରିବି ମୋ ଭିତରେ ଗୋଟିଏ ପ୍ରେସ୍‌ର ଜାଗି ଉଠିବାର ଶବ୍ଦ–ଅକ୍ଷର ଖଞ୍ଜାଯାଇ ତୋରି ପ୍ରଶସ୍ତି ପ୍ରସ୍ତୁତ ହେଉଥିବାର ସୂଚନା ମୁଁ ଅନୁଭବ କରିବି ମୋର ପ୍ରତି ଜୀବକୋଷରେ । ତେଣୁ ତୁ ମୋ ପାଇଁ, ଅନ୍ତତଃ ମୋତେ ବଞ୍ଚାଇବାକୁ, ନାରୀସୁଲଭ ଅଧିକାରପ୍ରବଣତା ତ୍ୟାଗ କର । ପୃଥିବୀରେ କୌଣସି ଜିନିଷର ଅଧିକାର ଦୀର୍ଘଦିନ ସ୍ଥାୟୀ ହୁଏ ନାହିଁ । ତୋ ଘରର ଦକ୍ଷିଣ ପଟେ ଯେଉଁ ଘର ଦେଖୁଛୁ ସେ ଘର ଦିନେ ଗୋଟିଏ ମଣିଷର ଥିଲା, ଆଜି ତାହା ଉଦ୍ଭିଦର, ବାୟାଚଢ଼େଇର, ସରୀସୃପର । ତେଣୁ ମୁଁ ତୋର– ଏକଥା ଭାବିବା ମୂର୍ଖତା । ମୁଁ ଚାହେଁ ତୁ ଦୁର୍ଲ୍ଲଭ ହୋଇଯା, ଦୁଷ୍ପ୍ରାପ୍ୟ ହୋଇଯା, ରହସ୍ୟମୟୀ ହୋଇଯା । କେଉଁ ଏକ ଘନଘୋର ରାତିରେ ଶ୍ମଶାନର ସାହାଡ଼ାଗଛ ମୂଳେ ଛିଡ଼ା ହୋଇ ଯେପରି ତୋରି ନାମ ଧରି ମୁଁ ଚିତ୍କାର କରେ, କେଉଁ ଏକ ବିଷୁବ ମଧ୍ୟାହ୍ନରେ ଭୀଷଣ ବାଲିଝଡ଼ ମଧ୍ୟରେ ତୋତେ ଯେପରି ଅନ୍ୱେଷଣ କରେ । ତା'ହେଲେ ମୋର ଭଲ ପାଇବା ସାର୍ଥକ ହେବ ଏବଂ ମୁଁ ଅନୁଭବ କରିବି ପ୍ରକୃତରେ ବଞ୍ଚିରହିଛି ବୋଲି । ତୁ ବି ଏହିଭଳି ଯନ୍ତ୍ରଣା ମଧ୍ୟରୁ ବଞ୍ଚିବାର ଉପାଦାନ ସଂଗ୍ରହ କର ଏବଂ ମୋତେ ଭଲପାଇ ଯଦି ତୁ ସାଙ୍ଘାତିକ ଭୁଲ କରିଛୁ ବୋଲି ଭାବିନେଉ, ତାହେଲେ ମୁଁ ଆଦୌ ଦୁଃଖିତ ନୁହେଁ ଏବଂ ଯଦି ସମ୍ଭବ ହୁଏ ତୁ ମୋତେ କ୍ଷମା କରିପାରୁ ।

**ବଞ୍ଚିବାର ନୂତନ ଖସଡ଼ା :**

ଚଳମାନ ପଦାର୍ଥ ସଜୀବ ଏବଂ ଜଡ଼ ପଦାର୍ଥ ନିର୍ଜୀବ ହୋଇଥିଲେ ରେଳଗାଡ଼ି ସଜୀବ ହୋଇଥାନ୍ତା ଆଉ ବରଗଛ ନିର୍ଜୀବ ହୋଇଥାନ୍ତା । ତେଣୁ ଜୀବନର ଅନୁଭବ ହିଁ ସଜୀବତାର ଲକ୍ଷଣ । ଇଦାନିଂ ମୁଁ ଅନୁଭବ କରୁଛି ଯେ ଏ ଗ୍ରହରେ ଆଦୌ ଗତି ନାହିଁ, ମୋ ଭିତରେ ପ୍ରେସରେ ଯେପରି ଶ୍ରମିକ ଧର୍ମଘଟ ହୋଇଛି । ରକ୍ତ ନଦୀରେ ଯନ୍ତ୍ରଣାର ଶଫରୀ ଅନେକ ଦିନରୁ ଯେପରି ପଚି ନଷ୍ଟ ହୋଇଗଲାଣି । କାରଣ ସବୁଦିନେ ଗୋଟିଏ ପ୍ରକାରର । ମୁଁ ଆଜି ସକାଳୁ ଉଠିଛି, ଖବରକାଗଜ ପଢ଼ିଛି, ଗାଧୋଇଛି, ଖାଇଛି, ଅଫିସ ଯାଇଛି, ସନ୍ଧ୍ୟାରେ ବୁଲିଛି, ବନ୍ଧୁମାନଙ୍କ ସଙ୍ଗେ ଅନେକ ସମୟ ଧରି ସାହିତ୍ୟ-ସିନେମା-ରାଜନୀତି ଚର୍ଚ୍ଚା କରିଛି, ରାତିରେ ଖାଇଛି, ଶୋଇଛି । ମୁଁ କାଲି ଠିକ୍ ଏଇଆ କରିଥିଲି ଆଉ ଆସନ୍ତା କାଲି ଠିକ୍ ଏଇଆ କରିବି । କାଲି ଠିକ୍ ସମୟରେ ଏକ୍‌ସପ୍ରେସ ଆସିଥିଲା, କାଲି ବି ଆସିବ, ସବୁଦିନ ପରି ଏଇ ଲୁହାଧାରଣା ଉପର ଦେଇ ଗଡ଼ିଯିବ । ମୁଁ ବି ଠିକ୍ ସେମିତି । ମୁଁ ତେଣୁ କିଛି ଗୋଟେ ନୂତନ ଧାରା ଚାହେଁ, ମୁଁ ମୋତେ ଅନୁଭବ କରିବାକୁ ଚାହେଁ ଯନ୍ତ୍ରଣାର ସ୍ନାୟୁକୋଷକୁ ଉତ୍ତେଜିତ କରି ।

ମନେକର ଏଇଟା ଖୁବ୍ ଅନ୍ଧକାର ରାତି । ପୃଥିବୀରେ ସବୁ ଠିକ୍ ଠାକ୍ ଅଛି, କିନ୍ତୁ ମୁଁ ଅନୁଭବ କରୁଛି ମୋ ଆଖିର ଉପତ୍ୟକା ସେପଟରୁ ଭୀଷଣ ଗୋଟିଏ ଉଚ୍ଛ୍ୱାସ ମୋର ସମଗ୍ର ସତ୍ତାକୁ ଗ୍ରାସ କରିବାକୁ ଆସୁଛି । ମୁଁ ଖୁବ୍ ଅନ୍ଧକାର ମଧ୍ୟରେ ଯାଇ ରେଳପୋଲ ଉପରେ ଛିଡ଼ା ହୋଇଛି ଓ ମୁହୂର୍ତ୍ତର ଖିଆଲରେ ତଳକୁ ଖସି ପଡ଼ିଛି । ପାଖରେ କେହି ନାହିଁ—କେବଳ ଅନ୍ଧକାର । ଗୋଟିଏ କୁକୁର କୁଆଡୁ ଆସି ମୋର କାନ କାମୁଡ଼ି ଟାଣିନେବାର ଉପକ୍ରମ କରୁଛି ଏବଂ ପାଦ ପାଖରେ ବିଲୁଆ କି କ'ଣ ମୋ ପାଦର ହାଡ଼କୁ ଅନ୍ଧକାରରେ କଟକଟ କରି ଚୋବାଇବାରେ ଲାଗିଛି । କ୍ରମେ ମୋର ଗୋଟିଏ ଆଖିରେ ହାତ ଦେଇ ଅନୁଭବ କରୁଛି ଆଖି କୋରଡ଼ରେ କେବଳ ତରଳ ପଦାର୍ଥ । ଅନ୍ୟ ଆଖିରେ ଗୋଟିଏ ପକ୍ଷୀର ଅଣ୍ଡ, ନର୍ଦ୍ଦମାରେ ବତକର ଚଞ୍ଚୁ ଚକ୍ ଚକ୍ କଲାପରି ତରଳ ପଦାର୍ଥ ମଧ୍ୟରେ ଘୂରି ବୁଲୁଛି । କ୍ରମେ ମୋର ନାଭିଦେଶ ଖୋଳା ହୋଇଯାଉଛି ସେହି ପକ୍ଷୀର ଅଣ୍ଡରେ । ତା' ଭିତରୁ ସୁଦୀର୍ଘ କ୍ଷୁଦ୍ରାନ୍ତ ଇତ୍ୟାଦି ସର୍‌ସର୍ କରି ଟାଣି ନେଉଛନ୍ତି କୁକୁର ବିଲୁଆ ପ୍ରଭୃତି । କ୍ରମେ ମୁଁ ଅନୁଭବ କରୁଛି ମୋର ପାକସ୍ଥଳୀ ଓ ତା'ପରେ ଫୁସ୍‌ଫୁସ୍ ଏବଂ ଶେଷରେ ହୃତ୍‌ପିଣ୍ଡକୁ ଛିଣ୍ଡାଇ ବାହାରକରି ନେଉଛନ୍ତି ସେମାନେ । କ୍ରମେ ମୁଁ ପୃଥିବୀର ପଶୁପକ୍ଷୀର ପାକସ୍ଥଳୀକୁ ବଣ୍ଟା ହୋଇଯାଉଛି ।

ପୋଲ ଉପରେ ଅନ୍ୟ ଏକ 'ମୁଁ' ଛିଡ଼ା ହୋଇ ଅସ୍ପଷ୍ଟ ସ୍ୱରରେ କହି ଉଠିଛି–ଆହା ବିଚରା ! ହଠାତ୍ ମୋତେ ମନେ ହୋଇଛି ମୋର ବହୁତ କାମ–ଏପରି ହାୱାରେ ନ ଭାସି କାମରେ ମନ ଦେବା ଉଚିତ ।

କିନ୍ତୁ ଠିକ୍ ସେଇ ମୁହୂର୍ତ୍ତରେ ମୁଁ ଅନୁଭବ କରେ ଯେ ମୁଁ ମୋ ପାଇଁ ବଞ୍ଚିଛି । ପୃଥିବୀରେ ସୁଖ-ଦୁଃଖ, ଆନନ୍ଦ-ଯନ୍ତ୍ରଣାର ସ୍ୱତନ୍ତ୍ର ଅର୍ଥ ଅଛି । ମୋ ଭିତରେ ଘଣ୍ଟା ଘଣ୍ଟା ଶବ୍ଦ କରି ଗୋଟିଏ ପ୍ରେସରେ ଅନୁଭବର ଖସଡ଼ା ଛପାଚାଲିଛି ଓ ସେଇ ଆନନ୍ଦ ଓ ଯନ୍ତ୍ରଣାର ଶଫରୀ ଗୁରୁଣ୍ଡି ଗୁରୁଣ୍ଡି ମୋ ସମଗ୍ର ସ୍ନାୟୁକୋଷରେ ବଞ୍ଚିବାର ବାର୍ତ୍ତା ପହଞ୍ଚାଇ ଦେଉଛି ଏବଂ କ୍ରମେ ଦୈନନ୍ଦିନ ଜଡ଼ତାରୁ ମୁଁ ଆଶ୍ଚର୍ଯ୍ୟଜନକ ଭାବେ ମୁକ୍ତି ଲାଭ କରି ନୂତନ ଭାବେ ଜନ୍ମଲାଭ କରିଛି ।



**['ଝଙ୍କାର'–୨୩ଶ ବର୍ଷ ନବମ ସଂଖ୍ୟା ଧନୁ ୧୩୭୯ ଡିସେମ୍ବର ୧୯୭୧ରେ ପ୍ରକାଶିତ । କନ୍‌ହେଇଲାଲ ଦାସଙ୍କ ମୃତ୍ୟୁପରେ ଏହି ଗଳ୍ପଟି 'ଶଫରୀ' ନାମରେ 'ଗଳ୍ପ' (ସପ୍ତଦଶ-ଅଷ୍ଟାଦଶ ସଂକଳନ, ଜାନୁଆରୀ-ଜୁନ୍ ୧୯୭୬)ରେ ମଧ୍ୟ ପୁନର୍ବାର ପ୍ରକାଶ ପାଇଥିଲା । ମାତ୍ର ବିଷୟ ଓ ଗଠନଗତ କେତେକ ପାର୍ଥକ୍ୟରୁ ତାହା 'ଝଙ୍କାର'ରେ ପ୍ରକାଶିତ ଗଳ୍ପର ପୂର୍ବବର୍ତ୍ତୀ ବୋଲି ଜଣାଯାଏ । ତେଣୁ 'ଗଳ୍ପ'ରେ ପ୍ରକାଶିତ ଗଳ୍ପଟି ପରିଶିଷ୍ଟରେ ସଂଯୋଜିତ କରାଯାଇଛି ।]**

# ସେଇ ଅନିବାର୍ଯ୍ୟ ରକ୍ତଚକ୍ଷୁ

ମୁଁ ଦେଖିଲି, ମୁଁ କେଉଁ ଏକ ନୂତନ ଷ୍ଟେସନରେ ଓହ୍ଲାଇ ପଡ଼ିଛି, ଏଣେ ତେଣେ ଚାହିଁଲା ମାତ୍ରେ ହଠାତ୍ ଆଗରେ ଦେଖିଲି ଗୋଏ ଭୀଷଣ ଆଲୁଅ-ଦେହର ଓଜନ ନେବାର ଯନ୍ତ୍ର । କାହିଁକି କେଜାଣି ମୁଁ ସେଇ ଯନ୍ତ୍ରର ରକ୍ତଚକ୍ଷୁକୁ ଚାହିଁ ଚାହିଁ ତାରି ପାଖକୁ ଯାଇଛି ଏବଂ ତା ଉପରେ ଛିଡ଼ା ହୋଇ ଦଶପଇସି ଗୋଟିଏ ଭିତରକୁ ଠେଲି ଦେଇ ମୋ ମୁହଁକୁ କିଛି ସମୟ ଦେଖିବାର ଅବକାଶ ପାଇଛି । ମୋର ଇତସ୍ତତଃ ମୁଣ୍ଡବାଳ ଆଉ ମୁଖବ୍ରଣର ଗଭୀର କ୍ଷତକୁ ଲକ୍ଷ୍ୟ କରୁ କରୁ ଶୁଣିଛି ଯନ୍ତ୍ରର ହୃତ୍‌ପିଣ୍ଡରେ ଦଶପଇସିଟିର ଆଘାତର ଶବ୍ଦ । ସଙ୍ଗେ ସଙ୍ଗେ ଯନ୍ତ୍ରଟିର ରକ୍ତଚକ୍ଷୁ ନିର୍ବାପିତ ହୋଇଯାଉଛି ଏବଂ କ୍ରମେ ବିକଟ ଶବ୍ଦ କରି ତାହା ଯେପରି ଜାଗିଉଠିଛି । ଯନ୍ତ୍ରଟିର କଟିବନ୍ଧରୁ ମୋର ଭାଗ୍ୟସହ ଦେହର ଓଜନ ନିର୍ଣ୍ଣିତ ଟିକଟଟି ଉଠାଇବାକୁ ହାତ ବଢ଼ାଇଲା ମାତ୍ରେ ପାଖରେ ଗୋଟିଏ ଭୀଷଣ ଲୋକ ଦେଖି ଚମକି ଉଠିଛି । ଲୋକଟିର ଚଉଡ଼ା କପାଳରେ ଗଭୀର କ୍ଷତ ଚିହ୍ନ, ଗୋଟିଏ ଆଖି ଅସମ୍ଭବ ଭାବେ ବଡ଼ ଏବଂ ଧଳା ଡୋଳା । ହଠାତ୍ ମୋ ଭିତରେ କଳକବ୍‌ଜା ସବୁ ଜାଗି ଉଠିବାର ସୂଚନା ପାଇଲା ମାତ୍ରେ ଦେଖିଛି ଟ୍ରେନ୍‌ଟା ଧୀରେ ଧୀରେ ପ୍ଲାଟଫର୍ମ ଛାଡ଼ି ଏକ ପ୍ରାଗୈତିହାସିକ ସରୀସୃପ ଭଳି ଆଗକୁ ଆଗକୁ ମାଡ଼ି ଚାଲିଛି ଏବଂ ମୁଁ ମୋ ହାତର ଓଜନ ଓ ଭାଗ୍ୟର ଟିକଟ, ଯନ୍ତ୍ରର ରକ୍ତଚକ୍ଷୁ ଆଉ ବୀଭତ୍ସ ଲୋକଟିକୁ ନେଇ ପ୍ଲାଟଫର୍ମ ଉପରେ ରହିଯାଇଛି ।

ଠିକ୍ ଏଇ ସ୍ୱପ୍ନଟା ଦେଖିଥିଲି ଅନେକ ଦିନ ପୂର୍ବେ । ପରିଷ୍କାର ମନେ ଥିଲା । ସେଇ ବୀଭତ୍ସ ଲୋକଟିକୁ । ମୁଁ ଜାଣେନା ସ୍ୱପ୍ନର ବି ପୁନରାବୃତ୍ତି ହୁଏ । ମୁଁ ଅଚାନକ ଭାବେ ପୁଣି ସେଇ ସ୍ୱପ୍ନଟା ଦେଖିଲି । ତା'ପରେ ଅନେକ ସମୟ ଭାବିଲି କାହିଁକି ଏପରି ଭାବରେ ସ୍ୱପ୍ନଟା ମୋ ପାଖକୁ ଫେରି ଆସିଲା ? ଆବଶ୍ୟ ମୁଁ ତା ପରଦିନ ଭୁବନେଶ୍ୱର ଯିବି ବୋଲି ଶୋଇଲା ପୂର୍ବରୁ ରେଳଯାତ୍ରା କଥା ଟିକେ ଚିନ୍ତା କରିଥିଲି ।

ମୋ ସାଙ୍ଗମାନେ କହନ୍ତି, ପୁରୀ ଏକ୍‌ସପ୍ରେସରେ ଟିକେଟ କରନ୍ତି ଭଦ୍ରଲୋକ ଏବଂ ବୁଦ୍ଧିହୀନ ଲୋକେ । ମୁଁ ଜାଣେ ମୁଁ ଖୁବ୍ ବୁଦ୍ଧିହୀନ ନୁହେଁ ଏବଂ ଭଦ୍ରଲୋକ ନୁହେଁ ନିଶ୍ଚୟ । ତଥାପି ବିନା ଟିକେଟରେ ଯାତ୍ରା ମୋତେ ଭଲ ଲାଗେ ନାହିଁ, କାରଣ

କଳାକୋଟ୍ ଭୟରେ ଝର୍କା ଦେଇ ଦିଗ୍‌ବଳୟ ତଳର ଥାକ ଥାକ ନୀଳ ପାହାଡ଼, ଦିଗନ୍ତବ୍ୟାପୀ ସମତଳ କ୍ଷେତ୍ର, କିମ୍ବା ଅନ୍ଧାରର ସମୁଦ୍ରରେ ଦୂର ଜନପଦର ମିଞ୍ଜିମିଞ୍ଜି ଆଲୁଅ ଛୋଟ ଛୋଟ ଅଜଣା ଷ୍ଟେସନରେ ଅସମ୍ଭବ ଭିଡ଼ ଆଉ କୋଳାହଳ ମଧ୍ୟରେ ନିଜକୁ ହଜେଇ ଦେଇ ହୁଏନି । ତେଣୁ ଟିକଟ ନ କରିବା ପାଇଁ ଅନେକଥର ଉତ୍ତେଜିତ ହୋଇ ମଧ୍ୟ ଉତ୍ତେଜନାକୁ କେବେ କାର୍ଯ୍ୟରେ ଅନୁବାଦ କରିପାରିନି ।

ପ୍ଲାଟଫର୍ମରେ ଅନେକ ରାଜଧାନୀ ଯାତ୍ରୀ ବନ୍ଧୁମାନଙ୍କ ସଙ୍ଗେ ଦେଖା । ମୁଁ ଯେ ବୁଦ୍ଧିମାନ ଏବଂ ଭଦ୍ରଲୋକ ନୁହେଁ ଏକଥା ଜଣାଇ ସେମାନଙ୍କ ଦଳରେ ଭିଡ଼ିଯିବା ପାଇଁ ମୁଁ ଟିକେଟକୁ ପକେଟ ଭିତରେ ରଖି ଫାଙ୍କା ଆୱାଜ କଲି ଏବଂ ଟ୍ରେନ୍ ଛାଡ଼ିବା ବେଳକୁ ସେମାନଙ୍କୁ ଛାଡ଼ି ଏକ ଛୋଟ କମ୍ପାର୍ଟମେଣ୍ଟରେ ଉଠି ଝରକା ପାଖସ୍ଥାନ ଦଖଲ କଲି । ବାହାର ଅନ୍ଧକାର ସହ ମୋ ଭିତର ଅନ୍ଧକାରକୁ ଭେଳେଇବା ପାଇଁ ।

ମୁଁ ଆସିଲା ବେଳେ ଅବଶ୍ୟ ଦେବୀ ସଙ୍ଗେ ଦେଖା ହୋଇନଥିଲା । ସେ ଚିଠି ଲେଖିଥିଲା, ଆଜି ଶୁକ୍ରବାର, ନ ଗଲେ ଭଲ ହୁଅନ୍ତା । ଶୁକ୍ରବାର ଦିନଟି କାହିଁକି କେଜାଣି ତୁମ ପାଇଁ ଖୁବ୍ ବିପଦର ଦିନ ଆଉ ମୋ ପାଇଁ ବି, ନ ଯାଇ ବରଂ କାଲି ଯିବ । ମୁଁ କିନ୍ତୁ ତା କଥା ନ ମାନି ଚାଲିଆସିଛି । ନିଜେ ଠିକ୍ ଥିଲେ ଆଉ ସଜାଗ ରହିଥିଲେ ବୋଧହୁଏ ବିପଦ ଆସେ ନାହିଁ । ଅବଶ୍ୟ ଅନ୍ତର୍ଘାତୀ କାର୍ଯ୍ୟ ହେତୁ ରେଳ ଦୁର୍ଘଟଣା ଭିନ୍ନ କଥା । ଦେବୀ କହେ ଆମର ଭଲପାଇବା କୁଆଡ଼େ ଏଇ ଦୁର୍ଘଟଣା । କିନ୍ତୁ ମୋତେ ମନେହୁଏ ଭଲ ପାଇବାଟା ଦୁର୍ଘଟଣା ନୁହେଁ, ବରଂ କେଉଁ ଏକ ଦୁର୍ଘଟଣାର ଫଳାଫଳ ଆମର ଭଲପାଇବା ଏବଂ କେଉଁ ଏକ ଅଜ୍ଞାତ ଦୁର୍ଘଟଣାରେ ସେ ଭଲ ପାଇବାର ମହାଦ୍ରୁମ ଉପୁଡ଼ିଯିବ । ଏହା ମୁଁ ଜାଣି ବି ଆତ୍ମପ୍ରବଞ୍ଚନା ନେଇ ବଞ୍ଚୁଛି, କାରଣ ଯେତେଦିନ ବଞ୍ଚୁଛି ସେହି କେତେଦିନ ମିଥ୍ୟା ସୁଖକୁ ଆଶ୍ରୟ କରି ବଞ୍ଚିବା ଉଚିତ ।

–ଆଜ୍ଞା, ଆପଣ କୁଆଡ଼େ ଯିବେ ?

–ମୁଁ ? ଏଇ ଭୁବନେଶ୍ୱର । କାହିଁକି ?

–କିଛି ନାଇଁ ଏଇ ମାନେ ମୁଁ ଟିକେ ଶୋଇଛି, ଯାଜପୁର ରୋଡ଼ରେ ମୋତେ ଡାକିଦେବେ, ମୁଁ ଓହ୍ଲାଇଯିବି ।

–ଆଜ୍ଞା ।

ମୁଁ ଟିକେ ଶୋଇବି ବୋଲି ଚିନ୍ତା କରୁଥିଲି । କିନ୍ତୁ କମ୍ପାର୍ଟମେଣ୍ଟରେ ସବୁ ନିଦ୍ରିତ ଲୋକ ଆଉ ମୋ ବ୍ୟତୀତ ଶେଷ ଜାଗ୍ରତ ଲୋକଟି ମଧ୍ୟ ମୋତେ ପ୍ରହରୀ ସଜାଗ ଦେଇ ଥଣ୍ଡା କାଠବେଞ୍ଚ ଉପରେ ଶୋଇପଡ଼ିଲା ।

ଡାକିଦେବି ? ନା, ଶୋଇଛି, ଶୋଇଥାଉ ।

ଆରେ, ଯା ମୁଣ୍ଡରେ ଏତେବଡ଼ କ୍ଷତ ଚିହ୍ନ ।

ସ୍ୱପ୍ନଟା ପୁଣି କଣ୍ଟା ପରି ଖୁବ୍ ଭିତରେ ଖଚ୍ ଖଚ୍ ହେଲା । ଏଇ କ'ଣ ସେଇ ଲୋକ ଯାହାକୁ ମୁଁ ସ୍ୱପ୍ନରେ ଦେଖିଥିଲି ? କିନ୍ତୁ 'ଆଖି ବୁଜି ଶୋଇଯାଇଛି ଲୋକଟା, ଡାକି ଦେଇ ଦେଖିବି କି ଯାର ଆଖି ଡୋଳାଟା ଧଳା ଆଉ ଖୁବ୍ ବଡ଼ କି ନା ? କିନ୍ତୁ ବାସ୍ତବ ଜୀବନରେ ଲୋକଟାକୁ କେବେ ଦେଖିଛି ବୋଲି ତ ମନେ ହୁଏନା !

ତା' ପରେ ଷ୍ଟେସନ ପରେ ଷ୍ଟେସନ ପ୍ରତି ଷ୍ଟେସନରେ ଓଜନ ନେବାର ଯନ୍ତ୍ର ଓ ତା'ର ରକ୍ତଚକ୍ଷୁ ଆଉ ଲୋକଟିର ବୀଭତ୍ସ କ୍ଷତ ପୁଣି ଅନ୍ଧକାରର କାନ୍ଥରେ ଦେବୀର ଚିଠିର କେତୋଟି ଶବ୍ଦର ଅଚଳ ପଟୁଆର ।

—ଆପଣଙ୍କ ଟିକେଟଟା ?

—ଟିକେଟ ? ଓହୋ ଟିକେଟ ! ଦେଖାଉଛି ।

ମୁଁ ପକେଟରେ ହାତ ପୂରାଇଲି । କିନ୍ତୁ ଟିକେଟ କାହିଁ ? ମୁଁ କଣ ଟିକେଟ କରି ନଥିଲି ? ନା, ମୁଁ କେବଳ ସାଙ୍ଗମାନଙ୍କ ଆଗରେ ଫାଙ୍କା ଆୱାଜ କରିଥିଲି । ଏ ପକେଟରେ ଅଛି କି ? ନାଇଁ ! ଚାରିଆଡ଼େ ଖୋଜିଲି । ସିଟ୍ ତଳକୁ ଚାହିଁଲି ତଳେ ଖସିପଡ଼ିଛି କି ନା ! କିନ୍ତୁ ନା ।

—ଆପଣଙ୍କ ଟିକେଟ ?

—ଏଇ ଆଜ୍ଞା, ମାନେ କେଉଁଠି ଖସିପଡ଼ିଛି ।

—କେଉଁଠି ?

—ମୁଁ ଜାଣେ ନାହିଁ ।

—ଏସବୁ ଚାଲାଖି ରଖନ୍ତୁ । ଆପଣ ଭଦ୍ରଲୋକ, ଶିକ୍ଷିତ । ଦୟାକରି ସାମ୍ନା ଷ୍ଟେସନରେ ଓହ୍ଲାଇଯିବେ । ଟିକେଟହୀନ ଯାତ୍ରା ଏକ ସାମାଜିକ ଅପରାଧ ।

କଳାକୋଟ୍ ହାତରେ ବୀଭତ୍ସ ସଣ୍ଡୁଆଶି ଧରି ମୋ ସାମ୍ନାରେ ଛିଡ଼ା ହୋଇ ରହିଲା ।

ମୁଁ ନିର୍ବାକ୍ ହୋଇଗଲି । ଆଗରେ ଯାଜପୁର ରୋଡ଼, ଓହ୍ଲାଇଯିବାକୁ ହେବ । କିନ୍ତୁ ମୋର ସେଇ ଟିକେଟହୀନ ବନ୍ଧୁମାନେ ଏବେ ହୁଏତ ପ୍ରଥମ ଶ୍ରେଣୀ ଭିତରେ ଘୁଙ୍ଗୁଡ଼ି ମାରୁଥିବେ ।

ଷ୍ଟେସନରେ ଓହ୍ଲାଇଗଲି । ଓଜନ ନେବା ଯନ୍ତ୍ରର ରକ୍ତଚକ୍ଷୁକୁ ଅନେକ ସମୟ ଛିଡ଼ାହୋଇ ଚାହିଁ ରହିଲି । ଓଜନ ନେବି ? ମୋର ଭାଗ୍ୟଫଳ ଦେଖିବି ? ଟ୍ରେନ ଛାଡ଼ିବାର ଶବ୍ଦ । ମୋତେ ମନେ ହେଲା ମୋରି ଭିତର ଷ୍ଟେସନ ଛାଡ଼ି ଯେପରି ଗୋଟିଏ ଟ୍ରେନ ଅନେକ ଶୂନ୍ୟ କମ୍ପାର୍ଟମେଣ୍ଟ ନେଇ ଖୁବ୍ ଦୂରକୁ ଗଡ଼ି ଯାଉଛି ।

ଦେବୀ ହୁଏତ ସତ କରୁଥିଲା, କାରଣ ଆଜି ଶୁକ୍ରବାର ।

ଓଜନ ନେବା ଯନ୍ତର ରକ୍ତଚକ୍ଷୁର ପାଖକୁ ଆଗେଇ ଗଲି । ଦଶପଇସା ଦେଇ ଏହାର ରକ୍ତଚକ୍ଷୁ କିଛି ସମୟ ପାଇଁ ବନ୍ଦ କରିଦେବାକୁ ହେବ ।

ଦଶପଇସିଟିକୁ ଭିତରକୁ ଠେଲିଦେବା ପୂର୍ବରୁ କାଚରେ ମୋ ମୁହଁକୁ ଚାହିଁଲି । ମୁଁ କଣ ସେ ନୁହେଁ ? ମୁହଁସାରା ଅସମ୍ଭବ ଝାଳ ଆଉ ଏପଟ ସେପଟ ମୁଣ୍ଡବାଳ । ପକେଟରୁ ରୁମାଲ କାଢ଼ି ମୁହଁ ପୋଛିବାକୁ ଗଲା ମାତ୍ରେ ଠକ୍ କରି ଟିକେଟଟା ପାଦତଳେ ଖସିପଡ଼ିଲା । ଆରେ, ଏଇ ଯେ ମୋ ଟିକଟ । ଟ୍ରେନର ଗତି ବେଶ୍ ବଢ଼ିଯାଇଥିଲା ।

ମୁଁ ସାମାନ୍ୟ ପାଗଳ ହୋଇଥିଲେ ନିଶ୍ଚୟ ଖୁବ୍ ଜୋର୍‌ରେ ଚିତ୍କାର କରି ଉଠନ୍ତି । ଦଶପଇସିଟିକୁ ଭିତରକୁ ଠେଲିଦେଲି । ମୁହୂର୍ତ୍ତକ ପାଇଁ ରକ୍ତଚକ୍ଷୁ ଦପ୍‌କରି ଲିଭିଗଲା । ସମଗ୍ର ଯନ୍ତଟାର ଭିତର ପଟେ ଏକ ଜାଗି ଉଠିବାର ଶବ୍ଦ । ମୋ ହାତ ପାପୁଲି ଉପରକୁ ଟିକେଟଟା ଆସିବା ପୂର୍ବରୁ ଟିକିଏ ଦୂରରେ କୋଳାହଳ ଶୁଣି ଚାହିଁ ଦେଖିଲି ଟ୍ରେନଟା ଅଟକିଯାଇଛି ।

ଅନେକ ଲୋକ ଇତସ୍ତତଃ ଧାଁ ଦଉଡ଼ ଦେଖି ମୁଁ ବି ଛୁଟିଲି । ହତଭାଗ୍ୟ ଜଣେ ଓହ୍ଲାଇବାକୁ ଚେଷ୍ଟା କରି ଟ୍ରେନ ଚକ ତଳେ କଟି ଯାଇଥିଲା ।

ଭିଡ଼ ଠେଲି ଦେଖିଲି ସେଇ ଲୋକ–ମୁଣ୍ଡରେ ବୀଭତ୍ସ କ୍ଷତଚିହ୍ନ । କିନ୍ତୁ ଆଖିଟା ଦେଖିପାରିଲି ନାହିଁ, ଆଖି ଉପରେ ରକ୍ତ ଜମିଯାଇଥିଲା । ଲୋକଟିକୁ ଷ୍ଟେସନରେ ଡାକି ଦେଇ ନ ଥିବାର ଦାୟିତ୍ୱହୀନତା, ଶୁକ୍ରବାର ଦେବୀର ନାସ୍ତିବାଣୀ, ଗତ ରାତିରେ ସ୍ୱପ୍ନର ପୁନରାବୃତ୍ତି, ପକେଟ ରୁମାଲ ଭିତରେ ଟିକଟ ଏବଂ ଏସବୁ ଘଟଣାର ଅସମ୍ଭବ ଯୋଗାଯୋଗ– ସମସ୍ତେ ମୋ ସାମ୍ନାରେ ଘୂରି ଘୂରି ଗୋଟିଏ ରକ୍ତ ଗୋଲକ ହୋଇଗଲେ । ସେ ଗୋଲକ, ଆଖି ଉପରେ ଜମି ଉଠିଥିବା ରକ୍ତ, ଓଜନ ନେବା ଯନ୍ତର ରକ୍ତଚକ୍ଷୁ ସହ ସାମିଲ ହୋଇ ମୋ ଚାରିପଟେ ଭୀଷଣ ବେଗରେ ଘୂରିବାକୁ ଲାଗିଲେ । ମୁଁ ସେଇଠି ଛିଡ଼ାହୋଇ ମୂର୍ଚ୍ଛାଗଲି ।

('ଆସନ୍ତାକାଲି', ମାର୍ଚ୍ଚ ୧୯୭୨)



# କୁକୁର, ମୁଁ ଓ ଚନ୍ଦ୍ର

ମୁଁ ପାଗଳ ନୁହେଁ, ତଥାପି ଥରେ ଥରେ ଅଦ୍ଭୁତ ଖେୟାଲ ସବୁ ହୁଏ । ବେଳେ ବେଳେ ଭାବେ, କୁକୁର ଆଉ ମଣିଷ ଭିତରେ କ'ଣ ପାର୍ଥକ୍ୟ ? ମୁଁ ଶ୍ରୀ କନ୍‌ହେଇଲାଲ ଦାସ, ଶିକ୍ଷିତ, ନ୍ୟାୟବାନ୍, ସଚ୍ଚରିତ୍ର ପୁଣି ରୁଚିବାନ୍ କବି ଓ ଗାଳ୍ପିକ ଏବଂ ଏ ଟମି, ରଙ୍ଗ ଲାଲ, ଚାରି ଗୋଡ଼, ବଙ୍କା ଲାଞ୍ଜ । ଟମି ଆଉ କନ୍‌ହେଇ ଭିତରେ ପାର୍ଥକ୍ୟ କ'ଣ ? ଟମି ଉପରେ ବିଶ୍ୱାସ ରଖି ରାତିରେ ନିଶ୍ଚିତରେ ଘୁଙ୍ଗୁଡ଼ି ମାରି ହୁଏ କିନ୍ତୁ ମୋ' ଉପରେ ବିଶ୍ୱାସ ରଖିଲେ ?

କେତେ ନିଃସଙ୍ଗ ନିରାନନ୍ଦ ଅପରାହ୍ଣରେ ଏଇ କଥା ଭାବିଛି ନଈ କୂଳରେ ବସି, ପାହାଡ଼ ତଳେ ଛିଡ଼ା ହୋଇ ଚିତ୍କାର କରି ପଚାରିଛି–ମୁଁ କ'ଣ ବିଶ୍ୱାସୀ ? ରାତି ଅଧରେ ଥରେ ଥରେ ବୀଭତ୍ସ ସ୍ୱପ୍ନ ସବୁ ଦେଖିଛି । ଦେଖିଛି, ମୋ' ସାଇକେଲ ଚକ ତଳେ ଗୋଟିଏ କୁକୁର ଚାପି ହୋଇ ମରିଯାଉଛି । ନ ହେଲେ ଦେଖିଛି, ଷ୍ଟେସନ ପାଖ ରେଳ ଲାଇନରୁ ଲୁହା ଧାରଣାକୁ ମୁଁ ଉପାଡ଼ି ନେଇଛି ଏବଂ ସେଇ ଆଡ଼କୁ ମୁହଁ କରିଥିବା ରେଳରେ ଚଢ଼ିଯାଇଛି । ରାତି ଅଧରେ ବିଛଣାରେ ଶୋଇ କାହା ସହ କଥାବାର୍ତ୍ତା ଆରମ୍ଭ କରି ଦେଇଛି ଏବଂ ନିଦ ଅଳସରେ ଚିତ୍କାର କରି ଉଠିଛି–ମୁଁ କ'ଣ ସତରେ ବିଶ୍ୱାସଘାତକ ? ସେଇ ରୁମ୍‌ରେ ଶୋଇଥିବା ଗଦାଧର ମୋର ଏକ ଚିତ୍କାର ଶୁଣି ଉଠିଛି, ଅନେକ ସମୟରେ କ'ଣ ହେଲା ବୋଲି ପଚାରିଛି, କେତେବେଳେ ବି ନିଦୁଆ ଚିତ୍କାର ଶୁଣି ବିରକ୍ତ ହୋଇଛି, କେତେବେଳେ ବି ହସି ହସି ବେଦମ ହୋଇଯାଇଛି ।

କିନ୍ତୁ ମୁଁ, ଶ୍ରୀ କନ୍‌ହେଇଲାଲ ଦାସ, ଶିକ୍ଷିତ, ନ୍ୟାୟବାନ୍, ସଚ୍ଚରିତ୍ର, ପୁଣି ଅର୍ଥଶୂନ୍ୟ ବେକାର । ଶ୍ରୀ ଗଦାଧର ଜେନା ମୋର ବନ୍ଧୁ, ମୋର ଆଶ୍ରୟଦାତା, ଅର୍ଥବାନ । ମୋତେ ନିଃସ୍ୱାର୍ଥପର ଭାବରେ ସବୁପ୍ରକାର ସାହାଯ୍ୟ କରେ ସେ । ସେ କିପରି ଜାଣିବ, ନିଶାର୍ଦ୍ଧର ଆର୍ତ୍ତନାଦ ମୋର ନୁହେଁ; ମୋ ଭିତରର ବିବେକ ନାମକ ବସ୍ତୁର ।

**ପ୍ରଥମ ତରଙ୍ଗ :**

ମୁଁ ଦୁର୍ବଳ ନୁହେଁ, ତଥାପି ସୁସ୍ଥ ଶରୀର ମଧ୍ୟରେ ମୋତେ ଥରେ ଥରେ ଏକ ରୋଗ ଆକ୍ରମଣ କରେ । ଯେତେବେଳେ ଗ୍ରୀଷ୍ମର ନୁଖୁରା କର୍କଶ କେଶ ହଠାତ୍ ବର୍ଷାର

ଦୀର୍ଘ କୁନ୍ତଳରେ ପରିଣତ ହୋଇଯାଏ; କିମ୍ୱା ବର୍ଷାର ପାଦ ପାଉଁଜର ଆବାଜ ଥମିଗଲେ ଆକାଶର ଅଗଣାରେ ଶରତ ମେଘ ଶର୍ଙ୍ଖିବିଲେଇ ଭଳି ଏପଟ ସେପଟ ହୁଏ; ଅଥବା ରତିକ୍ଳାନ୍ତା ନିଃଶ୍ୱାସ ଭଳି ହଠାତ୍ ପ୍ରଥମ ମଳୟ ଦେହରେ ବାଜେ; ସେତେବେଳେ ସେହି ରୋଗ ମୋତେ ଆକ୍ରମଣ କରେ । ମୁଁ ବାଚାଳ ହୋଇ ଉଠେ; ହୁଏତ ଥରେ ଥରେ ପାଗଳାମି ଆରମ୍ଭ କରେ । ସେ ରୋଗର ନିରାକରଣ ପାଇଁ ମୋତେ କୌଣସି ଏକ ସମୁଦ୍ର କୂଳକୁ, ନ ହେଲେ ପାର୍ବତ୍ୟ ଉପତ୍ୟକାକୁ ଯିବାକୁ ହୁଏ ।

ସେ ବର୍ଷ ବି ବର୍ଷାର ନାଚ ଶେଷ ହୋଇ ଆସିଲା । ପାହାଡ଼ର ମଥାରେ ମଥାରେ ଜମି ରହିଲା ଶିମୁଳି ତୁଳା ଭଳି ମେଘ । ସାଇଁ ସାଇଁ ପବନ ବୁଦା ମୂଳରେ ଲୁଚି ହୁଇସିଲ ବଜାଇଲା । ସବୁଜ ପଡ଼ିଆରେ ଘାସଫୁଲ ଓଢ଼ଣା ଖୋଲି ମୁରୁକି ହସିଲା । ମୁଁ ଅଥୟ ହେଲି । ଇଚ୍ଛା ହେଲା କେଉଁ ଏକ ପାହାଡ଼ର ମଥାରେ ଚଢ଼ି ହଜିଯାଇଥିବା ପୁରୁଣା ଗୀତକୁ ବଡ଼ ପାଟିରେ ଗାଇବି । ଘାସ ଫୁଲର ଅରଣ୍ୟରେ ବୁଲି ବୁଲି ଟିକି ଟିକି ଶାଗୁଆ ଝିଣ୍ଟିକା, ରଙ୍ଗିନ କଙ୍କି ଆଉ ନାଲି ପ୍ରଜାପତି ଧରିବାକୁ ମୋ' ପ୍ରାଣ ଅସ୍ଥିର ହେଲା ।

ସେତେବେଳେ ଏ ଜନାକୀର୍ଣ୍ଣ ସହର, ପିଚୁ ରାସ୍ତା, ପୋଡ଼ା ପେଟ୍ରୋଲ ଗନ୍ଧ, ସାଙ୍ଗସାଥୀ, ସ୍କୁଲ କଲେଜ, ସୁନ୍ଦରୀ ଝିଅ, ପାର୍କ, ରେସ୍ତୋରାଁ, ସିନେମା ହଲ ସବୁ ବିବର୍ଣ୍ଣ ଦେଖାଗଲେ । ମୁଁ ଅନ୍ୟମନସ୍କ ହେଲି । ସହରର ସବୁ ଆକର୍ଷଣକୁ ପଛରେ ପକାଇ କେଉଁ ଦୂର ପାହାଡ଼ଘେରା ଅରଣ୍ୟରେ ଏକାକୀ ବସି ବଣ୍ୟ ଝରଣାର ଛମ୍ ଛମ୍ ଘୁଙ୍ଗୁରର ଆଓ୍ୱାଜ ଶୁଣିବାକୁ ଅସ୍ଥିର ହୋଇ ଉଠିଲି ।

କିନ୍ତୁ ମୁଁ, ଶ୍ରୀ କନ୍‌ହେଇଲାଲ ଦାସ, ଅର୍ଦ୍ଧଭୁକ୍ତ, ଅର୍ଥହୀନ । ମୋ ପକ୍ଷରେ ଶୈଳ ନିବାସ ପର୍ଯ୍ୟଟନର ଚିନ୍ତା ଯେ ଏକ ଅହେତୁକ ଯନ୍ତ୍ରଣା । ତଥାପି ନିର୍ଲଜ୍ଜ ହୋଇ ବନ୍ଧୁବାନ୍ଧବ, ସହୃଦୟ, ଶୁଭେଚ୍ଛୁ—ସମସ୍ତଙ୍କ ଠାରେ ହାତ ପତାଇଲି । କିନ୍ତୁ ହସର ବିଭିନ୍ନ ଶବ୍ଦ ଓ ଆକାରରେ ମୋ ଭିତର ପୂର୍ଣ୍ଣ ହୋଇ ଉଠିଲା ।

ତେଣେ ଆକାଶରେ କାଳିଦାସୀୟ ମେଘ, ନଦୀ ପଠାରେ କାଶଫୁଲର ପଟୁଆର, କାଚ ରଙ୍ଗର ନଦୀ ପୋଖରୀ, ଫୁଲେ ଫୁଲେ ରଙ୍ଗିନ୍ ପ୍ରଜାପତି ଜହ୍ନର ସଫା ଇସ୍ତିରିଆ କୁର୍ତ୍ତା, ଶରତ ସୁନ୍ଦରୀ ଦେହରେ କେମିତି ଏକପ୍ରକାର ମିଠା ମିଠା ବାସ୍ନା । ମୋର ଖିଅ ହଜିଗଲା । ନୀତି ଓ ଅନୀତି ମଧ୍ୟରେ ଥିବା ପାଚେରିଟା କ୍ରମେ ଛୋଟ ହୋଇ ଆସିଲା ।

ଦିନେ ଅଦ୍ଭୁତ ଏକ ଖେୟାଲରେ ମୋର ଏକମାତ୍ର ଆଶ୍ରୟଦାତା ବନ୍ଧୁ ଗଦାଧରର ବାକ୍‌ସ ଚାବିଟା ଉଦ୍ଧାର କରି କିଛି ଟଙ୍କା ମୋ ପକେଟକୁ ସ୍ଥାନାନ୍ତରିତ କରାଇ ନେଲି । ସେଇଦିନ ଷ୍ଟେସନ, ଷ୍ଟେସନରୁ ଏକ ଅନିର୍ଦ୍ଦିଷ୍ଟ ପଥରେ ନାମ ନଜଣା ପାହାଡ଼ି ସ୍ଥାନାଭିମୁଖେ ଟ୍ରେନ୍‌ରେ ଚଢ଼ି ବସିଲି ।

ଅନେକ ଦିନ ପାହାଡ଼ ଉପରେ, ଜଙ୍ଗଲ ଭିତରେ, ଝରଣା କୂଳରେ ଶରଦୀୟା । ଧରଣୀର ସାନ୍ନିଧ ଲାଭ କରି ଯେତେବେଳେ ଫେରିଲି, ସେତେବେଳେ ଗଦାଧର ମୋତେ ଭୁଲରେ ସୁଦ୍ଧା ସନ୍ଦେହ କଲା ନାହିଁ, କାରଣ ମୁଁ, କନ୍‌ହେଇଲାଲ ଦାସ, ସଚ୍ଚରିତ୍ର, ନ୍ୟାୟବାନ ଓ ଶିକ୍ଷିତ ।

କେବଳ ମୋ ଆଖି ସାମ୍ନାରେ ଗଦାଧରର ଚାକର ପିଲାଟିର ନୋଲା ଫାଟିଲା । ପୋଲିସରେ ଦିଅଯିବ ବୋଲି ଧମକ ଦିଆଗଲା ଏବଂ ଛିଣ୍ଡା ଲୁଗାପଟାର ଛୋଟ ପୁଟୁଳି ଜାକି ଚିରଦିନ ପାଇଁ ତାକୁ ଆମଠୁ ବିଦାୟ ନେବାକୁ ହେଲା ।

ସେତେବେଳେ ମୋର ଅନ୍ତରାତ୍ମା କ'ଣ ମୁହୂର୍ତ୍ତକ ପାଇଁ ଚିତ୍କାର କରି ଉଠି ନଥିଲା ? କିଛି ଦିନ ପାଇଁ ମୁଁ କଣ ଅସୁସ୍ଥ ହୋଇପଡ଼ିନଥିଲି ? ଜୀବନରେ ଏ ପ୍ରକାର କର୍ମ ଆଉ ନ କରିବାକୁ ମୁଁ କ'ଣ ମନେ ମନେ ସେଦିନ ପ୍ରତିଜ୍ଞା କରିନଥିଲି ?

**ଦ୍ୱିତୀୟ ତରଙ୍ଗ :**

କିନ୍ତୁ ମୋର ପ୍ରତିଜ୍ଞା ପଥରର ପାହାଡ଼ ନୁହେଁ, ବରଫର ପର୍ବତ । କେତେବେଳେ ପରିସ୍ଥିତିର ଉତ୍ତାପରେ ସେ ବରଫ ପର୍ବତ ବି ନିଶ୍ଚିହ୍ନ ହୋଇଯାଏ । ଯେଉଁଦିନ ଅନିମାକୁ ପ୍ରଥମେ ଦେଖିଲି ସେଦିନ ଏ ସୁଦୃଢ଼ ପ୍ରତିଜ୍ଞାର ସେତୁବନ୍ଧ ମୋ ଅଜାଣତରେ କେଉଁଠି ଛିଦ୍ର ହୋଇଗଲା ।

ଅନିମା ସୁନ୍ଦରୀ କି ନା ଜାଣେନି । ସବୁ ସୁନ୍ଦରୀ ଝିଅ ଯେମିତି ଦେଖାଯାନ୍ତି ଅନିମା ହୁଏତ ଠିକ୍ ସେମିତି । କିନ୍ତୁ ତାର ଟିକେ ବିଶେଷତ୍ୱ ଥିଲା । ତାର ଆଖି କୋଣରେ ବିଶେଷ ଏକପ୍ରକାର ଭାଷା ଲେଖା ହୋଇ ରହିଥିଲା । ସେ ଭାଷା ସବୁ ରସର, ସବୁ ଋତୁର । ମୋତେ ମନେ ହେଉଥିଲା ପାଟି ନ ଖୋଲି ବି ଅନିମା ସେଇ ଆଖିରେ ଅନେକ କଥା କହିପାରୁଥିଲା ।

ମୁଁ, ଶ୍ରୀ କନ୍‌ହେଇଲାଲ ଦାସ, କବି, ଗାଳ୍ପିକ, ନ୍ୟାୟବାନ, ସଚ୍ଚରିତ୍ର, ଅନିମା ନାମ୍ନୀ ସେଇ ସୁନ୍ଦରୀ ତରୁଣୀକୁ ଭେଟିଥିଲି ବନ୍ଧୁ ଗଦାଧର ରୁମ୍‌ରେ; ଥରେ ନୁହେଁ, ଅନେକ ଥର । କାରଣ ଅନିମା ଗଦାଧରର ପ୍ରେମିକା । କିନ୍ତୁ ମୁଁ କ'ଣ କେଉଁ ଏକ ନିଷିଦ୍ଧ ମୁହୂର୍ତ୍ତରେ ଆଖି ବୁଜି ତାର ଅଙ୍ଗରେଖା କଥା ଚିନ୍ତା କରି ଉତ୍‌ଫୁଲ୍ଲ ହୋଇ ଉଠୁନଥିଲି ।

ଗଦାଧର ପାଖରେ ଆଶ୍ରୟ ପାଇଲା ଦିନୁ ମୁଁ ଦେଖେ ଅନିମା ସମୟ ସମୟରେ ଆସେ ଏ ବସାକୁ । ତା' ପାଦସ୍ପର୍ଶରେ ଆମ ସିମେଣ୍ଟ ଚଟାଣରେ ଯେପରି ଲକ୍ଷେ ରଜନୀଗନ୍ଧା ଫୁଟେ । ମୁଁ ଖୁବ୍ ପାଖ ରୁମ୍‌ରୁ ସେଇ ରଜନୀଗନ୍ଧାର ବାସ୍ନାରେ ଆମୋଦିତ ହୋଇ ଉଠେ । ମୋ ନିଃସଙ୍ଗ ଜୀବନ ଆର୍ତ୍ତନାଦ କରେ ଏବଂ ମୋ ଅଜ୍ଞାତସାରରେ ମୋର ଅଭ୍ୟନ୍ତରରେ ଏକ ନିଷିଦ୍ଧ ପାଣ୍ଡୁଲିପି ପ୍ରସ୍ତୁତ ହୋଇଯାଏ ।

କ୍ରମେ ମୋ ମନରେ ସେ ପାଣ୍ଡୁଲିପିର ପରିବର୍ତ୍ତିତ ସଂସ୍କରଣ ହେବାକୁ ଲାଗିଲା ଏବଂ ଦିନେ ମଧ୍ୟ ଆତ୍ମପ୍ରକାଶର ସମୟ ଆସି ଉପସ୍ଥିତ ହେଲା ।

ସେଦିନ ନିହତ ଦିନର ଶବକୁ ପଶ୍ଚିମ ଦିଗନ୍ତରେ ଜାଳି ଦେଇ ଯେତେବେଳେ ରାତ୍ରି କେଶ ମୁକୁଳାଇ ବସିଥିଲା, ଅନିମା ବସାକୁ ଆସିଲା । ମୁଁ ପାଖ ରୁମ୍‌ର ଲାଇଟ୍ ଅଫ୍ କରି ଶୋଇପଡ଼ିଲି । ମୁଣ୍ଡ ବିନ୍ଧୁଥିଲା । କିଛି ସମୟ ପରେ ପାଖ ରୁମ୍‌ରୁ ଶୁଭିଲା ଗଦାଧରର ଡାକ । ମୁଁ ଯାଇ ଦେଖିଲି ଅନିମା ଚେତାଶୂନ୍ୟା, ଆଲୁଳାୟିତ କେଶବାସରେ ଶଯ୍ୟାଶାୟୀ । ମୁଁ ଜାଣେ, ଅନିମାକୁ ଅନେକ ସମୟରେ ଚେତା ହରାଇବା ରୋଗ ଆକ୍ରମଣ କରେ । ମୁଁ କିଛି କହିବା ପୂର୍ବରୁ ଗଦାଧର ହୁକୁମ ଦେଲା– ତୋ ଦେହ ଖରାପ, ତୁ ଏଇଠି ଟିକେ ରହ । ମୁଁ ଡାକ୍ତର ପାଖରୁ ଆସୁଛି ।

ମୁଁ ପ୍ରଥମେ ଇତସ୍ତତଃ ହେଲି । କିନ୍ତୁ ଗଦାଧରର ଧମକରେ ଚୁପ୍ ହୋଇ ଅନିମାର ମୁଣ୍ଡ ପାଖରେ ବସିପଡ଼ିଲି ।

ପ୍ରାୟାନ୍ଧକାର କୋଠରି । ଘରସାରା ନିର୍ଜନତାର ପଇଁତରା । ସାମ୍ନାରେ ଅନିମାର ଅଚେତନ ତନୁ-ବଲ୍ଲରୀ ।

ଆପାଦମସ୍ତକ ଭଲ କରି ନିରୀକ୍ଷଣ କରିବାର ଅବକାଶ ପାଇଲି । ସିଲିଂ ଫ୍ୟାନ୍ ପବନରେ କାନ ପାଖର କେତେଟା ଚୂର୍ଣ୍ଣକୁନ୍ତଳ ଯାଇ ମସୃଣ ଗାଲ ଉପରେ ଘଷି ହେଉଥିଲା । ନିମୀଳିତ ଆଖିର ଉପକୂଳରେ କେଉଁ ଏକ ଅଧା ଦେଖା ସ୍ୱପ୍ନର ଭିଡ଼ । ଓଦା ଚର୍ମରେ ତିଆରି ଓଠ ଦୁଇପଟ ପରସ୍ପର ଆଲିଙ୍ଗନାବଦ୍ଧ । କ୍ରମେ ଦୃଷ୍ଟିରେଖା ମୋର ଊର୍ଦ୍ଧ୍ୱରୁ ଅଧକୁ ଲମ୍ବି ଚାଲିଲା, ମୋର ମନଟା ବି ମୋହାଚ୍ଛନ୍ନ ହୋଇ ପାଣି ତଳକୁ କ୍ରମେ ବୁଡ଼ି ଚାଲିଲା । ପଙ୍କ ହିଁ ତାର କାମ୍ୟ ।

ଧୀରେ ଧୀରେ ଅନିମାର ମୁଣ୍ଡ ଉପରେ ଆଙ୍ଗୁଠି ଛୁଆଁଇଲି । ତା' ପରେ କପାଳରେ ହାତ ରଖିଲି । ଅନେକ ଭାବ ଓ ଭାଷାର ଆଖିପତାକୁ ଧୀରେ ଧୀରେ ସ୍ପର୍ଶ କଲି । ଆସ୍ତେ ତା'ର ନରମ ଓଠ ଫଳକକୁ ଛୁଇଁଲି ।

ମୁଁ, ଶ୍ରୀ କନ୍‌ହେଇଲାଲ ଦାସ, ଶିକ୍ଷିତ, ସଚ୍ଚରିତ୍ର, ନ୍ୟାୟବାନ, ସେ ମୁହୂର୍ତ୍ତରେ ଅନୁଭବ କଲି ମୋ ମନ ଯନ୍ତାରେ ଚେଇଁ ଉଠିଥିବା ବାଘକୁ ମୁକୁଳାଇ ନ ଦେଲେ ଆଉ ରକ୍ଷା ନାହିଁ । ମୁଁ ସ୍ଥାନ-କାଳ-ପାତ୍ର ସବୁ ଭୁଲିଗଲି । ଭୁଲିଗଲି ଅନିମା ମୋ ଆଶ୍ରୟଦାତା ବନ୍ଧୁର ଜୀବନର ମୁଖବନ୍ଧ, ସେ ପୁଣି ଅନ୍ୟର ବାଗ୍‌ଦତ୍ତା ।

ଗଦାଧର ଡାକ୍ତରକୁ ନେଇ ଫେରିଲା ପରେ ଅନିମାର ଅତ୍ୟଧିକ ଅସଂଯତ କେଶବାସକୁ ଲକ୍ଷ୍ୟ କରି, ତା'ର ବିଶ୍ୱସ୍ତ ବନ୍ଧୁର ଅସ୍ଥିରତାକୁ ଲକ୍ଷ୍ୟ କରି, ମୁହୂର୍ତ୍ତକ ପାଇଁ ବି ଚିନ୍ତା କରିନଥିଲା ଯେ, ତା'ର ପ୍ରାଣ-ପ୍ରିୟାର ଅଚେତନ ଦେହର ଅରଣ୍ୟ ଉପର ଦେଇ କ୍ଷଣକ ପୂର୍ବରୁ ଏକ ଅଶାନ୍ତ କାଳବୈଶାଖୀ ବୋହିଯାଇଛି ।

କିନ୍ତୁ ତା' ପରେ କ'ଣ ମୋର ବିବେକ ମୁହୂର୍ତ୍ତକ ପାଇଁ ବିଳାପ କରି ଉଠି ନଥିଲା ? ମୋର ଅବଚେତନ ମନ ନିଶାର୍ଦ୍ଧରେ କଦାକାର ସ୍ୱପ୍ନ ଦେଖି ଚିତ୍କାର କରି ଉଠିନଥିଲା ? ମୁଁ କ'ଣ ସମୟ ସମୟରେ ପାଗଳଙ୍କ ପରି ପ୍ରଳାପ କରି ଉଠୁନଥିଲି ?

ତଥାପି ମୁଁ ବିଶ୍ୱାସୀ । ଦୁନିଆର ଅନେକ ଲୋକ ମୋତେ ବିଶ୍ୱାସ କରନ୍ତି । ମୋର ପରୋକ୍ଷ ଓ ପ୍ରତ୍ୟକ୍ଷରେ ପ୍ରଶଂସା କରନ୍ତି । ମୁଁ ନ୍ୟାୟବାନ, ସଚ୍ଚରିତ୍ର, ଉଦାର ବୋଲି ସାର୍ଟିଫିକେଟ ଦିଅନ୍ତି ।

ପୂନେଇଁ ଜହ୍ନ କେତେ ଉଜ୍ଜ୍ୱଳ; ଭୀରୁ ନିରୀହ ଜ୍ୟୋସ୍ନା ! କିନ୍ତୁ ଅପରାଂଶଟି କି କଦାକାର, ବୀଭତ୍ସ, କଦର୍ଯ୍ୟ ଘନନୀଳ ଅନ୍ଧକାର । ଚନ୍ଦ୍ରର ଅପର ପାର୍ଶ୍ୱଟି ଏତେ କୁତ୍ସିତ ପୁଣି ଅସଂଖ୍ୟ ଗର୍ତ୍ତ, ମୃତ ଆଗ୍ନେୟଗିରି, ଧୂ ଧୂ ମରୁଭୂମି । ତଥାପି ଚନ୍ଦ୍ର ପାଇଁ ଅସଂଖ୍ୟ ପ୍ରଶସ୍ତି । ଏପୋଲୋ, ଲୁନାର ଅସମ୍ଭବ ବ୍ୟାକୁଳତା । କାରଣ ଚନ୍ଦ୍ର ଖୁବ୍ ସୁନ୍ଦର ଓ ସ୍ନିଗ୍ଧ ଆଉ ମୁଁ, ଶ୍ରୀ କନ୍ହେଇଲାଲ ଦାସ ବି ଉଦାର, ସଚ୍ଚରିତ୍ର, ନୀତିବାନ, କବି, ଗାଳ୍ପିକ ଓ କ'ଣ ନୁହେଁ ?

(ସମାବେଶ, ମାର୍ଚ୍ଚ-ଏପ୍ରିଲ, ୧୯୭୨)



# ଗୋଟିଏ ଗଳ୍ପର ଗଳ୍ପ

ଏଇ ଗ୍ରୀଷ୍ମର ନିଃସଙ୍ଗ ନିରାନନ୍ଦ ଅପରାହ୍ଣରେ କେବଳ ନିର୍ବାକ୍ ନିସ୍ପନ୍ଦ ମୁହୂର୍ତ୍ତ ସବୁ ମୋ ଚାରିପଟେ ଘେରି ବସନ୍ତି । ମୋ ମନରୁ ଭାବନାର ଗୋଟିକ ପରେ ଗୋଟିଏ ତରଙ୍ଗ ଉତାରି ନେଇ ସେମାନେ ସେମାନଙ୍କ ପକେଟ ଭର୍ତ୍ତି କରନ୍ତି । ଆଉ ମୁଁ ବି ମୋର ନିଃସଂଗତାର ଲମ୍ବ ମାପିବାର ଦାୟିତ୍ୱ ଟିକ୍ ଟିକ୍ ଆୱାଜ ଉପରେ ଛାଡ଼ି ଦେଇ ନିଶ୍ଚିନ୍ତ ରହେ ।

ମୋ ଝରକା ଦେଇ ଖଣ୍ଡେ ଭଙ୍ଗା ଦର୍ପଣ କରି ଟେନାଏ ଆକାଶ ଆଖିରେ ପଡ଼େ । ଏକ କାଠ ଫ୍ରେମ ମଧ୍ୟରେ ଧୂସର ମେଘ ସବୁ ମୋର ହଜିଲା ଅସ୍ପଷ୍ଟ ସ୍ମୃତି ପରି ଇତସ୍ତତଃ ହୁଅନ୍ତି । ଖୁବ୍ ଦୂରରୁ କେଉଁ ଏକ ଅଜଣା ପକ୍ଷୀର ସ୍ୱର ଆସି କାନରେ ବାଜେ । ଦିଗ୍‌ବଳୟ ତଳେ ଦିଶେ ପଲାଶର ରକ୍ତାକ୍ତ ବ୍ୟକ୍ତିତ୍ୱ, ସେ ହିଁ ମୋ ଭିତରେ ପ୍ରତିଛବି ।

ଗ୍ରୀଷ୍ମର ଏ ରୁକ୍ଷ ପ୍ରକୃତିର ନୁଖୁରା କେଶ ପରି ଉଦାସ ଶୁଷ୍କ ତରୁଲତାକୁ ପଲକଶୂନ୍ୟ ଆଖିରେ ଚାହିଁରହେ ମୁଁ । ବର୍ଷାର ସ୍ନେହ ସଜଳ ହାତର ସ୍ପର୍ଶ ପାଇ ସବୁଜ ହେବାକୁ ପ୍ରକୃତି ବ୍ୟାକୁଳ ।

ମୁଁ ବି ବ୍ୟାକୁଳ ହେଉଥିଲି । ମେଳା ଯାତ୍ରାରେ ଅନେକ ସାଙ୍ଗସାଥୀ ଗହଳରେ ମୁଁ ବି ନିଃସଙ୍ଗ ହୋଇ ଉଠୁଥିଲି । ଏ ଲୋକାରଣ୍ୟ ମଧ୍ୟରେ ବି ମୋର ନିଃସଙ୍ଗତା ଜଣକର ନିଃସ୍ୱାର୍ଥପର ସ୍ନେହ ଛଳନାହୀନ ଭଲ ପାଇବା ପାଇଁ ବ୍ୟାକୁଳ ହୋଇ ଉଠୁଥିଲା ।

ମୁଁ ଯାହା ଚାହିଁଲି ତାହା ଅବଶ୍ୟ ପାଇଲି । କିନ୍ତୁ ସେ ଅନାବିଳ ସ୍ନେହ ଶୁଭେଚ୍ଛା ମୋର ଜୀବନର ଶେଷ ପୃଷ୍ଠା ପର୍ଯ୍ୟନ୍ତ ଜମେଇ ରଖି ପାରିଲି କି ? ଯାହାର ଅଯାଚିତ ସ୍ନେହ ଶ୍ରଦ୍ଧା ଭଲ ପାଇବାରେ ମୋ ଜୀବନର ଗତିପଥ ବଦଳିଗଲା କେବଳ ତାକୁ ଥରେ ଥରେ ପଚାରିବାକୁ ଇଚ୍ଛା ହୁଏ–ସୀମା, ତୁ ଏବେ କେମିତି ଅଛୁ ?

ମୁଁ ଏକ ମାସିକ ପତ୍ରିକାର ସଂପାଦକ । ଅନେକ କାହାଣୀ ମୋ ପାଖକୁ ଆସେ । ଅନେକ ଅଭିବ୍ୟକ୍ତି ମୁଁ ପଢ଼େ, ପ୍ରକାଶ କରେ । ଡଷ୍ଟବିନ୍‌ର ରାସ୍ତା ବି ଦେଖାଇ ଦିଏ । କିନ୍ତୁ ଦେବୀ ପଟ୍ଟନାୟକର ଗଳ୍ପଟି ପଢ଼ିଲା ପରେ ମନେ ହେଉଛି ଏ କାହାଣୀଟା ସୀମା

ଲେଖିଥିଲେ ହୁଏତ ଠିକ୍ ଭାବେ ଲେଖିପାରିଥାନ୍ତା ଏବଂ ଏଇଟାକୁ ଏକ କ୍ଷୁଦ୍ରଗଳ୍ପ ନ କରି ଗୋଟିଏ ଚମତ୍କାର ଉପନ୍ୟାସ ତିଆରି କରିପାରିଥାନ୍ତା ।

ଯାହା ହେଉ ଗଳ୍ପଟି ଅବିକଳ ଏହିପରି:

**ନିରର୍ଥକ**

ଶାନ୍ତନୁ, ତୁମକୁ ମୋ ଜୀବନକାଳ ମଧ୍ୟରେ ଅପେକ୍ଷା କରିଛି ସବୁଠାରୁ ବେଶୀ । ଆଜି କିନ୍ତୁ ତୁମ ପାଇଁ ଅପେକ୍ଷା ନାହିଁ । ତୁମେ ବରଂ ନ ଆସ । ଯଦି ତୁମେ ଆସ ତୁମକୁ ଗୋଟିଏ ନୂଆ ଜିନିଷ ଉପହାର ଦେବି । ନେବ ତ ? ନ ନେଲେ ବି ଦେବାକୁ ହେବ । କ'ଣ ଜାଣ ? ମୁଠିଏ ସୋରିଷ ଆଉ ଗୋଟିଏ ଲୁହା କଣ୍ଟା ।

ଶାନ୍ତନୁ, ସେକେଣ୍ଡ କଣ୍ଟାଟି ଥରି ଥରି ମାଡ଼ିଯାଉଛି ଆଗକୁ । ଆଉ କେତେଥର ମାତ୍ର ପରିକ୍ରମା କଲା ପରେ ଦୁଇଟି କଣ୍ଟା ମିଶିବେ । ଘର ସାରା ବାରଥର ଭୌତିକ ଶବ୍ଦ ହେବ । ସେତେବେଳେ ତୁମେ ହୁଏତ ଆସିବ । ତୁମେ ତ ଆସୁଥିଲ ପ୍ରତିଦିନ ଠିକ୍ ସାତଟାରେ । କିନ୍ତୁ ଏବେ ? ତୁମେ କଣ ସତରେ ଆସୁଥିବ ? ଦୟାକରି ତୁମେ ଫେରିଯାଅ ଶାନ୍ତନୁ । ତୁମ ପାଇଁ ପୃଥିବୀରେ ଅନେକ ସ୍ଥାନ ଅଛି ।

ତୁମେ ହିଁ କୁହ ମୋର ଦୋଷ କଣ ? ମୁଁ କଣ ଜାଣିଥିଲି ତୁମେ ଚାଲିଯିବ । ଆଉ ମୋତେ ଏପରି ହଇରାଣ କରିବ ? ତୁମେ କଣ ମୋତେ ସତରେ ଭଲପାଉ ନଥିଲ ? ମୁଁ ତ ତୁମକୁ ଅନେକ ପ୍ରଶ୍ନ ପଚାରିଛି ଆଉ ତୁମେ ବି ଅନେକ ପଚାରିଛ । ମୁଁ ଉତ୍ତର ଦେଇଛି ଆଉ ତୁମେ ବି, କିନ୍ତୁ ଆଜି କାହିଁକି କିଛି ପଚାରୁନ ? କିମ୍ବା ମୋତେ ପଚାରିବାକୁ ଅବକାଶ ଦେଉନ ? ମୁଁ ଯେତେଥର ତୁମକୁ ସ୍ୱପ୍ନରେ ଦେଖିଛି ତୁମେ ଚୁପ୍‌ଚାପ୍ ଆସି ଛିଡ଼ା ହୋଇଛ, କିଛି କହୁନ । ମୋ ପାଇଁ ସବୁଦିନ ଲାଗି କଣ ନୀରବ ହୋଇଗଲ ତୁମେ ?

ତୁମେ ତ ମୋତେ ଅନେକ କଥା କହୁଥିଲ । କିନ୍ତୁ ଯେଉଁଦିନ ତୁମ ସହ ଶେଷ ଦେଖା, ସେଦିନ ତୁମେ ଆସି କେବଳ ଛିଡ଼ାହେଲ । ମୁହଁସାରା ବଢ଼ିଲା ଦାଢ଼ି, ରୁକ୍ଷ କେଶ, ଆଖି ତଳେ କଳାଦାଗ । ଆଜି ବି ତୁମେ ମୋ ସ୍ୱପ୍ନରେ ଠିକ ସେଇ ଚେହେରାରେ ଆସି ଛିଡ଼ା ହେଉଛ ।

ଶାନ୍ତନୁ, କୁଆଡ଼େ ଗଲା ସେ ଦିନଗୁଡ଼ିକ ? ଯେଉଁଦିନ ମୁଁ ତୁମକୁ ପ୍ରଥମେ ଦେଖିଲି, ମନେ ଅଛି ତୁମର ? ସେଦିନ ଥିଲା ଶୁକ୍ରବାର । ବିଦ୍ୟାରମ୍ଭେ ଗୁରୁଶ୍ରେଷ୍ଠ କହି ମଧ୍ୟ କେଉଁ ଏକ ଅଜଣା ଅସୁବିଧା ଯୋଗୁ ତୁମେ ତା ପରଦିନ ଆସିଲ । ତୁମେ ପୂର୍ବରୁ ଜାଣିଥିଲ ମୁଁ ଥିଲି ଭିନ୍ନ ପ୍ରକାର ଝିଅ । ତେଣୁ ତୁମେ ବର୍ମ ପିନ୍ଧି ପ୍ରସ୍ତୁତ ହୋଇ ଆସିଥିଲ । ସତରେ ତୁମେ ଖୁବ୍ ଚତୁର । ମୋ ଭିତରେ ଗୋଟିଏ ବଡ଼ ଧରଣର

ଅହଙ୍କାର ଲୁଚି ରହିଥିଲା–ତୁମେ ଜାଣିଥିଲ । ତୁମେ ଜାଣିଥିଲ ମୁଁ ସବୁ ଟିଉସନ ମାଷ୍ଟରଙ୍କୁ କିଭଳି ବ୍ୟବହାର କରେ ।

ସେଦିନ କଥାବାର୍ତ୍ତା ତୁମେ ହିଁ ଆରମ୍ଭ କରିଥିଲ :

–ତୁମ ନାଁ ?

–ନାଁ ଜାଣିବା କଣ ନିହାତି ଦରକାର ?

–ହଁ, ଦରକାର ବୋଲି ତ ପଚାରିଲି ।

–ଦେବୀ, ଆପଣଙ୍କ ନାଁ ?

–ମୋ ନାଁ ଶାନ୍ତନୁ । କିନ୍ତୁ ନାମ ଜାଣି ତୁମର ଲାଭ ?

–କ୍ଷତି ନାହିଁ ।

ଏହିପରି ପ୍ରଥମେ ଲାଭ-କ୍ଷତି ଶବ୍ଦରୁ ଆମର ପ୍ରଥମ ଯାତ୍ରାରମ୍ଭ କିନ୍ତୁ କେତେ କାହାର ଲାଭ ହେଲା ବା କ୍ଷତି ହେଲା ତୁମେ ତାର ହିସାବ ରଖିଛ ?

ଶାନ୍ତନୁ, ମନେ ଅଛି ତୁମର, ସେଦିନ କି ନିଷ୍ଠୁର ଭଳି କଥା କହୁଥିଲ ? ପ୍ରଥମ ଦିନରେ ତୁମେ ଯେଉଁଭଳି ବ୍ୟବହାର କଲ ମୁଁ ଅବାକ୍ ନ ହୋଇ ମୁଗ୍‌ଧ ହୋଇଯାଇଥିଲି ।

ଅନେକ ସ୍କୁଲ ଝିଅ କଲେଜ ପିଲାଙ୍କ ପାଖରେ ଟିଉସନ ହୁଅନ୍ତି । ଆଉ ସେମାନେ ହିଁ ପ୍ରେମ କରନ୍ତି ବେଶୀ । ମୁଁ ଅନେକ ସାଙ୍ଗଙ୍କଠାରୁ ଶୁଣିଛି ସେମାନଙ୍କ ଟିଉସନ ମାଷ୍ଟରର ପ୍ରଶସ୍ତି । କିଏ ଖୁବ୍ ଭଲ ନୋଟ ଡାକେ ତ କିଏ ଖୁବ୍ ଭଲ ପଢ଼ାଏ; କିଏ ପୁଣି ଝିଅମାନଙ୍କ ବିଷୟରେ ସଂପୂର୍ଣ୍ଣ ଉଦାସୀନତା, କିଏ ଖୁବ୍ ସଚ୍ଚରିତ୍ର ।

ଝିଅମାନେ ପୁଅମାନଙ୍କ ଅପେକ୍ଷା କଥା କହନ୍ତି ବେଶୀ କିନ୍ତୁ ଅସଲ କଥା କେହି କାହା ପାଖରେ କହନ୍ତି ନାହିଁ । କିଏ କାହାକୁ ଭଲପାଏ ନ କହି ଅଯଥା ପ୍ରଶଂସା ଆରମ୍ଭ କରନ୍ତି । ସେଇଥିରୁ ସବୁ କଥା ଅନୁମାନ କରିନେବାକୁ ହୁଏ ।

ମୋର ମନେ ଅଛି, ମୋର ଯେତେବେଳେ ଚତୁର୍ଥ ଶ୍ରେଣୀ ଅପାର ସେତେବେଳେ ଏକାଦଶ । ଜଣେ ଟିଉସନ ମାଷ୍ଟର ଆସୁଥିଲା ଅପାକୁ ପଢ଼େଇବା ପାଇଁ। କଳା, ପତଳା ଚେହେରା ଏବଂ ସବୁବେଳେ ହସହସ ମୁହଁ । ତିନି ଚାରି ମାସ ପରେ ହଠାତ୍ ଅପାକୁ କେମିତି ଗୋଟେ ଖାପଛଡ଼ା ଲାଗିଲା । ଦିନେ ଅପା ପାଖରେ ରାତିରେ ଶୋଇ ମୁଁ ଅନୁଭବ କଲି ସବୁଦିନେ ଶୋଇଲା ମାତ୍ରେ ଯେପରି ଅପା ଆଖିରେ ନିଦ ଘୋଟିଆସେ ସେହିପରି ହଠାତ୍ ନିଦ ଆସୁନାହିଁ । ଅନେକ ରାତିଯାଏ ଅପା ଯେପରି ଏକେଡ଼ ସେକଡ଼ ହେଉଛି । ଆହୁରି ଲକ୍ଷ୍ୟ କଲି, ଅପା କଣ ସବୁ ଲେଖିଲା ବେଳେ ଏକା ଏକା ବସି ଲେଖୁଛି ଆଉ ମୁଁ ପାଖରେ ପହଞ୍ଚିଲା ମାତ୍ରେ ଲେଖା ବନ୍ଦ କରି ଏଣୁତେଣୁ ଗପିବା ଆରମ୍ଭ କରୁଛି । ଏହିପରି ଅନେକ ସାଧାରଣ ଘଟଣାର ରେଳଡବା ଯେ ଗୋଟିଏ ବିରାଟ ଦୁର୍ଘଟଣା ଆଡ଼େ ଗଡ଼ି ଚାଲିଥିଲା, ଏକଥା ଭାବିବାର ଅବକାଶ ମୋର ହେଲା ଯେଉଁଦିନ

ରାତିରେ ହଠାତ୍ ଅପାର ଚିତ୍କାର ଆଉ ବାପାଙ୍କ ରୁଦ୍ରମୂର୍ତ୍ତି ଦେଖିଲି । ଅପାର ବହିଥାକ ଯାଞ୍ଚ ହୋଇ ବାହାରିଲା ଅନେକ ଚିଠି । ସେଦିନ ବୁଝିଲି ଅପା ତାର ଟିଉସନ ମାଷ୍ଟରକୁ ପ୍ରେମ କରୁଥିଲା ଏବଂ ତା ସହ ପଳାଇଯିବା ପାଇଁ ସବୁ ଠିକ୍ କରି ସାରିଥିଲା । ସେ ଦିନରୁ ଅପା ପାଇଁ ମୋର ଆକଣ୍ଠ ଘୃଣାରେ ଜମିଗଲା । ଅବଶ୍ୟ ତାର ମାସକ ପରେ ଅପାର ବାହାଘର ଜଣେ ଇଞ୍ଜିନିୟର ସଙ୍ଗେ ହୋଇଗଲା ।

ମୁଁ ସେଇ ଦୁର୍ଘଟଣା ଦିନ ଦେଖିଛି ବାପାଙ୍କ ରୁଦ୍ରମୂର୍ତ୍ତି, ଅପାର ଖୋଲା କେଶ ଆଉ ଅସମ୍ଭବ ମାଡ଼ର ଯନ୍ତ୍ରଣାରେ ଭୀଷଣ ଚିତ୍କାର । ଅପାକୁ ଯେବେ ମନେ ପଡ଼େ, ମନେପଡ଼େ ଅପାର ଯନ୍ତ୍ରଣାକାତର ମୁହଁ । ଆଉ ମୁଁ ଯେବେ କିଛି ଅପରାଧ କରେ ମନେ ପଡ଼େ ବାପାଙ୍କ ସେଦିନର ସେଇ ରୁଦ୍ରମୂର୍ତ୍ତି, ଭୟ ମତେ ଅକ୍ଟୋପାଶ୍ ପରି ଜାବୁଡ଼ି ଧରେ । ତେଣୁ ସବୁ ଟିଉସନ ମାଷ୍ଟରଙ୍କ ପ୍ରତି ମୋର ଅସମ୍ଭବ ଘୃଣା ଆଉ ଅହେତୁକ ସନ୍ଦେହ ଜମିଉଠେ ।

ଶାନ୍ତନୁ, ମୋର ଏ ମନସ୍ତତ୍ତ୍ୱର ପରିଚୟ ପାଇଛନ୍ତି ସେମାନେ, ଯେଉଁମାନେ ତୁମ ପୂର୍ବରୁ ମୋତେ ଟିଉସନ କରିବାକୁ ଆସି କେତେ ଘଣ୍ଟା ବସିଥିଲେ । ସେମାନେ ଭୀଷଣ ଭାବେ ତିରସ୍କୃତ ହୋଇଛନ୍ତି ଏବଂ ଶେଷରେ ମୋତେ ପଢ଼ାଇବାର ଯୋଗ୍ୟତା ନାହିଁ ବୋଲି ଘୋଷଣା କରି ଉଠିଯାଇଛନ୍ତି । ତୁମେ କହୁଥିଲ ତୁମେ କୁଆଡ଼େ ତୁମର ଟିଉସନଜୀବୀ ବନ୍ଧୁମାନଙ୍କ ସହ ଚାଲେଞ୍ଜ କରି ଆସିଥିଲ ମୋତେ ପଢ଼େଇବାର ଯୋଗ୍ୟତା ଅଛି ବୋଲି ଦେଖାଇଦେବା ପାଇଁ । ସେଥିପାଇଁ ପ୍ରଥମ ଦିନରୁ ମୋ ସହ କଦର୍ଯ୍ୟ ବ୍ୟବହାର ଆରମ୍ଭ କରିଦେଲ । ଏକ ସପ୍ତାହ ପରେ ମୁଁ ଅନୁଭବ କଲି ମୋତେ ଶାସନ କରିବପାଇଁ ମୋଠାରୁ ନିଷ୍ଠୁର ବ୍ୟକ୍ତି ମଧ୍ୟ ପୃଥିବୀରେ ଅଛନ୍ତି । ମୁଁ ସେଇ କେତେଦିନ ଅନୁଭବ କରିଛି ଯେପରି କି ତୁମ ସାମ୍ନାରେ ମୁଁ ଖୁବ୍ ଅସହାୟ ହୋଇପଡ଼ିଛି । ନାରୀ ବୋଧହୁଏ ଚାହେଁ ଯେଉଁ ପୁରୁଷ ଦ୍ୱାରା ପେଷିତ ହୋଇ ଗୋଟିଏ ଆଶ୍ରୟହୀନ ଲତା ପରି ଅସହାୟ ହୋଇପଡ଼ିବ, ସେଇ ପୁରୁଷ ହିଁ ତାର ପ୍ରେମାର୍ଘ୍ୟ ନିବେଦନର ଯୋଗ୍ୟ ବ୍ୟକ୍ତି । ଯେତେବେଳେ ମୁଁ ଧୀରେ ଧୀରେ ତୁମର ନିଷ୍ଠୁର ବ୍ୟବହାରର ପ୍ରେମରେ ପଡ଼ିଆସୁଥିଲି ହଠାତ୍ ଦିନେ ତୁମେ ଟିଉସନ ପରିତ୍ୟାଗର ଘୋଷଣା କରିଦେଲ ଏବଂ ସତରେ ଠିକ୍ ଦଶଟି ଦିନରେ ମୋ ମନର ଧଳା କାଗଜରେ ଏକ ଗାର ଟାଣି ତମେ ହଠାତ୍ ଚାଲିଗଲ । ତା'ପରେ ଅବଶ୍ୟ ମୋର କୌଣସି ଟିଉସନ ମାଷ୍ଟର ଦରକାର ନାହିଁ ବୋଲି ବାପାଙ୍କୁ ଜଣେଇ ଦେଇଥିଲି ।

କିନ୍ତୁ ମୋର ପ୍ରାର୍ଥନା ଭଗବାନ ଶୁଣିଲେ । ଶାନ୍ତନୁ, ମୁଁ ପୁଣି ତୁମକୁ ପାଇଗଲି କେତେମାସ ପରେ । ତୁମ କଥା ଅନେକଥର ଭାବିଛି । ଅନେକଥର ଭାବିଛି ତୁମ କଥା ଏତେ ଭାବୁଛି କାହିଁକି ? କିନ୍ତୁ ମୁଁ କେବେ ତୁମ ସାମ୍ନାରେ ଆତ୍ମପ୍ରକାଶ କରିନାହିଁ ।

ମନେ ଅଛି ତୁମର ଶାନ୍ତନୁ, ମୁଁ ଦିନେ ତୁମକୁ ତୁମର ପରିବାର କଥା ପଚାରିଥିଲି । ତୁମେ ସେଦିନ ହଠାତ୍ ନ କହି ଅନ୍ୟ ଗୋଟିଏ ଦିନ କହିଲ । କିନ୍ତୁ ଯେଉଁଦିନ ମୁଁ ତୁମ କଥା, ପରିବାର କଥା ଶୁଣିଲି ?

ଶାନ୍ତନୁ, ମୁଁ ଏବେ ଆଶ୍ଚର୍ଯ୍ୟ ହେଉଛି, ଯିଏ ଏତେ ଦୁର୍ଦ୍ଦଶା ଭିତରେ ବି ସବୁବେଳେ ନିଜକୁ ଏକ ଜିଅନ୍ତା ମାଛ ଭଳି ସତେଜ ଆଉ ଚଞ୍ଚଳ ରଖିପାରୁଥିଲା ସିଏ କିଛି କାରଣ ନଥାଇ କିପରି ନିରୁଦ୍ଦେଶ ହୋଇଗଲା ? ଶାନ୍ତନୁ, ତୁମେ କଣ ସତରେ ମୋ ପାଇଁ ଚାଲିଗଲ ? ମୋତେ ତୁମେ ଏତେ ଭଲପାଉଥିଲ ?

ଶାନ୍ତନୁ, ମୁଁ ତୁମକୁ କେତେ ପରୀକ୍ଷା ବା ନ କରିଛି । ମୁଁ ଲକ୍ଷ୍ୟ କରି ଦେଖିଛି ତୁମର ଗୋଟିଏ ଅସମ୍ଭବ ଧାରୁଆ ପୌରୁଷ ଅଛି, ଯାହା ସଂଘର୍ଷରେ ଆସିଲେ କେବଳ ଦେହ, ହାତ, ମନ ସବୁ କଟି କ୍ଷତବିକ୍ଷତ ହୋଇଯାଏ । ମୋର ଧାରଣା ତୁମେ ତୁମ ଜୀବନକାଳ ମଧ୍ୟରେ କେବେ ଥରେ ବୋଲି କାନ୍ଦିନାହଁ, କେବଳ ଅନ୍ୟକୁ କନ୍ଦାଇ କନ୍ଦାଇ ତୁମେ ତୁମର କାନ୍ଦିବା ପ୍ରବୃତ୍ତିକୁ ନିୟନ୍ତ୍ରଣ କରିନେଇଛ । କିନ୍ତୁ ଯେଉଁଦିନ ପ୍ରଥମଥର ପାଇଁ ଭୀଷଣ ମିଛ କହି ତୁମ ଆଖିରେ ଲୁହ ଅଣେଇ ପାରିଥିଲି ସେଦିନ ତୁମର ମନେ ଅଛି ତ ? ମୁଁ ସେଦିନ ଅନ୍ୟ ଏକପ୍ରକାର ପ୍ରଶାନ୍ତି ଖୋଜି ପାଇଥିଲି ଏବଂ ତୁମର ବହିରାବରଣ ଭାଙ୍ଗି ତୁମର ଖୁବ୍ ଭିତରକୁ ପଶିପାରିଲି ବୋଲି ମନେ କରିଥିଲି ।

ଆଉ ସବୁ କଥା ତ ତୁମେ ଜାଣ । ପୁରୁଣା କଥାଗୁଡ଼ା ଭାବିବାକୁ ମୋତେ ଭଲ ଲାଗେନି । ତଥାପି ମୁଁ ଅନୁଭବ କରେ ଅନେକ ସମୟରେ ସେହି ବାଜେ କଥା ହିଁ ଭାବୁଛି ଶାନ୍ତନୁ, ଯେଉଁଦିନ ମୁଁ ଠିକ୍‌ଭାବେ ଅନୁଭବ କରିପାରିଲି ସବୁ ପଦାର୍ଥର ବାହାରେ ପୃଥିବୀର ଏକ ଭିନ୍ନ ରଙ୍ଗ, ଭିନ୍ନ ସ୍ୱାଦ, ଭିନ୍ନ ସ୍ୱର ଅଛି ଏବଂ ଗୋଟିଏ ବର୍ଷ ଭିତରେ ଅନେକ ରାଗ, ଅଭିମାନ, ଦୁଃଖ, ସୁଖ, ଆଲିଙ୍ଗନ, ଚୁମ୍ବନର ମୁହୂର୍ତ୍ତ ମିଶି ଏକ ଅସମ୍ଭବ ସ୍ମରଣୀୟ ଅଧ୍ୟାୟ ତିଆରି ହୋଇଗଲାଣି ସେଦିନ ପୁଣି ହଠାତ୍ ତୁମେ ଟିଉସନ ଛାଡ଼ି ଚାଲିଗଲ ।

—ଦେବୀ !

—କଅଣ ?

—ତୁ କାନ୍ଦୁଛୁ କାହିଁକି ?

—ନାଇଁ ତ କାନ୍ଦିଲି କେତେବେଳେ ?

—ମୋ ଯିବା ସମୟରେ ତୁ ହସିବୁ ନାହିଁ ?

—ହଁ ।

—ଦେବୀ ! ତୁ ହିସାବ କରି ଦେଖ ମୋ ସହ ଏଇ ଗୋଟିଏ ବର୍ଷରେ ତୋର କେତେ ଲାଭ ହେଲା ବା କ୍ଷତି ହେଲା ।

ଆଶ୍ଚର୍ଯ୍ୟ ! ଲାଭ-କ୍ଷତିର କଥା ନେଇ ଯେଉଁ ଅଧ୍ୟାୟ ଆରମ୍ଭ ହୋଇଥିଲା ସେଇ ଲାଭ-କ୍ଷତି କଥା ନେଇ ସେଇ ଅଧ୍ୟାୟଟା ଶେଷ ହୋଇଥିଲା ।

ମୁଁ ସେଦିନ ରାତିରେ ନକ୍ଷତ୍ରକୁ ଚାହିଁ ତୁମ ଆଉ ମୋର ଲାଭ-କ୍ଷତିର ହିସାବ କଲି । ଶେଷରେ ଲେଖିଲି ମୋର ଲାଭ ହୋଇଛି ପ୍ରଚୁର ଅନୁଭୂତି ଏବଂ ଅନେକ ବିଳମ୍ବିତ ମୁହୂର୍ତ୍ତରେ ଭାବିବାର ଖୋରାକ ଏବଂ କ୍ଷତି ହୋଇଛି ତୁମ ନିକଟରେ ଉତ୍ସର୍ଗୀକୃତ ମୋର ଅନେକ ମୁହୂର୍ତ୍ତର ଭାବପ୍ରବଣତା ।

ଶାନ୍ତନୁ, ତା ପରେ ତୁମ ସହ ଅନେକଥର ଦେଖା ହୋଇଛି ରାସ୍ତାଘାଟରେ । ତୁମକୁ ଅନେକଥର ପଚାରିଛି–ତୁମେ କାହିଁକି ହଠାତ୍ ଟିଉସନ ଛାଡ଼ି ଚାଲିଗଲ ? ମୁଁ କଣ କିଛି ଦୋଷ କଲି ? ତୁମେ ସବୁଥର କହିଛ ମୋତେ ଭଲ ଲାଗିଲା ନାହିଁ । ମୁଁ ଆଶ୍ଚର୍ଯ୍ୟ ହୋଇଛି–ମୋ ପାଖରେ ବସିବାକୁ ତୁମକୁ ଭଲ ଲାଗିଲା ନାହିଁ ? ତୁମେ କଥା ପ୍ରସଙ୍ଗରେ ମୋତେ ବୁଝାଇ ଦେବାକୁ ଚେଷ୍ଟା କରିଛ–ନାଇଁ, ତୋତେ ଭଲ ଲାଗିବା ନୁହେଁ, ଏ ଆତ୍ମପ୍ରବଞ୍ଚନା ମୋତେ ଭଲ ଲାଗୁନାହିଁ । ଆତ୍ମପ୍ରବଞ୍ଚନା ? ମୁଁ ପଚାରିଛି, ତୁମେ କେବଳ ସାଧାରଣ ଉତ୍ତର ଦେଇଛ–ଏସବୁ ଭୀଷଣ ନିରର୍ଥକ ।

ଏ ଘଟଣାର କେତେ ଦିନ ପରେ ଶୁଣିଲି ତୁମେ ଚାକିରିଟା ବି ଛାଡ଼ି ଦେଇଛ । କେବଳ ସେତିକି ନୁହେଁ, ତୁମେ ଦାଢ଼ି କାଟିବା ଚାଡ଼ି ଦେଇଛ, ଭଲ ପୋଷାକ ପିନ୍ଧିବା ଛାଡ଼ି ଦେଇଛ, ବେଶୀ ଗପିବା ଛାଡ଼ି ଦେଇଛ– କିନ୍ତୁ କାହିଁକି ? ମୁଁ କଣ କିଛି ଦୋଷ କଲି ?

ସ୍କୁଲ ଯିବା ରାସ୍ତାରେ ଆଉଦିନେ ତୁମ ସହ ଦେଖା । ହଠାତ୍ ପ୍ରଶ୍ନ ପଚାରି ବସିଲ–ଦେବୀ ! ତୁ ମୋତେ ଯଦି ପ୍ରକୃତରେ ଭଲପାଉଥିଲୁ, ତାହେଲେ ମୋତେ ଭୁଲିଯା ! ଆଉ ମନେକର ତୋ ଶାନ୍ତନୁ ଅନେକ ଦିନରୁ ମରିଯାଇଛି । ମୁଁ ଅବାକ୍ ହୋଇ ଲୁହ ଭର୍ତ୍ତି ଆଖିରେ ତୁମକୁ ଅନାଇ ରହିଥିଲି । ମୋ ଆଖିରେ ଅସଂଖ୍ୟ ପ୍ରଶ୍ନ । ତୁମେ ସବୁ ପ୍ରଶ୍ନର ଉତ୍ତର ଗୋଟିଏ ବାକ୍ୟରେ ଦେଇ ଦେଲ–ଏସବୁ ଭୀଷଣ ନିରର୍ଥକ ।

ମୋର ଶୁଖିଲା ମୁହଁ ଦେଖି ବାପା, ମା ସନ୍ଦେହ କଲେ ଏବଂ ଶୀଘ୍ର ମୋର ବିବାହ ଠିକ କରି ପକାଇଲେ । ମୋ ଅଜାଣତରେ ମୋର ବହି ଖାତା ସବୁ ଯାଞ୍ଚ ହୋଇଗଲା କୌଣସି ଗୋପନ ପ୍ରେମପତ୍ର ମିଳିପାରେ କି ନା । ମୁଁ ଅପା ପରି ନଥିଲି । ତୁମକୁ, ତୁମର ଭଲ ପାଇବାକୁ ବହିଥାକ ସନ୍ଧିରେ ଲୁଚାଇ ରଖିବାର ନିର୍ବୁଦ୍ଧିତା ମୋର ନ ଥିଲା; ତଥାପି ମୁଁ ତୁମକୁ ଅନେକ ଚିଠି ଲେଖିଲି ଶାନ୍ତନୁ । ସବୁଥିରେ ବିଭିନ୍ନ ପ୍ରକାର ଉତ୍ତର ମିଶାଇ ଗୋଟିଏ ପ୍ରଶ୍ନ ପାଇଲି–ଏ ସବୁର ଅର୍ଥ କଣ ?

ତୁମେ ସତରେ ଏ ସବୁର ଅର୍ଥ ପାଉ ନଥିଲ ? ତାହେଲେ କାହିଁକି ମୋ ମନର ଧଳା କାଗଜରେ ଏକ ଗାର ଟାଣି ଛଳନାର ଆଶ୍ରୟ ନେଲ ? ତୁମର ଏ ନିରର୍ଥକ

ଶବ୍ଦଟାକୁ ଯେତେବେଳେ ଏକ ଛଳନା ଆଉ ଶଠତାର ମୁଖା ବୋଲି ମନେ ହେଲା ସେତେବେଳେ ତୁମର ଟଣାରେଖା ଲିଭାଇବା ପାଇଁ ମୁଁ ଅନ୍ୟ ଏକ ପୁରୁଷର ବିବାହ ବେଦୀରେ ବନ୍ଦି ହୋଇଗଲି ।

ଯେଉଁଦିନ ମୋର ଭାଗ୍ୟ ଅନ୍ୟଜଣଙ୍କ ସହ ବନ୍ଧା ହୋଇଗଲା ସେ ଦିନ ଶୁଣିଲି ତୁମେ ତୁମର ସହର ଛାଡ଼ି କେଉଁଆଡ଼େ ଚାଲିଯାଇଛ । କୁହ ଶାନ୍ତନୁ, ମୁଁ ତୁମ ପାଇଁ ଆଉ କଣ କରିପାରିଥାଆନ୍ତି ?

ଶାନ୍ତନୁ, ମୁଁ ମୋ ସ୍ୱାମୀଙ୍କ ଛାତିରେ ମୁଣ୍ଡରଖି ପାଇଛି ବନ୍ଦରର ନିରାପତ୍ତା। ତୁମକୁ ବିବାହ କରିଥିଲେ ମୁଁ ହୁଏତ ଅପା ପରି ଚରିତ୍ରହୀନା ହୋଇଥାନ୍ତି ଆଉ ବାପାଙ୍କ ରୁଦ୍ରମୂର୍ତ୍ତିର ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା । ଶାନ୍ତନୁ, ତେଣୁ ବିଶ୍ୱାସ କର, ମୁଁ ଖୁବ୍ ସୁଖରେ ଅଛି । ମୋ ଚାରିପଟେ ରଙ୍ଗିନ ପୃଥିବୀ ଏବଂ ଏ ପୃଥିବୀରେ ମୁଁ ଏକ ସାମ୍ରାଜ୍ଞୀ ।

ତୁମେ କାହିଁକି ଏହା ଭିତରକୁ ପଶିଆସୁଚ ? ମୁଁ ସୁଖ ଚାହେଁ କି ନା ଜାଣେନା, କିନ୍ତୁ ଶାନ୍ତି ଚାହେଁ । ମୋର ଶାନ୍ତିଭଙ୍ଗ ପାଇଁ ତୁମେ ଆସନା ଶାନ୍ତନୁ । ଏବେ ମୋର ତୁମକୁ ଦରକାର ନାହିଁ ।

ଶାନ୍ତନୁ, ବିଶ୍ୱାସ କରିବ ଗୋଟିଏ କଥା ? ବିବାହର ପରଦିନ ଯେଉଁ ମୁହୂର୍ତ୍ତରେ ଶୁଣିଲି ତୁମେ ଚାଲିଯାଇଛ, ସେଦିନ ଆଖିର ଲୁହ ସମ୍ଭାଳି ନେଇ ପୁଲକିତ ହୋଇ ଉଠିଥିଲି ଏବଂ କ୍ରମେ ସ୍ୱାମୀଙ୍କ ସ୍ନେହରେ ତୁମକୁ ଭୁଲିବା ଆରମ୍ଭ କରିଦେଇଥିଲି । କିନ୍ତୁ ବିବାହର ବର୍ଷକ ପରେ ଅନୁଭବ କରୁଛି, ତୁମେ ଆସୁଛ, ପ୍ରତି ମୁହୂର୍ତ୍ତରେ ଆସୁଛ । ଝରକା ସେପଟେ ଠିଆ ହେଉଛ ଚୁପ୍‌ଚାପ୍ । ମୋ ଅନ୍ଧକାର କୋଠରି ଭିତରେ ଆସି ଚାଲବୁଲ କରୁଛ । ଶାନ୍ତନୁ । ମୁଁ ଏବେ ତୁମକୁ ଭୟ କରିବା ଆରମ୍ଭ କରିଦେଇଛି । ଦିନେ ହୁଏତ କୁମାରୀ ଜୀବନର ଦାୟିତ୍ୱହୀନତା ଆଉ ଚଞ୍ଚଳ ମନ ନେଇ ତୁମକୁ ଭଲପାଇ ବସିଥିଲି, କିନ୍ତୁ ଆଜି ଦାୟିତ୍ୱପୂର୍ଣ୍ଣ ପରିବାରର ଗୃହବଧୂ ହେଲା ପରେ ମୁଁ ପରିଷ୍କାର କହୁଛି–ମୁଁ ତୁମକୁ ଭଲପାଏନା । ତେଣୁ ତୁମେ ଆଉ ଆସ ନାହିଁ, କାରଣ ମୁଁ ତୁମକୁ ତ ଚାହେଁନା; ତୁମର ସ୍ମୃତି, ତୁମର ଭୂତକୁ ପୃଥିବୀର ଯେକୌଣସି ପଦାର୍ଥଠାରୁ ବି ଘୃଣା କରେ ।

ଅପା ଖୁବ୍ ସୁଖରେ ଅଛି । ମୁଁ ବି ରହିବି । ଜାଣ ଗୋଟିଏ କଥା ? ମୁଁ କେବଳ ଜାୟା ଥିଲି, ଏବେ ଜନନୀ ହେବାକୁ ଯାଉଛି । ତେଣୁ ତୁମେ ଆଉ ଆସନା । ତୁମେ ଯଦି ମୋର ହାତ ଧରନ୍ତ ତାହେଲେ ତୁମକୁ ମୋର ଅନେକ କଥା ରଖିବାକୁ ହୁଅନ୍ତା । ଆଜି କଣ ଏଇ ସାମାନ୍ୟ ଅନୁରୋଧ ରଖିପାରିବ ନାହିଁ ?

ଶାନ୍ତନୁ ! ମୁଁ ସେଦିନ ସ୍ୱପ୍ନ ଦେଖି ଯେତେବେଳେ ଚିତ୍କାର କରିଉଠିଲି ଏବଂ ମିଛରେ ସ୍ୱାମୀଙ୍କୁ କହିଲି ଗୋଟିଏ ଭୂତ ମତେ ଭୟ ଦେଖାଉଥିଲା, ସେତେବେଳେ ତାଙ୍କ ମୁଖମଣ୍ଡଳ ଫିକା ହୋଇଗଲା । ସେ କହନ୍ତି ଅନେକ ରାତିରେ ମୁଁ କୁଆଡ଼େ ଶୋଇ ଶୋଇ କାହା ସହ କଥା କହେ । ମୁଁ ଜାଣେ ନିଦ ଆସିଲେ ସ୍ୱପ୍ନ ଆସେ । ସ୍ୱପ୍ନ ଆସିଲେ ତୁମେ ଆସ । ତୁମେ ନା ତୁମ ଭୂତ ? ତୁମ ଭୂତ ନା ତୁମ ସ୍ମୃତି ? ମୁଁ ଜାଣେ ସେଇଟା କଣ ? ଆଜି ମୋ ସ୍ୱାମୀ ଗୁଣିଆଠାରୁ ସୋରିଷ ମନ୍ତ କରାଇ ମୋ ହାତରେ ଧରାଇ ଦେଇଛନ୍ତି– କୌଣସି ଭୂତ ମୋ ପାଖକୁ ଆସିପାରିବ ନାହିଁ କିମ୍ବା ସ୍ୱପ୍ନରେ ତୁମେ ମୋ ପାଖକୁ ଆସିପାରିବ ନାହିଁ ।

ଶାନ୍ତନୁ ! ମୋ ଲୁଗା କାନିରେ ସୋରିଷ, ମୋ ବିଛଣା ତଳେ ଲୁହା କଣ୍ଟା, ଗୁଣିଆର ମନ୍ତ୍ର, କେହି ତୁମର ଗତିରୋଧ କରିପାରିବେ ନାହିଁ । ମୁଁ ଜାଣେ ଯଦି ମୁଁ ବାରମ୍ବାର କହେଁ–ମୁଁ ତୁମକୁ ଘୃଣା କରେ, ଭୀଷଣ ଘୃଣା କରେ, ତୁମେ କେବଳ ମୋର ଅପରିପକ୍ୱ କୁମାରୀ ଜୀବନର ହୁଗୁଳା ମନର ଏକ ଖେୟାଲ ଆଉ କିଛି ନୁହେଁ, ତା ହେଲେ ? ତାହେଲେ ପାରିବି ତ ତୁମକୁ ଦୂର କରି ?

କେବଳ ଶେଷରେ କହିବି ତୁମେ ନିରୁଦ୍ଦେଶ ହୋଇଯାଇନା, ତୁମେ ସବୁ କଥା ନିରର୍ଥକ ବୋଲି କହି ନିରୁଦ୍ଦେଶ ହୋଇପାରିବ ନାହିଁ । କାରଣ ମୋ ଭିତର ମହାଦେଶର ସୀମାନ୍ତ ଟପିବା ଯେ ଭୀଷଣ କଷ୍ଟ ।

ସୋରିଷ ନୁହେଁ, କଣ୍ଟା ନୁହେଁ, ଗୁଣିଆ ନୁହେଁ, ମୌଖିକ କଥା ନୁହେଁ, ସେତେବେଳେ ତୁମେ କେବଳ ନିରୁଦ୍ଦେଶ ହୋଇପାରିବ ଯେତେବେଳେ ମୁଁ ଓ ମୋର ତମସାଚ୍ଛନ୍ନ ମହାଦେଶ ଚିତାଗ୍ନି ଭିତରେ ସଂପୂର୍ଣ୍ଣ ଭାବରେ ନିରୁଦ୍ଦିଷ୍ଟ ହୋଇଯିବୁଁ ।

–ଶେଷ–

ଏ ଗଳ୍ପ ଦେବୀ ପଟ୍ଟନାୟକର ଗଳ୍ପ । ଏ ଗଳ୍ପଟି ଭଲ ହୋଇଛି କି ନା ଜାଣେନା, କିନ୍ତୁ ଗଳ୍ପଟି ମୋତେ ଭଲ ଲାଗିଛି । କାରଣ ମୋର ଆଉ ସୀମାର କାହାଣୀ ଟିକିଏ ଏଇ ଧରଣର ।

ମୁଁ ଜାଣେ ସୀମା ମୋତେ ଭଲ ପାଉଥିଲା । କିନ୍ତୁ ଆତ୍ମଗୋପନତା ତା ନିକଟରେ ଖୁବ୍ ତୀବ୍ର । ସେ କହେ ମୋତେ କୁଆଡ଼େ ଭାଇ ପରି ଭଲପାଏ । ମୁଁ କିନ୍ତୁ ପ୍ରେମିକ ହେବାକୁ ଚାହିଁଥିଲି । ବ୍ୟର୍ଥପ୍ରେମିକ ହେବାରେ ମଧ୍ୟ ମୋର ବେଶ୍ ଲୋଭ ଥିଲା । କିନ୍ତୁ ତାରି ପାଇଁ କିଛି ଗୋଟାଏ ହୋଇପାରିଲି ନାହିଁ ।

ସୀମାକୁ ଶେଷ ଶବ୍ଦ କେତେଟା କହିଥିଲି ରାସ୍ତା ଉପରେ ଠିଆ ହୋଇ :

–ସୀମା, ତୁ ମୋତେ ବାହାହୋଇ ପାରିବୁ ?

–ନା, କାରଣ ମୁଁ ଆପଣଙ୍କୁ ଭାଇ ପରି ଭଲପାଏ ।

—ମନେକର ତୋ ଭାଇର ମୃତ୍ୟୁ ହୋଇଯାଇଛି ।

—ସେ ନୀରବ ।

—ସୀମା, ଗୋଟିଏ କଥା ।

—କ'ଣ ?

—ମୁଁ ତୋ ପାଦରେ ଚୁମା ଦେବି ।

—ଏସବୁ ବାଜେ କଥା ଶୁଣିବାକୁ ମୁଁ ପ୍ରସ୍ତୁତ ନୁହେଁ ।

ତାପରେ ଆଖିର ଲୁହ ସମ୍ଭାଳି ସେ ଚାଲିଗଲା ଏବଂ କିଛି ବାଟ ଯାଇ ଥରେ ମାତ୍ର ପଛକୁ ଚାହିଁଲା, ତାପରେ ରାସ୍ତା ବାଙ୍କରେ ଅଦୃଶ୍ୟ ହୋଇଗଲା ।

ସୀମା ପାଇଁ ମୋର ଯନ୍ତ୍ରଣା ଅନେକ । କହିବାର କଥା ବି ଅନେକ । ଆପାତତଃ ଥାଉ । ତା ପାଇଁ ଗୋଟିଏ ଗଳ୍ପ ନୁହେଁ, ଅନେକ ଉପନ୍ୟାସ ଲେଖାଯାଇପାରେ । ଆଉ ସବୁ ଭାବପ୍ରବଣତାର ତଣ୍ଟିଚିପି ଗୋଟିଏ କଥା କୁହାଯାଇପାରେ—ସୀମା, ତୁ ଆଜିକାଲି କେମିତି ଅଛୁ ?

(ଆସନ୍ତାକାଲି, ଜୁନ୍ ୧୯୭୨)



# ଭାଲୁ

**(ଅସୀମା, ବାଲେଶ୍ୱରକୁ...)**

ମୁଁ ଗୋଟିଏ ଚାଳଘର ପାରିହୁଏ । ଦି' ମହଲା କୋଠା ପାରିହୁଏ । କିନ୍ତୁ ହଠାତ୍ କିଏ ପଛରୁ ଆଦରରେ ଡାକେ ମୋର ନାମ ଧରି । ମୁଁ ଚାହିଁ ଦେଖେ ଭାଲୁ । ସେ ମୋର ଜାମା ମାଗେ । ମୁଁ ବାକ୍ୟବ୍ୟୟ ନ କରି ଉତାରିଦିଏ । ସେ ଜାମାକୁ ପିଠି ଉପରେ ପକାଇ ଥିବାର ଲାଗେ ଏବଂ ଆନନ୍ଦରେ ବିଲେଇପରି ଘୁଡ୍ରୁଘୁଡ୍ରୁ କରେ । ବ୍ରସ୍ ପରି କଣ୍ଟା କଣ୍ଟା ଲୋମକୁ ମୋ ଦେହରେ ଘଷେ । ମୁଁ କିଛି କହେନି । ଅମର ଆସି ପହଞ୍ଚେ । ଶେଷଥର ପାଇଁ ତା ପିଠି ଆଉଁଶିଦେଇ ମୁଁ ଆଗକୁ ଯାଏ ରାସ୍ତାରେ କଣ୍ଟାବାଡ଼ ଦେଖି ଛିଡ଼ାହୁଏ । ବାଡ଼ରୁ ଗୋଟିଏ କାଠିଭାଙ୍ଗି ଦାନ୍ତ ସନ୍ଧିରେ ଲଗାଏ । ପାଟିଟା ଲୁଣିଆ ଲାଗେ । ଦୁଇ ଦାନ୍ତ ସନ୍ଧିରେ ପବନ ଟାଣେ ଏବଂ ଛେପ ପକାଏ । ରକ୍ତମିଶା ଛେପ ଦେଖି ମୋ ଜାମା କଥା ମନେକରେ । ହର୍ଷବର୍ଦ୍ଧନ ପରି ଶେଷରେ ଛୁଟେ ଅପାର ଘରକୁ । ଅପା ଜାମା ଦିଏନାହିଁ, ଜୋତା ଦିଏ । ମୁଁ ଜୋତା ପିନ୍ଧି ଅପା ଘରୁ ବାହାରି ଆସେ । ଅମର ମୋତେ ସମୁଦ୍ର କୂଳକୁ ବୁଲେଇନିଏ । ଗଭୀର ସମୁଦ୍ର । ଇଂରାଜୀ ଛବିରେ ଦେଖିଥିବା ଢେଉପରି ଢେଉଗୁଡ଼ିକ ମାଡ଼ିଆସେ । ମୁଁ ଶୀତ ଅନୁଭବ କରି ଜାମା କଥା ମନେକରେ । ଆକାଶକୁ ଚାହେଁ । ମେଘ ଘୋଟିଆସିବା ପରି ମନେହୁଏ । ଅନେକ ଦୂରରେ ଯେଉଁଠି ନୌକାଟା ଥରେ ଥରେ ଦେଖାଯାଇ ଥରେ ଥରେ ଲୁଚିଯାଏ ଠିକ୍ ସେଇଠି ସୂର୍ଯ୍ୟକିରଣ ପଡୁଥିବାର ମୁଁ ଦେଖେ । ସୂର୍ଯ୍ୟକିରଣ ଭିତରେ ରହି ସୂର୍ଯ୍ୟକିରଣର ଚେହେରା ଦେଖି ହୁଏନାହିଁ ଏବଂ ଛାଇରେ ରହି ଦେଖିହୁଏ । ଏଇ ସତ୍ୟ ଆବିଷ୍କାର କରି ଭାଲୁ କଥା ମନେକରେ । ପଛ ଝାଉଁବଣ ଆଡ଼େ ଭାଲୁପରି କ'ଣ ଗୋଟାଏ ଦେଖାଯାଏ । ମୁଁ ଅମରକୁ ନେଇ ସେଇଆଡ଼େ ଆସେ । କିଛିଦୂର ଆସି ଦେଖେ ବୁବୁ ଆଉ ରୁମା । ବୁବୁର ସିଲ୍କ ଶାଢ଼ି ଝଲମଲ କରେ ଏବଂ ତା'ର ଦେହ ଖୁବ୍ ନରମ ହୋଇଗଲାଣି ବୋଲି ମନେହୁଏ । ମୋ ଦେହ ପାଖକୁ ଲାଗିଆସି କ'ଣ ସବୁ କହେ । ମୁଁ ବୁଝିପାରେନା ।

ରୁମାର ଦାନ୍ତ ଦେଖେ । ମୋ ପାଟି ଭିତର ପୁଣି ଲୁଣିଆ ଲାଗେ । ଛେପ ପକାଇ ଦେଖେ ରକ୍ତ । ବୁବୁର ଦେହ ମୋ ଦେହରେ ବ୍ରସ୍ ଭଳି ଲାଗେ । ମୁଁ ଘୁଞ୍ଚିଯାଏ । ବୁବୁ ଗମ୍ଭୀର ହୁଏ । ସେ ବାଲି ଭାଙ୍ଗି ଉପରକୁ ଉପରକୁ ଉଠିଯାଏ । ଗୋଟିଏ ଲମ୍ୱା ପିଲା ସଙ୍ଗେ କଥାବାର୍ତ୍ତା ହୁଏ । ମୁଁ ବି ଅମରକୁ ନେଇ ଅପା ଦେଇଥିବା ନୂଆ ଜୋତା ହାତରେ ଧରି ବାଲି ଭାଙ୍ଗେ । ବୁବୁ ଖୁବ୍ ଦୂରକୁ ଘୁଞ୍ଚିଯାଏ । ମେଘୁଆ ଆକାଶ ତଳେ ତା'ର ସିଲ୍‌ହଟ ଚମତ୍କାର ଦେଖାଯାଏ । ସମୁଦ୍ର ଆଡ଼େ ଚାହିଁବାକୁ ଭୟ ଲାଗେ । ରାସ୍ତା ଉପରେ କିଛିଦୂର ଆସେ, ତା' ପରେ ବାଡ଼ କଡ଼ରୁ କୋଠି ଭାଙ୍ଗେ । ମୋର ଖାଲି ଦେହ ବିଷୟରେ ସଚେତନ ହୁଏ । ତା'ପରେ ଦି' ମହଲା କୋଠା । ମୁଁ ଭାଲୁକୁ ଭୟ କରେ । ମୋର ଗନ୍ଧ ଶୁଙ୍ଘି ଭାଲୁ ବାହାରି ଆସେ । ଆଦରରେ ସେ ଜାମା ଫେରାଇଦିଏ । ଦୁଇ ପାଦରେ ଛିଡ଼ା ହୋଇ ତା'ର ଆଗ ଗୋଡ଼ ଦି'ଟା ମୋ ଛାତିରେ ଲଗାଏ । ତା ନଖରେ ମୋ ଛାତି ବାଳ ଉପୁଡ଼ିଯାଏ । ମୁଁ ଆସ୍ତେ ଆସ୍ତେ ତା'ର ପାଦ ଦି'ଟା ତଳେ ଓହ୍ଲାଇ ପକାଏ । ସେ ମୋ ଦେହ ଶୁଙ୍ଘେ । ସମୁଦ୍ରର ଲୁଣିପାଣି ଲାଗିଛି ବୋଲି ସେ ମୋ ପାଦ ଚାଟି ପକାଏ । ମୋତେ ସଲସଲ ଲାଗେ । ଅମର ନୀରବରେ ଛିଡ଼ାହୋଇ ଦେଖେ । ତା'ପରେ ମୋର ହାତ ଚାଟିବାକୁ ଆରମ୍ଭ କରେ । ମୋତେ ଅବଶ୍ୟ ଘୃଣା ଲାଗେନି । ତଥାପି କେମିତି ଏକପ୍ରକାର  ଲାଗେ । ଶେଷରେ ତା'ର କଳା ଲାଳୁଆ ଓଠ ମୋ ଓଠରେ ଲଗାଏ ଏବଂ ଅନୁଭବ କରେ କୁକୁରର ଜିଭ ପରି ତା'ର ଜିଭ ନରମ ନୁହେଁ ବରଂ କଣ୍ଟାଳିଆ । ସେଇ କଣ୍ଟାଳିଆ ଜିଭ ମୋ ଓଠ ଉପରେ ଘୂରିବୁଲେ । ମୁଁ ଆଖି ବନ୍ଦକରି ଛିଡ଼ା ହୁଏ । କିଛି ପ୍ରତିବାଦ କରିପାରେନା । କିଛିସମୟ ପରେ ଦେଖେ ତା ଆଖିରେ ପରିତୃପ୍ତି । ଭାଲୁକୁ ରଖି ଆଗେଇଯାଏ । ବୁବୁର ସିଲ୍‌କ ଶାଢ଼ି ଆଉ ତା ଦେହର ରେଖା କଥା ମନେକରେ । ମୁଁ ଆଗେଇ ଚାଲେ । ତା'ପରେ କାଞ୍ଚନଘର ପାରିହୁଏ । କାଞ୍ଚନ ପଛରୁ ଡାକେ । ମୋତେ ଖୁବ୍ ଡାକେ । ମୁଁ ଯାଏ ଚେୟାରରେ ବସେ । ସେ ରୋଷେଇ ଘରୁ ଗୋଟିଏ ହାତ ନଥିବା କପ୍‌ରେ କପେ ମାଂସ ତରକାରି ଆଣି ମୋ ସାମ୍ନାରେ ଧରେ । ମୁଁ ସଙ୍ଗେ ସଙ୍ଗେ ଶେଷ କରିଦିଏ । ମୁଁ ତା'ର ହାତ ବେଙ୍କ ଦେଖେ । ସେ ସଂକୁଚିତ ହୋଇ ମୋତେ ଯିବାକୁ କହେ । ମନେହୁଏ ତା'ର ଟେବୁଲ କିମ୍ୱା ଖଟତଳୁ ହଠାତ୍ କିଏ ବାହାରି ଆସିବ । ମୁଁ ରାସ୍ତାରେ ଚାଲେ ଅମର କିଛି କଥା କହେନାହିଁ । ବୁବୁକୁ ଡାକେ । କେଉଁ ଏକ ପାତାଳରୁ ତା'ର ଡାକ ଶୁଭେ । ମୁଁ ଗାଧୁଆ ଘର ପର୍ଯ୍ୟନ୍ତ ତାକୁ ଖୋଜେ । ଗାଧୁଆ ଘର ଥାକରେ ତେଲ ମହମବତି ଦେଖେ । ପୁଣି

ବଡ଼ପାଟିରେ ଡାକେ । ଏଥର ପାଖରୁ ଆୱାଜ ଆସେ । ମୁଁ କୂଅ ଭିତରକୁ ଚାହିଁ ଦେଖେ । ବୁବୁ ଭିତରେ ଓହ୍ଲାଇ ଗାଧୋଇବାରେ ବ୍ୟସ୍ତ । ତା'ର ବ୍ଲାଉଜହୀନ ଶାଢ଼ି ଭିତରୁ ବର୍ଦ୍ଧିଷ୍ଣୁ ଛାତି ଦେଖେଁ । ବିରକ୍ତିରେ ହୁଇସିଲ୍ ମାରିବାକୁ ଇଚ୍ଛା ହୁଏ । ରୁମା ଆସି ତା ଦେହର ସମସ୍ତ ଭାର ମୋ ପିଠି ଉପରେ ଦିଏ । ମୋ ଦେହରେ ବ୍ରସ୍ ଭଳି ଲୋମ ଫୋଡ଼ି ହୋଇଯାଏ । ଭାଲୁ, ଭାଲୁ ବୋଲି ଚିତ୍କାର କରିବାକୁ ଇଚ୍ଛାହୁଏ । ପୁଣି ଅମର ଭାଲୁ ଘରଆଡ଼େ ଯିବାକୁ ମନ କରେ । ଅମର ଚାଲେ । ମୁଁ ଦେଖେ ଭାଲୁ ନାହିଁ । କୂଆଡ଼େ ଯାଇଛି । ଆଉ ଟିକେ ଆଗେଇଯାଏ । ଦାନ୍ତ ଖୁଣ୍ଟାଏ । ପାଟି ଲୁଣିଆ ଲାଗେ । ରକ୍ତମିଶା ଛେପ ପକାଏ । ଭାଲୁକୁ ଅପେକ୍ଷା କରେ । ଅନେକ ସମୟ ଅପେକ୍ଷା ପରେ ମଧ୍ୟ ସେ ଆସେନାହିଁ । ତାର ଲୋମଶ ଦେହ ଦେଖାଯାଏ ନାହିଁ । ମୁଁ କାନ୍ଦିବାକୁ ଆରମ୍ଭ କରେ । ଅମର ମୋତେ ଚାହେଁ । ମୁଁ କାନ୍ଦେ । ଅମର ପ୍ରଥମଥର ପାଇଁ ପାଟି ଖୋଲି ଚିତ୍କାର କରେ, ଭାଲୁର ଓଠର ରଙ୍ଗ କ'ଣ ଗୋଲାପୀ ?

(ମୟୂରଚନ୍ଦ୍ରିକା, ସାମୟିକ ଗଳ୍ପ ସଂକଳନ, ଜୁଲାଇ ୧୯୭୨)



# ସେ ଶିଡ଼ିରେ ଚଢ଼ିଲେ

ସେ କାନ୍ଦିଲେ ଏବଂ ଶିଡ଼ିକୁ ଚାହିଁଲେ । ତାଙ୍କ ମା' ଧାଇଁ ଆସି ତାଙ୍କୁ କୋଳକୁ ନେଲେ । ଶାଢ଼ିରେ ତାଙ୍କ ମୁହଁ ଘୋଡ଼ାଇ ବ୍ଲାଉଜର ତଳ ବୋତାମ ଖୋଲିଲେ । ସେ କିନ୍ତୁ ଶାଢ଼ି ଭିତରୁ ମୁଣ୍ଡ କାଢ଼ି ଝର୍କାଆଡ଼େ ଆଉ ଶିଡ଼ିକୁ ଚାହିଁଥିଲେ । ଶେଷରେ ସେ ଉଠିଲେ । କିଛି ଗୋଟେ କହିବାକୁ ଚାହିଁଲେ, କିନ୍ତୁ କହି ପାରିଲେ ନାହିଁ । ଧୀରେ ଧୀରେ ସେ ଶିଡ଼ିରେ ଚଢ଼ିଲେ ।

ଦୋମହଲାରେ ପହଞ୍ଚି ସେ ଝର୍କା ପାଖକୁ ଧାଇଁଗଲେ । ତଳେ ବଗିଚାର ତାରବାଡ଼ ସେପଟେ ଅନେକ ଗୋରୁ ଆଉ ଗାଡ଼ି ଦେଖିଲେ । ଟିକିଏ ବିରକ୍ତ ହେଲେ । ଉପରକୁ ଚାହିଁଲେ । ଅନେକ ରଙ୍ଗର ଗୁଡ଼ି ଆଉ ଚଢ଼େଇ ଦେଖିଲେ । କାନ୍ଦିବାକୁ ଇଚ୍ଛା ହେଉଥିଲା । ସେ ଶିଡ଼ିକୁ ଚାହିଁଲେ । ତାଙ୍କ ବନ୍ଧୁମାନେ ଧାଇଁ ଆସିଲେ । ହାତରେ ଖେଳନା ନେଇ ଧାଇଁ ଆସିଲେ ଭାଇଭଉଣୀ । ସେ ସମସ୍ତଙ୍କୁ ଚିତ୍କାର କରି କ'ଣ ଗୋଟାଏ କହିବାକୁ ଚାହିଁଲେ, କିନ୍ତୁ ପାରିଲେ ନାହିଁ । ସେ କେବଳ ଶିଡ଼ିରେ ଚଢ଼ିଲେ ଶିଡ଼ିରେ ଚଢ଼ିଲେ ଶିଡ଼ିରେ ଚଢ଼ିଲେ–

ତା' ପରେ ମହଲାରେ ପହଞ୍ଚି ସେ ଝର୍କା ପାଖକୁ ଧାଇଁଗଲେ । ସେ ଦେଖିଲେ ବଗିଚାର ତାରବାଡ଼ ଭିତରେ ଅନେକ ପ୍ରଜାପତି, କ୍ରୋଟନ ପତ୍ର ଉପରେ ଏଣ୍ଡୁଅ, ଆକାଶର ସମାନ୍ତର ରେଖାରେ ଉଡ଼ିଯାଉଥିବା ଦୁଇଟି ନାମ-ନଜଣା ପକ୍ଷୀ । ଶିଡ଼ିକୁ ଚାହିଁଲେ । ପାଣିକାଚର ଶବ୍ଦ ହେଲା । ପିଠିରେ ମୃଦୁ ସ୍ପର୍ଶ ପାଇ ପଛକୁ ଫେରି ଚାହିଁଲେ । ମୃଣାଳ ବାହୁ ବେକରେ ଛନ୍ଦି ହେଲା । ଆଖିର ଆକାଶରେ ଅନେକ ଶ୍ୱେତ ବଳାକା ଦେଖିଲେ । ତାଙ୍କ ଭିତରୁ ଅନେକ ଶବ୍ଦ ଉଠି ଆସିଲା । ଅନେକ କିଛି ଲେଖି ପକାଇବାକୁ ଇଚ୍ଛା କଲେ । କିନ୍ତୁ ମନେ ମନେ ପୁଣି 'ମାନେ ହୁଏନା' ଧରଣର ଶବ୍ଦ ଉଚ୍ଚାରଣ କଲେ । ଶେଷରେ ଉଠିଲେ ଏବଂ ଶିଡ଼ିରେ ଚଢ଼ିଲେ ଶିଡ଼ିରେ ଚଢ଼ିଲେ ଶିଡ଼ିରେ ଚଢ଼ିଲେ–

ତା' ପର ମହଲାରେ ସେ ଝର୍କା ଖୋଲି ବାହାରକୁ ଚାହିଁଲା ମାତ୍ରେ ଦେଖିଲେ ନର୍ଦ୍ଦମାରେ ଅନେକ କାଉ ଓ କୁକୁର । ତାଙ୍କ ମୁହଁ ବିକୃତ ହୋଇଗଲା । ସେ ଧୀରେ ଧୀରେ ଶୁଆ ପଞ୍ଜୁରି ପାଖକୁ ଆଗେଇ ଗଲେ । ଶୁଆ ଦୁର୍ବୋଧ୍ୟ ଭାଷାରେ ଚିତ୍କାର କରି

ଛଟପଟ ହେଲା । ସେ ଆତ୍ମପ୍ରସାଦ ଲାଭ କରେ । ହାତରେ ବଜାର ଥଳି ଧରି ଇତସ୍ତତଃ ହେଉଥିବା ବେଳେ ପିଲା ଦୁଇଟି ଲଜେନ୍‌ସ ପାଇଁ ଅଳି କଲେ । ସେ କ'ଣ ଗୋଟେ କହିବାକୁ ଚାହିଁଲେ, ଭାଷା ପଇଟିଲା ନାହିଁ । ଶୁଆର ଚିତ୍କାର ପରି ଭିତରୁ କ୍ରମାଗତ ନୀରବ ଚିତ୍କାର ଉଠିଆସିଲା । ସେ ଶିଡ଼ିରେ ଚଢ଼ିଲେ ଏବଂ ଶିଡ଼ିରେ ଚଢ଼ିଲେ ଶିଡ଼ିରେ ଚଢ଼ିଲେ ଶିଡ଼ିରେ ଚଢ଼ିଲେ ।

ତା' ପର ମହଲାରେ ସେ ଝର୍କା ଖୋଲି ବାହାରକୁ ଚାହିଁଲେ । ଚାରିଆଡ଼େ ସୂର୍ଯ୍ୟାସ୍ତର ରଙ୍ଗ । ଶୀର୍ଣ୍ଣ ବଳାକାର ଡେଣା ଝାପଟାରେ ନିଃସଙ୍ଗତାର ସଙ୍ଗୀତ ଶୁଣିଲେ । ତଳକୁ ଚାହିଁଲେ ଗଛ ମୂଳରେ ଅନେକ ହଳଦିଆ ଆଉ ଶୁଖିଲା ପତ୍ର । ସେ ଚଷମା ଖୋଲି ରଖିଲେ ଏବଂ କେମିତି ଏକ ଅନ୍ୟ ଆଖିରେ ପାଖ ଖୋଲା ଛାତକୁ ଚାହିଁଲେ । ଭିତରେ ଅନେକ ଦିନର ଅକୁହା କଥା ବାନ୍ତି ଭଳି ଉଠି ଆସୁଥିଲା । ରୋକିନେଲେ ଏବଂ ଥରିଲା ପାଦରେ ଶିଡ଼ିରେ ଚଢ଼ିଲେ, ଶିଡ଼ିରେ ଚଢ଼ିଲେ, ଶିଡ଼ିରେ ଚଢ଼ିଲେ –

ତା' ପରେ କେବଳ ଖୋଲା ଆକାଶ । ଉପରକୁ ଚାହିଁଲେ ସେ । ଚାରିଆଡ଼େ ସୂର୍ଯ୍ୟାସ୍ତର ରଙ୍ଗ ଆଉ ତା ମଝିରେ ମଝିରେ ଗୋଟେ ଗୋଟେ ଉଇଁ ଆସୁଥିବା ନକ୍ଷତ୍ର । ସେ ଆଖି ବନ୍ଦ କଲେ ଓ ଭିତରକୁ ଚାହିଁଲେ । ଶବ୍ଦହୀନ ନକ୍ଷତ୍ରହୀନ ଅନେକ ଶବ୍ଦର ଆକାଶ । ଅନୁଭବ କଲେ ଅସଂଖ୍ୟ ଆକାରହୀନ ବାକ୍ୟର ଇତସ୍ତତଃ ପ୍ରସେସନ । ଆଖି ଖୋଲିଲେ ଏବଂ କାନ ଡେରି ଶୁଣିଲେ ଶିଡ଼ି ପାହାଚରେ କୋଳାହଳ । ତାଙ୍କ ଅନ୍ୱେଷଣରେ ବିରାଟ ଦ୍ରୁତଗାମୀ ପଟୁଆର । ସେ ପ୍ରତିବାଦ କରିବାକୁ ଚାହିଁଲେ । ବିଫଳ ହେଲା । ଧୀରେ ଧୀରେ ସମସ୍ତେ ତାଙ୍କୁ ଘେରି ଆସିଲେ । ସମସ୍ତଙ୍କ ହାତରେ ରଶି ଆଉ ଜଞ୍ଜିର । ସେମାନେ ତାଙ୍କୁ ବାନ୍ଧି ପକାଇଲେ । ସେ ତାଙ୍କୁ ଅନେକ କଥା କହିଲେ କିନ୍ତୁ ସେଇ କଥାଟି ପ୍ରକାଶିତ ହୋଇପାରିଲା ନାହିଁ । ଉପାୟ ନ ପାଇ ସେ ଆକାଶକୁ ଲମ୍ଫ ପ୍ରଦାନ କଲେ । ଦେହ ଆଉ ମନର ସବୁ ଗଣ୍ଠି ଢ଼ୁଗୁଲା ହୋଇଗଲା । ସବୁ ଚିନ୍ତା ବନ୍ଧନ ତୁଟିଗଲା । ସେ ଅନୁଭବ କଲେ ତାଙ୍କ ପାଦ ତଳେ ଆଉ ଭୂମି ନାହିଁ । କେବଳ ତଳ ବଗିଚାରେ ଅନେକ ଫୁଲ ଫଳର ଆକାଶ, ଉପରେ ଅନେକ ନକ୍ଷତ୍ରର ଆକାଶ, ତାଙ୍କ ନିଜ ଭିତରେ ଅନେକ ଶବ୍ଦର ଆକାଶ ।

ସେ ଆଖିରେ ଲୁହ ଜମେଇ ଚିତ୍କାର କଲେ–ମୁଁ ସଂପୂର୍ଣ୍ଣ ମୁକ୍ତ ।



[‘ଦିଗଂତ’–ଅକ୍ଟୋବର, ୧୯୭୨ ସଂଖ୍ୟାରେ ପ୍ରକାଶିତ । ‘ଦିଗଂତ’ରେ ଏହା ‘ଦିଗଂତ’ ବନାନ ପ୍ରଣାଳୀରେ ମୁଦ୍ରିତ ହୋଇଥିଲେ ହେଁ ‘କନ୍‌ହେଇ କଥାଘର’ର ସାମଗ୍ରିକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ମୁଦ୍ରଣରେ ତାହାର ଅନୁବର୍ତ୍ତନ କରାଯାଇ ନାହିଁ ।]

# ଏକ ବ୍ୟକ୍ତିଗତ ପତ୍ର କିମ୍ବା ଅନେକ ଅବ୍ୟକ୍ତ ଅନୁଭବର ବିକ୍ଷିପ୍ତ ଭୂମିକା

**ଗିରୀଶ,**

ତୁମ ଚିଠି ପାଇଲି । ତୁମେ ପୂଜାସଂଖ୍ୟା ପାଇଁ ଗଳ୍ପଟିଏ ମାଗିଛ । ଓଡ଼ିଶା ଛାଡ଼ିଲା ପରେ ମୁଁ ଆଉ ଗଳ୍ପ ଲେଖିନି । କିନ୍ତୁ ଯନ୍ତ୍ରଣା ପାଉଛି ଅନେକ । ସେ ସବୁକୁ ନେଇ ବି କବିତା ଲେଖିପାରନ୍ତି । ତା ବି ହେଉନି । ବର୍ଷାଯାଇ ଶରତ ଆସିଲାଣି । ଏଠାରେ ଘାସ ବଣ ଉପରେ ଦିଗ୍‌ବଳୟ ହାମୁଡ଼େଇ ପଡ଼େ, ବତାସରେ କାଶଫୁଲ ଢେଉ ଭାଙ୍ଗେ, ଶଙ୍ଖଚିଲର ଡେଣାରୁ ନିଃସଙ୍ଗତା ଝରିପଡ଼େ, ଏଠାରେ ରଙ୍ଗିନ୍ ସୂର୍ଯ୍ୟୋଦୟ ହୁଏ, ଶିଶିର ବିନ୍ଦୁର ପ୍ରିଜିମ୍ ଦେଇ ପ୍ରଥମ ସୂର୍ଯ୍ୟକିରଣ ମାଟି ଛୁଏଁ । ସୂର୍ଯ୍ୟାସ୍ତ ପରେ ନିରୋଳା ଜାଗାରେ ବସି ପଲକହୀନ ଆଖିରେ ପଶ୍ଚିମ ଦିଗନ୍ତର ବର୍ଣ୍ଣ ମହୋତ୍ସବକୁ ଚାହିଁ ରହେ ମୁଁ । ମନେ ମନେ ଉଚ୍ଚାରଣ କରେ ମୋ ଜୀବନରେ ଏ ଦିନଟା ବି ଅଯଥା ହୋଇଗଲା, କିଛି ହୋଇପାରିଲା ନାହିଁ । ପଶ୍ଚିମ ଆକାଶରେ ଗୋଟିଏ ନକ୍ଷତ୍ର ଅସଷ୍ଟ ଭାବରେ ଦପ୍ ଦପ୍ କରି ଜଳି ଉଠେ । ତା ସହ ମୋ ଜୀବନର ସାମଞ୍ଜସ୍ୟ ଖୋଜି ବସେ । ମୋତେ ମନେହୁଏ ମୋତେ ଛାଡ଼ି କେଉଁଠି ଗୋଟିଏ ଉତ୍ସବ କିମ୍ବା ମେଳା ଚାଲୁ ଚାଲୁ ଶେଷ ହୋଇଆସୁଛି । ମୁଁ ପଶ୍ଚିମ ଆକାଶକୁ ଚାହିଁ ମେଳାର ଦୃଶ୍ୟ ଦେଖିବାକୁ ଆରମ୍ଭ କରେ ।

ଦେଖେ ରଙ୍ଗିନ୍ ଚୁଡ଼ି ଦୋକାନରେ ଅନେକ ଝିଅ ବୋହୂ ସେମାନଙ୍କ ବଳିଲା ବଳିଲା ହାତ ବଢ଼ାଇ ଦେଉଛନ୍ତି । ରୁଣୁଝୁଣୁ ନାଲି ସବୁଜ କାଚରେ ସେମାନଙ୍କ ହାତ ପୂରି ଉଠୁଛି । ସାନ ସାନ ପିଲାମାନେ ଦୋଳାରେ ବସିଯାଇଛନ୍ତି ହାତରେ ବେଲୁନ୍ ଧରି । ହୁହୁ ହୋଇ ଦୋଳା ଉପରକୁ ଉଠିଯାଉଛି । ଉପରେ ଥାଇ ଟିକି ଝିଅଟି ତାଳି ମାରୁଛି । ତା'ପରେ ଯେତେବେଳେ ଦୋଳା ଖସୁଛି ତା ମୁହଁର ଚେହେରା ବଦଳି ଯାଉଛି । ଗୋଟିଏ ଗାଢ଼ ସବୁଜ ରଙ୍ଗର ସାଲୱାର ପିନ୍ଧିଥିବା ଝିଅ ଛନ୍ ଛନ୍ ଆଖିରେ ଯେପରି କାହାକୁ ଖୋଜୁଛି । ଚଞ୍ଚଳ ପୁଚୁକା ଭିତରେ ମସଲା ଭର୍ତ୍ତି କରି ଦେଉଛି ପଗଡ଼ିବନ୍ଧା ପୁଚୁକାବାଲା । ଜାମାରେ ହାତୀ ଘୋଡ଼ା ଥିବା ପିଲାଟା ଖଟା ପାଣି ପିଇ

ଉଡ଼ାଇ ଦେଉଛି । ସିଲ୍‌କ ଶାଢ଼ିପିନ୍ଧା ଗାଁ ବୋହୂଟି ଓଢ଼ଣା ବେକରୁ ଟେକି ଏଣେ ତେଣେ ଚାହିଁ ଦେଉଛି । ଗୋଟିଏ ହାତରେ ବୁଢ଼ୀର ଆଙ୍ଗୁଠି ଚାପି ଧରି ଭିଡ଼ ଠେଲି ଆଗେଇ ଚାଲିଛି । ଦୂରରେ ଲମ୍ବା କଲିଥିବା ଟୋକା କେତେଟା ଛିଡ଼ାହୋଇ ଟାଇଟ୍ କରି ପିନ୍ଧିଥିବା ଝିଅଙ୍କୁ ଲକ୍ଷ୍ୟ କରି କଣ ସବୁ କଥାବାର୍ତ୍ତା ହେଉଛନ୍ତି ।

କିନ୍ତୁ କିଛିସମୟ ପରେ ମନହୁଏ ମୁଁ ଯେପରି ସେଇ ମେଳାକୁ ଲକ୍ଷ୍ୟକରି ଆଗେଇ ଯାଉଛି । ଯାଇ ଦେଖୁଛି ସେଠାରେ ଚୁଡ଼ି ନାହିଁ କିମ୍ବା କେହି ଗୋରା ଗୋରା ହାତରେ କଳା ସବୁଜ ଚୁଡ଼ି ପିନ୍ଧିବାକୁ ହାତ ଦେଖାଇ ଦେଉନାହାନ୍ତି । କେବଳ ବିଗତ ଉତ୍ସବର ସ୍ମାରକୀ ସ୍ୱରୂପ କେତୋଟି ଭଙ୍ଗାଚୁଡ଼ି ସେଠାରେ ପଡ଼ିଛି । ଏଣେତେଣେ ବିକ୍ଷିପ୍ତ କାଗଜପତ୍ର, ଛିଡ଼ାକାଗଜ, ସିଗାରେଟ୍ ଖୋଳ । ଯେଉଁ ଦୋଳାରେ ବସି ବେଲୁନ୍ ହାତରେ ନେଇ ପିଲାମାନେ ତାଳିମାରି ହସୁଥିଲେ ସେ ଘୂର୍ଣ୍ଣନ ଥମିଯାଇଛି ଏବଂ ପରିତ୍ୟକ୍ତ ହୋଇପଡ଼ିଛି ।

ମୋତେ ହଠାତ୍ ମନେ ହୋଇଛି ମୁଁ ଯେପରି ସେଇ ପରିତ୍ୟକ୍ତ ଦୋଳାରେ ଚଢ଼ିଯାଇଛି ଏବଂ ହୁହୁ କରି ତଳକୁ ଖସୁଛି ତଳକୁ ଖସୁଛି ତଳକୁ ଖସୁଛି ତଳକୁ ଖସୁଛି ତଳକୁ ଖସୁଛି । ମୋର ଏପରି କାହିଁକି ମନେହୁଏ ମୁଁ ଜାଣେନି । ଏଇ କଥାକୁ ନେଇ ଗଳ୍ପ ଲେଖିବସେ; ଲେଖେନି ।

ଗିରୀଶ, ଦିନେ ଏକ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ରାତିରେ ଆଲୁଅ ଲିଭାଇ ଦେଇ ମୁଁ କାନଡେରି ଶୁଣୁଥିଲି ଖୁବ୍ ଦୂରରେ କାହାର ଗୋଟିଏ ରେଡ଼ିଓ ବାଜୁଛି । ଗୀତଟା ସ୍ପଷ୍ଟ ଶୁଣା ଯାଉନଥିଲା, କେବଳ ସ୍ୱରଟା ବାରମ୍ବାର ମନେକରାଇ ଦେଉଥିଲା ଯେପରି ସେଇ ସ୍ୱରଟା କେଉଁଦିନ କେଉଁଠି ମୁଁ ହଜାଇ ଦେଇଛି । ଟିଣ ଚାଳ ଉପରେ ଗଛର ପତ୍ର ପଡ଼ିଲା ବୋଧହୁଏ । ହଠାତ୍ ମନେହେଲା ଚାଳ ଉପରେ ଗୋଟିଏ କଳା ବିଲେଇ ଚାଲି ବୁଲୁଛି । ତା'ପରେ ସବୁ ଏକାକାର ହୋଇ ଆସିଲା । ଚେତନ ଅଚେତନର ସୀମାରେଖା ଯେପରି କୁହୁଡ଼ିରେ ହଜିଆସିଲା । କିନ୍ତୁ ପରେ ମନେହେଲା ମୁଁ ଚେତନାର ବଳୟକୁ ଫେରିଆସିଛି । ଖଟ୍ କରି ଆଲୁଅ ଜଳାଇଲି । ପେଣ୍ଟସାର୍ଟ ପିନ୍ଧି ପକାଇଲି । ମୋତେ ଥାନାକୁ ଯିବାକୁ ହେବ । ଏପ୍ରକାର ଅନ୍ୟାୟ ମୁଁ ବରଦାସ୍ତ କରି ପାରିବି ନାହିଁ । ଫୁଲକୁଣ୍ଡଗୁଡ଼ାକୁ କଲିକତାରୁ ଅଣାଇ ମୁଁ ବଗିଚାରେ ବସାଇଥିଲି । ଫୁଲ ଅନେକ ବି ଫୁଟିଥିଲା । ଏତେ ଆସ୍ପର୍ଦ୍ଧା ଏଇ ଚୋରମାନଙ୍କର ଯେ ମୁଁ ଚେଇଁ ଚେଇଁ ଶୋଇଥିବା ଅବସ୍ଥାରେ ମୋ ବଗିଚାରୁ ଫୁଲକୁଣ୍ଡ ଚୋର ଉଠାଇ ନେଇଯିବେ । ହାତରେ ଟର୍ଚ୍ଚ ନେଲି । କବାଟ ଖୋଲିଲି । ଗେଟ୍ ଖୋଲୁ ଖୋଲୁ ବଗିଚାକୁ ଟର୍ଚ୍ଚ ମାରି ଦେଖିଲି ଫୁଲକୁଣ୍ଡଗୁଡ଼ା ଅବିକଳ ସେହିପରି ବସିଛି । ମୁଁ ହଠାତ୍ ବିଶ୍ୱାସ କରିପାରିଲି ନାହିଁ । ତେବେ ଏ ପ୍ରକାର ଘଟଣା ଯେ କାହିଁକି ଘଟିଥିଲା ମୁଁ ଜାଣେନାହିଁ । ଏଇ କଥାକୁ ନେଇ ଗଳ୍ପ ଲେଖିବି ବୋଲି ମଧ୍ୟ ଲେଖିପାରୁନି ।

ଗିରୀଶ, ମୁଁ। ଯେତେବେଳେ ବାଲେଶ୍ୱରରେ ଥିଲି, ସେତେବେଳେ ପ୍ରତି ସଞ୍ଜରେ ସୀମା ଘରଆଡ଼େ ବୁଲି ଯାଉଥିଲି । ସୀମାକୁ ଟିଉସନ କରିଥିଲି କେତେଦିନ ଏବଂ ସେଇ ସମୟ ମଧ୍ୟରେ ତାର ଚରିତ୍ରରେ କିଛିଟା ଭିନ୍ନତା ଦେଖି ତା ପ୍ରତି ଆକୃଷ୍ଟ ହୋଇପଡ଼ିଥିଲି । ତେଣୁ ପ୍ରତି ସଞ୍ଜରେ ତାକୁ ଦେଖିବାର ଲୋଭ ସମ୍ୱରଣ କରି ନପାରି ତା ଘର ଆଗ ଦେଇ ସାଇକେଲ୍‌ରେ ଗଡ଼ି ଯାଉଥିଲି । ମୁଁ ସବୁଦିନେ ଦେଖେ ତା ଘର ଆଗ ଛକରେ ଅନେକ ପିଲା ବସନ୍ତି । ସେ ପିଲାମାନଙ୍କର ଛାତି ଖୁବ୍ ଚଉଡ଼ା, ଚଉଡ଼ା ବେଲ୍‌ଟ ବି ବାନ୍ଧନ୍ତି । ହାତ ଖୁବ୍ ମୋଟା। ଟାଇଟ୍ ହାଫ୍ ପ୍ୟାଣ୍ଟ ପିନ୍ଧନ୍ତି । ମୁଣ୍ଡରେ ବାଳ ବଢ଼ାନ୍ତି, ଲମ୍ୱା କଲି ଓ ମୋଟା ନିଶ ରଖନ୍ତି । ଅବଶ୍ୟ ପାଖରେ ଗୋଟିଏ ଜିମ୍‌ନାସିୟମ ଅଛି । ମୁଁ ଜାଣେ ଜିମ୍‌ନାସିୟମ୍‌ର ସବୁ ପିଲାମାନେ ମୋତେ ସମ୍ମାନ କରନ୍ତି । କାରଣ ଏକଦା ଯାଇ ସେଠାରେ ବାର୍‌ବେଲ୍ ଡାମ୍ୱେଲ ଉଠାପକା କରୁଥିଲି । ଦିନେ ଦେଖିଲି ଆମ୍ୱଗଛରୁ ଫାଶି ହେଲାପରି ଗୋଟିଏ ବାଲିବସ୍ତା ଓହଳି ପଡ଼ିଛି ଏବଂ ଦଳେ ପିଲା ତାକୁ କ୍ରମାଗତ ବକ୍‌ସିଂ ମାରି ଚାଲିଛନ୍ତି । ମତେ ମନେହେଲା ମୋତେ ଶେଷ କରି ଦେବା ପାଇଁ ସେମାନଙ୍କର ଭୀଷଣ ପ୍ରସ୍ତୁତି । ସେଦିନରୁ ମୁଁ ଆଉ କେବେ ସୀମା ଘର ଗଳିକୁ ଯାଇପାରିନି ।

ଗିରୀଶ, ଆଉ ଗୋଟିଏ ଖେୟାଲ୍ ମୁଣ୍ଡରେ ଏବେ ଚଢ଼ିଛି । ସେ ଏକ ଘଟଣା । ଦେବୀଠାରୁ ଅନେକ ସୁନ୍ଦର ସୁନ୍ଦର ସ୍ୱପ୍ନିଳ ଚିଠି ପାଇଲା ପରେ ଏବେ ଥରେ ରାସ୍ତାରେ ଏକା ଏକା ଚାଲୁଚାଲୁ ଦେଖିଲି, ଗୋଟିଏ ସବୁଜ ରଙ୍ଗର ଚେଭରଲେଟ୍ ଗାଡ଼ି ମୋ ପାଖଦେଇ ହୁସ୍‌କରି ଚାଲିଗଲା । ଗୋଟିଏ ମୁହୂର୍ତ୍ତ ପାଇଁ ଦେଖି ନେଇଥିଲି ପଛ ସିଟ୍‌ରେ ଅବିକଳ ଦେବୀ ପରି ଗୋଟିଏ ଝିଅ ବସିଥିଲା । ମନେହେଲା ତା'ର ପ୍ରତ୍ୟେକ ଅବୟବ ଏପରିକି ଶାଢ଼ି ପିନ୍ଧା ପର୍ଯ୍ୟନ୍ତ ଦେବୀ ସହିତ ସମାନ । କେବଳ ଏତିକି ପାର୍ଥକ୍ୟ ଯେ ଝିଅଟିର ମୁହଁରେ ଗୋଲାପୀ ଲିପ୍‌ଷ୍ଟିକ । ସେଦିନ ରାତିରେ ମନ ଏପରି ଖରାପ ହୋଇଗଲା ଯେ ନଖାଇ ଶୋଇପଡ଼ିଛି ଏବଂ ରାତି ତିନିଟା ବାଜିବାର ଶବ୍ଦ ମୁଁ ପରିଷ୍କାର ଶୁଣିଲି । ଏବେ ରାସ୍ତାରେ ଚାଲିଲାବେଳେ ଗାଡ଼ିର ଶବ୍ଦ ଶୁଣିଲେ ମନେହୁଏ ସେଇ ସବୁଜ ରଙ୍ଗର ଚେଭରଲେଟ୍ ଗାଡ଼ିଟି ପଛେ ପଛେ ଆସୁଛି ଏବଂ ଯେପରି ସେଇ ଝିଅଟି ଗାଡ଼ିରୁ ଓହ୍ଲାଇ ଓଡ଼ିଆରେ କହୁଛି– ହେ, ତୁମେ ମୋତେ ଚାହଁ ? ମୁଁ କହୁଛି– 'ନା, ମୁଁ ଠିକ୍ ତୁମକୁ ଚାହେଁନା, କିନ୍ତୁ ଚାହେଁ ମୁଁ ଯେତେବେଳେ ଏକା ଏକା ରାସ୍ତାରେ ଚାଲିବି, ସେତେବେଳେ ଯେପରି ତୁମେ ତୁମର ସବୁଜ ରଙ୍ଗର ଗାଡ଼ିରେ ମୋତେ ଖୁବ୍ ପଛରେ ପକାଇ ଆଗେଇ ଯିବ । ଗିରୀଶ, କୁହ, ଏ ଧରଣର ଚିନ୍ତା କାହିଁକି ମୋ ମନକୁ ଆସେ । ଏ ସବୁକୁ ନେଇ କିପରି ବା ଗଳ୍ପ ଲେଖି ପାରିଥାନ୍ତି ?

ମୁଁ ଥରେ ଦେଖିଲି ତୁମେ ହଷ୍ଟେଲରେ କିଛି ଲେଖିବ ବୋଲି ଆଲୁଅ ଜଳାଇ କାନ୍ଥର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଦୃଷ୍ଟି ନିବଦ୍ଧ କରି ଗୋଟିଏ ଘଣ୍ଟା ବସିଥିଲ । ତୁମ

ଆଖିରେ ସେତେବେଳେ କ'ଣ ଦେଖାଯାଇଥିଲା ମୁଁ ଜାଣେନି । ମୁଁ କିନ୍ତୁ କିଛି ଲେଖିବି ବୋଲି କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ଚାହିଁ କିଛିସମୟ ବସି ରହିଲା ପରେ ଦେଖେ– ମୁଁ ଏକାକୀ ବଡ଼ ପାହାଡ଼ର ଅଧାଅଧି ଗୋଟିଏ ଜଙ୍ଗଲରେ ବସିଛି । କେଉଁଠି ଯେପରି କୁଳୁକୁଳୁ ଶବ୍ଦ କରି ଗୋଟିଏ ଝରଣା ଖୁବ୍ ତଳକୁ ବହିଯାଉଛି । ମୁଁ ଝରଣାଟିର ଶବ୍ଦ ଶୁଣୁଛି ଅଥଚ ଦେଖିପାରୁନି । ମୋତେ ମନେହୁଏ କେବେ ଯେପରି ମୋତେ ନିଶ୍ଚୟ ଏ ଝରଣାର ଉତ୍ପତ୍ତିସ୍ଥଳ ବାହାର କରିବାକୁ ହେବ । ମୁଁ କ୍ରମେ ଅନେକ ଗଛଲତା ବଡ଼ ବଡ଼ ପଥର ଖଣ୍ଡ ପାରିହୁଏ । ଉପରକୁ ଉପରକୁ ଚଢ଼େ । କିନ୍ତୁ ଝରଣା ମିଳେନାହିଁ, ତାର ଉତ୍ପତ୍ତିସ୍ଥଳ ମିଳିବା ତ ଦୂରର କଥା । କିନ୍ତୁ ଦୃଷ୍ଟି ସ୍ଥିର ରଖିଲେ ମନେହୁଏ ଅଦୃଶ୍ୟ ଭାବରେ ଅନେକ ପଛକୁ ଆଉ ଗଛଲତାର ଚେରମୂଳ ଭେଦକରି ଝରଣାଟା ବହିଚାଲିଛି ଏବଂ ବହିଚାଲିଛି ।

ଥରେ ଥରେ ଖୁବ୍ ନିରୋଳା ଜାଗାରେ ବସିଥିଲା ବେଳେ ମନେହୁଏ ଠିକ୍ ମୋହରି ଚେହେରାର ଜଣେ ବାମନ ମୋ ସାମ୍ନାକୁ ଆସି କହିବ– 'କିରେ, ତୁ କ'ଣ ମୋତେ ଚିହ୍ନିପାରୁନୁ ?' ମୁଁ କେବଳ ଗଦ୍‌ଗଦ ହୋଇ ଛଳ ଛଳ ଆଖିରେ ପଚାରିବି– 'ତୁ' ? ସେ କହିବ– 'ତୁ ତ ମୋତେ ଅନେକ ଦିନରୁ ଖୋଜୁଛୁ । 'ତାଙ୍କ ଠିକଣା' ଲେଖିଲା ପାଖରୁ ମୋତେ ପ୍ରତି ମୁହୂର୍ତ୍ତରେ ଅନ୍ୱେଷଣ କରୁଛୁ, ଅଥଚ ଚିହ୍ନି ପାରୁନୁ ?' ମୁଁ କେବଳ ତାକୁ ଚୁମ୍ବନ କରିବାର ଉତ୍କଣ୍ଠା ଅନୁଭବ କରିବି ।

ଗିରୀଶ, ତୁମେ ଯା ଭିତରେ ଓଡ଼ିଆ ସାହିତ୍ୟରେ ଅନେକ 'ଲୁ' ଦେଲଣି । ଅନେକ କିନ୍ତୁ ଏବଂ ତଥାପିକୁ ପ୍ରକାଶ କରି ସାରିଲଣି । କହିଲ, ଏଭଳି କାହିଁକି ସବୁ ହୁଏ ?

ମୁଁ ଦିନରାତି ଏଇଭଳି ଅନେକ ଅବ୍ୟକ୍ତ ଅନୁଭବ ନେଇ ବ୍ୟସ୍ତ । କାମର ଫାଙ୍କେ ଫାଙ୍କେ ଏସବୁ କଥାକୁ ମନେ ମନେ ବିଶ୍ଳେଷଣ କରେ । ସୂର୍ଯ୍ୟାସ୍ତର ବର୍ଣ୍ଣ ମହୋତ୍ସବ ଦେଖେ । ମନେହୁଏ ମଣିଷ ଜଗତର ଏ ଗୋଟିଏ ସୁନ୍ଦର ଦିନ ଢଳିଗଲା । ରଙ୍ଗର ଉତ୍ସବ, ମେଳା ଶେଷ ହୋଇ ଘୋଟିଆସେ ଅନେକ ତାରାର ରାତ୍ରି । ତାରାର ଆଲୋକ ଦେଖେ । କିନ୍ତୁ ସେ ଆଲୋକରେ କିଛି ଦେଖିପାରେ ନାହିଁ– ଠିକ୍ ମୋର ଅନୁଭବର ସ୍ୱର୍ଗ ଭଳି । ତୁମେଇ କୁହ କିପରି ଗଳ୍ପ ଲେଖିଯାଇଥାନ୍ତି । କିପରି ଅଛ ?

ଶୁଭେଚ୍ଛାସହ,

ତୁମର

କ-ଳା-ଦା

ପାନାଗଡ଼

(ତଥାପି, ଅକ୍ଟୋବର ୧୯୭୨)

●

# ତିଥି ଓ ଚନ୍ଦ୍ରର ସେଇ ପୁରୁଣା କଥାମାନଙ୍କୁ ନେଇ

ତିଥି,

ସେ ଦିନରୁ କେତେଟା ଋତୁ ଚାଲିଗଲାଣି । ଆକାଶରୁ କଳାମେଘ କଟିଯାଇ ଏବେ ଅନେକ ଧଳାଧଳା ମେଘ । ଶୀତୁଆ ବତାସ ବାଜି ସେସବୁକୁ ଏଣେତେଣେ କରିଦେଲାଣି । ଆହୁରି ବି ଅନେକ ସମୟର ହାୱା ପୃଥିବୀ ଉପର ଦେଇ ବହିଯିବ, ପୃଥିବୀର ରଙ୍ଗ ବଦଳିଯିବ । କିନ୍ତୁ ମୋ ମନର ରଙ୍ଗ ବଦଳିବନି । ମୋ ଭିତରେ ସବୁଦିନେ ବର୍ଷାଋତୁ ଆଉ ତୁମ ପାଇଁ ମୋ ମନର ଅରଣ୍ୟ ଚିରହରିତ ।

ତୁମେ ଠିକ୍ ଏଇ ମୁହୂର୍ତ୍ତରେ କ'ଣ କରୁଥିବ ! ମୁଁ ତୁମକୁ ହିଁ ସ୍ମରଣ କରୁଛି । ତୁମେ କ'ଣ ଆଜିକାଲି ମତେ ମନେକର ? ମୁଁ କିନ୍ତୁ ଯେତେବେଳେ ଗୋଟିଏ ଦିନର କାର୍ଯ୍ୟ ଶେଷକରି ଅଚେତନ ଅନ୍ଧକାରରେ ହଜିଯିବାକୁ ଆରମ୍ଭ କରେ, ସେତେବେଳେ ବି ମନେକରେ ତୁମକୁ । ସକାଳେ ଆଖିପତା ଖୋଲିବା ପୂର୍ବରୁ ମୁଁ ଯେତେବେଳେ ଚେତନାର ବଳୟ ମଧ୍ୟକୁ ଫେରିଆସେ, ସେତେବେଳେ ପ୍ରଥମେ ତୁମକୁ ହିଁ ସ୍ମରଣ କରେ । ମୁଁ ଯେତେବେଳେ ଗୋଟେ କିଛି କାମ ଶେଷକରି ସ୍ୱସ୍ତିର ନିଃଶ୍ୱାସ ନିଏ ସେତେବେଳେ ମନେକରେ ତୁମକୁ । ଯେତେବେଳେ କାହାରିଦ୍ୱାରା ଅପମାନିତ ହୁଏ, ଦୁଃଖ ଭୋଗକରେ, ସେତେବେଳେ ବି ତୁମକୁ ମନେକରେ ।

ଜାଣ, ଦିନେ ବନ୍ଧୁମାନଙ୍କ ସହ ସ୍କୁଟରରେ ପିକ୍‌ନିକ୍ କରିବାକୁ ଯାଇଥିଲି । ଯେତେବେଳେ ହୁହୁ ହାୱା କାଟି ସ୍କୁଟର ଆଗେଇ ଚାଲିଲା, ସେତେବେଳେ ମନେ ହେଉଥିଲା ତୁମେ ଯେପରି ମୋ ପଛ ସିଟ୍‌ରେ ମୋତେ ଜାବୁଡ଼ି ଧରି ବସିଛ ଆଉ ଡରରେ କେମିତି ଏକ ବିଭଙ୍ଗ ସ୍ୱରରେ କହୁଛ– ତୁମେ ସବୁଦିନେ କ'ଣ ଏମିତି ସ୍ପିଡ୍‌ରେ ଚଲାଅ ନା ମୋ ଆଗରେ ଫୁଟାଣି ଦେଖାଇବା ପାଇଁ ସ୍ପିଡ୍ ବଢ଼ାଇ ଦେଇଛ ? ଜାଣ, ଏସବୁ ଭାବୁଭାବୁ ସତରେ ସ୍ପିଡ୍ ବଢ଼େଇ ଆଗେଇ ଯାଉଥିଲି । ବନ୍ଧୁମାନେ ପଛରେ ପଡ଼ିଯାଇଥିଲେ । ହଠାତ୍ ମୋଡ଼ ବୁଲିଲାବେଳକୁ ଗୋଟିଏ ଅତିକାୟ ଟ୍ରକ୍ ।

ଅନ୍ୟମନସ୍କ ଥିଲି । ହଠାତ୍ ବ୍ରେକ୍ ମାରିଦେଲି । ଛିଟିକି ପଡ଼ିଲି ରାସ୍ତାକଡ଼କୁ । ବିଶେଷ କିଛି କ୍ଷତି ହୋଇନଥିଲା । କିନ୍ତୁ ବିଶ୍ୱାସ କର, ସେଇ ଛିଟିକି ପଡ଼ିବା ମୁହୂର୍ତ୍ତରେ ବି ତୁମର ନାମ ମୁଁ ସ୍ପଷ୍ଟ ଉଚ୍ଚାରଣ କରିଥିଲି ।

ମୁଁ ଜାଣେ, ମୋ ମୃତ୍ୟୁ ଯଦି ସଜ୍ଞାନରେ ହୁଏ ତାହାହେଲେ ତୁମକୁ ହିଁ ସ୍ମରଣ କରି ମରିବି ।

ତିଥି ମୋର, ଥରେ ଥରେ ମୋର ଖେୟାଲ୍ ହୁଏ ତୁମେ ଯେତେବେଳେ ରଂଗିନ ଶାଢ଼ି ପିନ୍ଧି ତୁମର ନିଜସ୍ୱ ଭଙ୍ଗୀରେ ଛନ୍ଦବୁଣି କଲେଜ ଯାଉଥିବ, ସେତେବେଳେ ପଛରୁ ତୁମ ବେକଟା ଚାପି ଧରନ୍ତି । ତୁମେ ଚିତ୍କାର କରିବାର ଅବକାଶ ପାଆନ୍ତ ନାହିଁ । ସେଇଠି ଶେଷହୋଇ ଢଳିପଡ଼ନ୍ତ । ମୁଁ ତୁମ ପ୍ରାଣହୀନ ଦେହଟାକୁ କାନ୍ଧରେ ପକାଇ ନିଭୃତ ସ୍ଥାନକୁ ନେଇଯାଆନ୍ତି । ଆଉ ଥରେ ଥରେ ମନେହୁଏ ତୁମକୁ ନପାଇଲେ ସୂର୍ଯ୍ୟ ଚନ୍ଦ୍ର ନକ୍ଷତ୍ରଙ୍କୁ ଗୋଟିଏ ଫୁଙ୍କରେ ଲିଭାଇ ଦେବି । ଆଙ୍ଗୁଠି ଦେଖାଇ ଗ୍ରହ ଉପଗ୍ରହର ଘୂର୍ଣ୍ଣନକୁ ବନ୍ଦ କରିଦେବି । ଥରେ ଥରେ ଖୁବ୍ ଇଚ୍ଛାହୁଏ ତୁମେ ମୋତେ ଛାଡ଼ି ଖୁବ୍ ଦୂରକୁ ଚାଲିଯାଆନ୍ତ କି ! ମୁଁ ତୁମ ପାଇଁ ଭୀଷଣ ଚିତ୍କାର କରି କାନ୍ଦନ୍ତି । ମୋ ଆଖିର ଲୁହରେ ଆଉ ଗୋଟିଏ ମହାସାଗର ସୃଷ୍ଟି ହୁଅନ୍ତା ।

ତିଥି, ଯେତେବେଳେ ରାତି ଅଧରେ ରିମ୍‌ଝିମ୍ ବର୍ଷାହୁଏ, ସ୍କାଇଲାଇଟ୍ ବାଟେ ବିଜୁଳିର ଚମକ ଦେଖେଁ ଆଉ ଦୂରପାହାଡ଼ ସେପଟେ ମେଘର ଗର୍ଜନ ଶୁଣେ ସେତେବେଳେ ଖୁବ୍ ଇଚ୍ଛାହୁଏ ତୁମେ ମୋର ଖୁବ୍ ପାଖରେ ଥାଆନ୍ତ କି ! ମୁଁ ତୁମ କୋଳରେ, ତୁମ ଛାତିରେ ମୁହଁଗୁଞ୍ଜି ତୁମ ଭିତରର ବର୍ଷା ବିଜୁଳି ଘଡ଼ଘଡ଼ି ଅନୁଭବ କରନ୍ତି । ଅନେକ ସମୟରେ ରାତି ଅଧରେ ଯେତେବେଳେ ନିଦ ଭାଙ୍ଗେ, କବାଟ ଖୋଲେ, ବାହାରକୁ ଯାଏ, ଅନେକ ତାରାର ଆକାଶକୁ ନିଷ୍ପଲକ ଆଖିରେ ଚାହିଁରହେ ମୁଁ; ତିଥି, ତୁମକୁ ହିଁ ସେଇ ନିଷ୍ପନ୍ଦ ମୁହୂର୍ତ୍ତରେ ଭୀଷଣ ମନେକରେ । ତୁମେ ଯଦି ମୋ ପାଖରେ ଥାଆନ୍ତ, ବାଲ୍‌କୋନିରେ ଦୁଇଟା ଚେୟାର୍ ପକାଇ ଚୁପ୍‌ଚାପ୍ ତୁମକୁ ହିଁ ଦେଖିଯାଆନ୍ତି । ତାରାର ଆଲୋକରେ ତୁମର ଚେହେରା ଦେଖନ୍ତି ।

ତିଥି, ଖୁବ୍ ଭୋରରୁ ମୋ ନିଦ ଭାଙ୍ଗିଯାଏ । ସେତେବେଳେ ପୃଥିବୀରେ ଏକ ପ୍ରକାର ଅସମ୍ଭବ ପବିତ୍ରତା ଘେରି ରହିଥାଏ । ମୋର ମନେହୁଏ ତୁମେ ସେତେବେଳେ ସଦ୍ୟସ୍ନାତା ହୋଇ ତୁମର ଲମ୍ବାକେଶକୁ ଆନିତମ୍ବ ଝୁଲାଇ ଗୋଟିଏ ଧଳା ତନ୍ତଲୁଗା ପିନ୍ଧି ମୋ ପାଖକୁ ଆସି କହନ୍ତ କି ! –ହେ, ତୁମେ କ'ଣ ମୋତେ ଆଜି ଆଦର କରିବ ନାହିଁ ! ମୁଁ କେବଳ ତୁମକୁ ପ୍ରଣାମ କରନ୍ତି ଏବଂ ତା'ପରେ ଚୁମ୍ବନ କରନ୍ତି ।

ତିଥି, ତୁମକୁ ନେଇ ମୋର ଏହିପରି ଅନେକ ଅନେକ ଇଚ୍ଛା ହୁଏ ।

ଥରେ ଥରେ ଇଚ୍ଛାହୁଏ ତୁମକୁ କନ୍ଦାନ୍ତି, ଥରେ ଥରେ ଇଚ୍ଛାହୁଏ ତୁମ ପାଖରେ ବସି କାନ୍ଦନ୍ତି । ହଠାତ୍ ଥରେ ଥରେ ରାତି ଅଧରେ ବହି ସନ୍ଧିରୁ ତୁମ ଫଟୋ କାଢ଼ି ଚୁମା ଖାଇବାକୁ ମନ ହୁଏ, ପୁଣି କେଉଁ ଏକ ନିଃସଙ୍ଗ ଦ୍ୱିପ୍ରହରରେ ସେ ଫଟୋକୁ ନିଜ ହାତରେ ନିଆଁ ଧରେଇଦେବାକୁ ଇଚ୍ଛାହୁଏ । କାହିଁକି ଯେ ତୁମପାଇଁ ମୋର ସେଇ ଗୋଟିଏ ମନରେ ଏ ପ୍ରକାର ଆପାତବିରୋଧୀ ଇଚ୍ଛାସବୁ ହୁଏ, କହିପାରିବି ନାହିଁ ।

ତୁମ ବିପକ୍ଷରେ ମୋର କହିବାର କଥା ଅନେକ । ମୁଁ କିନ୍ତୁ ସେସବୁ କହିବି ନାହିଁ । କେବଳ କହିବି, କାହିଁକି ତୁମେ ତୁମର ସେଇ ପବିତ୍ର, ନରମ ଆଙ୍ଗୁଳିରେ କେତେପଦ ଲେଖି, ମୋତେ ଓ ମୋର ରାସ୍ତାକୁ ବଦଳେଇ ଦେଲ ! ତୁମପାଇଁ ପୃଥିବୀର ସବୁ ସୁନ୍ଦରୀଙ୍କୁ, ପୃଥିବୀର ସବୁ ସ୍ନେହୀ ଝିଅଙ୍କୁ ମୁଁ ସନ୍ଦେହ କରିବା ଆରମ୍ଭ କରିଛି । ତୁମେ ଭଲ କରି ଜାଣ, ଗର୍ବ କଲାଭଳି ମୋ ପାଖରେ ଅନେକ କିଛି ଅଛି । ଅନେକ ସୁନ୍ଦରୀ, ସୁଶ୍ରୀ, ସ୍ୱାସ୍ଥ୍ୟବତୀ ମୋତେ ଭଲ ପାଆନ୍ତି, ମୋର ଆସ୍ପର୍ଦ୍ଧା ସବୁକୁ ସେମାନଙ୍କର ସୌଭାଗ୍ୟ ବୋଲି ମନେ କରନ୍ତି । କିନ୍ତୁ ମୁଁ ତୁମକୁ ଯାହା ଦେଇଛି ଆଉ କାହାରିକୁ ତା' ଦେଇପାରିବି କି ? ତେଣୁ ତୁମ ବିପକ୍ଷରେ ମୋର ଅନେକ ଅଭିଯୋଗ ଥିଲେ ମଧ୍ୟ କେବଳ ସେଇ ଏକମାତ୍ର ଅଭିଯୋଗ– ତୁମେ ମୋତେ ନବୁଝି ଏତେବଡ଼ ଶାଣଦିଆ ଛୁରୀର ଫଳକ ଗୋଟିଏ ଚିଠି ମାଧ୍ୟମରେ ମୋ ଭିତରକୁ ଦେଇଦେଲ କେମିତି ? ତୁମ ସପକ୍ଷରେ ମୁଁ ଅନେକ ଯୁକ୍ତି ଭାବିଛି । ତୁମେ ବି କାହିଁକି ଗୋଟିଏ ଅର୍ଦ୍ଧପାଗଳର ଦୁନିଆକୁ ଆସି ଯନ୍ତ୍ରଣା ପାଆନ୍ତ ! ଯାହାର ଦୁନିଆରେ କେହି ନାହିଁ, ଯିଏ ଖରା ବର୍ଷା ଶୀତ କାକରକୁ ଖାତର କରେ ନାହିଁ, ଯିଏ କେବଳ ସ୍ୱପ୍ନକୁ ସାରଥି କରି ଜୀବନର ରଥଚକ ଗଡ଼ାଏ, ତା' ଜୀବନର ପରିଧିକୁ ତୁମ ଭଳି ଜଣେ ଡେଣାଲଗା ପରୀର ପ୍ରବେଶନିଷେଧ ତ ଜରୁରୀ । ତଥାପି ମୋର ସେଇ ଗୋଟିଏ ପ୍ରକାରର ଅଭିଯୋଗ, ତୁମେ ମୋ ପରିସ୍ଥିତି, ମୋ ସାମ୍ରାଜ୍ୟର ସବୁଅଂଶ ଦେଖି ମଧ୍ୟ କାହିଁକି କହିଥିଲ– ସମସ୍ତେ ତୁମକୁ ଘୃଣା କଲେ ବି ମୁଁ ଭଲପାଇବି, ସମସ୍ତେ ତୁମକୁ ଗୋଇଠା ମାରିଲେ ବି ମୁଁ ପ୍ରଣାମ କରିବି । ତିଥି, ମୋ ଜୀବନରେ ସାମୟିକ ପୂର୍ଣ୍ଣିମା ଦେଇ କାହିଁକି ପୁଣି ତୁମର ନରମ ହାତରେ ଅମାବାସ୍ୟାର ଅନ୍ଧକାରକୁ ପେଲିଦେଲ !

ତିଥି, ଯେଉଁ କେତେଦିନ ଅସମ୍ଭବ ଭାବେ, ଅବିଶ୍ୱାସ୍ୟ ଭାବେ ମୋର ହୋଇପଡ଼ିଥିଲ, ସେଇ କେତେଦିନ ମୋର ମନେ ହେଉଥିଲା ଯେ ମୁଁ ଏଭେରେଷ୍ଟ ପରି ଉଚ୍ଚ । ସତରେ ସେଇ କେତେଦିନ ମୁଁ କାହାରିଠାରୁ ଅପମାନିତ ହୋଇନାହିଁ । ଯେଉଁଠାକୁ ଯାଇଛି ସେଠାରେ ପାଇଛି ହାର୍ଦ୍ଦିକ ଅଭିନନ୍ଦନ, ଉଚ୍ଛ୍ୱସିତ ପ୍ରଶଂସା ଆଉ ସସ୍ନେହ ଆଶୀର୍ବାଦ । ମୁଁ ତୁମପାଇଁ ସାମାଜିକ ପ୍ରତିଷ୍ଠା ପାଇଥିଲି । ମୁଁ ତୁମ କାନ୍ଧରେ ଭରା ଦେଇ ସ୍ୱର୍ଗକୁ ଯାଇଥିଲି । କାହିଁକି ତୁମେ ଓହ୍ଲାଇଆଣି ଅଧାରେ ଛାଡ଼ିଦେଇଗଲ ? ମୋତେ ତ୍ରିଶଙ୍କୁ କରି ଦେଇଗଲ ? ତୁମେ କ'ଣ ମୋର ଯନ୍ତ୍ରଣା ଦେଖି ଅଲକ୍ଷ୍ୟରେ ରହି ହସୁଛ ?

ତିଥି, ମୁଁ ତୁମକୁ ଅନେକ ଚାହିଛି, ତୁମର ସୁନାରଙ୍ଗ ଦେହକୁ କାମନା କରିଛି । କିନ୍ତୁ ତୁମେ ଦେଇନାହଁ କିଛି । ମୁଁ କିନ୍ତୁ ଚୋର୍‌କରି ଅଧିକାର କରିବାକୁ ଚେଷ୍ଟା କରିନି ତୁମେ ଦୁଃଖ ପାଇବ ବୋଲି । ମୁଁ ତୁମକୁ ବିବାହ କରିବାକୁ ଚାହି ନଥିଲି, କାରଣ ମୋ ମତରେ ବିବାହ ସବୁକିଛି ନୁହେଁ । ତୁମକୁ ବିବାହ ନକରି ବି ମୁଁ ସବୁଦିନେ ତୁମର ଓ ତୁମେ ସବୁଦିନେ ମୋର ହୋଇ ରହିପାରନ୍ତ । ମୁଁ ଚାହୁ ନଥିଲି ତୁମେ ମୋ ଖଟରେ ରଜନୀଗନ୍ଧା ହୋଇ ଫୁଟ କିମ୍ବା ତୁମ ସହ ମୋର କୌଣସି ନିଷିଦ୍ଧ ସଂପର୍କ ରହୁ; କିନ୍ତୁ ମୁଁ ଚାହୁଥିଲି ତୁମେ ଦୂରରେ ଥାଇ, ଅଲକ୍ଷ୍ୟରେ ଥାଇ ମୋତେ ବୁଝ, ଭଲକରି ବୁଝ, ଭଲପାଅ ! ତା'ଦ୍ୱାରା ମୋ ଜୀବନର ଗତି ଠିକ୍ ନିୟନ୍ତ୍ରିତ ହୋଇଯିବ । ମୁଁ ଏକ ଅସମ୍ଭବ ବନ୍ଧୁକ ନେଇ ଏଭେରେଷ୍ଟ ପରି ଉଚ୍ଚ ହୋଇ ଚିତ୍କାର କରି କରି କହିପାରିବି– ମୁଁ କାହାରିକୁ ଭୟ କରେନା; ମୁଁ ଶ୍ରେଷ୍ଠ, ମୁଁ ମହତ୍, କାରଣ ପୃଥିବୀରେ ଜଣେ ମୋତେ ବୁଝେ, ବୁଝିପାରେ ଏବଂ ଭଲପାଏ ।

କିନ୍ତୁ ତୁମେ ସେଇ ଯେ ଶେଷ ଚିଠିରେ ଲେଖିଥିଲ– 'ତୁମକୁ ମୁଁ ଏ ଚିଠି ଲେଖୁଛି ତୁମ ସହ ମୋର ଜନ୍ମ ଜନ୍ମାନ୍ତରର ସଂପର୍କ ଛିନ୍ନପାଇଁ' । ତିଥି, ଏଇ ଗୋଟିଏ ଧାଡ଼ି ମୋର ସବୁ ଗୋଳମାଳ କରିଦିଏ । ମୁଁ ଆକାଶକୁ ଚାହେଁ, ସୂର୍ଯ୍ୟ ନକ୍ଷତ୍ର ଚନ୍ଦ୍ର ଦେଖେ, ମୁଁ ମାଟିକୁ ଚାହେଁ, ଘାସଫୁଲ ପିମ୍ପୁଡ଼ି ଦେଖେ । ରାତି ଅଧ ପର୍ଯ୍ୟନ୍ତ ମସଗୁଲ୍ ହୋଇ ଢକ୍‌ଢକ୍ ପାନୀୟରେ ଭିତରର ମରୁଭୂମିକୁ ଭିଜାଇବାକୁ ଚେଷ୍ଟାକରେ । ଅନେକ ସୁନ୍ଦରୀ ତରୁଣୀ ସହ ଘଣ୍ଟା ଘଣ୍ଟା ଧରି ଗଳ୍ପ କରେ, ସମୟର ଟିକ୍ ଟିକ୍ ଆୱାଜ୍ ମୋ'ପାଇଁ ବନ୍ଦ ହୋଇଯାଏ । କିନ୍ତୁ ହଠାତ୍ ସଚେତନ ହୋଇଉଠେ– ଏତେବଡ଼ ସୁନ୍ଦର ଦୁନିଆରେ ଗୋଟିଏ ସ୍ନେହୀ ଝିଅର ଥଣ୍ଡା ପାପୁଲି ମୋ'ପାଇଁ ଶେଷ ଇସ୍ତାହାର ଲେଖିଦେଇଥିଲା– 'ମୁଁ ଆଜିଠୁଁ ତୁମର ସମ୍ବାଦ ଶୁଣିବାକୁ ଚାହେନା, ତୁମେ ମୋ'ପାଇଁ ମୃତ' ।

ତିଥି, ମୁଁ ଜାଣେ, ତୁମେ ମୋତେ କେବେ ଭୁଲିପାରିବନି । ସେଇ କେତେଦିନ ମୁଁ କେଉଁ ମୁହୂର୍ତ୍ତର ଭଲପାଇବାର ଇଟା ବସାଇ ସେଥିରେ ମୋର ଶୁଭେଚ୍ଛା, ଭାବପ୍ରବଣତାର ଚୂନ କି ସିମେଣ୍ଟ ଦେଇ ଯେଉଁ ମନ୍ଦିର ତିଆରି କରିଥିଲି ଏବଂ ସେ ମନ୍ଦିର ମଧ୍ୟରେ ତୁମ ବିଗ୍ରହ ପ୍ରତିଷ୍ଠା କରିଥିଲି, ସେ ମନ୍ଦିର କେବେ କେହି ବୋମା ମାରି ଉଡ଼ାଇ ଦେଇ ପାରେନା, ସେ ଚିରହରିତ, ସୁରକ୍ଷିତ । ମୁଁ ଜାଣେ, ତୁମେ ଯେବେ ଏକାକୀ ରାସ୍ତାରେ ଛନ୍ଦ ବୁଣି ବୁଣି କଲେଜ ଯାଅ, ତୁମ ବାଲ୍‌କୋନିରେ ଛିଡ଼ାହୁଅ, ରାତିରେ ଆଲୁଅ ଲିଭାଇଦିଅ କିମ୍ବା ଗାଧୁଆ ଘରେ ଦେହରୁ ସବୁ ଲୁଗାକାଢ଼ିଦେଇ ଇତସ୍ତତଃ ହୁଅ ସେତେବେଳେ କେଉଁ ଭୂତ ତୁମ ସାମ୍ନାକୁ ଆସେ । ତୁମେ ଅନ୍ୟମନସ୍କ ହୋଇଯାଅ, ତୁମ ଭ୍ରୂ କୁଞ୍ଚିତ ହୋଇଉଠେ, କାରଣ ନଥାଇ ବି ତୁମେ ଅନ୍ୟ ଉପରେ ବିରକ୍ତ ହୁଅ । ପୁଣି

ଥରେ ଥରେ ତୁମେ ଖୁବ୍ ହସ, ମୁଁ ଜାଣେ, ସେ ହସ ଭିତରେ ବି ତୁମେ ଖୁବ୍ ଭିତରେ କାନ୍ଦି ଉଠ, ଥରେ ଥରେ ତୁମ ବନ୍ଧୁମାନଙ୍କ ସହ ଅନେକ ଗଳ୍ପ କର, ମୁଁ ଜାଣେ ସେହି ଗଳ୍ପ ଭିତରେ ବି ମୋ'ପାଇଁ ଅନେକ ସ୍ୱଗତ ସଂଳାପ ଉଚ୍ଚାରିତ ହୁଏ ।

ତିଥି, ତୁମେ ନାରୀ । ଆତ୍ମଗୋପନତା, ଅଭିନୟ ନେଇ ତୁମେ ବଞ୍ଚିଯାଇପାର । ଆଉ କେଉଁ ପୁରୁଷ ନିକଟରେ ତୁମେ ଖୁବ୍ ବିଶ୍ୱସ୍ତ ହୋଇ ପୁଣି ତାକୁ କାଙ୍ଗାଳ ଅସହାୟ କରି ଦେଇପାର । ମୁଁ ପୁରୁଷ, ମହାପୁରୁଷ ତ ନୁହେଁ, କୁପୁରୁଷ କିମ୍ବା କାପୁରୁଷ ବି ନୁହେଁ । ତେଣୁ ମୁଁ ଆଜି ବି ତୁମକୁ ଭଲପାଏ, ଚିଠି ଲେଖେ । ତୁମ ପାଇଁ ଗଗଲସ୍ ପିନ୍ଧି ରାସ୍ତାରେ ଅନେକ ଲୋକଭିଡ଼ରେ ବି କାନ୍ଦି ପକାଏ । ନିର୍ଜନରେ ତୁମର ଶୁଭ କାମନା କରେ, ମନ୍ଦିରକୁ ଗଲେ ତୁମର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ପ୍ରାର୍ଥନା କରେଁ ।

ତିଥି, ମୁଁ ଆହୁରି ତୁମକୁ ଭଲପାଇବି; ମୋତେ ବେଶି ଘୃଣା କରୁଛ ବୋଲି ଦେଖେଇ ହେଲେ...

ତୁମର ଚନ୍ଦ୍ର

('ଯୁଗଭେରୀ', ଡିସେମ୍ବର, ୧୯୭୨)



# ମୁଦ୍ରା

ରାସ୍ତା । ଉଠାଣି ରାସ୍ତା । ପାଦଠାରୁ ଦିଗ୍‌ବଳୟ ପର୍ଯ୍ୟନ୍ତ । ମୁଁ ଜାଣେ ମୁଁ ଉଲଗ୍ନ । ଅବଶ୍ୟ ମୋ ପୋଷାକ ତଳେ । କିନ୍ତୁ ସେ ! ସଂପୂର୍ଣ୍ଣ ନଗ୍ନ । ବେଶ ପୋଷାକ ନଥିଲା । ସେଇ ରାସ୍ତା। କଳା ପିଚୁରାସ୍ତା । ଦୂରରେ ମରୀଚିକା ନାଚୁଥିଲା । ରାସ୍ତା କଡ଼ରେ ଅନେକ ଫୁଲ ଗଛ । ଅନେକ କଣ୍ଟାବୁଦା । ଅନେକ ଦୂରରେ ରାସ୍ତା କଡ଼ରେ ଜଙ୍ଗଲ । ରାସ୍ତା ମୁଣ୍ଡରେ ଘାଟି । ପାଚେରି ଭଳି ପର୍ବତ । ରାସ୍ତାରେ ଚାଲିବାକୁ ହେଲେ ଘାଟିରେ ଚଢ଼ିବାକୁ ହୁଏ ।

ସେ ସଂପୂର୍ଣ୍ଣ ନଗ୍ନ । ଟଳି ଟଳି ଆଗେଇ ଚାଲିଥିଲା । ପ୍ରାୟ ଦୁଇଫୁଟ ଉଚ୍ଚ । ପାଟିରେ ଡାହାଣ ହାତ ବୁଢ଼ାଆଙ୍ଗୁଠି । ମୁଁ ତାକୁ ଅନୁସରଣ କଲି । ରାସ୍ତାକଡ଼ରେ ଫୁଲ ଓ କଣ୍ଟା । ମୁଁ ଦେଖୁଥିଲି । କିଛି ସମୟ ପରେ ତାକୁ ଚାହିଁଲି । ଆଶ୍ଚର୍ଯ୍ୟ ହେଲି । ଆଗ ଅପେକ୍ଷା ସେ ଅନେକ ବଡ଼ ହୋଇଛି । ହାତ, ଗୋଡ଼, ମୁଣ୍ଡ, ଯୌନାଙ୍ଗ ସବୁ ବଡ଼ । ରାସ୍ତା କଡ଼ରେ ଗୋଟିଏ ମାଇଲଖୁଣ୍ଟ । ତା ଉପରେ ଗୋଟିଏ ଧଳା ଲୁଗା । ସେ ଉଠାଇ ଆଣିଲା । ଅଣ୍ଟାରେ ଗୁଡ଼ାଇ ଦେଲା । ଜହ୍ନ ରଙ୍ଗର ଲୁଗା । ପୁଣି ଚାଲିଲା । ମୁଁ ବି ଚାଲିଲି ।

କିଛି ଦୂର ପରେ ପୁଣି ମାଇଲଖୁଣ୍ଟ । ମୁଁ ଦେଖିଲି । ତା ଦେହରେ ଅନେକ ପରିବର୍ତ୍ତନ । ଦେହର ଅନେକ ଜାଗା କଳା ହୋଇ ଉଠିଛି । ତାର ସେ ଜହ୍ନ ରଙ୍ଗର ଲୁଗା ଆଉ ନାହିଁ । ସେ ଲୁଗାରେ ଅନେକ ରଙ୍ଗ । ବେଶୀଟା ଲୁହା କଳଙ୍କିର ଦାଗ । ରାସ୍ତାରେ ଅନେକ ସ୍ତ୍ରୀଲୋକ । ଏଣେ ତେଣେ ବୁଲୁଥିଲେ । ସେ ଖୁବ୍ ତନଖି ସମସ୍ତଙ୍କୁ ଦେଖୁଥିଲା । ସେମାନେ ତାକୁ ଚାହିଁ ହସିଲେ । ଜଣେ ଚାହିଁ ଆଖି ମାରିଲା ।

ତା'ପରେ ରାସ୍ତା ଶେଷ । ଘାଟିରେ ଚଢ଼ିବାକୁ ହେବ । ଘାଟି ସାମ୍ନାରେ ଚେକ୍ ଗେଟ୍ । ସେ ଚେକ୍ ଗେଟ୍ ପାଖରେ ପହଞ୍ଚିଲା । ପାଖରେ ଘର । ସେଥିରୁ କେତେଜଣ କଳା ପୋଷାକ ପିନ୍ଧା ବାହାରି ଆସିଲେ । ମୁହଁରେ ମୁଖା । ଚାରିପଟରୁ ଘେରିଗଲେ ।

ସେମାନେ ତାର ଚାରିଆଡ଼ ଖୋଜିଲେ । ଜଣେ ତା ପକେଟରୁ କଣ ଗୋଟେ ବାହାର କରିନେଲା । ମୁଁ ଦେଖିଲି । ସେ ଭେଁ କରି କାନ୍ଦି ପାରିଲା ନାହିଁ । ପୁଣି ଆଗେଇଗଲା ।

ପୁଣି ଘାଟି । ଚେକ୍ ଗେଟ୍ । ସେଇ ମୁଖାପିନ୍ଧା କଳା ପୋଷାକ ପିନ୍ଧା ଲୋକ । ତାକୁ ଘେରିଗଲେ । ଅନେକ ଜିନିଷ ଛଡ଼େଇ ନେଲେ । ଗୋଟିଏ ଘାଟିରେ । ମେଣ୍ଢାଛୁଆ ବାହାର କରିନେଲେ, ତାପରେ ଅଦୃଶ୍ୟ । ଅନ୍ୟ ଗୋଟିଏ ଘାଟିରେ । ଗୋଟିଏ ହରିଣର କାନ ଧରି ନେଇଗଲେ ତା ପାଖକୁ । ସେ ଚୁପ୍‌ଚାପ୍ ଛିଡ଼ା ହୋଇ ଦେଖିଲା । ପ୍ରତିବାଦ କଲାନି ।

କ୍ରମେ ଘାଟି ସବୁ ଶେଷ ହେଲା । ସେ ଚାଲିଗଲା । ତା ପରେ ପୁଣି ସମତଳ ରାସ୍ତା । ମୁଁ ଦେଖିଲି, ସାମ୍ନାରେ ଫାଟକ । ଇନ୍ଦ୍ରଧନୁ ଆକୃତିର । ଫାଟକରେ ତରୁଣୀ । ଏଲୋରାୟ ମୁଦ୍ରା । ଚକ୍ଷୁ ଅର୍ଦ୍ଧନିମୀଳିତ । ହାତରେ ପାତ୍ର । ପାତ୍ର ଉଜ୍ଜ୍ୱଳ । ପାତ୍ରରେ ଉଜ୍ଜ୍ୱଳ ପଦାର୍ଥ । ଏଲୋରାୟ ନାରୀ ଇଙ୍ଗିତ କଲା । ସେ ପାତ୍ରରୁ ଉଠାଇ ନେଲା । ଜ୍ୟୋତିର୍ମୟ ପଦାର୍ଥ । ସେ ତାକୁ ଗିଳିଦେଲା । ନିଜେ ଜ୍ୟୋତିର୍ମୟ ହୋଇ ଉଠିଲା । ମୁଁ ସେ ଫାଟକ ପାଖକୁ ଗଲି । ଏଲୋରାୟ ନାରୀକୁ ପ୍ରଶ୍ନ ପଚାରିଲି । ନାରୀ ଅନ୍ତର୍ହିତ ହେଲା । ମୋର ଉତ୍ତର ଏକ ଅଜଣା ଦିଗନ୍ତରୁ ଆସିଲା । ମୁଁ ପରିଷ୍କାର ଶୁଣିଲି । ତାର ନାମ ଜ୍ଞାନ ।

ସେ ଅନ୍ୟ ପ୍ରକାର ଦେଖାଗଲା । ଚେହେରା ପରିବର୍ତ୍ତିତ ହେଲା । ମୁହଁରେ ବ୍ୟକ୍ତିତ୍ୱର ଛାପ । ପୁଣି ଫାଟକ । ଇନ୍ଦ୍ରଧନୁ ପରି । ସେଠି ବି ତରୁଣୀ । ହାତରେ ପାତ୍ର । ପାତ୍ରରେ କେତୋଟି ଚିରା କାଗଜ ପୃଷ୍ଠା । ମୁଁ ଭଲ କରି ଦେଖିଲି । ଚିରା କୋକଶାସ୍ତ୍ର ପୃଷ୍ଠା । ନାରୀ ତାକୁ ଇଙ୍ଗିତ କଲା । ସେ କାଗଜ ଉଠାଇ ନେଲା । ଛାତି ପକେଟରେ ରଖିଲା । ଆଗେଇ ଚାଲିଲା ।

ପୁଣି ଫାଟକ । ଫାଟକରେ ତରୁଣୀ । ହାତରେ ପାତ୍ର । ପାତ୍ରରେ କଣ୍ଟା । ସେ ତା ଇଙ୍ଗିତ ବୁଝିଲା । କଣ୍ଟା ଉଠାଇ ନେଲା । ଚାଲିଲା । ପୁଣି ଫାଟକ । ଏଲୋରାୟ ତରୁଣୀ । ପାତ୍ର । ପାତ୍ରରେ ଜାଲ । ଉଠାଇ ନେଲା । ପୁଣି ଫାଟକ । ତରୁଣୀ । ପାତ୍ର । ଜଞ୍ଜିର । ପୁଣି ଫାଟକ ।

ଫାଟକ ଶେଷ ହେଲା । ସେ ଛିଡ଼ାହେଲା । ବୋଧହୁଏ ହିସାବ କଲା । କେତେ ପାଇଛି । କେତେ ହଜାଇଛି । କିଛି ସମୟରେ ପରେ ସେ ଜାଣିପାରିଲା । ସେ ଯାହା ହଜାଇଛି ସେତିକି ପାଇ ସାରିଛି । ଘାଟିଗୁଡ଼ାକରେ ସେ ଯେତିକି ଦେଇଛି, ଫାଟକରେ ପ୍ରାୟ ସେତିକି ପାଇଛି ।

ଦେବା ନେବା । ନେବା ଦେବା । ବାର୍ତ୍ତାର ନୀତି । ମୁଦ୍ରା ନଥିଲା ସେତେବେଳେ । ମୁଦ୍ରା ବାର୍ତ୍ତାରର ଅସୁବିଧା ଦୂର କଲା । ସେ ବୋଧହୁଏ ସେଇ କଥା ଭାବିଲା । ମୁଦ୍ରା କଥା ଚିନ୍ତା କଲା । ସେ ଏତେ ଦେଲା । ଏତେ ନେଲା । ମୁଦ୍ରା ଦେଇ ସେ ତାର ମନ ଇଚ୍ଛା ଜିନିଷ ନିଅନ୍ତା । କିନ୍ତୁ ସେ ମୁଦ୍ରା ତ ଆଜିର ନିକେଲ କାଗଜର ମୁଦ୍ରା ନୁହେଁ । ସେ ମୁଦ୍ରା ଅନ୍ୟ ମୁଦ୍ରା । ମନୁଷ୍ୟତ୍ୱ । ତା ନ ହେଲେ ଜୀବନ ବୃଥା ।

ସେ ଆଗେଇ ଚାଲିଥିଲା । ସମତଳ ରାସ୍ତା ଛାଡ଼ି ଗଡ଼ାଣି ଆଡ଼େ । ଗଡ଼ାଣିଆ ରାସ୍ତା । ହାତରେ ବାଡ଼ି । କାନ ପାଖରେ ଧଳା ବାଳ । ଅଣ୍ଟାଟା ଟିକେ ନୁଆଁଣିଆ । ମୁଁ ଆଶ୍ଚର୍ଯ୍ୟ ହେଲି । ପୁଣି ହଠାତ୍ ସଚେତନ ହେଲି । ସେ ରାସ୍ତାର ସବୁ ଘଟଣା, ଦୁର୍ଘଟଣା, ସବୁ କାରବାରର ଛିଟିକା ମୋ ଦେହରେ ବି ବାଜିଛି ।



['ଦାଗ', ଡିସେମ୍ବର, ୧୯୭୨ । ନବମ ନଡ଼ିଆ ଯୁବ ଲେଖକ ସମ୍ମେଳନ ଉପଲକ୍ଷେ ପ୍ରକାଶିତ ।]

# ଉଜାଣି

## (୧)

### (କ)

ମୁଁ ଚାହେଁ–

ଦେବୀ ଗୋଡ଼ ମେଲାଇ ବସିବ । ମୁଁ କଡ଼େଇ ହୋଇ ତା କୋଳରେ ମୁଣ୍ଡ ରଖି ଶୋଇବି । ମୋର ନାକ ରହିବ ତାର ନାଭି ମୂଳରେ । ମୋର ଦୁଇବାହୁ ତାର ଅଣ୍ଟା ଆଉ ନିତମ୍ବକୁ ବେଢ଼ି ରହିବ । ମୋର ଗୋଟିଏ ପଟ ଗାଲ ଆଉ କାନ ତା ଛାତିରେ ଲାଗିବ । ସେ ମୋ ମୁଣ୍ଡର ନୁଖୁରା ବାଳ ଭିତରେ ତା ହାତର ଛୁଆଁ ବିଛେଇ ଦେବ । ମୋର ଚକ୍ଷୁ ହେବ ଅର୍ଦ୍ଧ-ନିମୀଳିତ ଆଉ ତାର ଆଖିରେ ଘୋଟି ଆସିବ ସ୍ୱପ୍ନ ।

କାରଣ–

ଠିକ୍ ସେତିକିବେଳେ ଖୁବ୍ ଜୋରରେ କ୍ରିଂ କ୍ରିଂ ହୋଇ ଟେଲିଫୋନ୍ ବାଜି ଉଠିବ । ମୋର ଖୁବ୍ ଭିତରେ କିଏ ଯେପରି ଉତ୍ତର ଦେଇଯିବ– ହଁ, ମୁଁ କହ୍ନେଇ କହୁଛି । ଏଁ, ଏ କ'ଣ, କୁନା ? ସେ ତ ମୋର ପିଲାଦିନର ନାମ । ହଁ, ମୁଁ କୁନା କହୁଛି, କହ । ନା, ମୁଁ ଯାଇପାରିବି ନାହିଁ । ମୋତେ ଆଦରରେ ଡାକ ନାହିଁ । କ'ଣ କରିବି କହ ? ଯଦି ଯାଇ ହୁଅନ୍ତା ! ମୋର କ'ଣ ଯିବାକୁ ଇଚ୍ଛା ନାହିଁ ? ଯାଇଥିଲେ ଆହୁରି ଅନେକ ଦିନ ପର୍ଯ୍ୟନ୍ତ ବଞ୍ଚିଥାଆନ୍ତି; କିନ୍ତୁ ତୁମ ଠିକଣା ଯେ ବର୍ତ୍ତମାନ ପୃଥିବୀର ନୁହେଁ, ଆଉ ଏକ ବିସ୍ମୃତ ପୃଥିବୀରେ ।

କିନ୍ତୁ :

–ଦେବୀ !

–ଉଁ...

–ଗୋଟିଏ କଥା ରଖିବୁ ?

–କ'ଣ ?

–ମୁଁ ତୋ କୋଳରେ ମୁଣ୍ଡ ରଖି ଶୋଇବି ।

–କେତେଥର ତ ଶୋଇଲଣି ।

—ଆଉଥରେ, ଠିକ୍ ମୁଁ ଯେମିତି ଚାହେଁ ।

—ନା, ସେମିତି ହେବନି ।

—ଦେବୀ, ତା ଦ୍ୱାରା ମୁଁ ତା' ସହ କିଛି କଥା କହି ପାରିବି ।

—କାହା ସହ ?

—ମୋର ଅପହୃତ ଶୈଶବ ସହ ।

—ଅପହୃତ ଶୈଶବ ସହ ।

—ସତ କହୁଛି, ତୁମେ କିଛିତ୍ ପାଗଳ ।

କିନ୍ତୁ ମୁଁ ଟିକିଏ ବି ପାଗଳ ନୁହେଁ– ଏକଥା ମୁଁ ଭଲଭାବରେ ଜାଣେ । ତଥାପି ଥରେ ଥରେ କାହିଁକି ଯେ ପାଗଳାମି ଆରମ୍ଭ କରେ ମୁଁ ବୁଝିପାରୁନି । ଦିନେ ଗୋଟିଏ ଖରାବେଳେ ମୁଁ କଲେଜ ଯାଉଥିଲି । ହଠାତ୍ ରାସ୍ତାକଡ଼ ବରଗଛ ମୂଳେ ଅଟକିଯାଇ ଦେଖିଲି ଦଳେ ପିଲା ହାତରେ କାଚଗୁଲି ନେଇ ମଲ୍ଲଯୁଦ୍ଧରେ ମାଡ଼ି ଯାଉଛନ୍ତି । ଅନ୍ୟମାନେ ତାଳି ମାରୁଛନ୍ତି ଆଉ ଉର୍ଦ୍ଧ୍ୱବାହୁ ହୋଇ ନାଚୁଛନ୍ତି । ଜଣେ ମଲ୍ଲ ନପାରି ତଳେ ପଡ଼ିଲେ । ଧୂଳିରେ ତା' ଦେହ ଜୁଡୁବୁଡୁ ହୋଇଗଲା । ଅଣ୍ଟାରେ ଗୁଞ୍ଜା ହୋଇଥିବା ବୋତାମହୀନ ପେଣ୍ଟ ଖସିଗଲା । ସେ ଉଠିଲା ଭୀଷଣ କ୍ରୋଧର ପ୍ରତିଶୋଧ ନେବା ପାଇଁ । ସେ ତା' ଦେହରେ ଛେପ ପକାଇଦେଲା ଏବଂ ଦୌଡ଼ିଲା । ଆର ମଲ୍ଲଟି ସେଇଠାରେ ଉପାୟ ନ ପାଇ ଚର୍‌ର୍ ଚର୍‌ର୍ ପରିସ୍ରା କଲା । ତାପରେ ସମସ୍ତେ ହୋ-ହୋ ହୋଇ ଏଣେତେଣେ ଦୌଡ଼ିଲେ । ଜଣେ ମୋ ଦେହରେ ତାର ଧୂଳିବୋଳା ଦେହରେ ଧକ୍କା ଦେଲା ।

ଏବଂ ଠିକ୍ ସେତିକିବେଳେ ମୋର ଖୁବ୍ ଟେଲିଫୋନର ଶବ୍ଦ ହେଲା ଏବଂ ସେଇ ପରିଚିତ ଆହ୍ୱାନ– କୁନା, କୁନା, କୁନା ମୋର, ତୁ ମୋତେ କେଉଁଠି ଛାଡ଼ିଗଲୁ ? ମୁଁ ଏବେ ବି ତୋତେ ଭଲପାଏ ।

ପିଲାମାନେ ସେତେବେଳକୁ ଦୌଡ଼ି ଦୌଡ଼ି ଅଦୃଶ୍ୟ ହୋଇଗଲେଣି । ରାସ୍ତା ନିର୍ଜନ । ସେଇଠି ବରଗଛ ମୂଳେ ଛିଡ଼ାହୋଇ କୁନ୍ଥେଇ କୁନ୍ଥେଇ ପରିସ୍ରା କଲି ।

(ଖ)

ମୁଁ

ଦେବୀ ଦିନେ ଆସି ହଠାତ୍ କହିବ– ତୁମେ ଯେଉଁଥିପାଇଁ ମୋ ପଛରେ ଏତେଦିନ ଲାଗିଆସିଛ, ଆଜି ତାହା ଆଦାୟ କରି ନେଇପାର । କିନ୍ତୁ ମୁଁ କହିବି–ନା, ତୁ ଚେୟାରରେ ବସିବୁ । ମୁଁ ତୋ ପାଦ ତଳେ ବସିବି । ତୁ ମୁଣ୍ଡରେ ହାତ ବୁଲାଇ ଦେବୁ ଏବଂ ମୋର ଆଖିର ଲୁହ ଆଉ ମୁଣ୍ଡରେ ଝାଳ ଦେଖି ତୋର ପଣତରେ ମୁହଁ ଆଖି ପୋଛିଦେବୁ ଏବଂ କହିବୁ– ଭୋକ ଲାଗିବଣି, ଚାଲ ଖାଇବ । ମୁଁ କିନ୍ତୁ କିଛି ବିଶେଷ କାରଣ ନଥାଇ ବି ଧକେଇ ହୋଇ କାନ୍ଦିବା ଆରମ୍ଭ କରିବି ।

କାରଣ–

ଠିକ୍ ସେତିକିବେଳେ ମୋର ଖୁବ୍ ଭିତରେ କ୍ରିଂ କ୍ରିଂ କରି ଟେଲିଫୋନ ବାଜି ଉଠିବ । ମୁଁ ସେଇ ଅଦୃଶ୍ୟ ଟେଲିଫୋନରୁ ଶୁଣିବି– କୁନା, କୁନା, କୁନା ମୋର, ଧୀରେ ଧୀରେ ଏମିତି ଭାବେ କବର ଭିତରେ ବଞ୍ଚାଇ ରଖ । ବଡ଼ପାଟିରେ କାନ୍ଦିବାକୁ ଅଭ୍ୟାସ କର । ତୁ ସରଳ ହୋଇଯା, ପବିତ୍ର ହୋଇଯା । ମୁଁ ଉତ୍ତର ଦେବି– କିନ୍ତୁ କିପରି ? ତୁମର ଦିଗନ୍ତକୁ ଯେ ଫେରିବା ଅସମ୍ଭବ । ସ୍ରୋତର ପ୍ରତିକୂଳରେ ଆଗେଇବା ଯେ ଏକାନ୍ତ ହାସ୍ୟାସ୍ପଦ କଥା !

କିନ୍ତୁ :

–ଦେବୀ !

–କ'ଣ ?

–ଗୋଟିଏ କଥା କହିବି ।

–କ'ଣ କହନା ।

–ମୁଁ ଗୋଟିଏ ନାଟକ ଲେଖିବି ।

–ତା' ପରେ ?

–ତୁ ଓ ମୁଁ ସେଥିରେ ଅଭିନୟ କରିବା ।

–ମୋର ହିରୋଇନ ହେବାର ଯୋଗ୍ୟତା ନାହିଁ ।

–ହିରୋଇନ ନୁହେଁ, ତୁ ମା'ର ଭୂମିକାରେ ଅଭିନୟ କରିବୁ ।

–ଆଉ ତୁମେ ବାପାର ଭୂମିକାରେ ?

–ନା, ଶିଶୁ ପୁତ୍ରର ଭୂମିକାରେ ?

–ମୁଁ ସତ କହୁଛି ତୁମେ ଗୋଟିଏ ଅର୍ଦ୍ଧପାଗଳ ।

କିନ୍ତୁ ମୁଁ କଣ ସତରେ ଅର୍ଦ୍ଧପାଗଳ ? ଅବଶ୍ୟ ଅର୍ଦ୍ଧପାଗଳ ବୋଲି ଥରେ ଥରେ ମୋର ବି ମନେହୁଏ; ସେଦିନ ରାସ୍ତା ଉପରେ ଛିଡ଼ା ହୋଇ ଏତେ ବଡ଼ ପାଟି କରି କାନ୍ଦନ୍ତି କାହିଁକି ? ସେଦିନ ଦେବୀ ଚିଠି ଲେଖିଥିଲା–କୁଆଡ଼େ ତା' ସହ ମୋର କୌଣସି ସମ୍ପର୍କ ନାହିଁ । ଏ କଥା ପଢ଼ିସାରିଲା ପରେ ମୋ ଭିତରେ ବାୟୁମଣ୍ଡଳ ନିସ୍ତବ୍ଧ କରି ମେଘ ଜମି ଆସୁଥିଲା । ମୁଁ ଅନ୍ୟମନସ୍କ ଭାବେ ଖରାବେଳେ ରାସ୍ତାକୁ ବାହାରି ଚାଲୁଁ ଚାଲୁଁ ଦେଖିଲି–ଗୋଟିଏ ମାଈ କୁକୁର ପେଟ ତଳେ ଝୁଲି ରହିଛି କୁକୁର ଛୁଆଟି । କିଛି ଦୂରରେ ସେ ଉପର ମହଲା ପାଇପ୍‌କୁ ପାଣିମିଶା କିଛି ପଦାର୍ଥ ପଡ଼ିଲା ଏବଂ ତିନି ଚାରୋଟି କାଉ ତା ଉପରେ କାମୁଡ଼େଇ ପଡ଼ିଲା ମାତ୍ରେ ମାଈ କୁକୁରଟି ସେଇଆଡ଼େ ଦୌଡ଼ିବା ଆରମ୍ଭ କଲା । ତା' ପେଟତଳ ଲୋଳିତ ଚର୍ମକୁ କାମୁଡ଼ି ଧରି କିଛି ଦୂରରେ ଘୋଷାଡ଼ିହୋଇଗଲା କୁକୁର ଛୁଆଟି । ତା'ପରେ ଏକ ସମୟରେ ଅସ୍ପଷ୍ଟ

ଚିତ୍କାର କରି ଖସିପଡ଼ିଲା ଏବଂ କ୍ରମାଗତ ଚିତ୍କାର କରିବାକୁ ଲାଗିଲା । ମୁଁ ଅନ୍ୟମନସ୍କ ଭାବରେ ସେମାନଙ୍କୁ ପାରି ହୋଇଗଲି ।

ଏବଂ ଠିକ୍ ସେତିକିବେଳେ ମୋ ଭିତରୁ କ୍ରିଂ କ୍ରିଂ ଟେଲିଫୋନ ବାଜିଉଠିଲା– କୁନା, କୁନା, କୁନା, କୁନା ମୋର ! ତୁ ମୋତେ ଫେରାଇ ନେ, ମୋ ପାଖକୁ ଚାଲିଆ, ମୋତେ କବର ଭିତରୁ ଉଦ୍ଧାର କର । ମୋ କୁନାଟା, ବଡ଼ ପାଟିରେ କାନ୍ଦିବାକୁ ଅଭ୍ୟାସ କର । ବଡ଼ ପାଟିରେ କାନ୍ଦିବା ସ୍ୱାସ୍ଥ୍ୟପକ୍ଷେ ହିତକାରକ । ମୁଁ ବି ଉତ୍ତର ଦେଲି–କିନ୍ତୁ କିପରି ? ଲୋକେ ଯେ ମୋତେ ପାଗଳ କହିବେ । ତୁମକୁ ଫେରାଇ ଆଣିବା ଏକାନ୍ତ ଅସମ୍ଭବ ? କାରଣ ମୁଁ ଆଉ କୁନା ନୁହେଁ, କହ୍ନେଇ, କହ୍ନେଇବାବୁ ।

ସେତେବେଳେ ନର୍ଦ୍ଦମା ଉପରେ କାଉ ଆଉ କୁକୁର କୁଆଡ଼େ ଚାଲିଗଲେଣି । କୁକୁର ଛୁଆଟି କେଁ କେଁ କରି ନର୍ଦ୍ଦମା ଉପରେ ହାମୁଡ଼େଇ ପଡୁଥିଲା । ମୋର ଖୁବ୍ ଭିତରେ ଉଠେଇ ଆସୁଥିବା ଜମାଟ ମେଘ ତରଳି ଗାଲ ଉପର ଦେଇ ବହିଯିବାକୁ ଲାଗିଲା । ମୁଁ ପ୍ରଥମେ ଅସ୍ଫୁଟ ଚିତ୍କାର କଲି ଏବଂ ପରେ କୁନ୍ଥେଇ ଭେଁ ଭେଁ କରି କାନ୍ଦବାକୁ ଲାଗିଲି ।

(୨)

(କ)

ଦିନେ ସକାଳେ–

–ଦେବୀ, ମୋତେ ଖୁବ୍ ଶୀତ ଲାଗୁଛି ।

–କାହିଁ ନାଇଁତ ।

–ମୋତେ ଶୀତ ଲାଗୁଛି, କବାଟ ବନ୍ଦ କରିଦେ ।

–ବୋଉ ସନ୍ଦେହ କରିବ ।

–ଏଥିରେ ସନ୍ଦେହ କରିବାର କ'ଣ ଅଛି ?

–ସନ୍ଦେହ କରିବେନି ? ତୁମେ ମୁଁ ଗୋଟିଏ ଘରେ...

–ଭିତରପଟୁ ନ ଲଗାଇ କେବଳ ଆଉଜେଇ ଦେବା ।

–ମୁଁ କବାଟ ଆଉଜେଇ ଦେଲି; କିନ୍ତୁ ଶୀତ ବଢ଼ିଗଲା । କାନ୍ଥରେ କେଉଁ ଏକ ଏଲୋରୀୟ ନାରୀ ଛବି, କ୍ୟାଲେଣ୍ଡରରେ ଝରଣା, ଟେବୁଲ ଉପରେ ଫୁଲଦାନି, ଝର୍କା ପର୍ଦ୍ଦା ଫାଙ୍କରେ ଟେନାଏ ଆକାଶ । ସବୁଥିରେ ଖୋଜି ପାଇଲି କବିତା, ଆଖିରେ ଏଲୋରୀୟ ନାରୀ ଝରଣା, ଫୁଲଦାନି, ଆକାଶ ସବୁକିଛି । ମୁଁ ଧୀରେ ଧୀରେ ଦେବୀର ମୁହଁ ଉପରକୁ ନଇଁ ଆସିଲି ।

–ଦେବୀ, ତୋର ଆଜି କଲେଜ ନାହିଁ କି ? କଲେଜ ସମୟ ହୋଇଗଲାଣି ଯେ ?

ମୁଁ ପୂର୍ବ ବିନ୍ଦୁକୁ ଫେରିଆସି ଦେଖିଲି ଦେବୀର ବୋଉ । ହାତରେ ଆଉଜା କବାଟ ଫିଟାଇଦେଲେ । କିନ୍ତୁ ତାଙ୍କ ଆଖିରେ ଛାଟିପିଟି ହେଉଥିଲା, ସନ୍ଦେହ ଆଉ ବିରକ୍ତି ।

(ଖ)

ଏଇ ହେଉଛି ଦେବୀ; ସେ ଥିଲା ବେବୀ, ମୋର ଖେଳସାଥୀ, ସାହପାଠିନୀ ଓ ପଡ଼ୋଶିନୀ । ମୋର ମନେଅଛି ମୋ ବହି ମଲାଟ ଉପରେ ଲେଖାଥିବା 'ଚତୁର୍ଥ ଶ୍ରେଣୀର ଛାତ୍ର'କୁ ସେ ଛାତ୍ରୀ ଲେଖି ଦେଇଥିଲା । ମୁଁ ମଲାଟ ଜଳଉଥିଲି ଆଉ ତା' ଉପରେ ବିରକ୍ତ ହେଉଥିଲି । ଦିନେ ଆମ ସ୍କୁଲ ପାଖ ପାର୍କରେ ସିମେଣ୍ଟ ବେଞ୍ଚରେ ବସିଥିଲୁ । ପାଖ ନଡ଼ିଆ ଗଛ ତଳ ସିମେଣ୍ଟ ବେଞ୍ଚରେ ଦୁଇଜଣ ବସିଥିଲେ । ଜଣେ ପୁଅ ଜଣେ ଝିଅ । ସେମାନେ ବସି ଗପ କରୁଥିଲେ ଆଉ ଚିନାବାଦାମ ଖୋଳପା ଛଡ଼ାଇ ପାଟିରେ ପକାଉଥିଲେ । ମୁଁ ଦେଖିଲି ଏଣେତେଣେ ଚାହିଁ ପୁଅଟି ଚୁମା ଖାଇଲା ଆଉ ଝିଅଟି ତାକୁ ଠେଲିଦେଇ ବେଞ୍ଚ କୋଣକୁ ଘୁଞ୍ଚିଗଲା । ମୁଁ ବେବୀକୁ ଦେଖାଇ ଦେଲି । ବେବୀ କହିଲା ବାଦାମ କିଣି ଆଣିବାକୁ, ମୁଁ ରାସ୍ତା ଉପରକୁ ଦୌଡ଼ିଲି । ବାଦାମ ନେଇ ଦୁହେଁ ଚୋପା ଛଡ଼ାଇବା ଆରମ୍ଭ କଲୁ । ମୁଁ ଏଣେତେଣେ ଚାହିଁ ବେବୀ ଓଠରେ ଚୁମା ଖାଇଲି । ବେବୀ ମୁହଁ ପୋତିଦେଲା, କହିଲା–ହେଃ, ତୋ ଛେପଗୁଡ଼ା ମୋ ପାଟିକୁ ଚାଲିଗଲା । ଥୁ ଥୁ କରି ଅଧାଚୋବା ବାଦାମ ସହ ଧଳା ବହଳିଆ ଛେପ ପକାଇଲା । ଠିକ୍ ସେଇ ମୁହୂର୍ତ୍ତରେ ମୋ କାନରେ କାହାର ଆଙ୍ଗୁଠିର ସ୍ପର୍ଶ ପାଇ ପଛକୁ ଫେରି ଚାହିଁ ଦେଖିଲି, ବାପା ।

ବାପା ସେଦିନ ମା'ଙ୍କୁ ହସି ହସି କହିଲେ–ଦେଖିଲ ତୁମର କୁନାକୁ, ବେବୀକୁ ଖରାବେଳେ ପାର୍କରେ ନେଇ ଚୁମା ଖାଉଥିଲା । ମୁଁ ପହଞ୍ଚିଲି ବୋଲି ସିନା, ନ ହେଲେ...

ବାପା ମା' ହସିଲେ, ଅସମ୍ଭବ ହସ । ମା' ମୋତେ ଛାତିକୁ ଟାଣି ନେଇ ଗେଲ କଲେ । ମୁଁ ମା'ଙ୍କ ଆଖିକୁ ଚାହିଁ ଦେଖିଲି ତାଙ୍କ ଆଖିରେ ଛାଟିପିଟି ହେଉଛି ଏକ ଭିନ୍ନ ଧରଣର ଆନନ୍ଦ ଆଉ ଉଲ୍ଲାସ ।

(ଗ)

ଦେବୀର କୋଠରି ଭିତରେ ମୁଁ, ଦେବୀର କାନ୍ଥରେ ଏଲୋରାୟ ଛବି, କ୍ୟାଲେଣ୍ଡରରେ ଝରଣା, ଝର୍କାରେ ଚେନାଏ ଆକାଶ, ଟେବୁଲ ଉପରେ ଫୁଲଦାନି, ମୁଁ ବାଁହାତରେ ରିସିଭର ଉଠାଇଲି, ଡାହାଣ ହାତ ବିଶି ଆଙ୍ଗୁଠି ଡାଏଲ ଉପରେ ରଖିଲି । ପ୍ରଥମ ସଂଖ୍ୟା ଘୂରାଇଲା ମାତ୍ରେ ଫୁଲଦାନିଟା ଛିଟିକି ପଡ଼ିଲା, ଫୁଲସବୁ ବୁଣି ହୋଇଗଲା । ଦ୍ବିତୀୟ ସଂଖ୍ୟା ଘୂରାଇଲା ମାତ୍ରେ ଚେୟାରଗୁଡ଼ା ସିମେଣ୍ଟ ବେଞ୍ଚ ହୋଇଗଲେ ।

ମୁଁ ଆରମ୍ଭ କଲି–ମୁଁ କୁନା କହୁଛି, ତୁମ ଆଦରର କୁନା କହୁଛି । ମୁଁ ତୁମ ପାଖକୁ ଯିବି । କବର ଭିତରୁ ତୁମକୁ ଉଦ୍ଧାର କରିବି । ତୁମେ ଭୟ କର ନାହିଁ, ମୁଁ ବଡ଼ ପାଟିରେ କାନ୍ଦିବି । ସରଳ ହେବି, ସାଧାରଣ କଥାରେ ବିସ୍ମିତ ହେବି, ଉଲ୍ଲସିତ ହେବି । ରାସ୍ତାରେ ଖେଳସାଥୀ ସଙ୍ଗେ ମଲ୍ଲଯୁଦ୍ଧ କରିବି, ତା' ଦେହରେ ନିର୍ବିକାରରେ ଛେପ ପକାଇବି, ସମସ୍ତଙ୍କ ସାମ୍ନାରେ ଖେଳ ଜାଗାରେ ପରିସ୍ରା କରିବି, ରାସ୍ତାରେ ଯାଉ ଯାଉ କୁକୁର ଛୁଆର ଚିତ୍କାର ଶୁଣି ଭେଁ ଭେଁ କରି କାନ୍ଦିବି । ଚିନାବାଦାମ ପାଟିରେ ରଖି ଚୁମା ଖାଇବି । ତୁମେ ଶୀଘ୍ର ଆସ, ମୋତେ ବଞ୍ଚାଅ । ତୁମ ବିନା ମୋର ଶ୍ୱାସରୁଦ୍ଧ ହୋଇଯାଉଛି ।

...ତା'ପରେ ମୁଁ ରିସିଭର ଓହ୍ଲାଇ ରଖିଲି । ଦେବୀକୁ ଧରିଲି ଓ ବାରବାର ଚୁମା ଖାଇବାକୁ ଲାଗିଲି ।

ଦେବୀ କହିଲା– ତୁମେ ସଂପୂର୍ଣ୍ଣ ପାଗଳ ହୋଇଯାଇଛ !



['ଅରଣ୍ୟ', ସାମୟିକ ଗଳ୍ପ ବିଶେଷଙ୍କ ଦ୍ୱିତୀୟ ସଂଖ୍ୟା । 'ଝରକା', ୨୪ ବର୍ଷ ୧୦ମ ସଂଖ୍ୟା ଜାନୁଆରୀ ୧୯୭୩ରେ ମଧ୍ୟ ପ୍ରକାଶିତ ।]

# ଏକ କେଶବତୀ କନ୍ୟାର ରକ୍ତମାଂସକୁ ନେଇ ହୃତ୍‌ପିଣ୍ଡହୀନ ଏକାନ୍ତ ବ୍ୟକ୍ତିଗତ ଆଦିମ ମୁହୂର୍ତ୍ତ

ଲୋକମାନେ ଏମିତି ଭାବେ ଆତ୍ମହତ୍ୟା କରନ୍ତି କାହିଁକି ? କ'ଣ ଏମାନଙ୍କ ଦୁଃଖ ? ଏତେ ଲୋକ ଦୁର୍ଘଟଣାରେ ମରନ୍ତି କେମିତି ? କାହିଁକି ଏତେ ଅସାବଧାନତା ?

ଦୁର୍ଘଟଣା ଭିନ୍ନ କଥା, ତଥାପି ଆପାତତଃ ମୁଁ ଆଉ ଆତ୍ମହତ୍ୟା କରିବି ନାହିଁ; ଯଦିବା ଦିନେ ସେଇ ଆତ୍ମହତ୍ୟା ପ୍ରେମରେ ପଡ଼ିଆସୁଥିଲି । ମୁଁ ଏଇଠୁ ବାହାରେ । ରିକ୍‌ସାରେ ବସେ । କ୍ୱାର୍ଟର୍ସର କଲିଂ ବେଲ୍‌ରେ ଆଙ୍ଗୁଠି ଲଗାଏ । ନିଦ ଅଳସ ଆଖିରେ ଇତସ୍ତତଃ ଲୁଗାକୁ ଅଧେ ହାତରେ ଧରି ଅଧେ ଦେହରେ ଗୁଡ଼ାଇ ସ୍ୱାତୀ କବାଟ ଫିଟାଇଦିଏ । ଦୁଇଟି ପିଲା ଧାଇଁ ଆସନ୍ତି । ମୁଁ ଥଣ୍ଡା ପାଣିରେ ସ୍ନାନ କରେ । ଗରମ ଚା' ପିଏ । ସ୍ୱାତୀକୁ ଶବ ବ୍ୟବଚ୍ଛେଦାଗାରର ଅପରେସନ୍ କଥା କହେ । ସ୍ୱତୀ ଚୁପ୍ କରିବାକୁ କହେ । ମୁଁ କିନ୍ତୁ କହିଚାଲେ–ଆଜି ଗୋଟାଏ କଦର୍ଯ୍ୟ ବୁଢ଼ା ଦେହରେ ଛୁରୀ ଚଳାଇବାକୁ ହେଲା । ବିଚରା ବେକରେ ଦଉଡ଼ି ଦେଇ ଆତ୍ମହତ୍ୟା କରିଥିଲା । ସ୍ୱାତୀର ଆଖି କୌତୁକରେ ନାଚେ–ଆଉ କେତେ ଦିନ ଅପେକ୍ଷା କରିଥିଲେ ତ ଆରାମରେ ମରି ପାରିଥାନ୍ତା । କ'ଣ ତା'ର ଅସୁବିଧା ଥିଲା ? ମୁଁ ଚା କପ୍‌ଟା ଟେବୁଲ ଉପରକୁ ଓହ୍ଲାଇ ରଖି କହେ– ତା' ସ୍ତ୍ରୀ ବୁଝିପାରିଲା ନାହିଁ ବୋଲି ଅଭିଯୋଗ ପତ୍ର ପକେଟରେ ରଖି ଯାଇଥିଲା । ସ୍ୱାତୀ ଅଦ୍ଭୁତ ଏକ ପ୍ରକାର ହସ ହସି ବେଦମ ହୋଇଯାଏ ଏବଂ ସେ ହସରେ ମୋ ଭିତରେ ଗୋଟିଏ ଇଲେକ୍‌ଟ୍ରିକ କରତର ସୁଇଚ୍ ଅନ୍ ହୋଇଯାଏ ।

ମୁଁ ସ୍ୱାତୀକୁ ନେଇ ପାର୍କ ଯାଏ, ସିନେମା ଯାଏ । ଥରେ ଥରେ ହଠାତ୍ ସବୁ ଖାପଛଡ଼ା ଲାଗେ । ଘରକୁ ଫେରେ । ସ୍ୱାତୀର ନଗ୍ନ ଦେହକୁ ସବୁଜ ଆଲୁଅ ତଳେ ଏପଟ ସେପଟ କରୁଁ କରୁଁ ମୋ ଭିତରୁ କ୍ରମାଗତ ଚିତ୍କାର ଉଠି ଆସେ । ସ୍ୱାତୀର ଅର୍ଦ୍ଧ ନିମୀଳିତ ଚକ୍ଷୁ ବିସ୍ଫାରିତ ହୁଏ : ମୋ ଭିତରର ଅଦୃଶ୍ୟ ପାଣ୍ଡୁଲିପି ପଢ଼ିବାର ଚେଷ୍ଟା କରେ ସେ ।

ମୁଁ ଦୁଇଟି ପିଲାକୁ ଧରି ସନ୍ଧ୍ୟାରେ ନଈକୂଳକୁ ଯାଏ । ପିଲା ଦୁଇଟି ଘାସ ଉପରେ ଗଡ଼ିଯାଆନ୍ତି । ମୁଁ ପଶ୍ଚିମ ଆକାଶକୁ ଚାହେଁ । ଅପରେସନ୍ ଟେବୁଲ ପରି ପଶ୍ଚିମ ଆକାଶ । ଅବଶ୍ୟ ଏ ଲାଇନ୍‌ଟି କେଉଁ ଏକ କବିଙ୍କର ।

ଯେତେବେଳେ କଲେଜରେ ପଢୁଥିଲି, ମୋର କବିତା ପଢ଼ିବାର ସଉକ ଥିଲା । ନିୟତିର କବିତା ପଢୁ ପଢୁ ବଡ଼ କବିମାନଙ୍କର କବିତା ପଢ଼ିବା ଆରମ୍ଭ କରି ଦେଇଥିଲି । ନୀଳିମାର ଅପା ନିୟତି ମୋ ସହ କଲେଜରେ ପଢୁଥିଲା । ଆଉ କବିତା ଲେଖୁଥିଲା । ତେଣୁ ମୁଁ ବାଧ ହୋଇ ତା କବିତା ଶୁଣୁଥିଲି । ନିୟତି ଦିନେ ଜୋର କରି ତା' ଘରକୁ ନେଇଗଲା । ମୁଁ କୌଣସି ଝିଅ ଘରକୁ ସାଧାରଣତଃ ଯାଏ ନାହିଁ, କାରଣ ମୋର ମନେହୁଏ ଝିଅ ଘରୁ ବାହାରି ଆସିଲା ବେଳେ ଯେପରି ରାସ୍ତା ଦୁଇପଟର ଲୋକ ରହସ୍ୟଜନକ ଭାବେ ହସନ୍ତି । ତେଣୁ ମୁଁ ନିୟତି ସହ ତା' ଘରକୁ ଯିବା ପୂର୍ବରୁ ଶପଥ କରିଥିଲି ଆଉ ଦ୍ୱିତୀୟଥର ଯିବି ନାହିଁ ।

ସେଦିନ ନିୟତି କବିତା ପଢ଼ାଇଲା । ମୁଁ ନୀଳିମାକୁ ଦେଖିଲି । ନିୟତି କହିଲା– ତୁମେ କବିତା ଭଲ ପାଅ, ଲେଖୁନ କାହିଁକି ? ମୁଁ ନୀଳିମାକୁ ଚାହିଁଲି । ନିୟତି ଚା କପ୍ ମୋ ହାତରେ ଧରାଇଦେଲା । ମୁଁ ନୀଳିମାକୁ ନିରୀକ୍ଷଣ କଲି ।

ନୀଳିମା ଦୀର୍ଘକେଶୀ, ପ୍ରଗଲ୍‌ଭା ଓ ସ୍କୁଲ ଛାତ୍ରୀ ।

ତା' ପରେ ଅନେକଥର ନିୟତି ସଙ୍ଗରେ ତା'ଘରକୁ ଯାଇଛି । ତା'ର କବିତା ପଢ଼ିଛି ଏବଂ ବାଧ ହୋଇ କବିତା ପଢ଼ିବାର ସଉକ ବଢ଼ାଇଛି ।

କେତେ ଦିନ ପରେ ନିୟତି ମୋର ବନ୍ଧୁ ସୁବୋଧ ଦାସକୁ ନେଇ ପଳାଇଲା । ମୁଁ ପ୍ରାଣଭରି ନିଃଶ୍ୱାସ ନେଲି । ନୂଆ କରି ନୀଳିମା ଘରକୁ ଯିବା ଆରମ୍ଭ କଲି । ନୀଳିମାର ଆଖି ଦେଖିଲି । କେଶ ଦେଖିଲି । କବିତା ଲେଖିବା ଆରମ୍ଭ କଲି ।

ଅନେକ ତରୁଣ ଅନେକ ତରୁଣୀଙ୍କୁ କହିଥିବା କଥାଟା ଆଉ ଥରେ ଘଷିମାଜି ନୀଳିମାକୁ କହିଲି–ନୀଳିମା, ମୁଁ ତୁମକୁ ସାଙ୍ଘାତିକ ଭଲପାଏ ।

ସେ ପ୍ରଗଲ୍‌ଭତା ଦେଖାଇଲା–କେବେଠୁଁ ?

ମୁଁ ବେଶୀ ଗମ୍ଭୀର ହେଲି–ସତ କହୁଛି ତୁମକୁ ନ ପାଇଲେ ମୁଁ ବଞ୍ଚିବି ନାହିଁ ।

ସେ କହିଲା–କାହିଁକି ?

ମୁଁ ସତକଥାଟା କହିଲି–କାହିଁକି ଜାଣେ ନାହିଁ । ତେବେ ତୁମର କେଶ ଲମ୍ବା ଆଉ ସେଥିରେ ଅଜବ ଏକ ଗନ୍ଧ ଅଛି ।

ସେ ହସିଲା । ମୁଁ ଗମ୍ଭୀର ହେଲି । ସେ ଆହୁରି ହସିଲା । ମୁଁ ଆହୁରି ଗମ୍ଭୀର ହେଲି । ମୋ ଭିତରେ ଅନେକ କାଚଗ୍ଲାସ, କପ୍, ପ୍ଲେଟ ଭାଙ୍ଗିବାର ଶବ୍ଦ ସେ ଶୁଣିପାରିଲା ନାହିଁ ।

ମୁଁ ଇଦାନୀଂ ଖୁବ୍ ସୁସ୍ଥ । ତଥାପି ସ୍ୱାତୀ, ଅନେକ ସମୟରେ କହେ–ତୁମ ଭିତରେ ଏକ ପ୍ରକାର ଜୀବାଣୁ ଆସ୍ଥାନ ଜମେଇ ଆସିଲେଣି । ତୁମେ ଭୀଷଣ ଅନ୍ୟମନସ୍କ ଓ ଚିନ୍ତିତ ରହୁଛ ।

ମୁଁ ତା'କଥା ଶୁଣି ନିଃଶବ୍ଦରେ ହସେ । ସେ ପୁଣି କହେ– ସେଇ ବୁଢ଼ାଟାର ଶବ କାଟିଲା ପରଠାରୁ ତୁମେ ଭୀଷଣ ଅସୁସ୍ଥ ହୋଇଯାଇଛ ।

ମୁଁ ମୁଣ୍ଡ ହଲାଏ ଓ ମନେ ମନେ ଉଚ୍ଚାରଣ କରେ– ପୃଥିବୀରେ କେହି କାହାରିକୁ ଠିକ୍ ଠିକ୍ ବୁଝନ୍ତି ନାହିଁ ଏବଂ ମଣିଷର ସବୁ ଇଚ୍ଛା ପୂରଣ ହୋଇପାରେ ନାହିଁ ।

ପୁଣି ଆତ୍ମହତ୍ୟା ! ମୋ ଟେବୁଲ ଉପରେ ପୁଣି ନୂଆ ଶବ । ଆତ୍ମା ଖସିଯାଏ, କିନ୍ତୁ ଦେହଟା ମୋ ପାଖରୁ ଖସିଯାଇପାରେ ନାହିଁ । ଶବଟାର ମୁହଁ ଉପରୁ ଲୁଗା ଉଠାଇ ଦେଲି । ଝିଅର ଶବ । ଏତେ କମ୍ ବୟସ ? ପ୍ରେମ ବ୍ୟାପାର ? ଉପେକ୍ଷିତା ? ଆତ୍ମହତ୍ୟା ? ମୁଁ ଜୀବନରେ ଯାହାକୁ ଚାହିଁ ବି ପାଇ ନାହିଁ ସେ ଯଦି ମୋ ଟେବୁଲ ଉପରକୁ ଫେରିଆସେ ।

ମୁଁ ନୀଳିମାକୁ ଅନେକଥର ଆତ୍ମହତ୍ୟାର ଭୟ ଦେଖାଇଛି, କାନ୍ଦିଛି, ଅନୁନୟ କରିଛି, କିନ୍ତୁ ତାର ସେଇ ଅଜବ ହସ । ଦିନେ ମୁଁ ତାକୁ ଜୋର କରି ଧରିଲି ଏବଂ କହିଲି :

–ଆଜି ଗୋଟିଏ ଶେଷ କଥା ଶୁଣି ଛାଡ଼ିବି ।

–କେଉଁ ଶେଷ କଥା ?

–ମୁଁ ତୁମକୁ ପାଇ ପାରିବି କି ନାହିଁ ?

–ମୁଁ ଅପା ପରି ପଳାଇ ଯାଇପାରିବି ନାହିଁ ।

–ମୁଁ ତୁମ ବାପା ମା'ଙ୍କୁ ରାଜି କରାଇବି ।

–ତା' ହେଲେ ବି ସମ୍ଭବ ନୁହେଁ ।

–କାରଣ ?

–କାରଣ ଆପଣ ଅପାର ବନ୍ଧୁ । ତେଣୁ ମୁଁ ଆପଣଙ୍କୁ ଭାଇ ପରି ଭଲପାଏ ।

ମୁଁ ଆଉ ପାରିଲି ନାହିଁ । ତା'ର ଗୋଲ ନରମ ଗାଲରେ ଠାସ୍ କରି ଚାପୁଡ଼ାଏ ମାରିଲି । ଅବଶ୍ୟ ଅନେକ ଦିନ ପରେ ମୁଁ ତା'ଠାରେ ଅନୁତପ୍ତ ବୋଲି ପ୍ରକାଶ କରିଥିଲି ।

ତା'ପରେ ମେଡ଼ିକାଲ ପଢ଼ିବାକୁ ଅନ୍ୟ ସହରକୁ ଚାଲିଗଲି । ଯେତେବେଳେ ନୀଳିମାର ସହରକୁ ଫେରେ, ଅନେକ ସ୍ୱପ୍ନକୁ ପକେଟରେ ରଖି ନୀଳିମା ଘରକୁ ଯାଏ । ନୀଳିମା ସ୍ୱାଭାବିକ ଭାବରେ ମୋ ସହ କଥାବାର୍ତ୍ତା କରେ । ସେ ଯେତେବେଳେ ପ୍ରଗଲ୍‌ଭ ହୁଏ ମୁଁ ତାର ଲମ୍ବା ବେଣୀକୁ ହାତରେ ଧରେ । ଘ୍ରାଣ କରେ । ମୋ' ଭିତରେ

ଧୀରେ ଧୀରେ ଏକ ନିଷିଦ୍ଧ ଦର୍ଜା ଖୋଲିଯାଏ । ମୁଁ ଅନୁନୟ କରେ ଗୋଟିଏ ଆଦିମ ମୁହୂର୍ତ୍ତ ପାଇଁ । ସେ ଠିକ୍ ବୁଝିପାରେ । ମୁଁ ଅନେକ ଅନୁରୋଧ କରେ । ସେ ନାସ୍ତିସୂଚକ ମୁଣ୍ଡ ହଲାଏ । ମୁଁ ଅନେକ ଶପଥ କରେ । ସେ ମୁଣ୍ଡ ହଲାଏ । ମୁଁ ତାକୁ ଦେହତତ୍ତ୍ୱ ବୁଝାଏ । ସେ ମୁଣ୍ଡ ହଲାଏ । ମୁଁ ଶେଷରେ ବସି କାନ୍ଦେ । ସେ ମୁଣ୍ଡ ହଲାଏ ।

ମୁଁ ତା'ଦେହର ବକ୍ରରେଖାମାନଙ୍କର ଛବି ଖୁବ୍ ଭିତରେ ନେଇ ଆଖି ବନ୍ଦ କରି ଶୋଇଯାଏ । ନିଦରେ କାନ୍ଦେ ହସେ, ଅନୁରୋଧ କରେ ଏବଂ ନୀଳିମାର ଲମ୍ବା ବେଣୀକୁ ବେକରେ ଗୁଡ଼ାଇ ଆତ୍ମହତ୍ୟା କରେ ।

ଯେଉଁଦିନ ଶୁଣିଲି ନୀଳିମାର ବାହାଘର ଠିକ୍ ହୋଇଯାଇଛି, ମୋ ଭିତରର କାଚ ସହରରେ ବୋମାର ବିସ୍ଫୋରଣ ହେଲା । ନୀଳିମାକୁ ସେ ସହରର ଧ୍ୱଂସାବଶେଷ ଦେଖାଇଲି । ନୀଳିମା ହସିଲା । ଶେଷରେ କହିଲି, ଥରେ ସବୁ କୁସଂସ୍କାର ଅନ୍ଧ-ବିଶ୍ୱାସର ଲକ୍ଷ୍ମଣରେଖା ଟପି ମୋ ସହ ଗୋଟିଏ ଦୀର୍ଘ ଅଭିଳଷିତ ଆଦିମ ମୁହୂର୍ତ୍ତରେ ମିଳିତ ହେବାକୁ । ସେ ହସି ହସି ମନାକଲା । ମୁଁ ଜୋର୍ କରି ତାକୁ ଖଟରେ ଚିତ୍ କରି ପକାଇଦେଲି । ସେ ମନାକଲା । ମୁଁ ଏକ ମେଲ ଟ୍ରେନ୍‌ର ଶକ୍ତି ନେଇ ତା' ଦେହର ଲୁହା ଉପରେ ମାଡ଼ିଯିବାକୁ ଉଦ୍ୟତ ହେଲି । ସେ ଅନୁନୟ କଲା, କାନ୍ଦିଲା । ମୁଁ ଉଠିପଡ଼ିଲି । ସେ ଚିତ୍ ହୋଇ ସେମିତି ଶୋଇ ଅନେକ ସମୟ କାନ୍ଦିଲା ।

ଶବଟା ଟେବୁଲ ଉପରେ ଚିତ୍ ହୋଇ ପଡ଼ିଛି । ନୀଳିମା ଶବ ହୋଇ ମୋ ପାଖକୁ ଫେରି ଆସିଲା ନାହିଁ ତ ? ମୁଁ ତା ଦେହରେ ହାତ ରଖିଲି । ପଚିଯାଇନାହିଁ, ସତେଜ ଅଛି । ଦେହରେ ବାଇଗଣୀ ରଙ୍ଗର ବ୍ଲାଉଜ ଆଉ ନୀଳ ଶାଢ଼ି । ନୀଳିମାର ଗୋଟିଏ ବାଇଗଣୀ ରଙ୍ଗର ବ୍ଲାଉଜ ଥିଲା ତ । ମୁଁ ତାକୁ କଡ଼େଇ ଦେଲି । ଅସମ୍ଭବ ଦୀର୍ଘ ବେଣୀ । ବେଣୀକୁ ହାତରେ ଧରିଲି । ବାହାରକୁ ଚାହିଁଲି । ମେହେନ୍ତରଟା ରୁଣ୍ଡ ହୋଇଥିବା ଲୋକମାନଙ୍କ ସଙ୍ଗେ କ'ଣ ସବୁ କଥାବାର୍ତ୍ତା ହେଉଥିଲା । ବେଣୀଟାକୁ ନାକ ପାଖକୁ ନେଲି । ସେଇ ଗନ୍ଧ, ନୀଳିମାର ଗନ୍ଧ । ମୋ ଭିତରେ ଧଡ଼ଧାଡ଼ ହୋଇ ଅନେକ ଝର୍କା କବାଟ ଖୋଲିଗଲା ଏବଂ ମୋ ଇଚ୍ଛାନୁସାରେ ସେ ଘରର ସବୁ ଝର୍କା କବାଟ ବନ୍ଦ ହୋଇଗଲା । ମୁଁ ହାତର ଗ୍ଲୋଭସ୍ ଖୋଲିଲି । ଏପ୍ରନ୍ ଘୁଞ୍ଚାଇ ଦେଲି । ବେଣୀଟାକୁ ଆଉ ଥରେ ନାକ ପାଖକୁ ନେଲି । ସେ ନୀରବ ଥିଲା । ମୁଁ କଇଁଚି ଉଠାଇ ଆଣିଲି । ସେ ନୀରବ ରହିଲା । ବ୍ଲାଉଜରେ କଇଁଚି ଲଗାଇଲି । ସେ ନୀରବ ରହିଲା । ବ୍ରାରେ କଇଁଚି ଲଗାଇଲି, ସେ ନୀରବ ରହିଲା । ସାୟା ଫିତାରେ କଇଁଚି ଲଗାଇଲି । ସେ ନୀରବ ରହିଲା । ମୁଁ ତା ଆଖିକୁ ଚାହିଁଲି । ସେ ନୀରବ ରହିଲା । କାନ୍ଦିଲା ନାହିଁ । ତା' ଆଖିପତା ଶୁଖିଲା । ମେଲ ଟ୍ରେନ୍‌ର ଶକ୍ତି ନେଇ ମୁଁ ତାର ଲୁହା ଧାରଣା ଉପରେ ପଡ଼ିଗଲି । ବେଣୀଟାକୁ ନାକରେ ଅନେକଥର ଶୁଙ୍ଘିଲି । ତଥାପି ସେ କିଛି ଅଭିଯୋଗ କଲା ନାହିଁ ।

ମୁଁ ବିଜୟୀର ହସ ହସିଲି । କବାଟ ଝର୍କା ଖୋଲିଲି । ଗ୍ଲୋଭସ୍ ପିନ୍ଧିଲି । ଏପ୍ରନ୍ ବାନ୍ଧିଲି । ଆରାମରେ ଛୁରୀ ଚଳାଇଲି । ବେକ, ଛାତି, ପେଟ, ପାଦ, ସର୍ବତ୍ର । ସବୁ ଯେଝା ସ୍ଥାନରେ ଠିକ୍ ଅଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟ ହୋଇ ଖୋଜାଖୋଜି କଲି । ସୁନ୍ଦରୀ କେଶବତୀ କନ୍ୟାଟିର ହୃତ୍‌ପିଣ୍ଡ ପାଇଲି ନାହିଁ । ମୁଁ ଏକ ସିଦ୍ଧାନ୍ତରେ ଉପନୀତ ହେଲି ଯେ ସବୁ ସୁନ୍ଦରୀ କେଶବତୀ କନ୍ୟାଙ୍କ ଛାତି ଭିତରେ ହୃତ୍‌ପିଣ୍ଡ ନାହିଁ ।

ମୋତେ ବି ମନେ ହେଲା ମୋ ହୃତ୍‌ପିଣ୍ଡଟା ସେଇ ମୁହୂର୍ତ୍ତରେ, ସେଇ ଅପରେସନ୍ ଟେବୁଲ ଉପରେ ଶବଟାର ଇତସ୍ତତଃ ରକ୍ତମାଂସ ଇତ୍ୟାଦିକୁ ନେଇ ତିଆରି ହୋଇଥିବା ମୋର ବ୍ୟକ୍ତିଗତ ଆଦିମ ମୁହୂର୍ତ୍ତ ମଧ୍ୟରେ ହଜିଯାଇଛି ।

ମୋ ଶବ ଏପ୍ରନ୍ ଆଉ ଗ୍ଲୋଭସ୍‌ର ଖୁବ୍ ତଳେ ପଡି ଆସୁଥିଲା ।

(‘କଥାକାର’, ୪ର୍ଥ ଖଣ୍ଡ ବିଷୁବ ବିଶେଷାଙ୍କ,୧୯୭୩)



# ନୂଆ ଠିକଣା

**ଉତ୍ତମାଶା,**

ମୁଁ ଏବେ ବି ବଞ୍ଚିଛି ଏବଂ ନୂଆଭାବେ ବଞ୍ଚିଛି ।

ମୁଁ ଏ ଚିଠି ଲେଖୁଛି ଖୁବ୍ ଦୂର ଏକ ସହରରୁ । ଏଠାରେ ମୋର କାମ ଅନେକ । କ'ଣ କାମ ତୁ ଜାଣିବାକୁ ଚେଷ୍ଟା କରିବୁ ନାହିଁ । ତୋତେ ତ ଅନେକ କଥା କହିଛି । ଅନେକ ଗୋପନ ନିଷିଦ୍ଧ କଥା ଶୁଣାଇଛି । ଏଇ କଥାଟା ଶୁଣିଲେ ତୁ କିନ୍ତୁ ବେଶ୍ ଦୁଃଖ ପାଇବୁ ।

ତୋତେ ଯା ପୂର୍ବରୁ ଅନେକ ଚିଠି ଲେଖିଛି । ସବୁ ଚିଠିରେ ଥିଲା ଗୋଟିଏ ସ୍ୱପ୍ନ, ତୋତେ ନିଜର କରିବାର ସ୍ୱପ୍ନ, ତୋ ପାଇଁ ମରୁଭୂମିରେ ଇଟା ସିମେଣ୍ଟ ଯୋଡ଼ିବାର ସ୍ୱପ୍ନ । କିନ୍ତୁ ଏଇଟା ଲେଖିଲାବେଳକୁ ମୁଁ ଅନେକ ପ୍ରକୃତିସ୍ଥ ହୋଇ ଆସିଲିଣି । ସେ ଦିନଗୁଡ଼ାକରେ ସ୍ୱପ୍ନରେ ଆଖି ବନ୍ଦକରି ଆରାମରେ ଗିଳି ଦେଉଥିଲି କିନ୍ତୁ ଆଜି ବାସ୍ତବତାକୁ ଦାନ୍ତରେ ଭାତ ଭିତରର ଗୋଡ଼ିପରି କାମୁଡ଼ି ପକାଇଛି ।

ଉତ୍ତମାଶା, ଅନ୍ତତଃ ତୁ ତ ଜାଣୁ ମୁଁ କାହିଁକି ଏତେ ଦୂରକୁ ପଳାଇ ଆସିଲି ! ତୋର ଓ ମୋର ସ୍ୱପ୍ନର ସହରକୁ ଛାଡ଼ି ଆସିଲା ବେଳେ କିନ୍ତୁ ଆଦୌ ଯନ୍ତ୍ରଣାପାଇନି । ଯେଉଁ ସହରରେ ପ୍ରାୟ ସବୁ ମୁହଁ ଚିହ୍ନା, ଯେଉଁ ପ୍ରଦେଶରେ ମୋତେ ଅନେକ ଲୋକ ଚିହ୍ନନ୍ତି, ମୁଁ ସମୟ ସମୟରେ ସାହିତ୍ୟ କରେଁ ବୋଲି, ସେ ସହର, ସେ ପ୍ରଦେଶ ମୋତେ କାହିଁକି ବଞ୍ଚିବାର ଉପାଦାନ ଯୋଗାଇ ପାରିଲେନି !

ଅନେକ ଇଣ୍ଟରଭ୍ୟୁକୁ ମୁଁ ଯାଇଛି । ପରୀକ୍ଷା ଦେଇ ସାରିଲା ପରେ ମୋତେ ମନେ ହୋଇଛି, ହୁଏତ ମୁଁ ଚାକିରି ପାଇଯିବି । ଇଣ୍ଟରଭିୟୁ ଦେଇସାରି ଫେରିଲା ବେଳେ ଟ୍ରେନ୍‌ରେ ବସି ସ୍ୱପ୍ନ ଦେଖେ ମୁଁ ଅଫିସରୁ ଫେରୁଛି । ତୁ ମତେ ଯେପରି ଅପେକ୍ଷା କରି ବସିଛୁ । ମୋର ସଙ୍କେତ ଶୁଣି ତୁ କବାଟ ଖୋଲିଦେଲା ପରେ ମୁଁ ଠିକ୍ ସେୟା କରୁଛି । ତୁ ବିରକ୍ତ ହେଉଛୁ ।

ଅନେକ ଦିନ ବସି ବସି ଏହିପରି ଅନେକ ସ୍ୱପ୍ନର ହାର ତିଆରି କରେ । କିନ୍ତୁ ସବୁ ସ୍ୱପ୍ନ ବରଫ ଭଳି ମିଳେଇଯାଏ । ଶୁଣେ, କେଉଁ ଏକ ମନ୍ତ୍ରୀଙ୍କ ପୁତୁରାଙ୍କ ସାଙ୍ଗ ନିଯୁକ୍ତି ପାଇଗଲା । ଏହିପରି ଥରେ ନୁହେଁ, ଅନେକଥର ଚାଲେ ।

ଶେଷଥର ଯେଉଁ ଇଣ୍ଟରଭିୟୁ ଦେଲି, ସେଇଟା ଚାକିରି ପାଇଁ ମୋ ଜୀବନର ଶେଷ ଇଣ୍ଟରଭିୟୁ । ମୁଁ ଜାଣେ, ସାର୍ ମୋତେ ଚାକିରି କରିବାକୁ ନଦେଇ ଆଗକୁ ଘୋଷାରି ନେବ । ଘରୁ ଦଶପନ୍ଦର ଦିନ ଆଗରୁ ଶେଷ ଶପଥ କରି ବାହାରିଛି ଯେତେବେଳେ, ଚାକିରିର ବନ୍ଦୋବସ୍ତ ନକଲେ ଫେରିବି ନାହିଁ । ସାଙ୍ଗସାଥୀ, ସାହିତ୍ୟିକ ବନ୍ଧୁବାନ୍ଧବଙ୍କ ଠାରୁ ଚାନ୍ଦା କରି ଇଣ୍ଟରଭିୟୁ ଗଲି, ସ୍କୁଲ୍ କଲେଜରେ କୃତୀ ଛାତ୍ରଥିଲି । ନିଜ ଉପରେ ଯଥେଷ୍ଟ ଭରସା ଥିଲା । ଆଉରି ଭରସା ବଢ଼ିଗଲା । କାରଣ ଯାହାଙ୍କ ହାତରେ ନିଯୁକ୍ତି, ସେ ଜଣେ ବଡ଼ ସାହିତ୍ୟିକ । ସାଙ୍ଗସାଥୀମାନେ ମୁହଁ ଫୁଲାଇ କହି ବୁଲିଲେ, ତୋର ତ ଚାକିରି ହୋଇଗଲା, ଆଉ ଭାବନା କଣ ? କେହି କେହି ତ ମୋ ସହ ଫୁସ୍‌ଫୁସ୍ କଲେ । ରେଷ୍ଟୁରେଣ୍ଟକୁ ଡାକି ନେଇଗଲେ ମୁଁ ତାଙ୍କ ପାଇଁ ସୁପାରିଶ କରିବି ବୋଲି ।

ଇଣ୍ଟରଭିୟୁରେ ଭଲ କଲି । ତଥାପି ସନ୍ଦେହ ହେଲା। ଭଲ କଲେ ମଧ୍ୟ କେହି ମନ୍ତ୍ରୀଙ୍କ ପୁତୁରାର ସାଙ୍ଗ ବା ଅଫିସରଙ୍କ ଶଳା ତ ମୋ ବଦଳରେ ଚାକିରିଟା ପାଇଯାଇପାରେ। ଜଣେ ଶୁଭେଚ୍ଛୁ ମୋତେ ଉପଦେଶ ଦେଲେ, ଅଫିସରଙ୍କ ସହ ଦେଖା କରିବା ପାଇଁ। ଅନେକ ଭାବିଚିନ୍ତି ସଙ୍କୋଚ ଓ ଭୟ ନେଇ ଅଫିସରଙ୍କ କ୍ୱାଟର୍ସର କଲିଙ୍ଗ୍ ବେଲ୍‌ରେ ଆଙ୍ଗୁଠି ଲଗାଇଲି। ଅଫିସର ନିଜେ ଦେଖା ଦେଲେ। ଲୋକଙ୍କୁ କିପରି ଖୁସାମତ କରିବାକୁ ହୁଏ ମୁଁ ଜାଣେନି। ତେଣୁ ସିଧା ମୋ ନାଁ କହିଲି–

–ଆଜ୍ଞା ମୁଁ ଗଳ୍ପ ଲେଖେ ।

–ଲେଖିଲ ତ କଣ ହେଲା ?

–ଏଇ ଚାକିରିଟା ନ ପାଇଲେ ମୁଁ ହଇରାଣ ହୋଇଯିବି ।

–କାହିଁକି ?

–ମୋର ଚାକିରିର ବୟସ ଚାଲିଯିବ ।

–ମୁଁ କ'ଣ କରିବି ?

–ଆପଣ ଯଦି ଟିକେ ଦେଖନ୍ତେ ।

–ତୁମକୁ ମୋ ପାଖକୁ ପଠାଇଲା କିଏ ?

–କେହି ପଠାଇନାହିଁ, ମୁଁ ନିଜେ ଆସିଛି । ମନେ ମନେ ଭାବିଲି କେହି ମନ୍ତ୍ରୀ କିମ୍ବା ତାଙ୍କ ପାହ୍ୟାର କୌଣସି ଅଫିସର ମୋତେ ପଠାଇଥିଲେ ହୋଇଥାନ୍ତା ।

–ଯାଅ ମୁଁ କିଛି କରିପାରିବି ନାହିଁ ।

–ମୋର ବହୁତ ସମସ୍ୟା, ବହୁତ ଅସୁବିଧା ।

–ଅନେକ ଲୋକଙ୍କର ଅନେକ ସମସ୍ୟା, ଅନେକ ଅସୁବିଧା ଅଛି ।

–ମୋର ଆଜ୍ଞା ଅସୁବିଧା ସବୁ ଅନ୍ୟଧରଣର । ତା'ଛଡ଼ା ମୁଁ ସାହିତ୍ୟ...

–ଯାଅ, ଏଠୁ ଚାଲିଯାଅ । ମୋଦ୍ୱାରା କିଛି ହେବନି ।

ତା' ପରେ ମୋ ସାମ୍ନାରେ କବାଟ ବନ୍ଦ ହୋଇଗଲା ।

ଉତ୍ତମାଶା, ମୋର ସେଇଠି ଚିତ୍କାର କରିବାକୁ ଇଚ୍ଛା ହେଉଥିଲା– ଆପଣ କେମିତି ଜାଣିବେ, ମୋ ମା' ଗାଧୋଇ ଆସି ହଳଦିଳଗା ଚିରା ବିଛଣାଚାଦର ପିନ୍ଧି ତୋରାଣି ଆଉ ପିଆଜ ଖାଏ ! ଆପଣ କେମିତି ଜାଣିବେ ମୋ ସାନଭାଇଟି ସକାଳେ ମୁତୁରା କନ୍ଥାରେ ଶୋଇ କିପରି ଖାଇବାକୁ ମାଗେ ! ଆପଣ କେମିତି ଜାଣିବେ ମୋ ବିଧବା ଭଉଣୀ ଅନ୍ୟ ଘରେ ଅଇଁଠା ବାସନ ମାଜୁ ମାଜୁ କିପରି ହାତ ପାପୁଲିର ପିଠିରେ ମୁହଁର ଝାଳ ପୋଛେ ! ଆପଣ କିପରି ଜାଣିବେ ମୋ ସବା ସାନଭଉଣୀ ଅନ୍ୟର କଲମ ଚୋରି କରି ମାଡ଼ ଖାଏ ! ଆପଣ କିପରି ଜାଣିବେ କାହାର ଚୁଡ଼ିଭରା ହାତ ମୋ ଲୁହ ପୋଛି ଏକ ସୁସମୟକୁ ଅପେକ୍ଷା କରେ ! ଉତ୍ତମାଶା, ଓଡ଼ିଶାର ସୁବିଖ୍ୟାତ ସାହିତ୍ୟିକ, ଉଚ୍ଚପଦସ୍ଥ ଅଫିସରଙ୍କ କବାଟ ବନ୍ଦ ପରେ ମୋର ଇଚ୍ଛା ହେଉଥିଲା ଗୋଟିଏ ଚାପୁଡ଼ାରେ ଏ ସମାଜର ବଡ଼ବଡ଼ ଅଫିସରଙ୍କ ଖାମଖେୟାଲି ଆଚରଣକୁ ଉଡ଼ାଇ ଦିଅନ୍ତି ।

ତା' ପରେ ତୋ ସହରକୁ ଫେରିଆସିଲି । ଆସି ଶୁଣିଲି ତୋ ବାପା ତୋ ବାହାଘର ପ୍ରସ୍ତାବ ଜଣେ ଡାକ୍ତର ସହ ପକାଇଛନ୍ତି । ତୁ କୁଆଡ଼େ ରୋକଠୋକ ମନା କରିଦେଉଛୁ ଏବଂ ମୋ ଛଡ଼ା ଆଉ କାହାକୁ ବାହା ହେବୁ ନାହିଁ ବୋଲି ପ୍ରକାଶ କରିଦେଇଛୁ । ମୋର ସେତେବେଳେ କେବଳ ଆତ୍ମହତ୍ୟାର ଚିନ୍ତା କିନ୍ତୁ ତା' ପରଦିନ ଯେତେବେଳେ ତୋ ବାପା ମୋତେ ଡକାଇ ପଠାଇଲେ ମୁଁ ନମସ୍କାର କରି ସନ୍ତ୍ରମରେ ଛିଡ଼ାହେଲି । ସେତେବେଳେ ହାତଟାକୁ କେଉଁ ପଜିସନ୍‌ରେ ରଖିଲେ ସୁନ୍ଦର ଓ ବିନୟୀ ଦେଖାଯିବି ତାହାହିଁ ଭାବୁଥିଲି । ହଠାତ୍ ତୋ ବାପା ଗର୍ଜନ କରି ଉଠିଲେ–

–ତୁମେ ଚାକିରି ପାଇଛ ?

–ତୁମ ବାପାଙ୍କର କେତେ ବ୍ୟାଙ୍କ୍ ବାଲାନ୍ସ୍ ଅଛି ?

–ତୁମର କାର୍ ଅଛି ତ ?

–ତୁମର କେତେ ମହଲା କୋଠା ଅଛି ?

–ମୋର କିଛି ନାହିଁ, କିନ୍ତୁ ହୃଦୟ ଅଛି ।

ଭିକାରି ହୋଇ ହୃଦୟ ! ଉପନ୍ୟାସର ଡାଇଲଗ୍ ମୁଁ ଶୁଣିବାକୁ ଚାହେଁନା । ଶୁଣ, ଆଉ କେବେ ଆଶା ସହ ଦେଖା କରିବ ନାହିଁ । ତୁମପରି କାଙ୍ଗାଳ ସହ ଆଶାପରି ଗୋଟିଏ ଝିଅର ବିବାହ ସମ୍ଭବ ନୁହେଁ । ତାପରେ ସେ ସିଡ଼ିଭାଙ୍ଗି ଉପରକୁ ଉପରକୁ ଉଠିଗଲେ ଓ ମୁଁ ସିଡ଼ିଭାଙ୍ଗି ତଳକୁ ତଳକୁ ଓହ୍ଲାଇ ଆସିଲି ।

ଉତ୍ତମାଶା, ମୋତେ ସେତେବେଳେ ଚିତ୍କାର କରି କହିବାକୁ ଇଚ୍ଛା ହେଉଥିଲା– ଆପଣ କେମିତି ଜାଣିବେ ଗୋଟିଏ ଦରିଦ୍ର ପାଇଁ ଭଲ ପାଇବାଟା ସବୁ କିଛି ! ଆପଣ କିପରି ଜାଣିବେ ଉତ୍ତମାଶାକୁ ନ ପାଇଲେ ମୋର ମୃତ୍ୟୁ ହୋଇଯିବ ! ଆପଣ କିପରି ଜାଣିବେ ଉତ୍ତମାଶା ଚାହେଁ ଯେ ମୁଁ ଦୀର୍ଘଦିନ ବଞ୍ଚିରହେ । ଉତ୍ତମାଶା, ତୋ ବାପାଙ୍କର

ସିଡ଼ିରୁ ତଳକୁ ଓହ୍ଲାଉଥିଲା ବେଳେ ଅନେକ କଥା ବୁଦ୍‌ବୁଦ ଭଳି ମୋ ଭିତରୁ ଉଠି ଆସୁଥିଲା । ମୁଁ କିଛି କହିଲି ନାହିଁ ।

ତା' ପରେ ମୁଁ ଆଉ ଗାଁକୁ ଯାଇନି । ଘରକୁ ଯାଇ ସେମାନଙ୍କୁ କିପରି ମୁହଁ ଦେଖାଇଥାନ୍ତି ? ମୁଁ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର । ମୋ ମା' ଗାଧୋଇ ଆସି ତୋରାଣି ପିଏ । ମୋ ଭଉଣୀ ଅନ୍ୟଘରେ ଅଇଁଠା ବାସନ ମାଜେ । ମୋ ସାନଭାଇ ମୁତୁରା କନ୍ଥାରେ ଶୋଇ ଭୋକରେ ଚିତ୍କାର କରେ । ସବା ସାନଭଉଣୀ ଅନ୍ୟର କଲମ ଚୋରି କରି ମାଡ଼ଖାଏ । ମୁଁ ତେଣୁ ଗାଁ, ତୋର ସହରକୁ ଛାଡ଼ି ଟ୍ରେନ୍‌ରେ ଚଢ଼ିଗଲି । ଲକ୍ଷ୍ୟ- ଖୁବ୍ ଦୂରକୁ ଯାଇଁ ନିଜକୁ ଖତମ କରିଦେବି ।

ଟ୍ରେନ୍‌ରେ ମୋ ସାମ୍ନା ସିଟ୍‌ରେ ଜଣେ ଭଦ୍ରଲୋକ ବସିଥିଲେ । ତାଙ୍କ ପୋଷାକ, ମୁହଁର ଭଙ୍ଗୀରୁ ଆଭିଜାତ୍ୟ ଛିଟକି ବାହାରୁଥିଲା । ମୁଁ ତାଙ୍କୁ ପଚାରିଲି– କେଉଁଠାକୁ ଯିବେ ? ସେ ଉତ୍ତର ଦେଲେ ନାହିଁ । ବରଂ ନିଜ ମନିବ୍ୟାଗ ଥୋଇ ଜିନିଷପତ୍ର ବିଷୟରେ ସଚେତନ ହୋଇଗଲେ । ମୁଁ ବୁଝିପାରିଲି–ମୋ ବଢ଼ିଲା ଦାଢ଼ି ଆଉ ମଇଳା ପୋଷାକ ଦେଖି ମୋତେ ପକେଟମାର ବୋଲି ଠଉରାଇଛନ୍ତି । ମୁଁ କେବଳ ନୀରବ ହୋଇ ବସିଲି । କିଛି ସମୟ ପରେ ଭଦ୍ରଲୋକଙ୍କ ସିଟ୍ ତଳୁ ଗୋଟିଏ ମଣିଷ ମୁଣ୍ଡ ଦେଖାଗଲା । ମୋ ଆଡ଼େ ହାତପାତି ପଇସା ମାଗିଲା । ମୋତେ ମନେ ହେଲା ତା ମୁହଁଟି ମୋର ଖୁବ୍ ନିଜର । ମୋ ପାଖରେ ଥିବା ତିରିଶ ପଇସାରୁ ତାକୁ ପାଞ୍ଚ ପଇସିଟିଏ ଦେଇଦେଲି । ମଣିଷଟି ମୋ ସାମ୍ନାର ଭଦ୍ରଲୋକଙ୍କ ଆଡ଼େ ଅଭ୍ୟାସବଶତଃ ହାତ ବଢ଼ାଇଦେଲା । ଭଦ୍ରଲୋକଙ୍କ ମୁହଁ ଝର୍କାଆଡ଼େ । ସେ ପାଦରେ ହାତ ଦେଲା ମାତ୍ରେ ଭଦ୍ରଲୋକ ପାଦଟାକୁ ଏମିତି ଭାବେ ଛିଞ୍ଚାଡ଼ିଦେଲେ ଯେ, ତା ମୁଣ୍ଡ ବେଞ୍ଚ କଡ଼ରେ ପିଟି ହୋଇଗଲା । ତଥାପି ମଣିଷଟାର ମୁହଁରେ ହସ । ଆରମ୍ଭ କଲା ଉଦାର କଣ୍ଠରେ କବିସୂର୍ଯ୍ୟ ସଙ୍ଗୀତ । ମୁଁ ତା ମୁହଁକୁ ଚାହିଁ ଦେଖିଲି, ତା ହସରେ ଯେପରି ଅନେକ ବଞ୍ଚିବାର ଉପାଦାନ ଖୁନ୍ଦି ହୋଇ ରହିଛି ।

ତାପରେ କିଛି ନଭାବି ଗୋଟିଏ ଅଜଣା ଷ୍ଟେସନରେ ଓହ୍ଲାଇ ପଡ଼ିଲି । ଅନେକ ପୋଲିସ, ଟି.ଟି.ସି. ହାଜତର ମୁହୂର୍ତ୍ତ ପାରି ହୋଇ ଏ ସହର ଭିତରକୁ ପଶିଆସିଲି । ପକେଟର ଶେଷ ଖୁଚୁରା ପଇସା ଚା' କପେ ପାଇଁ ଖର୍ଚ୍ଚ ହୋଇଯାଇଥିଲା । ଅନୁଭବ କଲି, ପୁଣି ଆତ୍ମହତ୍ୟାର ଇଚ୍ଛାଟା ପବଳ ହୋଇ ଉଠୁଛି ।

ଉତ୍ତାମାଶା, ତାପରେ ମୋତେ ଇଚ୍ଛା ହେଉଥିଲା, ଯେକୌଣସି ଲୋକର ପକେଟରେ ହାତ ପୂରାଇ ଦିଅନ୍ତି । ଘଣ୍ଟାରେ ଷାଠିଏ କିଲୋମିଟର ବେଗରେ ଛୁଟିଯାଉଥିବା କାରକୁ ଅଟକାଇ ତା ଭିତରର ଆଭିଜାତ୍ୟ ସୁନ୍ଦରୀକୁ ଧର୍ଷଣ କରନ୍ତି । ତୋ ବାପା ଭଳି ଯେକୌଣସି ଚଷମାଲଗା ବୃଦ୍ଧର ତଣ୍ଟି ବ୍ଲେଡ୍‌ରେ କାଟି ପକାନ୍ତି । କାହାରି ମୃତ୍ୟୁ ପୂର୍ବରୁ ଏ ପ୍ରକାର ଚିନ୍ତା ଆସେ କି ନା ଜାଣେନା, ମୋର କିନ୍ତୁ ଆସିଥିଲା ।

ମୁଁ ଚାହିଁ ଦେଖିଲି ଗୋଟିଏ ଲମ୍ବା ଶୋଭାଯାତ୍ରା ମୋର ବିପରୀତ ଦିଗକୁ ଆଗେଇ ଚାଲିଛି । ପ୍ରାଣ ଖୋଲି ସେମାନେ ଯେଉଁ ଚିତ୍କାର ଛାଡ଼ୁଛନ୍ତି, ଯେଉଁ ଶବ୍ଦ ଉଚ୍ଚାରଣ କରୁଛନ୍ତି, ସେ ଶବ୍ଦ ଏକାନ୍ତ ମୋର ଭିତରର ଶବ୍ଦ । ହଠାତ୍ ସେ ଶୋଭାଯାତ୍ରା ପ୍ରତି ମୋର ଭୀଷଣ ମମତା ବଢ଼ିଗଲା । ମୁଁ ସେ ଶୋଭାଯାତ୍ରାର ପ୍ରତ୍ୟେକ ମଣିଷକୁ ଚାହିଁ ଦେଖିଲି ଯେପରି ସମସ୍ତଙ୍କ ଚେହେରା ମୋଭଳି । ମୋରି ଭଳି ବଢ଼ିଲା ଦାଢ଼ି ଓ ମଇଳା ସାର୍ଟ । ମୋତେ ମନେହେଲା ପଇସା ଅଭାବରେ ଏମାନଙ୍କ ମା'ମାନେ ବି ଅନ୍ୟଘରେ ଭାତ ରାନ୍ଧନ୍ତି, ଗାଧୋଇ ଆସି ବିଛଣା ଚାଦର ପିନ୍ଧି ତୋରାଣି ପିଅନ୍ତି । ଏମାନଙ୍କ ବିଧବା ଭଉଣୀମାନେ ଅନ୍ୟଘରେ ଅଇଁଠା ବାସନ ମାଜୁ ମାଜୁ ହାତ ପାପୁଲିର ପିଠିରେ ମୁହଁଝାଳ ପୋଛନ୍ତି । ଏମାନଙ୍କ ସାନଭାଇମାନେ ମୂତୁରା କନ୍ଥାରେ ଶୋଇ କାନ୍ଦନ୍ତି । ଏମାନଙ୍କର ପ୍ରେମିକାର ବାପମାନେ କାଙ୍ଗାଳ ଭିକାରି କହି ଏମାନଙ୍କୁ ଉପହାସ କରନ୍ତି । ଏମାନଙ୍କୁ ଲୋକେ ପକେଟମାର ବୋଲି ସନ୍ଦେହ କରନ୍ତି ।

ଉଉମାଶା, ଯେତେବେଳେ ମୁଁ ବୁଝିପାରିଲି ଏ ଶୋଭାଯାତ୍ରାର ପ୍ରତ୍ୟେକ ମଣିଷ ମୋ ଆତ୍ମାର ପ୍ରତିବେଶୀ, ସେତେବେଳେ ମୁଁ ମଧ୍ୟ ମିଶିଗଲି । ମୁଁ ମଧ୍ୟ ମୁକ୍ତ କଣ୍ଠରେ ସେମାନଙ୍କ ପରି ଉଦାର ସ୍ୱର ଉଚ୍ଚାରଣ କରି ହଜାର ହଜାର ମଣିଷର ସ୍ରୋତରେ ମୋର ଦାରିଦ୍ର୍ୟ, ମୋର ସମସ୍ୟା, ମୋର ପ୍ରେମ, ମୋର ସାହିତ୍ୟ ସଚେତନତାକୁ ହଜେଇ ଦେଇ ବଞ୍ଚିବାର ଦାବି ଉଚ୍ଚାରଣ କରି ଆଗେଇ ଚାଲିଲି ।

ବର୍ତ୍ତମାନ ମୋର କାମ ଅନେକ । ପରେ କେବେ ସୁସମୟ ଆସିଲେ ତୋତେ କହିବି । ତୁ କେବଳ ସେଇ ସମୟକୁ ଅପେକ୍ଷା କର । ମୁଁ ଏବେ ବି ତୋ ପାଇଁ ବଞ୍ଚି ରହିଛି ।

ସ୍ନେହ ନେବୁ ।

॥ ମୁଁ ॥

('ଆସନ୍ତାକାଲି', ଜୁନ୍, ୧୯୭୩)



# ଅପହଞ୍ଚ

ଯଦିବା ମୋ ଚାକିରିର ଆଜି ପ୍ରଥମ ଦିନ ତଥାପି ସବୁଦିନ ପରି ଆଜି ବି ମୁଁ ରାସ୍ତା ଉପରେ ତାକୁ ଲକ୍ଷ୍ୟ କରି ଆଗେଇ ଚାଲିଥିଲି । ସବୁଦିନେ ମୁଁ କିଛି ସମୟ ନିଏ ତାକୁ ଖୋଜିବାରେ । ପ୍ରଥମେ ତାକୁ ସ୍ୱପ୍ନ ଦେଖେ । ତାପରେ ତା' ପାଇଁ ଦୁଶ୍ଚିନ୍ତା । ତାପରେ ଗଣ୍ଡେ ଖାଇ ବାହାରିପଡ଼େ ତାକୁଇ ଖୋଜିବା ପାଇଁ । ଏପର୍ଯ୍ୟନ୍ତ ବେକାର ଥିଲି ମୁଁ । ଏ ଦେଶରେ ଏତେ ବଡ଼ ବଡ଼ ଅଫିସ, କଳକାରଖାନା ଥାଉ ଥାଉ ଚାକିରି ଖଣ୍ଡିକ ବି ଯୋଗାଡ଼ କରିପାରିନଥିଲି । ତେଣୁ ମୋର ସମୟ କଟିଯାଉଥିଲା ଲୋକଟାକୁ ଅନୁସରଣ କରୁ କରୁ ।

ମୁଁ ଆଗେଇ ଚାଲିଥିଲି । ପାଖ ଫୁଟପାଥ୍‌ରୁ ଗୋଟିଏ ଭିକାରିର ହାତ ଲମ୍ବି ଆସିଲା । ଚେକ୍ ଗେଟ୍ ଭଳି ମୋ ସାମ୍ନାର ରାସ୍ତା ବନ୍ଦ କରିଦେଲା । ମୁଁ ଛିଡ଼ାହୋଇ ପଡ଼ିଲି । ସେ କାନ୍ଦୁରା ସ୍ୱରରେ ମୋର ଦୀର୍ଘ ଜୀବନ କାମନା କଲା । ମୋର ସୁଖ ମନାସିଲା । ଶେଷରେ ମୋର ଅମରତ୍ୱ ଘୋଷଣା କଲା । ଆଉ ଉପାୟ ନାହିଁ । ପକେଟରୁ ପାଞ୍ଚ ପଇସିଟିଏ ବାହାର କରି ଲମ୍ବି ଆସିଥିବା ହାତରେ ପକାଇଦେଲି । ପଇସାଟା ହାତରୁ ଗଡ଼ି ତଳକୁ ଖସିପଡ଼ିଲା । ସେ କିଛି ସମୟ ଅଣ୍ଡାଳିଲା ଏବଂ ସେଇଟା ଉଠାଇ ନେଲା । ମୁଁ ବୁଝିଲି ଭିକାରିଟା ଅନ୍ଧ । ତା' ମୁଣ୍ଡରେ ଗୋଟିଏ ବଡ଼ କ୍ଷତ ଚିହ୍ନ । ଦେହରେ କଳା କୋଟ । ମୁଁ ଆଗେଇଲି । ମୋ ଚାକିରିର ଆଜି ପ୍ରଥମ ଦିନ । ଶୀଘ୍ର ଅଫିସରେ ପହଞ୍ଚିବା ଦରକାର ।

କିଛି ଦୂର ଗଲା ପରେ ଦେଖିଲି କେତେ ପାଦ ଆଗରେ ମାତ୍ର ସେ –ଯାହାକୁ ମୁଁ ଘୋଡୁଥିଲି । ଆଜି ତାକୁ କୌଣସି ଉପାୟରେ ଧରିବାକୁ ହେବ । ସେ ବାରମ୍ବାର ମୋ ହାତପାହାନ୍ତାରୁ ଦୂରକୁ ଖସିଯାଉଛି । ଛୁଇଁ ବି ଛୁଇଁପାରୁନି । ଏଇ ସେଦିନ ତା' ପିଠିରେ ହାତ ପକଉ ପକଉ ସେ ଖସିଗଲା ଓ ମୋ ଆଖି ସାମ୍ନାରେ ଲୁଚିଗଲା ଗୋଟାଏ ଚନ୍ଦା ମାରୁଆଡ଼ିର କ୍ୟାସ୍-ବାକ୍ସ ଆରପଟେ । ଆଉ ଦିନେ ଇଣ୍ଟରଭ୍ୟୁ କଥା ବୁଝିବାକୁ ବ୍ୟାଙ୍କ୍ ଯାଇଥିଲି । ଧାଡ଼ି ଧାଡ଼ି ଲୋକ । କ୍ଷିପ୍ର ହାତରେ ନୋଟ୍ ଗଣି ଚାଲିଛି କ୍ୟାସିଅର । ଏକ ଝଲକରେ ମୁଁ ତାକୁ ଦେଖିଲି । ସେ କ୍ୟାସିଅର ଚଉକି ତଳେ ଲୁଚିଗଲା । ଅନେକ

ସମୟ ଅପେକ୍ଷା କଲି । କିନ୍ତୁ ବୃଥା । ଏଇପରି ସବୁବେଳେ ମୋ ହାତପାହାନ୍ତାରୁ ଦୂରକୁ ଖସିଯାଇ ଲୁଚିଯାଇଛି ସେ । କେତେବେଳେ ଜାଣିଲି କେଉଁ ଏକ ସ୍ମଗଲରର କଳା ଗାଡ଼ି ଭିତରେ ଲୁଚି ଖସିଗଲାଣି ତ କେତେବେଳେ କେଉଁ ମନ୍ତ୍ରୀଙ୍କ ପଛରେ ଭିଡ଼ରେ ଅଦୃଶ୍ୟ ହୋଇଗଲାଣି ।

ଆଜି ଭିଡ଼ରେ ମୁଁ ତାକୁ ପଛଆଡୁ ଦେଖିଲି । ସେ ବୋଧହୁଏ ବୁଝିଗଲା ମୁଁ ତାକୁ ଧରିବା ପାଇଁ ଗୋଡ଼ାଇଛି । ସେ ଦ୍ରୁତ ଗତିରେ ଚାଲିଲା ମୋଟା ମୋଟା ମଣିଷ ସହ ଧକ୍କା ଖାଇ ସଂତର୍ପଣରେ ପଇସାବାଲା ପକେଟମାନଙ୍କ ଛୁଇଁ । ସେ ସାମ୍ନାରେ ମୋଡ଼ ବୁଲିଲା । ମୁଁ ଗୋଟିଏ ସିଗାରେଟ୍ ଦୋକାନ ସାମନାରେ ଠିଆହୋଇ ପକେଟ୍‌ରେ ହାତ ପୂରାଇଲି । ପକେଟରେ କିଛି ଖୁଚୁରା ପଇସା । ଚାରମିନାର ଗୋଟେ ଟାଣି ଦେଲାପରେ ମୁଣ୍ଡଟା ଝିମ୍ ଝିମ୍ କରି ଉଠିଲା । ମୋ ଚାରିଆଡୁ କେବଳ ଟଙ୍କାପଇସାର ଗନ୍ଧ ଉଠି ଆସିଲା ।

ତଥାପି ମୁଁ ଆଗେଇଲି । ମୋ ଚାରିପଟେ ଚଳମାନ ପୃଥିବୀ । ରାସ୍ତାକଡ଼ରେ ଆଖି ବନ୍ଦ କରି ଛିଡ଼ା ହୋଇଥିବା ଷଣ୍ଢ, ଦେହ ଝାଡ଼ି ରାସ୍ତା ମଝିକୁ ଦୌଡ଼ିଯାଉଥିବା କୁକୁର, ଧୂଳି ଉପରେ ପଡ଼ିଥିବା ପ୍ଲେନ୍ ଉଇଲ୍‌ସର ଖୋଳ, ସାଇନ୍‌ବୋର୍ଡ଼ରେ ତୁହିନାର ଜଙ୍ଘ, ବୋରଲିନ୍‌ର ପିଠି ପାରି ହୋଇଗଲି । ମୁଁ ଏମିତି ତା'ରି ପାଇଁ ପାରି ହୋଇ ଯାଉଛି । ଗୋଟିକ ପରେ ଗୋଟିଏ ଚିହ୍ନ, ସକାଳ ପରେ ସକାଳ, ସ୍ମୃତି ପରେ ସ୍ମୃତି । ଅନନ୍ତ କାଳ ଅନନ୍ତ ପଥରେ ଆଗେଇ ଚାଲିଛି ଯେମିତି ତା'ରି ପାଇଁ । ସେ ବି ଘୁଞ୍ଚି ଯାଉଚି ମଣିଷରୁ ମଣିଷ ପାଖକୁ, ଅନୁଷ୍ଠାନରୁ ଅନୁଷ୍ଠାନକୁ । ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ସେ ଡେଇଁଯାଉଛି ଚଞ୍ଚଳ ଗତିରେ, କେତେବେଳେ ସୁନାଗହଣା ଦୋକାନର ଦର୍ପଣ ସାମନାରେ ସେ, କେତେବେଳେ ବ୍ୟବସାୟୀର ମୋଟା ତକିଆକୁ ଆଉଜି ସେ, ନିର୍ମିୟମାନ ଘର ଉପରେ କଳା ଗଗଲସ ପିନ୍ଧା କଂଟ୍ରାକ୍‌ଟର ପାଖରେ ସେ, ରାତି ଅଧରେ ସ୍ମଗ୍‌ଲର କଳା ଗାଡ଼ି ଭିତରେ ସେ, ନେତାଙ୍କ ଭିତର ଘର ନାଲି ପରଦା ଭିତରେ ସେ । ପୁଣି କେତେବେଳେ ଜୁଆ ଆଡ୍‌ଡ଼ାରେ, ମଦ ଦୋକାନରେ, ସାଧୁ ବାବାଙ୍କ ମନ୍ଦିରରେ । କ୍ରମେ ପୃଥିବୀର ସବୁ ଗଳି ଉପଗଳି, ସହର, ଗାଁ ଗଣ୍ଡା, ଦୋକାନ ବଜାର, ସକାଳ, ସନ୍ଧ୍ୟା, ମଧ୍ୟାହ୍ନ, ମଧ୍ୟରାତ୍ରି ସବୁଠାରେ ସବୁବେଳେ ସେ ଦ୍ରୁତ ଗତିରେ ଘୂରି ବୁଲୁଛି । ମୁଁ ବି ତାକୁ ଅନୁସରଣ କରୁଛି । କିନ୍ତୁ ତା' ପର୍ଯ୍ୟନ୍ତ ପହଞ୍ଚି ପାରୁନାହିଁ । ତା' କାନ୍ଧରେ ହାତ ରଖିପାରୁନାହିଁ । ତାକୁ ଜାବୁଡ଼ି ଧରିପାରୁନାହିଁ । କେବଳ ପଛରୁ ତା'ର କନାକୋଟ ଦେଖିଛି ।

ଆଜି ସକାଳୁ ମୁଁ ଶୀଘ୍ର ଶୀଘ୍ର ନିତ୍ୟକର୍ମ ସାରି ବାହାରିଲି । ମୋତେ ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନରେ କାମ ମିଳିଯାଇଛି । ଆଜି ସେଠାରେ ପ୍ରଥମେ କାର୍ଯ୍ୟାରମ୍ଭ

କରିବାକୁ ହେବ । ବହୁତ ଦରମା । ପୂର୍ବରୁ କେବେ ଏତେ ବଡ଼ ଚାକିରି ପାଇବି ବୋଲି ଭାବିନଥିଲି । ଏତେ ପଇସା ପାଇଲେ ଯେ କ'ଣ କରିବି ସେଥିପାଇଁ ପ୍ରକୃତରେ ମୁଁ ଚିନ୍ତାଶୀଳ ହୋଇପଡ଼ିଥିଲି ।

ମୋର ଅଫିସଆଡ଼େ ଯିବା ରାସ୍ତାରେ ମୁଁ ଆଜି ବି ତାକୁ ଭେଟିଲି । ଭେଟିଲି ନାହିଁ, ମୋ ସାମନାରେ ଚାଲି ଚାଲି ଯିବାର ମୁଁ ଲକ୍ଷ୍ୟ କଲି । ତା' ଦେହରେ ସେଇ ଗୋଟିଏ କଳାକୋଟ । ସେ ସେମିତି ଭିଡ଼ ଭିତରେ ଆଗେଇ ଚାଲିଥିଲା । ପଛେ ପଛେ ମୁଁ । ମୋର ଅଫିସ ଏଇ ସାମ୍ନାରେ । ସେ ବୋଧହୁଏ ଛିଡ଼ାହୋଇ ପଡ଼ିଲା । ଏଇ ସୁଯୋଗରେ ମୁଁ ତାକୁ ଧରିବି । ମୁଁ ଏକ ପ୍ରକାର ଦୌଡ଼ିବା ଆରମ୍ଭ କଲି । କାରଣ ଅଫିସଟା ପାରିହେଲେ ମୁଁ ଆଉ ତାକୁ ଅନୁସରଣ କରିପାରିବି ନାହିଁ । ଆଜି ପ୍ରଥମଥର ପାଇଁ ଅଫିସରେ କାର୍ଯ୍ୟ ଆରମ୍ଭ କରିବି । ସମୟ ହୋଇଗଲାଣି ।

ମୁଁ ଆଗେଇଲି । ଆଉ କେତେ ପାଦ ମାତ୍ର । ଏଇ ମୋ ସାମନାରେ ତା'ର କଳାକୋଟ, ତା' ମୁଣ୍ଡ, ତା' ବେକ ସବୁ ମୋ ହାତ ପାପୁଲି ପାଖରେ । ଏଇ ସୁଯୋଗରେ, ଏଇ ମୁହୂର୍ତ୍ତରେ–ମୁଁ ତା' କାନ୍ଧରେ ହାତ ରଖିଲି । ସେ ପଛକୁ ଫେରି ଚାହିଁଲା । ମୁଁ ଚମକି ପଡ଼ିଲି ।

ସେଇ ଭିକାରିଟା । ସେଇ ଅନ୍ଧ ଭିକାରିଟା, ଯିଏ କେତେ ସମୟ ଆଗରୁ ମୋ ଅମରତ୍ୱ କାମନା କରିଥିଲା । ତା' ମୁଣ୍ଡରେ ସେମିତି ବୀଭତ୍ସ କ୍ଷତଚିହ୍ନ ।

ସେ ହସିଲା । ମୁଁ ବି ବୋକା ଭଳି ହସିଲି । ସେ କିନ୍ତୁ ଅନ୍ଧ ନୁହେଁ, ଚକ୍ଷୁଷ୍ମାନ ।

ସେ ଅନ୍ୟ ଜଣେ ଲୋକ ହାତରୁ ଶହେଟଙ୍କିଆ ନୋଟ୍ ନେଇ ଖୁଚୁରା ପଇସା ଗଣି ଦେଲା ଏବଂ ମୋତେ ଚାହିଁ ଆଉଥରେ ହସିଲା ।

ମୁଁ ମୁହଁ ଫେରାଇ ନେଲି ଓ ଅଫିସ ଭିତରକୁ ଚାଲିଲି । ଏଥର ସେ ମୋ ପଛେ ପଛେ ଭିତରକୁ ପଶିଲା ।

('ସାରଥି', ଜନ୍ମଦିନ ସଂଖ୍ୟା, ଜୁଲାଇ-ଅଗଷ୍ଟ-ସେପେଟ୍ୟର, ୧୯୭୫)



# ଅନ୍ଧକାରର ବୃତ୍ତ

ଯଦି କେହି ମୋତେ ବିନା ଅପରାଧରେ ରାସ୍ତାରେ କଲର୍ ଧରି ପିଟନ୍ତା, ଅଥବା କୌଣସି ସଂପାଦକ ମୋଠାରୁ ଲେଖା ନେଇ ନିଜ ନାମରେ ଛପାଇ ଦିଅନ୍ତା, ଅଥବା ମୋ ପଡ଼ୋଶିନୀରେ ଝରକାକୁ ଜୀବନର କେତେ ଅଳସ ଦ୍ୱିପ୍ରହରରେ ଅନେଇ ବସିଥିବା ଅପରାଧରେ ଯଦି ତାର ଅବିବାହିତ ଜୀବନର ପ୍ରଥମ ସନ୍ତାନର ପିତୃତ୍ୱ ମୋ ଉପରେ ଲଦି ଦିଅନ୍ତା, ଅଥବା ମୋର ବାପା, ମା, ଭାଇ ଭଉଣୀ, ପୁଅ ଝିଅ, ସ୍ତ୍ରୀ ସମେତ ସବୁ ବନ୍ଧୁବାନ୍ଧବଙ୍କ ଭିତରୁ କେହି ଜଣେ ହଠାତ୍ କୋକେଇରେ ଚଢ଼ିଯାଆନ୍ତା, ତାହେଲେ ବୋଧହୁଏ ମୁଁ କାନ୍ଦନ୍ତି ନାହିଁ; କାରଣ ମୋ ଭିତର ଲୁହ ଏତେ ଶୀଘ୍ର ପଦାକୁ ଆସିପାରେ ନାହିଁ । ମୁଁ ଏତେ ଥଣ୍ଡା ଯେ ତାକୁ ଖୁବ୍ ଭିତର ଗ୍ରନ୍ଥିରେ ବରଫ ଭଳି ଜମାଟ ବାନ୍ଧିଯାଇଥାଏ । ତେଣୁ ଗୋଟିଏ ସନ୍ଦେହ ମୋ ଭିତରେ ସବୁବେଳେ ଜମି ରହିଥାଏ– ଭାବେ ହୁଏତ କାହାରିକୁ ଭଲ ପାଇବାର ଶକ୍ତି ମୋ ଭିତରେ ନାହିଁ ।

କିନ୍ତୁ ମୁଁ କାନ୍ଦେ । ସମୟ ସମୟରେ ସବୁ ଆତ୍ମୀୟ ଅନାତ୍ମୀୟଙ୍କ ଦେହ ସଂପୂର୍ଣ୍ଣ ସୁସ୍ଥ ଥିଲାବେଳେ ଏବଂ କେତେ ମୁହୂର୍ତ୍ତ ପୂର୍ବରୁ ମୋ ସ୍ତ୍ରୀର ଦେହର ବାସ୍ନା ଆଉଥରେ ମୋର ମୁଖସ୍ଥ ହୋଇଥିଲେ ମଧ୍ୟ ମୁଁ କାନ୍ଦେ, ତେଣୁ ଆଉ ଗୋଟିଏ ସନ୍ଦେହ ମୋ ଭିତରେ ଜମି ରହୁଥାଏ । ଭାବେ ହୁଏତ ମୋର ଭାବପ୍ରବଣତା ଅତିଶୟ ତୀକ୍ଷ୍ଣ ।

ଦିନରେ ଖୁବ୍ କଠିନ ପରିଶ୍ରମ ନ କଲେ ମୁଁ ପ୍ରାୟ ସ୍ୱପ୍ନ ଦେଖେ । କେତେବେଳେ ଦେଖେ ମୁଁ ଗୋଟିଏ ବିରାଟ ପୋଖରୀରେ ଜାଲ ମେଲାଇ ଦେଇଛି । ଜାଲ ଭିତରେ ରୁପା ପାତିଆ ପରି ମାଛ ସବୁ ଡିଆଁ ମାରୁଛନ୍ତି । ଅଥଚ ଜାଲରେ ଗୋଟିଏ ବି ଉଠୁ ନାହାନ୍ତି । କେତେବେଳେ ପୁଣି ଦେଖେ, ମୁଁ ମୁକୁଟ ପିନ୍ଧି ଅଦ୍ଭୁତ ସବୁ ପୋଷାକରେ ପ୍ରବାଳର ରାସ୍ତା ଉପରେ ଚାଲିଛି । ଅଥଚ ମୋ ପାଖରେ କେହି ନାହାନ୍ତି । କେବଳ ଚାରିଆଡ଼େ ହୀରା ନୀଳା ମୋତି ମାଣିକ୍ୟର ଫସଲ । ପୁଣି କେତେବେଳେ ସେମାନେ ବି ଦଉଡ଼ି ଯାଉଛନ୍ତି । ମୁଁ କେବଳ ଚିତ୍କାର କରି କହୁଛି– ମତେ ବି ଖତମ୍ କର । ସ୍ୱପ୍ନ ଦେଖିସାରିଲା ପରେ ମନେ ହେଉଛି ଯେପରି ସ୍ୱପ୍ନଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ଭୂମି ଉପରେ ଓ ପରସ୍ପର ସମାନ୍ତର ସରଳରେଖା ଉପରେ ଅବସ୍ଥିତ । ସବୁ ସ୍ୱପ୍ନକୁ ଆଉଥରେ ଲେଖାଏଁ

ଭାବି ସାରିଲା ପରେ କାନ ପାଖରେ ଗୁଣୁଗୁଣୁ କରି ଉଠିଛି ଏକ ପୁରୁଣା ପରିଚିତ ସ୍ୱର– 'କହ୍ନେଇ, ତୁମର ଜୀବନ ଖୁବ୍ ନିଃସଙ୍ଗ ହେବ ।'

ଯେତେବେଳେ ରାତିରେ ବିଛଣାରେ ଶୋଇ ଆଲୁଅଟା ଲିଭାଇ ଦିଏ ସେତେବେଳେ ମୋ ଆଖି ସାମ୍ନାରେ ଗୁଡ଼ାଏ ବୃତ୍ତ ଜୁଳୁଜୁଳୁ ହୋଇ ଭାସି ବୁଲନ୍ତି । କ୍ରମେ ଖୁବ୍ ପାଖକୁ ଲାଗି ଆସନ୍ତି ସେମାନେ, ମୋର ସମଗ୍ର ଚେତନାରେ ମିଶି ଏକାକାର ହୋଇଯାଆନ୍ତି । ତା'ପରେ ମୋତେ ମନେହୁଏ ଯେପରି ଖୁବ୍ ଆଦରରେ କିଏ କହୁଛି– 'କହ୍ନେଇ, କହ୍ନେଇଟି ମୋର–ମୁଁ ଯେ ଅଛି' ମୋତେ ଖୁବ୍ ବଡ଼ ପାଟିରେ ପଚାରିବାକୁ ଇଚ୍ଛା ହୁଏ– 'କିଏ ? କିଏ ତୁମେ ?' ଭୌତିକ ପ୍ରତିଧ୍ୱନି ଘରର ବନ୍ଦ ଝର୍କା, କବାଟ, ଟେବୁଲ, ଚେୟାର, କାନ୍ଥଘଣ୍ଟାର ଡାଏଲ୍‌ରୁ ଧକ୍‌କା ଖାଇ ଫେରିଆସି ଯେପରି ମୋତେ କହେ– 'ମୁଁ, ମତେ ଚିହ୍ନିପାରୁନୁ ? ମୁଁ ଯେ ସବୁବେଳେ ତୋ ପାଖେ ପାଖେ ଅଛି । ମୁଁ ତୋର...'

ତନ୍ଦ୍ରାର କୁହୁଡ଼ି ଭିତରେ ମୋର ସତ୍ତା ଏକାଥରେ ମିଳାଇଯିବା ପୂର୍ବରୁ ମୁଁ ଅନୁଭବ କରେ ମୋର ମହାଧମନୀ ମଧ୍ୟରେ ଗୋଟିଏ ଦଣ୍ଡକିରି ମାଛ ଧୀରେ ଖେଳି ବୁଲୁଛି । କ୍ରମେ ମୁଣ୍ଡଠାରୁ ପାଦ ପର୍ଯ୍ୟନ୍ତ ସମଗ୍ର ସ୍ନାୟୁକୋଷରେ ମୁଁ ଅନୁଭବ କରେ ତା'ର ସଚକିତ ଉପସ୍ଥିତି । ଦେହର ଲୋମକୂପ ସଜାଗ ହୋଇ ଉଠେ । ଶ୍ୱାସକ୍ରିୟା ଦ୍ରୁତତର ହୁଏ । ସେତେବେଳେ ମୋର ଦୁଇ ଆଖି ଦେଇ ରକ୍ତ ପରି ତତଲା ଲୁହ ଗଡ଼ିଯାଏ । ମୁଁ ବିଛଣାରେ ଉଠିବସେ । ଆଲୁଅ ଜଳାଏ । ସାମ୍ନାରେ ଦର୍ପଣ ରଖେ । ଦେଖେ ଓ ଅନୁଭବ କରେ ଲୁହଧାର ସବୁ ଖରାଦିନିଆ ଖଣ୍ଡିଆ ଖଣ୍ଡିଆ ନଡ଼ା ଥିବା ବିଲ ପରି ମୋର କର୍କଶ ଗାଲ ଉପର ଦେଇ ସିଆର କାଟି ଚାଲିଛନ୍ତି, ଏବଂ ମୋତେ ତା'ପରେ ମନେହୁଏ ମହାଧମନୀରେ ଚଲାଫେରା କରୁଥିବା ସେ ଦଣ୍ଡକିରି ମାଛଟା ଯେପରି ଶୋଇଯାଇଛି । ମୁଁ ମଧ୍ୟ ପୁଣି ଅନ୍ଧକାରରେ ମୋର ଚେତନାର ଆଲୋକକୁ ଧୀରେ ଧୀରେ ନିସ୍ତେଜ କରିଆଣୁଛି ।

ଅନେକ ଦିନ ତଳେ ଥରେ ଗୋଟିଏ ଜ୍ୟୋତିଷ ଆସିଥିଲେ ଆମ ଘରକୁ । ମୋ ହାତ ଦେଖି କହିଥିଲେ ସେ ପିଲାକୁ ବିଶ୍ୱାସ ନାହିଁ । ହୁଏତ ଘର ଛାଡ଼ି ସନ୍ନ୍ୟାସୀ ହୋଇଯାଇପାରେ । ହଠାତ୍ ମା'ର ଆଖି ଦୁଇଟି ଛଳଛଳ ହେଇ ଉଠିଥିଲା । ଆଉ ବାପା ହସି ହସି କହିଥିଲେ–ଏ କଥା ଜାଣିଥିଲେ ଏହାର ନାମ ଗୌତମ ଦେଇଥାନ୍ତି । କିନ୍ତୁ ସେ ଦିନରୁ ଯଦି କେବେ କୌଣସି ଦିନ ବନ୍ଧୁବାନ୍ଧବ ଘରକୁ ଯାଇ ବିନା କାରଣରେ ରାତିଏ ରହିଯାଏ ତାହେଲେ ମା'ର ଆତଙ୍କ ବଢ଼ିଯାଏ । ଆଉ ବାପା ସଶରୀରେ ଯାଇ ତହିଁଆର ଦିନ ହାଜର ହୋଇଯାନ୍ତି । ଯଦି କୌଣସି ରବିବାର ଗାଁ ମୁଣ୍ଡ ପୋଖରୀ କୂଳରେ ବସି ପାଣି ଭିତରକୁ ନଇଁପଡ଼ି ଥରେ ଥରେ ପାଣି ଛୁଇଁ ଉପରକୁ ଉଠି ପଡୁଥିବା

ବାଉଁଶ ଗଛ ପିଠିରେ ମାଟିଆ ବଗକୁ ଦେଖୁ ଦେଖୁ ଅଟକିଯାଏଁ, ତାହେଲେ ଗାଳି ଆରମ୍ଭ ହୋଇଯାଏ । ଘରେ ବସି ଏକା ଏକା ଗପବହି ପଢୁଥିଲେ ବି ବାପା ଆସି ମୋ ହାତରୁ ବହି ଛଡ଼ାଇ ନେଇ ଖେଳପଡ଼ିଆକୁ ପଠେଇ ଦିଅନ୍ତି । ମୋର ନିଃସଙ୍ଗତା ଯେ ମୋତେ ବୁଦ୍ଧଦେବ ବନେଇଦେବ ସେଥିପାଇଁ ଘରେ ସମସ୍ତଙ୍କର ଅହେତୁକ ଭୟ । କିନ୍ତୁ ବାପାଙ୍କ ଅକାଳ ମୃତ୍ୟୁ ପରେ ଏବଂ ମୁଁ ସହରକୁ ଆସି କଲେଜ ଟୋକା ବନିଯିବା ପରେ ମା'ଙ୍କ ମନରୁ ଏ ଭୟ ଧୀରେ ଧୀରେ କମିଯିବାକୁ ବାଧ୍ୟ ହୋଇଥିଲା ।

କିନ୍ତୁ ଗାଁଠାରୁ ଦୂର ଏଇ ସହରର ପିଚୁ ରାସ୍ତା, ପୋଡ଼ା ପେଟ୍ରୋଲ ଗନ୍ଧ, ପାର୍କ, ସିନେମା, ରେଷ୍ଟୋଁରା, ଷ୍ଟାଡ଼ିୟମ, କମନରୁମ୍, ସୁନ୍ଦରୀ ଝିଅ, ସାଙ୍ଗସାଥୀ ଗହଣରେ ଭଲ କରି ମିଶିଯିବାର ଅନେକ ଦିନ ପରେ ସେଦିନ ହଠାତ୍ ସେ ମୃତ ଭୟର ପୁନର୍ଜନ୍ମ ହେଲା, ଯେଉଁଦିନ ଶୁଭେନ୍ଦୁବାବୁ ମୋର ହାତ ପାପୁଲିର ମାନଚିତ୍ର ଦେଖି କହିଲେ– 'କହ୍ନେଇ, ତୁମର ଜୀବନ ଖୁବ୍ ନିଃସଙ୍ଗ ହେବ ।'

ମୁଁ ଜାଣେ ମୁଁ ପାଗଳ ନୁହେଁ । ତଥାପି ଅଦ୍ଭୁତ ଏକପ୍ରକାର ପାଗଳାମି ମୋ ବେକ ଉପରେ ଥରେ ଥରେ ମାଡ଼ିବସେ । ସେମିତି ଏକ ପାଗଳାମି ମୋ ଉପରେ ସବାର ହୋଇଥିଲା କଲ୍ୟାଣୀ ଘରେ । ଯେଉଁ କଲ୍ୟାଣୀର ଆଖି ଦେଖି କଲେଜର ଅନେକ ଛାତ୍ର ଅଧ୍ୟାପକ ଜୀଇଁ ରହୁଥିଲେ, ସେହି କଲ୍ୟାଣୀ ତାରି ଲେଖା କବିତା ପଢ଼ାଇବା ପାଇଁ ଥରେ ମୋତେ ତାର ଡ୍ରଇଂରୁମକୁ ନିମନ୍ତ୍ରଣ କରିଥିଲା । ଡ୍ରଇଂରୁମରେ ଯେତେବେଳେ କବିତାର ଆସର ଯୌନତା ପାଖରେ ଯାଇ ଲଟକିଛି ଏବଂ ତାରି ହାତତିଆରି ଗରମ ପକୁଡ଼ି ଅଧା ପାଟି ଭିତରେ, ହଠାତ୍ ମୋ ମନେହେଲା ଯେପରି ତାର ଡ୍ରଇଂରୁମର ସବୁଜ ପର୍ଦ୍ଦା ବାହାରେ ମୋର ଅନେକ କାମ । ତେଣୁ ସବୁକୁ ଟେବୁଲ ଉପରେ ଛାଡ଼ି ଶାଳୀନତା ପର୍ଯ୍ୟନ୍ତ ନ ଦେଖାଇ ନାଟକୀୟ ଭଙ୍ଗୀରେ ସାଇକେଲ ପିଠିରେ ଚଢ଼ି ମୁଁ ଧାଇଁଲି ନଦୀ କୂଳକୁ, ଆଉ ସେଇଠି ବସି ଶୁଣିଲି ସେଇ ପୁରାତନ ସ୍ୱର– 'କହ୍ନେଇ, କହ୍ନେଇଟି ମୋର... ।' ତାପରେ ମୋର ଆଖିର ଲୁହଗ୍ରନ୍ଥି ସେଇ ଡାକର ଉତ୍ତାପରେ ମହମ ଭଳି ତରଳିଗଲା ।

ଆଉ ଦିନେ ଧରିତ୍ରୀ ଅପା ସହ ସିନେମା ହଲରେ ବସି ଯେତେବେଳେ ନାଚ ଆଉ ଗୀତର ଟପ୍ କ୍ଲାଇମାକ୍ସ ଭିତରେ ଜମି ଉଠୁଥିଲି, ସେତେବେଳେ ଛାୟାଚ୍ଛନ୍ନ ଅନ୍ଧକାର ଆଉ ଫ୍ୟାନ୍‌ର ମୃଦୁ ଗୁଞ୍ଜନ ମଧ୍ୟରେ ହଠାତ୍ ମନେହେଲା ମୋତେ ଯେପରି କିଏ ଅନୁଚ୍ଚ ସ୍ୱରରେ ଡାକୁଛି । ମତେ ଯିବାକୁ ହେବ । ବାହାରକୁ ନଗଲେ ହୁଏତ ମୋର ନିଃଶ୍ୱାସ ବନ୍ଦ ହୋଇଯିବ । ତେଣୁ ଅପାକୁ ସିନେମା ହଲର ଅପରିଚିତ ଲୋକାରଣ୍ୟ ଭିତରେ ଛାଡ଼ି ଚୁପ୍‌ଚାପ୍ ବାହାରକୁ ଆସିଲି ଓ ସିଧା ଶ୍ମଶାନ ଆଡ଼େ ଛୁଟିଲି, ଏବଂ ସେଇଠି ବସି ତାର ସେଇ ସ୍ନେହ ସମ୍ବୋଧନର ଉତ୍ତର ଦେଲି ମୋ ତତଲା ଲୁହରେ ।

କିନ୍ତୁ ଆହୁରି ପଛକୁ ଚାହିଁଲେ ବି ସେଇ କଥା । ମନେ ପଡ଼େ ଗାଁରେ ଦଶମ ଶ୍ରେଣୀରେ ପଢୁଥିବା ବେଳେ ଆମ ଘର ଦକ୍ଷିଣ ପାଖ ଘରର ସେଇ ଝିଅଟି କୁନି, ଯିଏ ଦିନେ ରବିବାର ଖରାବେଳରେ ଗାଁ ମୁଣ୍ଡର ସେଇ ବାଉଁଶ ଗଛ ନଇଁ ପଡ଼ିଥିବା ପୋଖରୀ କୂଳରେ କହିଥିଲା–କହ୍ନେଇ, ତୋ ପାଟି ଗନ୍ଧଉଛି । କିନ୍ତୁ ମୋ ପାଟି ଦେଖତ ! ତା ପାଟିରେ ଲବଙ୍ଗର ବାସ୍ନା ଦେଖାଉ ଦେଖାଉ ମୋତେ ହିଁ ପ୍ରଥମେ ଲବଙ୍ଗ ଦ୍ୱୀପକୁ ଉଡ଼େଇ ନେଇଥିଲା ତାର ଓଠରେ ବସାଇ । ତା'ପରେ ଅବଶ୍ୟ ଭାଇ ସମ୍ବୋଧନ କରି ଗଦା ଗଦା ଚିଠି ଲେଖିଥିଲା ଏବଂ ମୋତେ ତାର ଖୁବ୍ ପାଖକୁ ଟାଣି ନେଇଥିଲା । ଅବଶ୍ୟ ତାରି ବାଧବାଧକତାରେ ଦିନେ ଖରାବେଳେ ସେଇ ବାଉଁଶ ଗଛ ନଇଁପଡ଼ିଥିବା ପୋଖରୀ କୂଳରେ ଏକାନ୍ତ ପୁରୁଣା କଥାଟା ନୂଆ କରି ପ୍ରଥମେ ଶିଖିଥିଲି । କିନ୍ତୁ ତା'ପରେ ତାକୁ ଦେଖିଲେ ମୋତେ ଜ୍ୱର ମାଡ଼ି ଆସୁଥିଲା ଏବଂ ତାକୁ ଜ୍ୱର ହେଲେ ମୁଁ ସବୁଠାରୁ ବେଶୀ ଖୁସି ହେଉଥିଲି ।

ମୁଁ ନିଃସଙ୍ଗତା ଚାହେଁ କି ନା ଜାଣେନା । କିନ୍ତୁ ଅନେକଙ୍କୁ ଇଚ୍ଛା କରି ଦୂରେଇ ଦିଏ । କେମିତି ଦୂରେଇ ଦେବାକୁ ବାଧ ହୁଏ ଜାଣିପାରେନା । ମୁଁ ଜାଣେ ନାହିଁ ପ୍ରଭାତ ଏବେ କେଉଁଠି । ଇଚ୍ଛା କରି ତାର ଖବର ମୁଁ ରଖି ନାହିଁ, କାରଣ ସେ ମୋ ଆତ୍ମାର ଏକାନ୍ତ ପ୍ରତିବେଶୀ ଥିଲା ବୋଲି ନୁହେଁ କିମ୍ବା ଦୁହେଁ ଏକସଙ୍ଗେ ରାତି ଉଜାଗର ହୋଇ ମାଟ୍ରିକ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲୁ ବୋଲି ନୁହେଁ, କେବଳ ତାର ଚିଠିଗୁଡ଼ାକ ପାଇଁ । ତାର ଚିଠି ପାଇଲା ମାତ୍ରେ ମୁଁ ମନେ କରୁଥିଲି ଯେପରି ମୋ ସାମ୍ନାରେ ବସି ସେ କଥାବାର୍ତ୍ତା କରୁଛି ଏବଂ ତାପରେ ବେଶ୍ କିଛିଦିନ ମୁଁ ତାକୁ ପାଖେ ପାଖେ ଅନୁଭବ କରୁଥିଲି । ତାର ସାମୟିକ ଅଶରୀରୀ ଉପସ୍ଥିତି ମୁଁ ଆଦୌ ସହ୍ୟ କରିପାରୁ ନଥିଲି । ସେଥିପାଇଁ ମୁଁ ତା ପାଖକୁ ଚିଠିଦେବା ଏକାଥରେ ବନ୍ଦ କରି ଦେଇଥିଲି ।

ଆଉ ମୁଁ କେବେ ଚାହେଁନି ମୋ ଆତ୍ମାର ଏ କାଳର ପ୍ରତିବେଶୀ ଗଦାଧର ମୋତେ ଏକୁଟିଆ ଛାଡ଼ି ଦିଲ୍ଲୀ ଯାଉ ଏବଂ ସେଠାରେ ରହି ମୋତେ କେବଳ ସ୍ମୃତିର କାନ୍ଥରେ ଟଙ୍ଗାଇ ଦେଇ ଅନ୍ୟ ମଣିଷ ଗହଣରେ ହଜିଯାଉ । କିନ୍ତୁ ଯେତେବେଳେ ମୁଁ ତାକୁ ଟ୍ରେନରେ ଚଢ଼ାଇ ଦେଇ ହାତ ହଲାଇଥିଲି ସେତେବେଳେ ମୋ ଭିତରଟା କେମିତି ଏକ ଅବ୍ୟକ୍ତ ଆନନ୍ଦରେ ଛଟପଟ ହୋଇଥିଲା ଏବଂ ଠିକ୍ ସେଇ ମୁହୂର୍ତ୍ତରେ ଶୂନ୍ୟ ପ୍ଲାଟଫର୍ମ ଉପରେ ଶୁଭେନ୍ଦୁବାବୁଙ୍କ ସେଇ ପଦଟି ମୋ ଭିତରେ ଗୁଣୁଗୁଣୁ କରି ଉଠିଥିଲା– ତୁମର ଜୀବନ ଖୁବ୍ ନିଃସଙ୍ଗ ହେବ ।

ସବୁ ପାହାଚରେ ଚଢ଼ି ଚଢ଼ି ନିର୍ବିଘ୍ନରେ ଓହ୍ଲାଇ ଆସୁଥିଲେ ବି ଗୋଟିଏ ପାହାଚରେ ମୋର ଗୋଡ଼ ବେଶ୍ ଅଟକିଗଲା । ଖୁବ୍ ଜୋରରେ ପାଦ ଟାଣି ଛଡ଼େଇ ନେବାର ଚେଷ୍ଟା କରି ବୁଝିଲି ଯଦି ନିହାତି ଖସି ଆସିବାକୁ ଚେଷ୍ଟା କରେ,

ତାହେଲେ ମୋର ସବୁ ଗ୍ରନ୍ଥି ଉପାଡ଼ି ହୋଇଯିବ । ଆଉ ଅବଶେଷ କିଛି ରହିବ ନାହିଁ । ମୁଁ ଭଲ ଭାବେ ଜାଣିପାରିଲି ମୋର ଅନିଚ୍ଛାସତ୍ତ୍ୱେ କାହାରି ମନର ରଙ୍ଗିନ୍ ସୂତାରେ ମୁଁ ବନ୍ଧା ହୋଇ ଗଲିଣି । ରାତି ଅଧରେ ଆସି ଅନ୍ଧକାରର ଘୂର୍ଣ୍ଣାୟମାନ ବୃତ୍ତ ମୋ ଆଖି ସାମ୍ନାକୁ ଆସି ଡାକ ଦେଲେ ମଧ ସେ ରଙ୍ଗିନ ସୂତା ଛିନ୍ନ ହେବ ନାହିଁ ।

ମୋ ପାଇଁ ବିବାହ ବେଦୀ ସଜା ହେଲା, ଶଙ୍ଖ ବାଜିଲା, ଜୀବନର ଅନେକ ଅଭିଳଷିତ ମୁହୂର୍ତ୍ତକୁ ଭେଟିଲି, ପୃଥିବୀର ଅନେକ ଅଦେଖା ସ୍ଥାନ ଦେଖିଲି । କିନ୍ତୁ ବିବାହର ଦୁଇମାସ ପରେ ଦିନେ ଖୁବ୍ ରାତିରେ :

—ଗୋଟିଏ କଥା ପଚାରିବି ?

—ପଚାର ।

—ତମେ ମୋତେ ପାଇ ସୁଖୀ ହୋଇପାରିନ ?

—କିଏ କହିଲା ?

—କାହିଁକି ମୁଁ କହୁଛି ।

—କିପରି ?

—ତୁମେ ଯେପରି ମୋଠୁଁ ସବୁବେଳେ ଦୂରରେ ରହୁଛ । ମୋ ଛାଇ ପଡ଼ିଲେ ତୁମେ ଚିହିଁକି ଉଠୁଛ। ଆଉ ସବୁବେଳେ ଅନ୍ୟମନସ୍କ ରହୁଛ ।

—ଏ ସବୁ ବାଜେ କଥା ।

—ତୁମେ ଆଗରୁ କାହାରିକୁ ଭଲପାଉଥିଲ ?

—ହଁ ।

—କାହାକୁ ?

—ଅନ୍ଧକାରର ବୃତ୍ତକୁ ।

ତା' ପରେ ମୁଁ ତାକୁ ଅନେକ ସମୟ ଲାଗି ବୁଝାଇ ଦେଇଥିଲି ଯେ ପ୍ରକୃତ ପକ୍ଷେ ମୁଁ କୌଣସି ଝିଅକୁ ଭଲପାଉ ନଥିଲି । କାରଣ ମୋର ସବୁ ପାର୍ଥିବ ସଂଯୋଗ ଛିନ୍ନ ହୋଇଯାଏ ଯେତେବେଳେ ସେ ଅଲକ୍ଷ୍ୟରେ ରହି ଆଦରରେ ମୋ ନାଁ ଧରି ଡାକେ ।

କାଲି ହଠାତ୍ ରାତି ଅଧରେ ମୋ ନିଦ ଭାଙ୍ଗିଗଲା । ବିଛଣାରେ ଉଠି ବସିଲି । ଖୁଟ୍ କରି ଆଲୁଅ ଜଳାଇଲି । ଦେଖିଲି ସେ କେମିତି ଅସହାୟ ଭଙ୍ଗୀରେ ଶୋଇ ରହିଛି । ମୁହଁ ଉପରେ ବିନ୍ଦୁ ବିନ୍ଦୁ ଝାଳ । ପାଖ ଦୋଳିରେ ପିଲାଟା ଶୋଇ ଏକା ଏକା ହାତ ଗୋଡ଼ ହଲାଇ ଖେଳୁଛି । ହଠାତ୍ ମୁଁ ଅନୁଭବ କଲି ମୋର ମହାଧମନୀ ମଧ୍ୟରେ ଶୋଇଯାଇଥିବା ସେଇ ଦଣ୍ଡକିରି ମାଛଟି ତାର ଲାଞ୍ଜ ମୁଣ୍ଡ ହଲାଇ ଖେଳିବାକୁ ଆରମ୍ଭ

କଲାଣି । ମୁଁ ସଙ୍ଗେ ସଙ୍ଗେ ସ୍ଥିର କରିନେଲି ମୋତେ କୁଆଡ଼େ ପଳାଇଯିବାକୁ ହେବ ନହେଲେ ଆତ୍ମହତ୍ୟା କରିବାକୁ ହେବ ।

ହଠାତ୍ ସେ ଉଠି ପଡ଼ିଲା :

—ଏତେ ରାତିରେ କୁଆଡ଼େ ବାହାରିଲ ?

—ମୋତେ ସେ ଡାକୁଛି ।

—ନାଇଁ, ସ୍ୱପ୍ନ ଦେଖିଲ ବୋଧହୁଏ ।

—କାହିଁକି, ଆମେ ତ ଅଛୁଁ ।

ମୋତେ କିନ୍ତୁ ଏକାଥରେ ଅନେକ ଗୁଡ଼ାଏ ଶବ୍ଦ ସ୍ରୋତ ଦେଖାଗଲା–

କହ୍ନେଇ, ତୁମର ଜୀବନ ଖୁବ୍ ନିଃସଙ୍ଗ ହେବ । ଏ ପିଲାକୁ ବିଶ୍ୱାସ ନାହିଁ ହୁଏତ ଘର ଛାଡ଼ି ସନ୍ନ୍ୟାସୀ ହୋଇଯାଇପାରେ । କହ୍ନେଇ, କହ୍ନେଇଟା ମୋର, ମୋତେ ଚିହ୍ନି ପାରୁନୁ । ମୁଁ ତୋ ପାଖେ ପାଖେ ଅଛି । ମୁଁ ଯେ ତୋର ନିଃସଙ୍ଗତା...

ମୁଁ ପ୍ରଥମେ ଦେଖିଲି ରଙ୍ଗିନ ଶାଢ଼ି, ରଙ୍ଗିନ ଚୁଡ଼ି, ତାପରେ ପିଲାଟାର ଦଣ୍ଡକିରି ମାଛ ଭଳି ହାତଗୋଡ଼ ହଲାଇ ଖେଳିବାର ଦୃଶ୍ୟ, ତାପରେ ୯ର୍କାର ରେଲିଂ, ରେଲିଂ ସେପଟରେ ଅନେକ ଅନ୍ଧକାର ଏବଂ ଅନ୍ଧକାରରେ ଏକାକୀ ଠିଆ ଦୂର ରେଳ ଲାଇନ ଉପରେ ସିଗ୍ନାଲର ନିଃସଙ୍ଗ ସଙ୍କେତ ।

ଅନୁଭବ କଲି ଅନ୍ଧକାରର ନଦୀରେ ମୁଁ ଗୋଟିଏ ଦଣ୍ଡକିରି ମାଛ ହୋଇ ସିଗ୍ନାଲ ଖୁଣ୍ଟ ଆଡ଼େ ପହଁରି ଚାଲିଛି ।

('ଆସନ୍ତାକାଲି', ସେପ୍ଟେମ୍ବର, ୧୯୭୩)



# ଶବ୍ଦର ଯନ୍ତ୍ରଣା

ଠକ୍ ଠକ୍ ଠକ୍ ଠକ୍ ଠକ୍ ଠକ୍–

ନିହାଣ ମୁନରେ ପାହାଚ କାଟି ଆଗକୁ ଆଗକୁ ମାଡ଼ି ଚାଲିଛି ।
ମୁଁ ଚୁପ୍ ଚୁପ୍ ଶୋଇ କେବଳ ସେହି ଠକ୍ ଠକ୍ ଶବ୍ଦ ଶୁଣୁଥିଲି ।
ଖୁବ୍ ଦୂରରେ କିଏ ଜଣେ କାହାକୁ କଣ କହୁଛି ।
ଶବ୍ଦଟା ଖୁବ୍ ଦୂରରେ ନୁହେଁ, ଖୁବ୍ ପାଖରେ କିନ୍ତୁ ଆସ୍ତେ ଆସ୍ତେ କହୁଛି ।
ସବୁକୁ ଅତିକ୍ରମ କରି ସେଇ ଠକ୍ ଠକ୍ ଠକ୍ ।
ଯନ୍ତ୍ରର ସେଇ ଏକପ୍ରକାର ମନ୍ତ୍ର ଠକ୍ ଠକ୍ ଠକ୍ ।
କାନ ଡେରିଲି ।
କାହାରି ରେଡ଼ିଓରେ ଏ ପର୍ଯ୍ୟନ୍ତ ଗୀତ ଶେଷ ହୋଇନାହିଁ ।
ହୁଏତ ଏତେ ରାତିରେ ରେକର୍ଡ଼ ବଜଉଛି ।
ଗଭୀର ରାତିରେ ଦୂରରୁ କରୁଣ ସଙ୍ଗୀତ ଶୁଣିଲେ ମୋତେ ଖୁବ୍ ଅସହ୍ୟ ଲାଗେ।
ଏ ପର୍ଯ୍ୟନ୍ତ ଆସୁନାହିଁ ।
ମୁଁ ଏଇ ସଞ୍ଜରେ ଆସି ପହଞ୍ଚିଲି । ଦୀର୍ଘ ତିନିମାସ ପରେ ।
ରାସ୍ତାସାରା ଗଛଲତା ବୁଦା ଟେଲିଗ୍ରାଫ୍ ତାର ସବୁଠି ସେଇ ଦୃଶ୍ୟ ଦେଖିଛି, କିନ୍ତୁ ସେ ଆସୁନାହିଁ, ଭାଉଜ ସଙ୍ଗେ ଗପ କରୁଛି ।
ଏ ପର୍ଯ୍ୟନ୍ତ ଖାଇନାହିଁ ବୋଧେ ।
ଆଶ୍ଚର୍ଯ୍ୟ !
ଆସିଲେ ତାକୁ ବି' ଥାପଡ଼ ଦେବି । ନ ହେଲେ କଥା କହିବି ନାହିଁ ।
ସେ ବି ଯଦି କଥା ନ କୁହେ ?

ଠକ୍ ଠକ୍ ଠକ୍ ଠକ୍–
ଏ ରାସ୍ତାରେ ଦଳେ ପିଲା ବୋଧହୁଏ ଟିଉସନ ପଢ଼ି ଫେରିଗଲେ ।
ସେମାନଙ୍କ ସମ୍ମିଳିତ ଚିତ୍କାର ମିଳେଇ ଆସୁଛି କ୍ରମେ ।

ଖୁବ୍ ଦୂରରେ କେଉଁଠି କୀର୍ତ୍ତନ ହେଉଛି । ଖୋଳ ମୃଦଙ୍ଗ ବାଜୁଛି ।
ଆଜି ତ ପୂର୍ଣ୍ଣିମା ।
ଆଃ, ଆଜି ପୂର୍ଣ୍ଣିମା !
ବାହାରେ ଜହ୍ନ ଜଳୁଥିବ ।
ବାହାରକୁ ଗଲେ କେମିତି ହୁଅନ୍ତା ।
ତଥାପି ତାର ଗପ ସରୁ ନାହିଁ ।
ଠକ୍ ଠକ୍ ଠକ୍ ଠକ୍ ଆଗେଇ ଚାଲିଛି ।
ଘରେ ଯେ ଅନେକ ଲୋକ । ସମସ୍ତେ ନ ଶୋଇଲା ଯାଏ ସେ ଗପ କରିବ ।
କିନ୍ତୁ ଅନ୍ୟମାନଙ୍କ ଖପୁରିରେ ଟିକେ ବୁଦ୍ଧି ସୁଦ୍ଧି ଥିବା ଦର୍କାର ।
ପାଖ ଘରେ ଛୁଆଟା ଭେଁ କରି କାନ୍ଦି ଉଠିଲା ।
ତା ମା' ତାକୁ ଶୁଆଉ ନାହିଁ । ପିଲାଟା କାନ୍ଦି ଚାଲିଛି ।
ବର୍ତ୍ତମାନ ପିଲାଟାର ବାପା ଖୁବ୍ ଭାଗ୍ୟବାନ ।
ଆଃ ଆଜି ପୂର୍ଣ୍ଣିମା ରାତି ।
ଠକ୍ ଠକ୍ ଠକ୍ ପାହାଚ ପାହାଚ ଚଢ଼ି ପୁନେଇ ଚାନ୍ଦ ଉପରକୁ ଉଠିଯାଉଛି ।
ସେଇ ଯେ, ପାଖରେ କିଏ କାହାକୁ କଣ କହୁଥିଲା, ତା ବନ୍ଦ ହୋଇଗଲାଣି ।
ଅଥଚ ଯା'ର ଭାଉଜ ସହ କଥା କହିବା ବନ୍ଦ ହୋଇପାରୁନି ।
ଭାଉଜଙ୍କ ପାଟି ଭାରି ଭାରି ଶୁଣାଯାଉଛି ।
ପାଟିରେ ଭାତ ରଖି ଗପ କରୁଛନ୍ତି ବୋଧହୁଏ ।
ଗୃହରୁ ଏ ପର୍ଯ୍ୟନ୍ତ ରେଡ଼ିଓର ଗୀତ ଶୁଣାଯାଉଛି ।
ରାତିର ଜଗୁଆଳି ପୋଲିସ୍ ଲାଠି ଠକ୍ ଠକ୍ କରି ଆଗେଇ ଯାଉଛି ।

ଠକ୍ ଠକ୍ ଠକ୍–
କୁକୁରଗୁଡ଼ା ତାକୁ ଦେଖି ଭୁକିବାକୁ ଆରମ୍ଭ କରେ ।
କୁକୁର ଭୁକିବା ଗଳିରୁ ଗଳିକୁ ସଂକ୍ରମିତ ହୋଇଯାଉଛି ।
ମୋର ଯନ୍ତ୍ରଣା କିନ୍ତୁ ଆଉ କାହାରିକୁ ସଂକ୍ରମିତ ହୋଇପାରୁନି ।
ମୁଁ ଆଜି ଘରେ ପହଞ୍ଚି ନଥାନ୍ତି କିମ୍ବା ସେଇଠି ଥାନ୍ତି, ତାହାହେଲେ ?
ପଢ଼ିବା ପିଲାମାନେ ବୋଧହୁଏ ଯାଇ ଶୋଇଯିବେଣି ।
ଖୁବ୍ ଜୋରେ ଜମିଯାଇଛି ।
ଖୋଳ ମୃଦଙ୍ଗ ସହ ତାଳି ମାଡ଼ ଆରମ୍ଭ ହୋଇଛି ।
ପିଲାଟା ତଥାପି କାନ୍ଦୁଛି, ତାର ମା' ବ୍ୟସ୍ତ ଅଛି ନିଶ୍ଚୟ ।

ସେ ଖିଆ ସରିଲା ବୋଧହୁଏ, ଥାଳି ଉପରେ ତାଟିଆ ରଖିବାର ଶବ୍ଦ ।
କୁଲୁକୁଞ୍ଚାର ଶବ୍ଦ ।
ମୋ ଛାତିରେ କ୍ରମାଗତ ଆଓ୍ଵାଜ ଉଠୁଛି ।

ଠକ୍ ଠକ୍ ଠକ୍ ଠକ୍ –
ଜୀବନ ଆଗେଇ ଚାଲିଛି ମୃତ୍ୟୁଆଡ଼େ
ସମୟ ଆଗେଇ ଚାଲିଛି –
ମୁଁ ଜାଣେନାହିଁ କେଉଁଆଡ଼େ ।
ଭାବିବି ବା କାହିଁକି ?
ଫାଲତୁ ।
ମୋ ଘରର କବାଟଟା ସତରେ ଏଥର ବନ୍ଦ ହେଲା ।

କଣ ?
ଆଜି ପୂର୍ଣ୍ଣିମା ।
ହେଲାତ କଣ ହେଲା ?
ହେଉ୍ ମୁଁ ଏ ସବୁ ମାନେନି ।
ମୋତେ ଆଉ କିଛି ଶବ୍ଦ ଶୁଣାଯାଉ ନାହିଁ ।

ଅନ୍ଧକାରରେ କାନ ଡେରିଲି- ଠକ୍ ଠକ୍ ଠକ୍ ପାହାଚ ଶବ୍ଦ ବି ନାହିଁ ।

ସକାଳେ ଖୁବ୍ ଡେରିରେ ଉଠି ଦେଖିଲି ରାତି ଅଧରୁ ଘଡ଼ିଟି ବନ୍ଦ ହୋଇଯାଇଛି ।

(କଥା, ସାମୟିକ ସାହିତ୍ୟ ସଂକଳନ)



# ଯାହା ଯେମିତି ହୁଏ

ଦୁନିଆରେ ନିପଟ ସତକଥା ଭିତରେ ଅନେକ ମିଛକଥା, ପୁଣି ଖାଣ୍ଟି ମିଛ ଭିତରେ ବି ଅନେକ ସତ ରହିଯାଇଥାଏ ।

ସେ ମୋତେ ସତ କହିଥିଲା– 'ତୁମ ବିନା ମୁଁ ବଞ୍ଚି ପାରିବିନି ।'

ମୁଁ ତାକୁ ସତ କହିଥିଲି– 'ତୁମେ ହିଁ ମୋ ଜୀବନର ଶେଷ ନାରୀ ।'

ସେ ମୋତେ ମିଛ କହିଥିଲା– 'ମୁଁ ତୁମକୁ ଭଲ ପାଏ ।

ମୁଁ ତାକୁ ମିଛ କହିଥିଲି– 'ତୁମ ବିନା ଆଉ କାହାରିକୁ ମୁଁ ଚାହେଁନା ।'

ପୃଥିବୀରେ ଏ ଚାରିପ୍ରକାର ବାକ୍ୟ ଅନେକଥର ଆବୃତ୍ତ ହୁଏ । ମୁଁ ତାର ପୁନରାବୃତ୍ତି କରିଥିଲି, ଆଉ ସେ ବି । କିନ୍ତୁ କେଉଁ ସଂଳାପ ଭିତରେ କେତେ ପରସେଣ୍ଟ ସତ ରହିଥିଲା ବା ମିଛ ମିଶିଯାଇଥିଲା ତାହା କହିବା ମୁସ୍କିଲ ।

'ଆରେ ଢଳି ! ଆ, ଆ, ଏଠାକୁ ଆ' । ଚୁପ୍ ! ମୁଁ ବିଡ଼ ବିଡ଼ କରୁଥିଲି । ଓହୋ, ଫାଇନାଲ୍ ପରୀକ୍ଷା ଆସିଗଲାଣି କିନା, ଗଲାକାଲି ପଢ଼ିଥିବା ପାଠଗୁଡ଼ା ଟିକେ ମନେକରି ନେଉଥିଲି ।'

ତୁ ଆଜି ସ୍କୁଲକୁ ଯାଇନୁ ? ଓ, ତୋର ଆଜି ଛୁଟି ? ଆଚ୍ଛା ତାହାହେଲେ ଟିକେ ବସ୍ ।

ଛୁଟିଦିନ ? ତୁମର ଆଜି ସ୍କୁଲ ନାହିଁ ? ବାଃ ଭାରି ମଜା ! ଆଜି ଖାଲି ଅଙ୍କ କରିବ ? ହେତ୍, ଅଙ୍କ କଷୁ କଷୁ ଉତ୍ତର ଯଦି ନିର୍ଭୁଲ ନ ହୁଏ ? ଠିକ୍ ଉତ୍ତରରେ ପହଞ୍ଚି ନ ପାରିଲେ ହଇରାଣ । ଜୀବନଟା ସାହାରା ହେବ ସିନା ! ତଥାପି ତୁମେ ତ ଅଙ୍କ କଷିବାକୁ ଖାତା, କଲମ, ପ୍ରଶ୍ନ ଢୋର୍ କରି ଧରାଇଦେଲ । କିନ୍ତୁ...

ଏଁ କଣ ହେଲା ? ବାପା ତୋ ପାଇଁ ଖେଳଣା ଆଣିଛନ୍ତି ? ସାବାସ, ହାତୀ, ଘୋଡ଼ା, ସ୍ପୁଟନିକ, ମାଙ୍କଡ଼, ଗଧ ?

କୈଶୋରର ବାର୍ଦ୍ଧକ୍ୟରେ ବି ତୁମର ଖେଳଣାର ସଉକ ଥିଲା । ମୁଁ ଥିଲି କୁହିତ କଦାକାର, ଆଉ ତା ସାଙ୍ଗରେ ମୋର ବୁଦ୍ଧିଟା ବି ମୋଟା ଥିଲା । ତେଣୁ ତୁମେ ମାଙ୍କଡ଼ ଓ ଗଧର ଖେଳଣା ଭଲ ପାଉଥିଲ ?

ଏ କଣ କହିଲୁ ? ତୋତେ ଏଥର ଇତିହାସ ନୋଟ୍ ଡାକି ଦେବାକୁ ହେବ ? ହଁ ହଁ ନିଶ୍ଚୟ ଡାକିଦେବି । ପଞ୍ଚମ ଶ୍ରେଣୀରେ କିନ୍ତୁ ଫାର୍ଷ୍ଟ ହେବୁତ ?

ଇତିହାସ ନୋଟ୍ ତ ତୁମକୁ ବି ଡାକି ଦେଉଥିଲି । ଟିଉସନ କଲା ବେଳେ ଶାହାଜାନ ନୋଟ ଡାକି ଦେଉଁ ଦେଉଁ ମନେ ମନେ ରକ୍ତ ଗୋଲାପ ଶୁଙ୍ଘି ମୋ ଖିଅର ହୋଇଥିବା ଦାଢ଼ି ଉପରେ ହାତ ବୁଲାଇ ତୁମ ଆଖିର ଯମୁନାକୁ କେତେଥର ଅପଲକ ନେତ୍ରରେ ଚାହିଁ ରହୁଥିଲି । ସେ ଇତିହାସ ନୋଟ ତ ମୋ ଜୀବନର ଏକ ଇତିହାସ ।

ନାଇଁରେ ମୁଁ ଅନ୍ୟମନସ୍କ ହେଉନି । ତୋ କ୍ଲାସର ଭୂଗୋଳ ସାରଙ୍କ କଥା କହୁଛୁତ ? ଭଲ ପଢ଼ଉ ନାହାନ୍ତି ? ଆଚ୍ଛା, ମୋ ପରୀକ୍ଷା ପରେ ଦିନେ ଆସିବୁ । ମୁଁ ତୋତେ ଭୂଗୋଳ ବୁଝେଇ ଦେବି ।

ଇସ୍ ଭୂଗୋଳ ପଢ଼େଇବା କି କଷ୍ଟ ! ଅକ୍ଷାଂଶ ଦ୍ରାଘିମା ଉପରେ ହାତ ବୁଲାଇ ଭୂଗୋଳ ବୁଝାଇବା କି ମଧୁର ଯନ୍ତ୍ରଣା ! ସେଦିନ ମାନଚିତ୍ରରେ ପାହାଡ଼, ପର୍ବତ, ମାଳଭୂମି, ନଦୀ, ହ୍ରଦ, ଝରଣା ସବୁ କି ଚତୁର ଉପାୟରେ ବୁଝାଇ ଦେଇଥିଲି ।

ତୋ ଜନ୍ମଦିନ ପାଇଁ ଫ୍ରକଟି ବାପା କିଣି ଦେଇଛନ୍ତି ? ଖୁବ୍ ବଢ଼ିଆ ହୋଇଛି । ତୋ ଅପାର ବି ଏମିତି ଏକ ଫ୍ରକ୍ ଥିଲା ? ହଁ ମୁଁ ଦେଖିଛି । ତାକୁ ସେତେବେଳେ ଦଶମ ଶ୍ରେଣୀ, ମୁଁ ତାକୁ ଟିଉସନ କରୁଥିଲି । ତୋର କଣ ମନେ ନାଇଁ ? ଛାତି ଉପର ରୋଲେକ୍ସ ଜରି ଗୁଡ଼ା ଖୁବ୍ ଭଲ ହୋଇଛି ।

ତୁମ ଜନ୍ମଦିନରେ ଏମିତି ଏକ ଜରିଦିଆ ଫ୍ରକ୍ ତୁମେ ପିନ୍ଧୁଥିଲ । ଫୁଟାଣି ଦେଖେଇ କହିଥିଲ ଜରିଗୁଡ଼ା କେମିତି ହୋଇଛି ? ମୁଁ ତୁମର ଛାତିର ରୋଲେକ୍ସ ଜରି ଆଉଁଶି କହିଥିଲି– ଏଗୁଡ଼ା ମୋତେ ଭଲ ଲାଗେନି । ଏ ଜରି କ'ଣ ସବୁଦିନେ ଏମିତି ଚିକ୍ ଚିକ୍ କରୁଥିବ ?

ଏଁ କ'ଣ ହେଲା ? ତୋ ଆଖିରେ କ'ଣ ପଡ଼ିଗଲା ? ରହ ଦେଖୁଛି । ଆରେ ପିମ୍ପୁଡ଼ିଟା, ରହ, ଏଃ, ବାହାରିଗଲା ।

ଠିକ୍ ଏମିତି ବି ତୁମର ଆଖି । ଟଣା ଟଣା ଆଖି । ଓଠ ନ ହଲାଇ କେତେ କଥା କହୁଥିଲ । ଓଠ ବି ଠିକ୍ ଏମିତି । ଜଟିଳ ବନ୍ଧନୀ । ତା ଉପରେ ଛୋଟ ଛୋଟ ଢେଉ । ସେଇ ଓଠ, ଶୀତ ସକାଳରେ କପେ ଚା' ପରି ।

ନାଇଁରେ ମୁଁ କିଛି ଭାବୁନାହିଁତ । ଆରେ ତୋ ଆଣ୍ଠୁଟା ଏମିତି ଖଣ୍ଡିଆ ହେଲା କେମିତି ? ଦାଗଟା ବୋଧହୁଏ ରହିଯିବ । ପଡ଼ିଯାଇଥିଲୁ ?

ତୁମ ଆଣ୍ଠୁ, ଆଣ୍ଠୁ ଉପରଟାବି, ତୁମ ହାତ, ପାଦ, ନଖ, ପେଟ, ଓଠ, ଆଖି, କାନ, ନାକ ସବୁ ଠିକ୍ ଏମିତି, ସବୁ ଜଲି ପରି । କେବଳ ଜଲିର ଟିକେ ବେଶୀ ସମତଳ । ତୁମେ କେବଳ ଜଲିର ଏକ ଏନ୍‌ଲାର୍ଜ ଫଟୋଗ୍ରାଫ୍ ।

ଜଲି, ବହୁତ ଗରମ ହେଉଛି ନୁହେଁ ? ତୁ ଏ ଫ୍ରକ୍‌ଟା ଖୋଲିପକା । ମୁଁ ଫେନ୍‌ର ସ୍ପିଡ୍ ବଢ଼େଇ ଦେଉଛି । ଆରେ ମୁଁ କହୁଛି କାଢ଼ିରଖ, ଝାଳରେ ଭିଜିଗଲୁଣି । ନୂଆ ଫ୍ରକ୍‌ଟା ଖରାପ ହୋଇଯିବ ଯେ ।

ସେଦିନ ତୁମ ଦେହରୁ ଜୋର୍‌କରି ଫ୍ରକ୍‌ଟା ଉତାରି ନେଇଥିଲି ଆଉ ତା ସାଥିରେ ପେଣ୍ଟଟାବି । ତୁମେ ହତବାକ୍ ହୋଇ କିଛି ସମୟ ଛିଡ଼ା ହେଲ । ତା'ପରେ...

ଆରେ ଫ୍ରକ୍ କାଢୁ କାଢୁ ତୋ ମୁଣ୍ଡରୁ କୁଙ୍କୁମଟା ପୋଛି ହୋଇଗଲା ଯେ ! ଯାଉ ଚିନ୍ତା ନାହିଁ, ମୋ ପାଖରେ ଠାକୁର ସିନ୍ଦୂର ଅଛି ଲଗେଇ ଦେବି ।

ତୁମ ମୁଣ୍ଡରେ ମୁଁ ସେଦିନ ଠାକୁରଙ୍କ ସିନ୍ଦୂର ଲଗେଇ ଦେବାକୁ ଚାହିଁଥିଲି, ତୁମେ କିନ୍ତୁ ଲଗେଇବାକୁ ଦେଲନି । ତଥାପି ତୁମ ମୁଣ୍ଡରେ ସିନ୍ଦୂର ଲାଗିଛି ।

ଜଲି । ଏ ହେଉଛି ଠାକୁରଙ୍କ ସିନ୍ଦୂର । ଲଗେଇ ଦିଏ ? ଏଁ... ହଁ ।... ସାବାସ ?

ଶେଲୀ, ମୋତେ ଦିଶୁଛି ତୁମ ମୁଣ୍ଡରେ ବି ଏମିତି ଏକ ରକ୍ତାକ୍ତ ଟୋପା । ଆଃ, ଶେଲୀ, ମୋ ହୃତ୍‌ପିଣ୍ଡର ରକ୍ତକୁ ଶୁଖାଇ ପାଉଡ଼ର କରି ତୁମକୁ ଦେଲା କିଏ ? ଶେଲୀ, ତୁମେ ଯଦି ଆଜି ଅପରାହ୍ନରେ ଏଇଠି ଥାଆନ୍ତି, ମୋ ପାଖରେ ଥାଆନ୍ତ, ସେଇ ଫ୍ରକ୍ ପେଣ୍ଟ୍ ପିନ୍ଧା ଅବସ୍ଥାରେ ଥାଆନ୍ତ, ତାହାଲେ ମୁଁ... ତାହାହେଲେ ମୁଁ କଣ କରନ୍ତି ? କଣ କହନ୍ତି ? ନା, କିଛି କରନ୍ତି ନାହିଁ । କିଛି କହନ୍ତି ନାହିଁ । କେବଳ ମୋର ଓ ତୁମର ଧମନୀ ଭିତରେ ସମୟର ଚଲାଫେରା ଶବ୍ଦ ଶୁଣନ୍ତି ।

ଜଲି, ତୁ କ'ଣ କହୁଛୁ ମୁଁ ଶୁଣିପାରୁନି । ନା, ମୁଁ ଚିତ୍କାର କରୁନି । ଗୋଟିଏ କଥାହିଁ କହୁଛି । ସେଇକଥା । ତୁ ଠିକ୍ ଶେଲୀପରି, ତୁ ଶେଲୀର ଛୋଟ ସଂସ୍କରଣ । ନା, ତୁ କାହିଁକି ଜଲି ହେବୁ ? ତୁତ ଶେଲୀ, ହଁ ହଁ ତମେଇତ ଶେଲୀ ।

ଜଲି, ନା ମୁଁ ପାଗଳ ନୁହେଁ, ତୁମେ ପେଣ୍ଟଟା କାଢ଼ି ଫିଙ୍ଗିଦିଅ । ବହୁତ ଗରମ ହେଉଛି । ନା, ଝରକା ଖୋଲିବା ଦରକାର ନାହିଁ । ସେଟା ସେମିତି ଥାଉ...

ମୁଁ ଜଲିକୁ କୋଳରେ ବସାଇ ଆହୁରି ସିନ୍ଦୂର ଲଗାଇଲି । ଟୋପାଟା ଗୋଲକଲି । ବଡ଼ କଲି । ଖୁବ୍ ବଡ଼ କଲି । ଲାଲ କଲି । ଗାଢ଼ ଲାଲ କଲି । ତାର ସୀମନ୍ତରେ ମେଞ୍ଚାଏ ନେଇ ଖୁବ୍ ଜୋର୍ କରି ଲେପି ଦେଲି ।

ତା ମୁଣ୍ଡର ସିନ୍ଦୂର ମୋ ଓଠ, ମୋ ଗାଲରେ ଲାଗିଯାଇ ମୁହଁକୁ ରାକ୍ଷସ ପରି କରିଦେଲା । ତା ମୁଣ୍ଡରୁ ସିନ୍ଦୂର ଟୋପା ଭିତରେ କ୍ରମେ କ୍ରମେ ମୁଁ ସେ, ତାର ଲୁହ, ମୋର ଲାଳସବୁ ଏକାକାର ହୋଇଯାଇ ଦିଗ୍‌ବଳୟର ଆରପାରି ପର୍ଯ୍ୟନ୍ତ ବିସ୍ତୃତ ହୋଇଗଲା ।

(ଯୁଗଭେରୀ)

●

# ନୂତନ ଉତ୍ସବ

ଶେଷରେ ଚନ୍ଦ୍ରକୁ ଚାରିଜଣ କାନ୍ଧରେ ଉଠାଇଲେ । ଯଦିବା ମୋର କାନ୍ଧ ଲଗାଇବା ଉଚିତ ଥିଲା, ତଥାପି ମୁଁ ଘୁଞ୍ଚି ଠିଆହେଲି ।

ମହୁଫେଣାରେ ଟେକା ବାଜିଲେ ଯେପରି ହଠାତ୍ ଅସମ୍ଭବ କୋଳାହଳ ଉଠେ, ସେହିପରି ହଠାତ୍ ଆଉଥରେ କଳରୋଳ ଉଠିଲା । ଶେଷଦର୍ଶନ ପାଇଁ କେତେଜଣ ସ୍ତ୍ରୀଲୋକ ମୁହଁରେ ଲୁଗାକୁଞ୍ଚୁଳା ମାଡ଼ିଧରି ବି ଭେଁ ଭେଁ କରି ଉଠିଲେ । ଠିକ୍ ସେତିକିବେଳେ ମୋ ଭିତରେ ଗୋଟିଏ କେମିତି ହୋଇଗଲା । ମୋ ଭିତରୁ ଗୋଟିଏ ଅଜବ ଶବ୍ଦ ବାହାରି ସାରା ପୃଥିବୀରେ ମାଡ଼ିଗଲା– ତା' ହେଲେ ଚନ୍ଦ୍ର ଚାଲିଗଲା !

ଚନ୍ଦ୍ର ମୋର ବନ୍ଧୁ । ସେ କଲିକତାରେ ରହି ପଢୁଥିଲା । ଆଜି ସଞ୍ଜରେ ତାର ଶବ ଏଠାରେ ଆସି ପହଞ୍ଚିଛି ।

ତାର ମୃତ୍ୟୁ ପାଇଁ କିଏ ବା କାହିଁକି ପ୍ରସ୍ତୁତ ହୋଇ ରହନ୍ତା ! ଶୁଣାଯାଏ, ସନ୍ଧ୍ୟାବେଳେ ତାର ଡାହାଣ ପାଖ ପେଟରେ ସାମାନ୍ୟ ଯନ୍ତ୍ରଣା । ରାତିରେ ସେଇଟା ବଢ଼ିଗଲା । ଡାକ୍ତରଖାନା ନିଆଗଲା । ସକାଳ ଦଶଟାରେ ଯନ୍ତ୍ରଣା ଭଲ ହୋଇଗଲା । ସନ୍ଧ୍ୟାପର୍ଯ୍ୟନ୍ତ ସ୍ୱାଭାବିକ । ଯନ୍ତ୍ରଣାଟା କେଉଁଠି ଯେମିତି ଲୁଚି ବସି ପ୍ରସ୍ତୁତ ହେଉଥିଲା । ହଠାତ୍ ସନ୍ଧ୍ୟାବେଳେ ପୁଣି ଆରମ୍ଭ। ଅନେକ ଡାକ୍ତର, ନର୍ସ, ସାଙ୍ଗସାଥୀ, ଆତ୍ମୀୟ ସ୍ୱଜନଙ୍କ ମଝିରେ ବି ହଠାତ୍ ରାତି ଦଶଟା ବେଳେ ସବୁ ଯନ୍ତ୍ରଣା ଧପ୍ କରି ବନ୍ଦ ହୋଇଗଲା । ତାପରେ ଟେଲିଗ୍ରାମ । ସଞ୍ଜବେଳେ ଶବ ଆସି ଘରେ ପହଞ୍ଚିଲା । ହଠାତ୍ ଘରର ସୁନ୍ଦର, ପାଠପଢୁଆ ତରୁଣ ଗୋଟେ ମରିଗଲେ ସର୍ବତ୍ର ଯାହା ଯେପରି ହୁଏ ଠିକ୍ ସେମିତି । ମୁଁ ତ ହଠାତ୍ ବିଶ୍ୱାସ କରିପାରିଲି ନାହିଁ । ତାର କଳା ପଡ଼ିଯାଇଥିବା ଶବଟାକୁ ଦେଖି ବି ବୁଝି ଉଠିବାକୁ ଡେରି ଲାଗିଲା ଯେ ଶବଟା ଚନ୍ଦ୍ରକାନ୍ତର ।

ଚନ୍ଦ୍ରସହ ମୋର ବନ୍ଧୁତ୍ୱ ପ୍ରାୟ ତିନିବର୍ଷ ତଳେ । ଚନ୍ଦ୍ରର ଜଣେ ବନ୍ଧୁସହ ଦିନେ ଗପୁଗପୁ ତା ସହ ପରିଚୟ । ଆଉ ଦିନେ ହଠାତ୍ ସିନେମାହଲ୍‌ରେ ଗୋଟିଏ ଫାଇଟିଂ ଛବି ଦେଖୁଁ ଦେଖୁଁ ଚନ୍ଦ୍ର ଓ ତାର ବନ୍ଧୁକୁ ମୋ ଆଗ ସିଟ୍‌ରେ ଆବିଷ୍କାର କଲି । ସେଦିନ ପ୍ରଥମ ଥର ପାଇଁ ସେମାନଙ୍କ ସଙ୍ଗରେ ଚନ୍ଦ୍ର ଘରକୁ ଆସିଥିଲି । ସେଦିନ ଚନ୍ଦ୍ର ଚା' ପିଆଇଥିଲା ।

ମୁଁ ଜାଣେ କୌଣସି ବନ୍ଧୁର ସାନଭଉଣୀ ସୁନ୍ଦରୀ, ତରୁଣୀ ଓ ସ୍ନେହୀ ହୋଇଥିଲେ ବନ୍ଧୁତ୍ୱ ଠିକ୍ ରଖିବା ମୁସ୍କିଲ ହୋଇପଡ଼େ । ମୁଁ ତ ଭିନ୍ନ ଚରିତ୍ରର ଲୋକ । ସୌନ୍ଦର୍ଯ୍ୟ ଦେଖିଲେ ମୁଁ ନିଜକୁ ଠିକ୍ ରଖିପାରେ ନାହିଁ । ସୁନ୍ଦର ନାରୀତ୍ୱ ଦେଖିଲେ ମୁଁ ମୁଗ୍ଧ ହୋଇଯାଏ । ତାରୁଣ୍ୟ ମୋତେ ଭୀଷଣ ଆକର୍ଷଣ କରେ । ସ୍ଥାନକାଳପାତ୍ର ଉଚିତ-ଅନୁଚିତର ସୀମାରେଖା ଟପି ଅନୁଭବ, ପ୍ରାପ୍ତି, ଉପଭୋଗ, ଇତ୍ୟାଦି ଶବ୍ଦ ମୋତେ ପାଗଳ କରି ପକାଏ । ଏସବୁ ସତ୍ତ୍ୱେ ବି ମୋର ଦର୍ଶନ ଭିନ୍ନ । ଚରିତ୍ରହୀନତା, ପାପ, ଇତ୍ୟାଦି ଶବ୍ଦ ମୋ ପାଇଁ କେବଳ କେତେଗୁଡ଼ିଏ ଲଗାଲଗି ଅକ୍ଷର ହେଲେ ମଧ ଦେହ ଉପଭୋଗରେ ମୋର ବିଶ୍ୱାସ ନାହିଁ । ଉପଭୋଗ ପ୍ରାପ୍ତିରେ ଭାବପ୍ରବଣତା ଓ ସୂକ୍ଷ୍ମ ସୌନ୍ଦର୍ଯ୍ୟବୋଧ ନଷ୍ଟ ହୋଇଯାଏ ବୋଲି ମୋର ଧାରଣା । ମୋ ଜୀବନକୁ ତେଣୁ ଯେତେ ନାରୀ ଆସିଛନ୍ତି ସେମାନେ ସେମାନଙ୍କ ନାରୀତ୍ୱକୁ କ୍ଷତବିକ୍ଷତ କରାଇବାର ଇଙ୍ଗିତ ଦେଲେ ମଧ ସେମାନଙ୍କ ଆସିବା ମୁହୂର୍ତ୍ତ ପରି ଦାଗହୀନ, ଆକର୍ଷିତ ହୋଇ ରହିଯାଇଛନ୍ତି । ମୁଁ କେବଳ ନିଦାଘ ମଧ୍ୟାହ୍ନରେ ସଂପୂର୍ଣ୍ଣ ଥଣ୍ଡା ପାଣି ଭର୍ତ୍ତି ଗ୍ଲାସକୁ ହାତରେ ଉଠାଇଛି, ଦେଖିଛି, ତନ୍ମୟ ହୋଇଛି, ପରମ ସ୍ନେହରେ ମୋର ଗାଲରେ ସେ ଗ୍ଲାସକୁ ଛୁଆଇଁ ନେଇଛି ଏବଂ ତାଫଳରେ ନିଦାଘର ଶୁଷ୍କତା ଅନେକ ପରିମାଣରେ କଟିଯାଇ ମୋ ଭିତରେ ଅନେକ ଜଳକଣା ଆରାମ ଆଣି ଦେଇଛନ୍ତି । ଫଳରେ ତା ପରମୁହୂର୍ତ୍ତରେ ପୁଣି ନୂତନ ଗ୍ଲାସ । ତାର ସୁନ୍ଦର ଶୀତଳ ସ୍ୱଚ୍ଛନ୍ଦ ଜଳ । ନୂତନ ଅନୁଭବ । ଦିବ୍ୟ ସୌନ୍ଦର୍ଯ୍ୟବୋଧରେ ମୁଁ କ୍ରମେ ଉଦ୍‌ଭାସିତ ଓ ପୁଲକିତ ହୋଇ ଉଠିଛି । ତେଣୁ କାନ ନ ଡେରିଲେ ବି ମୋର ରଙ୍ଗମଞ୍ଚର ନେପଥ୍ୟରେ ଅନେକ ନାରୀର କୋଳାହଳ ଶୁଣାଯାଏ ।

ମୋର ଏଇ ଦିଗଟି ବିଷୟରେ କହିଲେ ମୋତେ ଗୋଟିଏ ଛୋଟ ଘଟଣା ବା ଗଳ୍ପ କହିବାକୁ ଇଚ୍ଛାହୁଏ । ଦିନେ ଜଙ୍ଗଲରେ ବୁଲୁବୁଲୁ ମୁଁ କ୍ଳାନ୍ତ ଓ ଶୋଷିଲା ହୋଇ ଉଠିଲି । ଅବଶ୍ୟ ମୁଁ ଜଙ୍ଗଲକୁ ଶିକାର କରିବା ପାଇଁ ବା ସୌନ୍ଦର୍ଯ୍ୟ ଦେଖିବା ପାଇଁ ଯାଇ ନଥିଲି । କ'ଣ ଗୋଟିଏ ଖୋଜିବା ପାଇଁ ଯାଇଥିଲି । ଯେତେବେଳେ ବୁଝିପାରିଲି ମୋତେ ଭୀଷଣ ଶୋଷ, ସେତେବେଳେ ବାହାରିଲି ଝରଣାର ସନ୍ଧାନରେ । ଅନେକ ବୁଲିଲି । କିନ୍ତୁ ପାଣି କାହିଁ ? ଯେତେବେଳେ ସୂର୍ଯ୍ୟ ଢ଼ଳିବାକୁ ଆରମ୍ଭ କଲେ, ହଠାତ୍ ସେତେବେଳେ ମୋ ସାମ୍ନାର ଲତା ତାଳପତ୍ର ଘୁଞ୍ଚାଇଦେଇ ଦେଖିଲି ଏକ ନିସ୍ପନ୍ଦ ସରୋବର । ହଠାତ୍ ଶୋଷଟା ବଢ଼ିଗଲା । ସୁନ୍ଦର ପଥରର ପାହାଚ ପାଣି ପର୍ଯ୍ୟନ୍ତ । ସବୁ ପାହାଚରେ ଯେପରି ଅଦୃଶ୍ୟ ଆମନ୍ତ୍ରଣ ଖୋଦିତ । ଅଥଚ ମୁଁ ସେଇଠି ପାହାଚରେ ବସିଗଲି ଓ ମନେ ମନେ କଳ୍ପନା କଲି ଖୁବ୍ ଦୂରକୁ ଦୂରକୁ ଗୋଟିଏ ବିଷଣ୍ଣ ନାଉରିଆହୀନ ନୌକା ଚାଲିଯାଉଥିବାର ଦୃଶ୍ୟ । କିଛି ସମୟ ପରେ ଜାଣିପାରିଲି ମୋର ଶୋଷ ମେଣ୍ଟିଯାଇଛି ଏବଂ ମୁଁ ଯାହା ଖୋଜୁଥିଲି ତା ପାଇଯାଇଛି ।

ମୁଁ ଜୀବନରେ ସରୋବର ଅନ୍ୱେଷଣ କରୁକରୁ ଆଉ ନିଃସଙ୍ଗ ବିଷଣ୍ଣ ନୌକା ଭାସିଯାଉଥିବାର ଦୃଶ୍ୟ କଳ୍ପନା କରୁକରୁ ଅନେକ ବନ୍ଧୁ, ଶୁଭେଚ୍ଛୁ ଇତ୍ୟାଦିଙ୍କୁ ହରାଇଛି । ତେଣୁ ଚନ୍ଦ୍ର ଘରେ ପ୍ରଥମ ଦିନ ଚା' ପିଇଲାବେଳେ ମୁଁ ବେଶ୍ ବୁଝିପାରିଲି ତା ସହ ବନ୍ଧୁତ୍ୱ ମଧ୍ୟରେ ଏକ ବିରାଟ ଉପସାଗର ରହିଯିବ, ଯାହାକୁ କେବଳ ସାମୟିକ କୃତ୍ରିମ ହସ, ମନଭୁଲା କେଇପଦ କଥାର ଅସ୍ଥାୟୀ ସେତୁରେ ସଂଯୋଗ କରାଯାଇପାରିବ । ମୁଁ ସେଇ ପ୍ରଥମ ଦିନ ଗପରେ ମସ୍‌ଗୁଲ ହୋଇ ଉଠିଥିବାବେଳେ ହଠାତ୍ ସେ ଘରେ ଅନେକ ଆଲୋକ କେଉଁସବୁ ସନ୍ଧିରୁ ଜଳି ଉଠିଲେ । ମୁଁ ଆଲୋକିତ ହୋଇ ଦେଖିଲି ସାମ୍ନାରେ ଏକ ସୁନ୍ଦର ନାରୀମୂର୍ତ୍ତି, ଯାହା ପାଖରେ ବସି କେବଳ ପ୍ରେମ ନିବେଦନ କରିବାର ଇଚ୍ଛା ଜାଗେନା, ତାକୁ ହଠାତ୍ ଭୁଲାଇ ନେଇ ଖୁବ୍ ଦୂର ଜାଗାକୁ ପଳାଇବାକୁ ଇଚ୍ଛା ହୁଏ । ମୋତେ ସେଇ ମୁହୂର୍ତ୍ତରେ ମନେ ହେଲା ଝିଅଟାକୁ ଥରେ ଆଲିଙ୍ଗନ ନ କଲେ ମୋ ଭିତରେ କ୍ୟାନ୍‌ସର ହୋଇଯିବ । ମୁଁ ସେଦିନ ତା'ଠାରୁ ଚା'କପ୍ ଧରିନେଲା ବେଳେ ତାର ଆଙ୍ଗୁଠିଗୁଡ଼ାକ ଲକ୍ଷ୍ୟ କରିଥିଲି । ଆଙ୍ଗୁଠିରେ ବି ଅସମ୍ଭବ ତାରୁଣ୍ୟ ଓ ସୌନ୍ଦର୍ଯ୍ୟ ଭର୍ତ୍ତି ହୋଇଉଠିଛି ।

ପ୍ରଥମ ଦିନ ତା ମୁହଁକୁ ଥରେ ମାତ୍ର ଚାହିଁ ତଳକୁ ମୁହଁ କରି ନେଇଥିଲି । ଚା' ପିଇଲା ବେଳେ କୌଣସି ଆଡ଼େ ନ ଚାହିଁ ଚା' କପ୍‌ର ଗୋଟିଏ କୋଣରେ ଲାଗି ରହିଥିବା ଦୁଧସର ଉପରେ ଦୃଷ୍ଟି ନିବଦ୍ଧ କରିଥିଲି ଯେପରିକି ସେଇଟା ଛଡ଼ା ପୃଥିବୀରେ ଆଉ କିଛି ଦେଖିବାର ପଦାର୍ଥ ନାହିଁ । ତାପରେ ବୋଧହୁଏ ପରିଣୀତା ମୋ ଉପରେ ଟିକେ ବେଶୀ ଆସ୍ଥା ସ୍ଥାପନ କରିଥିଲା ।

ପୂର୍ବରୁ ମୋ ଜୀବନରେ ଯେଉଁମାନେ ଆସିଥିଲେ ସେମାନଙ୍କ ପାଇଁ ମୁଁ ମୋର ମାଂସାଶୀ ବାଘଟାକୁ ଯନ୍ତା ଭିତରେ ବନ୍ଦ କରି ରଖିଥିଲି । ସେମାନେ ସେମାନଙ୍କ କ୍ୟାମେରାରେ ଯନ୍ତା ଭିତରେ ଶୋଇ ହାଇମାରୁଥିବା ବାଘର ଫଟୋ ଉଠାଇ ଫେରି ଯାଇଥିଲେ ଏବଂ ଅନେକଙ୍କୁ ସେ ଫଟୋ ଦେଖାଇ ମୋ ପ୍ରତି ପ୍ରଲୁବ୍ଧ କରାଇଥିଲେ । ପରିଣୀତାକୁ ଦେଖିଲା ପରେ, ତା ସହ କଥାବାର୍ତ୍ତା ହେଲା ପରେ ମନେ ହେଲା ସେ ଇସ୍ପାତ ଯନ୍ତାଟା ଭାଙ୍ଗିଯିବାକୁ ଆଉ ଖୁବ୍ ଡେରି ନାହିଁ । ତେଣୁ ପରିଣୀତା ପାଇଁ ମୁଁ ଅନେକ ସ୍ୱଗତୋକ୍ତି ଉଚ୍ଚାରଣ କରିଥିଲି—ପରି, ତୁମେ ତୁମ ଗନ୍ତାଘରର ଚାବି କେଉଁ ଏକ ଅଗ୍ନାଅଗ୍ନି ବନସ୍ତରେ ହଜାଇ ଦିଅ, ଯେପରିକି ମୁଁ ତା ଖୋଜି ନ ପାଏ । ମୁଁ ତୁମ ପାଇଁ ଭାବପ୍ରବଣ ହେବାକୁ ଚାହେଁ । ମୁଁ ତମ ପାଇଁ ପାଗଳ ହେବାକୁ ମଧ୍ୟ ରାଜି ଅଛି ।

ତାପରେ ପରିଣୀତା ପାଇଁ ଚନ୍ଦ୍ରକାନ୍ତ ସହ ମୋର ବନ୍ଧୁତ୍ୱ ବେଶ୍ ଜମିଗଲା । ମୁଁ ତା ସହ ପ୍ରତି ସଞ୍ଜରେ ବୁଲି ବୁଲି ସହର ପରିକ୍ରମା କଲି ଓ ତାଙ୍କ ଘରେ ପ୍ରତ୍ୟହ ଚା' ପିଇବାର ଯୋଜନା ସ୍ଥିର ହୋଇଗଲା । ମୁଁ କ୍ରମେ ପରିଣୀତା ପାଇଁ ବନ୍ଧୁବାନ୍ଧବଶୂନ୍ୟ ହୋଇ ଉଠିଲି । କ୍ରମେ ପରିଣୀତା ବି ମୋ ପାଖରେ ସ୍ୱାଭାବିକ ହେଇ ଉଠିଲା ।

ଦିନେ ଶୁଣିଲି ଚନ୍ଦ୍ରକାନ୍ତ ପରୀର ଗୋଟିଏ ବାନ୍ଧବୀକୁ ଭଲପାଏ । କିନ୍ତୁ ଚନ୍ଦ୍ରକାନ୍ତ ନିକଟରୁ କେବେ ତାର ଉଲ୍ଲେଖ ଶୁଣି ନାହିଁ । ଦିନେ ଚନ୍ଦ୍ରକୁ ଏ ବିଷୟରେ ପଚାରି ଜାଣିଲି–ଚନ୍ଦ୍ର ଭଲପାଏ ଏ କଥା ସତ୍ୟ । କିନ୍ତୁ କେବେ ତା ସହ ଦେଖା କରେ ନାହିଁ । କେବଳ ମଝିରେ ମଝିରେ ଅନେକ ରଙ୍ଗିନ ସ୍ୱପ୍ନକୁ ନେଇ ଚିଠିପତ୍ର ଯାଏ ଆସେ । ଝିଅଟି ଖୁବ୍ ନିରୋଳାରେ ଚନ୍ଦ୍ରକୁ ଦେଖା କରିବାକୁ ଚାହିଁଲେ ବି ଚନ୍ଦ୍ର କେବଳ ଜିମ୍‌ନାସିୟମ, ଖେଳ କସରତ୍ ଇତ୍ୟାଦି ନେଇ ବ୍ୟସ୍ତ ରହେ । ସ୍ୱାସ୍ଥ୍ୟ ଗଠନ କରେ । ଚରିତ୍ରବାନ୍ ହୋଇ ବ୍ୟକ୍ତିତ୍ୱ ଓ ମୁହଁର ଔଜ୍ଜ୍ୱଲ୍ୟ ବଢ଼ାଏ ।

ଦିନେ ପରିଣୀତା ହସି ହସି କହିଲା–ଆପଣଙ୍କ ଆଖିଗୁଡ଼ା ଚମତ୍କାର । ଆଖି ଦେଖିଲେ ଆପଣ ସରଳ, ପବିତ୍ର ଓ ଭାବପ୍ରବଣ ପରି ମନେ ହୁଅନ୍ତି ।

ମୁଁ ହସିଲି ଓ ମନେ ମନେ ଉଚ୍ଚାରଣ କଲି–ପରି, ତୁମେ କେବେ ଆଉ ମୋର ପ୍ରଶଂସା କର ନାହିଁ । ମୁଁ ତୁମ ପାଇଁ ସରଳ ପବିତ୍ର ହୋଇ ରହିଯାଇଛି କେବଳ ମୋର ଭାବପ୍ରବଣତା ବଢ଼ାଇବା ପାଇଁ ।

ଆଉ ଦିନେ ପରିଣୀତା କହିଲା– ଆପଣ କେବେ କୌଣସି ଝିଅକୁ ଭଲ ପାଇ ନାହାନ୍ତି ? କାହା ସହ ହୃଦୟ ଦିଆନିଆ କରିନାହାନ୍ତି ?

ମୁଁ ହସିଲି ଓ ମନେ ମନେ କହିଲି–ଭଲ ପାଇଛି ଅନେକଙ୍କୁ, କିନ୍ତୁ କାହାକୁ ହୃଦୟ ଦେଇ ନାହିଁ । କେବଳ ମୋର ହୃଦୟର ଚିତ୍ର ଦେଖିଛି ଓ ଦେଖାଇଛି ।

ଅନ୍ୟ ଦିନେ ପରିଣୀତା କହିଲା–ଆପଣ ଖୁବ୍ ପିଲା ଅଛନ୍ତି । ଆପଣଙ୍କ ପିଲାଳିଆମି ଯାଇ ନାହିଁ ।

ମୁଁ ସେଦିନ ମନେ ମନେ ନିଷିଦ୍ଧ ଶବ୍ଦ ସବୁ ଉଚ୍ଚାରଣ କରିଥିଲି–ପରି, ମୁଁ ଆଦୌ ପିଲା ନୁହେଁ । ସାମାନ୍ୟ ଇଚ୍ଛା କରିଥିଲେ ମୋର ଏତେବେଳକୁ ପିଲା ହୁଅନ୍ତେଣି !

ଆଉ ଦିନେ ପରିଣୀତା କହିଲା– ଭାଇର ସବୁ ସାଙ୍ଗମାନଙ୍କ ଅପେକ୍ଷା ଆପଣ ଖୁବ୍ ଭଲ। ଆପଣ ଖୁବ୍ ବିଶ୍ୱାସୀ।

ମୁଁ ସେଦିନ ହୁଏତ ଚିତ୍କାର କରି ଉଠନ୍ତି, କିନ୍ତୁ କଲି ନାହିଁ । କେବଳ ଆଖି ବନ୍ଦ କରି ଖୁବ୍ ଭିତରେ ଉଚ୍ଚାରଣ କଲି–ପରି, ତୁମେ ମୋଠାରୁ ଦୂରରେ ରୁହ । ମୋତେ ଏତେ ବିଶ୍ୱାସ କର ନାହିଁ । ମୁଁ ଆଦୌ ବିଶ୍ୱାସୀ ହୋଇ ରହିପାରିବିନି । ତୁମର ଏ ବିଶ୍ୱାସ ଦେଖି ମୋର ନିଃଶ୍ୱାସ ବନ୍ଦ ହୋଇଯାଉଛି । ମୁଁ ଜାଣେ ନାହିଁ କେଉଁ ମୁହୂର୍ତ୍ତରେ ତୁମ ସହ ଦୁର୍ଘଟଣା ଘଟେଇ ବସିବି । ସେତେବେଳେ ହୁଏତ ତୁମେ ଠିକ୍ ଠିକ୍ ବୁଝିପାରିବ ମୁଁ କେତେ ଭଲ । ପରିଟା ମୋର, ତୁମେ ମୋଠାରୁ ଦୂରେଇଯାଅ, ମୋ ପାଇଁ ବିରଳ ହୋଇଯାଅ, ଦୁର୍ଲ୍ଲଭ ହୋଇଯାଅ । ମୋ ପାଇଁ ଦୁଷ୍ପ୍ରାପ୍ୟ ହୋଇ ଉଠ । ନ ହେଲେ ଏ ସୁନ୍ଦର ପବିତ୍ର ଭାବପ୍ରବଣତାର ଫୁଲ ଝରିଯିବାକୁ ବେଶୀ ସମୟ ଲାଗିବନି ।

ଅବଶ୍ୟ କଲିକତା ଯିବା ପୂର୍ବରୁ ଚନ୍ଦ୍ରକାନ୍ତ ମୋ ଉପରେ ସାମାନ୍ୟ ବିରକ୍ତ ହୋଇ ଉଠୁଥିଲା। ପରୀ ମୋର ବେଶୀ ପ୍ରଶଂସା କରୁଥିଲା ବୋଲି ଆଉ ଖୁବ୍ ବେଶୀ ବିଶ୍ୱାସ କରୁଥିଲା ବୋଲି । ସେ ମୋ ଅତୀତର ସବୁ ଘଟଣା, ସବୁ ନାରୀ-ଘଟିତ ବ୍ୟାପାର ଜାଣିଥିଲା । ତାର ଧାରଣା ଥିଲା, ସବୁ ନାରୀଦେହକୁ ନେଇ ଖେଳ ଖେଳିବାରେ ମୁଁ ଅଭ୍ୟସ୍ତ । ମୁଁ ନାରୀର ସାନ୍ନିଧ ଚାହେଁ ଏ କଥା ସତ୍ୟ; କିନ୍ତୁ ମୁଁ କେବେ ଚନ୍ଦ୍ରକୁ ବୁଝାଇ ନଥିଲି ଗୋଟିଏ ଫୁଲ ତୋଳି ଆଣି ତାକୁ ଶୁଙ୍ଘି ହାତରେ ଦଳି ମକଚି ପକାଇବା ଆଉ ସେ ଫୁଲର ଖୁବ୍ ପାଖେ ପାଖେ ରହି ସେ ଫୁଲର ସୌନ୍ଦର୍ଯ୍ୟ ଆଉ ସୌରଭରେ ମୁଗ୍ଧ ହେବାର ପାର୍ଥକ୍ୟ । ତେଣୁ ସେ ବେଶ୍ ଆତଙ୍କିତ ହୋଇ ଉଠୁଥିଲା । ମୁଁ ମୋର ଜୀବନ ଦର୍ଶନକୁ ଠିକ୍ ଠିକ୍ ମାନି ଚାଲିଥିଲି । ତେଣୁ ମୁଁ ଥିଲି ପରିର ପ୍ରେମିକ ଓ ପ୍ରହରୀ ।

ଚନ୍ଦ୍ରକାନ୍ତ କଲିକତା ଚାଲିଯିବା ପରେ ପରି ସହ ମୋର ସମ୍ପର୍କ କମେଇ ଦେଇଥିଲି । କାରଣ ପରିର ବାପମା ସାଙ୍ଗସାଥୀ ଶୁଭେଚ୍ଛୁ ପଡ଼ୋଶୀ ସମସ୍ତେ ଆମକୁ ସନ୍ଦେହ କରିବା ଆରମ୍ଭ କରି ଦେଇଥିଲେ । ପରି ଦୁଃଖ ପାଇବ ବୋଲି ମୁଁ ଖୁବ୍ ଯନ୍ତ୍ରଣା ପାଉଥିଲେ ବି ତାଠାରୁ ମୋର କଳା ଛାଇଟାକୁ ଦୂରେଇ ରଖୁଥିଲି ।

କିନ୍ତୁ ଦୂରରେ ରହି ବି କେଉଁ ସବୁ ବିଷଣ୍ଣ ସଞ୍ଜ, ନିର୍ଜ୍ଜନ ମଧ୍ୟରାତ୍ରରେ ପ୍ରାୟ ଗୋଟିଏ ପ୍ରକାର ଦୃଶ୍ୟ ଦେଖୁଥିଲି । ପରି ମୁହଁରେ ସ୍ନିଗ୍ଧ ସୁନ୍ଦର ପବିତ୍ର ହସ । ତା ପଛରୁ ଏକପ୍ରକାର ନୀଳ ଆଲୋକ ତରଙ୍ଗ ଢେଉ ପରି ବୃତ୍ତାକାରରେ ସମଗ୍ର ବିଶ୍ୱରେ ପରିବ୍ୟାପ୍ତ ହୋଇ ଯାଉଛି। ସେ ଆଲୋକ ବୃତ୍ତର କେନ୍ଦ୍ରରେ ମୋ ଛୋଟ ପରିଟା ଛିଡ଼ାହୋଇ କେମିତି ଏକ ବିଶ୍ୱସ୍ତ ଆଖିରେ ମୋତେ ଚାହିଁଛି ।

ତାପରେ ଏଇ ନିଦାରୁଣ ସମ୍ବାଦ । ଚନ୍ଦ୍ରକାନ୍ତ ଅକସ୍ମାତ୍ ସବୁ ଅନୁଭବ, ଉପଲବ୍ଧି, ଭାବପ୍ରବଣତା, ଭଲପାଇବା ଇତ୍ୟାଦିକୁ ଝୁଟା ପ୍ରମାଣ କରି କେବଳ 'ରାମ ନାମ ସତ୍ୟ ହେ, ପ୍ରମାଣ କରି ଅନେକ ଦୂରକୁ ପଳାଇଗଲା ।

ମୁଁ ଜାଣେ ଚନ୍ଦ୍ରକାନ୍ତ ତାର ଚରିତ୍ରକୁ ସୁନ୍ଦର ଗୋଟାଏ ବିଡ଼ା ଗୋପନ ପ୍ରେମପତ୍ର ଭଳି ସମସ୍ତଙ୍କ ଅଗୋଚରରେ କେଉଁ ଏକ ସନ୍ଧିରେ ସଯତ୍ନରେ ରଖିଥିଲା । କିନ୍ତୁ କେଉଁ ଏକ ଅଦୃଶ୍ୟ ମୂଷିକ ଅସମୟରେ ଯେ ସବୁ କାଟି ଛିନ୍‌ଭିନ୍ କରିଦେଲା ।

ଚନ୍ଦ୍ରକାନ୍ତର ମୃତ୍ୟୁ ସମ୍ବାଦ ଶୁଣିବା ପରେ ମୁଁ ଖୁବ୍ ଭାଙ୍ଗିପଡ଼ିଲି । ଜୀବନଟା ଯେ ତାର ବୃଥା ହୋଇଗଲା । ଜୀବନର ଅନେକ ଦ୍ୱାର ଖୋଲିବା ପୂର୍ବରୁ ସେ ଚାଲିଗଲା । ପୃଥିବୀର ଅନେକ ଅନୁଭବ, ଅନେକ ଉପଲବ୍ଧି ସେ ବୁଝିପାରିଲା ନାହିଁ । କେମିତି ଏକ ପ୍ରତିକ୍ରିୟାର ଖସଡ଼ା ମୋ ଭିତରେ ଛପା ହେବାକୁ ଲାଗିଲା । ଏତେଦିନର ଜୀବନର ଦର୍ଶନ କେମିତି ବିଗଳିତ ହେବାକୁ ଆରମ୍ଭ କଲା ।

ସେଦିନ ସଞ୍ଜରେ ଯେତେବେଳେ ଚନ୍ଦ୍ରକାନ୍ତର ଶବ ଆସି ପହଞ୍ଚିଲା ମୁଁ ଦେଖିଲି ତାର ସୁନ୍ଦର ସ୍ୱାସ୍ଥ୍ୟ ପଚି କଳା ପଡ଼ିଯାଇଛି । ତା'ର ବଳିଲା ବଳିଲା ଖେଳାଳିର ହାତ

ଗୋଡ଼ ଫିକା ହୋଇଯାଇଛି । ତାର ସୁନ୍ଦର ନାଲି ଓଠ ଖଣ୍ଡିଏ ଦରପୋଡ଼ା କାଠଭଳି ଦେଖାଯାଉଛି । ମୋ ଭିତରେ ଅନେକ ପ୍ରତିକ୍ରିୟା ଜଳି ଉଠିଲେ । ପ୍ରତିଦିନ ପରିଷ୍କାର ପରିଚ୍ଛନ୍ନ ହୋଇ ଦେହଟାକୁ ଦାଗହୀନ ସୁନ୍ଦର ପବିତ୍ର କରି ଗଢ଼ିବାର କିଛି ମାନେ ହୁଏନା । ମୋତେ ମନେ ହେଲା ପୃଥିବୀର ସବୁଟା ମିଛ । ରାମନାମ ସତ୍ୟ ହେି ବି ମିଛ । ଶରୀରଟା ହିଁ ସତ୍ୟ । ଶରୀରର ସ୍ଥିତି ବିନା ପୃଥିବୀର ସବୁ ଶୂନ୍ୟ, କିଛି ମାନେ ହୁଏନା । ସୂକ୍ଷ୍ମ ଭାବପ୍ରବଣତା ନିରର୍ଥକ । ଦେହର ଦାହ, ପ୍ରାପ୍ତି, ଉପଭୋଗ ଇତ୍ୟାଦି ସ୍ଥୁଳ ଉପଲବ୍ଧି ହିଁ ପ୍ରକୃତ ବସ୍ତୁ । ମନ, ହୃଦୟ, ବିବେକର ସୂକ୍ଷ୍ମ ଆକାଙ୍କ୍ଷା, ନାନ୍ଦନିକତା, ତନ୍ମୟତା ଇତ୍ୟାଦି ଅର୍ଥହୀନ । ଚରିତ୍ର, ନ୍ୟାୟ, ପୁଣ୍ୟ ଇତ୍ୟାଦି ଶବ୍ଦ ମୃତ୍ୟୁ ପାଇଁ ନିରର୍ଥକ । ମୃତ୍ୟୁ ଅବଶ୍ୟମ୍ଭାବୀ । ମଣିଷର ସବୁ ନ୍ୟାୟ, ଧର୍ମବୋଧ, ପବିତ୍ରତା ସତ୍ତ୍ୱେ ଯଦି ଅତର୍କିତରେ ମୃତ୍ୟୁ ଆସେ ତାହେଲେ ଜୀବନକୁ ଉପଭୋଗ କରି, ଅଭିଳାଷରେ ପୂର୍ଣ୍ଣତା ଆଣି ମୃତ୍ୟୁ ପାଇଁ ପ୍ରସ୍ତୁତ ହେବା ଉଚିତ ।

ଚନ୍ଦ୍ରକାନ୍ତକୁ ନେଇ ସେଇ ଭୌତିକ ନିରସ ଶ୍ଳୋଗାନ ଦେଇ ଶ୍ମଶାନକୁ ଚାଲିଗଲା ପରେ ମୁଁ ପରୀ ପାଖକୁ ଗଲି । ପରୀ ବିଛଣାରେ ପଡ଼ି କାନ୍ଦୁଥିଲା । ମୁଁ ଲୁହ ପୋଛି ଦେଲି । ତାକୁ ମୋ ସହ ଆମ ଘରକୁ ଆସିବା ପାଇଁ କହିଲି । ତାର ନାସ୍ତିବାଣୀ ମାନିଲି ନାହିଁ । ତାକୁ ଜୋର କରି ସଙ୍ଗରେ ନେଇ ଆସିଲି ସାନ୍ତ୍ୱନା ଦେବା ପାଇଁ । ଆମ ଘରର ସମସ୍ତେ ସେତେବେଳେ ଚନ୍ଦ୍ର ଘରେ । ଶ୍ମଶାନରେ ଚନ୍ଦ୍ରକାନ୍ତର ଶବ କାନ୍ଧରୁ ଓହ୍ଲାଇ ତଳେ ରଖାଗଲା । ମୁଁ ପରୀକୁ ମୋ ଶୋଇବା ଘରେ ବସାଇଲି । ଚନ୍ଦ୍ରକାନ୍ତ ପାଇଁ ଗାତ ଖୋଳା ହୋଇ କାଠ ମେଲାଇ ଦିଆଗଲା । ମୁଁ ଖଟ ଉପରେ ପଡ଼ିଥିବା କେତେଟା ବହିକୁ ଟେବୁଲ ଉପରକୁ ଫିଙ୍ଗିଦେଇ ବିଛଣା ଚଦରଟା ଝାଡ଼ିଦେଲି । ଚନ୍ଦ୍ରକାନ୍ତକୁ କାଠର ବିଛଣାରେ ଶୁଆଇ ଦିଆଗଲା । ମୁଁ ପରୀକୁ ମୋ ଖଟରେ ଶୁଆଇ ଦେଲି । ଚନ୍ଦ୍ରକାନ୍ତର ଦେହରେ ପେଟ୍ରୋଲ ଢ଼ାଳି ଦିଆଗଲା ଶୀଘ୍ର ଶେଷ ହେବା ପାଇଁ । ପରୀର ଦେହରେ ମୋର ହାତ ବୁଲାଇ ଆଣିଲି । ଚନ୍ଦ୍ରକାନ୍ତର ମୁହଁରେ ତା ସାନଭାଇ ନିଆଁ ଦେଲା । ମୁଁ ପ୍ରଥମଥର ପାଇଁ ପରୀର ଅଧର ଚୁମ୍ବନ କଲି । ନିଆଁରେ ଚନ୍ଦ୍ରକାନ୍ତ ଆଖି ଫୁଟିଗଲା । ପରୀ ତାର ଆଖି ବନ୍ଦ କରି ଆଣିଲା । ଚନ୍ଦ୍ରକାନ୍ତର ସମଗ୍ର ଦେହରେ ନିଆଁ ମାଡ଼ିଗଲା । ପରୀକୁ ମୁଁ ବିବସ୍ତ୍ର କରିଦେଲି । ନିଆଁର ଘେର ମଧ୍ୟରେ ଚନ୍ଦ୍ରକାନ୍ତ ଅଦୃଶ୍ୟ ହୋଇଗଲା । ମୁଁ ମୋ ଦେହରେ ପରୀକୁ ସଂପୂର୍ଣ୍ଣ ଭାବେ ଘୋଡ଼ାଇ ପକାଇଲି ।

ସେଦିନରୁ ସେ ଶ୍ମଶାନରେ ଚନ୍ଦ୍ରକାନ୍ତ ପରେ ଅନେକ ଦେହ ହୁତୁହୁତୁ ହୋଇ ଜଳିଯାଇଛି ଏବଂ ମୋ ଦେହର ଜୁଇରେ ଅନେକ ନାରୀର ଦେହ ଦାହ ହୋଇଯାଇଛି ।

('ମାନସ', ପ୍ରଥମ ବର୍ଷ, ଏକାଦଶ ସଂଖ୍ୟା, ସେପ୍ଟେମ୍ବର, ୧୯୭୩)



# ମୁଁ, ପାଣିକଳ, ହାତଘଣ୍ଟା ଓ ଅସୀମାକୁ ନେଇ ଇତିହାସର ଆଉ ଏକ ଅଲେଖା ଅଧ୍ୟାୟ

ମୁଁ ଇତିହାସ ବହି ଧରି ରାସ୍ତାରେ ଚାଲେ । ରାସ୍ତା, ରାସ୍ତା ଏବଂ ରାସ୍ତା । ଦୁଇପଟରେ ବଡ଼ ବଡ଼ କୋଠା, ବାଲକୋନି । ବାଲକୋନିର ରେଲିଂ ଧରି ଯିଏ ଛିଡ଼ା ହୋଇଥାଏ ମୋର ଇତିହାସ ବହି ଦେଖି ପର୍ଦ୍ଦା ଭିତରକୁ ପଳାଏ । ହୁଏତ ପର୍ଦ୍ଦା ଭିତରେ ଥାଇ କୌତୂହଳରେ ଥରେ ମୋତେ, ଥରେ ମୋର ଇତିହାସ ବହିକୁ ଦେଖେ । ଶେଷରେ ଗୋଟିଏ ମୋଡ଼ ଉପରେ ଦେଖେ ଜଳପ୍ରପାତ ପରି ପାଣିକଳ । ପାଣି ବହିଚାଲେ, ବହିଚାଲେ । ମୁଁ ଚାବି ଘୂରାଏ ବନ୍ଦ କରିବା ପାଇଁ । ବନ୍ଦ ହୁଏ ନାହିଁ । ସାମ୍ନାର ଦୋମହଲା ଘରକୁ ଚାହିଁ ଦେଖେ ଗୋଟିଏ ସତର ଅଠର ବର୍ଷର ଝିଅ ବାଲକୋନିରେ ରେଲିଂ ଧରି ଛିଡ଼ା ହୋଇଛି । ମୋର ଇତିହାସ ବହି ଦେଖିଛି ନିଶ୍ଚୟ । କିନ୍ତୁ ଭିତରକୁ ଦୌଡ଼ି ପଳାଇ ଯାଉନାହିଁ । ସେ ବୋଧହୁଏ କୌତୂହଳୀ ହୋଇ ଦେଖୁଛି ମୁଁ କିପରି ପ୍ରାଣପଣେ ଚେଷ୍ଟା କରୁଛି ପାଣିର ସ୍ରୋତ ବନ୍ଦ କରିବାର ପ୍ରଚେଷ୍ଟାରେ ମୋର ତିନିଘଣ୍ଟା ସମୟ ଖର୍ଚ୍ଚ ହେଲାଣି । ତଥାପି ଝିଅଟା ଛିଡ଼ା ହୋଇଛି । ବାଇଗଣୀ ବ୍ଲାଉଜ ଆଉ ନୀଳ ଶାଢ଼ି । ମୁହଁରେ ହସମିଶା କାରୁଣ୍ୟ । ଦୂରରୁ ବୁଝିହୁଏ ନାହିଁ ଝିଅଟି ହସୁଛି କି କାନ୍ଦୁଛି ।

ଠିକ୍ ଏମିତି ଗୋଟିଏ ଝିଅକୁ କେତେବର୍ଷ ତଳେ ଚିହ୍ନିଥିଲି । ଅବଶ୍ୟ ସେ ମୋର ସାରା ସ୍ନାୟୁରେ ଶିହରଣ ପରି ମାଡ଼ିଯାଇଥିଲା । ତାର ଅନେକ ଛବି ଏ ଇତିହାସ ବହିରେ ଅଛି । ଅନେକ ଅନେକ ଘଟଣା ଦୁର୍ଘଟଣାର ମୁହୂର୍ତ୍ତ ସବୁ ପାରି ହୋଇ ଯେଉଁ ସ୍ଥାନରେ ପହଞ୍ଚିଥିଲି ସେ ସ୍ଥାନରୁ ସେ ମୋତେ ଶେଷ ଚିଠି ଲେଖିଥିଲା– "ତୁମକୁ ମୁଁ ଏ ଚିଠି ଲେଖୁଛି ତୁମ ସହ ମୋର ଜନ୍ମଜନ୍ମାନ୍ତରର ବିଚ୍ଛେଦ ପାଇଁ ।" ଝିଅଟିର ନାମ ଅବଶ୍ୟ ମୁଁ ଭୁଲିଯାଇନି, ଭୁଲି ନଥିଲେ ମୁଁ ତ ଏତେ ପର୍ଯ୍ୟନ୍ତ ବଞ୍ଚିନଥାନ୍ତି ।

ମୋତେ ପ୍ରେମ କରିବା ଅପେକ୍ଷା ପ୍ରେମପତ୍ର ଲେଖିବାକୁ ଭଲ ଲାଗେ । ମୁଁ ଯାକୁ ପ୍ରେମପତ୍ର ଲେଖିବି, ଇତିହାସ ବହିରେ ଲେଖିବାକୁ ଜାଗା ନାହିଁ । ମଲାଟ ଉପରେ ଲେଖାଯାଇପାରେ । ପ୍ରେମପତ୍ର ଲେଖିଲା ବେଳେ ମୁଁ ସମୟକୁ ଅସ୍ୱୀକାର କରେ । ମୁଁ ଚାହେଁ ସମୟହୀନତା । ସେଇ ପାଣିର ସ୍ରୋତ ପାଖରେ ବସି ଲେଖିବାକୁ ଆରମ୍ଭ କରେ–

ମୁଁ ଜାଣେନା ତୁମ ନାଁ କଣ ! ମୋତେ ଅସୀମା ନାଁଟା ଭଲ ଲାଗେ । ସେଇ ନାମରେ ତୁମକୁ ଲେଖିବି । ଅସୀମା ନାମରେ କେହି ପ୍ରେମିକା ଇତ୍ୟାଦି ନଥିଲେ ବୋଲି ତୁମେ ବିଶ୍ୱାସ କରିପାର । କେବଳ ନାଁଟାର ପ୍ରେମରେ ପଡ଼ିଯାଇଛି ମୁଁ । ଯେକୌଣସି ସୁନ୍ଦରୀ ସ୍ନେହୀ ଝିଅକୁ ଅସୀମା ନାମରେ ଡାକିବାକୁ ଇଚ୍ଛା ହୁଏ । ତୁମେ ଅନନ୍ତ କାଳ ପାଇଁ ସେହି ଭଙ୍ଗୀରେ ଛିଡ଼ା ହୋଇଥାଅ । ପୃଥିବୀରେ ବର୍ତ୍ତମାନ ସମୟର ସ୍ରୋତ ସ୍ଥିର ହୋଇ ରହିଅଛି । ତେଣୁ ତୁମର ଭୟ କରିବାର କୌଣସି କାରଣ ନାହିଁ । ମୁଁ ଯଦି ତୁମକୁ କହେ—ଅସୀମା, ଅସୀମା, ଅସୀମା ମୋର, ମୁଁ ତୁମ ପାଇଁ ଅନୁଭବ କରୁଛି, ସବୁ ଗ୍ରହରେ ଗୋଟିଏ ଶବ୍ଦ, ସବୁ ନକ୍ଷତ୍ରରେ ଗୋଟିଏ ବ୍ୟଞ୍ଜନା, ସମଗ୍ର ବିଶ୍ୱରେ ଗୋଟିଏ ଅଭିବ୍ୟକ୍ତି । ତୁମ ପାଇଁ ପୃଥିବୀରେ ମୋର ସଂଗ୍ରାମ, ସାଧନା ଏବଂ ମୋର ଅସ୍ତିତ୍ୱର ସ୍ଥିତି । ତା' ହେଲେ ତୁମେ କ'ଣ ଆଶ୍ଚର୍ଯ୍ୟ ହେବ ? କାରଣ ମୁଁ ତୁମକୁ ଭଲପାଏଁ, ମୁଁ ତୁମକୁ ନିଶ୍ଚୟ ଭଲପାଏ । ମୁଁ ତୁମକୁ ଭଲପାଏ, ଯେହେତୁ ଭଲ ପାଇବା ବଞ୍ଚିବାର ଏକ ଅନନ୍ୟ ଉପାଦାନ, ତେଣୁ ମୁଁ ତୁମକୁ ଭଲପାଏ, ମୁଁ ତୁମକୁ ଭଲପାଏ, ମୁଁ ତମକୁ ଭଲପାଏ, ମୁଁ ତମକୁ ଭଲପାଏ, ମୁଁ ତୁମକୁ ଭଲପାଏ । ମୁଁ କିଛି ଦୂର ଚିଠି ଲେଖି ବାଲକୋନିକୁ ଚାହିଁ ଦେଖେ, ସେ ଝିଅଟି କାହିଁ ? ରେଲିଂ ଧରି ଛିଡ଼ା ହୋଇଛନ୍ତି ଜଣେ ଅଠତିରିଶ ଅଣଚାଳିଶ ବର୍ଷର ପ୍ରୌଢ଼ା, ଅବଶ୍ୟ ତାଙ୍କ ଦେହରେ ବାଇଗଣୀ ବ୍ଲାଉଜ ଓ ନୀଳ ଶାଢ଼ି । ତାଙ୍କ ମୁହଁରେ ଯୁଗପତ୍ ହସ ଓ କାରୁଣ୍ୟ। ଦୂରରୁ ଠିକ୍ ବୁଝିହୁଏ ନାହିଁ । ସେ ହସୁଛନ୍ତି କିମ୍ବା କାନ୍ଦୁଛନ୍ତି ।

ମୁଁ ପାଣିକଳକୁ ଚାହିଁ ଦେଖେ ପ୍ରପାତ ଭଳି ପାଣି ବହିଚାଲିଛି, ବହିଚାଲିଛି, ବହିଚାଲିଛି । ମୋ ହାତଘଣ୍ଟାକୁ ଚାହିଁ ଦେଖେ—ଘଣ୍ଟାର ଡାଏଲ ତରଳି ଥପ୍ ଥପ୍ ହୋଇ ଚିଠି ଉପରର ଅକ୍ଷର ଲିଭାଇବାରେ ଲାଗିଛି ।

ମୁଁ ଇତିହାସ ବହି ବନ୍ଦ କରେ ।



**['ଶ୍ରେୟାନ' ଗଳ୍ପ ସଂକଳନ, ଅକ୍ଟୋବର ୧୯୭୩ । ସଂକଳକ : କିଶୋର ସ୍ୱାଇଁ (ଉଷସ୍ତୀ) । ପ୍ରକାଶନ ଓ ସଂପାଦନ : ଶ୍ରେୟାନ ସଂସଦ, ଭୁବନେଶ୍ୱର । 'ଆଜିର ଗଳ୍ପ', ୧୯୭୩ରେ ମଧ୍ୟ ପୁନଃ ପ୍ରକାଶିତ ।]**

# ଝର୍କା ପାଖରେ ସାରାଦିନ

ମୁଁ ତୁମକୁ ଅପେକ୍ଷା କରିଛି ।

ମୁଁ ତୁମକୁ ଅପେକ୍ଷା କରି ଏଇ ଘରେ ବସିଛି ।

ତୁମକୁ ଅପେକ୍ଷା କରିବାରେ ଯନ୍ତ୍ରଣା ଯେତିକି ଆନନ୍ଦ ବି ସେତିକି ।

ମୁଁ ଖୁବ୍ ସକାଳରୁ ଏଇଠି ଚାହିଁ ବସିଛି, ଆସି ସଞ୍ଜ ହେଲାଣି ।

ମୁଁ ଜାଣେ ତୁମେ ନିଶ୍ଚୟ ଆସିବ ।

ତୁମ ପାଇଁ ମୋର ସାରାଦିନ ବିତିଗଲା ।

ମୁଁ ଏଇ ଝର୍କାରେ ବସିଛି ।

ଝର୍କାଠୁଁ ଦୂରରେ ବସିଲେ ରେଲିଂ ମିଶା ରାସ୍ତା ଦେଖାଯାଏ, ରେଲିଂ ଭିତରେ ନାକ ଗଳାଇ ବସିଲେ କେବଳ ରାସ୍ତା ।

ତୁମକୁ ଅପେକ୍ଷା କଲାବେଳେ ମୁଁ ମନେ କରେ ନାହିଁ ଯେ ମୁଁ ଗୋଟିଏ ବନ୍ଦ କୋଠରିରେ ଅଛି ।

ମୁଁ କେବଳ ଏଇଠି ବସି ରାସ୍ତା ଦେଖେ, ଅପେକ୍ଷା କରେ ତୁମକୁ ।

ମନେପଡୁନାହିଁ ତୁମେ ଏ ରାସ୍ତାରେ ଆସିବାର ସର୍ତ୍ତ କରିଥିଲ କି ନାହିଁ ।

ତଥାପି ମୁଁ ଚାହେଁ ରାତି ହେବା ଆଗରୁ ତୁମେ ଏଇ ରାସ୍ତାରେ ତୁମର ଆଲୋକ ବିକିରଣ କରି ଚାଲିଯିବ ।

ତୁମ ଆଲୋକରେ ମୁଁ ସ୍ନାନ କରିବି ।

କ୍ରମେ ମଣିଷରୁ ଟିକି ଏକ ଆଲୋକର ଚଢ଼େଇ ହୋଇ ସୂର୍ଯ୍ୟାସ୍ତର ଆକାଶରେ ମିଶିଯିବି ।

ସୂର୍ଯ୍ୟାସ୍ତ ପରେ ଆକାଶରୁ ଏକ ଦିବ୍ୟ ଆଲୋକ ବିଚ୍ଛୁରିତ ହୁଏ ଯେ !

ସେ ଆଲୋକ ସୂର୍ଯ୍ୟର ନୁହେଁ କି ନକ୍ଷତ୍ରର ନୁହେଁ ।

ସେ ଏକ ଭିନ୍ନ ଆଲୋକର ଆଲୋକ ।

ସେ ଆଲୋକରେ ବୋଧହୁଏ ସମସ୍ତେ ନିଜର ସତ୍ତା ହରାନ୍ତି ।

ସତ୍ତା ହରାଇବା ପୂର୍ବରୁ ମୁଁ ତୁମକୁ ଅପେକ୍ଷା କରୁଛି ।

ଏ ଘରେ ଆଲୋକ ନାହିଁ । ଭୀଷଣ ଅନ୍ଧକାର ।
ଧଳା କାନ୍ଥ ସବୁ କଙ୍କାଳର ତିଆରି ବୋଧହୁଏ ।
ଝର୍କା ରେଲିଂ ଦେଇ ରାସ୍ତାର ବେଶ୍ ଗୋଟିଏ ଅଂଶ ଆଖିରେ ପଡ଼େ ।
ମୁଁ ଜାଣେ ତୁମେ ଆଉଥରେ ଏଇ ରାସ୍ତା ଦେଇ ଯିବ ।
ତୁମରି ଅପେକ୍ଷାରେ ତେଣୁ ସକାଳୁ ସଞ୍ଜଯାଏ କିଛି କାମ ନକରି ବସିଛି ।
ଅପେକ୍ଷାର ଏକ ନିର୍ଦ୍ଦିଷ୍ଟ ସ୍ୱର ଅଛି, ଗନ୍ଧ ଅଛି, ସ୍ୱାଦୁ ଅଛି, ବର୍ଣ୍ଣ ଅଛି ।
ଜୀବନଟାର ଅନ୍ୟନାମ ଅପେକ୍ଷା ଦେଲେ କ୍ଷତି କଣ ?
କିନ୍ତୁ କାହାକୁ ଅପେକ୍ଷା ?
ଯାହାକୁ ହେଉ, ମୁଁ କିନ୍ତୁ ନିର୍ଘାତ୍ ତୁମକୁ ଅପେକ୍ଷା କରିଛି ।
ତୁମରି ଆଲୋକରେ ମିଶିଯିବା ପାଇଁ ମୋର ଏତେ ଅପେକ୍ଷା ।
ଦିନସାରା ଏଇଠି ବସି ମୁଁ ଅଜବ ଦୃଶ୍ୟ ସବୁ ଦେଖିଛି ।
ଆଜି ସକାଳେ, ଠିକ୍ ସୂର୍ଯ୍ୟୋଦୟ ପରେ–
ଚାରିଆଡ଼େ ସୁନ୍ଦର ସ୍ନିଗ୍ଧ ଆଲୋକ, ହାଲୁକା ପବନ ।
ଜଣେ ପ୍ରୌଢ଼ା ।
ମୁଣ୍ଡରେ ଅଧା ଓଢ଼ଣା ।
ମୁଣ୍ଡରେ ଚକ୍‌ଚକ୍ ସିନ୍ଦୂର ଟୋପା ।
ପୋଷାକ ପରିଚ୍ଛଦ ଅପେକ୍ଷାକୃତ ମଳିନ ।
ହାତ ପାପୁଲି ହଳଦିଆ ରଙ୍ଗ ।
ମୁଁ ତାଙ୍କ ଛାତିକୁ ଚାହିଁରହିଥିଲି ।

ଦେଖିଲି, ତାଙ୍କ ଛାତିରୁ ଆଶ୍ଚର୍ଯ୍ୟ ଏକ ସ୍ରୋତ ବାହାରି ପୃଥିବୀର ଚାରିଆଡ଼େ ନଦୀ ହୋଇ ବହିଯାଉଛି ।

ପୃଥିବୀର ଜୀବଜନ୍ତୁ ପକ୍ଷୀ, ସମସ୍ତେ ସେ ପାଣି ପିଇ ଆଶ୍ଚର୍ଯ୍ୟ ଭାବେ ବଞ୍ଚି ଯାଉଛନ୍ତି । କିନ୍ତୁ ସେ ଧୀରେ ଧୀରେ ରାସ୍ତା ଉପରୁ ଉଭେଇଗଲେ ।

ମୁଁ କାହିଁକି କେଜାଣି ହଠାତ୍ ଅନୁଭବ କରିପାରିଲି ତୁମେଇ ଆସିଥିଲ ।
ତୁମେ ମୋରି ପାଇଁ ଆସିଥିଲ ।

ମୋର ଇଚ୍ଛା ହେଉଥିଲା ଧାଇଁଧାଇଁ ତୁମ ପାଦ ତଳେ ଅସହାୟ ହୋଇ ବସି ପଡ଼ନ୍ତି, ଆଉ ତୁମେ ତୁମ ହଳଦିଲଗା ହାତରେ ମୋ ମୁଣ୍ଡରେ ହାତ ବୁଲାଇ ଦିଅନ୍ତ ?
କିନ୍ତୁ ପାରିଲି ନାହିଁ ।
ତୁମେ ଉଭେଇଗଲ ।
ଖରା ବି ବେଶ୍ ଟାଣ ହୋଇ ଆସିଲା ।

ମୋ ଆଖିପତା କେମିତି ଭାରୀ ହୋଇ ଆସିଲା ।

ହଠାତ୍ ଦେଖିଲି ଗୋଟିଏ ଝିଅ ।

ବୟସ ଚଉଦ ପନ୍ଦର ହେବ ।

ସୁନ୍ଦର ଆକାଶୀ ରଙ୍ଗର ଫ୍ରକ୍ ।

ଅଣ୍ଟା ତଳେ ସାପର ମୁହଁ ଭଳି ବେଣୀ ଶେଷର କଳା ରିବନ ଲହଲହ ହେଉଥିଲା ।

ଅନୁଚ୍ଚ ଛାତିରେ ଜାକି ଧରିଥିଲା ଗୋଛାଏ ବହି ।

ଖାତିର ନ କରି ପ୍ରାୟ ନାଚିବା ଭଙ୍ଗୀରେ ସେ ଆଗେଇ ଚାଲିଥିଲା ।

ମୁଁ ତାର ଅନୁଚ୍ଚ ଛାତି ଆଉ ଚଞ୍ଚଳ ଅନୁସନ୍ଧିତ୍ସୁ ଚାହାଣି ଉପରେ ଦୃଷ୍ଟି ସ୍ଥିର ରଖିଥିଲି ।

ସେ କଣ ଅଦୃଶ୍ୟ ହୋଇଗଲା ।

ହଠାତ୍ ମୁଁ ଅନୁଭବ କଲି ସେ ତୁମେ ।

ତୁମ ପରି ତାର ଦାୟିତ୍ୱହୀନ ଚାଲି। ତୁମର ଆନିତମ୍ବ ବେଣୀ ପରି ତାର ବେଣୀ ।

ମୋର ଖୁବ୍ ଇଚ୍ଛା ହେଉଥିଲା, ରେଲିଂଗୁଡ଼ା ଭାଙ୍ଗିପକାନ୍ତି ।

ଦୌଡ଼ିଯାଆନ୍ତି ତୁମ ପର୍ଯ୍ୟନ୍ତ ।

ତୁମର ମୁଣ୍ଡକୁ ମୋ ଛାତିରେ ଆଉଜାଇ ଆଣି ତୁମ କପାଳରେ ସରୁ ଗୋଟିଏ ଚୁମା ଦିଅନ୍ତି ।

ତୁମେ ମୋତେ ଚିମୁଟି ଦେଇ ଦୂରକୁ ଦୌଡ଼ିପଳାନ୍ତ ।

କିନ୍ତୁ ମୁଁ ରେଲିଂ ଭିତରେ ବସି ବସି କ୍ଳାନ୍ତ ହେଲି ।

ଦ୍ୱିପ୍ରହର ହୋଇ ଉଠିଲା ।

ହଠାତ୍ ଦେଖିଲି ସେ ରାସ୍ତାରେ ଜଣେ ତରୁଣୀ ।

ସଂକୋଚପୂର୍ଣ୍ଣ ଅଥଚ ଦୃପ୍ତ ତାଙ୍କର ପ୍ରତିଟି ପଦକ୍ଷେପ ।

ମୁଁ ଦେଖିଲି ତାଙ୍କ ବେକ ତଳର ଔଦ୍ଧତ୍ୟ ।

ତାଙ୍କ ଅଣ୍ଟାତଳର ଉତ୍ତାପ କଥା ଚିନ୍ତା କରି ଝାଳେଇ ଉଠିଲି ।

ତାଙ୍କ ବକ୍ରରେଖାଗୁଡ଼ିକ ଚମତ୍କାର ଦେଖାଯାଉଥିଲା ।

ସେ ମୋତେ ଥରେ ଚାହିଁ ଖୁବ୍ ଚଞ୍ଚଳ ଅଦୃଶ୍ୟ ହୋଇଗଲେ ।

ମୁଁ ଚିତ୍କାର କରି ଉଠିଲି ।

ତୁମେ ଏତେ କମ୍ ସମୟ ପାଇଁ ମୋ ପାଖକୁ ଆସିଥିଲ ।

ମୋର ଏତେ ସମୟର ଅପେକ୍ଷାକୁ କେତୋଟି ସେକେଣ୍ଡରେ ହତ୍ୟା କରି ପୁଣି ଏକ ଗଭୀର ଅପେକ୍ଷାର ଜନ୍ମ ଦେଇ ଦେଲ !

ଖୁବ୍ ଇଚ୍ଛା ହେଉଥିଲା ଦ୍ୱିପ୍ରହରର ଉତ୍ତାପରେ ଧାଇଁଯାଇ ସେଇ ଖୋଲା ରାସ୍ତାରେ ତୁମକୁ ବିବସ୍ତ୍ର କରିପକାନ୍ତି ।

ତୁମର ସର୍ବାଙ୍ଗ ଚୁମ୍ବନରେ ଓଦା କରି ଦିଅନ୍ତି ।

ତୁମେ କେବଳ ଏକ ଆଶ୍ଚର୍ଯ୍ୟ ପରିତୃପ୍ତି ନେଇ ସେଇ ପୁରୁଣା, ଅନେକଥର ଉଚ୍ଚାରିତ ଶବ୍ଦ କେତେଟା ଉଚ୍ଚାରଣ କରନ୍ତ ।

କିନ୍ତୁ କିଛି ହେଲା ନାହିଁ ।

ସମୟ ଆଗେଇଗଲା ।

ଅପରାହ୍ଣ ।

ଖରାର ରଙ୍ଗ ଅପେକ୍ଷାକୃତ ଫିକା ।

କ୍ଳାନ୍ତିରେ ଭରପୂର ମୋର ଆଖି ।

ପୁଣି ଦୃଶ୍ୟ ।

ଝିଅଟିଏ ରାସ୍ତା ଉପର ଦେଇ ଗଲା ।

ମୁଣ୍ଡରେ ଝାମ୍ପୁରୁ ଝୁମ୍ପୁରୁ ବାଳ ।

ତାର ଦେହର ସବୁ ଅଂଶ ମୁଁ ଦେଖିପାରୁଥିଲି ।

ଖୁବ୍ ଛୋଟ ଝିଅଟି, ନୂଆ ଚାଲି ଶିଖିଥିଲା ବୋଧହୁଏ, ଟଳି ଟଳି ଚାଲୁଥିଲା ।

ସେ ମୋ ପାଇଁ ତା ମା'ର କୋଳ ଛାଡ଼ି ଉଠି ଆସିଲା କି ?

ବିଶ୍ୱାସ କର, ମୁଁ ହଠାତ୍ ଚିତ୍କାର କରି ଉଠିଲି ।

ତାର ନାକ, ଆଖି, ଓଠ, କାନ, ଛାତି, ପେଟ, ହାତ, ଗୋଡ଼ ସବୁ ତୁମ ଭଳି ।

ମୁଁ ଜାଣେ ତୁମେ ଆସିଥିଲ ।

ମୁଁ ହଠାତ୍ ତୁମକୁ ଚିହ୍ନିପାରି ନଥିଲି ।

ତୁମେ ଅଦୃଶ୍ୟ ହେଲା ପରେ ମୋର ମନେହେଲା, ମୁଁ ଥରେ ରେଲିଂ ଭାଙ୍ଗି ତୁମ ପାଖକୁ ଧାଇଁଯିବି ।

ତୁମକୁ ଖୁବ୍ ଜୋରରେ ଜାବୁଡ଼ି ଧରି ପୂର୍ବରୁ ତୁମେ ମୋ କୋଳକୁ ଡେଇଁ ପଡ଼ନ୍ତ ।

କିନ୍ତୁ ତା ବି ହେଲାନି ।

ରାସ୍ତା ନିଶୂନ୍ ।

ମୁଁ ମୁହୂର୍ତ୍ତଗୁଡ଼ା ଗଣି ଚାଲିଛି, କାଳେ ଆଉଥରେ ତୁମେ ଏ ବାଟରେ ଆସିବ ପରା ।

ସୂର୍ଯ୍ୟାସ୍ତ ହୋଇ ଆସୁଛି ।

ତୁମେ କଣ ସତରେ ଆଉ ଆସିବ ନାହିଁ ?

ଦିନର ଆଲୋକ ଉଭେଇଯିବା ପୂର୍ବରୁ ତୁମେ ଥରେ ଆସ ।

ସୂର୍ଯ୍ୟ ଅସ୍ତ ହୋଇ ଆସୁଛି । ହେଇ ଦଳେ ଲୋକ ଦୂରରୁ ଆସୁଛନ୍ତି ।

ତୁମେ କଣ ସତରେ ସବାରି ଚଢ଼ି ମୋ ପାଖକୁ ଆସୁଛ ?
ସେ ଲୋକମାନେ କଣ ସବୁ ଗୀତ ବୋଲୁଛନ୍ତି ।
ତୁମେ ବିବାହ ସଂଗୀତ ଗାଇ ଗାଇ ମୋ ପାଖକୁ ଆସୁଛ !
ତୁମେ ସତରେ ମୋତେ ଏତେ ଭଲପାଅ !
ତୁମେ ସେମାନଙ୍କ କାନ୍ଧରେ ଏମିତି ଶୋଇଛ କାହିଁକି ?
ସେମାନେ କାହିଁକି ଭଗବାନଙ୍କ ନାମ ଉଚ୍ଚାରଣ କରୁଛନ୍ତି ?
ମୁଁ ହଠାତ୍ ଏକ ଆଶ୍ଚର୍ଯ୍ୟ ଆଲୋକରେ ଉଦ୍‌ଭାସିତ ହୋଇ ଉଠୁଛି ।
ମୋର ଗୋଡ଼, ହାତ, ଦେହ ସବୁ ଅଚଳ ହୋଇଯାଉଛି ।
ସବୁଗୁଡ଼ା କ୍ରମେ ମିଳେଇ ଆସୁଛନ୍ତି ।
ସବୁଗୁଡ଼ା ତେଜପୁଞ୍ଜ ହୋଇ ଉଠୁଛି ।
ମୁଁ କେବଳ ଗୋଟିଏ ତେଜପୁଞ୍ଜ ଆଲୋକପିଣ୍ଡ ।
ଧୂଆଁ ଭଳି ଲମ୍ୱିଯାଉଛି ମୁଁ ।
ଝର୍କା ରେଲିଂ ଟପି ବାହାରକୁ ଚାଲିଯାଉଛି ।
ତୁମେ ରାସ୍ତାରେ ସେ ଲୋକଙ୍କ କାନ୍ଧରେ ଅପେକ୍ଷା କରିଛ !

ମୁଁ ତୁମକୁ ମୁହଁରୁ ଧଳା ଓଢ଼ଣା ଉଠାଇ ଦେଲି । ସେମିତି ତରୁଣୀ ତୁମେ, ଦ୍ୱିପ୍ରହରରେ ଆସିଥିଲ ।

ସେଇ ତୁମେ, ସେଇ ଶୁଖିଲା ଓଠ, ନିଷ୍ପଲକ ଆଖି, ଚମତ୍କାର ଦେହର ସବୁ ବକ୍ରରେଖା ।

ମୁଁ ତୁମର ସର୍ବାଙ୍ଗରେ ମାଡ଼ିଗଲି । ତା'ପରେ ବାୟୁମଣ୍ଡଳରେ, କ୍ରମେ ବିଶ୍ୱ ଚରାଚରରେ ପରିବ୍ୟାପ୍ତ ହୋଇଗଲି ।

ତୁମକୁ କାନ୍ଧେଇଥିବା ଲୋକମାନେ ଖୁବ୍ ଜୋରରେ ରାମନାମ ସତ୍ୟ ହେ ଉଚ୍ଚାରଣ କରି କରି ସେଇ ରାସ୍ତାରେ ଆଗେଇଗଲେ ।

ମୁଁ ଦେଖିଲି ସେଇ ଅଦୃଶ୍ୟ ଆଲୋକର ଆଲୋକ ଉଭେଇଯାଇ କ୍ରମେ ଅନ୍ଧକାର ଘୋଟି ଆସିଲା ଏବଂ ସେ ଅନ୍ଧକାରରେ ଜଳସ୍ଥଳ ଆକାଶର ପରିସୀମା ଏକାକାର ହୋଇଗଲା ।

**('କଥାକାର', ଶାରଦୀୟ ସଂଖ୍ୟା, ୧୯୭୩)**



# ଅଫେରା ଚାରୋଟି ପାଦର ମୁକ୍ତ ରଂଗିନ ଆକାଶ ପାଇଁ ବେଳାଭୂମିର ବେଲୁନବାଲା ଓ ଚଣାବିକାଳି ଝିଅ

ବାଲି ଉପରେ ଅନେକ ପାଦ ଚିହ୍ନ, ଅନେକ ଚିରା କାଗଜ ଓ ସିଗାରେଟ ଖୋଳ । ସେ ସବୁକୁ ମାଡ଼ି ମାଡ଼ି ଚାରୋଟି ପାଦ ଅତିକ୍ରମ କରି ଚାଲିଗଲା । ଛୋଟ ଗୋରା ପାଦ ଦି'ଟା ରଙ୍ଗିନ ଜୋତା ଉପରେ ଥାଇ ବି ବାଲି ଭିତରେ ଦବି ଦବି ଯାଉଥିଲା । ଆଉ ଦି'ଟା ପାଦରେ ଚିକ୍‌ଚିକ୍ କଳା ଜୋତା । ଜୋତା ଗୋଇଠିର ଉପର ଭାଗକୁ ଶୁଖିଲା ଗୋବର ଚିହ୍ନ । ସେ ଚାରୋଟି ପାଦ ଖୁବ୍ ପାଖାପାଖି ଚାଲି ଦୂରକୁ ଦୂରକୁ ଘୁଞ୍ଚିଯାଇ ଅଦୃଶ୍ୟ ହୋଇଗଲେ । କେବଳ ଅନେକ ପାଦ ଚିହ୍ନ ଉପରେ ପୁଣି ଦୁଇଯୋଡ଼ା ପାଦ ଚିହ୍ନ ଅଙ୍କିତ ହୋଇଗଲା । ସେ ସେପଟରୁ ମୁହଁ ବୁଲାଇ ଆଣିଲା । ସମୁଦ୍ର ଆଡ଼େ ଚାହିଁଲା । ଢେଉଟା ଗୋଟିଏ ସିଂହଭଳି ଡିଆଁ ମାରିଲା ବେଳାଭୂମିକୁ । ହୁ କରି ମେଞ୍ଚାଏ ଫେଣ ମାଡ଼ି ଆସି ବାଲିରେ ଶୁଖିଗଲା । ଢେଉଟା ସ୍ରୋତ ହୋଇ ଭିତର ଆଡ଼େ ନ ଫେରୁଣୁ ଅଧାରେ ଆଉ ଗୋଟିଏ ବେଳାମୁଖୀ ଢେଉ ତା ଉପରକୁ ଡିଆଁ ମାରିଲା । ସଂଘର୍ଷରେ ଅନେକ ଫେଣ ସୃଷ୍ଟି ହେଲା । କିନ୍ତୁ ପୂର୍ବ ଭଳି ଦ୍ରୁତଗତିରେ ବେଳାଭୂମିର ଉପରକୁ ମାଡ଼ିଆସି ପାରିଲାନି । ଆଉ ଗୋଟିଏ ବଡ଼ ଢେଉ ମାଡ଼ି ଆସିଲା । ନୀଳଫ୍ରକ ପିନ୍ଧା ଝିଅଟା ହାତରେ ଦୁଇଟା ନାଲି ଜୋତା ଧରି ଟିକିଏ ପାଣି ପାଖକୁ ଆଗେଇ ଯାଇଥିଲା । ଢ଼େଉଟା ତାକୁ ଛୁଇଁବ ବୋଲି ହଠାତ୍ ଡେଇଁପଡ଼ି ଶୁଖି ଆସୁଥିବା ବାଲିରେ ମାଡ଼ି ଆସିଲା । କିନ୍ତୁ ଝିଅଟି ଛାତି ଉପରେ ପଡ଼ିଥିବା ବେଣୀଟାକୁ ପଛକୁ ଛାଟି ଢେଉ ଆଗେ ଆଗେ ଦୌଡ଼ିଲା ଉପରକୁ । ଢେଉଟା ଝିଅଟାକୁ ଛୁଇଁ ପାରିଲାନି । ଝିଅଟା କୂଳରେ ଠିଆ ହୋଇଥିବା ଜଣେ ପ୍ରୌଢ଼ାକୁ ଚାହିଁ ତାର ସୁନ୍ଦର ଦାନ୍ତ ଦେଖାଇ ହସିଲା । ପୁଣି ସନ୍ତର୍ପଣରେ ସମୁଦ୍ର ଆଡ଼େ ଆଗେଇଗଲା । ସେ ଖୁବ୍ ଦୂରକୁ ଚାହିଁଲା । ଖୁବ୍ ଦୂରରେ ଗୋଟିଏ ନୌକା ଉବୁଟୁବୁ ହେଉଛି । ସମୁଦ୍ରର ଅତଳ ଗର୍ଭକୁ ତଳେଇ ଯାଇ

ପୁଣି ଆକାଶ ଭିତରକୁ ଛିଟିକି ପଡୁଛି ଯେପରି । ସେ ତା ସାମ୍ନାକୁ ଚାହିଁଲା । ତା ପାଖ ଦେଇ ଦଳେ ସାନପିଲା ଢେଉ ଭଳି ନାଚି ନାଚି ପାଣି ପାଖକୁ ଚାଲିଗଲେ । ସେମାନେ ତା କାନ୍ଧର କ୍ରସବାଡ଼ିରେ ଝୁଲୁଥିବା ନାଲି ନେଳି ବେଲୁନକୁ ଥରେ ଅନ୍ୟମନସ୍କ ଭାବେ ଚାହିଁଲେ । କେତେଗୁଡ଼ିଏ ବେଲୁନ ବଡ଼ ଢିଳାବି ଭଳି ତଳକୁ ଝୁଲି ରହିଥିଲା, କେତେଗୁଡ଼ିଏ ସାପର କୁଣ୍ଡଳୀ ଭଳି ମୋଡ଼ିମାଡ଼ି ହୋଇ ପବନରେ ଉଡୁଥିଲା । ସେ ଜାଣେ ତା କଡ଼ ଦେଇ ଯେଉଁମାନେ ଚାଲିଯାଆନ୍ତି, ସେମାନେ କେବଳ ଚାହାନ୍ତି, ଦେଖନ୍ତି, ନିଅନ୍ତି ନାହିଁ । ଯେଉଁମାନେ ନିଅନ୍ତି ସେମାନେ ଦୂରରୁ ଦୌଡ଼ି ଆସି ତାଠାରୁ ବେଲୁନ ନିଅନ୍ତି କିମ୍ବା ତାକୁ ଡାକି ବେଲୁନ କିଣି ନିଅନ୍ତି । ସବୁଦିନ ପରି ସେ ସେଇଠି ବସିଥିଲା । ଲୋକଙ୍କର ପାଦ, ଜୋତା, ଚାଲିକୁ ଲକ୍ଷ୍ୟ କରୁଥିଲା । ତାର ମନେହୁଏ ଲୋକଙ୍କର ବିଶେଷ କରି ସମୁଦ୍ର କୂଳରେ ପାଖାପାଖି ଚାଲୁଥିବା ତରୁଣ ତରୁଣୀଙ୍କର ମୁହଁର ଅଭିବ୍ୟକ୍ତି ଏକା ପ୍ରକାରର । ତେଣୁ ସେମାନଙ୍କ ମୁହଁକୁ ଚାହିଁ କ୍ଲାନ୍ତ ହୁଏ ସେ । ପୁଣି ତଳେ ବସି ଖୁବ୍ ପାଖ ଦେଇ ଚାଲୁଥିବା ଲୋକଙ୍କ ମୁହଁକୁ ଚାହିଁଲେ ଆକାଶର ଉଜ୍ଜ୍ୱଳ ଆଲୁଅ ଆଖିରେ ପଡ଼େ । ତେଣୁ ସେମାନଙ୍କୁ ଚାହିଁଲେ କପାଳରେ ହାତ ଦେଇ ଆକାଶର ଆଲୁଅକୁ ଉହାଡ଼ କରି ଦେଖିବାକୁ ହୁଏ । ତା ଅପେକ୍ଷା ବରଂ ସେମାନଙ୍କ ପାଦଗୁଡ଼ିକ ଲକ୍ଷ୍ୟ କରେ, ପେଣ୍ଟର ଦାଗ, ଗାର, ରଙ୍ଗକୁ ଚାହେଁ । ସେଦିନ ସେ ଦେଖିଥିଲା ଚାରୋଟି ପାଦ ତା କଡ଼ ଦେଇ ଅତିକ୍ରମ କରିଗଲେ । କିଛି ଦୂର ଯାଇ ସେ ପାଦଗୁଡ଼ିକ ସ୍ଥିର ହେଲେ ପୁଣି ବିପରୀତ ଦିଗରେ ଆଗେଇ ଆସି ତାରି ପାଖରେ ଥମିଗଲେ । ସେ ସେମାନଙ୍କର ମୁହଁକୁ ଚାହିଁଲା । ସେମାନଙ୍କ ଆଖି ସବୁଠାରୁ ବଡ଼ ଓ ନାଲି ବେଲୁନଟି ଉପରେ । ସେ ବେଲୁନଟା ଆକାଶ ଆଡ଼େ ଉଡୁଥିଲା, ଉଡ଼ି ପଳାଇବା ପାଇଁ ଯେପରି ବ୍ୟାକୁଳ । ଗୋଟିଏ ହାତ ଆଗେଇ ଆସିଲା, ବେଲୁନଟାକୁ ଗଛରୁ ଫୁଲତୋଳିବା ଭଳି ଛିଣ୍ଡାଇ ନେଲା । ବେଲୁନ ସୂତାକୁ ଅପର ହାତକୁ ବଢ଼ାଇ ଦେଇ ପକେଟରୁ ଗୋଟିଏ କାଗଜ ନୋଟ ବାହାର କରି ତା କୋଳକୁ ପକାଇ ଦେଲା । ବେଲୁନଟାକୁ ଦୁଇଜଣ ଚାରୋଟି ହାତରେ ଧରି ସାମ୍ନାସାମ୍ନି ଛିଡ଼ା ହୋଇ ଖୁବ୍ ଆଦର କଲେ । ଚୁଡ଼ିଲଗା ହାତଟା ସେଇଟାକୁ ନେଇ ଥରେ ଗାଲରେ ଘଷି ହେଲା । ଅନ୍ୟ ହାତ ଦି'ଟା ଚୁଡ଼ିଲଗା ହାତରୁ ସେଇଟା ଛଡ଼େଇନେଲା ପରେ ବାଲି ଉପରେ ଚାରୋଟି ପାଦ ଇତସ୍ତତଃ ଦୌଡ଼ିବାକୁ ଆରମ୍ଭ କଲେ । ସେମାନଙ୍କ ସମ୍ମିଳିତ ହସର ଝଙ୍କାର ଢେଉ ପିଠିରେ ଚଢ଼ି ସମୁଦ୍ରର ଅନେକ ଭିତରକୁ ବ୍ୟାପିଗଲା, ନାଲି କଙ୍କଡ଼ାର ଦେହରେ ବୋଲି ହୋଇ ବେଳାଭୂମିରେ ପରିବ୍ୟାପ୍ତ ହୋଇଗଲା । ତାପରେ ହଠାତ୍ ଦୁଇଜଣ ସନ୍ଧି ସ୍ଥାପନ କଲେ । ଜଣକ କାନରେ ଅନ୍ୟ ଜଣଙ୍କ ମୁହଁ, ଅନ୍ୟ ଜଣକ କାନରେ ଅପରର ମୁହଁ ଦୁଇ ଚାରିଥର ଘୂରି ବୁଲିଲା ପରେ ଜଣେ ପକେଟରୁ କଲମ ବାହାର କରି ତା ଉପରେ କ'ଣ ସବୁ

ଲେଖିଲା । ଚୁଡ଼ିଭରା ହାତଟି ତାକୁ ଧରି ରହିଲା । ଶେଷରେ ଦୁଇଜଣ ଚାରୋଟି ହାତରେ ଧରି ତାକୁ ଛାଡ଼ିଦେଲେ । ଦୁଇଜଣଙ୍କ ଭିତରୁ ବେଲୁନଟା ଆକାଶରୁ ଉଠିଗଲା । ଖୁବ୍ ଉପରକୁ ଉଠିଗଲା । ତା' ପରେ ବାୟୁତରଙ୍ଗରେ ଧୀରେ ଧୀରେ ଜଳଭାଗ ସହ ସମାନ୍ତର ଗତିରେ ଅନେକ ଦୂର ଗଡ଼ିଗଲା । ଚାରୋଟି ପାଦ ଆଉ ଥରେ ସେଇଠି ଖୁସିରେ ନାଚିଗଲେ । ସେମାନେ ଡାହାଣହାତ ବାଁହାତ ଛନ୍ଦାଛନ୍ଦି କରି ଜଣେ ଅନ୍ୟ ଜଣକ ଉପରକୁ ଢଳି ପଡ଼ିବା · ଭଙ୍ଗୀରେ ଆଗେଇଯାଇ ସେଇ ଆଡ଼େ ଅଦୃଶ୍ୟ ହୋଇଗଲେ । ହଠାତ୍ ସେ ଅନୁଭବ କଲା ପୃଥିବୀଟା ଖୁବ୍ ସୁନ୍ଦର । ଏଠାରେ ବଞ୍ଚିବାର ଯଥେଷ୍ଟ ଉପାଦାନ ଖୁନ୍ଦି ହୋଇ ରହିଛି । ଭିକ ମାଗି ହେଉ ବା ଚୋରି କରି ହେଉ ବଞ୍ଚି ଜାଣିଲେ ଖୁବ୍ ଆନନ୍ଦରେ ବଞ୍ଚିଯାଇ ହେବ । ସେ ଅନୁଭବ କଲା ତାର ଶିରା ଧମନୀରେ ଏକପ୍ରକାର ଆନନ୍ଦର ସ୍ରୋତ ମାଡ଼ିଯାଉଛି । ସେ ଚାରୋଟି ପାଦ ଝାଉଁବଣ ଆଡ଼େ ସଂପୂର୍ଣ୍ଣ ଉଭେଇଗଲା ପରେ ତାର କ୍ରସ କାଠରୁ ଗୋଟିଏ ଛୋଟ ବେଲୁନ ବାହାର କରି ଆକାଶରେ ଉଡ଼ାଇଦେଲା । ଉପରକୁ ଚାହିଁ ଦେଖିଲା ଖୁବ୍ ଶୀଘ୍ର ବେଲୁନଟା ଉପରକୁ ଉଠିଯାଉଛି । ଆକାଶରେ ସେଦିନ ମେଘ ଥିଲା କିନ୍ତୁ ଖୁବ୍ ଉଜ୍ଜ୍ୱଳ ଥିଲା ଆକାଶର ରଙ୍ଗ । ସେ କପାଳରେ ହାତ ଦେଇ ଅନେକ ସମୟ ଦେଖିଥିଲା ବେଲୁନଟା କ୍ରମେ ଛୋଟ ହୋଇ ଶେଷରେ ଗୋଟିଏ ବିନ୍ଦୁ ହୋଇ ଦୂରରେ ମିଳେଇଗଲା । ଭଲକରି ତନଖି ଚାହିଁବାରୁ ଆଉଥରେ ମାତ୍ର ଦେଖାଯାଇ ଝାଉଁବଣ ଉପରେ ଆଉ ଦେଖାଗଲା ନାହିଁ । ସେଦିନ ସେ ଭାବିଲା ସେ ବି ଟିକେ ନାଚିଯିବ । କିନ୍ତୁ ହଠାତ୍ କାହିଁକି କେଜାଣି ତା ମୁହଁ ଫିକା ହୋଇ ଉଠିଲା । ସେ କ୍ରଶଟାକୁ କାନ୍ଧରେ ପକାଇ ଠିକ୍ ଯିଶୁଭଳି ଦେଖାଗଲା । ବାଲି ଭାଙ୍ଗି ସମୁଦ୍ର କୂଳ ଛାଡ଼ି ସେ ଉପରକୁ ଉଠିଆସି ତା ଚାଳିଆ ଆଡ଼େ ଆଗେଇ ଚାଲିଲା । ସେଦିନରୁ ଅନେକ ଦିନ ଗଲାଣି । ସବୁଦିନ ସେହିପରି ବୈଚିତ୍ର୍ୟହୀନ । ସେ ସମୁଦ୍ର କୂଳରେ ଅନେକ ରଙ୍ଗିନ ବେଲୁନର ଫୁଲ ଫୁଟାଇ ବସି ରହେ । ପିଲାମାନେ ତା ପାଖକୁ ଧାଇଁ ଆସନ୍ତି । ସେ ଦେଖେ ଛୋଟ ଛୋଟ ପାଦ ଆନନ୍ଦରେ ନାଚୁଛନ୍ତି ଏବଂ ଖୁଚୁରା ପଇସା ଦେଇ ବେଲୁନ ତାର ଛକ କାଠରୁ ଛିଡ଼ାଇ ନେଇ ବୀଭତ୍ସ କଡ଼ର କଡ଼ର ଶବ୍ଦ କରିବା ଆରମ୍ଭ କରିଦେଇଛନ୍ତି । ଜଣେଅଧେ ବଳ ପ୍ରୟୋଗ କରି ଢୋ କରି ଶବ୍ଦ କରୁଛି ଏବଂ ଚିରା କୋଣଟାକୁ ଛୋଟ ଗୋଟିଏ ପାଣିଫୋଟକା ପରି କରି ସେଥିରେ ବି ଆଙ୍ଗୁଠି ଘଷି ବୀଭତ୍ସ ଶବ୍ଦ ସୃଷ୍ଟି କରୁଛନ୍ତି । ସେ ତେଣୁ ସାନ ପିଲାମାନଙ୍କୁ ବେଲୁନ ଦେଇ ସେମାନଙ୍କଠାରୁ ଦୂରକୁ ପଳେଇଯାଏ । କାହିଁକି କେଜାଣି ତାର ମନେହୁଏ ସେମିତି ଦୁଇଜଣ ଆସନ୍ତେ, ଉର୍ଦ୍ଧ୍ୱମୁଖୀ ସବୁ ବେଲୁନର ସୂତା ଛିଣ୍ଡାଇ ଦେଇ ସେମାନଙ୍କୁ ଖୋଲା ବାୟୁମଣ୍ଡଳ ଭିତରକୁ ପଠାଇ ଦିଅନ୍ତେ । କିନ୍ତୁ କେହି ସେପରି ଆସନ୍ତି ନାହିଁ । ନିଜ ଅଜାଣତରେ ସେ ସେପରି ସମୁଦ୍ରକୂଳରେ ସେମାନଙ୍କୁ ଖୋଜେ । ସେମାନଙ୍କ ପାଇଁ ଠିକ୍

ସେମିତି ଏକ ବଡ଼ ନାଲି ବେଲୁନ ଏକ ଲମ୍ବା ସୂତାରେ ଟାଙ୍ଗି ଦେଇଥାଏ । କିନ୍ତୁ କେହି ସେ ବେଲୁନର ସଦୁପଯୋଗ କରନ୍ତି ନାହିଁ ।

ସେ ଦେଖେ ସଞ୍ଜରେ ଅନେକ ଯୋଡ଼ା ଯୋଡ଼ା ପାଦ ଯୋଡ଼ି ଯୋଡ଼ି ହୋଇ ତାର ଖୁବ୍ ପାଖ ଦେଇ ଚାଲିଯାଆନ୍ତି । ତାକୁ ଖାତିର ନକରି ଅଧା ଅନ୍ଧକାରରେ କିମ୍ବା ନିଃସଙ୍ଗ ଦ୍ୱିପ୍ରହରରେ ଓଠରେ ଓଠ ଲଗାନ୍ତି। ପରସ୍ପର କାନ୍ଧରେ ମୁଣ୍ଡ ରଖନ୍ତି, ସେମାନେ ତାକୁ କାହିଁକି ଖାତିର କରନ୍ତି ନାହିଁ ସେ ବୁଝିପାରେ ନାହିଁ । ବୋଧହୁଏ ସେମାନେ ତାକୁ ବି ଏକ ନିର୍ଜୀବ ବାୟୁଭର୍ତ୍ତି ବେଲୁନ ମନେ କରନ୍ତି । ସେ ହଠାତ୍ ସେମାନଙ୍କୁ ଘୃଣା କରିବା ଆରମ୍ଭ କରେ । ସେଇ ଚାରୋଟି ପାଦର ପ୍ରତୀକ୍ଷାରେ ସେ କେମିତି ଛଟପଟ ହୋଇ ଉଠେ । ସମୁଦ୍ରକୂଳର ଯୋଡ଼ା ଯୋଡ଼ା ସୌଖୀନ ଜୀବକୁ ଚାହିଁ ଖୁବ୍ ଭିତରେ ଉଚ୍ଚାରଣ କରେ–ଏ ଲୋକଗୁଡ଼ାଙ୍କୁ ଠିକ୍ ଭାବେ ପ୍ରେମ କରି ଆସେନି ।

ଦିନେ ଗୋଟିଏ ମେଘୁଆ ଖରାବେଳେ ସେ ଦେଖିଲା ତାର କିଛି ଦୂରରେ ଦୁଇଟି ଗୋଲ ଗୋଲ ହାତ ପଇସା ଗଣି ଚାଲିଛି । ପାଖରେ ଗୋଟିଏ କଳାରଙ୍ଗର ପଇସା ମୁଣି । ପାଖରେ ଗୋଟିଏ ଟୋକେଇ । ସେ ଦେଖି ଚିହ୍ନିପାରିଲା ସେଇ ଛୋଟ କାଳିଝିଅଟି ଯିଏ ନୋଳିଆ ବସ୍ତିଆଡୁ ଆସେ ଏବଂ ଲମ୍ବା ଲମ୍ବା ମୁନିଆ ଠୁଙ୍ଗାରେ ଚଣା ଭର୍ତ୍ତିକରି ସମୁଦ୍ର କୂଳରେ ହାଓ୍ୱା ଖାଉଥିବା ଲୋକଙ୍କ ହାତକୁ ବଢ଼ାଇଦିଏ । ସେ ତା ପାଖକୁ ଉଠିଗଲା । ତା ସାମ୍ନାରେ ଛିଡ଼ାହେଲା । ଝିଅଟି ମୁଣ୍ଡ ଟେକି ହାତକୁ ଚାହିଁଲା । ସେ ତା ଆଖିକୁ ଚାହିଁ ଦେଖିଲା ତା ଆଖିଡ଼ୋଳାରେ ସବୁଠାରୁ ବଡ଼ ଆଉ ନାଲି ବେଲୁନଟା ଉଡୁଛି । ସେ ଭଲକରି ଚାହିଁ ଦେଖିଲା ତାର କ୍ରଶବାଡ଼ି କାନ୍ଧେଇଥିବାରୁ ଚେହେରାଟା ବି ଅନେକାଂଶରେ ସେ ଆଖିର ଆଇନାରେ ଦେଖାଯାଉଛି । ସେ ଚାରିଆଡ଼କୁ ଚାହିଁଲା । ଦୂରରେ ଚାରୋଟି ପାଦ ଅଧାପାଣିରେ ଭିଜିଭିଜି ଆଗେଇ ଯାଉଥିଲେ । ଖୁବ୍ ଦୂରରେ ଜଣେ ହାଫ୍‌ପେଣ୍ଟ ପିନ୍ଧି ସମୁଦ୍ର ପାଣି ଭିତରକୁ ଗାଧୋଇବା ପାଇଁ ଦୌଡ଼ି ଯାଉଥିଲା। ଦୂରରେ ଚିଲଟା ସମୁଦ୍ର ଆଡ଼କୁ ମୁହଁକରି ଉଡ଼ିଗଲା । ଖୁବ୍ ଦୂରରେ ଦଳେ କଳାଲୋକ ହୁସ୍‌କରି ଢେଉସହ ନୌକାଟାକୁ ବାଲି ଉପରକୁ ଠେଲି ଆଣିଲେ । ସେ କ୍ରଶବାଡ଼ିଟାକୁ କାନ୍ଧରୁ ଓହ୍ଲାଇଲା । ଦୁଇ ହାତରେ ଘୂରାଇ ଘୂରାଇ ବାଲିରେ ସେଇଟା ପୋତିଦେଲା । ମୁଣ୍ଡରୁ ପଗଡ଼ିଟା କାଢ଼ି ତାର ଭାଙ୍ଗ ଫିଟାଇ ଥରେ ଝାଡ଼ିଦେଇ ମୁହଁ ପୋଛିଲା । ମୁହଁରୁ କ୍ଲାନ୍ତିର କ୍ଲେଦ ପରିଷ୍କାର ହୋଇଗଲା । ସେ ଆଣ୍ଠୁ ଉପରର ଲୁଗାକୁ ଟଣାଟଣି କରି ସଜାଡ଼ିଲା । ଧପ୍‌କରି ବାଲିରେ ପଡ଼ି ଗୋଟିଏ ଚଣା ଠୁଙ୍ଗା ମାଗିଲା । ବାଁହାତରେ ଠୁଙ୍ଗାଟା ଧରି ଡାହାଣ ହାତରେ ଗୋଟିଏ ଦୁଇଟି ଡାଳି କଡ଼କଡ଼ କରି ଚୋବାଇବାକୁ ଲାଗିଲା । ଏଣେ ଗୋଲ ଗୋଲ ହାତ ଦୁଇଟି ପଇସା ଗଣି କଳା ମୁଣିରେ ଭର୍ତ୍ତିକରି ପେଟ ଉପରୁ ଲୁଗା ଘୁଞ୍ଚାଇ ଦେଇ ନାଭି ତଳେ ଗୁଞ୍ଜିଦେଲା । କଡ଼କଡ଼ କରି ଚଣା

ଚୋବାଉ ଚୋବାଉ ତାର ମନେହେଲା ତା ପାଦରେ ଯେପରି ଚକ୍‌ଚକ୍ କଳା ଜୋତା ବାଲିରେ ଦବି ଯାଉଛି । ଖୁବ୍ ପାଖରେ ଆଉ ଦୁଇଟି ଛୋଟ ପାଦ ଛନ୍ଦିହୋଇ ପାଣି କଡ଼େ କଡ଼େ ଆଗେଇ ଚାଲିଛି । ହାତ ପାପୁଲିରେ ହାତ ପାପୁଲି ଛନ୍ଦି ହାତ ହଲେଇ ହଲେଇ ଖୁବ୍ ଦୂରକୁ ସେମାନେ ଆଗେଇ ଯାଉଛନ୍ତି । ହଠାତ୍ ଗୋଟିଏ ଜାଗାରେ ଅଟକି ସେମାନେ ନାଲି ବେଲୁନ କିଣୁଛନ୍ତି ଏବଂ ସେଥିରେ ନାଁ ଲେଖି ଉପରକୁ ଉଡ଼ାଇ ଦେଉଛନ୍ତି । ଆହୁରି ଅନେକ କିଛି ତାର ମନେହେବା ପୂର୍ବରୁ ସେ ଜାଣିଲା ଯେ ଠୁଙ୍ଗାରେ ଆଉ ଚଣା ନାହିଁ । କାଗଜଟାକୁ ମୋଡ଼ିମାଡ଼ି ପାଣି ଆଡ଼େ ଫିଙ୍ଗିଦେଲା । ଦଶ ପଇସାଟିଏ ପାଇଁ ଜାମା ପକେଟରେ ହାତ ପୂରାଇବାକ୍ଷଣି ଗୋଲ ଗୋଲ ଡାହାଣ ହାତଟି ତାକୁ ମନେକଲା । ବିଶି ଆଙ୍ଗୁଠିଟା କୃଶକାଠ ଆଡ଼େ ଇଙ୍ଗିତ ଦେଲା ଯେ ତାର ବେଲୁନ ଦରକାର । ଖୁସି ହୋଇଗଲା ସେ । ତା କାନ୍ଧରେ ବର୍ତ୍ତମାନ କୃଶକାଠ ନାହିଁ । ସେ ବେଲୁନ ଭଳି ମୁକ୍ତ ଓ ହାଲୁକା । ଦୌଡ଼ିଗଲା କୃଶକାଠ ପାଖକୁ । ସବୁଠାରୁ ବଡ଼ ନାଲି ବେଲୁନଟାକୁ ସେ କାଠଗଡ଼ରୁ ମୁକୁଳେଇ ଆଣିଲା । ଗୋଲ ହାତଟା ସଂକୋଚରେ ମନାକଲା, ହୁଏତ ଏତେ ବଡ଼ ବେଲୁନ ପାଇଁ ତା ପାଖରେ ପଇସା ନାହିଁ । ସେ କିନ୍ତୁ ଶୁଣିଲା ନାହିଁ । ସେ ତାକୁ ବୁଝେଇଦେଲା ଯେ ସେଟାକୁ ନାଁ ଲେଖି ଉଡ଼େଇ ଦେବ । ଝିଅଟାର ଆଖି ବଡ଼ ବଡ଼ ହୋଇଗଲା । ତା ଆଖିରେ ପରିଷ୍କାର ପ୍ରତିଛବି ଦେଖାଗଲା ବେଲୁନବାଲା କଣ ଗୋଟାଏ ଖୋଜୁଛି । ଆଣ୍ଠେଇପଡ଼ି ବାଲି ଘାଣ୍ଟି ଚାଲିଛି ସେ । ଅନେକ ସମୟପରେ ସେ ଗୋଟିଏ କାଠି ପାଇଲା । କାଠିଟାକୁ ଆଣ୍ଠୁ ଉପରେ ରଖି ଦୁଇ ହାତର ଧୂଳିବାଲି ଝାଡ଼ିଲା । ଦାନ୍ତରେ କାମୁଡ଼ି ଧରିଥିବା ବେଲୁନର ସୂତାକୁ ସେ ବାଁହାତରେ ଧରି ସେ କାଠିରେ ଧୀରେ ଧୀରେ ତା ନାଁ ଲେଖିବାକୁ ଆରମ୍ଭ କଲା । ଅସ୍ପଷ୍ଟ ହେଲେ ମଧ ତେଲ ଲାଗି ନଥିବା କଳା ଦେହରେ ନଖଗାର ପଡ଼ିଲା ଭଳି ଧଳାଗାର ପଡ଼ି ବେଶ୍ କିଛିଟା ଚିତ୍ରଭଳି ଅକ୍ଷର ସବୁ ଦେଖାଗଲେ । ଝିଅଟି ବୁଝିଲା ଏଇଟା ଗୋଟିଏ ବଦ୍ଧପାଗଳ । କେହି ଆଖପାଖରେ ନାହିଁ । ତାକୁ ଭୟ ଲାଗିଲା । ଚଞ୍ଚଳ ହାତରେ ଛାତିଉପରେ ପଡ଼ିଥିବା ଶାଢ଼ିର ଗୋଟିଏ କୋଣ ଅଣ୍ଟାରେ ଗୁଞ୍ଜି ଚଣା ଟୋକେଇଟାକୁ ଉଠେଇ ନେଇ ଏକପ୍ରକାର ଦୌଡ଼ିବାକୁ ଆରମ୍ଭ କଲା । ସେ ତାକୁ ଡାକିବା ପୂର୍ବରୁ କାଠିଟା ବେଲୁନରେ ଖେଞ୍ଚିହୋଇ ଡୋ କରି ଶବ୍ଦ ହେଲା ।

କୃଶକାଠଟାକୁ ଆଉଥରେ କାନ୍ଧକୁ ଉଠାଇ ନେଲାବେଳେ ତାର ମନେହେଲା ପୃଥିବୀର ସେ ଚାରୋଟି ପାଦ ଆଉ କେବେ ଫେରିଆସିବେ ନାହିଁ ।

('ଆସନ୍ତାକାଲି'– ପୂଜାସଂଖ୍ୟା ୧୯୭୩)



# ମଧ୍ୟାହ୍ନର ଆକାଶ

ହଠାତ୍ ନିଶା ଅନୁଭବ କଲା ଖୁବ୍ ଗରମ ହେଲାଣି ।

ସେ ୱର୍କାର ପର୍ଦ୍ଦାଟା ଟାଣିଦେଲା । ବାହାରକୁ ଟିକିଏ ଚାହିଁଲା । ଦ୍ୱିପ୍ରହର ହୋଇ ଆସୁଛି । ଆଉଥରେ ଲଜିକ୍ ବହି ଖୋଲିଲା । ସେଇ ଡିଲେମା ! ତା ଭିତରୁ 'ହେତ୍' ଧରଣର ଶବ୍ଦ ଉଠି ଆସିଲା । ସେ ଚଉକିରେ ବସି ପାଦ ନଚାଇଲା । ଗୋଟିଏ ପାରାଗ୍ରାଫ ପଢ଼ି ବି ସେ କିଛି ବୁଝିପାରିଲା ନାହିଁ । କଲେଜ ନୋଟ୍ ବାହାର କଲା । ଖାତାଟା ଅଧେ ଚିରା । ଖାତା ପଛରେ ରୁଟିନ । ଖାତା ମଝିରେ ରେଡ଼ିଓରୁ ଲେଖା ଗୀତ । ଖାତା ମଝିରେ ଅନାବନା ଚିତ୍ର ଆଉ କେଉଁ ଉପନ୍ୟାସର ଡାଇଲଗ୍ । ମୁନୁ ଖୁବ୍ ଉପନ୍ୟାସ ଓ ସିନେମାର ଡାଇଲଗ୍ ମନେ ରଖିପାରେ । ଅମୀୟ ପାଖକୁ ଚିଠିରେ ସେଇସବୁ ଲେଖେ । ମୁନୁଟା ଆସନ୍ତା କି ! ତା'ସହ ଗପି ଏ ସମୟଟା କଟିଯାଆନ୍ତା ।

କଲେଜ ଖୋଲା ଥିବାବେଳେ ବେଶ୍ କଟିଯାଏ ସମୟଗୁଡ଼ା । ସକାଳେ କାମରେ ଟିକିଏ ବୋଉକୁ ସାହାଯ୍ୟ । ତା'ପରେ କଲେଜ ପଢ଼ା, କଲେଜରେ ହାଲ୍କା ଗପ, ସଞ୍ଜରେ ସେମିତି କିଛି ଆଉ ଗପ ବହି । କିନ୍ତୁ ଏଇ ରବିବାର । ପୁଣି ଦ୍ୱିପ୍ରହର । ସବୁଠାରୁ ଅଳସୁଆ ଆଉ ବିରକ୍ତିକର ଏଇ ସମୟଟି ।

ଲଜିକ ବହିର ଡିଲେମା ଭିତରୁ ହଳଦିଆ ରୁଟିନ ଗୋଟେ ବାହାର କଲା ନିଶା । ରୁଟିନଟା ମୁନୁ ତାକୁ ଦେଇଥିଲା, ତାର ନାମ ବି ଲେଖି ଦେଇଥିଲା । କୁନାଭାଇ ତାକୁ କାଟି ପକାଇଛି । ଆଶ୍ଚର୍ଯ୍ୟ ଲୋକଟା କୁନାଭାଇ । କିଛି ଭଲ ସୁନ୍ଦର ଜିନିଷ କାହିଁକି କେଜାଣି ସହ୍ୟ କରିପାରେ ନାହିଁ । ତାର ଖାତା ବହି ଉପରେ ମଲାଟ ହୋଇଥିବା ରାଜେଶ, ହେମା, ଧର୍ମେନ୍ଦ୍ର, ଦେବାନନ୍ଦ ସମସ୍ତଙ୍କ ନାକ ତଳେ ନିଶ ତିଆରି କରି ଦେଇଛି ଆଉ ହେମାର ବି ଲମ୍ବା କଲି ଆଙ୍କି ଦେଇଛି ।

ନିଶା ମନେ ମନେ କୁନାଭାଇ ଉପରେ ଭୀଷଣ ବିରକ୍ତ ହୋଇଉଠେ । ତାକୁ ଏଥର ଦେଖିଲେ ତା ସହ କଥା କହିବ ନାହିଁ ବୋଲି ମନେ ମନେ ଶପଥ କରେ । ଖୁବ୍ ଭିତରେ ଉଚ୍ଚାରଣ କରେ–ଶଳା ଅଭଦ୍ର ।

ନିଶା ଉଠିଲା । ଦର୍ପଣ ସାମ୍ନାରେ କିଛି ସମୟ ଛିଡ଼ାହେଲା । ରେଡ଼ିଓର ଚକା ବୁଲାଇଲା । ବାରଟା ବାଜିବ, ଗୀତସବୁ ସରିଗଲାଣି । ବହି ଆଲମାରି ଖୋଲି ଗୋଟିଏ ପୁରୁଣା ପତ୍ରିକା ବାହାର କଲା । ପତ୍ରିକାଟା ବୁଲୁ ତାକୁ ଦେଇଥିଲା ।

ବୁଲୁ ଆସିଲେ ନିଶାକୁ ନିହାତି ଖରାପ ଲାଗେନି । ବୁଲୁ କୁନାଭାଇଭଳି ସିଗାରେଟ ଖାଏନାହିଁ । ଚଉଡ଼ା ନିଶ ରଖେନି । ବେଶ୍ ଗୋରା ତକ୍‌ତକ୍ ଦେହ । ମୁଣ୍ଡରେ ଲମ୍ବା ଲମ୍ବା ବାଳ । ଆଖିଗୁଡ଼ା ବେଶ୍ ଟଣା ଟଣା । ଖୁବ୍ ଆସ୍ତେ ଆସ୍ତେ କଥା କହେ । ଥରେ ବୋଧହୁଏ ମୁହଁରେ ବୁଲୁ ସ୍ନୋ ଲଗାଇଥିଲା; ତାର ଗାଲରେ ଅଘଷା ହୋଇ ଟିକିଏ ରହିଯାଇଥିଲା । ନିଶା ତାକୁ ସେଦିନ ଖୁବ୍ ଥଟ୍ଟା କରିଥିଲା । ବୁଲୁ କେମିତି ଝିଅଙ୍କ ଭଳି ନାଲି ପଡ଼ିଗଲା ।

ବୁଲୁ କେମିତି ଥରେ ଥରେ ନିରୋଳାରେ ଏଣୁତେଣୁ ଗପେ । ସେତେବେଳେ ନିଶା ତାକୁ ସାମାନ୍ୟ ସନ୍ଦେହ କରିବା ଆରମ୍ଭ କରେ । ନିରୋଳାରେ ଯେ ସବୁ ସାଧୁ ଅସାଧୁ ହୋଇଯାନ୍ତି, ଏକଥା ନିଶା ଭଲ କରି ଜାଣେ । ବୁଲୁ ଗୋଟିଏ ଦଶମ ଶ୍ରେଣୀର କାଳୀଝିଅକୁ ପ୍ରେମ କରେ । ଅନେକ ସମୟରେ ବୁଲୁ ନିଶାକୁ ତାର ପ୍ରେମର କାହାଣୀ ଆଉ ଅସହାୟତା କଥା ଶୁଣାଏ । ନିଶା ଭାବେ ଆଶ୍ଚର୍ଯ୍ୟ ଏଇ ପୁରୁଷମାନେ । ନାରୀପାଖରେ ଏମାନଙ୍କ ଅସହାୟତା ନ ଦେଖାଇଲେ ଯେପରି ଏମାନେ ବଞ୍ଚନ୍ତି ନାହିଁ । ମନେ ମନେ ବିଚାର କରେ ଏଗୁଡ଼ା ସୌଖୀନ ନିଃସହାୟତା । ପ୍ରେମ ଜୟ କରିବା ପାଇଁ, ଅନ୍ୟମାନଙ୍କୁ ଦେଖାଇବା ପାଇଁ ତିଆରି ଯନ୍ତ୍ରଣା । ଆଶ୍ଚର୍ଯ୍ୟ ଲୋକଟା, ଥରେ ଥରେ କାନ୍ଦି ପକାଏ । ଝିଅଙ୍କ ଭଳି ଆଖି ନାଲି ପଡ଼ିଯାଏ । ପୁରୁଷ ଆଖିରେ ଲୁହ, ପୁଣି ତା ପ୍ରେମିକା ପାଖରେ ନୁହେଁ– ଅନ୍ୟ ଏକ ଝିଅ ପାଖରେ । ତାକୁ କେମିତି ଏଇ କଥାଟା ଭଲ ଲାଗେ ନାହିଁ । ସେ ଆସିଲେ ତା ପାଇଁ ପାନ ଆଣେ, ପତ୍ରିକା ଆଣେ, ଚିନାବାଦାମ ଆଣେ । ବୁଲୁ କିନ୍ତୁ ଖୁବ୍ ଭଦ୍ର, ମାର୍ଜିତ । ତା ସହ ଗୋଟିଏ ଦିନ ଓ ରାତି ଗପିଲେ ବି କିଛି କ୍ଷତି ହେବନି । ବାପା ବୋଉ ବି ତାକୁ ଖୁବ୍ ବିଶ୍ୱାସ କରନ୍ତି । ବୁଲୁ ବର୍ତ୍ତମାନ ଆସନ୍ତା କି ! ତା ସହ ଏଣୁତେଣୁ ଗପି ସମୟ କଟିଯାଆନ୍ତା ।

ନିଶା ପତ୍ରିକାରେ ଗୋଟିଏ ଗପର କେତେଟା ଧାଡ଼ି ପଢ଼ିଚାଲେ । ଭଲ ଲାଗେ ନାହିଁ। ବହି ବନ୍ଦ କରେ । ଇତସ୍ତତଃ ହୁଏ । ଉଠି ରୋଷେଇ ଘରକୁ ଯାଏ । ରୋଷେଇ ଘରେ ବେଶୀ ଗରମ, ବେଶୀ ଧୂଆଁ; ବୋଉ କ'ଣ ସବୁ ରାନ୍ଧିଚାଲିଛି । ଥରେ ପିଣ୍ଡା ଉପରୁ ଫେରିଆସେ । ପୁଣି ଚଉକିରେ ବସେ । ତାର ସବୁ ସାଙ୍ଗସାଥୀ, ସାଙ୍ଗର ପ୍ରେମିକାମାନଙ୍କ ଚେହେରା ମନେ କରେ । ସେ ଦେଖେ ପ୍ରତିଦିନ ମୁନୁ ପାଇଁ ଅମୀୟ ଛକରେ ଛିଡ଼ାହୋଇ ରହେ । କ୍ଳାନ୍ତ ଆଖି, ହାତରେ ଗପବହି । ବହିଭିତରେ ନିଶ୍ଚୟ

ଚିଠି । ପୁରୁଷର ଅପେକ୍ଷା କରିବାର ପ୍ରବୃତ୍ତି ତାକୁ ଭଲ ଲାଗେ ନାହିଁ । ତେଣୁ ଅମୀୟକୁ ସେ ଶ୍ରଦ୍ଧା କରିପାରେନି । ଯେତେବେଳେ ମୁନୁ ତା ପାଖରେ ଅମୀୟର ପ୍ରଶଂସା କରେ ସେତେବେଳେ ତା ଭିତରେ ବିରକ୍ତିର ସ୍ରୋତ ବହୁଥାଏ ।

ନିଶା ଦେଖେ ଅମୀୟ ତାକୁ ସବୁଦିନେ ପାନ ଦିଏ । ପାନ ଖାଇଲା ପରେ ମୁନୁର କେମିତି ହଠାତ୍ ଫୁଟାଣି ବଢ଼ିଯାଏ । ହଠାତ୍ ନିଶାର ପାନ ଖାଇବାକୁ ଇଚ୍ଛାହୁଏ । ଅବଶ୍ୟ ଦିନେ କୁନାଭାଇ ତା ପାଇଁ ପାନ ଆଣିଥିଲା । ବୁଲୁ ତ ତା ପାଇଁ ଆଣେ, ତାରି ପାଖରୁ ଦେଖି ବୋଧହୁଏ କୁନାଭାଇ ସେଦିନ ପାନ ଆଣିଥିଲା । ସେ ପାନ ଖାଇବ ନାହିଁ ବୋଲି ରୋକ୍‌ଠୋକ୍ ମନା କରିଦେଇଥିଲା । କୁନାଭାଇ ସେଦିନ ପାନଗୁଡ଼ାକ ବାହାରକୁ ଫିଙ୍ଗିଦେଲା, ଆଉ କହିଲା–ମୁଁ ଦେଲେ ଖାଇବୁ କାହିଁକି ! ସେ ମାଇଚିଆ ବୁଲୁ ଦେଲେ ଖାଇବୁ । ସେଇଟା ସାନ ପିଲାଟା, ତା ସହ ଘଣ୍ଟା ଘଣ୍ଟା ଗପିବାକୁ ତୋତେ ଖରାପ ଲାଗେନି !

କୁନାଭାଇକୁ ଆଦୌ ସହ୍ୟ କରିପାରେ ନାହିଁ ନିଶା । ତାର ଔଦ୍ଧତ୍ୟକୁ ସେ ଘୃଣା କରେ । କୁନାଭାଇ ଆସିଲେ ଗୋଟିଏ ମୁହୂର୍ତ୍ତ ବି ସ୍ଥିର ହୋଇ ବସି ରହିପାରେନି । ଖାତା ଟାଣିଆଣି ଚିତ୍ର କରିବା ଆରମ୍ଭ କରେ । ବହି ମଲାଟର ସବୁ ହିରୋ ହିରୋଇନର ମୁହଁରେ ନିଶ ଲଗାଏ । ତାକୁ ହଠାତ୍ ଗୋଟିଏ ବିଧା ମାରେ । କେତେବେଳେ ତା ବେଣୀଟା ଏତେ ଜୋରରେ ଟାଣିଦିଏ ଯେ ମନେହୁଏ ତାର ସବୁ ବାଳ ଉପୁଡ଼ିଯିବ । ଦିନେ ତା ପିଠିରେ ଏତେ ଜୋରରେ ଚାପୁଡ଼ାଟାଏ ମାରିଥିଲା ଯେ ଦୁଇଦିନ ପୋଡ଼ିଲା । ତାକୁ ସେଥିପାଇଁ ସେ ଭୀଷଣ ଘୃଣା କରେ । ବୋଉ ବାପା ବି ତାକୁ ସନ୍ଦେହ କରନ୍ତି । ଭାଇର ସାଙ୍ଗ ବୋଲି କେହି ମନା କରିପାରନ୍ତି ନାହିଁ । କିନ୍ତୁ ସେ ବେଶୀ ସମୟ ଆସେ ଭାଇ ବାହାରକୁ ବାହାରିଗଲେ । ସେ ଆସିଗଲେ ସିଧା ଏଇ ପଢ଼ାଘରେ । ନିଶା ସେତେବେଳେ ବହି ବନ୍ଦ କରି ସିଧା ବୋଉ ପାଖକୁ ପଳେଇଯାଏ । କେମିତି କେଜାଣି ଲୋକଟାକୁ ମନେ ମନେ ଭୟ କରେ ନିଶା । ଦିନେ ବାପା ବୋଉ ସିନେମା ଯାଇଥିଲେ । ଆସି ପହଞ୍ଚିଲା ସେ, କଥା ନାହିଁ ବାର୍ତ୍ତା ନାହିଁ, ଚଉକି ଉପରୁ ସିଧା ଘୋଷାରି ନେଇ କୁଣ୍ଢାଇ ପକାଇଲା । ନିଶା ସେଇ ମୁହୂର୍ତ୍ତରେ ଅନୁଭବ କରିଥିଲା ଯେପରି ତାର ନିଃଶ୍ୱାସ ବନ୍ଦ ହୋଇଯିବ । ତାର ଶକ୍ତ ପେଶୀ କବଳରୁ ସେ ଭୀଷଣ କସ୍‌ରତ୍ କରି ଉଦ୍ଧାର ପାଇଥିଲା । ଗାଲ ଓଠ ପୋଛି ସେ ତାକୁ କଦର୍ଯ୍ୟ ଭାବେ ଗାଳି ଦେଇଥିଲା । କହିଥିଲା– ସବୁ କଥା ଭାଇଙ୍କୁ କହିଦେବ । କୁନାଭାଇ କିନ୍ତୁ ହସି ହସି ସେଦିନ ପିଠିରେ ଆଉ ଗୋଟିଏ ବିଧା ପକାଇ ଚାଲିଯାଇଥିଲା । ସେଦିନରୁ ସେ ଘରେ ଏକା ରହିବାକୁ ଭୀଷଣ ଭୟ କରେ ।

ବାରଟା ବାଜିଗଲାଣି । ଭୀଷଣ ଗରମ ହେଉଛି । ବୋଉ ଗାଧୋଇବାକୁ କହିଲାଣି । ରବିବାର ଦିନରେ ନିଶା ଦ୍ୱିପ୍ରହର ହେଲେ ଗାଧୁଆଘରେ ପଶେ । ଗାଧୁଆଘରର କବାଟ ବନ୍ଦ କରିବା ପରେ ନିଶା ହଠାତ୍ ଅନୁଭବ କଲା—ବୁଲୁ ଅପେକ୍ଷା କୁନାଭାଇ ଯଥେଷ୍ଟ ସୁପୁରୁଷ । ଅନ୍ତତଃ କିଛି ହେଲେ ଛଳନା ନାହିଁ । ବୁଲୁଟା କେମିତି ଖୁବ୍ ବୁଡ଼ି ବୁଡ଼ି ପାଣିପିଏ ! ସାଓ୍ୱାର ତଳେ ଛିଡ଼ା ହେବା ପରେ ତାର ଇଚ୍ଛା ହେଲା ବର୍ତ୍ତମାନ କୁନାଭାଇ ଆସନ୍ତେ କି ! ଦେହରେ ସାବୁନ ଘଷୁ ଘଷୁ ତାର ଇଚ୍ଛା ହେଲା ଆଜି ସେ କୁନାଭାଇଙ୍କୁ ପାନ ଆଣିବାକୁ କହିବ ।

ଗାଧୁଆଘରୁ ବାହାରି ଆସି ଦର୍ପଣ ସାମ୍ନାରେ ଛିଡ଼ାହୋଇ ସେ ଭାବିଲା—ଆଜି ପ୍ରଥମଥର ପାଇଁ ସେ ଗୋଟିଏ ଚିଠି ଲେଖିବ ।



[‘ଚୁମ୍ବକ’, ଶାରଦୀୟ ବିଶେଷାଙ୍କ, ନଭେମ୍ବର-ଡିସେମ୍ବର-ଜାନୁଆରୀ, ୧୯୭୩-୭୪ ।]

# ସମୟ

ଏଇଠି ବସିଲେ ପ୍ରଥମେ ଶୁଣାଯାଏ ଟେପ୍‌ରୁ ପାଣି ଝରିବାର ଶବ୍ଦ । ଟେପ୍‌ରୁ ପାଣି ବନ୍ଦ ହୁଏନାହିଁ; ସବୁବେଳେ ଚଡ଼ଚଡ଼ ଶବ୍ଦ କରି ପଥର ଉପରେ ପଡ଼େ । ବିରକ୍ତିକର ମନେହୁଏ ସେ ଶବ୍ଦଟା । ସେ ପାଣିସ୍ରୋତ ତଳେ ବାଲ୍‌ତି ବସାଇଦେଲେ ବି ଯେଉଁ ଶବ୍ଦ ହୁଏ, ମନେହୁଏ ବାହାରେ ରିମ୍ ଝିମ୍ ବର୍ଷା ହେଉଛି । ଅବଶ୍ୟ ଏଇଟା ବି ବିରକ୍ତିକର ବର୍ଷାଋତୁ । ଏଠାରେ ପ୍ରତ୍ୟେକ ମଣିଷ ଭିତରେ ବି ପଥର ଭର୍ତ୍ତି । ପାଖଲୋକ ଘରେ ଚୋର ପଶିଲେ କିମ୍ବା ରାତି ଅଧରେ ମଣିଷ ଗୋଟିଏ ମରିଗଲେ କାନ୍ଥକୁ କାନ୍ଥ ଲାଗିଥିବା ଘରର ଦ୍ୱାର ବନ୍ଦ ହୋଇଯାଏ । ସବୁ ମୁହୂର୍ତ୍ତରେ ଦେଖୁଥିବା ଲୋକେ ବି କେହି କାହାରିକୁ ଚିହ୍ନି ପାରନ୍ତି ନାହିଁ ।

ମୋ ସାମ୍ନାରେ ଏକ ବିସ୍ତୀର୍ଣ୍ଣ ପଡ଼ିଆ । ପଡ଼ିଆର ଆରପଟେ ଲମ୍ବା ଚଉଡ଼ା ରାସ୍ତା । ପଡ଼ିଆଟାକୁ ସଞ୍ଜରେ ଚାହିଁଲେ ମୋ ଭିତରେ ହୁ ହୁ କରି ହାଓ୍ୱା ବହିଯାଏ । ସୁ ସୁ ହୋଇ କାନ୍ଦ ମାଡ଼ିଆସେ । ପଡ଼ିଆ ସେପଟେ ରାସ୍ତାରେ ଖୁବ୍ ସ୍ମାର୍ଟ ହୋଇ ସ୍କୁଟର ଛୁଟିଯାଏ । କାହାରିକୁ ଖାତିର ନକରି ମଟର ମାଡ଼ିଯାଏ, ସାଇକେଲ ଗଡ଼ିଯାଏ । କାହାରି କାହାରି ନଜର ନାହିଁ । ପଡ଼ିଆ ଏ ପାରିରେ ଯେ ଜଣେ ନୂଆ ହୋଇ ଏ ସ୍ଥାନକୁ ଆସି ଏକା ଏକା ସଢ଼ୁଛି, ସେ କଥା କେହି ବୁଝନ୍ତି ନାହିଁ । ଆଖପାଖରେ ଯଦି ଘର ଥାନ୍ତା, ତାହେଲେ ଝର୍କା ଦେଇ ସେ ଘରର ମଣିଷମାନଙ୍କୁ ଦେଖି ସେମାନଙ୍କ ବିଷୟରେ ଚିନ୍ତା କରୁ କରୁ ଅନ୍ତତଃ କିଛି ସମୟ କଟି ଯାଆନ୍ତା । ତା' ବି ନାହିଁ ।

ମୋ ପଛପଟରେ ଗୋଟିଏ ଦି'ମହଲା ଘର । ଖୋଲା ଛାତରେ ଥାକ ଥାକ ଫୁଲକୁଣ୍ଡ । ଫୁଲ କିନ୍ତୁ ଫୁଟେ ନାହିଁ । ଖୋଲାଛାତରେ ଲୁଗା ଶୁଖିବା ଘର । ଦିନେ ଦେଖିଲି ତାରରେ ଗୋଟିଏ ଧଳାରଙ୍ଗର ବ୍ଲାଉଜ ଶୁଖୁଛି । ମୁଁ ଉତ୍ସୁକ ହୋଇଉଠିଲି; କିନ୍ତୁ ସଂଗରେ ଦେଖିଲି ଜଣେ ପ୍ରୌଢ଼ା ଆଖିକୁ ଯଥାସମ୍ଭବ କୁଞ୍ଚିତ କରି ସେଇ ବ୍ଲାଉଜ୍ ପିନ୍ଧି ପଦଚାରଣା କରୁଛନ୍ତି । ସେ ଦିନରୁ ମୁଁ ସେ ପଟର ଝର୍କା ଖୋଲି ନାହିଁ ।

ମୋ ସାମ୍ନା ରାସ୍ତା ସେପଟେ ଗୋଟିଏ ହୋଟେଲ । ପୃଥିବୀରେ ଏତେ ବଡ଼ ବଡ଼ ହୋଟେଲ, ଏତେ ବଡ଼ ବଡ଼ ବିଜ୍ଞାପନ, ଏତେ ସୁନ୍ଦର ସୁନ୍ଦର ଖାଇବା ଟେବୁଲ ବୋଧହୁଏ ମୋ ପାଇଁ ବା ମୋଭଳି କେତେଜଣଙ୍କ ପାଇଁ ଯେଉଁମାନଙ୍କର ଖୁବ୍ ପାଖରେ ନିଜର କେହି ନାହାନ୍ତି । ମୁଁ ସେହି ହୋଟେଲରେ ଖାଏ । ହୋଟେଲ ପଛପାଖରେ ଛୋଟ କାରଖାନା ଅଛି । ଆକାଶକୁ ଚାହିଁଲେ ସେଇ କାରଖାନାରୁ ଉଠୁଥିବା ଧୂଆଁ କେବଳ ଆଖିରେ ପଡ଼େ ।

ଖରା ଟିକେ ଢଳିଗଲେ ସୂର୍ଯ୍ୟକିରଣ ଆସି ଘର ଭିତରେ ପଡ଼େ । ସେତେବେଳେ ଭୀଷଣ ଅସ୍ୱସ୍ତି ଲାଗେ । ପୁରୁଣା ସ୍ମୃତିସବୁ ଚେଇଁ ଉଠି ଆସି ପାଖରେ ବସିଯାନ୍ତି । ଖୁବ୍ ଦୂରରେ ଛାଡ଼ିଆସିଥିବା ମିଠା ମିଠା ଅପରାହ୍ନ ସବୁ ମନେପଡ଼ନ୍ତି । ଇଚ୍ଛାହୁଏ ଏ ନୂଆ ଜାଗା, ନୂଆ ଚାକିରୀ ଛାଡ଼ି ଖୁବ୍ ଦୂରକୁ ପଳାଇଯିବି; କିନ୍ତୁ ଯିବି କୁଆଡ଼େ ?

ବାହାରଆଡୁ ଆଖି ଫେରାଇ ଘର ଭିତରକୁ ଚାହେଁ । ଅସମ୍ଭବ ଧଳାକାନ୍ଥ । କାନ୍ଥରେ ଯଦି ଗୋଟେ ଅଧେ କ୍ୟାଲେଣ୍ଡର ଥାନ୍ତା କିମ୍ବା ଲାଣ୍ଡସ୍କେପ ଇତ୍ୟାଦି ଥାନ୍ତା ସେଇ ଆଡ଼କୁ ଚାହିଁ ଚାହିଁ କିଛି ସମୟ ଅନ୍ତତଃ କଟାଇଦେଇ ହୁଅନ୍ତା । କେବଳ ମନେପଡ଼େ ମୁଣ୍ଡଆଡ଼େ କଣ୍ଟାରେ ଝୁଲାହୋଇଥିବା ଏକ କଳାରଙ୍ଗର କ୍ରୁଶବିଦ୍ଧ ଯୀଶୁମୂର୍ତ୍ତି । ଚାହିଁବାକୁ ଭୟଲାଗେ । ଆଖି ବନ୍ଦ କରେ । ନିଦ ଆସେନାହିଁ । ମନେହୁଏ କିଏ ଜଣେ କାଗଜକୁ ବିଡ଼ି ଭଳି ମୋଡ଼ି ମୋ କାନରେ ସୁଲୁ ସୁଲୁ କରି ନିଦ ଭାଙ୍ଗି ଦେଉଛି ଏବଂ କହୁଛି-

– ସବୁବେଳେ ଖାଲି ନିଦ !

– ତୁମେ ନଥିଲ, ମୁଁ ଆଉ କରନ୍ତି କଣ ?

– ଏଇ ତ ମୁଁ ଆସିଗଲି, ଏଥର ଉଠ ।

– କଣ କରିବି ?

– କାହିଁକି, ଗପିବା ।

– ନା, ସେଇକଥା...

– ହେତ୍, ସବୁବେଳେ ସେଇଆ !

– ନ ହେଲେ ପୁଣି ଶୋଇଯାଉଛି ।

– ଶୋଇଯାଅ, ପୁଣି ମୁଁ ଚାଲିଲି ।

– ଯାଉନ, କିଏ ବାନ୍ଧି ରଖୁଛି କି !

– ଏ, ଛାଡ଼ ଛାଡ଼, ଏ ଶାଢ଼ୀଟା ଲୋଚାକୋଚା ହୋଇଯିବ ଯେ, ବଦଳେଇ ଆସେ ।

ପାଟି ଖୋଲି ଖୁବ୍ ଜୋର୍‌ରେ ଚିତ୍କାର କରିବାକୁ ଇଚ୍ଛା ହୁଏ – ଆଜି ସବୁକିଛି ବଦଳେଇ ଦେବି; କିନ୍ତୁ ଚିତ୍କାର କରିପାରେ ନାହିଁ । କେବଳ ସେଇ ଟେପ୍‌ର ବିରକ୍ତିକର ପାଣି ପଡ଼ିବାର ଶବ୍ଦ । ରୁକ୍ଷପଡ଼ିଆ, ପଡ଼ିଆ ଆରପଟେ ସିଧାସଳଖ ରାସ୍ତା, ଗମ୍ଭୀର ବ୍ୟକ୍ତିତ୍ୱ ନେଇ ଗଡ଼ି ଯାଉଥିବା ମଟର, ସ୍କୁଟର, ସାଇକେଲ୍, ଆକାଶରେ ଧୂଆଁ, ପଛପଟର ଦି'ମହଲା କୋଠାରେ କୁଞ୍ଚିତ ଆଖିରେ ଚାହୁଁଥିବା ପ୍ରୌଢ଼ା, ଆଉ ଦୂର କେଉଁ ଏକ ସହରରେ ଛାଡ଼ିଆସିଥିବା ଅନେକ ଅପରାହ୍ନର ମିଠା ମିଠା ସ୍ମୃତି । ମୁଁ କେବଳ ନୀରବରେ ଚିତ୍କାର କରେ ।

ମୁଁ ଚିତ୍କାର କରେ, ମୁଁ ଚିତ୍କାର କରେ ମୁଁ ଚିତ୍କାର କରେ ମୁଁ ଚିତ୍କାର କରିଯାଏ ଟେପ୍‌ରୁ ପାଣି ଝରିଯାଏ ପାଣି ଝରିଯାଏ ମୁଁ ଚିତ୍କାର କରେ ପାଣି ଝରେ ମୁଁ ଚିତ୍କାର କରେ ପାଣି ଝରେ ମୁଁ ଚିତ୍କାର କରେ ପାଣି ଝରେ ଓ ପାଣି ଝରେ ଓ ଚିତ୍କାର କରେ ଓ ପାଣିଝରେ ଓ ଚିତ୍କାର କରେ ଓ କେବଳ ପାଣି ଝରେ ପାଣି ଝରେ ।

ମୋର ସମସ୍ତ ଚିତ୍କାରକୁ ଦବେଇ ଦେଇ କେବଳ ପାଣି ଝରିଯାଏ ।

ଏଇଠି ବସି ଠିକ୍ ଆଗପରି ଶୁଣେ ଟେପ୍‌ରୁ ପାଣି ଝରିବାର ଶବ୍ଦ । ମୋର ମନେହୁଏ ଖୁବ୍ କମ୍ ବୟସର ଝିଅଟାଏ ପାଦରେ ଘୁଙ୍ଗୁର ବାନ୍ଧି ନାଚି ନାଚି ଦୁଇଟି ପାହାଡ଼ ମଝି ଉପତ୍ୟକା ଦେଇ ତଳ ଆଡ଼କୁ ଓହ୍ଲାଇ ଯାଉଛି । କାନ ଡେରି ପାଣି ପଡ଼ିବାର ଶବ୍ଦ ଶୁଣେ ଆଉ ଆଖିପତା ଭାରୀ ହୋଇ ଆସି ସେଇ ଶବ୍ଦ ସ୍ୱପ୍ନରେ ରୂପାନ୍ତରିତ ହୋଇଯାଏ । ଆଖି ଖୋଲି ଦେଖେ ଝର୍କାଦେଇ ଉଜ୍ଜ୍ୱଳ ଅପରାହ୍ନର ଖରା ଘର ଭିତରେ ପଶି ବେଶ୍ ଚମତ୍କାର ଦେଖାଯାଉଛି । ମୋତେ ମନେହୁଏ ପୃଥିବୀକୁ ଶରତଋତୁ ପଶି ଆସୁଛି । କେଉଁଠି ଯେପରି ଦୁର୍ଗାପୂଜାର ନହବତ ବାଜି ଉଠୁଥିବାର ଶବ୍ଦ ଶୁଣାଯାଏ ।

ଝର୍କାଦେଇ ସାମ୍ନା ପଡ଼ିଆକୁ ଚାହେଁ । ପଡ଼ିଆରେ ଅନେକ ବୁଦୁବୁଦିକିଆ ଜଙ୍ଗଲ । ମୋତେ କାହିଁକି କେଜାଣି ତିଆରି ବଗିଚାର କ୍ରୋଟନ, ଜିନିଆ, ଡାଲିଆ, ଗୋଲାପ, ମଲ୍ଲୀ ଅପେକ୍ଷା ପ୍ରାକୃତିକ ଉପାୟରେ ବଢ଼ିଉଠୁଥିବା ନାମ-ନଜଣା ବୁଦୁବୁଦିକିଆ ଗଛ ଦେଖିବାକୁ ଖୁବ୍ ଭଲ ଲାଗେ । ମୁଁ ଦେଖେ ସେ ଗଛର ମୁଣ୍ଡରେ ପ୍ରଜାପତିଗୁଡ଼ା କେମିତି ପଡ଼୍ ପଡ଼୍ ହୋଇ ଉଡୁଛନ୍ତି ।

ପଡ଼ିଆ ସେପଟ ରାସ୍ତା ଦେଇ ଦଳ ଦଳ ହୋଇ ଅନେକ ସୁନ୍ଦରୀ ଝିଅ ଆଗେଇ ଯାଆନ୍ତି । ମୁଁ ଦେଖେ ଗାର୍ଲସ୍କୁଲ ଗେଟ୍ ଆର ପାଖର ନୀଳ ଝରଣାର ସ୍ରୋତ ଏ ସହରର ଶିରା ଧମନୀମାନଙ୍କରେ ପଶି କଳ କଳ ହୋଇ ବହିଯାଉଛନ୍ତି । ରଙ୍ଗିନ୍ ପ୍ରଜାପତିମାନେ ହାତରେ ବହି ଯାକି ସାମ୍ନା ରାସ୍ତା ଦେଇ ଆଗେଇ ଗଲାବେଳେ ମୋ ଭିତରେ ସୁନ୍ଦର ଧ୍ୱନି ସବୁ ଉଠିଆସେ । ବସ୍ ଭର୍ତ୍ତି ହସ ହସ ମୁହଁର ତରୁଣ ତରୁଣୀ ଆଗେଇଗଲେ, ସ୍କୁଟରରେ ଦାୟିତ୍ୱହୀନ ଭାବରେ ନୀଳ ଅଞ୍ଚଳ ଉଡ଼ାଇ ପଛରେ ବସିଥିବା ତରୁଣୀକୁ ଚାହିଁ ମୁଁ ଏଇଠି ବସି ଚିତ୍କାର କରେ– ହେ ଅମୃତର ସନ୍ତାନମାନେ । ପୃଥିବୀରେ ଆନନ୍ଦରେ ବଞ୍ଚିବାର ସଂବାଦ ବିତରଣ କର ।

ମୁଁ ଶୋଇ ଶୋଇ କାନ୍ଥକୁ ଚାହେଁ । କ୍ରୁଶବିଦ୍ଧ ଯୀଶୁ ମୂର୍ତ୍ତିର ମୁହଁରେ ହସ ଦେଖେ । ମୁଁ ପରିଷ୍କାର ଶୁଣିପାରେ– ପୃଥିବୀର ଅମର ସନ୍ତାନଗଣ, ସବୁ ଯନ୍ତ୍ରଣା ଭିତରେ ବି ହସ, ଆନନ୍ଦରେ ବଞ୍ଚିରହ । ମୋ ଭିତରଟା କେମିତି ଏକ ଅଜବ ରସରେ ପରିପୂର୍ଣ୍ଣ ହୋଇଉଠେ । ଝର୍କା ଦେଇ ରାତିର ଆକାଶକୁ ଚାହିଁଲେ ଚିମିନିର ଧୂଆଁ ଦେଖାଯାଏ ନାହିଁ । ବରଂ ଅନେକ ସମୟରେ ତାରକିତ ଆକାଶ ଭିତରେ ଦୂର ମସ୍‌ଜିଦ୍‌ର ଦୁଇଟି ଗମ୍ବୁଜ ମଧ୍ୟରେ ଖଣ୍ଡିଆ ଜହ୍ନଟା କିପରି ଏକ ରହସ୍ୟମୟତା ସୃଷ୍ଟି କରେ ।

ପାଖଘରୁ ଅନେକ ସମୟରେ ନିଶ ରଖି ନଥିବା ଓ ଛାତିବୋତାମ ଖୋଲାଥିବା ତରୁଣ ଆସେ । କେବେ କେମିତି ତା ସ୍କୁଟରରେ ବସି ଏ ସହରର ଗଳି ଉପଗଳି ପରିକ୍ରମା କରେ । ରାତିଅଧ ପର୍ଯ୍ୟନ୍ତ ବା ସହ ମସ୍‌ଗୁଲ ହୋଇ ସାହିତ୍ୟ ସିନେମା ସେକ୍‌ସ ଆଲୋଚନା କରେ । ମୋ ରୁମ୍‌ର ପଛପଟର ଝରକା ପ୍ରାୟ ଖୋଲାରହେ । ଫୁଲକୁଣ୍ଡରେ ଦେଖେ ଗୋଟିଏ ଦୁଇଟି ଫୁଲ ଫୁଟିବାକୁ ଆରମ୍ଭ କଲାଣି ଓ ଫୁଲକୁଣ୍ଡ ଉପରଦେଇ ଲୁଗାଶୁଖା ତାରରେ ନାଲି ବ୍ଲାଉଜ୍ ଶୁଖୁଥିବାର ଦେଖେ । ଠିକ୍ ଦିନ ଦଶଟା ବେଳେ ଆଖିରେ ପଡ଼େ ଝିଅଟା ତ୍ରସ୍ତ ହାତରେ ତାର କେଶକୁ ଧରି ତା ଅଗରେ ରିବନରେ ଗଣ୍ଠି ପକାଇ ପିଠି ଉପରକୁ ପକାଇଦେବାର ଦୃଶ୍ୟ । ସେହି ଦୃଶ୍ୟ ଦେଖି ଅଫିସ୍ ଯାଏ ଅପରାହ୍ଣରେ ଅଫିସ୍‌ରୁ ଫେରି ଦେଖେ ପଡ଼ିଆଆଡ଼େ ଥିବା ଝର୍କା ଦରଆଉଜା କରି ସେ ଶାଢ଼ି ବଦଳାଏ । ମୋର ହଠାତ୍ ମନେହୁଏ ଶାଢ଼ି ବଦଳେଇ ମୋ ପାଖକୁ ଆସି ସେ କହିବ–

– ଉଠ, ମୁଁ ଲୁଗା ବଦଳେଇ ଆସିଛି ।

– ଏଥର ତ ଆଉ ଲୋଚାକୋଚା ହେବାର ଭୟ ନାହିଁ ।

– ନା, ସେମିତି ମୋତେ ସବୁବେଳେ ଭଲ ଲାଗେ ନାହିଁ ।

– କିନ୍ତୁ ମୋତେ ଯେ ଭଲ ଲାଗେ ।

– ସେ କଥା ଛାଡ଼, ତୁମେ କିଛି କୁହ ।

ମୁଁ ତାର ଅନିଚ୍ଛାର ଛୋଟ ପାଟେରୀକୁ ଅକ୍ଳେଶରେ ଟପି ପୁରୁଣା ଭାଷାରେ କଥା କହେ । ମୁଁ ଉଦ୍‌ବେଳିତ ହୁଏ, କଡ଼ ଲେଉଟାଏ । ହଠାତ୍ ଉଠି ପୋଷାକପତ୍ର ପିନ୍ଧି ରାସ୍ତାକୁ ଓହ୍ଲାଇଗଲେ ସିଧାସଳଖ ରାସ୍ତା ଉପରେ ଦ୍ରୁତଗତିରେ ଛୁଟିଯାଉଥିବା ଯାନବାହନ ଦେଖି ମୋତେ ଖୁବ୍ ସ୍ମାର୍ଟ ମନେହୁଏ । ମୁଁ ଶୀଘ୍ର ସାଇକେଲ୍ ପେଡ଼ାଲ ଘୂରାଏ । କାରଣ ପହଞ୍ଚିଲା ମାତ୍ରେ ସବୁଦିନ ପରି ସେଇ କଥା ଶୁଣିବି–

– ଏତେବେଳେ କଣ ଚାରିଟା ବାଜିଲା ? ଆଜି ମୂଳରୁ ଆସି ନଥିଲେ କଣ ଆଉ ହୋଇଥାନ୍ତା । ମୁଁ ତୁମ ସହ କଥା କହିବି ନାହିଁ । କେଉଁଠି କାହାସହ ଗପୁଥିଲ ବୋଧହୁଏ । ମୋ ସ୍ୱପ୍ନର ସହର ଓ ତାର ଅପରାହ୍ନ ଏବଂ ତାର ସ୍ୱପ୍ନିଳ ଘଟଣାସବୁ କ୍ରମେ ସ୍ମୃତି ହୋଇଯାଏ ।

ଏ ନୂତନ ସହରରେ ମୋ ପାଇଁ ଅନେକ ବଗିଚାରେ ଫୁଲ ଫୁଟେ, ମୋର ସ୍ୱପ୍ନର ନେପଥ୍ୟରେ ଅନେକ ମୃଦୁଗୁଞ୍ଜନ ଉଠେ ଏବଂ ନୂତନ ଭାବରେ ସେଇ ପୁରୁଣା ଟେପ୍‌ରୁ ସବୁଦିନପରି ପାଣି ଝରିଯାଏ ପାଣି ଝରିଯାଏ ପାଣି ଝରିଯାଏ । ମୁଁ କେବଳ ବିସ୍ମିତ ହୋଇ ସବୁ ଅନୁଭବ କରେ ।

**(କଥାକାର, ନବବର୍ଷ ବିଶେଷାଙ୍କ, ୧୯୭୪)**



# ଅଜ୍ଞାତବାସ

ବହୁଦିନ ପରେ ଅସୀମା ସଙ୍ଗେ ଦେଖା ।

ମୁଁ ଷ୍ଟେସନ ଯାଇଥିଲି ବାପା ବୋଉ ଇତ୍ୟାଦିଙ୍କୁ ସାକ୍ଷାତ କରିବା ପାଇଁ । ସେମାନେ ଦକ୍ଷିଣ ଭାରତ ବୁଲିଯାଇଥିଲେ । 'ତୁ ଆସନ୍ତା ୧୦ ତାରିଖ ଭୁବନେଶ୍ୱର ଷ୍ଟେସନ ଆସିବୁ । ଆମେ ମାନ୍ଦ୍ରାଜ-ହାଓ୍ୱାଡ଼ା ମେଲ୍‌ରେ ସେଦିନ ବାଲେଶ୍ୱର ଫେରୁଛୁ । ତୁ ଦେଖା କରିବୁ ।' ଷ୍ଟେସନରେ ଅପେକ୍ଷା କରି ବସି ରହିଛି । ବାପା ବୋଉ ଅପା ସହ ଅନେକ ଦିନ ହେଲା ସାକ୍ଷାତ ହୋଇନି । ବାପାଙ୍କ ବୟସ ପାଖାପାଖି ସତୁରୀ । ଅଶୀ । ତଥାପି ଟାଣ ଅଛନ୍ତି । ବୋଉ ତ ଷାଠିଏ ଛୁଇଁବା ଉପରେ । ଅପା ବିଭା ହେଲାପରେ ଆମ ଘରେ ରହୁଛି, ମୁଁ ବା ସା ହେଲିନି ବୋଲି ବୋଉଙ୍କ ସେବାରେ ଲାଗିଯାଇଛି । ମୁଁ ବି ଘରକୁ କମ୍ ସମୟ ଯାଏ । ଘରଠାରୁ ଦୂରରେ ରହିବାକୁ ମୋତେ ସବୁଦିନେ ଭଲଲାଗେ । ଏଠାରେ ମୋର ଚାକିରି । ଦିନସାରା ଅଫିସ । ରାତିରେ ଗୋଟିଏ ନିଛାଟିଆ ଘର ଭିତରେ ଶୋଇବା ଖଟ, କାନ୍ଥରେ ଦର୍ପଣ । ମୋତେ ନିଦ ଭଲ ଲାଗେ । ବେଶୀ ନିଃସଙ୍ଗ ହେଲେ ଦର୍ପଣ ସାମ୍ନାରେ ଛିଡ଼ା ନିଜେ ନିଜ ସହ କଥାବାର୍ତ୍ତା କରେ ।

ମୁଁ ଷ୍ଟେସନରେ ଏଣେତେଣେ ବୁଲିଲି । ଷ୍ଟଲରେ ବହିପତ୍ର ଓଲଟାଇଲି । ଦକ୍ଷିଣ ଭାରତୀୟ ସିନେମା ପତ୍ରିକାରୁ ଉତ୍ତେଜକ ଫଟୋ ଦେଖିଲି । ସିମେଣ୍ଟ ବେଞ୍ଚରେ ବସିଥିବା ପ୍ରତ୍ୟେକ ଲୋକ ଓ ମାଲପତ୍ର ତନଖି ଦେଖିଲି । ସିନେମା ପୋଷ୍ଟର ବିଜ୍ଞାପନ ସବୁ ନିରୀକ୍ଷଣ କଲି । ଗୋଟିଏ ଝିଅର ତରଙ୍ଗ ତରଙ୍ଗ ଚାହାଣୀରେ ଛିଡ଼ା ହୋଇ ତାର ମୁହଁ ଦେଖିଲି । ତା'ପରେ ଦେଖିଲି ରବି ମୋର ପିଲାଦିନର ବନ୍ଧୁ । ଦୁହେଁ ଏକା ସାଥିରେ ସ୍କୁଲ କଲେଜ ଯାଇଛୁ । ଏକାଠି ଡେଇଁଛୁ । ଗୋଟିଏ ଦିଟା ଇଣ୍ଟରଭିୟୁରେ ଏକା ସାଙ୍ଗରେ ଯାଇ ଦେଇଛୁ । ମୁଁ ତାକୁ ବୋଧହୁଏ ଅନେକ ଦିନରେ ଦେଖିଲି । ହଠାତ୍ ତା' ନାଁ ଧରି ଚିଲ୍ଲେଇ ଉଠିବାକୁ ଯାଇ ଥମିଗଲି । ତା' ପଛପଟକୁ ଯାଇ ଦୁଇ ହାତରେ ତା ଆଖି ଚାପି ଧରିଲି । ପଚାରିଲି– ମୁଁ କିଏ ? ସେ ଦୁଇ ଚାରି ଜଣଙ୍କ ନାଁ କହିଲା । ମୋ ହାତ ମୁହଁ ଅଣ୍ଠାଳି ହେଲା । ତାପରେ କହିଲା- କହିପାରିବି ନାହିଁ ।

ମୁଁ ତା ଆଖିରୁ ହାତ ଛାଡ଼ିଦେଇ ତା ସାମ୍ନାରେ ମୋର ସଂପୂର୍ଣ୍ଣ ଦେହଟା ଛିଡ଼ା କରାଇଦେଲି ।

– ଆପଣ ?

– ଆବେ ଆପଣ କେ ବଢେ ।

– କ୍ଷମା କରିବେ ଆପଣଙ୍କୁ ଯେମିତି କେଉଁଠି ଦେଖିଛି ।– ତା’ ମୁହଁରେ ଆଦୌ ଥଟ୍ଟା କିମ୍ବା କୌତୂହଳର ଚିହ୍ନ ନାହିଁ । ମୋ ମୁହଁଟି ଗମ୍ଭୀର ହୋଇ ଆସିଲା । ମୁଁ ପଚାରିଲି– ଆପଣଙ୍କ ନାଁ କ'ଣ ରବି ମହାନ୍ତି ନୁହେଁ ।

– ହଁ । ଆପଣଙ୍କ ନାଁ ?

– କନ୍‌ହେଇଲାଲ୍ ଦାସ ।

– ସେଇ ଯିଏ ଗପ ଲେଖନ୍ତି ?

–ଆବେ ଗୁଲିମାର୍ ଗପ ଲେଖାକୁ । ତୁ ଆଉ ମୁଁ ଏକାସାଥିରେ କଲେଜ ପାସ୍ କଲେ । ସେଇ ଯେ କଲେଜର କଲ୍ୟାଣୀକୁ ନେଇ ତୋର ମୋର–

ହଁ, ମନେ ପଡୁଛି । ସ୍କୁଲ କଲେଜରେ ଅନେକ ସାଙ୍ଗ ରହନ୍ତି । କେତେଜଣଙ୍କୁ ମନେ ରଖାଯାଇପାରେ କହିଲୁ ।

– ତା ଅବଶ୍ୟ ।

– ତେବେ, ମୁଁ ତୋ ଗପ କେତେଟା ପଢ଼ିଛି ।

ମୁଁ ମନେ ମନେ କହିଲି– ମୁଁ ଧନ୍ୟ, ତା'ପରେ ତାଠୁଁ ଶୀଘ୍ର ପଳାଇଲି ।

ଟ୍ରେନ୍ ଆସି ଛିଡ଼ାହେଲା । ମୁଁ ସବୁ କମ୍ପାଟମେଣ୍ଟ ଝରକାରେ ମୁହଁ ଗଳାଇ ବାପା ବୋଉ ଅପାଙ୍କୁ ଖୋଜିଲି । ସେମାନେ କାହାନ୍ତି ! ଅପା ପରି ଜଣେ ସ୍ତ୍ରୀ ଲୋକ ଫ୍ଲାସ୍କରେ ପାଣି ଭରୁଥିଲା । ମନେହେଲା ସେ ବୋଧହୁଏ ଅପା । ମୁଁ ଅପାକୁ ଯା ଭିତରେ ବୋଧହୁଏ କେବେ ବାହାରେ ଦେଖିନାହିଁ । ଘର ଭିତରେ ଜଣେ ସବୁଦିନେ ଯେମିତି ଦେଖାଯାଏ ବାହାରେ ହୁଏତ ସେ ସେମିତି ଦେଖାଯିବ ନାହିଁ । ସନ୍ଦେହ ହେଲା ବୋଧହୁଏ ଯେ ଅପା ନୁହେଁ । ଅପା ଚେହେରାର ଆଉ କେହି । ତଥାପି ତା ପଛେ ପଛେ ଗଲି । ସେ ଯେଉଁ ଡବାରେ ଉଠିଲା, ସେଇ ଡବାରେ ଉଠିଲି । ବାପା ଗୋଟିଏ ଇଂରାଜୀ ମାଗାଜିନ୍ ପଢ଼ି ଚାଲିଥିଲେ । ବୋଉ ସାମ୍ନାର ସ୍ତ୍ରୀଲୋକ ସଙ୍ଗେ ଗପ ଜମେଇ ଦେଇଥିଲା । ବୋଉ ଅପାକୁ କହିଲା– ପାଖରେ ଫ୍ଲାସ୍କଟା ସାବଧାନରେ ରଖ । ତାପରେ ପୁଣି ଗପରେ ମାତିଗଲା । ଅପା ହାତ ପୋଛି ବସି ବାହାରକୁ ଚାହିଁଲା । ଆଶ୍ଚର୍ଯ୍ୟ, ସେମାନଙ୍କର ମୋ ପାଇଁ ଅପେକ୍ଷା ନାହିଁ । ପୃଥିବୀରେ ସତରେ କେହି କାହାରିକୁ ଅପେକ୍ଷା କରେ ନାହିଁ କିମ୍ବା ମୁଁ କ'ଣ ମୋ ଚେହେରାରେ ନାହିଁ ? ମୋର ଚିତ୍କାର କରି କହିବାକୁ ଇଚ୍ଛା ହେଉଥିଲା, ମୁଁ ତୁମ୍ଭମାନଙ୍କର ପୁତ୍ର, ହଁ ଏକମାତ୍ର ପୁତ୍ର ଶ୍ରୀମାନ୍ କନ୍‌ହେଇଲାଲ୍ ଦାସ, ମୁଁ ତୋର ଏକମାତ୍ର ଭାଇ ସେଇ ପିଲାଦିନର କୁନା, ଏବେ କନ୍‌ହେଇଲାଲ୍ ଦାସ । ମୁଁ କିଛି କହିଲି ନାହିଁ । ହୁଇସିଲ ବାଜିଲା । ମୁଁ ଧୀରେ ଧୀରେ ଆଗେଇଲି । ଭିଡ଼ ଠେଲି ତଳକୁ ଓହ୍ଲାଇଲି । ବୋଉ ବସିଥିବା ଝର୍କା ପାଖରେ ମୋ ସୃଷ୍ଟିଛଡ଼ା ଚେହେରାଟା ଛିଡ଼ାକରି କହିଲି- ବୋଉ ମୁଁ ଆସିଥିଲି ।

ବାପା ବୋଉ କେମିତି ଖୁବ୍ ଦୂର ଆଉ ଲମ୍ବା ରାସ୍ତାରୁ ମୋତେ ଚାହିଁଲେ । କିଛି ସମୟ ପରେ ଯେମିତି ଚିହ୍ନିପାରିଲେ ।

– ତୁ - ଆଗରୁ ଆସିଲୁ ନାହିଁ କାହିଁକି ?

– ଆସିଥିଲି ।

ଟ୍ରେନର ଚକ ଗଡ଼ିଲା । ମୁଁ ଝର୍କା ଧରି କଡ଼େ କଡ଼େ ଚାଲିଲି ବୋଉ କହିଲା- ତୁ ଦଶହରାରେ ନିଶ୍ଚୟ ଯିବୁ ।

ଅପା କହିଲା- ମୁଁ ଯେମିତି କହିଥିଲି ଠିକ୍ ସେମିତି ମୋ ପାଇଁ ଶାଲ ଖଣ୍ଡେ ନେବୁ ।

ବାପା କହିଲେ- ମୁଁ ଯେଉଁ କାଶ ଔଷଧଟା ଚିଠିରେ ଲେଖିଛି ସେଇଟା ନେଇଯିବୁ ।

ଟ୍ରେନ୍‌ର ଗତି ବଢ଼ିଗଲା । ମୁଁ ଝର୍କା ଛାଡ଼ିଦେଲି । ଟ୍ରେନ୍‌ଟା କେମିତି ଏକ ପ୍ରକାର ତଗ ତଗ କରି ଅଦୃଶ୍ୟ ହୋଇଗଲା । ଝିଅଟାର ମୁହଁ ଦେଖି ମୁଁ ଚମକିଗଲି । ଏ ଯେ ଅସୀମା । କିନ୍ତୁ ଅସୀମା ଫ୍ରକ୍ ପିନ୍ଧି ଏମିତି ସମୟରେ ଏଠାରେ କାହିଁକି ? ଯଦିବା ସେ ଅସୀମା ହୋଇଥାଏ, ସେ ଯେ ମୋତେ ଚିହ୍ନିବ ଏ ଗ୍ୟାରେଣ୍ଟି କେଉଁଠି ଅଛି । ଅସୀମା ଥିଲା ଭୀଷଣ ଅଭିମାନିନୀ । ଅନ୍ୟ କୌଣସି ଝିଅ ସହ କଥାବାର୍ତ୍ତା କରିବା ସେ ସହିପାରୁ ନଥିଲା । ମୋର ସେତେବେଳେ ଏଇ ଗୋଟିଏ ଝିଅ ସହ ସାମାନ୍ୟ ସଂପର୍କ ଥିଲା । ଦିନେ ତାର ସାମ୍ନାରେ ସେଇ ଝିଅଟାର ନଖ କାଟି ସାଇଜ୍ କରି ଦେଉଥିଲି । ସେତେବେଳେ ସେ କିଛି କହିଲାନାହିଁ । କିନ୍ତୁ ପରେ ମୋତେ କହିଲା ପୃଥିବୀରେ ସେଇ ଝିଅଟାକୁ ଛାଡ଼ି ଆଉ ଯାହା ସହ କଥା କହିଲେ ବି ମୋର କିଛି ଯାଏ ଆସେ ନା । ମୁଁ ଖୁବ୍ ଜିଦ୍‌ଖୋର ସବୁଦିନେ । ନୂଆ ଝିଅଟି ସହ ସମ୍ପର୍କ ବଢ଼ିଗଲା । ଅସୀମା କେଉଁ ଏକ ବର୍ଷର ଜୁନ୍ ପଚିଶ ତାରିଖରେ ଶେଷ ଚିଠି ଦେଇ ମୋ ଆଗରୁ ଅଦୃଶ୍ୟ ହୋଇଗଲା । କିନ୍ତୁ ଗୋଟିଏ ଧାଡ଼ି ମୋତେ ଅନେକ ସମୟରେ ଯନ୍ତ୍ରଣା ଦିଏ– ମୁଁ ଯେଉଁଠି ବା ଯେଉଁ ଅବସ୍ଥାରେ ରହିଲେ ତୁମକୁ ଭଲ ପାଇବି । ସାରାଜୀବନ କଷ୍ଟ ସହିବା ପାଇଁ ଯା'ଠାରୁ ବଡ଼ ଶକ୍ତିର ସାମ୍ନା ମୁଁ ଏ ପର୍ଯ୍ୟନ୍ତ ହୋଇପାରିନି ।

ସେଇ ଅସୀମା କିମ୍ବା ଅସୀମା ଚେହେରାରେ ମଣିଷ ମୋ ସାମ୍ନାରେ ଚାଲିଯାଉଛି । ତାକୁ ଡାକି ତା ସହ ଗପିବାର ସତ୍‌ସାହସ ମୋର ଆଉ ନାହିଁ । ତଥାପି ମୁଁ ଚାହେଁ ସେ ମୋତେ ଦେଖିପାରୁ ଏବଂ ଜାଣିପାରୁ ଯେ ମୁଁ ଏବେ ବି ବଂଚିଛି । କେବଳ ଥରେ ମନେ ମନେ ଉଚ୍ଚାରଣ କରୁ । ଅସମ୍ଭବ । ତା ରିକ୍‌ସା କଡ଼େ କଡ଼େ ସାଇକେଲ୍ ଚଳାଇଲି । ରିକ୍‌ସା ଅନେକ ରାସ୍ତା ବୁଲି ବୁଲି, ଅନେକ ଉଠାଣି ଟପି ଗୋଟିଏ ଘର ସାମ୍ନାରେ ପହଞ୍ଚିଲା । ଝିଅଟା ଓହ୍ଲାଇଲା । ନିଜ ବେଣୀ ସଜାଡ଼ିଲା । ଗୋଟିଏ ଟଙ୍କା ରିକ୍ସାବାଲାକୁ ଦେଲା । ରିକ୍‌ସାବାଲା ବୋଧହୁଏ ସେତିକିରେ ହେବ ନାହିଁ ବୋଲି ମୁଣ୍ଡ ହଲାଇଲା । ଝିଅଟି ତା ବୋଉକୁ ଡାକି ଡାକି ଘର ଭିତରକୁ ଚାଲିଗଲା ।

ମୁଁ ସାଇକେଲ୍ ଉପରେ ବସି, ଗୋଟିଏ ପାଦ ଭୂଇଁରେ ରଖି ସେ ଦୃଶ୍ୟ ଦେଖିଲି ରିକ୍ସାବାଲା ପାଖକୁ ଯାଇ ପକେଟରୁ ଦୁଇଟା ଟଙ୍କା ବାହାର କରିଦେଲି । ସେ ଚାଲିଗଲା । ମୁଁ ସାଇକେଲ୍ ଘୂରାଇ ସାଇକେଲ୍ ଚଢ଼ିବାକୁ ଯାଉଥିବାବେଳେ ପଛରୁ ନାରୀକଣ୍ଠ ଶୁଣି ଅଟକିଗଲି ।

– ଆପଣ କିଏ ? – ଜଣେ ବୟସ୍କା ସୁନ୍ଦରୀ ମହିଳାଙ୍କ କଣ୍ଠରୁ ବାହାରି ଆସିଲା ।

– ମୁଁ ! ମୋ ନାଁ ଜାଣି ଲାଭ ନାହିଁ ।

– ଆପଣଙ୍କ ନାଁ କନ୍‌ହେଇଲାଲ ଦାସ ?

– ହଁ ! କେମିତି ଜାଣିଲେ ?

– ଏବେ ଗୋଟିଏ ପତ୍ରିକାରେ ଆପଣଙ୍କ ଫଟୋ ବାହାରିଥିଲା । ମୋ' ନାଁ ଅସୀମା । ମୋତେ ଆପଣ ପାଠ ପଢ଼ାଉଥିଲେ ।

ଆକାଶରୁ ଯେମିତି ଭାୟୋଲିନ୍ ବାଜିଉଠିଲା । ଗଛପତ୍ର ଯେମିତି ସଜଡ଼ାସଜଡ଼ି ହୋଇ ଠିଆହେଲେ । ମୁଁ କେବଳ ଦେଖିଲି ।

– ଭିତରକୁ ଆସନ୍ତୁ ।

– ନାଁ ମୁଁ ଯିବି ।

– ଆପଣ ରିକ୍ସା ପଇସା କାହିଁକି ଦେଲେ ?

– ଏମିତି, ମନେହେଲା ଦେଇଦିଏଁ, କିଛି କାରଣ ବା ଉଦ୍ଦେଶ୍ୟ ନାହିଁ ।

– ୟେ ମୋ ଝିଅ ଝିଲ୍ଲି ।

ଫ୍ରକ୍‌ପିନ୍ଧା ଏବଂ ଠିକ୍ ଅସୀମା ପରି ଦେଖାଯାଉଥିବା ଝିଲ୍ଲି ଚମତ୍କାର ଭଙ୍ଗୀରେ ମୋତେ ନମସ୍କାର କଲା । ମୋର ମନେପଡ଼ିଲା- ଅନେକ ଦିନ ତଳେ ଗୋଟିଏ ଦଶହରାରେ ଅସୀମା ମୋତେ ଏମିତି ଭଙ୍ଗୀରେ ନମସ୍କାର କରିଥିଲା ।

ଝିଲ୍ଲି ଚାଲିଗଲା । ଅସୀମା ବି ଭିତରକୁ ଗଲା ମୋ ଲାଗି ଚା' ଆଣିବା ପାଇଁ । ମୁଁ ସେଇ ସୁଯୋଗରେ ଉଠିପଡ଼ିଲି । ସାଇକେଲରେ ବସିଲି । ରାସ୍ତା ! ରାସ୍ତା ! ରାସ୍ତା ! ମୋ ଘରର ତାଲା ଫିଟାଇଲି ।

ଘର ଭିତରେ ଅନ୍ଧାର । ଆଲୁଅ ଜଳାଇଲି । ଦର୍ପଣ ସାମ୍ନାରେ ଛିଡ଼ା ହେଲି । କିଛି ସମୟ ସ୍ଥିର ହୋଇ ଛିଡ଼ାହେଲି । କେମିତି ଅସ୍ୱାଭାବିକ ଭାବରେ ସେ ନିଛାଟିଆ ଘର ଭିତରେ ଅନ୍ୟମାନଙ୍କୁ । ଠିକ୍ ସେତେବେଳେ ଦର୍ପଣ ଭିତରୁ ଆଉ ଗୋଟିଏ ପ୍ରୌଢ଼ ମୋତେ ଚାହିଁଲା– ତୁମ ନାଁ କ'ଣ ?

ମୁଁ କହିଲି- ମୁଁ ଜାଣେ ନାହିଁ । ତାପରେ ଆଲୁଅ ଲିଭାଇଦେଲି ।

**(ଅରଣ୍ୟ, ସାମୟିକ ସଂକଳନ, ୧୯୭୪)**



# ଅଙ୍କୁରୋଦ୍‌ଗମ

ଏଇ ସମୟରେ ଠିକ୍ ଏମିତି ମୁଁ ଆଲୁଅ ଜଳାଇ ବସିରହେ । ତାଙ୍କୁ ଦେଖେ । ଭାବେ ଏଇ ସମୟରେ ପୃଥିବୀର ଜୀବନ ଯାତ୍ରା କେମିତି ଚାଲିଥିବ । ଏଇ ସମୟରେ କେଉଁ ଏକ ବନ୍ଦ କୋଠରିର ରେଜେଇ ତଳେ ଦୁଇଟି ଦେହ ପାଖାପାଖି ଶୋଇ ଜଣେ ଅପରର ନିଶ୍ୱାସରେ ପ୍ରଶ୍ୱାସ ନେଉଥିବ, କେଉଁ ଏକ କବି ହୁଏତ ତା ଖାତାରେ ରୋମାଣ୍ଟିକ ଶବ୍ଦର ବିଛଣା ପାରି ଦେଉଥିବ । କେଉଁ ଏକ ବରଗଛ ମୂଳରେ ପାଗଳର ଚିରା କମ୍ବଳକୁ ପାଦ ଆଡ଼େ ଟାଣିନେଲାବେଳେ ମୁଣ୍ଡରେ ଥଣ୍ଡା ପବନ ଅନୁଭବ କରୁଥିବ କିମ୍ବା କେଉଁ ଏକ ଡାକ୍ତରଖାନାରେ ଅସହାୟ ରୋଗୀଟା ଅନେକ ଜାଗ୍ରତ ଜୀବାଣୁ ମଧ୍ୟରେ ବି ଆରାମରେ ଶୋଇଯାଇଥିବ । ସେ ବି ଆରାମରେ ଶୋଇଯାଇଛନ୍ତି । ସେ ପଟକୁ ମୁହଁ । ଖୁବ୍ କ୍ଲାନ୍ତ ଦେଖାଯାଉଛି ତାଙ୍କୁ । ତାଙ୍କ ବେକର ଶିରାଟା ଖୁବ୍ ଜୋର୍‌ରେ ଧପ୍ ଧପ୍ ହେଉଛି । ଲାଳ ଗଡ଼ି ତକିଆ ଉପରଟା ଭିଜିଗଲାଣି । ସେ ସବୁଦିନେ ଏମିତି । ଶୋଇଲେ ତାଙ୍କ ପାଟିରୁ ଲାଳ ଗଡ଼େ । ସ୍ୱପ୍ନ ଦେଖି କଣ ସବୁ ଦୁର୍ବୋଧ ଭାଷାରେ ବକ୍ ବକ୍ କରନ୍ତି । ଥରେ ଥରେ ଦାନ୍ତ କଡ଼କଡ଼ କରନ୍ତି । ମୁଁ ଜାଣେ ଠିକ୍ ଏଇ ସମୟରେ ମୋ ଭଳି ସ୍ତ୍ରୀ, ସୁନ୍ଦର ସୁନେଲି ସ୍ୱପ୍ନରେ ଭାସିଯାଉଥିବେ । କିନ୍ତୁ ମୁଁ ଆଲୁଅ ଜାଳିକରି ତାଙ୍କୁ ଦେଖୁଛି । ତାଙ୍କୁ ଖୁବ୍ ଅସହାୟ ଦେଖାଯାଉଛି । ମୁହଁଟା ଖୁବ୍ ଛୋଟ, ଓଠଟା ସାନ ପିଲାଙ୍କ ଭଳି ନାଲି । ଯେମିତି ମୋଠାରୁ ସେ ବହୁତ ସାନ, ବାହାରେ ଆଗପଛ ଭିତର ଦେଇ ରାସ୍ତାର ବତିଖୁଣ୍ଟର ବଲ୍‌ବ ଦେଖାଯାଉଛି । ସେଥିରେ କେତେ ନାମ ନଜଣା କୀଟପତଙ୍ଗ ମୁଣ୍ଡ ପିଟି ଚାଲିଛନ୍ତି । ସେମାନେ କେବଳ ଆଲୋକ ଚାହାନ୍ତି ନାହିଁ । ତାର ଉତ୍ତାପରେ ଜଳିପୋଡ଼ି ନଷ୍ଟ ହେବାକୁ ଚାହାନ୍ତି । ସେ କିନ୍ତୁ ଏସବୁ ବୁଝନ୍ତି ନାହିଁ । ଠିକ୍ ଖାଇସାରିଲା ପରେ ନିଦ । ବଜାରରୁ କିମ୍ବା କୌଣସି ସାଙ୍ଗ ଘରୁ ଫେରୁ ଫେରୁ ଟିକିଏ ଡେରି ହୋଇଗଲେ ତାଙ୍କ ଆଖି ଛୋଟ ହୋଇଯାଏ ଏବଂ ହାଇ ଉଠେ । ସେ ଶୋଇପଡ଼ନ୍ତି ଏବଂ ଖୁବ୍ ଶୀଘ୍ର ନିଦେଇ ଯାଆନ୍ତି । ପରେ ମୁଁ ଶୋଇବାକୁ ଗଲେ ତାଙ୍କ ଦେହରେ ଚଦର ଘୋଡ଼ାଇଦିଏ । ଗୋରା ତକ୍‌ତକ୍ ଦେହ ତାଙ୍କର । ଅଣ୍ଟାଟା ଖୁବ୍ ସରୁ, ବେପଟା ପିଚା । ବାହୁ ନୀଳ ଶିରାରେ ଭର୍ତ୍ତି, ଛାତି ଲୋମହୀନ । ଛାତିରେ ମୁଣ୍ଡ ରଖିଲେ ତା

ଭିତରର ଧକ୍ ଧକ୍ ଶବ୍ଦଟା ପରିଷ୍କାର ଶୁଣାଯାଏ । ସେ ଯେତେବେଳେ ଏକା ବସନ୍ତି ସିଧା ହୋଇ ବସିପାରନ୍ତି ନାହିଁ । ହାତ ପାପୁଲିରେ ଭରା ଦେଇ ବସନ୍ତି । ନ ହେଲେ କିଛିକୁ ଆଉଜି ବସନ୍ତି । ଆଶ୍ଚର୍ଯ୍ୟ ଏ ଲୋକଟି । ତାଙ୍କୁ ସବୁଦିନେ କହେ, ମୁଣ୍ଡର ବାଳ କାଟି ଆସିବା ପାଇଁ, ସେ ଯୁକ୍ତି କରନ୍ତି ତାଙ୍କ ଅଫିସରେ ସମସ୍ତେ କୁଆଡ଼େ ଲମ୍ବା ବାଳ ରଖିଛନ୍ତି । ତାଙ୍କ ବଡ଼ ଅଫିସରଙ୍କ ବାଳ କୁଆଡ଼େ ସବୁଠାରୁ ବଡ଼ । ମୁଁ ଚାହେଁ ସେ ଟିକିଏ ମୋଟା ନିଶ ରଖନ୍ତେ କି ! ଯୁକ୍ତି ହେଲା ଯେ ନିଶ ରଖିବା ଏକ ବିଳାସ । ବିଳାସିତା ପାଇଁ ଏତେ ସମୟ କାହିଁ ! ତାଙ୍କ ଦାଢ଼ି ପୂରା ଉଠେ ନାହିଁ । ତଥାପି ଦିନେ ଛଡ଼ା ଦିନେ ଖିଅର ହୁଅନ୍ତି । ଖିଅର ହେଲାବେଳେ ଅନେକ ସମୟ ଯାଏ । ଦୁଇ ତିନିଥର ବ୍ରସ୍ ଘଷି ଖୁବ୍ ଚିକ୍‌କଣ କରି ଖିଅର ହୁଅନ୍ତି । ସେ କେମିତି ଏକ ପ୍ରକାର ନିଶ୍ଚିନ୍ତ ହୋଇ ଶୋଇଯାଇଛନ୍ତି । ବନ୍ଦ ଆଖି । ତାଙ୍କ ଆଖି ଗୁଡ଼ା ବଡ଼ ବଡ଼ । ଆଖିରେ କଜ୍ଜଳ ଲଗାଇ ମୁଣ୍ଡରେ କୁଙ୍କୁମ ଟୋପା ଲଗାଇ ଦେଲେ ହଠାତ୍ ତାଙ୍କୁ ଝିଅ କି ପୁଅ ଚିହ୍ନି ହେବନାହିଁ ।

ଚଉଠି ପରଦିନ କଥା ଏବେ ବି ମୋର ମନେ ଅଛି । ହଠାତ୍ ରାତି ଅଧରେ ମୋ ନିଦ ଭାଙ୍ଗିଗଲା । କାନଡେରି ଶୁଣିଲି ସେ ସୁଁ ସୁଁ ହୋଇ କାନ୍ଦୁଛନ୍ତି । ନାକରୁ ଶିଙ୍ଘାଣି ବାହାର କରି ସେ ମଶାରି ଟେକି ବାହାରକୁ ଫିଙ୍ଗି ଦେଉଛନ୍ତି । ଆଶ୍ଚର୍ଯ୍ୟ ହେଲି । ମୁଁ ସିନା ବାପା ବୋଉ ଭାଇଙ୍କୁ ଛାଡ଼ି ଆସିଛି, କିନ୍ତୁ ସେ ତ କାହାରିକୁ ଛାଡ଼ିନାହାନ୍ତି, ବରଂ ମୋତେ ପାଇଛନ୍ତି । ଅଥଚ କାନ୍ଦୁଛନ୍ତି କାହିଁକି ? ମୁଁ ଅନେକ ସମୟ ସେମିତି ଶୋଇ ରହିଲି । ତା'ପରେ ଉଠି ଆଲୁଅ ଜଳାଇଲି । ସେ ଧରାପଡ଼ିଯିବା ଭୟରେ ମୁହଁ ଢାଙ୍କି ଶୋଇବାର ଅଭିନୟ କଲେ । ମୁଁ ତାଙ୍କୁ କାନ୍ଦିବାର କାରଣ ପଚାରିଲି । ସେ ପ୍ରଥମେ ଲୁଚାଉଥିଲେ । କିନ୍ତୁ ପରେ କହିଲେ ତାଙ୍କ ପୂର୍ବତନ ପ୍ରେମିକା ମନେ ପଡ଼ିଗଲା । ମୁଁ ସବୁକଥା ଜାଣିବାକୁ ଚାହିଁଲି । ସେ କହିଲେ ସେ ତାଠାରୁ ସବୁ ଚାହିଁଥିଲେ, କିନ୍ତୁ ଅଧିକାର କରି ନ ଥିଲେ । ଆହୁରି ବି ପ୍ରେମିକାଟି ବାହାହେବା ବେଳେ କହିଥିଲା– ମୋତେ ଭୁଲିବ ନାହିଁ । ସେ ସେତେବେଳେ ଶପଥ କରିଥିଲେ ପୃଥିବୀରେ ବଞ୍ଚିଥିଲା ପର୍ଯ୍ୟନ୍ତ ନାରୀମୁଖ ଦର୍ଶନ କରିବେ ନାହିଁ । ମାତ୍ର ବାପା ବୋଉ ଧମକେଇବାରୁ ବାଧ୍ୟ ହୋଇ ବେଦୀରେ ବସିଗଲେ । ମୁଁ ସେଦିନ ତାଙ୍କ ପିଲାଳିଆମି ଦେଖି ମନେ ମନେ ଉତ୍‌ଫୁଲ୍ଲ ହୋଇଥିଲି ।

କିନ୍ତୁ ମୁଁ ଦେଖେ ସେ ଅନେକ ସମୟରେ ବିମର୍ଷ ହୋଇ ଉଠନ୍ତି । ଥରେ ଥରେ ମୋ ପାଖରେ ବସି କାନ୍ଦନ୍ତି । ବିଗତ ପ୍ରେମିକାଠାରୁ ସବୁ ଚାହିଁ ଯେ କିଛି ପାଇ ପାରିନାହାନ୍ତି, ସେଥିପାଇଁ ନିଜକୁ ଅବାଞ୍ଛିତ ମନେ କରନ୍ତି । ମୁଁ ତାଙ୍କୁ ସାନ୍ତ୍ୱନା ଦିଏ– ଜୋର କରି ଆଦାୟ କରି ନ ଦେଲେ ଈପ୍‌ସିତ ବସ୍ତୁ, ନ୍ୟାଯ୍ୟ ବସ୍ତୁ ମିଳେନା । ସେ ବୁଝନ୍ତି, ଅର୍ଥହୀନ ମୁଣ୍ଡ ହଲାନ୍ତି, ତା ପରେ ତାଙ୍କ ମୁହଁରେ ନିରାଶା ଛାଇଯାଏ । ମୁଁ

ଜାଣେ ଏଇ ମୁହୂର୍ତ୍ତରେ ପୃଥିବୀର ଜୀବନଯାତ୍ରା କେମିତି ଚାଲିଥିବ । ରେଜେଇ ତଳେ ଦୁଇଟି ଅଭିନ୍ନ ଦେହ, କବିର ଖାତାରେ ରୋମାଣ୍ଟିକ୍ ଶବ୍ଦର ବିଛଣା, ବରଗଛ ତଳେ କୁଣ୍ଡଳୀ ମୋଡ଼ି ଶୋଇଯାଇଥିବା ପାଗଳ, ଡାକ୍ତରଖାନାର ଜୀବନ୍ତ ଜୀବାଣୁ ଗହଣରେ ସୁପ୍ତ ରୋଗୀ । ଏ ସବୁ ମଝିରେ ବି ସେ ଖୁବ୍ ଆରାମରେ ଶୋଇଯାଇଛନ୍ତି । ମୁଁ କେବଳ ତାଙ୍କୁ ଦେଖୁଛି । ମୁଁ ଅନେକ ସମୟରେ କଥା ନେଇ ପ୍ରତିବାଦ କରେ । ସବୁଠୁଁ ବେଶୀ ପ୍ରତିବାଦ କରେ ତାଙ୍କର ନିଦ ନେଇ । କିନ୍ତୁ ସେ ପ୍ରାୟ କିଛି ପ୍ରତିବାଦ କରନ୍ତି ନାହିଁ । ଥରେ ଆମେ ଟ୍ରେନ୍‌ରେ ଯାଉଥିଲୁ । ଝର୍କା ପାଖରେ ମୁହାଁମୁହିଁ ସେ ଓ ମୁଁ । ଗୋଟିଏ କେଉଁ ଅଜଣା ଷ୍ଟେସନ ଆସିବା ଆଗରୁ ସେ ପରିସ୍ରା କରିବାକୁ ଉଠିଗଲେ । ଷ୍ଟେସନରେ ଗାଡ଼ି ରହିଲା । ଅନେକ ଲୋକ ଠେଲାପେଲା ହୋଇ ଉଠିଆସିଲେ । ଦୁଇଜଣ ଯୁବକ ଅଧା ଅଧା ହୋଇ ମୋ ସାମ୍ନା ସିଟ୍‌ଟା ଦଖଲ କରି ବସିଗଲେ । ମୁଁ ସେମାନଙ୍କୁ କହିଲି ଯେ ସେ ଆସନରେ ଲୋକ ଅଛନ୍ତି । ସେମାନେ ଶୁଣିଲେ ନାହିଁ । ପରମ ନିଶ୍ଚିନ୍ତରେ ବସିରହିଲେ । ସେ ଆସିଲେ । ଦୁଇଜଣଙ୍କୁ ଚାହିଁଲେ । ସେମାନଙ୍କୁ କ୍ଷୀଣ ଇଙ୍ଗିତ ଦେଲେ ଯେ ସେ କୁଆଡ଼େ ସେଠାରେ ବସିଥିଲେ । ସେମାନଙ୍କ ପାଟିରୁ ଗୁଳି ଭଳି କଥା ଫୁଟିଲା–ଆପଣ ବସିଥିଲେ ଭଲ ହେଲା, ଏଥର ଛିଡ଼ା ହୋଇ ରୁହନ୍ତୁ, ଆମେ ବସିଛୁ । ସେ କିଛି କହିଲେ ନାହିଁ, ଚୁପ୍‌ଚାପ୍ ଛିଡ଼ା ହୋଇ ରହିଲେ । ମୋତେ ମନେ ହେଲା ସେ ପିଲା ଦୁଇଜଣ କହୁଛନ୍ତି–ଆପଣ ତାଙ୍କୁ ବାହା ହୋଇଥିଲେ ଭଲହେଲା, ଏଥର ଆମେ ନେଇଯାଉଛୁ, ଆପଣ ଛିଡ଼ାହୋଇ ଦେଖନ୍ତୁ ।

ମୁଁ ହଠାତ୍ ଚିତ୍କାର କରି ଉଠିଲି ! ମୋ ଚିତ୍କାର ଶୁଣି ଅନେକ ଲୋକ ମୋ ଆଡ଼େ ଚାହିଁଲେ । ପିଲା ଦୁଇଜଣ ଆଉ ବସିବା ଅସମ୍ଭବ ଭାବି ଆଖି ମରାମରି ହେଇ ଛିଡ଼ାହୋଇ ପଡ଼ିଲେ । ସେ ବସିଲେ । ରୁମାଲ ବାହାର କରି ନାକ ଓ ନାକ ତଳର ଝାଳ ପୋଛିଲେ ଏବଂ ଅନେକ ସମୟ ଉଦାସ ହୋଇ ବାହାରକୁ ଚାହିଁରହିଲେ ।

ଥରେ ଥରେ ତାଙ୍କର ଅଜବ ଖିଆଲ ସବୁ ହୁଏ । ଚାକିରି ଛାଡ଼ି ଦେଇ ବିଶ୍ରାମ ନେବେ ବୋଲି କହନ୍ତି । ଥରେ ଥରେ ରୋଷେଇ ଘରକୁ ଆସନ୍ତି । ଚୁଲି ପାଖରେ ବସି ଚୁଲି ଜାଳି ଦିଅନ୍ତି । ଥରେ ଥରେ ପିଆଜ ଛଡ଼ାଇ ଦିଅନ୍ତି, ଆଳୁରୁ ଚୋପା ଛଡ଼ାନ୍ତି, ଚଟୁ ଧରି ତରକାରି ଘଣ୍ଟାଘଣ୍ଟି କରନ୍ତି ଏବଂ କହନ୍ତି– ମୁଁ ଯଦି ସ୍ତ୍ରୀ ହୋଇଥାନ୍ତି କଣ ହୋଇଥାନ୍ତା । ମୁଁ ହସେ ଏବଂ ତାଙ୍କୁ ଜୋର କରି ସେଠାରୁ ଉଠେଇଦିଏ ।

ସେ ଥରେ ଥରେ ରାତିରେ ଶୋଇଲା ବେଳେ ଡ୍ରେସିଂ ଟେବୁଲ ସାମ୍ନାରେ ଅନେକ ସମୟ ଧରି ବସନ୍ତି । ନିଜ ସହ କଣ ସବୁ କଥାବାର୍ତ୍ତା କରନ୍ତି । ପାନିଆଁରେ ଏପଟ ସେପଟ କରି ମୁଣ୍ଡ କୁଣ୍ଡାନ୍ତି, ଭୂରେ ପାନିଆଁ ବୁଲାଇ ନିଅନ୍ତି, ଓଠ ମେଲା କରି ଦାନ୍ତ ଦେଖନ୍ତି ଓ ଶେଷରେ କ୍ରିମ ଲଗାଇ ଶୋଇପଡ଼ନ୍ତି ।

କାଲି ଗୋଟିଏ ଅସମ୍ଭବ ଘଟଣା ଘଟିଲା । ତାଙ୍କର ଓ ମୋର ଏଇ ଅଳ୍ପଦିନର ଜୀବନ ମଧ୍ୟରେ ଏ ଏକ ଅଜବ ଅନୁଭବ । ସତରେ ମୁଁ କ୍ରମେ ତାଙ୍କୁ ଭୁଲ ବୁଝି ଆସୁଥିଲି । ଭାବିବାକୁ ଆରମ୍ଭ କରିଦେଇଥିଲି ଯେ, ସେ ଏକ ନିରୁତ୍ତାପ ଆଲୋକ । ମୁଣ୍ଡ ପିଟି ପିଟି ମରିଗଲେ ବି ଡେଣାରେ ସାମାନ୍ୟ ଉତ୍ତାପ ଲାଗିବ ନାହିଁ । କିନ୍ତୁ କାଲି ରାତିରେ ସେ ଏକ ବୀଭତ୍ସ ଚିତ୍ରିତ ବହି ପଢୁଥିଲେ । ହଠାତ୍ ମୋତେ କହିଲେ– ତୁମେ ମୋର ସାର୍ଟ ଓ ଫୁଲ୍‌ପ୍ୟାଣ୍ଟ ପିନ୍ଧିଲ, କେମିତି ଦେଖାଯାଉଛ । ମୁଁ ମନେ ମନେ ବିରକ୍ତ ହେଲି ଓ ଚୁପ୍‌ଚାପ୍ ବସି ରହିଲି । ସେ ଆଉଥରେ ଜୋର ଦେଇ କହିଲା ମାତ୍ରେ ମୁଁ ପ୍ରତିବାଦ କରିପାରିଲି ନାହିଁ । ପିନ୍ଧିଲି । ପେଣ୍ଟ ପିନ୍ଧିବାରେ କଷ୍ଟହେଲା । ଜଙ୍ଘ ଓ ପିଚା ଖୁବ୍ ଟାଇଟ୍ ଜଣାଗଲା । ସେ ମୋତେ ଚାଲବୁଲ କରିବାକୁ କହିଲେ । ମୁଁ ତାଙ୍କର ନିର୍ଦ୍ଦେଶ ମାନିଗଲି । ସେ ସେଇ ସମୟ ମଧ୍ୟରେ ମୋର ସାୟାକୁ ଲୁଙ୍ଗି ଭଳି ପିନ୍ଧିଲେ । ସେ ଖୁବ୍ ରୋଗା ବୋଲି ମୋ ବ୍ଲାଉଜ୍ ତାଙ୍କ ଦେହକୁ ଠିକ୍ ହୋଇଗଲା । ତା ପରେ ଶାଢ଼ି ଗୁଡ଼ାଇ ସେ ଦର୍ପଣ ସାମ୍ନାରେ ଛିଡ଼ାହେଲେ । ତାପରେ ମୋ ସାମ୍ନାକୁ ଆସି ଏକ ଅଜବ ଭଙ୍ଗୀରେ ଚାହିଁଲେ । ହଠାତ୍ ମତେ ଖୁବ୍ ଜୋରରେ ଜାବୁଡ଼ି ଧରିଲେ । ମୁଁ ପ୍ରଥମଥର ପାଇଁ ବୁଝିପାରିଲି, ତାଙ୍କ ଦେହରେ ପ୍ରମତ୍ତ ଶକ୍ତି । ମୋତେ ଠେଲି ବିଛଣାକୁ ପକାଇଦେଲେ ଓ ଆଲୁଅ ଲିଭାଇଦେଲେ । ମୋତେ ମନେ ହେଲା ସେଇ ମୁହୂର୍ତ୍ତରେ କେଉଁଠି ଯେପରି ରେଜେଇ ଡଳର ଦେହ ସବୁ ଭୀଷଣ ଯୁଦ୍ଧରେ ମାତି ଯାଇଛନ୍ତି, କବିର ଖାତାରେ ରୋମାଣ୍ଟିକ୍ ଶବ୍ଦ ସବୁ କାଗଜର ବିଛଣା ଛାଡ଼ି ସାରା ପୃଥିବୀରେ କଳକଳ ହୋଇ ମାଡ଼ି ଯାଇଛନ୍ତି । ବରଗଛ ମୂଳର ପାଗଳମାନେ ହଠାତ୍ ଉଦ୍ଦାମ ହୋଇ ଖରା ବର୍ଷା ଶୀତରେ ଦିନ ରାତିକୁ ଏକାକାର କରି ବୁଲିବା ଆରମ୍ଭ କରି ଦେଇଛନ୍ତି ଏବଂ ଡାକ୍ତରଖାନାର ଅନେକ ମୁମୂର୍ଷୁରୋଗୀ ଜୀବନ୍ତ ଜୀବାଣୁମାନଙ୍କୁ ପରାଜିତ କରି ରୋଗମୁକ୍ତ ହୋଇ ଉଠି ବସିଛନ୍ତି ।

('ଆସନ୍ତାକାଲି', ଜାନୁଆରୀ ୧୯୭୪)



# ଅସମ୍ଭବ ମୃତ୍ୟୁ

ମୁଁ ଅନେକ ରାସ୍ତା ଧାଇଁଛି ଟ୍ରେନ୍ ଧରିବି ବୋଲି । ମୁଁ ଟ୍ରେନ ସମୟ ଠିକ୍ ଜାଣେ ନାହିଁ; କିନ୍ତୁ ମନେ ହୋଇଛି ଟ୍ରେନଟା ଖୁବ୍ ଆଗରୁ ଯେପରି ପଳାଇଯିବ । ତେଣୁ ମୁଁ ଷ୍ଟେସନ ଆଡ଼େ ମୁହଁ କରି ସାରା ରାସ୍ତା ଦୌଡ଼ିଛି । କିଛି ସମୟ ପରେ ମୁଁ ଠିକ୍ ରେଳ ଲାଇନ କଡ଼କୁ ଉଠି ଆସିଛି । ତା' ପରେ ରେଳ ଲାଇନ କଡ଼ର ପାଦଚଲା ରାସ୍ତାରେ ପୁଣି ଦୌଡ଼ିବା ଆରମ୍ଭ । ରାସ୍ତାରେ ଚୁକୁଡ଼ି ଆଉ ଅମରି ଲଟାରେ କେତେଥର ମୋର ଗୋଡ଼ ଛନ୍ଦିଛି । ରେଳ ଲାଇନ କଡ଼ର ବିଷ୍ଟା ସବୁ ମୋ ପାଦ ତଳେ ଚକଟି ହୋଇଯାଉଛନ୍ତି; କିନ୍ତୁ କିଛିକୁ ମୋର ଖିଆଲ ନାହିଁ । ମୋତେ କୌଣସି ଉପାୟରେ ଟ୍ରେନଟା ଧରିବାକୁ ହେବ । ସେଇ ରାସ୍ତାରେ ଷ୍ଟେସନଆଡୁ ଜଣେ ଆଦିବାସୀ ତରୁଣୀ ମୁଣ୍ଡରେ ପୋଡ଼ା କୋଇଲା ନେଇ ଫେରୁଥିଲା । ମୋର ଦୌଡ଼ିବା ଦେଖି ହସିଲା ବୋଧହୁଏ । ମୁଁ ତା ଆଖିକୁ ଚାହିଁ ଦେବାକ୍ଷଣି ସେ ଆଖି ମାରିଲା । ମୋତେ ମନେହେଲା ମୋର ସର୍ବାଙ୍ଗ ଯେପରି ଜଳିଯାଉଛି । ମୁଁ ଏ ସବୁକୁ ଖାତିର ନ କରି ଗତିବେଗ ଆହୁରି ବଢ଼େଇଦେଲି । ମୋ ଜୋତା ତଳେ ଧାରୁଆ ଗେଟି, ପୋଡ଼ା କୋଇଲାର ଏକାଦିକ୍ରମେ ମଚମଚ ଶବ୍ଦ । ମୁଁ ହଠାତ୍ ସିଗ୍‌ନାଲ ତାର ଉପରେ ଝୁଣ୍ଟିପଡ଼ିବା ମାତ୍ରେ ମୋ କଡ଼ ଦେଇ ହୁସ୍ ହୁସ୍ କରି ଇଞ୍ଜିନରୁ ଦଲକାଏ ଗରମ ପବନ ମୋ ଉପରକୁ ଫିଙ୍ଗି ଟ୍ରେନଟା ବାହାରିଗଲା । ଆଉ ଅଳ୍ପ ଦୂରରେ ଷ୍ଟେସନର ଆଲୁଅ, କୋଳାହଳ । ମୁଁ ସିଗନାଲ ତାର ଉପରୁ ଶୀଘ୍ର ଉଠିବାର ଚେଷ୍ଟା କରି ଦେଖିଲି ସବୁ ଚେଷ୍ଟା ମୋର ବ୍ୟର୍ଥ; କିନ୍ତୁ ପରମୁହୂର୍ତ୍ତରେ ଯେତେବେଳେ ହୁଇସିଲ ବାଜିଲା, ଧୀରେ ଧୀରେ ସିନେମା ପୋଷ୍ଟର, ମଣିଷ, ଆଲୁଅ, ସିମେଣ୍ଟ ଚଟାଣ ପଛକୁ ଘୁଞ୍ଚିଯିବାକୁ ଲାଗିଲେ, ଅନୁଭବ କଲି ଗୋଟିଏ ଛୋଟ ଅଥଚ ନିଛାଟିଆ କମ୍ପାର୍ଟମେଣ୍ଟରେ ମୁଁ ବସିଛି । ଏତେବଡ଼ ଟ୍ରେନଟା ଖୁବ୍ ଭିଡ଼ ହେବ ବୋଲି ମନେ ହେଉଥିଲା; କିନ୍ତୁ ଆଶ୍ଚର୍ଯ୍ୟ, ମୋ କମ୍ପାର୍ଟମେଣ୍ଟରେ କେହି ନ ଥିଲେ, କେବଳ ଶୂନ୍ୟ ବେଞ୍ଚ ତଳେ ବାଦାମ ଚୋପା ଆଉ ଖଣ୍ଡିଆ ସିଗାରେଟ । ଷ୍ଟେସନ ପରେ ଷ୍ଟେସନ ପାରି ହୋଇ ଯାଉଥିଲା ଟ୍ରେନ ସମାନ ଗତିରେ। ଷ୍ଟେସନର ଆଲୁଅ ମୁହୂର୍ତ୍ତକ ମଧ୍ୟରେ କମ୍ପାର୍ଟମେଣ୍ଟରେ ପଶି ସବୁ ଶୂନ୍ୟ

ଜିନିଷକୁ ଛୁଇଁ ଶୀଘ୍ର ପଳାଇ ଯାଉଥିଲା । ମୁଁ କେବଳ ମନ ଦେଇ ଶୁଣୁଥିଲି ଟ୍ରେନର ଏକ ପ୍ରକାର ଘଣ୍ଟା ଘଣ୍ଟା ଶବ୍ଦ, ଦ୍ରୁତ ଲାଇନ ବଦଳ କରିବାର ଅସ୍ୱସ୍ତିକର ଘଡ଼ଘଡ଼ି । ମୋର ଆଖିପତା ଲାଗି ଆସୁଥିଲା ମନେହୁଏ । ହଠାତ୍ ମୋତେ ଜଣାଗଲା କେଉଁଠୁ ଯେପରି ଏକପ୍ରକାର ଆୱାଜ ଆସୁଛି । ମୁଁ କାନ ଡେରି ଶୁଣିଲି । ପଚା ଆମ୍ବ ଉପରେ ଭଣଭଣ ହୋଇ ନୀଳମାଛି ଉଡ଼ିବାର ଶବ୍ଦ ପରି ସେଇଟା । କ୍ରମେ ଶବ୍ଦଟା ଶୂନ୍ୟ କମ୍ପାର୍ଟମେଣ୍ଟ ମଧ୍ୟରେ ଦ୍ରୁତତର ହୋଇ ଉଠୁଛି । ମୁଁ ଚାରିଆଡ଼କୁ ଚାହିଁଲି । ବେଞ୍ଚ ତଳ, ଉପର, ଲାଭାଟରୀ ସର୍ବତ୍ର । ବାହାରକୁ ଚାହିଁଲି ଅନ୍ଧକାର । କ୍ରମେ ଟ୍ରେନର ଘଣ୍ଟା ଘଣ୍ଟା ଶବ୍ଦ, ଲାଇନ ବଦଳର ଶବ୍ଦକୁ ଛପେଇ ଶବ୍ଦଟା ଦ୍ରୁତତର ହୋଇ ଉଠୁଛି । ସର୍କସରେ ଗ୍ଲୋବ ମଧ୍ୟରେ ମଟର ସାଇକେଲ ଚଳାଇବାର ଶବ୍ଦ ଭଳି ଶବ୍ଦଟା ଉତ୍କଟ ହୋଇ ଉଠୁଛି । ମୋର ସ୍ନାୟୁଗ୍ରନ୍ଥୀ କେମିତି ଅବଶ ହୋଇ ଆସୁଛନ୍ତି । ଟ୍ରେନଟା ବି ବେଶୀ ସ୍ପିଡ୍ ନେଇଛି ବୋଧହୁଏ । ଘଣ୍ଟା ଘଣ୍ଟା ଶବ୍ଦଟା ଦ୍ରୁତତର ହୋଇ ଉଠୁଛି । ପୁଣି ଏଣେ ଅନେକ ସାଇଲେନ୍‌ସାରହୀନ ମଟର ସାଇକେଲର ଶବ୍ଦ କିମ୍ବା ଯୁଦ୍ଧକାଳୀନ କୌଣସି ଏକ ଏୟାର ବେସ୍‌ରେ ଏକ ସମୟରେ ଉପରକୁ ଉଠିବା ବେଳର ଅନେକ ବୋମାରୁ ବିମାନର ଛାତିଥରା ଶବ୍ଦ ପରି ସେ ଶବ୍ଦଟା କ୍ରମେ ଭୀଷଣ ହୋଇ ପୃଥିବୀର ସବୁ ଅଦୃଶ୍ୟ କୋଣ ଅନୁକୋଣରୁ ମୋ ଉପରକୁ ମାଡ଼ି ଆସୁଛନ୍ତି । ମୋର ଆଉ ରକ୍ଷା ନାହିଁ । ବୋଧହୁଏ ଏଇଟା ଶେଷ ସଚେତନ ମୁହୂର୍ତ୍ତ । ମୁଁ ଖୁବ୍ ଜୋରରେ ଚିତ୍କାର କଲି ।

ଆଖି ଖୋଲି ଦେଖିଲି ସୂର୍ଯ୍ୟୋଦୟ ହେବାକୁ ବେଶି ଡେରି ନାହିଁ । ଜାଗରଣ ତଟ ଭୂମିରେ ଅନେକ ସମୟ ନିଶ୍ଚଳ ହୋଇ ଅନୁଭବ କଲି ସେଇ ଅଜବ ଶବ୍ଦ । ଶୁଣିଲି ଖୁବ୍ ଦୂରରେ ଯେପରି ଗୋଟିଏ ସ୍କୁଟର କିମ୍ବା ଏରୋପ୍ଲେନ୍ ଖୁବ୍ ଦୂରକୁ ଦୂରକୁ ଘୁଞ୍ଚିଯାଉଛି; କିମ୍ବା ଅନ୍ୟ ଏକ କୋଠରିର ବନ୍ଦ ବାୟୁରେ ଗୋଟିଏ ନୀଳମାଛି ଭଁ ଭଁ କରି ଉଡ଼ି ବୁଲୁଛି । ଶବ୍ଦର ଉତ୍ପତ୍ତିସ୍ଥଳ ଅନ୍ୱେଷଣ ପାଇଁ ବିଛଣାରେ ଉଠି ବସିଲି । ହଠାତ୍ ସବୁ ଶବ୍ଦ ବନ୍ଦ ହୋଇଗଲା । ମୋତେ ମନେ ହେଲା ଏତେ ପର୍ଯ୍ୟନ୍ତ ଶବ୍ଦଟା ଅନ୍ୟ କେଉଁଠୁ ଆସୁନଥିଲା, ଆସୁଥିଲା ମୋର ମସ୍ତିଷ୍କ ଭିତରୁ ।

ଅବଶ୍ୟ ଦିନେ ନିଶିଅପା କହୁଥିଲା ଯେ ରେଳଯାତ୍ରା ସ୍ୱପ୍ନ ମୃତ୍ୟୁର ପ୍ରତୀକ । ଅନେକ ଥର ଅବଶ୍ୟ ରେଳଯାତ୍ରା ସ୍ୱପ୍ନ ଦେଖିଛି କିନ୍ତୁ ଏପର୍ଯ୍ୟନ୍ତ ତ ବଞ୍ଚି ରହିଛି । ତେବେ ଅନ୍ୟ ସ୍ୱପ୍ନଠାରୁ ଏ ସ୍ୱପ୍ନଟା ଭୀଷଣ ଅଲଗା । ଏଇଟା ଭୀଷଣ ବୀଭତ୍ସ । ଆଉ ସେଇ ଭୌତିକ ଶବ୍ଦ । ମନେହୁଏ ଏକାକୀ ବିରାମହୀନ ଯାତ୍ରା ମହାଯାତ୍ରାର ପ୍ରତୀକ । ଯା'ପରେ ମୋର ଆଉ ରାସ୍ତା ନାହିଁ ? ଅବଶିଷ୍ଟ ରାସ୍ତାକୁ ଟ୍ରେନ୍‌ଟା କଣ ଶୀଘ୍ର ପାରି କରାଇଦେଲା ?

ମୁଁ ମରିଗଲେ ଦେବୀ କ'ଣ ମରିଯିବ ? କାରଣ ଦେବୀ କହେ ସେ କୁଆଡ଼େ ମୋ ବିନା ବଞ୍ଚିପାରିବନି ।

ମୁଁ ଜାଣେ ମୁଁ ଦିନେ ମରିବି; କିନ୍ତୁ ଏତେ ଶୀଘ୍ର କେବେ ମରିବାକୁ ଚାହିଁନାହିଁ । ବର୍ତ୍ତମାନ ତ ପୃଥିବୀରେ ଅନେକ ସହଜ ସୁଲଭ ଅନୁଭୂତିକୁ ଅନୁଭବ କରିନାହିଁ । ତଥାପି ମୋର ମନେହୁଏ ମୁଁ ଖୁବ୍ ବେଶି ଦିନ ବଞ୍ଚିବି ନାହିଁ । ତାପରେ ପୁଣି ଏଇ ସ୍ୱପ୍ନ ।

ଥରେ ଜଣେ ଜ୍ୟୋତିଷ ଆସିଥିଲେ ଘରକୁ । ସେ ମୋ ହାତ ଦେଖିଲେ । ତାଙ୍କ ପାଟିର ପାନପିକ ସମ୍ଭାଳି ନେଇ ସେ ଯାହା କହିଥିଲେ, ତାହା ଏପର୍ଯ୍ୟନ୍ତ ଭୁଲିବି ନାହିଁ; କିନ୍ତୁ ସେଦିନଠୁ ଜ୍ୟୋତିଷ ତ ଦୂରେ ଥାଉ, ସାଙ୍ଗସାଥୀମାନଙ୍କୁ ବି ମଜାରେ ହାତ ଦେଖାଇବାକୁ ମୋତେ ଭୟ ଲାଗେ ।

ବାହାରେ ରଙ୍ଗିନ ସୂର୍ଯ୍ୟୋଦୟ; କିନ୍ତୁ ପୂର୍ବ ଆକାଶରେ ରାତିର ଚିତାଗ୍ନି ଜଳିଗଲା ବୋଲି କହିବାକୁ ବେଶି ଇଚ୍ଛା ହେଉଛି । ଆଜି କଣ ମୋର ଜୀବନରେ ଶେଷ ସୂର୍ଯ୍ୟୋଦୟ ? ଆଚ୍ଛା, ମୋର ଶବଟା କେମିତି ଦେଖାଯିବ ? ମୁଁ କୌଣସି ଦିନ ଦେଖି ନାହିଁ ଚିପା ପେଣ୍ଟ, ଚେକ୍‌ସାର୍ଟ, ବଢ଼ିଲାବାଳ ଓ ଲମ୍ବା କଲିଯୁକ୍ତ ତରୁଣର ଶବ । ଅବଶ୍ୟ ଆତ୍ମହତ୍ୟା କିମ୍ବା ଦୁର୍ଘଟଣା ଘଟିଲେ ତାହା ସମ୍ଭବ ହୋଇପାରେ ।

ମୁଁ ଜାଣେ, ମୁଁ ଆତ୍ମହତ୍ୟା କରିବି ନାହିଁ, କେବଳ ମଝିରେ ମଝିରେ ଦେବୀକୁ ଭୟ ଦେଖାଏଁ, ଆଉ ତା ଆଖିକୁ ଚାହିଁ ପରିଷ୍କାର ପରିଚ୍ଛନ୍ନ ଭାବରେ କହେ–ତୋତେ ନ ପାଇଲେ ମୁଁ ଆତ୍ମହତ୍ୟା କରିଦେବି । ପ୍ରତିଦିନ ସାଂପୁ ସାବୁନ ନ ହେଲେ ଗାଧୁଆ ଘରକୁ ଯାଏ ନାହିଁ । ଝିଅଙ୍କ ଭଳି ମୁହଁରେ ଆଫଗାନ୍ ଲଗାଏ, ପକେଟରେ ପାନିଆ ରଖେ, ଖରାରେ ବୁଲେ ନାହିଁ, ଏ ସବୁର ଆୟୋଜନ କଣ ଆତ୍ମହତ୍ୟା କରିବା ପାଇଁ ? ଆତ୍ମହତ୍ୟା କରିବା ଲୋକର ଚେହେରା ଅନ୍ୟ ପ୍ରକାରର । ମୁଁ ଶାନ୍ତନୁକୁ ଦେଖିଥିଲି, ସୀମା ତାକୁ ପ୍ରତ୍ୟାଖ୍ୟାନ କଲା ପରେ ସେ ଦାଢ଼ି ରଖିଲା, ଖରାରେ ଓ ରାତି ଅଧରେ ଏଣେ ତେଣେ ବୁଲିଲା, ଗାଧୁଆ ଖିଆ ଛାଡ଼ିଲା, ମଦ ପିଇଲା, ଏବଂ ଦିନେ ଆଶ୍ଚର୍ଯ୍ୟ ହୋଇ ଦେଖିଲି ତାକୁ ଦଳେ ରାମନାମ ସତ୍ୟ ହେ ଗାଇ ଗାଇ ତା' ଉପରେ କାଗଜଫୁଲ ପକାଇ ଶ୍ମଶାନକୁ ନେଇ ଯାଉଛନ୍ତି ! ମୋ ଦ୍ୱାରା କୌଣସି ଜନ୍ମରେ ତା ସମ୍ଭବ ନୁହେଁ ।

ଆଉ ଦୁର୍ଘଟଣା ! ମନେ ଅଛି ଦିନେ ସାମ୍ନାରେ ବୋଝେଇ ଲରୀ, ଏପଟକୁ ପଛ କରି ଛିଡ଼ା ହୋଇଥିବା ଗୋଟିଏ କାର। କାର୍‌ଟାକୁ ଅତିକ୍ରମ କରୁକରୁ ସାମ୍ନାରୁ ଲରୀଟା ମୋ ଉପରକୁ ମାଡ଼ିଆସିଲା । ସାଇକେଲ ଚକଟା ପଶିଗଲା ଭଳି ସ୍ଥାନ । ମୁଁ ଆଖି ବନ୍ଦ କରିଦେଲି । ସାଇକେଲରେ ବ୍ରେକ ନଥିଲା । କିଛି ସମୟ ପରେ ଦେଖିଲି ସାଇକେଲ ସହ ମୁଁ ଆଶ୍ଚର୍ଯ୍ୟଜନକ ଭାବେ ବଞ୍ଚି ବାହାରି ଆସିଛି ।

ମୋର ମୃତ୍ୟୁ ଏତେ ଶୀଘ୍ର ହୋଇପାରେନା । ମୋ ଦ୍ୱାରା ପୃଥିବୀର ନିଶ୍ଚୟ ଅନେକ କାର୍ଯ୍ୟ ହେବ । ଲର୍ଡ଼ କ୍ଲାଇବ ପରି ମୁଁ ନିଜକୁ ନିଜେ ଗୁଳି କରିବାକୁ ଚାହିଁଲେ ବି ସବୁ ଗୁଳି କାଖତଳ ଦେଇ ବାହାରିଯିବ ।

ତକିଆର ଏପଟ ମଇଳା ହୋଇଥିବାରୁ ଆରପଟ ଓଲଟାଇ ଦେଇ ଖଟରୁ ଓହ୍ଲାଇଲି ।

ମୁଁ ବାଥ୍‌ରୁମ୍‌କୁ ଗଲି, ବ୍ରସ ଧରିଲି । ପେଷ୍ଟ ଶେଷ ହୋଇ ଆସିଲାଣି । ମନେ ପଡ଼ିଲା କାଲି ଚୁମା ଦେଲାବେଳେ ଦେବୀ କହୁଥିଲା ମୋ ପାଟି କୁଆଡ଼େ ଗନ୍ଧୋଉଛି । ଦର୍ପଣ ଆଗରେ ଛିଡ଼ାହେଲି । ଅନେକ ସମୟ ବ୍ରସଟା ଘଷିଲି ।

ମୋ ଆଖିଟା ଏପରି ନାଲି ଦେଖାଯାଉଛି କାହିଁକି ? ରାତି ଉଜାଗର ହୋଇ ରେଳଯାତ୍ରା କଲେ ଆଖି ଯେପରି ନାଲି ପଡ଼େ, ମୁହଁରେ ବ୍ରଣ ଦେଖାଦିଏ ଠିକ୍ ସେହିପରି । ମୁଁ କଣ ସତରେ ରେଳରେ ବସି ଯାଇଥିଲି ? ଆରେ, ମୋ ନାକଟା ଏପରି ବଙ୍କା ଦେଖାଯାଉଛି କାହିଁକି ? ଏଇଟା ତ ଅସମତଳ ଦର୍ପଣ ନୁହେଁ କିମ୍ବା କେବେ ମୋ ନାକଟା ଏପରି ବଙ୍କା ନଥିଲା ! ଥରେ ଖରାବେଳେ ଆଈ ପାଖଘର ନିଧିଆ ମା'କୁ ଦେଖି ଆସି କହିଲା, ଆଉ ନୁହେଁ, ଅଣଚାଶ ବହିଲାଣି, ନାକ ବଙ୍କା ଦେଖାଗଲାଣି । ସେଦିନ ରାତି ଅଧରେ ହଠାତ୍ କାନ୍ଦବୋବାଳି ଶୁଣି ମା'ଙ୍କ ଇସାରାରେ ଦୁଇ କାନରେ ଆଙ୍ଗୁଠି ଦେଇ ଶୋଇପଡ଼ିଥିଲି । ତା'ପରେ ଗଛକଟାର ଠକ୍ ଠକ୍ ଆୱାଜ ଏବଂ ଫରଚା ହେବା ଆଗରୁ ସେଇ 'ରାମନାମ ସତ୍ୟ ହୈ'ର ବିଳାପ; କିନ୍ତୁ ମୋ ପାଖକୁ ଏତେ ଶୀଘ୍ର ଅଣଚାଶ ପଶିପାରିବ ନାହିଁ କିମ୍ବା ସାରା ରାତି ଗଛକଟାର ଠକ୍ ଠକ୍ ଆୱାଜ ହେବ ନାହିଁ, ତଥାପି ନାକଟା ତ ସାମାନ୍ୟ ବଙ୍କା ଦେଖାଯାଉଛି ।

ଅନ୍ୟ ପ୍ରକାର ହସ ହସିଲି । ଦାନ୍ତରୁ ବ୍ରସ ଉଠାଇ ଆଣିଲି । ଦର୍ପଣରେ ଅନ୍ୟମନସ୍କ ଭାବରେ ଛେପ ପକାଇବାର ଭଙ୍ଗୀ ଦେଖିଲି । ଧୀରେ ଧୀରେ ଉଚ୍ଚାରଣ କଲି–କନ୍‌ହେଇ, ଆଜି ହୁଏତ ଶେଷ ଦେଖା ।

ମୁଁ ପାଠପଢ଼ା ବନ୍ଦ କରି ଦେଇଛି, ଚାକିରି ପାଇନି; କିନ୍ତୁ ବେକାର ନୁହେଁ । ଦିନସାରା ଏଣେତେଣେ ଘୂରେ; ରାତିରେ ବେକାର ସମସ୍ୟାର ସମାଧାନ ପାଇଁ ଦେବୀକୁ ଟିଉସନ ପଢ଼ାଏ, ଆଉ ସାରାଦିନ ଉପନ୍ୟାସ ପଢ଼ି, ଦେବୀ କଥା ଚିନ୍ତା କରି କଟାଇଦିଏ ।

ଆଜି କୌଣସି ଆଡ଼େ ଯିବିନି । ଶୋଇ ବି ହେବନି । ଯଦି ସ୍ୱପ୍ନଟା ପୁଣି ଫେରି ଆସେ ? ବରଂ ଅପରାହ୍ନରେ ବ୍ରଜବାବୁଙ୍କ ପ୍ରେସରେ ଯାଇ ବସିବି । ଏଣୁତେଣୁ ପତ୍ରିକା ଓଲଟାଇଲା ବେଳେ ଯନ୍ତ୍ରପାତିର ବେପରୁଆ ଶବ୍ଦ ଶୁଣିବି ଅନ୍ୟମନସ୍କ ହୋଇ ।

ମୁଁ ଶୁଭେନ୍ଦୁବାବୁଙ୍କ ଘରକୁ ବାହାରିଲି । ସେ କହନ୍ତି ଅରୁନ୍ଧତୀ ଦେଖା ନ ଗଲେ ମୃତ୍ୟୁ ସନ୍ନିକଟ । ଆଜି ସଞ୍ଜ ହେଲା ମାତ୍ରେ ଆଗ ସପ୍ତର୍ଷିମଣ୍ଡଳ ଖୋଜିବି । ତା'ପରେ ବଶିଷ୍ଠ, ତା'ପରେ ଅରୁନ୍ଧତୀ । ଯଦି ଅରୁନ୍ଧତୀ ଦେଖା ନ ଯାଏ ? ଆଜି କେମିତି ପାଗଟା ମେଘୁଆ ହୋଇଛି । ଯଦି ସଞ୍ଜରେ ବି ପାଗ ଏମିତି ରହେ ?

ମୁଁ ଶୁଭେନ୍ଦୁବାବୁଙ୍କ ଘରକୁ ଗଲି । ମନେ ହେଲା ସାରା ରାସ୍ତା ଯେପରି କୁହୁଡ଼ି ଘୋଟି ରହିଛି । ଏଇଟା ତ ଶରତ ଋତୁ । ଆକାଶ ଏତେ ମେଘୁଆ କାହିଁକି ? ସୂର୍ଯ୍ୟ କିରଣ ଅଛି; କିନ୍ତୁ କେମିତି ଏକ ପ୍ରକାର ତେଜହୀନ । ମୁଁ ଜାଣେ ସକାଳେ ସଞ୍ଜରେ ପାଗ ଖରାପ ହେଲେ ମୁଁ ନିର୍ଜୀବ, ଅନୁତ୍ତେଜିତ ହୋଇପଡ଼େ । ରାତିରେ ସେ ବୀଭତ୍ସ ସ୍ୱପ୍ନ ପରେ ଆକାଶଟା ଯଦି ପରିଷ୍କାର ଥାଇ ଚକ୍ ଚକ୍ ଉଜ୍ଜ୍ୱଳ ଖରା ପଡ଼ନ୍ତା, ତା' ହେଲେ ସେ ଦୁଃସ୍ୱପ୍ନକୁ ଭୁଲିଯାଇ ପାରନ୍ତି । ମନେ ହେଉଛି ପୃଥିବୀର କେଉଁ ଅଞ୍ଚଳରେ ଯେପରି ଭୀଷଣ ବୃଷ୍ଟି ସଙ୍ଗେ ଝଡ଼ ତୋଫାନ କୁଆପଥର ବର୍ଷା ଆରମ୍ଭ ହୋଇଛି । ଚାରିଆଡୁ କେମିତି ଏକପ୍ରକାର ଲଣ୍ଡଭଣ୍ଡ ହୋଇ ଦୁର୍ଦ୍ଦିନ ମାଡ଼ିଆସୁଛି ।

ଶୁଭେନ୍ଦୁବାବୁଙ୍କୁ ସ୍ୱପ୍ନ କଥାଟା କହନ୍ତି । ଦୁର୍ଭାଗ୍ୟ, ସେ ବି ଘରେ ନାହାନ୍ତି । ମୁଁ ଘରକୁ ଫେରିଲି । ବିଛଣାରେ ଶୋଇଲି । ଝରକା ଦେଇ ବାହାରକୁ ଚାହିଁଲି । ପବନ ନିଶ୍ଚଳ । ସଜନା ଗଛରେ ଗୋଟିଏ ବି ପତ୍ର ହଲୁ ନାହିଁ । ଗୋଟିଏ ବି ପ'କ୍ଷୀ ନାହାନ୍ତି । ପକ୍ଷୀ ଦେଖିଲେ ମୁଁ ଏକ ଅନ୍ୟପ୍ରକାର ସଜୀବତା ଅନୁଭବ କରେ । ଆଶ୍ଚର୍ଯ୍ୟ, ମୋତେ ନିର୍ଜୀବ କରିଦେବା ପାଇଁ ସବୁ ପକ୍ଷୀ ପୃଥିବୀରୁ ଉଡ଼ି ପଳାଇଛନ୍ତି । ସେପଟ କୋଠାର ଏରିଏଲ ବାଉଁଶ ଉପରେ ଗୋଟିଏ ଚଢ଼େଇ । ମୁଁ ଆଶ୍ୱସ୍ତ ହେଲି । ଚଢ଼େଇଟି ଉଡ଼ି ଆସି ସଜନା ଗଛରେ ବସିଲା । ବଣିଚଢ଼େଇ । ହଠାତ୍ ଦପ୍‌କରି ଅନେକ ନାଲି ଆଲୁଅ ଜଳି ଉଠିଲା । ରାସ୍ତା ଛକରେ ଗୋଟିଏ ଅକ୍ଷର ଧାଡ଼ି ଲମ୍ବିଗଲା—ଏକ ବଣି ଅଶୁଭ ।

ବରଂ କାଲି ଦେବୀକୁ ଲେଖିଥିବା ଚିଠିଟା ପଢ଼ାଯାଉ । ବିଛଣା ତଳୁ କାଗଜଟା ବାହାର କଲି । ବିଷର ରଙ୍ଗ ନୀଳ, ନୀଳକଣ୍ଠ, ମୃତ୍ୟୁର ରଙ୍ଗ ନୀଳ । ଛାଡ଼—ଦେବୀ ମୋର, ତୋତେ ଯା ଭିତରେ ଅନେକ ଚିଠି ଲେଖିଛି, ଅନେକ ଚୁମା ଦେଇଛି; କିନ୍ତୁ ମୁଁ ଚାହେଁ ଏଥର ତୁ ମୋତେ ଚିଠି ଦେବୁ, ଏଥର ତୁ ମୋତେ ଚୁମା ଦେବୁ । ତୋର ସେଇ କାଲି ଶବ୍ଦଟା ମୋ ପାଖରେ ଉଚ୍ଚାରଣ କରିବୁ ନାହିଁ । କାରଣ ମୃତ୍ୟୁ ପର୍ଯ୍ୟନ୍ତ କାଲିଟା କେବେ ଆଜି ହୋଇ ଆସିବ ନାହିଁ । ମୁଁ ଯାହା ଚାହେଁ, ଆଜି ଚାହେଁ, ବର୍ତ୍ତମାନ ଚାହେଁ । ମୁଁ ଭାବୁଛି ତୋତେ ନେଇ ପୃଥିବୀର ଶ୍ରେଷ୍ଠ ସାହିତ୍ୟ ଲେଖିବି । ମୁଁ ତୋତେ ଏ କଦର୍ଯ୍ୟ ପୃଥିବୀରେ ରହି ଭଲପାଇବାକୁ ଚାହେଁନା । ମୁଁ ତୋତେ ଏମିତି ଏକ ସ୍ଥାନକୁ ନେଇଯିବାକୁ ଚାହେଁ, ଯେଉଁ ସ୍ଥାନ ପୃଥିବୀର ଖୁବ୍ ଦୂରରେ, ଏକାନ୍ତ ନିର୍ଜ୍ଜନ । କେବଳ ଏଇ କାଗଜ ପରି ମୋର ଆଉ ତୋର ଚାରିପଟେ ରହିବ ଅସମ୍ଭବ ନୀଳ ଆକାଶ ଆଉ ଆକାଶ । ଆମେ କେବଳ ସେ କାଗଜରେ ଦୁଇଟି ନୁହେଁ ଗୋଟିଏ ବିନ୍ଦୁ ହୋଇଯିବା ।

କିନ୍ତୁ ସେଇଟା କିପରି ସମ୍ଭବ ? ମୃତ୍ୟୁରେ ? ମୁଁ ଯଦି ଏକା ଆଜି ମରିଯାଏ ! କିନ୍ତୁ ଦେବୀକୁ ଛାଡ଼ି ମୋର ମୃତ୍ୟୁ· ଅସମ୍ଭବ ।

ଆଖି ବନ୍ଦ କରି କାନ ଡେରିଲି । ମୋ ଭିତରେ ଅନେକ କଳକବ୍‌ଜାର ଶବ୍ଦ । ରାସ୍ତା ଉପରେ ବୋଝେଇ ଟ୍ରକ ଏପରିକି ଧୀର ମନ୍ଥର ଗତିରେ ସାଇକେଲ ଗଡ଼ିଯିବାର

ଶବ୍ଦ । ଦ୍ୱିପ୍ରହରଟା ଭୀଷଣ ନିଃସଙ୍ଗ ହୋଇ ଉଠୁଛି, ଖୁବ୍ ଦୂରରୁ ଶୁଣାଯାଉଛି ଗୋଟିଏ କପୋତୀର କାନ୍ଦଣା– ସେରକ ପୂରିଲା ମାଣକ ପୂରିଲା ସ୍ୱର । ମୁଁ ଯଦି ମରିଯାଏ ମୋ ମାଆ ଠିକ୍ ଏଇପରି କାନ୍ଦିବ ।

ମୁଁ ଉଠିଲି । ବସନ୍ତ ଘରକୁ ଗଲି । ସେ ଶୋଇଥିଲା । ତାକୁ ଉଠାଇଲି । କେରମ୍ ପକାଇଲି । ଅବଶ୍ୟ ତା ସହ ମୋତେ କେରମ୍ ଖେଳିବାକୁ ଭଲ ଲାଗେ ନାହିଁ, ସେ ହାରିଯାଏ ବୋଲି, ତଥାପି ଖେଳିଲି । ଅସମ୍ଭବ ଭାବେ ମୁଁ ହାରିଯାଉଛି । ବସନ୍ତ ଆଶ୍ଚର୍ଯ୍ୟ ହେଉଛି, କିନ୍ତୁ ମୁଁ ଜାଣେ ଏଇଟା ସ୍ୱାଭାବିକ । ମୋତେ ହରାଇଦେବା ପାଇଁ ପୃଥିବୀର ସବୁ କୋଣରୁ ଭୀଷଣ ଷଡ଼ଯନ୍ତ୍ର ଆରମ୍ଭ ହୋଇଯାଇଛି ।

ଘରକୁ ଫେରି ଖୋଲା ଛାତରେ ବୁଲିଲି । ଦେଖିଲି ଥାକ ଥାକ କୋଠା । କୋଠାଗୁଡ଼ାକର ଉପର ମହଲାକୁ ଖରା ଉଠି ଆସିଲାଣି । ରାସ୍ତା ଉପରର ଇଲେକ୍‌ଟ୍ରିକ ତାର ଉପରେ ଗୋଟିଏ କାଉ । ମୁର୍ଦ୍ଦାରର ଆଖି ଭଳି ନିଷ୍ପ୍ରଭ ତାର ଆଖି ।

ଗୋଟିଏ ମୁର୍ଦ୍ଦାରର ଆଖି ମନେ ପଡୁଛି । ବାରିପଦାରେ ଦେଖିଥିଲି ପାଣିରେ ବୁଡ଼ିଯାଉଥିବା ଲୋକକୁ ଉଦ୍ଧାର କରିବାକୁ ଯାଇ ନିଜେ ବୁଡ଼ିଯାଇଥିଲା । ଦେହରେ ଥିଲା ପେଣ୍ଟ ଆଉ ଲାଲ ସାର୍ଟ । ତାର ଗୋଟିଏ ଆଖି ଅସମ୍ଭବ ବଡ଼ ହୋଇଯାଇଥିଲା । ଠିକ୍ ମନେ ଅଛି, ସେ ତ ମୋର ଏଇ ନାଲିସାର୍ଟ ଭଳି ସାର୍ଟଟା ପିନ୍ଧିଥିଲା ।

ମୁଁ ତଳକୁ ଓହ୍ଲାଇ ଆସି ନାଲି ସାର୍ଟଟା ଖୋଲି ପକାଇ ଆଉ ଗୋଟିଏ ସାର୍ଟ ପିନ୍ଧିଲି ।

ଆଜି କୌଣସି ପ୍ରକାରେ ଦେବୀ ଘରକୁ ଯିବାକୁ ଦେବ । ତା' ସହ ଶେଷ ଦେଖା କରି ଆସିବି । ଆଜି ରାତିରେ ଶୋଇଲା ବେଳେ ଯଦି ମୋର ଅଲକ୍ଷ୍ୟରେ ମୃତ୍ୟୁ ହୋଇଯାଏ ? ସଞ୍ଜ ହୋଇ ଆସୁଛି । ଭୀଷଣ ନିରାନନ୍ଦ ଏ ସଞ୍ଜ । ଯାଇ ଟିକେ କେଣ୍ଟିନରେ ଚା' ଖାଇବି, ତାପରେ ଦେବୀ ଘରକୁ ।

ରାସ୍ତାରେ ଗଦାଧର ସଙ୍ଗେ ଦେଖା । ସେ ବୋଧହୁଏ ପ୍ରେସରୁ ଫେରୁଥିଲା । ମୋତେ ଦେଖି ଚିହ୍ନି ନ ପାରି କିଛି ଦୂର ଆଗେଇଗଲା, ତା'ପରେ ହଠାତ୍ ଚମକି ପଡ଼ି କହିଲା–ଆରେ କହ୍ନେଇ, ତୁମକୁ ତ ଜମା ଚିହ୍ନି ହେଉନି । ତୁମର ମୁଣ୍ଡବାଳ ଏମିତି କାହିଁକି ? ଦେହ ଖରାପ କି ? ଆଜି କଣ ଗାଧୋଇନ ? ଏମିତି ଶୁଖିଲା ମୁହଁ ! ମୁଁ କିପରି ତାକୁ ଏତେ କଥା ରାସ୍ତାରେ ଠିଆ ହୋଇ ବୁଝାଇଥାନ୍ତି ? କହିଲି–ଦେହଟା ଭଲ ନାହିଁ । ଆଶ୍ଚର୍ଯ୍ୟ, ମୋ ମୁହଁ କଣ ସତରେ ମୁର୍ଦ୍ଦାରର ମୁହଁ ଭଳି ଦେଖାଗଲାଣି କି ? ନାକଟା କଣ ଏପର୍ଯ୍ୟନ୍ତ ବଙ୍କା ଦେଖାଯାଉଛି ? ବର୍ତ୍ତମାନ ଦର୍ପଣରେ କ'ଣ ନାକଟା ବଙ୍କା ଦେଖାଯାଉଥିଲା ? ନା, ମୁଁ ଆଜି ଘରୁ ବାହାରିଲା ବେଳେ ଦର୍ପଣ ଦେଖି ନାହିଁ କାରଣ ମୁଣ୍ଡ କୁଣ୍ଡାଇବାକୁ ମୁଁ ଭୁଲିଯାଇଛି । ମୁଁ ସତରେ ଏତେ ଅନ୍ୟମନସ୍କ

ହୋଇପଡ଼ିଲିଣି ? ଜାମା ଓଲଟା କରି ପିନ୍ଧି ନାହିଁ ତ ? ଜୋତାର ଡାହାଣ ବାମ ଠିକ୍ ଅଛି ତ ?

କେବିନ ଭିତରକୁ ପଶିଲି । ଭିତରର ଆଲୁଅ କେମିତି ଫିକା ଫିକା ଆଉ ଭୌତିକ ଜଣାପଡୁଥିଲା । ମୁଁ କେବଳ ଚା' ମଗାଇଲି । ମୋ ସାମ୍ନାରେ ଜଣେ ଲୋକ । କେଉଁଠି ଯେପରି ଦେଖିଛି ଯାଙ୍କୁ । ଏ ଆଖି ମୁଁ ଚିହ୍ନେ । କେଉଁଠି କିପରି ଭାବରେ ଦେଖିଛି ଠିକ ମନେ କରିପାରୁନି । ରୁକ୍ଷ ମୁହଁ, ହାତରେ ପେଶୀ । ଭୟ ଲାଗୁଛି । ଯେ କେବେ ମୋତେ ମାରିଦେବେ ବୋଲି ଧମକାଇଥିଲେ ବୋଧହୁଏ ।

ସିଗାରେଟ୍ ଧୂଆଁ ମୋର ଖୁବ୍ ଭିତରକୁ ଯାଇ ସ୍ନାୟୁପୁଞ୍ଜ ଅବଶ କରି ଦେଉଛନ୍ତି । କୁଆଡ଼େ ଯେପରି ସିଗାରେଟଟା ଜଳିଯାଉଛି । ଏଠାରେ କିନ୍ତୁ କାହାରି ହାତରେ ସିଗାରେଟ ନାହିଁ । ମୁଁ ଆଶ୍ଚର୍ଯ୍ୟ ହୋଇ ଚାରିଆଡ଼େ ନିରୀକ୍ଷଣ କଲି । ଦେଖିଲି ପାଖ ଟେବୁଲ ଆସ୍‌ଟ୍ରେରୁ କ୍ଷୀଣ ଧୂଆଁ ଉଠୁଛି । ପରିତ୍ୟକ୍ତ ଅବଶେଷ ସିଗାରେଟ ଖଣ୍ଡର ଧୂଆଁ । ଜୀବନଟା ସିଗାରେଟ ନା ସିଗାରେଟ୍‌ଟା ଜୀବନ ? ଯାହାହେଉ ସିଗାରେଟ୍ ଜୀବନ ଶେଷ ହୋଇଯାଉଛି । ଆଉ ମାତ୍ର ଦୁଇ ତିନି କଲମ ଧୂଆଁର କୁଣ୍ଡଳୀ । ତା ପରେ ଆସ୍‌ଟ୍ରେର କୂପ ମଧ୍ୟରେ ଅନ୍ତିମ ମୁହୂର୍ତ୍ତ । ମୁଁ ଆସ୍‌ଟ୍ରେଟା ଉଠାଇ ଆଣିଲି ।

—କଣ ହେଉଛି ବାବୁ, ଏସବୁ କଣ ହେଉଛି ?—ବୟର କଣ୍ଠସ୍ୱର ।

—କଣ ହେଲା ?

ଆସ୍‌ଟ୍ରେରେ ଚା' ଗୁଡ଼ା ଢାଳୁଛନ୍ତି କାହିଁକି ?

—ସିଗାରେଟ୍‌ଟାକୁ ବଞ୍ଚାଇବା ପାଇଁ ।

—ଆପଣ କଣ ପାଗଳ ? ମୋ ସାମ୍ନାର ପେଶୀବହୁଳ ଲୋକଟି ମୋ ହାତରୁ ଏକପ୍ରକାର ଜୋର କରି ଆସଟ୍ରେଟା ଛଡ଼ାଇନେଲା । ମୁଁ ଭୟରେ କିଛି କହିପାରିଲି ନାହିଁ । କାରଣ ବୋଧହୁଏ ଏ ଲୋକଟି ମୋତେ କେବେ ଜୀବନରୁ ମାରିଦେବେ ବୋଲି ଧମକେଇଥିଲା ।

ଦେବୀ ଘରକୁ ଯିବା ରାସ୍ତାରେ ବୟର ଡାଇଲଗ୍ ଆଉ ସେଇ ଚିହ୍ନା-ଅଚିହ୍ନା ଲୋକଟାର ରକ୍ତଚକ୍ଷୁ ମନେପଡୁଥିଲା । ଏତେ ଲୋକଙ୍କ ସାମ୍ନାରେ ଲୋକଟା ମୋତେ ପାଗଳ କହିଦେଲା, ଅଥଚ ଅନ୍ୟ ସମୟରେ ହୋଇଥିଲେ ମୋର ବକ୍‌ସିଂ ଯେ କେତେ ଓଜନିଆ ତା' ତାକୁ ଜଣାଇ ଦେଇଥାନ୍ତି । ମୁଁ ବି କଣ ଦୋଷ କରିଥିଲି । ସିଗାରେଟ୍‌ଟା ମୋ ଭଳି ଯଦି ମଣିଷ ହୋଇଥାନ୍ତା ଏବଂ ମୁଁ ଯଦି ଏପରି ନିଭୃତରେ ଶେଷ ହୋଇ ଆସୁଥାନ୍ତି ! ହଠାତ୍ ରାସ୍ତା ମଝିରେ ପୋଡ଼ା ସିଗାରେଟ୍‌ର ଗନ୍ଧ ଆସି ନାକରେ ବାଜିଲା, ଆଉ ମନେହେଲା ମୋ ବାଁ ଆଖି କୋଣଟା ଫରକୁଛି । ମୁଁ ଜାଣେ ବାଁ ଆଖି ଫରକିବା ଅଶୁଭ । ବୋଧହୁଏ ମୋର ମୃତ୍ୟୁ ସୁନିଶ୍ଚିତ ।

ଦେବୀ ମୋତେ ଦେଖିବା କ୍ଷଣି ଯେପରି ଚିତ୍କାର କରି ଉଠିଲା:

—ଆପଣ ଭୂତ ଭଳି ଦେଖାଯାଉଛନ୍ତି କାହିଁକି ?

—ମୁଁ ଭୂତ ଭଳି ଦେଖା ଯାଉଛି ? ଭାବିଲି ମୃତ୍ୟୁ ପୂର୍ବରୁ ବି ମଣିଷ ଅଧା ଭୂତ ହୋଇସାରିଥାଏ ।

—ସତରେ ଆପଣଙ୍କ ଦେହ ଭଲ ନାହିଁ କି ?

—ନା, ମୁଁ ବୋଧହୁଏ ଆଉ ବଞ୍ଚିବି ନାହିଁ ।

—କାହିଁକି ସାର୍, କ୍ୟାନସର ହେଲା କି ?

—ନା କ୍ୟାନସର ନୁହେଁ, କାହିଁକି କେଜାଣି ମୁଁ ଜାଣିପାରିଛି ଏଇଟା ମୋର ଅନ୍ତିମ ମୁହୂର୍ତ୍ତ ।

—ଆପଣ ଏତେ ସିରିୟସ୍ ହୋଇ ଥଟ୍ଟା କରିପାରନ୍ତି !

—ଥଟ୍ଟା ନୁହେଁରେ, ଏଥର ଶେଷ । ମୁଁ ତ ସବୁଦିନ ଚୁମାଦିଏ, ତୁ ଆଜି ଦେ ।

—ଓହୋ ବୁଝିଲି । ଆଉଥରେ ଜନ୍ମ ନେଇ ଆସିଲେ ତା'ପରେ ଦେବି ।

ତା'ପରେ ମୋ ଆଖିରେ ବୋଧହୁଏ ଲୁହ ଜମି ଆସିଲା । ଦେବୀ ମୋର ଯନ୍ତ୍ରଣା ବୁଝିପାରିଲା । ସେ ବୋଧହୁଏ ଅନୁମାନ କରିନେଲା ମୁଁ ଅନ୍ୟ ଦିନ ଭଳି ତା ସହ ଥଟ୍ଟା କରୁନାହିଁ । ମୋ ମୁଣ୍ଡଟାକୁ ସେ ତା କାନ୍ଧ ଉପରକୁ ଆଉଜେଇ ନେଲା । ମା ଯେପରି ପିଲାର ମୁଣ୍ଡ କାନ୍ଧରେ ପକାଇ ଥାପୁଡ଼େଇ ଦିଏ ସେ ସେହିପରି ଥାପୁଡ଼େଇବା ଆରମ୍ଭ କଲା– ଦେଖନ୍ତୁ, ଆପଣଙ୍କୁ ଅନେକ କାମ କରିବାକୁ ହେବ । ଏତେ ଶୀଘ୍ର ମୃତ୍ୟୁ ଆସିପାରେନା । ଯଦି କେବେ ମୃତ୍ୟୁ ଆସିବ, ଆମ ଦୁହିଁଙ୍କ ପାଖକୁ ଆସୁ । ଆପଣ ଏପରି ମୃତ୍ୟୁ କଥା ଚିନ୍ତା କରନ୍ତୁ ନାହିଁ । ଯଦି କିଛି ଦୁଃଖ ଆସେ, ମୋ ମୁହଁ ଦେଖି ଭୁଲିଯିବାକୁ ଚେଷ୍ଟା କରନ୍ତୁ ।

ମୁଁ ତା କାନ୍ଧରେ ମୁଣ୍ଡ ରଖି କେବଳ ନୀରବରେ କାନ୍ଦିବାକୁ ଲାଗିଲି ।

—ଏସବୁ କ'ଣ ଚାଲିଛି ଏଠି ?—ମୁଁ ଜଳଦ ଗମ୍ଭୀର ଆୱାଜ ଶୁଣି ଚମକି ପଛକୁ ଫେରି ଦେଖିଲି କେଣ୍ଟିନରେ ସେଇ ଲୋକଟାର ରକ୍ତଚକ୍ଷୁ ଭଳି ଦୁଇଟି ଜ୍ୱଳନ୍ତ ଚକ୍ଷୁ । ଆଉ ଦେବୀ ମୋତେ ଠେଲି ଦେଇ ଦେଖିଲା—ତାର ବାପା ।

—ଶୀଘ୍ର ଏଠାରୁ ବାହାରିଯାଅ । ଯେପରି ଫାଶୀ ଆସାମୀର ରାୟ ଘୋଷିତ ହେଲା ।

—କଣ ହେଉଥିଲା ଏଠି, ପାଠପଢ଼ା ? ଉତ୍ତର ଦେଇ ନ ପାରିବା ଭଳି ଏକ ଅସମ୍ଭବ ପ୍ରଶ୍ନ ।

ତଥାପି ମୁଁ ଥଙ୍ଗେଇ ଥଙ୍ଗେଇ ଚେଷ୍ଟା କଲି–

—ମୁଁ ଆଜ୍ଞା ମାନେ ଏଇ ବଞ୍ଚିବାର ଚେଷ୍ଟା କରୁଥିଲି ।

ଇଡ଼ିୟଟ୍ ! ବଞ୍ଚିବାର ଚେଷ୍ଟା ! ତୁମ ଭଳି ଲୋକର ବର୍ତ୍ତମାନ ମୃତ୍ୟୁ ହେବା ଉଚିତ ।

ମୋର ଆଉ କିଛି କହିବାର ନଥିଲା । ଧୀରେ ଧୀରେ ଉଠିଲି । ଦେବୀଙ୍କୁ ଶେଷଥର ପାଇଁ ଚାହିଁଲି । ତାପରେ ଶ୍ମଶାନ ଆଡ଼େ ଚାଲିଲି ତୁରନ୍ତ ଗତିରେ । ମୁଁ ଆଉ ବଞ୍ଚିବାକୁ ଚାହେଁନି । ମୋର ମୃତ୍ୟୁ ଦରକାର । ମୁଁ କେବଳ ମରିବାକୁ ଚାହେଁ । ମୋ ଭଳି ଲୋକର ବର୍ତ୍ତମାନ ମୃତ୍ୟୁ ହେବା ଉଚିତ ।

ଅନ୍ଧକାରରେ ଶ୍ମଶାନପାଖ ନଈ କୂଳରେ କେତେ ଘଣ୍ଟା ବସି ରହିବା ପରେ ଉପଲବ୍ଧି କଲି ଅସମ୍ଭବ ଭାବେ ମୋ ଅଗୋଚରରେ ମୋର ମୃତ୍ୟୁ ହୋଇଯାଇଛି । ଯଦିବା ପୃଥିବୀର ସବୁ ଗଛଲତା ଠିକ୍ ଠିକ୍ ନିଜ ସ୍ଥାନରେ ଅଛନ୍ତି, ପ୍ରତି ଲାଇଟ୍ ପୋଷ୍ଟ ଆଗଭଳି କିରଣ ଦେଉଛି ଏବଂ ପୃଥିବୀରେ ମୋର ପରିଚିତମାନଙ୍କଠାରେ କୌଣସି ହାହାକାର ବା କ୍ରନ୍ଦନରୋଳ ଶୁଣାଯାଇନାହିଁ, କିମ୍ବା କୌଣସି ଶ୍ମଶାନରେ ମୋର ଚିତା ଜଳି ଉଠିନି– ତଥାପି କେମିତି ଏକ ଅଦୃଶ୍ୟ ଭାବେ ମୋର ମୃତ୍ୟୁ ହୋଇଯାଇଛି । କିଛି ସମୟ ପରେ ଅନୁଭବ କଲି ମୋ ଶବର ହାତ ଧରି ଯେପରି ମୁଁ ଘରମୁହାଁ ହେଉଛି ଏବଂ ତାରି କାନେ କାନେ ମୁଁ ଜ୍ଞାନୀ ଭଳି କହୁଛି–ବୁଝିଲୁ କହ୍ନେଇ, କେବଳ ଭୀରୁ ନୁହେଁ ଅନେକ ସାହସୀ ମଧ୍ୟ ମୃତ୍ୟୁ ପୂର୍ବରୁ ଅନେକଥର ମରିଯାଇ ପାରନ୍ତି ।

ଖଟରେ ମୋ ଶବଟାକୁ ପକାଇ ଆଲୁଅ ଲିଭାଇଦେଲି । ମଶାରି ଛାଡ଼ିଦେଲି । କାନ ଡେରି ଶୁଣିଲି ପୃଥିବୀରେ ଜୀବନର ଶବ୍ଦ ଅଛି କି ନା ଚାରିଆଡ଼େ ନୀରବ । ଖୁବ୍ ଦୂରରୁ ଷ୍ଟେସନ ସେପଟରୁ ଶୁଣାଯାଉଥିଲା ରେଳଗାଡ଼ିର ଶବ୍ଦ । କେଉଁ ଏକ ଶୁଖିଲା ନଦୀ ପୋଲ ଉପରେ ଗଡ଼ି ଚାଲିଥିଲା ଅସଂଖ୍ୟ ଲୁହାର ଚକ । ଶବ୍ଦଟା କ୍ରମେ କ୍ରମେ ଦୂରକୁ ଘୁଞ୍ଚିଯାଉଥିଲା । ପୃଥିବୀର ସମସ୍ତ ଜୀବନ୍ତ ସତ୍ତା ଧ୍ୱନିଠାରୁ, ପୃଥିବୀର ସବୁପ୍ରକାର ଶବ୍ଦ ପ୍ରତିଶବ୍ଦଠାରୁ ନିଜକୁ ଅନେକ ପାର୍ଥକ୍ୟ କରି ଖୁବ୍ ଦୂରକୁ ଘୁଞ୍ଚାଯାଉଥିଲା ଟ୍ରେନ ଅନେକ ଶୂନ୍ୟ କମ୍ପାର୍ଟମେଣ୍ଟ ନେଇ ।

ଟ୍ରେନଟା ମୋର ସ୍ମୃତିଠାରୁ ସ୍ୱପ୍ନଠାରୁ ଯୌଗିକ ମୌଳିକ ଶବ୍ଦ ଓ ଦୃଶ୍ୟଠାରୁ ଯେତେ ଦୂରକୁ ଘୁଞ୍ଚି ଯାଉଥିଲା, ମୋର ସତ୍ତାକୁ ଏକାକାର କରି ସମଗ୍ର ବିଶ୍ୱର ହଜାର ହଜାର କୋଣରୁ ମାଡ଼ି ଆସୁଥିଲା ସମୁଦ୍ର ଢେଉ ପରି ଅନେକ ତନ୍ଦ୍ରା ।

ସ୍ଥଳଭାଗ ଓ ଜଳଭାଗର ମଝିରେ ଛିଡ଼ା ହୋଇ ଶାମୁକା ଓ ଢେଉଗୁଡ଼ାକୁ ପାଦତଳେ ଚାପି ଆକାରାନ୍ତର କରିବା ପରି ଚେତନ ଓ ଅଚେତନ ସୀମାରେଖାରେ ପୃଥିବୀର ଅନେକ ଘଟଣା, ଅନେକ ଦୁର୍ଘଟଣା, ଅନେକ ଶବ୍ଦ ପ୍ରତିଶବ୍ଦ ସ୍ୱପ୍ନ ସ୍ମୃତି ସବୁ ଚାପି ହୋଇ କିପରି ଏକ ଅସମ୍ଭବ ଆକାର ନେବା ସମୟରେ ମୁଁ ଅନୁଭବ କରୁଛି ସାରା ପୃଥିବୀରେ ମୋର ମଶାରି ପରିବ୍ୟାପ୍ତ ଏବଂ ସେଇ ମଶାରିର କେଉଁ ଏକ କୋଣରେ

ଗୋଟାଏ ମଶାର ଗୁଣୁଗୁଣୁ ଶବ୍ଦ ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଉଠୁଛି । କ୍ରମେ ଅନୁଭବ କରୁଛି ପୃଥିବୀସାରା ନୀଳମାଛିର ଭଁ ଭଁ ଶବ୍ଦ ଏବଂ କ୍ରମେ ସ୍କୁଟର ମଟର ସାଇକେଲର ଶବ୍ଦ ଏବଂ ହଜାର ହଜାର ଏରୋପ୍ଲେନ ପ୍ରପେଲାରର ଶବ୍ଦ ସାରା ପୃଥିବୀରୁ ଆସି ମୋରି ମସ୍ତିଷ୍କ ଭିତରେ ଓଲଟପାଲଟ କରିବା ଆରମ୍ଭ କରିଦେଇଛନ୍ତି । ମୁଁ କେଉଁ ଏକ ତରଙ୍ଗରେ ଚହଲି ଚହଲି ଚେତନାର ସ୍ଥଳଭାଗ ଛାଡ଼ି ସମୁଦ୍ରର ଖୁବ୍ ଭିତରକୁ ଯିବା ଆରମ୍ଭ କରିଛି ।

କ୍ରମେ ମୋର ହାତଗୋଡ଼ ସବୁ ଛିଡ଼ାଇ ନେଇଛନ୍ତି ହାଙ୍ଗରମାନେ । ମୁଁ ପରିଷ୍କାର ଭାବେ ହାଙ୍ଗରକୁ ଦେଖୁନାହିଁ; କିନ୍ତୁ ସେମାନଙ୍କ ରକ୍ତଚକ୍ଷୁ ଦେଖୁଛି । କ୍ରମେ ହାତ ଗୋଡ଼ ଶୂନ୍ୟ ହେଲା ପରେ ମୋ ବେକରୁ ମୋ ମୁଣ୍ଡ ଅଲଗା ହୋଇଯାଉଛି । ମୁଁ ନାଲି ସାର୍ଟଟା ପିନ୍ଧିଛି । ମୋର ଗୋଟିଏ ଆଖି ଅସମ୍ଭବ ଭାବେ ବଡ଼ ହୋଇଯାଇଛି, ନାକଟା ବଙ୍କା ଦେଖାଯାଉଛି । ମୁଁ ନୀଳ ଜଳ ମଧ୍ୟରେ ମୋର ଖଣ୍ଡିଆ ଦେହ ମୁଣ୍ଡ ଆଉ ହାଙ୍ଗରମାନଙ୍କର ରକ୍ତଚକ୍ଷୁ ଦେଖିପାରୁଛି ଏବଂ ପ୍ରଶ୍ନ ପଚାରୁଛି–କନ୍‌ହେଇ, ତୁ କ'ଣ ସତରେ ଶେଷ ହୋଇଯାଉଛୁ ? କିଛି ସମୟ ପରେ ଦେଖୁଛି ଦୂରରୁ ଗୋଟିଏ ଧଳା ପଦାର୍ଥ । ମୁଁ ମୋର କଟା ମୁଣ୍ଡକୁ ସେଇ ଆଡ଼େ ଭସାଇ ନେଇ ଚିହ୍ନିପାରିଛି ସେଇଟା ଦେବୀର ମୁଣ୍ଡ । ମୁଁ ଚିତ୍କାର କରୁଛି । ମୁଁ କେବଳ ଦେବୀର ମୁଣ୍ଡ ଚାହେଁନା । ଦେବୀ ମୁଣ୍ଡ ମୋ ପାଖକୁ ଘୁଞ୍ଚିଆସୁଛି ଏବଂ ମୋ ଓଠରେ ଚୁମା ଦେଉଛି । ମୁଁ ଦେଖୁଛି ମୋର ବିସ୍ଫାରିତ ଆଖି ବନ୍ଦ ହୋଇଯାଉଛି ଏବଂ ହାଙ୍ଗରମାନଙ୍କର ରକ୍ତଚକ୍ଷୁ ପାଣିତଳେ ଅନ୍ତର୍ହିତ ହୋଇଯାଉଛନ୍ତି ।

ମୁଁ ହଠାତ୍ ବୁଝିପାରିଛି ଏରୋପ୍ଲେନ ପ୍ରପେଲାରର ସବୁ ଶବ୍ଦ ଥମିଯାଇ ଚାରିଆଡ଼େ ଘୋଟିଆସୁଛି ଭୀଷଣ ଅନ୍ଧକାର ।

('ମାନସ'–୨ୟ ବର୍ଷ ୪ର୍ଥ ସଂଖ୍ୟା, ଫେବୃଆରୀ, ୧୯୭୪)



# ଚେରିପାଚେରିପାଚେରିପାଚେରିପା

ସ୍ମୃତି, ଆମେ ପହଞ୍ଚିପାରିବା ତ ! ଅନେକ ରାସ୍ତା ଯିବାକୁ ହେବ । ଏ ରାସ୍ତାରେ ଅବଶ୍ୟ ଅନେକେ ଗଲେଣି । ଆମେ ବି ଚାଲିଛେ । ରାସ୍ତାକୁ ଚାହଁ ନାହିଁ । ମୋ ସାଥିରେ କଥାକୁହ । ଆମେ କଥା କହି କହି ଏ ରାସ୍ତାଟା ପାରି ହୋଇଯିବା । ବରଂ ତୁମେ ଏଣେ ଦେଖ । ଏଇଟା ଅନ୍ଧ ସ୍କୁଲ । ଏଠାରେ କେବଳ ଅନ୍ଧମାନେ ପଢ଼ନ୍ତି । ପ୍ରଦର୍ଶନୀ ଦେଖିବ ? ନାଇଁ ଚାଲ । ଆମକୁ ପରା ସେଇଠି ପହଞ୍ଚିବାକୁ ପଡ଼ିବ ! ବଢ଼ିଆ ପ୍ରଦର୍ଶନୀ ହେଉଛି କିନ୍ତୁ ! ଖାସ୍ ଛାତ୍ରମାନଙ୍କ ପାଇଁ । ତୁମେ ହସୁଛ । ଏ ସ୍କୁଲର ଛାତ୍ରମାନେ କେତେ ସୁନ୍ଦର ସୁନ୍ଦର ଚିତ୍ର ଆଙ୍କନ୍ତି ତୁମେ ଜାଣ ? ହେଇ ଦେଖ ଗୋଟିଏ ପିଲା ଆଖିରେ ନୀଳ ଗଗଲସ୍ ପିନ୍ଧି କେମିତି ଦୌଡୁଛି । ହାତରେ ବାଡ଼ି ନାଇଁ, ତଥାପି ଦୌଡୁଛି । ସେମାନଙ୍କ ଅନୁଭବ ଶକ୍ତି ଯେ ଖୁବ୍ ପ୍ରଖର ! ସେମାନେ ଲୁଚକାଳି ଖେଳ ଖେଳୁଛନ୍ତି । ଆଖିରେ ପଟି ବାନ୍ଧିବା ଦର୍କାର ନାହିଁ । ସ୍ମୃତି ଦେଖିଲ କି ଅସଭ୍ୟ ସେଇ ନୀଳ ଗଗଲସ୍ ପିନ୍ଧା ପିଲାଟା ! ଝିଅଟାକୁ ଛୁଇଁବାକୁ ଯାଇ କ'ଣ କଲା ? ଇଚ୍ଛା କରି ସେ ଏସବୁ କଲା । ଆଶ୍ଚର୍ଯ୍ୟ, ଝିଅଟା ବି କିଛି କହିଲା ନାହିଁ ! ସ୍ମୃତି, ରାସ୍ତାକଡ଼ରେ ଲାଜକୁଳୀ ଲତାରେ କେତେ ଫୁଲ ଫୁଟିଛି । ତା ତଳେ ତଳେ କେତେ ସାପ । ତୁମେ ସାପର ପାଦ ଦେଖିଛ ?

ଏଣେ ଚାହଁ, ଏଇଟା ପରା ବଧିର ବିଦ୍ୟାଳୟ । ଘଣ୍ଟା ବାଜିଲା । 'ବଧିର ବିଦ୍ୟାଳୟରେ ଘଣ୍ଟା ଶବ୍ଦ' । ତୁମେ ଶୁଣିପାରୁଛ ତ ! ବିଦ୍ୟାର୍ଥୀମାନେ ଧାଡ଼ି ବାନ୍ଧି ରୁମ୍‌ରୁ ବାହାରି ଆସୁଛନ୍ତି । ଦେଖ ସ୍ମୃତି, ଦୁଇଟି ଝିଅ ତେଣେ ହାତ ମୁହଁ ନ ହଲାଇ ଫିସ୍ ଫିସ୍ କରି କଥାବାର୍ତ୍ତା ହେଉଛନ୍ତି ଓ ହସୁଛନ୍ତି । ବଗିଚାରେ ଟୋକାଟା ବସି ରେଡ଼ିଓ ବଜାଉଛି । ଅନ୍ୟମାନେ ମୁଣ୍ଡ ହଲାଇ ତାଳ ଦେଉଛନ୍ତି । କିଶୋର କୁମାରର ଗୀତ ଜମିଯାଇଛି । ଆଜି ଏଠି ଏତେ ସଜାସଜି କାହିଁକି ଜାଣ ? ଆଜି ପରା ସଙ୍ଗୀତ ଆସର ବସିଛି । ଏ ବିଦ୍ୟାଳୟର ପିଲାମାନଙ୍କ ପାଇଁ ଅନେକ ସମୟରେ ଏମିତି ସଙ୍ଗୀତ ଆସର ହୁଏ । ସ୍ମୃତି, ଏଇଟା କି ଋତୁ । ଅନେକ ଫୁଲ ଫୁଟିଲାଣି, ଅନେକ ରଙ୍ଗିନ ପ୍ରଜାପତି ପତ୍‌ପତ୍ ହେଲେଣି । ସ୍ମୃତି, ତୁମେ ଡିମରି ଫୁଲ ଦେଖିଛ ?

ଏଇ ଦେଖ, ଏଇଟା ହେଲା ମୂକ ଶିକ୍ଷାୟତନ । କେତେ ଫୁଲ ଫୁଟିଛି ବଗିଚାରେ । ଏ ଅଞ୍ଚଳ ନିରୋଳା ଦେଖି ଗୋପନରେ ଅନେକ ଫୁଲ ଫୁଟିଯାଇଛନ୍ତି । ଲୋକ ଗହଳିରେ ଫୁଲମାନେ ଆରାମରେ ଫୁଟିପାରନ୍ତି ନାହିଁ । ତେଣେ ପେଣ୍ଡାଲକୁ ଚାହଁ । କେତେ ଶିକ୍ଷାର୍ଥୀଙ୍କ ଭିଡ଼ । ଆଜି ସେମାନଙ୍କର ବକ୍ତୃତା ପ୍ରତିଯୋଗିତା । ଜଣେ ଭାଷଣ ଦେବା ପ୍ରାକ୍‌ଟିସ୍ କରୁଛି । ପ୍ରେମ ଉପରେ ଭାଷଣ ଦେଉଛି ପିଲାଟା । ଫୁଲଗଛମାନଙ୍କୁ ଦର୍ଶକ ଭାବି ଭାଷଣ ଦେବାର ରିହର୍ସାଲ କରି ନେଉଛି । ଆଉଜଣେ ସ୍ପିକର ଆଗରେ କି ଚମତ୍କାର ଭଙ୍ଗୀରେ ଛିଡ଼ାହୋଇଛି । ଠିକ ଅମିନ୍ ସାୟାନୀ ପରି ସ୍ୱରଟା । ଶୁଣିବ ପ୍ରେମ ଉପରେ ଭାଷଣ ? ଚାଲ, ଅନେକ ଦୂର ଯିବାକୁ ହେବ ଯେ ! ସେ ପଟରେ ଜଣେ ଏକା ଏକା ବଡ଼ ପାଟିରେ ଗୀତ ଗାଉଛି । ଲୋକେ କଣ ଦୁଃଖରେ ଗୀତ ଗାଆନ୍ତି ? ତୁମକୁ ଶୀତ କଲାଣି ? ନିଆଁ ଦର୍କାର ? ସ୍ମୃତି, ନିଆଁର ଶୀତଳତା କେବେ ତୁମେ ଅନୁଭବ କରିଛ ?

(୨)

ସ୍ମୃତି, ତୁମେ କିଛି କୁହ । ମୁଁ କେବଳ କହୁଥିବି ଆଉ ତୁମେ ଶୁଣୁଥିବ ? ଖାଲି ରାସ୍ତା ରାସ୍ତା ଆଉ ରାସ୍ତା । ରାସ୍ତା କଡ଼ରେ ନିଃସଙ୍ଗ ପଡ଼ିଆ । ଦୂର ଦିଗ୍‌ବଳୟ ତଳେ ଗାଁ ଗଣ୍ଡା ସବୁ ଦିଶୁଛି । ତୁମର ମନେ ପଡ଼େ ସ୍ମୃତି, ଆମର ଯାତ୍ରାରମ୍ଭର କଥା ? ତୁମ ବୋଉ ଖୁବ୍ ଚାଲାଖ, ନୁହେଁ? ତାଙ୍କୁ ଭଲ ଦେଖାଯାଏ ନାହିଁ । ସେଥିପାଇଁ ସେ ବହି ପଢ଼ିପାରନ୍ତି ନାହିଁ, ସିଲେଇ କରିପାରନ୍ତି ନାହିଁ, ଚଷମା ପିନ୍ଧି ରୋଷେଇ କରନ୍ତି । ଦିନେ ମୁଁ ଚଉକିରେ ବସିଥିଲି। ତୁମେ ଛିଡ଼ା ହୋଇଥିଲ, ତୁମ ବୋଉ ରୋଷେଇ ଘରେ ଥିଲେ । ମୁଁ କଣ କଲି ? ମୁଁ ହଠାତ୍ ଉଠିପଡ଼ି ତୁମକୁ ଜାବୁଡ଼ି ଧରିଲି, ତା'ପରେ ଚୁମା ଖାଇଲି ଚୁମା ଖାଇଲି ଚୁମା ଖାଇଲି । ତୁମେ କେମିତି କୁଣ୍ଠିତ ହୋଇଗଲ। ବୋଉ ତୁମକୁ କର୍କଶ କଣ୍ଠରେ ଡାକିଲେ । ତାଙ୍କର କଣ ଏକ୍‌ସ-ରେ ଆଖି ? ସେ ସେଦିନ କେବଳ ଦୁଇଟା ଇଟା-ସିମେଣ୍ଟ କାନ୍ଥର ସେପଟରେ ଥାଇ ତୁମର ଓ ମୋର ଦୃଶ୍ୟ ଦେଖିପାରି ନଥିଲେ, ଅନାଗତ ଦୂର ଭବିଷ୍ୟତକୁ ବି ଦେଖିପାରୁଥିଲେ। ସ୍ମୃତି, ତାଙ୍କ ଆଖିରେ କଣ ଦୂରବୀକ୍ଷଣ ଯନ୍ତ୍ର ଖଞ୍ଜା ହୋଇଥିଲା ? ସେଥିପାଇଁ ସେ ମୋତେ ଦିନେ ଡାକି ଏକାନ୍ତ ଗୋପନରେ କହିଥିଲେ–ବୁଝିଲ, ସ୍ମୃତି ଉପରେ ଅନେକ ଲୋକର ଆଶା ଭରସା। ତୁମେ ଯାହାସବୁ କରୁଛ ଏସବୁ ଭବିଷ୍ୟତରେ ଭଲ ହେବ ନାହିଁ। ତୁମର ଆମ ପରିବାର ସହ ସମ୍ପର୍କ ଛିନ୍ନ କରିବାକୁ ହେବ। ଗୋଟିଏ ପରିବାର ସହ ସମ୍ପର୍କ ଛିନ୍ନ ହେଲେ ତୁମକୁ ଅନେକ ପରିବାର ମିଳିବେ, କିନ୍ତୁ ମୋ ସ୍ମୃତିର ସୁନାମ ଥରେ ଚାଲିଗଲେ ତା ଆଉ ଫେରି ଆସିବ ନାହିଁ। ସ୍ମୃତି, ସେସବୁ କି ଭୀଷଣ ଯନ୍ତ୍ରଣାଦାୟକ ଦିନଗୁଡ଼ାକ !

ସ୍ମୃତି, ଆଉ ଗୋଟିଏ କଥା ତୁମର ମନେ ଅଛି ? ତୁମେ କିଛି କହୁନ ଯେ ! ମୁଁ ଯାହା କହୁଛି ଖାଲି ଶୁଣିଯାଉଛ ? ଯାହା ନକହୁଛି ତା ବି କଣ ଶୁଣିପାରୁଛ ? ତୁମ

କାନରେ ଏ ଧରଣର ଯନ୍ତ୍ର ଖଞ୍ଜିଦେଲା କିଏ ? ତୁମେ ତ ତୁମ ବାପାଙ୍କୁ ବଳିଗଲ ? ତୁମର ମନେ ଅଛି, ତୁମ ବାପାଙ୍କୁ ଟିକେ ଉଁଚା ଶୁଭେ । ଖୁବ୍ ବଡ଼ପାଟିରେ ତାଙ୍କ ମୁହଁକୁ ଚାହିଁ ହାତ ହଲାଇ ନ କହିଲେ ସେ ବୁଝି ପାରନ୍ତି ନାହିଁ । ପ୍ରଥମେ ପ୍ରଥମେ ତୁମକୁ ଏଣୁତେଣୁ ଗପ କହିଥିଲି । ବହି ଗପ, ସିନେମା ଗପ, ଅନୁଭୂତିର ଗପ । କିନ୍ତୁ ତା ଭିତରେ ଗୋଟିଏ କଥା କହିବାକୁ ଚାହୁଁଥିଲି– 'ସ୍ମୃତି, ମୁଁ ତୁମକୁ ଭୀଷଣ ଭଲପାଏ' । ମୁଁ ସବୁବେଳେ ଛଟପଟ ହେଉଥିଲି, କେମିତି, କେଉଁ ସୁଯୋଗରେ କହିବି ସେଇ କଥାଟା । ତୁମେ ଯଦି ମୋତେ ଭୁଲ ବୁଝ ! ମୁଁ ସବୁବେଳେ ଚାହୁଁଥିଲି କେମିତି ଉପାୟରେ ତୁମେ ଟିକେ ବୁଝିଯାନ୍ତ ମୋ ଭିତରେ ଉଠୁଥିବା ସୁନ୍ଦର ସବୁ ଧ୍ୱନି-ଶବ୍ଦ-ସ୍ୱର । ବାହାରେ ତୁମ ବାପା ବସି ପେପର ପଢୁଥିଲେ । ସେ ତୁମ ବୋଉକୁ ଡାକିଲେ । ମୁଁ ପରିଷ୍କାର ଶୁଣିଲି, ସେ କହୁଛନ୍ତି–ବୁଝିଲ ସ୍ମୃତିବୋଉ, ତୁମ ସ୍ମୃତିକୁ ସେ ଅଭଦ୍ର ଟୋକାଟା କହୁଛି–ମୁଁ ତୁମକୁ ଭୀଷଣ ଭଲପାଏ । ଏଥର ସ୍ମୃତିକୁ ସମ୍ଭାଳ । ତୁମ ବାପାଙ୍କ କାନରେ ବୋଧହୁଏ ସେଇ ଯନ୍ତ୍ର ଖଞ୍ଜା ହୋଇଥିଲା । ଯାହା ଚିନ୍ତା କରିଥିବ କଥାକୁ ବି ଶୁଣାଯାଇପାରେ । ତା' ପରେ ମୋତେ ଜ୍ୱର ହେଲା । ମୁଁ ତୁମ ଘରେ ଦୁଇଦିନ ଶୋଇପାରିଲି । ତୁମେ ମୋର ଅନେକ ସେବା କଲ । ତୁମ ବାପ କହିଲେ–ହସପିଟାଲ ଯାଅ, ଶୀଘ୍ର ଜ୍ୱର ଭଲ ହୋଇଯିବ । ମୁଁ ତାଙ୍କ ଭିତର ଅର୍ଥଟା ବି ପରିଷ୍କାର ଶୁଣିଥିଲି–ଆମର ସ୍ମୃତି କୌଣସି ଜନ୍ମରେ ତୁମର ସେବା ଶୁଶ୍ରୁଷା ପାଇଁ ଉଦ୍ଦିଷ୍ଟ ନୁହେଁ । ସ୍ମୃତି, କି ଦୁଃଖଦାୟକ ସେ ଦିନଗୁଡ଼ାକ !

(୩)

ସ୍ମୃତି, ତୁମେ ତ କିଛି କହୁନ । ତାହେଲେ ମୋ କଥା କେବଳ ଶୁଣିଯାଅ । ଆହୁରି ଅନେକ ରାସ୍ତା । ଗପ କରି ପାରିହେବାକୁ ହେବ । ତୁମ ଭାଇ କଥା ତୁମର ମନେ ଅଛି ? ତା ପାଟିରେ ଲାଗେ । ଗୋଟିଏ ବାକ୍ୟ ଶେଷ କରିବାକୁ ତାକୁ ଅନେକ ସମୟ ଲାଗେ । ବାକ୍ୟ ବି ଶେଷ ହୁଏ ନାହିଁ । ହାତ ମୁହଁ ହଲାଇ ସେ କୌଣସି ପ୍ରକାରେ ପୂର୍ଣ୍ଣଚ୍ଛେଦ ଟାଣେ । ଦିନେ ସେ ମୋତେ ଏଣୁତେଣୁ ଅନେକ କଥା କହିଲା । ସେଦିନ ସୁନ୍ଦର ଭାବେ ଜୀବନ, ଚରିତ୍ର, ପ୍ରେମ ଉପରେ ଦୀର୍ଘ ଭାଷଣ ଦେଲା । ସେ ମୋତେ ତୁମ ବିଷୟରେ ସବୁପ୍ରକାର ସାହାଯ୍ୟ କରିବ ବୋଲି ପ୍ରତିଶ୍ରୁତି ଦେଲା । ମୁଁ ତାର ପ୍ରତିଶ୍ରୁତି ଶୁଣି ଆଶ୍ଚର୍ଯ୍ୟ ହେଲି ନାହିଁ । ଆଶ୍ଚର୍ଯ୍ୟ ହେଲି ବିନା ଦ୍ୱିଧାରେ ତାର ଦୀର୍ଘ ଭାଷଣ ଶୁଣି । ଆଚ୍ଛା ସ୍ମୃତି, ତା ବେକରେ କଣ ଟେପ୍ ରେକର୍ଡ଼ର ଲଗାଯାଇଥିଲା ? ମୁଁ ସେଦିନ ଅନେକ ଯନ୍ତ୍ରଣା ଭିତରେ ବି ଆଶ୍ୱସ୍ତ ହୋଇଥିଲି । ଅବଶ୍ୟ ଅନେକ ବାଧା ବିପଦ ଅତିକ୍ରମ କରି ଆମେ ଚାଲିବା ଆରମ୍ଭ କରିଛେ । ଅବଶ୍ୟ ଏଥିପାଇଁ ବେଶୀ ଅବଦାନ ତାର । ଛାଡ଼, ଆମକୁ ଅନେକ ରାସ୍ତା ଯିବାକୁ ହେବ ଯେ । ସାମ୍ନାରେ ଖାଲି ରାସ୍ତା ରାସ୍ତା ଆଉ ରାସ୍ତା ।

**ଚିତ୍ର ପ୍ରଦର୍ଶନୀ :**

ମୁଁ ସ୍ମୃତିକୁ କହିଲି ରାସ୍ତାରେ କିଛି ସମୟ ଛିଡ଼ାହୋଇପଡ଼ିବା ପାଇଁ । ମୋ ତଳପେଟ ଭାରି ହୋଇ ଆସିଲାଣି । ପରିସ୍ରା କରିବାକୁ ହେବ । ଚାରିଆଡ଼େ ଅନେକ ଲୋକ, କେବଳ ବାଁଆଡ଼େ ପାଚେରି । ମୁଁ ସ୍ମୃତିକୁ ଛିଡ଼ା କରାଇ ପାଚେରି ପାଖକୁ ଆଗେଇଲି । ମୋ ସାମ୍ନାରେ–

ପାଚେରି ପାଚେରି ପାଚେରି ପାଚେରି ପାଚେରି ପାଚେରି ।

ମୁଁ ସ୍ମୃତିଆଡ଼େ ଚିତ୍କାର କଲି ସେପଟକୁ ମୁହଁ କରି ଛିଡ଼ାହେବା ପାଇଁ । ମୁଁ ପାଚେରି କଡ଼କୁ ଲାଗି ଠିଆହେଲି । ପେଣ୍ଟ ବୋତାମ ଖୋଲିଲି । ଧଳା ପାଚେରିଟା କ୍ୟାନଭାସ୍ ପରି ମନେହେଲା । ତା ଉପରେ ପରିସ୍ରା ପଡ଼ି ସୁନ୍ଦର ଏକ ଚିତ୍ର ହୋଇଗଲା । ମୁଁ ଖୁସି ହୋଇଗଲି । ଏଇ ମୁହୂର୍ତ୍ତରେ ତ ଗୋଟିଏ ଚିତ୍ରକୁ ଜନ୍ମ ଦେଇ ପାରିଲି ! ଚିତ୍ରଟା କେମିତି ଖୁବ୍ ଆବଷ୍ଟ୍ରାକ୍ଟ ମନେ ହେଲା । କବିତା ଭଳି ମୁଁ ସେଥିରୁ ବେଶ୍ କିଛିଟା ବୁଝିଗଲି । ମୁଁ ଚାହିଁ ଦେଖିଲି ସ୍ମୃତି ସେପଟକୁ ମୁହଁ କରି ଦୂରରେ ଯାଉଥିବା ଯୁବକକୁ ଦେଖୁଛି । ପାଚେରିର ଚିତ୍ର ଦେଖି ମୋର ଚିତ୍ର ପ୍ରଦର୍ଶନୀ କଥା ମନେପଡ଼ିଲା । ହଠାତ୍ ଅନ୍ଧ ସ୍କୁଲକୁ ଦୌଡ଼ିବାକୁ ଆରମ୍ଭ କଲି । ତଳ ଉପରେ ସବୁଆଡ଼େ ଚିତ୍ର । ମୁଁ ଉପରକୁ ଆଗ ଚଢ଼ିଗଲି । ଦେଖିଲି । ବୁଝିଲି । ତାପରେ–

ପାହାଚ ପାହାଚ ଉପରେ ଚିତ୍ର ଦେଖିଲି
ପାହାଚ ପାହାଚ ତାପରେ ଲିଫ୍ଟ୍‌ରେ
ପାହାଚ ପାହାଚ ତ
ପାହାଚ ପାହାଚ ଳ
ପାହାଚ ପାହାଚ କୁ
ତଳେ ଚିତ୍ର ଦେଖିଲି ତା ପରେ ତ
ଳ
କୁ
ଆସି-ସ୍ମୃତିକୁ ଦେଖିଲି ।

**ସଂଗୀତ ଆସର :**

ସ୍ମୃତି ତେଣେ ମୁହଁ କରି ଛିଡ଼ା ହୋଇଥିଲା । ଯୁବକଟି ସ୍ମୃତିଆଡ଼େ ମୁହଁ କରି ଆସୁଥିଲା । ମୋ ଭିତରେ ଅନେକ ସଂଗୀତର ଆଳାପ ଶୁଣାଗଲା । ମୁଁ ବଧିର ବିଦ୍ୟାଳୟକୁ ଛୁଟିଲି । କୌଣସି ଆଡ଼େ ନ ଚାହିଁ ଆସର ମଝିରେ ବସିଗଲି । ଗୀତ ଚାଲିଥାଏ–ତୁମେ କେବେ ହଜିଗଲା ମୋ ଆକାଶୁ ଟ୍ୟୁଁ ଟ୍ୟୁଁ ଟ୍ୟୁଁ ମୋର ଆଉ ମନେ ନାହିଁ। ଟ୍ୟୁଁ ଟ୍ୟୁଁ ଟ୍ୟୁଁ ମୋର ଖାଲି ମନେ ଅଛି ତୁମ ଆଖି ତୁମ କଥା ପେଁ ପେଁ ପେଁ ଟ୍ୟୁଁ ଟ୍ୟାଁ ମୋର ଖାଲି

ମନେ ଅଛି ମୋର ଦୁଃଖ ମୋର ବ୍ୟଥା ପେଁ ପେଁ ପେଁ ଟ୍ୟୁଁ ଟ୍ୟୁଁ ଟ୍ୟୁଁ କିଛି ଜାଣେ ନାହିଁ ଇଇଇଇ ତୁମେ କେବେ ହଜିଗଲ ମୋ ଆକାଶୁ ଟ୍ୟୁଁ ଟ୍ୟୁଁ ଟ୍ୟୁଁ ଟ୍ୟୁଁ ମୋର ଆଉ ମନେ ନାହିଁ ମନେ ନାହିଁ ମନେ ନାହିଁ ଟ୍ୟୁଁ ଟ୍ୟୁଁ ଟ୍ୟୁଁ ପେଁ ପେଁ ପେଁ ଟ୍ୟୁଁ ଟ୍ୟୁଁ ଟ୍ୟୁଁ–

ମୁଁ ସ୍ୱତିକୁ ଦେଖିଲି।

**ବକ୍ତୃତା ପ୍ରତିଯୋଗିତା :**

ସ୍ୱତି ସେଇଭଳି ତେଣେ ମୁହଁ କରି ଛିଡ଼ା ହୋଇଥିଲା । ମୋତେ ଚିତ୍କାର କରି ଅନେକ କଥା କହିବାକୁ ଇଚ୍ଛା ହେଉଥିଲା । ମୁଁ କଣ ବକ୍ତୃତା ଆରମ୍ଭ କରିବି ? ଛୁଟିଲି ମୂକ ଶିକ୍ଷାୟତନକୁ । ପଛରେ ଲୋକମାନଙ୍କ ଗହଣରେ ଛିଡ଼ା ହୋଇ ବକ୍ତୃତା ଶୁଣିବା ଆରମ୍ଭ କଲି । ଜଣେ ବକ୍ତୃତା ଦେଉଥିଲା– ଏବେ ଯେଉଁ ପରିମାଣରେ ଧାନ ଚାଉଳ ଗହମ ଅଟାର ଦର ବଢ଼ିଚାଲିଛି, ତେଲ ଡାଲଡ଼ା ପେଟ୍ରୋଲ ଦୁଷ୍ପ୍ରାପ୍ୟ ହେଲାଣି, ମଣିଷ ପ୍ରେମ କରିବ କେମିତି ? ଚଡ଼ ଚଡ଼ ଚଡ଼ ଚଡ଼ ଆପଣମାନଙ୍କୁ ବଡ଼ ବଡ଼ କଥା କହି ମୁଁ ତାଳି ନେବାକୁ ଆସିନି । ମୁଁ କେବଳ ଆପଣମାନଙ୍କୁ ଜଣାଇ ଦେବାକୁ ଚାହେଁ ଦେଶର ଏଭଳି ପରିସ୍ଥିତିରେ ଆମର କର୍ତ୍ତବ୍ୟ କଣ । କେବଳ ପ୍ରେମ ସ୍ୱପ୍ନ ଯନ୍ତ୍ରଣା ନେଇ ବୁଡ଼ି ରହିବା ଆଉ ସୌଖୀନ କବିତା ଲେଖି ସମୟ ଖର୍ଚ୍ଚ କରିବା ନା ମୁଁ କହିବି ଜନ୍ମ ନିୟନ୍ତ୍ରଣ ଡାକ୍ତର ଧରି ଘର ଘର ବୁଲିବା ଓ ଦେଶର ସବୁ କୁମାରୀ କନ୍ୟାକୁ ବାଧ୍ୟତାମୂଳକ ଲୁପ୍ ପିନ୍ଧାଇବା ନ ହେଲେ ସବୁ ଲମ୍ବା କଲି ଓ ଲମ୍ବା ବାଳ ରଖିଥିବା ତରୁଣମାନଙ୍କୁ ଧରି ଧରି ବାଧ୍ୟତାମୂଳକ ଅପରେସନ୍ କରାଇଦେବା ଚଡ଼ ଚଡ଼ ଚଡ଼ ଚଡ଼ ମୋର ଆଉ ବିଶେଷ କିଛି କହିବାର ନାହିଁ ଆପଣମାନେ–

ମୁଁ ସ୍ୱତିକୁ ଦେଖିଲି ।

(୪)

ସ୍ୱତି ସେମିତି ଭଙ୍ଗୀରେ ଛିଡ଼ା ହୋଇଛି । ମୁଁ ସ୍ୱତି ଆଡ଼େ ଆଗେଇଲି । ସ୍ୱତି ଯେପରି ଅନେକ ଦୂରରେ ଅନେକ ସମୟର ସେପାରିରେ ଛିଡ଼ା ହୋଇଛି । ମୁଁ ଏକା ଚାଲିବାକୁ ଲାଗିଲି । ମୋ ସାମ୍ନାରେ ଏକ ଅଜବ ମୂର୍ତ୍ତିର ଆବିର୍ଭାବ ହେଲା । ଆଶ୍ଚର୍ଯ୍ୟ, ମୋତେ ବାପା ବୋଲି ସମ୍ବୋଧନ କଲା । ମୁଁ ତାର ବୋଉ କେଉଁଠି ବୋଲି ପଚାରିଲି । ସେ ପାଚେରିକୁ ଦେଖାଇଦେଲା । ମୁଁ ତାକୁ ଚିହ୍ନିପାରିଲି । ମୁଁ ତାକୁ ନିଜେ ତିଆରି କରିଥିଲି ପରିସ୍ରା କଲାବେଳେ । ସେଇ ଆବ୍‌ଷ୍ଟ୍ରାକ୍ଟ ଛବି । ମୁଁ ତାକୁ ବିଦାୟ ଦେଇ ଆଗେଇଗଲି । ଲାଜକୁଳୀ ଲତାଟା ରାସ୍ତାକଡ଼ରେ ଶୋଇଥିଲା । ହଠାତ୍ ମୋ ସାମ୍ନାରେ ତାର ଗୋଲ ଗୋଲ ଫୁଲ ନେଇ ଛିଡ଼ାହୋଇ ପଡ଼ିଲା । ମୋତେ ହଠାତ୍ ଜାବୁଡ଼ି ଧରି ଚୁମା ଖାଇଲା ଚୁମା ଖାଇଲା ଚୁମା ଖାଇଲା । ମୁଁ କେମିତି କୁଣ୍ଠିତ ହୋଇଗଲି । ପାଚେରି ମୋତେ ଡାକିଲା । ଶୁଣିଲି ପାଚେରିର ସ୍ୱର । ଠିକ୍ ସ୍ୱତିବୋଉର ସ୍ୱର ଭଳି । ମୁଁ ଆଗେଇଗଲି ସ୍ୱତି ଆଡ଼େ । ଲାଇଟ୍ ପୋଷ୍ଟ ମୋ ସାମ୍ନାକୁ ଆଗେଇ ଆସି କହିଲା–ମୋ

ଦେହରେ ହାତ ଦେଇ ଦେଖିଲ କେତେ ଜ୍ୱର ? ମୋତେ ଟିକେ ହସପିଟାଲରେ ଛାଡ଼ି ଆସିବ ? ମୁଁ ତା ବେକରେ ହାତ ଦେଇ ଦେଖିବାକୁ ଗଲା ମାତ୍ରେ ପାଟେରି ମୋତେ ଡାକିଲା । ମୁଁ ପରିଷ୍କାର ଶୁଣିଲି ଯେପରି ସ୍ମୃତିର ବାପାଙ୍କ ସ୍ୱରରେ ପାଟେରି କହୁଛି– ତୁମେ ତାର ସେବାଶୁଶ୍ରୂଷା କରିବାକୁ ଉଦ୍ଦିଷ୍ଟ ନୁହଁ । ମୁଁ ତାକୁ ଛାଡ଼ି ସ୍ମୃତି ଆଡ଼େ ଆଗେଇଗଲି । ରାସ୍ତାରେ ଗୋଟିଏ ଘୋଡ଼ା ଛିଡ଼ା ହୋଇ କଣ ସବୁ ବକ୍ ବକ୍ କରୁଥିଲା । ମୋତେ ଚିତ୍କାର କରି କହିଲା ତା ପିଠିରେ ବସିଯିବା ପାଇଁ । ମୁଁ ବସିଗଲି । ସେ କିନ୍ତୁ ଛିଡ଼ାହୋଇ ରହିଲା । ସମସ୍ତ ରାସ୍ତାଟା ସର୍ ସର୍ କରି ପଛକୁ ଘୁଞ୍ଚିଗଲା । ମୁଁ ସ୍ମୃତି ପାଖରେ ପହଞ୍ଚିଗଲି ।

(୫)

ମୁଁ ସ୍ମୃତିକୁ କହିଲି ଚାଲ ଯିବା । ସେ ସେମିତି ଛିଡ଼ାହୋଇ ରହିଲା । ମୁଁ ତା ଦେହରେ ହାତ ଦେଇ ହଲାଇ ଦେଲି ଓ ଚମକିଗଲି । ସେଇଟା ସ୍ମୃତି ନୁହେଁ, ଗୋଟିଏ ପଥର ମୂର୍ତ୍ତି । ମୁଁ କାନ୍ଦ କାନ୍ଦ ହୋଇ ତା ଗାଲରେ ଚୁମା ଖାଇଲି । ଗାଲରୁ ଝୁଲିପଡ଼ିଲା ଗୋଟିଏ ସ୍ତନ । ମୋର ଉଚ୍ଚତା କ୍ରମେ କମି ଆସିଲା । ମୁଁ କ୍ରମେ ସାନ ହୋଇ ଆସିଲି । ଖୁବ୍ ସାନ ହୋଇଗଲି । ମୋର କଥା କହିବା ଶକ୍ତି ଦୂରେଇଗଲା । ମୁଁ ମୂକ ହୋଇଗଲି । ପୃଥିବୀର ସବୁ ଶବ୍ଦ କ୍ରମେ ମିଳେଇ ଆସିଲା । ମୋତେ ଆଉ କିଛି ଶୁଣାଗଲା ନାହିଁ । ମୁଁ ବଧିର ହୋଇଗଲି । ପୃଥିବୀର ଆଲୁଅ କ୍ରମେ ଫିକା ହୋଇ ଧୂଆଁଳିଆ ହୋଇଗଲା । କ୍ରମେ ସାରା ପୃଥିବୀରେ ଭୀଷଣ ଅନ୍ଧକାର ବ୍ୟାପିଗଲା । ମୁଁ ଅନ୍ଧ ହୋଇଗଲି । ମୁଁ ମୂକ ବଧିର ଅନ୍ଧ, ମୂକ ଅନ୍ଧ ବଧିର, ବଧିର ମୂକ ଅନ୍ଧ, ବଧିର ଅନ୍ଧ ମୂକ, ଅନ୍ଧ ମୂକ ବଧିର, ଅନ୍ଧ ବଧିର ମୂକ ହୋଇଗଲି । ଚାରିଆଡ଼େ କେବଳ ରଙ୍ଗହୀନ କୋଠରି, ସେ କୋଠରିରେ ଏକା ମୁଁ ।

ସ୍ମୃତି ପୁଣି ଚିତ୍ର ଆଙ୍କିଲା ।
ଗୀତ ଗାଇଲା ।
ଭାଷଣ ଦେଲା
ମୁଁ ଠିକ୍ ବୁଝିପାରିଲି ଆମେ ପହଞ୍ଚି ଯାଇଛୁଁ ।



[ 'ନବ ତରଙ୍ଗ'–ତୃତୀୟ ସଂଖ୍ୟା, ଜାନୁଆରୀ-ଫେବୃଆରୀ-ମାର୍ଚ୍ଚ ୧୯୭୪ରେ ପ୍ରକାଶିତ । ଲେଖକ ନିଜେ ସ୍ପଷ୍ଟୀକରଣ ଦେଇ କହିଛନ୍ତି– 'ଗଳ୍ପ'ରେ ସୌଭାଗ୍ୟକୁମାର ମିଶ୍ରଙ୍କର 'ଘରପୋଡ଼ିରୁ ରକ୍ଷା ପାଇବାର କେତୋଟି ଉପାୟ' ପ୍ରକାଶ ପାଇବା ପରେ ସେ ବେଶ୍ ବିସ୍ଫୋରିତ ହୋଇଥିଲେ ଏବଂ 'ପାଟେରି' ସେଇ ବିସ୍ଫୋରଣର ସନ୍ତାନ ।]

# ଏକ ଅବଶ୍ୟମ୍ଭାବୀ ଯନ୍ତ୍ରଣାର ସାମୟିକ ମୃତ୍ୟୁର ଭୂମିକା

ମୁଁ ବର୍ତ୍ତମାନ ଗୋଟିଏ ଗଳ୍ପ ଲେଖିବି, ପ୍ରେମଗଳ୍ପ । କିନ୍ତୁ ପ୍ରେମିକାକୁ ନେଇ ଗଳ୍ପ ଲେଖିବି ନାହିଁ ।

ପତ୍ନୀ ପାଇଁ ଲେଖିବି । କାରଣ ମୁଁ ଜାଣେ ପତ୍ନୀ ମୋର ପ୍ରେମିକା ନୁହେଁ ।

ପତ୍ନୀକୁ ପ୍ରଥମେ କେବେ ଦେଖିଥିଲି ମୋର ମନେନାହିଁ । ତେବେ ପ୍ରଥମେ ଚୁମା ଖାଇଥିଲି ସେଦିନ । ଯେଉଁଦିନ ସେ ଦେବୀଭଳି ଶାଢ଼ି ପିନ୍ଧିଥିଲା । ଅବଶ୍ୟ ଦେବୀ ମୋର ପ୍ରେମିକା ।

ପତ୍ନୀ ମୋତେ ଭଲ ପାଏ, ମୁଁ ଜାଣେ । ମୁଁ ବି କ'ଣ ଭଲପାଏ ନାହିଁ ? ଭଲ ପାଇଲେ କଣ କେହି କାହାକୁ ଚୁମା ଖାଆନ୍ତି ?

କିନ୍ତୁ ଆଉ ଦିନେ । ଦ୍ୱିପ୍ରହରର ସମସ୍ତେ ଶୋଇ ଯାଇଥିଲେ । ମୁଁ ସେଦିନ ତା' ଛାତିରେ ମୁଣ୍ଡ ରଖିଥିଲି । କାରଣ ମୁଁ କେବଳ ଦେବୀ ଛାତିରେ ମୁଣ୍ଡ ରଖେ ଏବଂ ଦେବୀ ସାଙ୍ଗରେ ଦେଖା କରିବାରେ କଟକଣା ଜାରି ବହୁତ ଦିନରୁ ।

କିନ୍ତୁ ମୁଁ ଗୋଟିଏ ଗଳ୍ପ ଲେଖିବି । ମୋ ଭିତରେ ଅନେକ ଚିତ୍କାର । ଯନ୍ତ୍ରଣା ଭିତର କାନ୍ଥରେ ମୁଣ୍ଡ ପିଟୁଛନ୍ତି । ମୁଁ ତ ଅନେକ ଗଳ୍ପ ଲେଖିବା ପାଇଁ କାନ୍ଦିଛି । ଅନେକ ଗଳ୍ପ ଲେଖିବାର କେତେଦିନ ଆଗରୁ ହଠାତ୍ ଗମ୍ଭୀର ହୋଇଛି । ବନ୍ଧୁବାନ୍ଧବମାନଙ୍କୁ ଦୂରରୁ ଦେଖି ବି ବିରକ୍ତହୋଇ ଉଠିଛି । ଜଣେ ବି ଥଟ୍ଟା କରିଛନ୍ତି–କଣ କିଛି ଜନ୍ମ ହେବ ? ମୁଁ ନୀରବ ରହିଛି । କିନ୍ତୁ ସତକୁ ସତ କେଉଁ ଏକ ମୁହୂର୍ତ୍ତରେ ହଠାତ୍ ସଂଗମର ତନ୍ମୟତା ଦେଖିଛି । କାଗଜ ଉପରେ ସଦ୍ୟଜାତର ଆସ୍ଫାଳନ ।

ଆଜି ବି ମୋ ଭିତର ଗଳିକୁ କ୍ରମଶଃ ଆର୍ତ୍ତନାଦ ଉଠି ଆସୁଛି । ମୁଁ ତାଙ୍କୁ ନିକାଲି ଦେଇ ବଞ୍ଚିବାକୁ ଚାହେଁ । ତେଣୁ ମୁଁ ଗୋଟିଏ ଗଳ୍ପ ଲେଖିବି ।

ମୁଁ ଛାତିତଳେ ତକିଆ ରଖି ଆକାଶ ଆଡ଼େ ପିଠିକରି ଶୋଇଲି । କାଗଜ ସାମ୍ନାରେ ରଖିଲି । କଲମ ଧରିଲି । କାନ୍ଥକୁ ଚାହିଁଲି । କାନ୍ଥରେ ଝୁଲିଲା କ୍ୟାଲେଣ୍ଡର ।

ଏ ଘରେ ବର୍ତ୍ତମାନ କେହି ନାହିଁ । କ୍ୟାଲେଣ୍ଡର ଛବିଟା ଦେବୀ ହୋଇଯାଆନ୍ତା କି ! ମୁଁ ଆଗ ଉଠିଯାଇ କବାଟ ଆଉଜେଇ ଦେଇଆସନ୍ତି । କହନ୍ତି–

– ତୁ କେମିତି ଆସିଲୁ ?

– କାହିଁକି ? ତୁମେ ଯେ ମତେ ମନେ ପକାଇଲ ।

– ବାଃ, ସେଇଥିରେ ଚାଲି ଆସିଲୁ ?

– ଦିନେ ପରା କହିଥିଲି ତୁମେ ମୋତେ ଡାକିଲାମାତ୍ରେ ମୁଁ ତୁମ ପାଖକୁ ଧାଇଁ ଆସିବି ।

– ଦେବୀ, ତୁ ଜାଣୁ ମୁଁ ଏ ଘରେ ବର୍ତ୍ତମାନ ଏକା ?

– ଜାଣେ ।

– ମୁଁ ତୋତେ ସେଇ କଥାଟି କହିବି ।

– କେଉଁ କଥା ?

– ସେଦିନ ଯାହା କହିଥିଲି ।

– ସେଦିନ ମୁଁ ମନା କରିଥିଲି ଆଉ ଆଜି ବି ମନା କରିବି ।

– ମୁଁ କେମିତି ବଞ୍ଚିବି ?

– ଏଇଥିପାଇଁ ମରିଯିବ ?

– ହଁ ।

– ତା'ହେଲେ ମୁଁ ଯାଉଛି ।

ଦେବୀ ଚାଲିଯାଆନ୍ତା । ମୁଁ କେବଳ ତାର ଲମ୍ବା ବେଣୀ, ବ୍ଲାଉଜର ଛ'ଟି ବୋତାମ, ଅଣ୍ଟା ଉପରର ପିଠି, ଶାଢ଼ୀର ଫୁଲ ଆଉ ଗୋଇଠି ଦେଖନ୍ତି ।

କିନ୍ତୁ ଯଦି ପଲ୍ଲୀ ଆସନ୍ତା, ମୁଁ କହନ୍ତି–

– ପଲ୍ଲୀ ତୁମେ ?

– କାହିଁକି ? ଆଶ୍ଚର୍ଯ୍ୟ ହେଉଛ ? ତୁମ ଗପ ପଢ଼ିବି ବୋଲି ଚାଲି ଆସିଲି ।

– ମୁଁ ତୁମ ଛାତିରେ ଟିକେ ମୁଣ୍ଡ ରଖି ଶୋଇବି ।

– ତୁମେ ଗଳ୍ପ ପଢ଼ି ଶୁଣାଇବ ତ ?

– ହଁ, ଜାଣ ? ମୁଁ ଉପନ୍ୟାସ ଲେଖିଛି ।

– ଉପନ୍ୟାସ ? କାହିଁ ? ଲେଖା ଶେଷ ହୋଇଯାଇଛି ?

– ହଁ ।

– ତୁମେ ଉପନ୍ୟାସଟା ହିଁ ପଢ଼ । ଶୀଘ୍ର ।

– ପଲ୍ଲୀ, ମୁଁ ସେଦିନ ଯାହା କହୁଥିଲି ।

– ନାହିଁ, ତୁମେ ଉପନ୍ୟାସ ଖାତାଟା ମୋତେ ଦିଅ ।

– କିନ୍ତୁ ସେଇ କଥା ?

– ଉପନ୍ୟାସ ପଢ଼ି ଶୁଣାଇବ ତ ?

– ନିଶ୍ଚୟ ଶୁଣାଇବି ।

ତାପରେ ପଲ୍ଲୀ ସହ ଅନେକ ଅଭିଳଷିତ ମୁହୂର୍ତ୍ତ କଟାଇଲା ପରେ କହନ୍ତି– ପରେ ଆସିବ । ଉପନ୍ୟାସ ଶୁଣାଇବି । ପଲ୍ଲୀ ମୁଖ ବିକୃତ କରି ଚାଲିଯାଆନ୍ତା ।

କିନ୍ତୁ ମୁଁ ବର୍ତ୍ତମାନ ଗୋଟିଏ ଗଳ୍ପ ଲେଖିବି । କୌଣସି ପ୍ରକାରେ ଲେଖାଯାଇ ପାରୁନାହିଁ । ବହୁତ ଗରମ ପଡୁଛି ଆଜିକାଲି । ଗଳ୍ପ ଆରମ୍ଭ କରିବି ପଲ୍ଲୀକୁ ନେଇ । କିନ୍ତୁ ଦେବୀକୁ ବାଦ୍ ଦେଇ ଗଳ୍ପ ହୁଏତ ଲେଖିଛି, କିନ୍ତୁ ଭଲ ଗଳ୍ପ ଲେଖାଯାଇ ପାରିନାହିଁ ।

ଏବେ ଥାଉ । ଗାଧୋଇ ଆସି ଲେଖିବି । ଗଳ୍ପର ପ୍ଲଟ୍ ଚିନ୍ତା କରିବା ପାଇଁ ମୁଁ ପୃଥିବୀର ଦୁଇଟି ସ୍ଥାନ ବାଛି ନେଇଛି । ଗୋଟିଏ ପାଇଖାନା । ଅନ୍ୟଟି ଗାଧୁଆଘର ।

କଲମ ବନ୍ଦ କଲି । କାଗଜ ଉପରେ ତକିଆ ଚପେଇ ଦେଲି । ସାବୁନ ନେଲି । ବାଥରୁମ୍‌ର ଶିକୁଳି ଭିତରପଟୁ ଲଗାଇଦେଲି । ଦେହର ଲୁଗା କାଢ଼ି ପକାଇ ଟପ୍ ସ୍ୱିଚ୍‌ରେ ସାୱାର ଖୋଲିଦେଲି । ଆଃ, ସାରା ପୃଥିବୀଟା ବାଥରୁମ୍ ହୋଇଯାଆନ୍ତା କି !

ସାୱାର ବନ୍ଦ କଲି । ଦେହରେ ସାବୁନ ଲଗାଇଲି । ହାତଗୋଡ଼, କାଖତଳ, ଜଙ୍ଘସନ୍ଧି- ସର୍ବତ୍ର ପିଚ୍ଛିଳ ସାବୁନ ଫେଣ ।

ଯଦି ଦେବୀ ଏଇଠି ଥାଆନ୍ତା ମୁଁ ତା ଦେହର ସର୍ବତ୍ର ସାବୁନ ଲଗାଇ ଦିଅନ୍ତି । କିନ୍ତୁ ସେ କେବେ ଏହା ଭିତରକୁ ଆସନ୍ତା ନାହିଁ । କାରଣ ମୁଁ ତାକୁ ପ୍ରେମ କରେ ଏବଂ ସେ ମୋତେ ଘୃଣା କରେ ।

ଯଦି ପଲ୍ଲୀ ଏଇଠି ଥାଆନ୍ତା, ମୁଁ ତାକୁ ମୋର ଗଳ୍ପ ଶୁଣାନ୍ତି, ସାବୁନ ଲଗାଇ ଦିଅନ୍ତି । ଉପନ୍ୟାସ ଶୁଣାନ୍ତି ଆଉ ଆଣ୍ଠୁ ମାଡ଼ି ବସି ଆଖିକୁ ବୁଜିକରି ପ୍ରାର୍ଥନା କରନ୍ତି ।

ଦେବୀର ଛାତି ସାବୁନ ଫେଣପରି ନରମ । ପଲ୍ଲୀର ନିତମ୍ବ ସାବୁନ ପରି ମସୃଣ ।

ମୋ ଭିତରେ ଅନେକ ଅବୈଧ ଦୃଶ୍ୟ । ମୁଁ ଦେଖିଲି ବନ୍ଦ ସାୱାରରୁ ପ୍ରତୀକ୍ଷିତ ପାଣି ଗୋଟିଏ ଦୁଇଟି ବିନ୍ଦୁ ଠପ୍ ଠପ୍ କରି ଖସିପଡୁଛି । ମୁକ୍ତିପାଇଁ ବ୍ୟାକୁଳତା । ମୋ ଭିତରେ ମଧ୍ୟ ଅସମ୍ଭବ ଏକପ୍ରକାର ଚିତ୍କାର- ମୁକ୍ତିପାଇଁ । ଗଳ୍ପ ଲେଖିବା ତ ଏକ ମୁକ୍ତି । ସଂଗମ ତ ଅନ୍ୟ ଏକ ମୁକ୍ତି । ମୋର ଚାରିଆଡ଼େ ମୁକ୍ତିର ଶବ୍ଦ ।

ମୁଁ ନାଭିକେନ୍ଦ୍ର ଆଉ ଉରୁସନ୍ଧିରେ ସାବୁନ୍ ଫେଣ ନେଇ ଖେଳି ଅନୁଭବ କଲି ଦେବୀ ଓ ପଲ୍ଲୀ ଆସି ମୋ ଦେହକୁ କଲମରେ ତାଡ଼ି ତାଡ଼ି ଅସଂଖ୍ୟ ଗାତ କରି ପକାଇଲେ । ଦେହର ସେଇ ଅଂସଖ୍ୟ ଗର୍ତ୍ତ ମଧ୍ୟରେ ଅନେକ ଚିତ୍ର ପ୍ରଜାପତି ଛଟପଟ ହେଲେ । ଶିରା ଉପଶିରା, ଧମନୀ ମଧ୍ୟରେ ଦ୍ରୁତଗାମୀ ଘୋଡ଼ା କେଉଁ ଅଜ୍ଞାତ ଦିଗନ୍ତକୁ ମୁହଁକରି ଛୁଟିଲା । ଏକତ୍ରିତ ଅନେକ । ମୁଁ ଦେହରୁ ଛିଟିକି ଅଲଗା ହୋଇଗଲି । ତା'ପରେ ଏକ ଭୀଷଣ ନିସ୍ତବ୍ଧ ମୁହୂର୍ତ୍ତ । ସାୱାର ଖୋଲି ପ୍ରତୀକ୍ଷିତ ପାଣିକୁ ମୁକ୍ତି ଦେଲି ।

ପାଣି ସ୍ରୋତରେ ମୋର ମୁକ୍ତିକାମୀ ସତ୍ତାମାନଙ୍କୁ ଦେଖି ପୃଥିବୀର ମୃତ୍ୟୁର ରହସ୍ୟ ପରିଷ୍କାର ହୋଇଗଲା ।

ବାଥରୁମ୍‌ରୁ ବାହାରିଆସି ତକିଆ ତଳେ ଥିବା କାଗଜଟି ଚିରି ଝର୍କା ରେଲିଂ ସେପଟକୁ ପକାଇଦେଲି ଏବଂ ନିଶ୍ଚିନ୍ତରେ ଶୋଇଗଲି ।

(ଆସର, ପ୍ରଥମ ସଂଖ୍ୟା, ଜାନୁଆରୀ-ମାର୍ଚ୍ଚ, ୧୯୭୪)



# ଅନୁଶୀଳନୀ

ଦିନେ ଖରାବେଳେ ମୁଁ ଏକା ଏକା ବସିଥିଲି । ଭାବୁଥିଲି, ଜୀବନରେ ଅନେକ ରାସ୍ତା ପାରିହୋଇ ଆସିଲି । ପଥପ୍ରାନ୍ତର ଅନେକ ଚିହ୍ନା ମୁହଁ ଅଚିହ୍ନା ହୋଇଗଲେ । ଅନେକ ସ୍ନେହ-ମମତା ଭଲ ପାଇବାର ମୂଲ୍ୟକୁ ମୁଁ ରାସ୍ତାରେ କେଉଁଠି ହଜେଇ ଦେଇ ଆସିଲି । କିନ୍ତୁ ଏମିତି ଆଉ କେତେଦିନ । ମୁଁ କ'ଣ ମୋତେ ଠିକ୍ ରୂପେ ଜାଣିପାରିଲି ?

ଅନୁଭୂତି ଆସିଲା । ବସିଲା । ପଚାରିଲା– ତୁମେ ଏତେ ଅସହାୟ ଦେଖାଯାଉଛ କାହିଁକି ?

ମୁଁ କହିଲି– ମୁଁ ପ୍ରକୃତରେ ଖୁବ୍ ଅସହାୟ । ମୁଁ ସବୁ ସମୟରେ ଅନୁଭବ କରେ ଯେ ମୋତେ କେହି ଭଲ ପାଆନ୍ତି ନାହିଁ । ମୁଁ ଅନେକଙ୍କୁ ଭଲ ପାଇଛି, ସେମାନଙ୍କ ଅସହାୟତା ଦେଖି । ଅଥଚ ମୁଁ ଶେଷରେ ବଞ୍ଚିତ ହୋଇଛି ।

ଅନୁଭୂତି ହସେ– ତମେ ସେମାନଙ୍କୁ ଠିକ୍ ରୂପେ ଭଲପାଇ ପାରିନ, ଅନୁକମ୍ପା ଦେଖାଇଛ ଯାହା । ତୁମେ ପ୍ରଥମେ ତୁମ ନିଜ ସତ୍ତାକୁ ଭଲପାଇ ଶିଖ ।

ମୁଁ ସେଦିନ ଧୀରେ ଧୀରେ ଅନୁଭବ କରିବା ଆରମ୍ଭ କରି ଦେଇଥିଲି । ପ୍ରକୃତରେ ନିଜକୁ ଭଲ ପାଇପାରିଲେ ଯାଇ ଅନ୍ୟମାନଙ୍କୁ ଭଲପାଇ ପାରିବି । ତା'ହେଲେ ମୋ ଭିତରୁ ସାହିତ୍ୟର ଚିନ୍ତା ଉଭେଇଯିବ । ନିଜକୁ ଖରା, ବର୍ଷା, ଶୀତରେ ନଷ୍ଟ କରିବାର ପ୍ରତିଜ୍ଞା ରହିବ ନାହିଁ ।

ଶେଷରେ ଅନୁଭୂତି କହେ– ଆଖି ବନ୍ଦକରି ଥରେ ନିଜ ଭିତରକୁ ଦେଖ, ଠିକ୍ ତାକୁ ଦେଖିପାରିବ, ଚିହ୍ନିପାରିବ, ଅନୁଭବ କରିପାରିବ । ତା'ହେଉଛି ତୁମର ଅସହାୟତା ।

ଆଉଦିନେ ମଧ୍ୟରାତ୍ରିରେ ମୁଁ ଏକା ଏକା ବସିଥିଲି । ଭାବୁଥିଲି କିପରି ନିଜକୁ ଭଲପାଇବି । ନିଜ ପ୍ରତି ସ୍ନେହ-ମମତା ଆଣିବି, ଏକ ସୁନ୍ଦର ସୁସ୍ଥ ମନ ନେଇ ବଞ୍ଚି ହେବ । କିନ୍ତୁ ପ୍ରଥମେ ନିଜକୁ ଚିହ୍ନିବି କେମିତି ?

ଅନୁଭୂତି ଆସିଲା । ବସିଲା । ହଠାତ୍ କହିଲା– ତୁମେ ଏତେ ସ୍ୱାର୍ଥପର କାହିଁକି ? ଭିତରକୁ ଚାହିଁ ଦେଖ- ତୁମେ କେତେ ସ୍ୱାର୍ଥପର ।

ମୋର ପ୍ରଶ୍ନିଳ ଆଖି- ମୁଁ ସ୍ୱାର୍ଥପର ?

ହଠାତ୍ ଇଲେକ୍ଟ୍ରିକ୍ ଲାଇନ୍ ଚାଲିଗଲା । ମୋ ଆଖି ଆଗରେ କେବଳ ଅନ୍ଧକାର । ମୋ ଆଗରେ ଅନୁଭୂତି ନାହିଁ, କିଛି ରୂପ ନାହିଁ, ସୌନ୍ଦର୍ଯ୍ୟ ନାହିଁ, ବସ୍ତୁ ନାହିଁ ।

ମୁଁ ଦୁଇ ହାତରେ ଅଣ୍ଡାଳିବାକୁ ଲାଗିଲି । ଅନୁଭୂତିର ଆଣ୍ଠୁରେ ହାତବାଜିଲା । ଧୀରେ ଧୀରେ ହାତ କ୍ରମଶଃ ଉପରକୁ ବୁଲାଇନେଇ କ୍ରମେ କ୍ରମେ ତା'ର ହାତପାପୁଲି, ବାହୁମୂଳ ଓ ବେକ ପାଇଲି । ତା ବେକ ଚାରିପଟେ ମୋ ହାତ ଗୁଡ଼ାଇ ନେଇ ନିବିଡ଼ଭାବେ ଆଲିଙ୍ଗନ କଲି । ଅନୁଭୂତି ପାଇଁ ମୋର ଏ କାର୍ଯ୍ୟ ପ୍ରଥମ ହେଲେ ବି ପ୍ରତିବାଦ କଲାନି; କାରଣ ସେ ବୋଧହୁଏ ବୁଝିନେଲା ଅନ୍ଧକାର ରଙ୍ଗହୀନ । ଅନୁଭୂତି ସେ କାନ୍ଧରେ ମୁଣ୍ଡ ରଖିଲା । ତା'ର ଗରମ ନିଃଶ୍ୱାସ ମୋ କାନ ମୂଳରେ ବାଜିଲା । ବେକ ଚାରିପଟେ ତା'ର ମୃଣାଳ ବାହୁ ଘେରି ଆସିଲା । ମୋ କାନରେ ଖୁବ୍ ସଂଗୋପନରେ ସେ କହିଚାଲିଲା– ତୁମେ ଯଦି ପ୍ରକୃତରେ ଏତେ ଭଲପାଅ ତା'ହେଲେ ମୋର ଭୟ ନଥିଲା । ତୁମେ ନିଜକୁ ଭଲପାଇ ଯଦି ମୋତେ ଭଲପାଆନ୍ତ ତା'ହେଲେ କିଛି ଅସୁବିଧା ନଥିଲା । ମୁଁ ବି ତା' କାନେ କାନେ କହିଗଲି- ବିଶ୍ୱାସ କର, ମୁଁ ମୋତେ ଭଲ ପାଇବା ଆରମ୍ଭ କରିଛି । ତେଣୁ ମୁଁ ତୁମକୁ ବି ଭଲପାଏ । ସେ ପ୍ରତିବାଦ କଲା– ନାଇ, ମୁଁ ଜାଣିପାରୁଛି, ତୁମେ ଚୁମା ଖାଇଲା ବେଳେ ମନେ କରୁଛ ଯେ ତୁମେ ପାପ କରୁଛ । ସ୍ୱଭାବ ଓ ପରିସ୍ଥିତିର ଧାରାରେ ପଡ଼ି ମୋତେ ଆଲିଙ୍ଗନ କରୁଛ । ଭଲପାଅ । ତୁମେ ପ୍ରକୃତରେ କାହାରିକୁ ଭଲପାଇପାରିନ । ତୁମର ଅଭାବ କେବଳ ନିଜେ । ତଥାପି ତୁମେ ଗର୍ବ ନେଇ ବଞ୍ଚ ଏବଂ ଅହଂକାର କର ଯେ ତୁମେ ଅନେକଙ୍କୁ ଭଲପାଇଛ, ଅନେକଙ୍କ ପାଇଁ ଅନେକ ସ୍ୱାର୍ଥତ୍ୟାଗ କରିଛ ।

ମୁଁ ଏସବୁ ଶୁଣୁଶୁଣୁ ହଠାତ୍ ଅନୁଭବ କରେ ଯେ ମୁଁ କାନ୍ଦୁଛି । ଯନ୍ତ୍ରଣାଦାୟକ ଦୁଃଖରେ ନୁହେଁ, ତଥାପି ମୁଁ ଯେପରି କାନ୍ଦୁଛି । ହୁଏତ ନ କାନ୍ଦିଲେ ଠିକ୍ ରୂପେ ଭଲପାଇ ହୁଏନି । ମୁଁ ଅନୁଭୂତିକୁ ଖୁବ୍ ନିବିଡ଼ ଭାବେ ଆଲିଙ୍ଗନ କରେ । ଧପ୍‌ଧପ୍ କରି ଲାଇଟ୍ ଜଳି ଉଠେ । ମୁଁ ଦେଖେ ଅନୁଭୂତି ନାହିଁ । ମୁଁ ମୋତେ ହିଁ ଆଲିଙ୍ଗନ କରି ବସି ରହିଛି ।

ବୁଝିପାରେ, ମୁଁ ଏଥର ସମସ୍ତଙ୍କୁ ଭଲପାଇ ପାରିବି ।

(ବୃୟକ, ଫେବୃଆରୀରୁ-ଏପ୍ରିଲ, ୧୯୭୪)



# ପେପରୱେଟ୍

ମୋ ସାମ୍ନାରେ ସେଇ ଲୋକଟା ସବୁଦିନେ ସେଇ ଗୋଟିଏ ଚଉକିରେ ବସିଥାଏ । ମୋର ମନେହୁଏ ରେଡ଼ିଓର ପଛ ପାଖଟା ଖୋଲିଦେଲେ ଯେମିତି ଅନେକ ସାନ ବଡ଼ କଳକବ୍ଜା ଦେଖାଯାଏ, ତା ଚନ୍ଦାମୁଣ୍ଡର ଖୋଳପା ଉଠାଇ ନେଲେ ଠିକ୍ ସେହିପରି ଦେଖାଯିବ । ସେ ଗଦା ଗଦା ଫାଇଲ ଓଲଟାଏ । ଶେଷରେ ଗୋଟିଏ କୋଣରେ ଗୋଟିଏ ସାନ ଦସ୍ତଖତ କରେ । ବାଁପାଖ ଟେବୁଲରେ ଅନେକ ଫାଇଲ । କାନ୍ଥରେ ଭାରତବର୍ଷର ମାନଚିତ୍ର । ସେପଟରେ ଖୋଲା ଝର୍କା । ଝର୍କାରେ ନୀଳ ପର୍ଦ୍ଦା, ଝର୍କା ପାଖ ଥାକରେ ଫୁଲଦାନି, ଫୁଲଦାନିରେ ତଟକା ଫୁଲ, ଯେମିତି ପ୍ରଜାପତି ଉଡ଼ି ଆସି ବସିବ । କିନ୍ତୁ ପ୍ରଜାପତି ଉଡ଼ି ଆସିବାର ମୁଁ କେବେ ଦେଖି ନାହିଁ। ହୁଏତ ମୋ ସାମ୍ନାର ଲୋକଟିର ମୁଣ୍ଡରେ ଅଦୃଶ୍ୟ କଳକବ୍ଜାର ଦିନରାତି କାମ ଚାଲିଛି ବୋଲି ପ୍ରଜାପତି ଦୂରରୁ ଥାଇ ବୁଝିପାରେ ଓ ଭୟ କରେ । ମୋ ଭିତରେ ଫୁଲ । ମୋ ଚେହେରା ସ୍ୱଚ୍ଛ ବୋଲି ଫୁଲଗୁଡ଼ା ପରିଷ୍କାର ଭାବରେ ଦେଖାଯାଏ । ମୁଁ ଜାଣେ ସେ ଫୁଲରେ ସୌରଭ ନାହିଁ ତେଣୁ ପ୍ରଜାପତି ଆସିବେ କୁଆଡୁ ? କିନ୍ତୁ ମୋର ଭାରି ଇଚ୍ଛା ହୁଏ ଟେବୁଲ ଉପରୁ ଖସିପଡ଼ି ଅଫିସ ଚଟାଣରେ ଗଡ଼ି ଗଡ଼ି ଅନେକ ଦୂର ଚାଲିଯାଆନ୍ତି କି ! ଯାଇ ପ୍ରଜାପତିର ଅରଣ୍ୟରେ ହଜିଯାଆନ୍ତି । ଲନ୍‌ର ଫୁଲମାନଙ୍କ ଗହଣରେ ମିଶିଯାଆନ୍ତି । କିଛି ହୁଏ ନାହିଁ । ନିର୍ବେଦ ଜଡ଼ ହୋଇ ଗୋଟିଏ ସ୍ଥାନରେ ବସି ରହେ । ଦେଖେ ଏଇ କୋଠରିର କବାଟ ଠେଲି ଦାୟିତ୍ୱହୀନ ବୋଲି ମୁହଁ ଭଙ୍ଗୀ କରି ଏଇ ଅଫିସର କର୍ମଚାରୀମାନେ ଭିତରେ ପଶନ୍ତି । ସରକାରୀ କାର୍ଯ୍ୟ ବିଷୟରେ ଆଲୋଚନା କରନ୍ତି । ମୋ ସାମ୍ନାର ଲୋକଟି ସେମାନଙ୍କୁ ବୁଝାଇ ଦାୟିତ୍ୱ ହସ୍ତାନ୍ତର କଲେ । ମୁଁ ବୁଝିପାରେ, ଆଜିକାଲି ଦାୟିତ୍ୱ ନେବାକୁ କିଏ ବା ଚାହେଁ ? ମୁଁ ଜାଣେ ଏଇ ଲୋକମାନେ ଏଇ କବାଟ ଟାଣି ବାହାରକୁ ବାହାରିଗଲେ ସେମାନଙ୍କର ମୁହଁର ଚେହେରା ବଦଳିଯାଏ । ସେମାନେ ଖୁବ୍ ସାଧାରଣ ହୋଇ ଉଠନ୍ତି । କେତେବେଳେ ବଡ଼ ବଡ଼ କାତା ଖୋଲି ସଂଖ୍ୟାର ସିଡ଼ିରେ

ଉପର ତଳ ତଳ ଉପର ହୁଅନ୍ତି। ପୁଣି କଲମ ବନ୍ଦ କରି ଦରମା, ମହଙ୍ଗା ଭତ୍ତା, ବଜାର ଦର ଇତ୍ୟାଦି ପରସ୍ପର ମଧ୍ୟରେ ଫିଙ୍ଗାଫିଙ୍ଗି ହୁଅନ୍ତି। କେତେବେଳେ ପୁଣି ରାଜନୀତି, ସିନେମା, ସାହିତ୍ୟ, କ୍ରିକେଟ୍‌ରେ ମାତିଯାଆନ୍ତି । କେତେବେଳେ ପୁଣି ବସି ବସି ଚିଠି ଲେଖନ୍ତି, ଚା' ପିଅନ୍ତି । ଅବଶ୍ୟ ଏମାନଙ୍କ ପରିବାରର ଦାୟିତ୍ୱ ଅଛି । ଏମାନଙ୍କ ମଧ୍ୟରୁ ଅନେକ ଦରମା ପାଇବାର ଆଠ ଦଶ ଦିନ ପରେ କ୍ୟୁରେ ଛିଡ଼ାହୋଇ ଋଣ ନିଅନ୍ତି । ଦ୍ୱିପ୍ରହରରେ ଦଶ ପଇସାର ଚା' ପିଇ ଚାରମିନାର ଟାଣନ୍ତି । ଅଫିସ ଗେଟ୍‌ରେ ପଶିଲାବେଳେ ଏମାନଙ୍କ ସାଇକେଲ କେରିଅରରେ ବଜାର ଥଳି ଥାଏ । ଲନ୍‌ର ଫୁଲମାନଙ୍କୁ ଏମାନେ ଅନ୍ୟମନସ୍କ ଭାବରେ ଥରେ ବି ଦେଖନ୍ତି ନାହିଁ । ସେମାନଙ୍କ ଡ୍ରଇଂରୁମରେ ଥାଏ ପ୍ଲାଷ୍ଟିକ୍ ଫୁଲ ନ ହେଲେ ଫୁଲର ଛବି । ଉପାୟ ନାହିଁ । ଫୁଲ ସବୁ ପ୍ଲାଷ୍ଟିକ ହେବାକୁ ବା ଛବି ହେବାକୁ ନିହାତି ବାଧ୍ୟ । ଅଫିସ ସାରା ଫାଇଲ ଫାଇଲ ଗନ୍ଧ । ମୁଁ ଜାଣେ ଏବେ ସେଇମାନଙ୍କ ମୁଣ୍ଡ ଉପରେ ଏକ ସମତଳରେ ଫୋନ୍ ସବୁ ପ୍ରତିଦ୍ୱନ୍ଦିତା କରୁଥିବେ । ଫାଇଲ୍ କୋଣଗୁଡ଼ା ପବନରେ ଫଡ଼୍ ଫଡ଼୍ କରୁଥିବ । କୋଣର ବାର୍‌ଲାଇଟ୍ ମଝିରେ ମଝିରେ ଧପ୍ ଧପ୍ କରୁଥିବ ।

ମୁଁ ବାହାରକୁ ଯାଇ ପାରେନି । ଏଇଠି ବସି ବସି କେବଳ ଏଇ କୋଠରିର ବାହାର ଦୃଶ୍ୟ ଅନୁମାନ କରେ ଏବଂ ମୋ ସାମ୍ନା ଲୋକଟିକୁ ଦେଖେ କେବଳ । ଦେଖେ, ଗମ୍ଭୀର ହୋଇ ସେ କିପରି କଲିଂ ବେଲ୍ ବଜାଏ । ଫୋନ୍‌ରେ କାହାକୁ ସବୁ ଡାକେ । କାହାରି ତ୍ରୁଟିରେ ବିରକ୍ତ ହେଲେ ସେ ବିରକ୍ତିର ଚିହ୍ନ ଅନେକ ସମୟ ତା ମୁହଁରେ ଲାଗି ରହେ । ସେ ବାହାରକୁ ଗଲେ ମୁଁ ଖୁବ୍ ନିଃସଙ୍ଗ ହୋଇ ଉଠେ । ସେତେବେଳେ ନିଜକୁ ଅନୁଭବ କରେ । ମୁଁ ଲକ୍ଷ୍ୟ କରି ଦେଖେ, ମୁଁ ବସି ରହିଛି ଗୋଟିଏ ଟାଇପ୍ କରା ଚିଠିର "ଇଓର୍ସ ଫେଦ୍‌ଫୁଲି" ଉପରେ । ସତରେ ମୁଁ ବିଶ୍ୱସ୍ତ ନୁହେଁ ତ ଆଉ କ'ଣ ? ଯେଉଁଠି ବସାଇ ଦେଲେ ସେଇଠି ବସି ରହେ । ଖେଳନା ଭଳି ଖେଳିଲେ ମୁଁ ଖେଳେ । ମୋ କଡ଼ରେ "ପିନ୍ କୁସନ" ବସିଥାଏ ଓ ତାର ଆକାର ମୋରି ଭଳି ଗୋଲାକାର ବୋଲି ତାରି ସହ ଗପ ଜମେଇବାକୁ ଚେଷ୍ଟା କରେ । ଥରେ ଥରେ ତାର ମୁନିଆ ନଖ ଦେଖାଏ । ବୋଧହୁଏ ~~ସେ~~ ଗର୍ବ କରେ କାଗଜ ମୁଣ୍ଡରେ ଫୋଡ଼ି ହୋଇ ବାହାରୁ ବୁଲିଆସେ ବୋଲି । 'ପିନ୍ କୁସନ'ର ବ୍ୟବହାର ଦେଖି ଦୁନିଆର ଲୋକଙ୍କ ପ୍ରତି ଆସ୍ଥା ତୁଟିଯାଏ । ଏପଟେ ବସିଥିବା ପାଣି ଗ୍ଲାସକୁ ଚାହେଁ । ସେ କିଛି କଥା କହେ ନାହିଁ ଯେପରି ଅଫିସର ଗୋଟିଏ କର୍ମଚାରୀ ଆଉ ଜଣକୁ ବାହାରେ ଦେଖିଲେ ଚିହ୍ନିପାରେ ନାହିଁ, ଠିକ୍ ସେହିପରି । ପାଣିଗ୍ଲାସ ପାଇଁ ମୋର ଶୋଷ ବଢ଼ିଯାଏ ।

ପିଇପାରେ ନାହିଁ ଏଇଟା କେବଳ ତାରି ପାଇଁ ଯିଏ ଅନେକ ଦସ୍ତଖତ କରି କରି ଶୋଷିଲା ହୋଇଯାଏ । ମୋ ପଛପଟରେ ଦେଖେ ଶୀର୍ଷାସନ କରୁଥିବା ଦୁଇଟି କଲମ । ତା' ପଛପଟରେ ପ୍ରତିଦିନ ସଂଖ୍ୟା ବଢ଼ିଚାଲେ । ଏଠାରେ ଅବଶ୍ୟ ତାରିଖ ସଂଖ୍ୟା ବଦଳେ ଦିନ ସାଢ଼େ ନଅଟାରେ ଯେତେବେଳେ ଖେଳ ପଡ଼ିଆ ଭଳି ଏ ଟେବୁଲଟା ପୋଛା ହୁଏ । ସେତେବେଳେ ଜଣେ ଖାକି ପୋଷାକ ପିନ୍ଧା କଳା ଲୋକ ମୋତେ ତା ଇଚ୍ଛା ଅନୁସାରେ ଏପଟ ସେପଟ କରେ । ମୁଁ ଟେବୁଲ ଉପରର ସ୍ୱଚ୍ଛ କାଚ ଉପରେ ସ୍କେଟିଂ କରି ନିଏ । ଉହୁଙ୍କି ପଡ଼ି ଦେଖେ କେଉଁ ଏକ ଦୂର ଦେଶର ରଙ୍ଗିନ ଛବି ଆଉ ତା' ପାଖରେ ସମୟକୁ ସଂଖ୍ୟା କରି ରଖିବାର ଚିତ୍ର । ପୁଣି ଠିକ୍ ସେଇ ସାମ୍ନାରେ ଲୋକଟି କଳକବ୍‌ଜାର ମୁଣ୍ଡ ନେଇ ଚଉକିରେ ବସିଗଲେ ତାର ଇଚ୍ଛାରେ ମୁଁ ପୁଣି 'ଇଓର୍ସ ଫେଦ୍‌ଫୁଲି' ଉପରକୁ ଫେରିଆସେ । ବସି ବସି ଶୁଣେ ପାଖ ଘରେ ଟାଇପ୍ ମେସିନ୍‌ଟା ଖଟାଖଟ୍ ଧଳା କାଗଜକୁ ପଛରୁ ଠେଲି ଦେଉଛି ।

ମୋର ଥରେ ଥରେ ବେଶ୍ ଇଚ୍ଛା ହୁଏ କାହାରି ଇଚ୍ଛାରେ ଏ କାଗଜ ଉପରୁ ସେ କାଗଜ ଉପରକୁ ଯିବା ଅପେକ୍ଷା, ଏପଟେ ଆଲପିନ୍‌ର ତୀକ୍ଷ୍ଣ ନଖଦାନ୍ତ ସେପଟେ ପାଣି ଗ୍ଲାସର ନୀରବ ଶୀତଳତା, ଫୋନ୍‌ର ଚିତ୍କାର ଭିତରେ ବି 'ଇଓର୍ସ ଫେଦଫୁଲି' ଉପରେ ବସି ରହିବାର କଷ୍ଟ ଅପେକ୍ଷା କୌଣସି ଏକ କଳା ଲୋକର ଖାକି ପକେଟରେ ଚାଲାଣ ହୋଇ ତା ଘରେ ସାନ ସାନ ପିଲାଙ୍କ ଖେଳଣା ଭିତରେ ଶେଷ ହୋଇଯିବା ଢେର୍ ଭଲ । କିନ୍ତୁ କିଛି ତ ହୁଏ ନାହିଁ, କେବଳ ଏକ ବନ୍ଦ କୋଠରି ଭିତରେ କଳକବ୍‌ଜା ଲାଗିଥିବା ଚିକ୍ ଚିକ୍ ମୁଣ୍ଡ ସାମ୍ନାରେ ବସି ବସି ଦିନ ଗଣେ ।

ହଠାତ୍ ଦିନେ ନଅଟାରେ ଖାକି ପୋଷାକ ପିନ୍ଧା ଲୋକଟି ହାତରେ ବାହାରକୁ ଆସି ଦେଖିଲି, ଖୁବ୍ କୋଣରେ ଆପେ ଆପେ ଗୋଟିଏ ଟାଇପ୍ ମେସିନ୍ ଖଟାଖଟ୍ ଶବ୍ଦ କରି ଧଳା କାଗଜକୁ ପଛକୁ ଠେଲି ଦେଉଛି । ମୁଁ ଆତଙ୍କିତ ହୋଇ ଉଠିଲି । ସେଇ ଏକ ପ୍ରକାର ଚିଠିରେ ପୃଥିବୀର ସବୁ ଧଳା କାଗଜ ପୂର୍ଣ୍ଣ ହୋଇ ଆସୁଛି । ସବୁ ଚିଠି ତଳେ ସେଇ ବିନୟୀ ଭାଷାରେ 'ଇଓର୍ସ ଫେଦ୍‌ଫୁଲି' ଟାଇପ୍ ହୋଇ ଚାଲିଛି । ମଣିଷ ଭିତରର ଭାଷା ଲେଖା ହେବ କେଉଁଠି ? ମୋ ଭିତରର ଫୁଲର ଚିତ୍ର ଅଙ୍କା ହେବ କେଉଁ କାଗଜରେ ? ମୁଁ ବୁଲି ବୁଲି ଅଫିସର ଚାରିଆଡ଼ ଦେଖିଲି । ଘୂର୍ଣ୍ଣାୟମାନ ବିଜୁଳି ପଙ୍ଖା ତଳେ ଅନେକ ଫାଇଲ, ଅନେକ ମୋଟା ମୋଟା ଖାତା, ଟେବୁଲ ଉପରେ ଗୋଟିଏ ପ୍ରକାର ଲେଖାଥିବା ଅନେକ ଟାଇପ୍‌କରା ଚିଠି, ତା' ପାଖରେ ଅନେକ ସମସ୍ୟାର ଆଲପିନ୍‌ର ଧାରୁଆ ନଖଦାନ୍ତ । ଡୟାରରେ ଆତ୍ମୀୟର ହାତଲେଖା ଚିଠି । କ୍ରମେ କ୍ରମେ

ଲୋକମାନେ ଝାଳ ସରସର ଦେହରେ ଭିତରକୁ ଆସି ବସିଲେ। ଛାତିର ବୋତାମ ଖୋଲି କଲରଟା ବେକର ପଛ ଆଡ଼କୁ ପକାଇ ହାୱା ଖାଇଲେ ଏବଂ କଲମ ଖୋଲି ଚିଠିପତ୍ର ଫାଇଲ ଛୁଇଁବା ମାତ୍ରେ ଦେଖିଲି ସେମାନେ ସାନ ହୋଇଯାଉଛନ୍ତି। ଖୁବ୍ ସାନ ହୋଇଯାଉଛନ୍ତି। ଶେଷରେ ସାନ ହୋଇ ହୋଇ ସେମାନେ ମୋରି ଭଳି ଗୋଟିଏ କାଚର ଗୋଲକ ହୋଇଗଲେ। କେତେକଙ୍କ ଭିତରେ ରେଡ଼ିଓର ଯନ୍ତ୍ରପାତି ଭଳି କଳକବ୍ଜା ଦେଖାଗଲା। କେତେକଙ୍କ ଭିତରେ ଗନ୍ଧହୀନ ପ୍ଲାଷ୍ଟିକ ଫୁଲ ଫୁଟିଲା।

ଏବଂ ସେମାନେ ଅପେକ୍ଷା କରି ରହିଲେ କେଉଁ ଏକ ବଡ଼ ଅଫିସର ଫାଇଲରୁ ଟାଇପ୍ କରାହୋଇଥିବା ଧାରୁଆ କାଗଜ ଗୋଟିଏ ଆସିବ ଏବଂ ନିର୍ବିଶେଷରେ ସମସ୍ତଙ୍କୁ ଏକାକାର କରିଦେବ ।

('ଲେଖା'–ପ୍ରଥମ ସଂକଳନ, ମେ, ୧୯୭୪)



# ଫଳ

ସେ ଦେଖିଲେ–

ସୂର୍ଯ୍ୟାସ୍ତ ସମୟରେ ଭାରତୀ ଯନ୍ତ୍ରଣା ଅନୁଭବ କଲା । ସେ ଚିତ୍କାର କଲା । ସିଧା ହୋଇ ବସି ନ ପାରି କଡ଼େଇ ହୋଇ ବସିଲା । ତଳ ପେଟରେ ହାତ ପାପୁଲି ଚାକି ଧରି ଅନେକ ଯନ୍ତ୍ରଣାସୂଚକ ଅବ୍ୟୟ ଶବ୍ଦ ଉଚ୍ଚାରଣ କଲା । ଆଖିରୁ ଧାର ଧାର ଲୁହ ବୋହିଗଲା । ସମସ୍ତେ ବୁଝିଗଲେ ଗର୍ଭ ଯନ୍ତ୍ରଣା; କିନ୍ତୁ ଦଶମାସ ପୂର୍ବରୁ ଗର୍ଭ ଯନ୍ତ୍ରଣାର ଆରମ୍ଭ । ଘରର କେତେକ ମୁରବୀ ଶଙ୍କିତ ହେଲେ । ତଥାପି ପ୍ରାୟ ସମସ୍ତେ ଚାହିଁଲେ ଯାହା ହେଉ ପଛେ ଭାରତୀ ମୁକ୍ତି ପାଇଯାଉ ।

ରାତି ବାରଟାରେ ସମସ୍ତଙ୍କର ଉତ୍ସୁକତାରେ ଘେରା ପାଚେରି ମଧ୍ୟରେ ଶିଶୁଟି ଭୂମିଷ୍ଠ ହେଲା । ସମସ୍ତେ ଏକ ସଙ୍ଗେ ଆନନ୍ଦରେ ଚିତ୍କାର କରି ଉଠିଲେ–ଯାହାହେଉ, ଭାରତୀ ରକ୍ଷା ପାଇଗଲା । ଭାରତୀ ବର୍ତ୍ତମାନ ତାର ପୂର୍ବ ଜୌଲୁସ ଫେରି ପାଇବ । ତାର ଅଙ୍ଗେ ଅଙ୍ଗେ ପୁଣି ଚପଳତା ଫୁଟି ଉଠିବ । ସେ ପୁଣି ମୁଣ୍ଡ ଟେକି ଅହମିକା ଦେଖାଇ ଚାଲୁଥିବା ସବୁ ସୁନ୍ଦରୀଙ୍କ ଗହଣରେ ମିଶିଯିବ ।

ଜ୍ୟାକ୍ ଛିଡ଼ା ହୋଇ କେବଳ ଦେଖୁଥିଲା । ଭାରତୀ ଶୋଇଛି । ଅଚେତନ ଦେହ ଖେଳେଇ ହୋଇ ପଡ଼ିଛି ବିଛଣାରେ । ହାତଗୋଡ଼ ଯେପରି ରକ୍ତଶୂନ୍ୟ, ଶେତା ଦେଖାଯାଉଛି । ଓଠ କଳା ପଡ଼ି ଆସିଛି । ଜଣେ ଟୋପି ପିନ୍ଧା ଲୋକ ଭାରତୀର ମୁଣ୍ଡ ପାଖରେ ବସି ପଙ୍ଖା କରୁଛି । ଆଉ ଜଣେ ମୁଣ୍ଡ ଆଉଁଶି ଦେଉଛି । ଆଣ୍ଠୁ ପାଖରେ ବିଛଣାଟା ରକ୍ତରେ ଜୁଡୁବୁଡୁ । କବାଟ କଡ଼କୁ ଧଳା ଲୁଗାରେ ଗୁଡ଼ା ହୋଇଛି କିଛି ମାଂସପିଣ୍ଡୁଳା । ବଡ଼ ଧରଣର ଖଣ୍ଡିଆ ହୋଇଥିବା ସ୍ଥାନରେ କନାଗୁଡ଼ାକ ଦେଲେ ଯେପରି ରକ୍ତ ଉପୁଚି ଆସି ବ୍ଲଟିଙ୍ଗ ପେପର୍‌ରେ ନାଲି କାଳି ଚପା ହୋଇଥିବା ଭଳି ଦେଖାଯାଏ, ଧଳା କନା ବୁଜୁଳା ଭିତରୁ ସେହିପରି ରକ୍ତ ଛାଏଁ ଛାଏଁ ଉପୁଚି ଆସିଛି । ଭାରତୀ ଜନ୍ମ ଦେଇଛି ମୃତ ଶିଶୁ ।

ଜ୍ୟାକ୍ ଭାବୁଥିଲା ଶିଶୁଟା ବଞ୍ଚିଥିଲେ ତାରି ଭଳି ହୋଇଥାନ୍ତା । ତାରି ଭଳି ଆଖି, ଓଠ, ନାକ । ଇଂରାଜୀ ଉଚ୍ଚାରଣ କଲାବେଳେ ଓଠ ଓ ଦାନ୍ତର କସରତ ଦେଖାନ୍ତା । ବଡ଼ ହେଲେ ତାରି ଭଳି ପେଣ୍ଟ ସାର୍ଟ ଓଭରକୋଟ୍ ଟାଇ ପିନ୍ଧନ୍ତା । ଦେହର ରଙ୍ଗ ନାଲିଚିଆ ହୁଅନ୍ତା; କିନ୍ତୁ କନା ବୁଜୁଳା ଭିତରେ ଆତ୍ମଗୋପନ କରି ରହିଯାଇଚି ଭାରତୀୟ ମୃତ ଶିଶୁ ।

ଭାରତୀର ସଂଜ୍ଞା ଧୀରେ ଧୀରେ ଫେରି ଆସୁଛି । ଅଠା ପରି ଶୁଖିଯାଇଥିବା ଓଠ ଦି'ପଟ ଥରିବାକୁ ଆରମ୍ଭ କଲାଣି । ନାକପୁଡ଼ାରେ ଦ୍ରୁତ ସ୍ପନ୍ଦନ ଜଣାଯାଉଛି । ଆଖିପତା ତଳେ ଡୋଳାଗୁଡ଼ା ଘୂରିବାକୁ ଆରମ୍ଭ କଲାଣି ।

ଭାରତୀର ଏ ଅବସ୍ଥା ପାଇଁ ଜ୍ୟାକ୍ ଦାୟୀ ।

ଜ୍ୟାକ୍ ଏକ ଅଜବ ମଣିଷ । ସୁନ୍ଦରୀ ତରୁଣୀ ଦେଖିଲେ ସେ ହଠାତ୍ ସବୁ ଭୁଲିଯାଏ । କୌଣସି ପ୍ରକାରେ ତାକୁ ଅଧିକାର କରିବାକୁ ସେ ଲାଗିପଡ଼େ । ପ୍ରାୟ ସବୁ ଜାଗାରେ ସେ ତାର ବିଜୟ ବୈଜୟନ୍ତୀ ଉଡ଼ାଇଛି । ଯେତେବେଳେ ଭାରତୀ ଉପରେ ତାର ନଜର ପଡ଼ିଲା, ସେ ବୁଝିନେଲା ଭାରତୀ ଏକ ଅସାଧାରଣ ତରୁଣୀ । ତାକୁ ନ ପାଇଲେ ତାର ଜୀବନ ବୃଥା ହୋଇଯିବ । ତା'ପରେ ତା ପାଇଁ ସବୁ ସ୍ଥାନରେ ଯାହା ହୁଏ ତାହାହିଁ ହେଲା । ଭାରତୀର ଦୁର୍ବଳତମ ସ୍ଥାନ ସେ ସ୍ପର୍ଶ କଲା । ତାର ଦୁର୍ବଳତମ ସମୟରେ ଧୀରେ ଧୀରେ ତା' ଭିତରକୁ ପ୍ରବେଶ କଲା । ତା' ପରେ ତାକୁ ସାମଗ୍ରିକ ଭାବରେ ଅଧିକାର କରିନେଲା । ଭାରତୀ ଦେହର ପ୍ରତି ପଲ୍ଲବରୁ ସେ ସଂପଦ ଆହରଣ କଲା ପରେ ଦିନେ ଜାଣିଲା ଭାରତୀର ଗର୍ଭାଶୟରେ ତା ରକ୍ତରେ ଏକ ମୂର୍ତ୍ତି ଗଠନ ଚାଲିଛି । ଆଉ ଅନ୍ୟ ଉପାୟ ନଥିଲା । ଦଶମାସ ନପୂରୁଣୁ ଭାରତୀ ଅବୈଧ ମୃତ ଶିଶୁକୁ ଜନ୍ମ ଦେଲା ରାତି ବାରଟାରେ ।

ସେ କେବଳ ଦେଖିଲେ –

ଭାରତୀ ଆଖି ଖୋଲିଲା । ମୁଣ୍ଡରୁ ପାଦ ପର୍ଯ୍ୟନ୍ତ ସମସ୍ତଙ୍କ ଉପରେ ଆଖି ବୁଲାଇ ଆଣିଲା । କବାଟ ଆଡ଼େ ମୁହଁ କରି ପଳାଇବାକୁ ଉଦ୍ୟତ ହେଉଥିବା ଜ୍ୟାକ୍ ଆଡ଼େ ଚାହିଁ ଘୃଣାରେ ହସିଲା, ସେ ବି ଟିକିଏ ଛଳନା ମିଶା ସ୍ମାଇଲ ଦେଇ ତା ଆଡ଼େ ଲୋଭିଲା ଆଖିରେ ଚାହିଁଲା । ସେ ଭଲ କରି ଜାଣେ ଆଜିଠୁଁ ସବୁଦିନ ପାଇଁ ତାକୁ ଭାରତୀକୁ ହରାଇବାକୁ ପଡ଼ିବ । ଭାରତୀ ଯେଉଁ ଶିକ୍ଷା ଲାଭ କଲା, ଆଉ କେବେ କେହି ବିନା ସର୍ତ୍ତରେ ତାଠୁ କାଣିଚାଏ ସ୍ନେହ ବି ପାଇବେ ନାହିଁ । ଜ୍ୟାକ୍‌କୁ ସେଇ ରାତି ଅନ୍ଧକାରରେ ଦ୍ୱାରବନ୍ଧ ଡେଇଁ ବାହାରକୁ ଚାଲିଯିବାକୁ ପଡ଼ିବ ।

ଭାରତୀ ବିଛଣାରେ ଉଠି ବସିଲା । ରାତି ପାହି ଆସୁଛି । ଭାରତୀର କେଶ ଖୋଲା । ସାରା ପିଠିରେ କେରି କେରି ହୋଇ ମେଲେଇ ହୋଇ ପଡ଼ିଛି । ଭାରତୀର ଆଖିରେ କେମିତି ଏକ ନୂତନ ସୂର୍ଯ୍ୟୋଦୟର ଲାଲିମା । ଯେପରି କିଏ ତାକୁ ଅନ୍ଧକାରରୁ କେଉଁ ଏକ ଜଙ୍ଗଲରୁ ଉଦ୍ଧାର କରି ଆଣି ଭୋରର ଫରଚା ଆଲୁଅ ତଳେ ଗୋଟିଏ ସୁନ୍ଦର ବଗିଚାରେ ଶୁଆଇ ଦେଇ ଯାଇଛି । ଭାରତୀ ଆଉ ଜ୍ୟାକ୍ ଆଡ଼େ ନ ଚାହିଁବାରୁ ଜ୍ୟାକ୍ ଶେଷଥର ପାଇଁ ରକ୍ତାକ୍ତ କନା ବୁଜୁଳା ଆଡ଼େ ଚାହିଁ ମୁରୁକି ହସି ଭୋର ହୋଇ ଆସୁଥିବା ଆଲୁଅ ଅନ୍ଧାର ମଧ୍ୟରେ ହଜିଗଲା ।

ସେ ଦେଖିଲେ–

ପୁରୁଖା ଲୋକ କେତେଜଣ ସେ କନା ବୁଜୁଳାଟିକୁ ଗୋଟିଏ ଥଳିରେ ପୂରାଇ ଚାଲିଛନ୍ତି । ସେମାନେ ଅନେକ ସହରର ରାସ୍ତା ଅତିକ୍ରମ କରିଗଲେ । ଅନେକ ଗାଁ, ଗଣ୍ଡା, ବିଲ, ନଈ ଅତିକ୍ରମ କରି ଏକ ଅଗ୍ନାଅଗ୍ନି ବନସ୍ତରେ ପ୍ରବେଶ କଲେ । ଗୋଟିଏ ଅନ୍ଧାରୁଆ ସ୍ଥାନରେ ଛିଡ଼ାହୋଇ କଣ ସବୁ କଥାବାର୍ତ୍ତା ହେଲେ । ତା' ପରେ ଗୋଟିଏ ସ୍ଥାନରେ ବୁଜୁଳାଟିଏ ଓହ୍ଲେଇ ରଖି କୋଦାଳ ଓ ଶାବଳରେ ଗାତ ଖୋଳିବା ଆରମ୍ଭ କଲେ । ଦୁଇଜଣ ଖୋଳିଲେ ଆଉ ଦୁଇଜଣ ଗାତ ଖୁବ୍ ଗଭୀର ହୋଇଗଲା ପରେ ଜଣେ ଉହୁଙ୍କି ଦେଖିଲା ଏବଂ ଆଉ ଜଣେ ଇଙ୍ଗିତ ପାଇ ଥଳିସହ କନା ବୁଜୁଳାଟିକୁ ଗାତ ଭିତରକୁ ପକାଇଦେଲା । ସମସ୍ତେ ହାତ ଲଗାଇ ଗାତରୁ ବାହାର କରିଥିବା ମାଟିପଥର ଦୁଲ୍‌ଦାଲ୍ କରି ଭିତରକୁ ପକାଇଲେ । ଗାତ ପୂରି ଉଠିଲା । କେତେଜଣ କୋଦାଳ ଓ ଶାବଳରେ କୋଡ଼ି କୋଡ଼ି ମାଟି ପକାଇ ସ୍ଥାନଟା ସମତଳ କରିନେଲେ । ପୃଥିବୀର ଅଭ୍ୟନ୍ତରରେ ଖୁବ୍ ସଂଗୋପନରେ ଅବୈଧ ମୃତ ଶିଶୁ ଆତ୍ମଗୋପନ କରି ରହିଗଲା । ଜଣେ ପ୍ରସ୍ତାବ କଲା ସେହି ସ୍ଥାନରେ ଗୋଟିଏ ଗଛ ଲଗାଯାଉ । ଖୋଜା ହୋଇ ଗୋଟିଏ ଚାରାଗଛ ଆସିଲା । ସେ ସ୍ଥାନରେ ପୋତି ଦିଆଗଲା । ପବନରେ ଚାରାଗଛ ଦୁଇଟି ହାତ ହଲାଇ ସେମାନଙ୍କୁ ସେ ସ୍ଥାନରୁ ବିଦାୟ ଦେଲା । ଜଙ୍ଗଲରୁ ବାହାରି ସେମାନେ ଦେଖିଲେ ଆକାଶରେ ସୂର୍ଯ୍ୟୋଦୟ । ଏଣେ ଭାରତୀର ପୋଷାକ ବଦଳିଲା, ଜୁଡ଼ାରେ ଫୁଲ ଫୁଟିଲା । ସେ ପୁଣି ସୁନ୍ଦର ସ୍ୱାସ୍ଥ୍ୟ ଫେରିପାଇଲା । ରାସ୍ତାର ସବୁ ସୁନ୍ଦର ସ୍ୱାସ୍ଥ୍ୟବତୀ ଝିଅଙ୍କ ଗହଣରେ ହଜିଗଲା । ଜଙ୍ଗଲରେ ଚାରାଗଛ ଦୁଇଟି ପତ୍ରରୁ କ୍ରମେ କାଣ୍ଡ ଶାଖାପ୍ରଶାଖା ବିସ୍ତାର କଲା । ଜଙ୍ଗଲରେ ମୁଣ୍ଡଟେକି ସୂର୍ଯ୍ୟକିରଣ ପାଇଲା । କ୍ରମେ ତା ଦେହରେ କେମିତି ଏକ ପ୍ରକାର ବାଇଗଣୀ ଫୁଲ ଫୁଟିଲା । କଷି ଧରିଲା ଏବଂ ସାରା ଗଛରେ କ୍ରମେ ଆଶ୍ଚର୍ଯ୍ୟ ଫଳ ସବୁ ଝୁଲିପଡ଼ିଲେ । ଫଳର ରଙ୍ଗ ଲୁହା କଳଙ୍କିର ରଙ୍ଗ ଭଳି, ଖୁବ୍ ଶକ୍ତ, କର୍ମଙ୍ଗା ଭଳି ଆକାର ।

ଅନେକ ଦିନ ପରେ ସେ ଦେଖିଲେ–

କୁଳପତିଙ୍କ ଅଫିସ ସାମ୍ନାରେ ଅନେକ ଲମ୍ବା କଲି, ଲମ୍ବା ବାଳ, ଢେ ପ୍ୟାରାଲାଲ୍ ବେଲ୍‌ବଟମ୍‌ର ଭିଡ଼ । ସମସ୍ତଙ୍କ ମୁହଁରେ କୌତୂହଳ । କେତେଜଣ ଦ୍ୱାର ପାଖରେ ସାମ୍ନା ପିଲାର କାନ୍ଧରେ ଭରା ଦେଇ ଉହୁଙ୍କି ପଡ଼ି ଭିତରକୁ ଦେଖୁଛନ୍ତି । ଦଳେ ଶୂନ୍ୟରେ ହାତଟେକି କୁଳପତିଙ୍କ ସାମ୍ନାରେ ସିଂହନାଦ ଛାଡ଼ୁଛନ୍ତି । ସମସ୍ତେ ପେଲାପେଲି ହୋଇ ଭୟଙ୍କର ଏକତାପୂର୍ଣ୍ଣ ସ୍ଲୋଗାନ ସବୁ ଉଚ୍ଚାରଣ କରୁଛନ୍ତି । ଭିତରେ ଚଷମା ଲଗାଇ ବସିଥିବା କୁଳପତି ଚଷମାଟିକୁ ଆଖିରୁ ଉତାରି ସାମ୍ନା କାଚଲଗା ଟେବୁଲ ଉପରକୁ ଓହ୍ଲାଇ ରଖୁଛନ୍ତି ଏବଂ ଟାଇ ନଟ୍ ଟିକିଏ ଢିଲାକରି ପୋଲିସ୍ ଷ୍ଟେସନର ନମ୍ବର ଡାଏଲ୍ କରି ଚାଲିଛନ୍ତି । ଫୋନ୍‌ରେ କଥା ଆରମ୍ଭ କଲାମାତ୍ରେ ଦୁଇଜଣ ଛାତ୍ର ତାଙ୍କ ହାତଧରି ବାହାରକୁ ଘୋଷାଣି ଆଣିଲେ । ତାଙ୍କ ଜାମା ଚିରିଗଲା, ଟାଇ ଉଡ଼ିଗଲା, ଜଣେ ପଛକୁ ଯାଇ କଣ ଗୋଟାଏ ଫିଙ୍ଗିଦେଲା । କୁଳପତିଙ୍କ ମୁଣ୍ଡରୁ ଧାର ଧାର ରକ୍ତ ବହିଲା । ସମସ୍ତେ ଚାହିଁ ଦେଖିଲେ ସେଇଟା ଟେକା ପଥର ଇତ୍ୟାଦି ନୁହେଁ । ଗୋଟିଏ ଫଳ । ଲୁହା କଳଙ୍କି ରଙ୍ଗର । ଆକାର କର୍ମଙ୍ଗା ଭଳି । ପଛରୁ ପୋଲିସ୍ ଗାଡ଼ି ଆସି ଧସ୍‌କରି ବ୍ରେକ୍ କଲାମାତ୍ରେ ଲାଠି ଧରିଥିବା ପୋଲିସ୍ ବେଙ୍ଗଭଳି ଖପ୍ ଖପ୍ କରି ତଳକୁ ଡେଇଁପଡ଼ିଲେ । ତା'ପରେ ଖଣ୍ଡଯୁଦ୍ଧ ଆରମ୍ଭ ହୋଇଗଲା, ପଡ଼ିଆରେ ରକ୍ତ ଝରିଲା, ଆଉ ସ୍ଥାନଟା ସେଇ ଫଳରେ ଭର୍ତ୍ତି ହୋଇଉଠିଲା ।

ସେ ଦେଖିଲେ–

ଭୋଟ ହେବାର କିଛିଦିନ ଆଗରୁ ପତାକା ଉଡୁଥିବା ଜିପ୍ ଗୋଟିଏ ଗାଁ ରାସ୍ତାରେ ଧୂଳି ଉଡ଼ାଇ ସେଦିନ ଉପରଓଳି ପାଖ ହାଟରେ ସଭା ହେବ ବୋଲି ଘୋଷଣା କରି ଆଗେଇ ଯାଉଥିବା ବେଳେ ଅନେକ ଲଙ୍ଗଳା ଛୁଆ ମାଛଧରା ଛାଡ଼ି ଗୁଡ଼୍‌ଡ଼ାବଳ ଫିଙ୍ଗି ଜିପ୍ ପଛେ ପଛେ ଧାଇଁଲେ । ସେଦିନ ଉପରଓଳି ହାଟରେ ଖୁବ୍ ଉଚ୍ଚରେ ମାଇକ୍ ବନ୍ଧାହେଲା । ଅନେକ ଲୋକ ଗାମୁଛା କାନ୍ଧରେ ପକାଇ ଏଣେ ତେଣେ ବସିଗଲେ । ନୀଳ ଲୁଙ୍ଗିପିନ୍ଧି କାନ୍ଧରେ ତଉଲିଆ ପକାଇ ବୁଲୁଥିବା ଅଧାପାଠୁଆ ପିଲାମାନେ ଲୋକଙ୍କୁ ବସାଇବାରେ, ନେତାଙ୍କ ଟେବୁଲ ଚେୟାର ପକାଇବାରେ ଲାଗିଗଲେ । ନେତା ବେକରେ ଫୁଲହାର ପକାଇ ହସ ଉକୁଟାଇ ଖୁବ୍ ବିନମ୍ର ହୋଇ ଲୋକଙ୍କୁ ଅନେକ ପ୍ରତିଶ୍ରୁତି ଦେଲେ । ତାଙ୍କୁ ଭୋଟରେ ଜିତାଇଦେଲେ ସେ ଗାଁରେ ଲୁହା ଇସ୍ପାତ କାରଖାନା ବସାଇଦେବେ ଏବଂ ସେଇ ପଡ଼ିଆରେ ଏରୋଡ୍ରମ୍ ତିଆରି କରିଦେବେ– ଏକଥା ପର୍ଯ୍ୟନ୍ତ କହିବାକୁ ଭୁଲିଲେ ନାହିଁ । ସଭା ଶେଷରେ ନେତାଙ୍କ ଇଙ୍ଗିତରେ ନୀଳ ଲୁଙ୍ଗିପିନ୍ଧା ଯୁବକମାନେ ଉଠିଲେ । ଜିପ୍ ପଛପଟେ ରଖାଥିବା ବସ୍ତା ଧରାଧରି କରି ନେଇ ଆସିଲେ ।

ତା ଭିତରୁ ସେଇ ଫଳସବୁ ବାହାରିଲା । ଗାଁ ଲୋକଙ୍କ ଭିତରେ ସେ ଫଳସବୁ ବଣ୍ଟା ହୋଇଗଲା । ଯୁବକମାନେ ନେତାଙ୍କୁ ସଭାକାର୍ଯ୍ୟରେ ସାହାଯ୍ୟ କରିଥିଲେ ବୋଲି ସେ ଫଳରୁ ବେଶି ଅଂଶ ପାଇଲେ ।

ସେ ଦେଖିଲେ–

ଦିନେ ଗୋଟିଏ ବଡ଼ ଅଫିସରେ ସରକାରୀ କର୍ମଚାରୀମାନେ ବସି ବସି ରାଜନୀତି ଚର୍ଚ୍ଚା କରୁଥିଲେ । ଟେବୁଲ ଉପରେ ଖାଲି ଚା' ଗ୍ଲାସ ଏବଂ ଗ୍ଲାସ ପାଖରେ ବେଟ୍‌ଲ୍ କ୍ଲଥ ଉପରେ ଅନେକ ପୁରୁଣା ଚା' ଗ୍ଲାସର ଦାଗ । ଚା' ରଙ୍ଗର ଫାଇଲ୍ ସବୁ ଫ୍ୟାନ୍ ପବନରେ ଫଡ଼୍ ଫଡ଼୍ ଶବ୍ଦ ହେଉଥିଲା । ବାୟୁମଣ୍ଡଳରେ କେମିତି ଏକ ପ୍ରକାର ଫାଇଲ୍ ଫାଇଲ୍ ଗନ୍ଧ । ଦୁଇଜଣ ଲୋକ ଆସି ପହଞ୍ଚିଲେ । ଅପେକ୍ଷାକୃତ ବୟସ୍କ ଦେଖାଯାଉଥିବା କର୍ମଚାରୀଙ୍କୁ ନମସ୍କାର କରି ସେମାନଙ୍କ କାର୍ଯ୍ୟ ବିଷୟରେ କଣ ସବୁ କଥାବାର୍ତ୍ତା ହେଲେ । ସେ ବୟସ୍କ କର୍ମଚାରୀଜଣକ ଭାରୀ ପର୍ଦ୍ଦା ପଡ଼ିଥିବା ରୁମ୍ ଭିତରକୁ ଅଙ୍ଗୁଳି ନିର୍ଦ୍ଦେଶ କରି ପୁଣି ବନ୍ଧୁମାନଙ୍କ ସହ ରାଜନୀତି ଚର୍ଚ୍ଚାରେ ମାତିଗଲେ । ପର୍ଦ୍ଦା ଭିତରେ ଚଉକି ଉପରେ ରଙ୍ଗିନ୍ ତଉଲିଆ ମେଲେଇ ବସିଥିବା ବ୍ୟକ୍ତିଜଣକ ବୀଭତ୍ସ ସ୍ୱରରେ କଲିଂବେଲ୍ ବଜାଇଲେ । ନବାଗତ ଦୁଇଜଣଙ୍କୁ ଦେଖାଇ ଦେଖାଇ କଫିର ଅର୍ଡ଼ର କଲେ । ଶେଷରେ କାଗଜ ଉପରୁ ମୁହଁ ଉଠାଇ କଲମଟାକୁ ବିଶେଷ ଭଙ୍ଗୀରେ ଧରି ଆଗନ୍ତୁକଦ୍ୱୟଙ୍କ କଥା ଶୁଣିଲେ । ପରେ ମୁହଁ ବିକୃତ କରି ନାସ୍ତିସୂଚକ ମୁଣ୍ଡ ହଲାଇଲେ ଏବଂ ଦୁଃଖିତ ବୋଲି ଦନ୍ତ୍ୟବର୍ଣ୍ଣ ଇଂରାଜୀରେ ବୁଝାଇ ଦେଲେ । ଆଗନ୍ତୁକ ମଧ୍ୟରୁ ଜଣେ ପକେଟରୁ ସେଇ କର୍ମଙ୍ଗା ଜାତୀୟ ଫଳ କାଢ଼ି ଟେବୁଲ ଉପରେ ରଖିଦେବା କ୍ଷଣି ତାଙ୍କ ଆଖି ଜକ୍ ଜକ୍ କଲା । ସେ ସିଧାହୋଇ ବସିଗଲେ । ଖୁବ୍ ଶୀଘ୍ର ଫଳଟାକୁ ଡ୍ରୟାର ଭିତରକୁ ଚାଲଣ କରି ପ୍ରତିଶ୍ରୁତି ଦେଲେ ଯେ ଖୁବ୍ ଶୀଘ୍ର କାମଟା ହୋଇଯିବ । ଆଗନ୍ତୁକଦ୍ୱୟ ବିଶ୍ୱବିଜୟୀର ଚେହେରା ନେଇ ଭିତରୁ ବାହାରି ଆସିଲେ ।

ସେ ଦେଖିଲେ–

ସହରତଳିରେ ରହୁଥିବା ଭିକାରିଟି ସେଦିନ ସହରକୁ ଆସି ତାର କଲେଇକରା ଟାଟିଆ ପତାଇଲା । ବନ୍ୟାରେ ଘର ଭାସିଯାଇଛି ବୋଲି କହିଲା, ବର୍ଷାରେ ଘର ଭାଙ୍ଗିଯାଇଛି ବୋଲି କହିଲା । ଅନ୍ୟମନସ୍କ ହୋଇ ବସିଥିବା ଲୋକମାନଙ୍କୁ ଏଣେ ତେଣେ ରାସ୍ତାରେ ଛିଡ଼ାହୋଇ ଗପୁଥିବା ସୁନାଗରିକମାନଙ୍କୁ ସେ ତାର କରୁଣ ରସର କାହାଣୀ ଶୁଣାଇଲା, ମାତ୍ର କେହି ଶୁଣିପାରିଲେ ନାହିଁ । ସେଦିନ ରାତିରେ ପାଣି ପିଇ ଶୋଇବାକୁ ଯିବା ପୂର୍ବରୁ ତାର ଚାଳିଆର ପଛଆଡ଼େ ପରିସ୍ରା କରିବାକୁ ଯାଇ ଦେଖିଲା ଗୋଟିଏ ଲମ୍ୱା ଗଛରେ ଅନେକ ଫଳ ଧରିଛି । ଫଳଗୁଡ଼ିକ ଲୁହା କଳଙ୍କି ରଙ୍ଗର । ଖୁବ୍

ଶକ୍ତ । ଆକାର କର୍ମଙ୍ଗା ପରି । ସେଦିନ ରାତିରେ ତାକୁଇ ଖାଇ ଶୋଇଲା । ସକାଳେ ଉଠି ସେ ସହରକୁ ଆସିଲା । ଆଶ୍ଚର୍ଯ୍ୟ ହୋଇ ଦେଖିଲା ସମସ୍ତଙ୍କ ବାଡ଼ି ବଗିଚାରେ ଗୋଟିଏ ଦୁଇଟି ସେଇ ଫଳଗଛ ଏବଂ ସବୁ ସରକାରୀ ବେସରକାରୀ ଅଫିସ୍‌ମାନଙ୍କ ସାମ୍ନା ବଗିଚାରେ ସେଇ ଅଦ୍ଭୁତ ଫଳସବୁ ଝୁଲୁଛି । ସେ ଅତଏବ କିଛି ହୃଦୟଙ୍ଗମ କଲାଭଳି ବିଜ୍ଞପରି ମୁଣ୍ଡ ହଲାଇଲା ।

ସେ ଦେଖିଲେ–

ଦିନେ ପାର୍ଲାମେଣ୍ଟ ଷ୍ଟ୍ରୀଟ୍ ଉପରେ ଠିକ୍ ପାର୍ଲାମେଣ୍ଟ ସାମ୍ନାରେ ଅନେକ ଗାଡ଼ି ଆସି ଅଟକିଗଲା । ଲୋକଙ୍କ ଭିଡ଼ । ଏପଟ ସେପଟ ଟ୍ରାଫିକ୍ ଜମିଗଲା । କାର୍, ସ୍କୁଟର, ମଟର ସାଇକେଲ ଇତ୍ୟାଦି ବ୍ରେକ୍ କଷି ମାଇଲିଏ ପର୍ଯ୍ୟନ୍ତ ଲମ୍ବିଗଲେ । ସମସ୍ତେ ଉତ୍ସୁକ ହୋଇ ଗାଡ଼ିଭିତରୁ, ମଟର ସାଇକେଲ ଉପରୁ, ଫୁଟ୍‌ପାଥ୍‌ରୁ ବେକ ଉଞ୍ଚେଇ ଦେଖିଲେ ଗୋଟିଏ ସ୍ଥାନରେ ଅନେକ ଲୋକ ପେଲାପେଲି ହେଉଛନ୍ତି କଣ ଗୋଟିଏ ଦେଖିବା ପାଇଁ । ପୋଲିସ୍ ଧାଇଁ ଆସିଲା । ଲୋକଙ୍କ ପିଠିରେ ପେଟରେ ଲାଠି ଲଗାଇ ଭିଡ଼ ହଟାଇଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଧଳାକନା ବୁଜୁଳା ରକ୍ତ ଜୁଡୁଜୁଡୁ ହୋଇ ପଡ଼ିଛି । ପୋଲିସ ଗୋଟିଏ ବାଡ଼ି ଆଗରେ କନା ବୁଜୁଳା ଫିଟାଇ ଦେଖିଲା ଗୋଟିଏ ସଦ୍ୟଜାତ ମୃତଶିଶୁ । ଗାଡ଼ି ସବୁ ଠିକ୍ ଠିକ୍ ଚାଲିବାକୁ ଆରମ୍ଭ କଲା । ମୃତ ଶିଶୁର ନୀରବ ଚିତ୍କାରକୁ ଉପେକ୍ଷା କରି ଅନେକ ଗାଡ଼ି ପାର୍ଲାମେଣ୍ଟ ଭବନ ଭିତରକୁ ହୁସ୍ ହୁସ୍ କରି ପଶିଗଲା ।

ସେ କେବଳ ଦେଖିଲେ ଏବଂ ମୁରୁକି ହସିଲେ ।

('ମାନସ', ଦ୍ୱିତୀୟ ବର୍ଷ, ପଞ୍ଚମ ସଂଖ୍ୟା, ମାର୍ଚ୍ଚ, ୧୯୭୪)



# ଜୀବନଯାପନ

ବର୍ଷାଦିନେ ମାଛ ନ ମିଳିଲେ ଲୋକେ ଶୁଖୁଆ ଖାଆନ୍ତି । ଓଡ଼ିଶାରେ ଏଇଟା ବର୍ଷାଋତୁ । ତିଥିର ଅଗଣାରେ ବି ବର୍ଷାଋତୁ । ବର୍ତ୍ତମାନ ତିଥିର ରୋଷେଇ ଘରୁ ଶୁଖୁଆ ତରକାରିର ବାସ୍ନା ଆସୁଛି । ମୋ ପେଟରେ କେମିତି ଏକ ପ୍ରକାର ଅସହ୍ୟ ଯନ୍ତ୍ରଣା । ମୋ ଅଜାଣତରେ ପେଟରେ ଏକ ଦୁରାରୋଗ୍ୟ ବ୍ୟାଧି ମାଡ଼ିବାକୁ ଆରମ୍ଭ କଲାଣି । ମୁଁ ଅଫିସ ଯାଏ, ହୋଟେଲରେ ଖାଏ, ବର୍ଷାରେ ବୁଲେ । ଖୁବ୍ କ୍ଲାନ୍ତ ହୋଇଗଲେ ଆସି ତିଥିର ଏଇ ଖଟରେ ଶୁଏ । ମୁଁ ଜାଣେ, ମୁଁ ଆସିଲେ ଏ ଘରର ସମସ୍ତେ ବିରକ୍ତ ହୋଇ ଉଠନ୍ତି । ତଥାପି ମୁଁ ନିଜକୁ ତିଆରି କରି ନେଇଛି । କେହି ମୋତେ ଘୃଣା କଲେ ମୋର କିଛି ଯାଏଆସେ ନାହିଁ । କେହି ଭଲ ପାଇଲେ ବି ମୋ ଭିତରେ ତରଙ୍ଗ ଉଠେ ନାହିଁ । ବର୍ଷା ହେଲେ ଗଛ ତଳେ ଆଶ୍ରୟ ନେବା ଭଳି କ୍ଲାନ୍ତ ହେଲେ ଏଇ ଖଟରେ ଆଶ୍ରୟ ନିଏ । ମୁଁ ଏବେ ବର୍ଷାରେ ଅନେକ ରାସ୍ତା ବୁଲିଲି । ତା'ପରେ ଆସି ତିଥିର ଏଇ ଖଟରେ ଶୋଇପଡ଼ିଛି । ମୋ ଜାମା ଓଦା । ବାହାରେ ଝିପିଝିପି ବର୍ଷା । ବର୍ତ୍ତମାନ ମୋର ସବୁ ଇନ୍ଦ୍ରିୟ କର୍ମବ୍ୟସ୍ତ । ନାକ ଶୁଙ୍ଘୁଛି ତିଥିର ରୋଷେଇ ଘରୁ ଆସୁଥିବା ଶୁଖୁଆର ବାସ୍ନା । କାନ ଶୁଣୁଛି ତରକାରିର ଛୁଁ-ଛାଁ ଶବ୍ଦ ସହ ଚଟୁ କରେଇର ଖଡ଼୍‌ଖାଡ଼୍ ଆବାଜ ଏବଂ ତିଥିର ହାତଭର୍ତ୍ତି କାଚଚୁଡ଼ିର ଝଙ୍କାର । ପାଖ ଘରେ ଗୋଟିଏ ପିଲା କାନ୍ଦି ଚାଲିଛି । ଅମୁଲ ବଜାରରେ ମିଳୁନି । ଆଖି ଦେଖୁଛି ତିଥିର ଥାକରେ ସଜା ହୋଇଥିବା ବହି ଓ ଖଟର ବାଡ଼ରେ ଝୁଲୁଥିବା ତିଥିର ଦୁଇଟା ନୂଆ ଶାଢ଼ି । ସ୍ନାୟୁ ଅନୁଭବ କରୁଛି ତିଥିର ଅଦୃଶ୍ୟ ସ୍ପର୍ଶ ଓ ଆଶ୍ଳେଷ । ତିଥିର ରନ୍ଧା ଶୁଖୁଆର ବାସ୍ନା ମୋର ସମସ୍ତ ଜୀବକୋଷରେ ସଞ୍ଚାରିତ ହୋଇଯାଉଛି । ମୋତେ ଆଗରୁ ଶୁଖୁଆ ଭଲ ଲାଗୁ ନ ଥିଲା, କିନ୍ତୁ ଦିନେ ତିଥି ଓଡ଼ିଆ ଆଉ ଓଡ଼ିଆର ଖାଦ୍ୟ ଉପରେ ନାତିଦୀର୍ଘ ଭାଷଣ ଦେଇ ବୁଝାଇ ଦେଇଥିଲା ଯେ ମାଛ ନ ମିଳିଲେ ବଞ୍ଚିବା ପାଇଁ; କେବଳ ବଞ୍ଚିବା ପାଇଁ ଶୁଖୁଆ ଖାଇବାକୁ ପଡ଼ିବ । ସେଦିନରୁ ମୁଁ ଚଳେଇ ନେଇଛି । କାହିଁକି କେଜାଣି ଶୁଖୁଆ ଆଉ ଖରାପ ଲାଗେ ନାହିଁ । ଏବେ ବଜାରରେ ମାଛ ମିଳୁନି । ତିଥିର ବା ଦୋଷ କ'ଣ ? ଆଜି ରବିବାର, ତେଣୁ ସେ ନିଜେ ରାନ୍ଧୁଛି । ଅନେକ ଦିନରୁ ମୁଁ ଘର-ରନ୍ଧା ଭାତ ଖାଇନି । ମୋର ଘର ନଈ

ଆରପାରି ଗାଁରେ । ସେଇଠି ମୋ ରକ୍ତର ସମ୍ପର୍କ ଥିବା କେତେଜଣ ମଣିଷ ଅଛନ୍ତି–ମା' ଭାଇ ଭଉଣୀ । ଏ ସହରରେ ମୋର ନିଜର କେହି ନାହିଁ। ମୁଁ କ୍ୱଚିତ୍ ତରକାରି ରନ୍ଧାର ବାସ୍ନା ଶୁଙ୍ଘେ । କାରଣ ମୁଁ ସବୁଦିନେ ହୋଟେଲରେ ଖାଏ । ମୋ ଭଳି ଲୋକଙ୍କ ପାଇଁ ବୋଧହୁଏ ଏତେ ବଡ଼ ବଡ଼ ହୋଟେଲ, ଏତେ ହୋଟେଲର ବିଜ୍ଞାପନ, ମାସର ଆରମ୍ଭରେ ଦରମା ଟଙ୍କାର ଅର୍ଦ୍ଧାଧିକ ଟଙ୍କା ଗାଁ ଠିକଣା ଲେଖି ମନିଅର୍ଡ଼ର ଫର୍ମ ପୂରଣ କରେ । ବାକି ଟଙ୍କାର ପ୍ରାୟ ସବୁ ଅଂଶ ହୋଟେଲ-ମାଲିକ ହାତରେ ଧରାଇଦିଏ । ତା'ପରେ ଏକ ତାରିଖରୁ ତିରିଶ ତାରିଖ ପର୍ଯ୍ୟନ୍ତ ହୋଟେଲରେ ଏକ ଲମ୍ବା ବନ୍ଧେଇ ଖାତାରେ ତାରିଖ ଦେଇ ପ୍ରତିଦିନ ମିଲ୍‌ର ଦାମ୍ ଲେଖିଦିଏ । ହୋଟେଲର ଦାଢ଼ି ରଖିଥିବା ନନା ମା' ଭଳି ଖାଇବାକୁ ଦିଏ । ଯେପରି ମା' ଯାହା ରାନ୍ଧେ ଯାହା ଖାଇବାକୁ ଦିଏ ସେଥିରେ କିଛି ପ୍ରତିବାଦ ନାହିଁ, କେବଳ ଅସମ୍ଭବ ପରିତୃପ୍ତି ନେଇ ଖାଏ, ସେହିପରି ପ୍ରଥମେ ପ୍ରଥମେ ହୋଟେଲ ନନାକୁ  କିଛି କହୁ ନଥିଲି । ସେ ତା' ମନଇଚ୍ଛା ଦେଇଯାଏ, ମୁଁ ଖାଇସାରି ଦାମ୍‌ଟା ଖାତାରେ ଲେଖିଲା ବେଳେ ସଚେତନ ହୁଏ ଯେ ସେଇ ହାରରେ ଖାଇଲେ ହୋଟେଲ ପାଇଁ ଉଦ୍ଦିଷ୍ଟ ଟଙ୍କା ଦୁଇ ସପ୍ତାହରେ ଶେଷ ହୋଇଯିବ । ତଥାପି ନନାକୁ କାହିଁକି କେଜାଣି ଆତ୍ମୀୟ ବୋଲି ମନେହୁଏ । କିନ୍ତୁ ଦିନେ ହଠାତ୍ ସବୁ ଆତ୍ମୀୟତା ଭୁଲି ନନା ଉଦ୍ଦେଶ୍ୟରେ ପାଟି ଖୋଲିଲି–ବୁଝିଲ ନନା, ଏଥର ହାଫ୍ ପ୍ଲେଟ ମାଂସ ଦେବ, ଫୁଲ୍ ଦେବ ନାହିଁ । ଦେଶର ଅବସ୍ଥା ଖରାପ; ଆଉ ତା' ଛଡ଼ା ଫୁଲ୍‌ପ୍ଲେଟ ମାଂସରୁ ଅଧେ ତ ଦାନ୍ତ ଭିତରେ ରହିଯାଉଛି, ଆଉ ଅଧେ ପାକସ୍ଥଳୀକୁ ଗଲେ ବି ହଜମ ହେଉନି । ଦାଢ଼ି ଭିତରୁ ନନାର ଧଳାଦାନ୍ତ ଦେଖାଯାଏ– କର୍ମ ଅନୁସାରେ ଜନ୍ମ । ଆପଣଙ୍କ ଭଳି ବଡ଼ ଚାକିରିଆ ଯଦି ଫୁଲପ୍ଲେଟ୍ ମାଂସ ନ ଖାଇବେ ତା' ହେଲେ ଖାଇବ ଆଉ କିଏ ? ତା'ପରେ ସେ ମୋର ପୋଷାକ-ପରିଚ୍ଛଦ ଉପରେ ଆଖି ପହଁରେଇ ନିଏ । ମୁଁ ବୁଝିପାରେ, ମୋ ଦେହରେ ଟେରେଲିନ୍ ଟେରିକଟ୍‌ର ରଙ୍ଗିନ ପ୍ରସେସନ ଦେଖି ମୋର ଦରମାର ଆକାରଟା ଅନୁମାନ କରିନେଇଛି । ନନା ପ୍ରତି ଥିବା କେମିତି କେଜାଣି ସବୁ ଆତ୍ମୀୟତା ଉଭେଇଯାଏ । ହୋଟେଲରେ ଶୁଖୁଆ ମିଳେ ନାହିଁ, କିନ୍ତୁ ଶୁଖିଲା ମାଂସ ମିଳେ । ଓଡ଼ିଶାରେ ଗହମ ହୁଏ ନାହିଁ, ତଥାପି ଲୋକେ ରୁଟି ଖାଆନ୍ତି । ଓଡ଼ିଶାରେ ପ୍ରଚୁର ଧାନଚାଷ ହୁଏ, ତଥାପି ଚାଉଳ ମିଳେନି । ଓଡ଼ିଶାର ସମୁଦ୍ର ନଦୀରେ ପ୍ରଚୁର ଜୀଅନ୍ତା ମାଛ ଧରାଯାଏ, ତଥାପି ଲୋକେ ଶୁଖୁଆ ଖାଆନ୍ତି । ପାଖ ଘରେ ପିଲାଟା ସେମିତି କାନ୍ଦି ଚାଲିଛି । ତା' ମା'ର କ୍ଷୀର ଶୁଖିଯାଇଛି ବୋଧହୁଏ । ବନ୍ୟା ହେଲା; ପାଣିର ପ୍ରାଚୁର୍ଯ୍ୟରେ ପୃଥିବୀ ଭାସିଗଲା; କିନ୍ତୁ ମଣିଷର ହୃଦୟ ରସଶୂନ୍ୟ ହୋଇଗଲା । ତିଥି ଶୁଖୁଆ ରାନ୍ଧୁଛି, ସେଥିରେ ଖାଦ୍ୟପ୍ରାଣ ନାହିଁ । ମଣିଷ ଦେହରେ ପ୍ରାଣ ଆସିବ କୁଆଡୁ ? ଏଇ କେତେଦିନ ତଳେ ତିଥି କେତେ ପ୍ରାଣବନ୍ତ ନ ଥିଲା ।

ତା'ର କଥାରେ ପ୍ରାଣ, ତା'ର ଲୁହରେ ପ୍ରାଣ, ତା'ର ଚିଠିରେ ପ୍ରାଣ; ସବୁଠାରେ ବେଶ୍ ପ୍ରାଣପ୍ରାଚୁର୍ଯ୍ୟ ଅନୁଭବ କରୁଥିଲି । ଅବଶ୍ୟ ସେତେବେଳେ ବସନ୍ତଋତୁ ଥିଲା । ବଜାରରେ ଚାଉଳ ମିଳୁଥିଲା, ପ୍ରଚୁର ମାଛ ବି । ମୁଁ ସେତେବେଳେ ତିଥି ଘରେ ସୁନ୍ଦର ଖାଦ୍ୟପ୍ରାଣଯୁକ୍ତ ଖାଦ୍ୟ ଖାଉଥିଲି । ତିଥିର ବାପାବୋଉ ମୋତେ ଭଲ ପାଉଥିଲେ, ବିଶ୍ୱାସ କରୁଥିଲେ । ତିଥି ମୋତେ ସୁନ୍ଦର ସୁନ୍ଦର ଚିଠି ଲେଖୁଥିଲା । ସେ କହୁଥିଲା– ତୁମକୁ ନେଇ ଖୁବ୍ ଶୀଘ୍ର, ଖୁବ୍ ସୁନ୍ଦର ଗୋଟିଏ ଘର ତିଆରି କରି ନିଜ ହାତରେ ରାନ୍ଧି ଖୁଆଇବି । ମୁଁ ଏଇ ବାକ୍ୟର ଦୃଶ୍ୟଚିତ୍ର ଖୁବ୍ ଭିତରେ ଆଙ୍କି ଯେତେବେଳେ ବଜାର ଭିତର ଦେଇ ଚାଲିଯାଉଥିଲି ଦେଖୁଥିଲି ଚାଉଳଭର୍ତ୍ତି ବସ୍ତାର ମୁହଁ ଖୋଲି ଦିଆଯାଇଛି । ଚନ୍ଦନ ଟୋପା ଲଗାଇ ହସହସ ମୁହଁରେ ଦୋକାନୀ ତା'ର ଗରାଖର ଥଳି ଭର୍ତ୍ତି କରି ଦେଉଛି ଚାଉଳରେ । ସୁନ୍ଦର ସବୁଜ ଖାଦ୍ୟପ୍ରାଣଯୁକ୍ତ ପରିବା ବୁହାହୋଇ ଚାଲିଯାଉଛି ଅନେକ ପରିବାର ଭିତରକୁ । ମୁଁ ଦେଖୁଥିଲି ତିଥି ମୁଣ୍ଡରେ ସିନ୍ଦୂର ଟୋପା ଲଗାଇ ହସହସ ମୁହଁରେ ମୋ ହାତରୁ ବଜାରଥଳି ଧରିନେଇ ଦ୍ରୁତ ରୋଷେଇ ଘର ଭିତରକୁ ପଶିଯାଉଛି । କିନ୍ତୁ ଏବେ ବର୍ଷାଋତୁ । ବଜାରରେ ଚାଉଳ ମିଳୁନି, ସୋରିଷତେଲ, କିରାସିନି ସବୁ ବନ୍ଦ । ମୋ ଭିତରେ ରୋଗଟା କେମିତି ମରଣମୁଖା ହୋଇ ବଢ଼ିଉଠୁଛି । ତିଥିବୋଉ ତିଥିର ମୋ ସହ କଥା କହିବାର କଟକଣା ଜାରୀ କରି ଦେଇଛନ୍ତି । ମୁଁ ଦେଖୁଛି ତିଥିର ନୂଆ ଶାଢ଼ି ପବନରେ ହଲୁଛି । ଝର୍କା ପାଖରେ ପଡ଼ିଥିବା ଖବରକାଗଜ ପୃଷ୍ଠା ଫଡ଼ଫଡ଼ ହୋଇ ଉଡୁଛି । ବନ୍ୟା, ଓଡ଼ିଶାର ନଦୀମାନଙ୍କରେ ପ୍ରବଳ ବନ୍ୟା । ପ୍ରତିବର୍ଷ ଅବଶ୍ୟ ବନ୍ୟା ଆସେ । ଅତିଥି ଭଳି କେତେଦିନ ରହେ, ପୁଣି ବିନମ୍ର ହୋଇ ଫେରିଯାଏ । କିନ୍ତୁ ଏଥର ଥରେ ନୁହେଁ, ତିନି ତିନି ଥର ଆସିଲା । ଆକ୍ରମଣକାରୀ ଭଳି ଅଚାନକ ଆସି ବହୁତ ଅତ୍ୟାଚାର କରିଗଲା । ମୁଁ କେବଳ ସହରରେ ରହି ଖବରକାଗଜ ଉପରେ ବନ୍ୟାର ଟ୍ୟାଙ୍କଯୁଦ୍ଧ ଦେଖିଲି । ସହରତଳିର ଯେଉଁ ଅଂଶ ପାଣିରେ ବୁଡ଼ିଯାଏ, ସେଇ ଅଂଶକୁ ଯାଇ ନଈବଢ଼ିର ଦୃଶ୍ୟ ଦେଖିବା ଆଗରୁ ଦେଖିଲି ସେ ଦୃଶ୍ୟ ଉପଭୋଗ କରିବା ପାଇଁ ଅନେକ ଲୋକର ଭିଡ଼ । ଅନେକ ଚେନାଚୁର, ବାରମଜା ଦୋକାନ । ସମସ୍ତଙ୍କ ମୁହଁରେ କେମିତି ଏକପ୍ରକାର ଉଲ୍ଲାସ । ଲୁଙ୍ଗିପିନ୍ଧା ଝିଅ, ବେଲବଟମ୍ ପିନ୍ଧା କଲେଜ ପିଲାରେ ସ୍ଥାନଟା ମେଳା ଭଳି ମନେହେଲା । ମୁଁ କେମିତି ବୁଝିପାରିଲି ବଢ଼ି ଦେଖିବା ଅପେକ୍ଷା ଲୋମାନେ ଆଉ କିଛି ଦେଖିବାକୁ ଓ ଦେଖାଇବାକୁ ଆସିଛନ୍ତି । ଗାଁର ଦୃଶ୍ୟ ମନେ କରି ମୋ ଭିତରେ ଆତଙ୍କ, ତା' ଭିତରେ ବି ମୋ ଆଖି ପହଁରି ଆସୁଥିଲା ରଙ୍ଗିନ ଶାଢ଼ି, ଜିନ୍, ଲୁଙ୍ଗିପିନ୍ଧା ଝିଅଙ୍କ ଉପରେ । ହଠାତ୍ ଗୋଟିଏ ରଙ୍ଗିନ ଶାଢ଼ି ଉପରେ ମୋର ଦୃଷ୍ଟି ସ୍ଥିର ହୋଇଗଲା । ତିଥି– ତା ବୋଉ ସହ । ବଢ଼ି ଦେଖିବା ପାଇଁ । ମୁଁ ଅନେକ ଝିଅକୁ ପାରି ହୋଇ ତା' ପାଖକୁ ଆଗେଇ ଗଲି । ସେମାନଙ୍କ ପାଖେ ପାଖେ

ଚାଲିଲି । ସ୍ରୋତର ଗତିବେଗ କେତେ, କେତେ ଘର ଭାସିଯାଉଛି, ସବୁ କଥା କହିଗଲି । ତିଥି ପାଖରେ ଅନେକ କଥାର ସୁଅ ବହିଗଲା । ତିଥି ପଦେ ବି ମୋ ସହ କଥା ହେଲା ନାହିଁ । ତିଥି ମୋତେ ସୁନ୍ଦର ଭାବେ ଉପେକ୍ଷା କରିଗଲା । ଚମତ୍କାର ଭାବେ ତାର ସୁନ୍ଦର ଗୋଇଠି ଉପରୁ ରଙ୍ଗିନ ଶାଢ଼ି ଟେକି ପାଣିରେ ପାଦ ଦେଲା । ମୁଁ ଉପେକ୍ଷିତ, କାରଣ ଓଡ଼ିଶାର ନଦୀରେ ବନ୍ୟା । ବଜାରରେ ମାଛ, ଚାଉଳ, ସୋରିଷତେଲ, ଅମୁଲ କିଛି ମିଳୁନି । ପାଖଘରୁ ପିଲାଟି କାନ୍ଦିଚାଲିଛି । ରୋଷେଇଘରୁ କେବଳ ତିଥିର କାଚଚୁଡ଼ିର ଶବ୍ଦ ଆସୁଛି । ତିଥିର ରାନ୍ଧିବା କଥା ଶୁଣିଲେ ମୁଁ ଖୁସି ହୋଇଯାଏ; କାରଣ ମୋର ସ୍ୱପ୍ନ, ତିଥି କିଛିଦିନ ପରେ ମୋ ପାଇଁ ରାନ୍ଧିବ । ମୁହଁର ଝାଳ ପୋଛି ଭାତହାଣ୍ଡି ଚୁଲିରୁ ଓହ୍ଲାଇ ଆଣିବ । କାର୍ଯ୍ୟବ୍ୟସ୍ତତାରେ ଲୁଗାପଟା ଅସଜଡ଼ା ହୋଇଯିବ । ମୁଁ ଅଲକ୍ଷ୍ୟରେ ଥାଇ ମୁରୁକି ହସିବି; ତା'ର ହାତରନ୍ଧା ଖାଇ ଲମ୍ବା ଲମ୍ବା ହାକୁଟି ମାରି ଅଫିସ ଯିବି । ତିଥି ସଞ୍ଜ ପର୍ଯ୍ୟନ୍ତ ମୋତେ ଅପେକ୍ଷା କରି ସେଇ ନିଃସଙ୍ଗ ଭଡ଼ାଘରେ ବସି ରହିବ । ମୋ ଥାକରେ ଥିବା ସବୁ ପୁରୁଣା ପତ୍ରିକା ଓଲଟାଇବ । ବାକ୍ସ ଖୋଲି ମୋର ପୁରୁଣା ଡାଇରି ପଢ଼ିବ । କଲେଜରେ ପଢୁଥିଲାବେଳେ ଗୋଟିଏ ଝିଅ ମୋତେ ଯେ ପ୍ରେମ କରୁଥିଲା ଏବଂ ନିୟମିତ ପ୍ରେମପତ୍ର ଲେଖୁଥିଲା, ଦ୍ୱିପ୍ରହରବେଳେ ନିଦୁଆ ଆଖିରେ ସେଇ ପ୍ରେମପତ୍ର ଖୋଲି ପଢ଼ିବ । କିଛି ନ ହେଲେ ଘର ସଜାଡ଼ିବ । କିନ୍ତୁ ମୋର ଏସବୁ ସ୍ୱପ୍ନ କେବଳ ସ୍ୱପ୍ନ । ମୁଁ ଜାଣେ, କାରଣ ବଜାରରେ ଚାଉଳ ନାହିଁ, ମାଛ ନାହିଁ, ସୋରିଷତେଲ ନାହିଁ । ତିଥିବୋଉ ତିଥିକୁ ବୁଝାଇ ଦେଇଛନ୍ତି ଯେ ସେ ଘରର ବଡ଼ଝିଅ । ତା' ଉପରେ ଅନେକ ଲୋକଙ୍କର ଭରସା ଅଛି । ତାକୁ ତା'ର ବନ୍ଧୁବାନ୍ଧବଙ୍କ ମର୍ଜି ଉପରେ ବାହା ଦିଆଯିବ । ତେଣୁ ମୋ ଭଳି ଲୋକ ସହ ବିବାହ ତ ଅସମ୍ଭବ, କଥା କହିବା ବି ପାପ । ପାଖ ଘରେ ପିଲାଟା କାନ୍ଦିଚାଲିଛି । ଖାଦ୍ୟପ୍ରାଣହୀନ ଖାଦ୍ୟ ଖାଇ ତା' ବୋଉର ଛାତିରୁ କ୍ଷୀର ଶୁଖିଗଲାଣି । ତିଥିବୋଉର ଛାତିରେ ସ୍ନେହର କ୍ଷୀର ବା ଝରିବ କେମିତି ? କାରଣ ବନ୍ୟା ଚାଲିଯାଇଛି, ମଣିଷକୁ ରସଶୂନ୍ୟ କରିଦେଇ ଯାଇଛି । ବଢ଼ି ଛାଡ଼ିବା ପରେ ଗାଁକୁ ଯାଇଥିଲି । ଆଣ୍ଠୁଯାଏ ପଟୁ ଜମିଯାଇଥିବା ଧାନ ବିଲ ଭିତରେ ପଶି, ନଳିତା ବଣ ଭିତର ଦେଇ ନଈ ସୁଅକୁ ଛୋଟ ଏକ ଡଙ୍ଗାରେ ପାରି ହୋଇ ଗାଁରେ ଯାଇ ଦେଖିଲି ପଛପଟ କାନ୍ଥ ପଡ଼ିଯାଇଛି; ପୋଷା ହାତୀ ପିଠିରେ ମାହୁନ୍ତ ଚଢ଼ିଲାବେଳେ ହାତୀ ପଛ ଗୋଡ଼ ଭାଙ୍ଗି ଠିଆହେଲେ ଯେମିତି ଦେଖାଯିବ ଦୂରରୁ ଚାଳିଟା ସେମିତି ଦେଖାଯାଉଛି । କାନ୍ଥ ପଡ଼ିଯିବା ଭୟରେ ମା' ଭାଇ ଭଉଣୀ ପାଖ ପକ୍କା ଘରେ ଆଶ୍ରୟ ନେଇଛନ୍ତି । ଅବସ୍ଥା ଏତେ ଖରାପ ହେବ ବୋଲି ଭାବିନଥିଲି । ବନ୍ୟା ଆସିବା ପୂର୍ବରୁ ଭାଇ ଭଉଣୀଙ୍କ ଚିଠି ପାଇଥିଲି ନୂଆ ଲୁଗା ନେଇଯିବା ପାଇଁ । ମୋ ହାତରେ ବ୍ୟାଗ୍ । ବ୍ୟାଗ୍‌ରେ ରଙ୍ଗିନ ଶାଢ଼ି, ବ୍ଲାଉଜ, ପେଣ୍ଟ ସାର୍ଟ, ମା'ଙ୍କ ପାଇଁ ଧୋତି ଆଉ ଚଦର ।

ମୁଁ ଦେଖିଲି, କେହି ହତାଶ ହେଲେ ନାହିଁ । ବରଂ ବେଶି ଖୁସି ହେଲେ । ଭାଇ ଭଉଣୀ ନୂଆ ଲୁଗା ପିନ୍ଧିଲେ । କାଦୁଅ ଚକଟି ଚକଟି ଆସି ଗାଁର ମାଇପିମାନେ ପସନ୍ଦର ଲୀଳା ବସାଇ ଦେଲେ । ମୁଁ ପରିଷ୍କାର ବୁଝିପାରିଲି ଜଳଖିଆ ଦୋକାନ, ଚାଉଳଡାଲି ଦୋକାନ ଉଠିଯାଇ କାହିଁକି ସେଇ ସବୁ ଜାଗାରେ ଲୁଗା ଦୋକାନ ଓ କସମେଟିକ୍‌ସ ଦୋକାନ ଗଢ଼ି ଉଠୁଛି । ତିଥିର ରୋଷେଇ ଘରୁ ଶୁଖୁଆର ବାସ୍ନା ଆସୁଛି । ତିଥିର ନୂଆ ଶାଢ଼ି ଝୁଲୁଛି । ପିଲାଟା ପାଖ ଘରୁ ସେମିତି କାନ୍ଦି ଚାଲିଛି । ମୁଁ ବି ତିଥି ପାଇଁ ଅନେକ ନୀରବରେ କାନ୍ଦିଛି । ତା' ପାଇଁ ସ୍ୱପ୍ନ ଥିଲା ଗୋଟିଏ ସୁନ୍ଦର ଘର ତିଆରି କରିବି । ସହରତଳିର ଯେଉଁ ଅଂଶରୁ ସହରର ନିଅନ୍ ଆଲୁଅ ଦେଖାଯାଏ, ପୁଣି ଛ'ଘଡ଼ି ରାତିରେ ବିଲୁଆ ହୁକେ-ହୋ କରେ ଏବଂ ଯେଉଁ ଜାଗାକୁ କେବେ ବଢ଼ିପାଣି ନ ଆସେ, ସେମିତି ଏକ ଜାଗାରେ ଛୋଟ ଗୋଟିଏ ଘର ତିଆରି କରିବି । ସାମନା ବଗିଚାରେ ସୁନ୍ଦର ସୁନ୍ଦର ଫୁଲଚାରା ଲଗାଇଦେବି । ଘର ପଛପଟରେ ଲଗାଇ ଦେବି ବାଇଗଣ, ଜହ୍ନି, ଭେଣ୍ଡି । ବାରିପଟେ ପୋଖରୀ ଖୋଳିଦେବି । ପୋଖରୀରେ ଛାଡ଼ିଦେବି ମାଛ ଯାଆଁଳ । ପୋଖରୀ ହୁଡ଼ାରେ ନଡ଼ିଆ-ଗୁଆ-କଦଳୀ । ତିଥି ସଞ୍ଜରେ ଫୁଲ ବଗିଚାରେ ବୁଲିବ, ରୋଷେଇ ଘରୁ ବାହାରି ତୋଳି ଆଣିବ ବାଇଗଣ-ଭେଣ୍ଡି ଜହ୍ନି । କିନ୍ତୁ ଓଡ଼ିଶାର ନଦୀରେ ପ୍ରବଳ ବନ୍ୟା ଆସିଲା । ମୋର ସ୍ୱପ୍ନ ସବୁ ହାତଗୋଡ଼ ଛାଟିପିଟି ହୋଇ ଭାସିଗଲେ । ତିଥି ତା' ବୋଉର ଗେହ୍ଲା ଝିଅ ବନିଗଲା । ତା'ର ନୂଆ ଶାଢ଼ିକୁ ସମ୍ଭାଳି ବଢ଼ିପାଣିରେ ଖେଳିଲା । ସେ ବୁଝିଗଲା ଯେ ସେ ତା' ବାପାବୋଉଙ୍କ ବଡ଼ ଝିଅ । ତା' ଉପରେ ଅନେକଙ୍କ ଆଶା ଭରସା । ମୋର ଚିତ୍‌କାର ଶବ୍ଦ ତେଣୁ ତା' କାନରେ ପଡ଼ିପାରୁନାହିଁ । ମୁଁ ଶୁଣୁଛି ପାଖ ଘରେ ପିଲାଟା ଚିତ୍କାର କରି ଚାଲିଛି । ବଜାରକୁ ଅମୂଲ ଆସିଲା ପର୍ଯ୍ୟନ୍ତ, ଖାଦ୍ୟପ୍ରାଣଯୁକ୍ତ ଖାଦ୍ୟ ଖାଇ ତା' ବୋଉର ଛାତିରେ କ୍ଷୀରର ବନ୍ୟା ଆସିଲା ପର୍ଯ୍ୟନ୍ତ ତାକୁ ଚିତ୍‌କାର କରିଯିବାକୁ ପଡ଼ିବ । ପ୍ରତିବର୍ଷର ବଢ଼ି ପାଇଁ ମୋତେ ବି ପ୍ରସ୍ତୁତ ହେବାକୁ ପଡ଼ିବ । ଗାଁରେ ଭାଇଭଉଣୀଙ୍କୁ ଖାଦ୍ୟ ଦେଇ ନପାରି ନୂଆ ଲୁଗା ଦେଇ ଭୁଲାଇ ଦେବାକୁ ପଡ଼ିବ । ବଜାରରେ ମାଛ ନ ମିଳିଲେ ଶୁଖୁଆରେ ଚଳାଇ ନେବାକୁ ହେବ । ହୋଟେଲରେ ଡାଲି ଆଉ ବୋଇତାଳୁ ତରକାରି ଖାଇ ଲମ୍ବା ବନ୍ଧେଇ ଖାତାରେ ମୂଲ୍ୟ ଲେଖିବାକୁ ପଡ଼ିବ । ଗୋଟିଏ ଚକ୍ ଚକ୍ ଟେରେଲିନ ସାର୍ଟରେ ଅନେକ ଦିନ ଚଳେଇ ନେବାକୁ ପଡ଼ିବ ଏବଂ ଲୋକଙ୍କ ମନରେ ବଡ଼ ଚାକିରିର ଭ୍ରମ ସୃଷ୍ଟି କରିବାକୁ ପଡ଼ିବ । ଭିତରର ରୋଗଟାକୁ ଟିକିଏ ଶସ୍ତା ଔଷଧ ଉଦ୍ଭାବନ ହେଲା ପର୍ଯ୍ୟନ୍ତ ଚପେଇ ଦେବାକୁ ହେବ । ତିଥିର ଭଲପାଇବାକୁ ସମ୍ବଳ କରି ସାରା ଜୀବନ ନିଃସଙ୍ଗ ରହି ବଜାର ଦର ସହ ଲଢ଼ିଯିବାକୁ ପଡ଼ିବ । ମୁଁ ଜାଣେ ତିଥି ଭିତରେ ମୋ ପାଇଁ ଅନେକ ଈପ୍‌ସିତ ଗୋପନ କଥା ଭର୍ତ୍ତି ହୋଇ ରହିଛି । ଦିନେ ମୁଁ ସେଇ ଗୋପନ କଥା ତା'ର ଗନ୍ତାଘରୁ ଜବତ୍

କରିବି । ଯେଉଁଦିନ ଅନ୍ୟ ପ୍ରଦେଶକୁ ଚୋରା ଚାଲାଣ ହେଉଥିବା ଚାଉଳ ଓ ମାଛ ଜବତ ହୋଇପାରିବ ଏବଂ ମାଲଗୋଦାମର ଅନ୍ଧକାର କୋଠରିରୁ ଅନେକ ସୋରିଷତେଲ ଟିଣ ଓ ଅମୁଲ ଡବା ଉଦ୍ଧାର କରାଯାଇପାରିବ । କିନ୍ତୁ ପିଲାଟା ସେମିତି କାନ୍ଦି ଚାଲିଛି । ମୋର ବି ଭୀଷଣ କାନ୍ଦିବାକୁ ଇଚ୍ଛା ହେଉଛି । ମୁଁ ଅନୁଭବ କରୁଛି ଲୁହାଗୁଡ଼ା ଆଖି ବାଟେ ନ ବାହାରି ମୋର ପ୍ରତି ଲୋମକୂପ ପାଖକୁ ମାଡ଼ିଯାଇଛନ୍ତି । ମୋ ଦେହ ଅବଶ ହୋଇ ଆସୁଛି । ମୋ ଦେହଟା କେମିତି ପଶିଆସୁଛି। ମୋର ଶବ କେଉଁ ଏକ ଶ୍ମଶାନରେ ଯେପରି ଜଳି ଯାଉଛି। ମୋ ଭିତରୁ ଏକ ଛୋଟ ସୁନ୍ଦର ମୂର୍ତ୍ତି ବାହାରି ଆକାଶରେ ଉଡ଼ି ବୁଲୁଛି । କ୍ରମେ ସେ ମୂର୍ତ୍ତି ଓହ୍ଲାଇ ଆସୁଛି ଭୂଇଁ ଉପରକୁ । ଖଟଟା ଦୋଳିରେ ପରିଣତ ହୋଇଯାଉଛି । ମୁଁ ଏକ ସାନଛୁଆ ଭଳି ଦେଇ ଦୋଳିରେ ହାତଗୋଡ଼ ଛାଟି କାନ୍ଦିବା ଆରମ୍ଭ କରି ଦେଇଛି । ତିଥି ରୋଷେଇଘରୁ ତରକାରି ରନ୍ଧା ଛାଡ଼ି ମୋ ପାଖକୁ ଧାଇଁ ଆସୁଚି । ମୋତେ ତା' ଛାତିକୁ ଉଠାଇ ନେଇ ଲୁଗା ସଜାଡ଼ି ଚମତ୍‌କାର ଭାବେ ବସି ପଡୁଛି ଏବଂ ତା କୋଳରେ ମୋତେ ଶୁଆଇ ଦେଇ ବ୍ଲାଉଜର ତଳ ବୋତାମ ଖସାଇ ଦେଉଛି । ସେ ମୋ ମୁହଁରେ ତା'ର ସ୍ତନାଗ୍ର ଭର୍ତ୍ତି କରି ପରମ ତୃପ୍ତିରେ ମୋତେ ତା' ଛାତିରେ ଜାକି ଧରୁଛି । ମୁଁ ସେତେବେଳେ ତିଥିର ଛାତିରେ କ୍ଷୀରର ବନ୍ୟାରେ ଅଣନିଃଶ୍ୱାସୀ ହୋଇ ଉଠି ମନେ କରୁଛି– ଓଡ଼ିଶାର ସବୁ ନଦୀର ଉପର ମୁଣ୍ଡରେ ବନ୍ଧ ହୋଇଯାଇଛି । ଧଳା ଚନ୍ଦନ ଟୋପା ପିନ୍ଧି ଚାଉଳ ଦୋକାନୀ ଗରାଖର ଥଳି ଚାଉଳରେ ଭର୍ତ୍ତି କରି ଦେଖୁଛି । ଖାଦ୍ୟପ୍ରାଣଯୁକ୍ତ ପରିବା ବୁହାହୋଇ ଯାଉଛି ସବୁ ପରିବାର ଭିତରକୁ । ସୋରିଷ ତେଲ ଓ ଅମୁଲ ଡବାରେ ଭର୍ତ୍ତି ହେଇଯାଉଛି ଘରର ଥାକ ସବୁ ଏବଂ ଅନେକ କୁମାରୀ ତିଥି ସେମାନଙ୍କ ପ୍ରାର୍ଥିତ ପୁରୁଷକୁ ବାହାହେବେ ବୋଲି ରଙ୍ଗିନ ପର୍ଦ୍ଦା ପାଖରେ ବସି ପ୍ରତିଶ୍ରୁତି ଦେଉଛନ୍ତି ଏବଂ ସୁନ୍ଦର ସୁନ୍ଦର ଚିଠି ଲେଖୁଛନ୍ତି । କେମିତି ଏକପ୍ରକାର ସ୍ୱରର ଝଙ୍କାରରେ ମୋର ଆଖିପତା ନଇଁ ଆସୁଛି ।

(ଗଳ୍ପ–ତ୍ରୟୋଦଶ ସଂକଳନ, ମାର୍ଚ୍ଚ, ୧୯୭୪ରେ ପ୍ରକାଶିତ । ପରେ 'ଗୋଧୂଳି' ମେ-ଜୁନ-ଜୁଲାଇ, ୧୯୮୦ରେ ପୁନଃମୁଦ୍ରିତ ।)



# ବଳଙ୍ଗ ଦାମୋଦର ନଦୀର କେତୋଟି ମୁହୂର୍ତ୍ତ

ଅନୁ, ତୁମକୁ ଯା' ଭିତରେ ଅନେକ ଗଳ୍ପ କହିଛି, ଅନେକ ଗଳ୍ପ ପଢ଼ି ଶୁଣାଇଛି । ସେସବୁ ଗଳ୍ପ ମଧ୍ୟରେ ମୋ ଲେଖା ଗଳ୍ପ ବେଶୀ । ତୁମେ କେତେବେଳେ ଖୁସିହୋଇଛ, କେତେବେଳେ ବିରକ୍ତ ହୋଇ କହିଛ–ହେତ୍, ଏଇଟା ଗୋଟାଏ କି ଗପ ! ଅନେକଥର ସମାଲୋଚନା କରିଛ–ଆପଣଙ୍କୁ ପ୍ରେମଗଳ୍ପ ଛଡ଼ା ଆଉ କିଛି ଗଳ୍ପ ଲେଖି ଆସେ ନାହିଁ । ମୁଁ ହସିଛି, କହିଛି–ଯେତେ ପୁରୁଣା ହେଲେ ବି ପ୍ରେମଗଳ୍ପ ସମସ୍ତେ ପଢ଼ିବାକୁ ଭଲପାଆନ୍ତି । ତେଣୁ ମୁଁ ଲେଖେ । ଆଉ ମୋ ଜୀବନରେ ପ୍ରେମର ଅନୁଭୂତି ତ ବଡ଼ ବିଚିତ୍ର । ତେଣୁ ପ୍ରେମଗଳ୍ପ ନ ଲେଖିବି କାହିଁକି ? ତୁମ ମୁହଁଟା କେମିତି ବିକୃତ ହୋଇଯାଏ । ମୁଁ କିନ୍ତୁ ପ୍ରେମଗଳ୍ପ ଉପରେ ଦୀର୍ଘ ବକ୍ତୃତା ଦେବାକୁ ଆରମ୍ଭ କରେ ।

ଆଜି ତୁମଠାରୁ ଅନେକ ଦୂରରେ ରହି ଯେଉଁ ଗଳ୍ପ କଥା ଲେଖୁଛି ଏଟା ବି ଗୋଟିଏ ପ୍ରେମଗଳ୍ପ । ଏଟାକୁ ତୁମେ ଗଳ୍ପ କହିପାର ନ କହିପାର, କାରଣ ଏ ଗଳ୍ପର ସବୁଗୁଡ଼ା ଘଟଣା ସତ୍ୟ । ମୁଁ ଜାଣେ ତୁମେ ପୂରା ଗଳ୍ପଟା ପଢ଼ିସାରିଲା ପରେ କହିବ ଏଇଟା କେବଳ ଗଳ୍ପ, ଚମକେଇଦେବା ପାଇଁ ସତ ଘଟଣା ବୋଲି କହିଛ । ସବୁଗୁଡ଼ାକୁ ତୁମେ ଗଳ୍ପ ବୋଲି ବିଶ୍ୱାସ କରିଛ । ଆଜି କିନ୍ତୁ ସତ ଘଟଣା ଲେଖୁଛି । ଏ ଗଳ୍ପର ନାୟକ ମୁଁ, ମୋର ଅନ୍ୟାନ୍ୟ ଗଳ୍ପମାନଙ୍କ ପରି । ତୁମେ ଅନେକଥର ଅବଶ୍ୟ ଅଭିଯୋଗ କରିଛ 'ମୁଁ' ବିନା କଣ ଆଉ କେହି ଗଳ୍ପର ନାୟକ ହୋଇପାରିବେ ନାହିଁ । ମୁଁ ଫୁଟାଣି ଦେଖେଇ କହିଛି ମୁଁ ନିଜ ବିନା ମୋ ଗଳ୍ପ ଉପନ୍ୟାସର ହିରୋ କାହାରିକୁ କରିବାକୁ ରାଜି ନୁହେଁ । କାରଣ ମୋ ନିଜ କଥାସବୁ କହିସାରିଲେ ତ ଅନ୍ୟମାନଙ୍କ କଥା ଚିନ୍ତା କରିବି । ତେଣୁ ଏ ଘଟଣାର ନାୟକ, ଘଟଣାସ୍ଥଳ ଦୁର୍ଗାପୁର, ପଶ୍ଚିମବଙ୍ଗର ଏକ ଶିଳ୍ପ ନଗରୀ, ଦାମୋଦର ନଦୀକୂଳ ।

ଅନୁ, ତୁମେ ତ ଅସୀମା କଥାସବୁ ଶୁଣିଛ ମୋଠାରୁ । ତୁମେ ଜାଣ ତା ପାଇଁ ମୁଁ ମୋ ପୃଥିବୀରେ ଆଉ ସମସ୍ତଙ୍କର ପାଦଶବ୍ଦ ବନ୍ଦ କରିଦେଲି । ମୋ ଘଣ୍ଟାର ଡାଏଲରେ କଣ୍ଟାକୁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବନ୍ଦ କରି ରଖିଦେଇଥିଲି । କିନ୍ତୁ ମୋ

ଅଲକ୍ଷ୍ୟରେ ଦାମୋଦର ନଦୀ ଆଉ ମହାନଦୀରେ ଅନେକ ପାଣି ବୋହିଗଲାଣି । ସେଇ ପନ୍ଦର ବର୍ଷ ତଳର କଥା । ତାକୁ ମୁଁ ଶେଷଥର ପାଇଁ କହିଥିଲି, ଅବଶ୍ୟ ସେଇ ପୁରୁଣା କଥା ।

—ମୁଁ ଯଦି ଜାଣିବି ତୁ ସୁଖରେ ଅଛୁ, ତାହେଲେ ମୁଁ ଶାନ୍ତି ପାଇପାରିବି । ସେ କଣ ଉତ୍ତର ଦେଇଥିଲା ଜାଣ ? ସେ ଯଦି ସେଇ ପୁରୁଣା ଉତ୍ତରମାନଙ୍କ ମଧ୍ୟରୁ ଗୋଟିଏ ବାଛି ଦେଇଥାଆନ୍ତା, ତାହେଲେ ଆଉ ଭାବିବାର ନ ଥିଲା । ସେ କହିଥିଲା—ଭଲ ପାଇବା କିଶୋର କିଶୋରୀମାନଙ୍କ ସାମୟିକ ଭାବପ୍ରବଣତାର ଅନ୍ୟ ନାମ । ଭଲପାଇବାଟା ଗୋଟିଏ ପୁରୁଣା ଷ୍ଟାଇଲ, ଏଇ ଷ୍ଟାଇଲ୍ ଦେଖାଇ ତୁମେ ଆଜୀବନ ଜଳିପାର, କିନ୍ତୁ ମୁଁ ନୁହେଁ । ମୁଁ ଯେକୌଣସି ପୁରୁଷକୁ ବାହାହୋଇ ସୁଖ ଏବଂ ଶାନ୍ତିରେ ରହିପାରିବି । ଏକଥା ଶୁଣିଲା ପରେ ମୁଁ ମୋର ଗନ୍ତବ୍ୟ ବଦଳେଇ ନାହିଁ ବରଂ ପରିଷ୍କାର ପିଚୁ ରାସ୍ତା ଛାଡ଼ି ଜଙ୍ଗଲିଆ ରାସ୍ତା ବାଛିନେଇଛି ।

ଅନୁ, ମୁଁ ଯେଉଁ କଥାଟା ଲେଖିବାକୁ ଯାଉଛି ସେଇଟା ଖୁବ୍ ମାମୁଲି । କେବେ ଦିନେ ଯେଉଁ ଝିଅ ପାଇଁ ବଳଙ୍ଗ କୂଳରେ ଭାବପ୍ରବଣତା ଆସିଥିଲା, ସେଇ ଝିଅ ତ ଏବେ ଗଙ୍ଗାନଦୀ କୂଳରେ ଆଉ କାହା ଅଣ୍ଟାରେ ହାତରଖି ଶୋଇଥିବ, କିନ୍ତୁ ତା'ରି ନିକ୍ଷିପ୍ତ କେତୋଟି ଶାଣଦିଆ କଣ୍ଟା ମୋ ହୃତ୍‌ପିଣ୍ଡରେ ଏବେ ଚୁପ୍‌ଚାପ୍ ଶୋଇରହିଛି । ଅବଶ୍ୟ ତୁମେ ସନ୍ଦେହ କରିଛ ଅସୀମା ପାଇଁ ମୁଁ ବୋଧହୁଏ ବାହା ହେଉନାହିଁ । ଯାହା ମୁଁ ତୁମକୁ ବୁଝାଇଦେଇଛି ଠିକ୍ ସେ କଥା । ମୋତେ ଲାଗେ ବିବାହ ଏକ ଅଣନିଃଶ୍ୱାସୀ ବନ୍ଧନ । ମୋର ମୁକ୍ତିକାମୀ ମନ ସେ ବନ୍ଧନକୁ ସ୍ୱେଚ୍ଛାରେ ମାନିନେଇ ପାରୁନି । ବୟସ ତ ନଇଁଗଲା । ଏପର୍ଯ୍ୟନ୍ତ ଆବଶ୍ୟକ ପଡ଼ିନି, ପଡ଼ିଲେ ଦେଖାଯିବ ।

ତୁମେ ହସିଛ, କହିଛ, ଯଦି କେବେ ଅସୀମା ପରି ଝିଅ ଆସି ଆପଣଙ୍କ ମୁଣ୍ଡରେ ହାତରଖି କହେ—ତୁମକୁ ମୋର ମା' ବାପାଠାରୁ ବି ବେଶି ଭଲପାଏଁ, ସେତେବେଳେ ? କିମ୍ବା ଯଦି କେହି କହେ—ହେ, ତଥାପି ତୁମେ ମୋତେ ବୁଝିପାରିଲ ନାହିଁ, ସେତେବେଳେ ? ସେତେବେଳେ କଣ ଆପଣ ଅଣ୍ଟାରେ ଗାମୁଛା ବାନ୍ଧି ତାକୁ ବୁଝିବାପାଇଁ ଲାଗିଯିବେ ନାହିଁ ? ମୁଁ ତୁମକୁ ବୁଝାଇଛି—ଯଦି ସେଭଳି ପରିସ୍ଥିତି କେବେ ଆସେ ତାହେଲେ ଭାବିବି ।

ଅନୁ, ଏବେ ସେମିତି ଏକ ପ୍ରକାର ସମସ୍ୟା ଆସିଯାଇଛି ଏଠାରେ । ମୁଁ ପ୍ରତି ରବିବାର ଫାଇଲଗଦା ଭିତରୁ ଅବସର ନେଇ ପଳାଇଯାଏଁ ନଦୀକୂଳକୁ । ଦୁର୍ଗାପୁରର ଅନେକ କାରଖାନାର ଉଚ୍ଛ୍ୱସିତ ଧୂମକୁଣ୍ଡଳୀକୁ ପଛରେ ରଖି ଦାମୋଦର ନଦୀକୂଳରେ ବସି ଅସ୍ତାୟମାନ ସୂର୍ଯ୍ୟ ଦେଖେଁ । ମୋତେ କାହିଁକି କେଜାଣି ସୂର୍ଯ୍ୟୋଦୟ ଅପେକ୍ଷା

ସୂର୍ଯ୍ୟାସ୍ତ ଦେଖିବାକୁ ବେଶୀ ଭଲଲାଗେ । ମୋର ଧାରଣା ତିରିଶ ବର୍ଷ ପର୍ଯ୍ୟନ୍ତ ସମସ୍ତଙ୍କୁ ସୂର୍ଯ୍ୟୋଦୟ ଦେଖିବାକୁ ଭଲଲାଗେ; ତାପରେ ସୂର୍ଯ୍ୟାସ୍ତ । ତୁମେ କୁହ ଛତିଶ ବର୍ଷରେ ମୁଁ ସୂର୍ଯ୍ୟାସ୍ତ ନ ଦେଖିବି କାହିଁକି ? ମୁଁ ଦାମୋଦର କୂଳରେ କେମିତି ଏକପ୍ରକାର ବିଷଣ୍ଣତା ନେଇ ବସିରହେ । ଦୂରର ଗାଁ ଗଣ୍ଡା, ଚିମନି ସେପଟେ ସୂର୍ଯ୍ୟ ଓହ୍ଲାଇଯାଏ । ନଈପାଣି ରଙ୍ଗିନ ହୋଇଉଠେ । ଅଳ୍ପ ସମୟ ପାଇଁ ଅନେକ ଚଢ଼େଇ ଡାକି ଉଠନ୍ତି । ଅନେକ ପୁରୁଣା ସଞ୍ଜର ସ୍ମୃତି ମୋ ଭିତରେ କଡ଼ ଲେଉଟାଏ । ବଳଙ୍ଗ କୂଳର ବାରବର୍ଷି ତଳର ସଞ୍ଜ ମନେପଡ଼େ । ଅସୀମାର ଚେହେରା ଖୋଜେ ଅନେକ ରଙ୍ଗିନ୍ ପୋଷାକ ପିନ୍ଧା ଚପଳା କିଶୋରୀ ତରୁଣୀମାନଙ୍କ ମଧ୍ୟରେ । ନିରାଶ ହୁଏ । ମୋର ଚାହାଣି ଦେଖି କେହି କେହି ମୋତେ ଅଭଦ୍ର ବୋଲି ଭାବି ମୁଖ ବିକୃତ କରନ୍ତି । ଧାନକିଆରୀରେ ନୂଆ ବାହାରିଥିବା ଧାନଗଛ ପବନରେ ଗୋଟିଏ ଆଉ ଗୋଟିଏ ଉପରକୁ ଢଳିପଡ଼ିଲା ପରି ଜଣେ ଆଉ ଜଣକ ଉପରକୁ ଆଉଜିପଡ଼େ । ମୁଁ ଅନେକ ହସର ପ୍ରଦର୍ଶନୀ ଦେଖେ । ପୁଣି ଆଉ ଏକ ପୁରୁଣା ହସକୁ ମନେ କରେ । ଏପରି ଭାବରେ ରାତି ଗାଢ଼ ହୋଇ ଆସେ । ମୁଁ ମୋର ଦେହଟାକୁ ଘୋଷାରି ନେଇଆସେ । ଅନ୍ତୁ, ଦିନେ ହଠାତ୍ ମୁଁ ଚମକିଗଲି । ଠିକ୍ ଅସୀମା ପରି ଗୋଟିଏ ଝିଅ । ମୁଁ ଥରେ ନୁହେଁ ଅନେକ ଥର ଚାହିଁଲି । ମୋତେ ମନେହେଲା ମୋତେ ଦେଖିବା ପାଇଁ ଅସୀମା ଫ୍ରକ ପିନ୍ଧି ଦାମୋଦର କୂଳକୁ ଚାଲିଆସିଛି । ମୁଁ ଉଠିପଡ଼ିଲି । ସେ ଗୋଟିଏ ଦଳ ସହିତ ଚାଲୁଥିଲା । ମୁଁ ସେ ଦଳଟାକୁ ଅନୁସରଣ କଲି । ସେମାନେ ବଙ୍ଗଳାରେ କଥାବାର୍ତ୍ତା ହେଉଥିଲେ । ଦାମୋଦର ନଦୀରେ କେତେ କୁମ୍ଭୀର, କେତେ ପାଣି, କେତେ ଇଲେକ୍‌ଟ୍ରିକ ଅଛି, ଏଇସବୁ ଗପ କରୁଥିଲେ । ମୁଁ ଧୀରେ ଧୀରେ ସେମାନଙ୍କୁ ଅନୁସରଣ କରୁଥିଲି । ସେମାନେ ସଞ୍ଜ ପରେ ଅନେକ କ୍ୱାଟର୍ସ ଭିତରୁ ଗୋଟିକରେ ହଜିଗଲେ, କିନ୍ତୁ ମୋ ଭିତରେ ସେଲୁଲୋଏଡ଼ରେ ଝିଅଟି ସପ୍ତାହେ ପର୍ଯ୍ୟନ୍ତ ବଞ୍ଚି ରହିଲା । ପୁଣି ସେମାନଙ୍କୁ ଦେଖିଲି ପର ରବିବାର । ଠିକ୍ ସେଇଭଳି । ନାଲି ହାତକଟା ଫ୍ରକ୍ ଗୋଟେ ପିନ୍ଧିଥିଲା । ମୁଁ ଦୋକାନକୁ ଧାଇଁଲି । ଗୋଟିଏ କାଡ଼୍‌ବୁରୀ କିଣିଆସି ଝିଅଟିକୁ ଡାକିଲି । ଅନ୍ତୁ, ତୁମେ ଯା ଭିତରେ ବହୁତ ନାଟକୀୟତା ଅନୁଭବ କରିସାରିବଣି । ଅବଶ୍ୟ ଏଇଟା ସତ ଯେ ମୁଁ କୌଣସି ବମ୍ବେ ସିନେମାର କାହାଣୀ କହୁନାହିଁ । ହୁଏତ ତୁମେ ବୁଝିଯାଇଥିବ ଝିଅଟି ତରୁଣୀ ନୁହେଁ, ବୟସ ତେର ଚୌଦ ହେବ । ତୁମେ ହୁଏତ ଜାଣିନ ଏ ପ୍ରଦେଶରେ ଶାଢ଼ି ନ ପିନ୍ଧିଲେ କେହି ଜଣକୁ ନାରୀ ବୋଲି ଗଣନ୍ତି ନାହିଁ, ବିଶେଷତଃ ସହରରେ । କିନ୍ତୁ ଆମ ଓଡ଼ିଶାରେ ବାର ବର୍ଷରେ ଝିଅକୁ ନାରୀ ବୋଲି ମନେ କରନ୍ତି ଏବଂ ବାରବର୍ଷର ଝିଅ ବି ଯେକୌଣସି ପୁରୁଷ ପାଇଁ ଅସ୍ପୃଶ୍ୟ ହୋଇଯାଏ । ମୁଁ ସେ ଝିଅକୁ

ଡାକିଲି । ଚକୋଲେଟ୍ ଦେଲି । ତା ପରିବାର ସମସ୍ତେ ଆଶ୍ଚର୍ଯ୍ୟ । ସେମାନଙ୍କୁ ମୁଁ ବଙ୍ଗଳାରେ ବୁଝାଇଦେଲି ଠିକ୍ ଯାରି ଭଳି ଖୁବ୍ ଦୂରରେ ମୋର ଗୋଟିଏ ଭଉଣୀ ଅଛି। ମୁଁ କିନ୍ତୁ ଭାବୁଥିଲି ଠିକ୍ ଯାରିଭଳି ମୋର ଗୋଟିଏ ଝିଅ ଅଛି ବୋଲି କହିଥିଲେ ବେଶୀ ଭଲ ହୋଇଥାନ୍ତା । ତଥାପି ମିଶିଯିବାରେ ବେଶୀ ଅସୁବିଧା ହେଲାନି । ଝିଅଟିର ନାମ ତିଲା । ସେ ତାର ମାମୁ ମାଇଁ ପାଖରେ ରହେ । ମାମୁ ଦୁର୍ଗାପୁରରେ ଚାକିରି କରନ୍ତି । ମାଇଁ ମୋତେ ତାଙ୍କ କ୍ୱାଟର୍ସକୁ ଚା'ର ନିମନ୍ତ୍ରଣ ଦେଲେ ।

ଅନେକ ସଞ୍ଜ ତା'ପରେ ତିଲା ସହ ଦାମୋଦର କୂଳରେ ଦେଖା । ତୁମେ କହିପାର ଦାମୋଦର କୂଳରେ ବେଶ୍ ବୁଢ଼ାବେଳେ ପ୍ରେମ ଜମିଗଲା । ତା ଅବଶ୍ୟ ସତ । ମୁଁ ଜାଣିପାରିଲି ନାହିଁ, କାହିଁକି କେଜାଣି ତିଲା ପାଇଁ ରାତି ଉଜାଗର ହେଲି । ଗପ ଲେଖିବି ବୋଲି ଭାବିଲି, କିନ୍ତୁ କିଛି କରିପାରିଲି ନାହିଁ । ମୁଁ ସବୁଦିନେ ଅଫିସରେ ଅପେକ୍ଷା କରେ, ମୋ ଟେବୁଲରେ କେମିତି ତାରିଖ ବାର ପରିବର୍ତ୍ତନ ହୋଇ ରବିବାରଟି ଆସିଯିବ । ମୁଁ ତିଲାକୁ ନେଇ ଦାମୋଦର କୂଳରେ ବୁଲିବି । ସଞ୍ଜରେ ତାକୁ କାଡ଼ବୁରୀ କିଣି ଖୁଆଇବି ।

ବେଶୀ କଥା ଲେଖି ମୁଁ ତୁମକୁ ବିରକ୍ତ କରିବାକୁ ଚାହେଁନା । ଶେଷ ପରିଣତି ଶୁଣିବା ପାଇଁ ଏଥର ପ୍ରସ୍ତୁତ ହୁଅ । ଅସୀମା ସହ ମୋର ପରିଣତି କେତେ ହଠାତ୍ ଆସିଗଲା ! ତୁମେ ଜାଣିନ, ମୁଁ ଅସୀମାଠୁ ଅନେକ କିଛି ଚାହିଁଥିଲି, ଅବଶ୍ୟ ସବୁଗୁଡ଼ା ମନଭିତରେ ଚାପି ରଖି ନଥିଲି । ସବୁ ଶ୍ଳୀଳ ଅଶ୍ଳୀଳ ଇଚ୍ଛା ତା'ଠାରେ ପ୍ରକାଶ କରିଥିଲି, ନିବେଦନ କରିଥିଲି । ସେ ମୋର ଅନେକ ଇଚ୍ଛା ପୂରଣ କରିନଥିଲା । ଦିନେ ଏକ ଅମାବାସ୍ୟା ସଞ୍ଜରେ ମୁଁ ତାକୁ ଚୁମା ମାଗିଥିଲି । କିଏ କାଳେ ଶୁଣିବ ତେଣୁ ମୁଁ ତାକୁ ଇସାରା କରି କହି ଦେଇଥିଲି କଲମ ମାନେ ଚୁମା । ତେଣୁ ମୁଁ ନିର୍ବିକାର ହେଇ ଘରର ସମସ୍ତଙ୍କ ଆଗରେ ବି କହୁଥିଲି–ଅସୀମା କଲମ ଦେବୁନି ? ସେ କେତେବେଳେ ହସି ହସି ମନା କରୁଥିଲା ତ କେତେବେଳେ ବିରକ୍ତରେ କହୁଥିଲା–ନା ମୁଁ ଦେବିନି, ଥରେ ମନା କରିଛି ମାନେ କେବେନୁହେଁ । ଦିନେ ଏକ ନବବର୍ଷରେ ଗୋଟିଏ ଡାଇରି ନେଇ ସେ ମୋ ପାଖକୁ ଆସିଥିଲା । ତା ହାତରେ ଗୋଟିଏ କଲମ ଥିଲା । ଡାଇରି ମୋତେ ଉପହାର ଦେଇଥିଲା ତା ନିଜ ଇଚ୍ଛାନୁଯାୟୀ । ମୁଁ ସେତେବେଳେ ବି ତାକୁ କଲମ ମାଗିଲି । ସେ ସେଦିନ ନିଜ ତରଫରୁ ଚୁମା ଦେଇଥିଲା ଏବଂ ତାହା ମୋ ଉଦ୍ଦେଶ୍ୟରେ ତା ଜୀବନର ଶେଷ ଚୁମା ବୋଲି ଘୋଷଣା କରିଥିଲା । ସେ ସେଦିନ କଲମଟା ଦେଇଯାଇଥିଲା ଏବଂ ମୋତେ ଧମକ ଦେଇଥିଲା– ଯଦି ମୁଁ କେବେ ସେ ଧରଣର କଲମ ମାଗେ ତାହେଲେ ତା ସହ ମୋର ଜନ୍ମଜନ୍ମାନ୍ତର ପାଇଁ ସମ୍ପର୍କ ତୁଟିଯିବ । ମୁଁ

ଆଉ ସେ ଧରଣର କଲମ କେବେ ମାଗିନାହିଁ । କିନ୍ତୁ ସେଇ କଲମଟି ମୁଁ ଏବେ ବି ସାଇତି ରଖିଛି । ପ୍ରତିଦିନ ରାତି ଅଧରେ ମୁଁ ସେଇଟିରେ ଡାଇରି ଲେଖେଁ ।

ଅନୁ, ମୁଁ ଯେଉଁ ଗପଟା କହୁଥିଲି ସେଇ କଥାରୁ ଯେ ଦୂରକୁ ପଳାଇ ଆସିଲି । ସବୁ କଥା ମୂଳରେ ଯେପରି ଅସୀମାର ସେଇ କେତେଦିନର ଭଲପାଇବା । ସବୁ ଝିଅ ମଧ୍ୟରେ ଅସୀମାକୁ ଖୋଜେ, ସମୁ ଗଛ ଉପନ୍ୟାସ ମଧ୍ୟରୁ ଅସୀମାର ସତ୍ତା ସଂଗ୍ରହର ଚେଷ୍ଟା କରେ, କିନ୍ତୁ ପାରେ ନାହିଁ । ତେଣୁ କୌଣସି ଝିଅ ମୋ ଜୀବନ ପରିଧିକୁ ଆସିପାରନ୍ତି ନାହିଁ । କିନ୍ତୁ ଡିଲା ଏତେ ସାନ ହୋଇ ବି ଅସମ୍ଭବଭାବେ ମୋ ଭିତରକୁ ପଶିଆସିଲା କେବଳ ତା ଚେହେରାଟା ଥିଲା ଅବିକଳ ଅସୀମା ପରି । କେବଳ ସେତିକି ନୁହେଁ; ମୋତେ ମନେହେଲା ତା ସ୍ୱରଟା ଅସୀମା ଭଳି, ତା ଚାଲିଟା ଅସୀମା ଭଳି । ଡିଲାକୁ ଦେଖିଲା ପରେ ମୋ ଭିତରେ ଏ ପ୍ରକାର ଲାଇନ୍‌ସବୁ ତିଆରି ହୋଇଛି– ଅସୀମା ଏକ ହିଂସ୍ର ବ୍ୟାଘ୍ର ହେଲେ ଡିଲା ଏକ କୁନି ବିଲେଇ । ଅନୁ, ଦିନେ ରବିବାର ସଞ୍ଜରେ ମୁଁ ଓ ଡିଲା ଦାମୋଦର କୂଳରେ ଗଛ କରୁଥିଲୁ । ଡିଲା ତାର କଲିକତାର ଘର କଥା କହୁଥିଲା, ତା ବାପା ମା ଅନେକ ସମୟରେ କୁଆଡ଼େ କଳି କରନ୍ତି ଏବଂ ମାସେ ଦୁଇମାସେ ବି ସେମାନଙ୍କର କଥାବାର୍ତ୍ତା ହୁଏନାହିଁ । ଦୁର୍ଗାପୁରରେ ଡିଲା ତେଣୁ ପାଠପଢ଼େ ଏବଂ ତାର ଗୋଟିଏ ଟିଉସନ ମାଷ୍ଟର ଅଛି । ଟିଉସନ ମାଷ୍ଟରଟି କୁଆଡ଼େ ଗରିବ ଏବଂ କବି । ସେ କୁଆଡ଼େ ତାକୁ ଖୁବ୍ ସ୍ନେହ କରନ୍ତି ଏବଂ ଭଲ ପଢ଼ାନ୍ତି । ସେ କୁଆଡ଼େ ଏ ରାକ୍ଷୀ ପୂର୍ଣ୍ଣିମାରେ ତା ଟିଉସନ ମାଷ୍ଟର ହାତରେ ରାକ୍ଷୀ ପିନ୍ଧାଇବ ବୋଲି ଭାବିଛି । ମୁଁ ଅନ୍ୟମନସ୍କ ହୋଇ ଏସବୁ ଶୁଣୁଥିଲି । ହଠାତ୍ କହିଉଠିଲି–ଡିଲା, ତୋ ପାଟିଟା ଖୁବ୍ ମିଠା, ନୁହେଁ ? ଘନ ହୋଇ ଆସୁଥିବା ଅନ୍ଧକାରରେ ସେ ମୋ ମୁହଁକୁ ଚାହିଁଲା, କହିଲା–କାଡ଼ବୁରୀ ଖାଇ ଖାଇ ସତରେ ମିଠା ହୋଇଗଲାଣି । ମୁଁ ହଠାତ୍ ପାଗଳ ହୋଇଗଲି ବୋଧହୁଏ । ତା ମୁହଁକୁ ଦୁଇ ହାତ ପାପୁଲିରେ ଧରି କ୍ରମାଗତ ପାଞ୍ଚ-ଛଅଟା ଚୁମା ଖାଇଗଲି, ସେ ଉଠିପଡ଼ିଲା । ଫ୍ରକ ଝାଡ଼ିଲା । କିଛି ନ କହି ସିଧା ତା କ୍ୱାଟର୍ସ ଆଡ଼େ ଚାଲିଲା । ମୁଁ ଅପରାଧୀ ପରି ଧୀରେ ଧୀରେ ତାକୁ ଅନୁସରଣ କଲି ।

ଡିଲାର ମାଈଁ ବାହାରେ ଥିଲେ । ସେ ମୋତେ ପଚାରିଲେ–ଡିଲାର କଣ ହେଲା କି ? ମୁଁ ତାଙ୍କୁ ମିଛରେ କହିଲି–ସେ ମୋ ଉପରେ ରାଗିଗଲା, କେଉଁଠି ସେ । ସେ ତାଙ୍କ ବେଡ଼୍‌ରୁମର ରାସ୍ତା ଦେଖାଇଦେଲେ । ମୁଁ ଟିକିଏ ଇତସ୍ତତଃ ହେଲି । ସେ କହିଲେ– ଭିତରକୁ ଯାଆନ୍ତୁ–ମୁଁ ଭିତରକୁ ଗଲି । ଡିଲା ଶୋଇ କାନ୍ଦୁଥିଲା । ମୁଁ ତାର କାନ ଉପର ବାଳ ସଜାଡ଼ି ଦେଲି । ତା ଆଖିରୁ ଲୁହ ପୋଛିଦେଲି । ମୁଁ ଅନୁଭବ କଲି ଅସୀମାର ଲୁହ ପରି ଡିଲାର ଲୁହ ବି ତାତିଲା ।

ଡିଲାର ମାଈଁ ପଛରେ ଛିଡ଼ା ହୋଇଥିଲେ । ମୁଁ ତାଙ୍କ ମୁହଁ ଦେଖିଲି । ମୋର ହଠାତ୍ କାନ୍ଥରେ ଆଖି ପଡ଼ିଲା । ଫଟୋଟାକୁ ବାରମ୍ୱାର ଦେଖିଲି । ସ୍ଥିର ହୋଇ ଦେଖିଲି, ମୋ ଭିତରେ ଅନେକ ଚଢ଼େଇ ଡାକି ଉଠିଲେ । ଅନ୍ଧକାର । ଗୋଟିଏ କଳାହାଣ୍ଡିଆ ମେଘ ଉଠେଇ ଆସିଲା । ଡିଲାର ମାଈଁ ସେପରି କେଉଁ ଏକ ଦିଗନ୍ତରୁ ଉଚ୍ଚାରଣ କଲେ–ଫଟୋଟି ଡିଲା ମା'ଙ୍କର ।

ଅନୁ, ବଳଙ୍ଗରେ ଯେତେ ପାଣି ଯେତେ ବାଲି ଯେତେ ମାଛ କଙ୍କଡ଼ା ଦାମୋଦର ନଦୀରେ ମଧ୍ୟ ସେତିକି ପାଣି ସେତିକି ବାଲି ସେତେ ମାଛ ସେତେ କଙ୍କଡ଼ା । ସେ ସବୁ ଛାଡ଼ । ତୁମକୁ କଣ ବେଶୀ ବୁଝାଇ କହିବାର ଦରକାର ଯେ ଡିଲାର ମା ଅସୀମା ବୋଲି ?

(କନ୍‌ହେଇନାମା)



# ଏକ ପ୍ରେମହୀନ ଗଳ୍ପର ଭୂମିକା

ଗପ ଲେଖିବାକୁ ବସିଲେ କୁଞ୍ଜଭାଇ କଥା ପ୍ରଥମେ ମନେପଡ଼େ ।

ସେ ପ୍ରାୟ କହନ୍ତି–ଗୋଟିଏ କଥାକୁ ନେଇ ଆଉ କେତେଟା ଗପ ଲେଖାଯାଇପାରେ । ମୁଁ ଥରେ ଥରେ କଥାଟା ଶୁଣି ନଶୁଣିଲା ପରି ହୁଏ । ଥରେ ଥରେ ହଠାତ୍ ଭାବିବାକୁ ଆରମ୍ଭ କରେ–ସତେ ତ ! ଷାଠିଏଟା ଗପ ଲେଖିଲିଣି, ସବୁର ବିଷୟବସ୍ତୁ ନାରୀ ଓ ପ୍ରେମ । ସେଇ ପ୍ରେମରେ ନିଃସଙ୍ଗତା, ଅସହାୟତା, ଦୁର୍ବୋଧତା, ଅସାରତା ଇତ୍ୟାଦି ଇତ୍ୟାଦି । ସେଇ ନାରୀର ଚିତ୍ର ଓ ଚରିତ୍ର, ପ୍ରେମିକା ବା ସ୍ତ୍ରୀ, ତା' ଭିତରେ ଦେବୀତ୍ୱ, ମାତୃତ୍ୱ ଇତ୍ୟାଦିର ଅନୁସନ୍ଧାନ ଇତ୍ୟାଦି ଇତ୍ୟାଦି । ନୂଆ ଧରଣର ଗପ ଲେଖିବାକୁ ପଡ଼ିବ, ପ୍ରେମକୁ ବାଦ୍ ଦେଇ ଗପ ନ ଲେଖିଲେ ଆଉ ମୁକ୍ତି ନାହିଁ ।

କାଲି ଶୈଳପା'ର ଫୋନ ଆସିଛି–ଗପ କାହିଁ ? 'ଚୁମ୍ବକ' ପ୍ରେସକୁ ଯିବ । ଚୁମ୍ବକ ମନେପଡ଼ିଲେ ତା' ସହ କେତୋଟି ନାରୀର ଚେହେରା ମୋ ଆଗକୁ ଆସେ । ସେଇ ଚୁମ୍ବକ ମାଧ୍ୟମରେ ସେମାନଙ୍କ ସହ ପରିଚୟ– ଟୁନୁ, ମୀନା, ବୀଣା । ଯଦିବା ଭଗିନୀତ୍ୱ ସେମାନଙ୍କଠାରେ ଟିକିଏ ବେଶୀ, ତଥାପି ନାରୀ ତ ! ଛାଡ଼, ମୋତେ ଗପ ଲେଖିବାକୁ ହେବ । ମୁଁ ଝର୍କା ଦେଇ ବାହାରକୁ ଚାହେଁ । ପାଖ ଘର ବାଲକୋନିରେ ସୁନ୍ଦରୀ ବଙ୍ଗାଳୀ ଝିଅଟା ଛିଡ଼ା ହୋଇଥାଏ, ମୁଁ ଲକ୍ଷ୍ୟ କରେ । ମୁଁ ତା ଆଡ଼େ ଚାହିଁ ଉଚ୍ଚାରଣ କରେ ଝିଅଟା ତ ସଂପୂର୍ଣ୍ଣ ଗୋଟିଏ ଗଳ୍ପ ।

ଯେଉଁଠି ନାରୀ ସେଇଠି ଗପ। ଏମାନଙ୍କୁ ବାଦ୍ ଦେଇ କେମିତି ଲେଖିବି ? କାହାରିକୁ ଚିହ୍ନିବା ଆଗରୁ ସେମାନେ ଜଣେ ଜଣେ ମଣିଷ ଥାନ୍ତି; କିନ୍ତୁ ଚିହ୍ନିସାରିଲା ପରେ ମନେହୁଏ ସେମାନେ ଜଣେ ଜଣେ ଗୋଟିଏ ଗୋଟିଏ ଚମତ୍କାର ଗପ। ଏଇ ମିଟୁ, ସୁଧୀର, କିଶୋର, ଚିନ୍ତାମଣି ଏମାନେ କିଏ ଆଉ ଗପ ନୁହନ୍ତି ଯେ ! କିନ୍ତୁ ପ୍ରେମ ଗପ ମୁଁ ଆଉ ଲେଖିବିନି, କାରଣ ମୁଁ ପରିଷ୍କାର ଦେଖିପାରେ ଜଜ୍ ଭଳି ଗମ୍ଭୀର ହୋଇ କୁଞ୍ଜଭାଇ ବସିଛନ୍ତି, ତାଙ୍କ ହାତରେ ହାତୁଡ଼ି। ସେ ଯେପରି ହାତୁଡ଼ି ବାଡ଼େଇ କୁହନ୍ତି–

ନାରୀ ଓ ପ୍ରେମକୁ ବାଦ୍ ଦେଇ ଗପ ଲେଖିବାକୁ ହେବ। ପ୍ରେମ ଭଳି ପାଣିଆ ଓ ଭଙ୍ଗୁର ସେଣ୍ଟିମେଣ୍ଟ୍‌କୁ ନେଇ ପୁରୁଣା ଭାବରେ ଘଣ୍ଟାଘଣ୍ଟି କରିବାର ସମୟ ଆଉ ନାହିଁ।

ମୁଁ ଗପ ଲେଖିବା ଆରମ୍ଭ କରେ, କ'ଣ ଲେଖିବି ? ନାରୀହୀନ ଗପ ଲେଖିବାକୁ ହେବ । ମନେପଡ଼େ, ଥରେ ବୀଣାଅପା ଥଟ୍ଟା କରି କହିଥିଲେ– ମୁଁ ଗୋଟିଏ ନାରୀମୂଳକ ଗଳ୍ପ ଲେଖିଛି । କିନ୍ତୁ ମୋର କେଉଁ ଗଳ୍ପଟା ନାରୀମୂଳକ ନୁହେଁ ଯେ !

ମୁଁ ଆଜି ଦିନର ଘଟଣା ମନେ ପକାଇବାକୁ ଆରମ୍ଭ କରେ । ମୁଁ ଆଜି ସକାଳୁ ଉଠିଲି । ବାହାରକୁ ଚାହିଁ ପ୍ରଥମ ସୂର୍ଯ୍ୟକିରଣ ସହ ଦେଖିଲି ଗୋଟିଏ ସୁନ୍ଦର ରଙ୍ଗିନ ସାଲଓ୍ୱାର ପଞ୍ଜାବି ପିନ୍ଧା ଝିଅର ନିଃସଙ୍ଗ ପଡ଼ିଆ ପାରିହେଉଥିବାର ଦୃଶ୍ୟ । ତା'ପରେ ଗାଧୁଆ ଘର । ଗାଧୁଆ ଘରେ ଦେହରେ ପାଣି ଢାଳିଲା ବେଳେ ମନେ କଲି ଗୋଟିଏ ପୁରୁଣା ଝିଅର ଚେହେରା, ଝିଅଟିର ନାମ ଅନୁପମା । ଅନୁପମା ଦିନେ ସକାଳେ ଅଗଣାରେ ଛିଡ଼ାହୋଇ ତା' ଖୋଲା ଦେହରେ ପାଣି ଢାଳୁଥିବା ବେଳେ ମୁଁ କଳାପାହାଡ଼ ଭଳି ତା' ଶୂନ୍ୟ ଅଗଣାକୁ ପଶିଯାଇଥିଲି । ଶୀତଦିନ । ମଝି ଅଗଣାରେ ଖରା ପଡୁଥିଲା ବୋଲି ସେ ଖୋଲା ଦେହରେ ପାଣି ଢାଳୁଥିଲା । ଘରେ ପୁରୁଷ ଜାତୀୟ ପ୍ରାଣୀ କେହି ନଥିଲେ । ମୁଁ ସେଦିନ ହଠାତ୍ ଲଜ୍ଜିତ ହେଲି । ସେ କ'ଣ ହେଲା ମୁଁ ଜାଣେନି, କିନ୍ତୁ ସେ ମୋତେ ଚିଠି ଦେଲା, ମୋତେ ଚିଠି ଦେଲା ପୁଣି ମୋ ହାତରେ, ଏବଂ ତା'ପରେ ଅବଶ୍ୟ ମୁଁ ଅନେକଥର ତାକୁ ତାହାପରେ ଚିଠି ଦେଲି, ଆଉ ସେ ବି ।

ଗାଧୋଇ ସାରି ଚା' ପିଇବାକୁ ଗଲି । ରାସ୍ତାରେ 'ବବି' । ଅବଶ୍ୟ 'ବବି' ମୁଁ ତିନିଥର ଦେଖିଛି । ତେଣୁ ରାସ୍ତାଘାଟରେ ବବି ବୟସର ବା ସେଇ ଧରଣର ମିନି ପୋଷାକ ପିନ୍ଧା ଝିଅଙ୍କୁ ଦେଖିଲେ ବଡ଼ ପାଟିରେ 'ହାୟ ବବି' କହିବାକୁ ମୋତେ ଭୀଷଣ ଇଚ୍ଛା ହୁଏ । ଚା' କପ୍ ଓଠ ଛୁଇଁଲା ପର୍ଯ୍ୟନ୍ତ ଗୁଣୁଗୁଣୁ ଗାଇଲି–ପ୍ୟାର ମେ ସୌଦା ନେହିଁ...

ଅଫିସ ବେଳ । ଅଶ୍ୱିନୀବାବୁଙ୍କ ପୁରୁଣା ସାଇକେଲ ଆଗରେ ବସି ଅନୁଭବ କଲି, ଯେପରି ସେ ପବନର ପ୍ରତିକୂଳରେ କାତ ମାରି ଚାଲିଛନ୍ତି । ତାରି ଭିତରେ ବି କେତେ ନମ୍ବର ଓ କେଉଁ ମଡ଼େଲ ଗାଡ଼ିରେ ଓ ରିକ୍‌ସାରେ କେମିତି ରଙ୍ଗର ଶାଢ଼ି ସାଲଓ୍ୱାର ଲୁଙ୍ଗି ଉଡ଼ିଗଲେ ସେଇସବୁ କଥା । ତା'ପରେ ଅଫିସ । ଅଫିସରେ କ୍ଲୀବଲିଙ୍ଗ ଫାଇଲ, ଗଦାଗଦା ଟାଇପ୍‌କରା କାଗଜ, ଭାବହୀନ ଆଲପିନ, ପେପରଓ୍ୱେଟ, ଟାଇପ୍ ମେସିନ୍ । ତା'ରି ଭିତରେ ଭିତରେ ବି ମୁହଁ ଉଠାଇ ଦେଖି ନେଲି ସେଇ କାଳୀ ଝିଅକୁ, ଯିଏ କାମର ଫାଙ୍କେ ଫାଙ୍କେ ମୋତେ ଚାହେଁ । ମୁଁ ତାକୁ ଦେଖିଲି, ଯେପରି କି ଖରାରେ

ସାଇକେଲ ଚଳାଉଁ ଚଳାଉଁ କ୍ଲାନ୍ତି ମେଣ୍ଟାଇବା ଲାଗି ପାନଦୋକାନର ଦର୍ପଣ ସାମ୍ନାରେ ଛିଡ଼ା ହୋଇଯାଇ ପକେଟରୁ ଧଳା ରୁମାଲ ବାହାର କରି ମୁହଁ ପୋଛି ଟାକୁ କଳା କରିଦେବା ଓ ଛାତି ବୋତାମ ଖୋଲି ସିଗାରେଟରେ ନିଆଁ ଧରାଇବା ଭଳି ।

ଦ୍ୱିପ୍ରହରରେ ମିହିରର ହଠାତ୍ ପ୍ରସ୍ତାବ ବାଣୀବିହାର ଯିବା ପାଇଁ । ଜୟନ୍ତିକା ପାଖରୁ କଣ ଗୋଟିଏ ବହି ଆଣିବ । ସଙ୍ଗେ ସଙ୍ଗେ ବସ୍‌ଷ୍ଟାଣ୍ଡ । ସେଠାରେ ଗିରୀଶ । ତିନିଜଣ ବାଣୀବିହାର ବସ୍‌ରେ ଚଢ଼ିଗଲୁ । ମୋତେ ଅନେକଙ୍କ ଭଳି ବାଣୀବିହାର ବସ୍‌ରେ ବସିବାକୁ ଭଲ ଲାଗେ ନାହିଁ । ସୁନ୍ଦରୀ ତରୁଣୀମାନେ ଗୋଟିଏ ହାତରେ ଗୋଛାଏ ବହି ଧରି ଅନ୍ୟ ହାତରେ ରେଲିଂ ଜାବୁଡ଼ି ଛିଡ଼ା ହୋଇଥିବା ବେଳେ ନିଶୁଆ ସ୍ୱାସ୍ଥ୍ୟବାନ ତରୁଣମାନେ ଆରାମରେ ସିଟ୍‌ରେ ବସି ଢୁଳାଇବା ଅସୌଜନ୍ୟତା ହେବ ବୋଲି ନୁହେଁ; କେବଳ ସେମାନଙ୍କ ପାଖରେ ଛିଡ଼ା ହୋଇ ଦୋଦୁଲ୍ୟମାନ ଅବସ୍ଥାରେ ସେମାନଙ୍କ ଯନ୍ତ୍ରଣାରେ ଭାଗ ନେବା ପାଇଁ ମୋତେ ଭଲ ଲାଗେ ବୋଲି, ତେଣୁ ରେଲିଂ ଧରି ମୁଁ ଛିଡ଼ାହୋଇ ପଡ଼ିଲି । ମୋ ସାମ୍ନାରେ ଚଷମାଲଗା ଗୋଟିଏ ଗୌରାଙ୍ଗୀ ତରୁଣୀ । ଗଗଲସ୍ ଭିତରୁ ମୁଁ ମୋ ଦୃଷ୍ଟିର ଜିଭରେ ତାର ସର୍ବାଙ୍ଗ ଚାଟିନେଲି । ମନେ ମନେ ତାକୁ ଚୁମ୍ବନ କଲି, ଆଲିଙ୍ଗନ କଲି, ବିବସ୍ତ୍ର କଲି ।

ବାଣୀବିହାର ତ ବିହାରସ୍ଥଳୀ । ରୋମିଓଜୁଲିଏଟ୍, କେଦାରଗୌରୀ, ଲୟଲାମଜନୁ, ହୀର୍‌ରାନ୍‌ଝାଙ୍କର ଥରେ ଥରେ ପ୍ରଦର୍ଶନୀ ଦେଖିଲା ଭଳି ମନେହୁଏ । ଯାହାହେଉ ଦେଖା ହୋଇଗଲା ଇନ୍ଦିରା ତାପରେ ରୀତା, ଆଉ ମୋର ଅନୁରାଗିଣୀ ପାଠିକା ନିରୁପମା । ନିରୁପମାର ସୁନ୍ଦର ଶୃଙ୍ଖଳିତ ଚାହାଣି । ବେଶ୍ ସେମାନଙ୍କ ସହ ସୁନ୍ଦର ଶୃଙ୍ଖଳିତ କେତୋଟି ମୁହୂର୍ତ୍ତ । ବେଶ୍ ଆରାମଦାୟକ । ତିନୋଟି ମୁଖରୋଚକ ଗଳ୍ପ ପଢ଼ିବାର ମୁହୂର୍ତ୍ତ ଭଳି ।

ମିହିର ଜୟନ୍ତିକାକୁ ଖୋଜି ଚାଲେ । ମିଳେ ନାହିଁ । ତା'ର ମୁହଁ ଫିକା ପଡ଼ି ଆସେ । ଅଯଥାରେ ବିରକ୍ତ ହୋଇଉଠେ ସେ । ତା'ପରେ ଗିରୀଶର ପ୍ରତିଭାକୁ ଖୋଜିବାର ପାଳି । ଅନେକ ସମୟ କରିଡରରେ ଠିଆହୋଇ ଦୂର ଆକାଶ ସହ ପାଖ ରୁମ୍‌ରେ କଳକଳ ଶବ୍ଦ ଶୁଣିଲା ପରେ ପ୍ରତିଭା ଆସିଲା । ବେଶ୍ ସପ୍ରତିଭ ଚାହାଣି । ସୁନ୍ଦର ସ୍ୱାସ୍ଥ୍ୟ । ପ୍ରତିଭାକୁ ଦେଖି ପ୍ରତିମା କଥା ମନେପଡ଼ିଲା । ସେଇ ପ୍ରତିମା, ଯାହାକୁ ତାରୁଣ୍ୟର ପ୍ରଥମ ବୟସରେ ଥରେ ଅନ୍ଧକାରରେ ସିଢ଼ିରୁ ଓହ୍ଲାଉଥିଲା ବେଳେ ତା ହାତକୁ ଛୁଇଁ ଦେଇଥିଲି ।

ତା'ପରେ ସୁଧୀର । ମନୋରମା ସହ ସେ ଆଗେଇଛି ବେଶ୍ କିଛି ବାଟ । କିନ୍ତୁ ଅଟକିଯାଇଛି ଆସି ସେଇ ଜାଗାରେ, କିଏ କେଉଁଟା ଭଲ ପାଏ, ସେଇଟା ମିଳିଗଲେ ଥରେ ନିଭୃତରେ ଦେଖା ସାକ୍ଷାତ, ହାତ ଛୁଆଁଛୁଇଁ, ତା'ପରେ ତା'ପରେ, ସେ ଚିରଦିନିଆ କଥା । ବିଚରା ସୁଧୀର ପ୍ରତି ପାହାଚରେ ବନ୍ଧୁମାନଙ୍କୁ କୋକାଖର୍ଚ୍ଚ ଦେଇ ନୟାନ୍ତ ହେବ ।

ବାଣୀବିହାରର ଅନେକ ନାରୀ ଗହଣରେ ପ୍ରତ୍ୟାବର୍ତ୍ତନ । ରାସ୍ତା ସାରା ସେଇ ଏକାପ୍ରକାର ଝାଳବୁହା କସ୍‌ମେଟିକ୍‌ସର ବାସ୍ନା । ତା'ପରେ ମନେ ମନେ ଚିନ୍ତା–ବସ୍‌ଟା ହଠାତ୍ ବ୍ରେକ ଦିଅନ୍ତା କି ! ବସ୍‌ଷ୍ଟାଣ୍ଡରୁ ଘରକୁ ଫେରିବା ବାଟରେ ଦେଖିଲି ସେଇ ଝିଅଟି, ଯାହାକୁ ଅନେକ ସମୟରେ ଅଫିସ ଫେରନ୍ତା ବାଟରେ ଲଣ୍ଡା କୃଷ୍ଣଚୂଡ଼ା ଗଛତଳେ ଅତିକ୍ରମ କରେ । କ୍ରମେ ରାତିହୁଏ । ଏଣେତେଣେ ବୁଲାବୁଲି କରି ଆସି ହୋଟେଲରେ ଖାଏ । ତା'ପରେ ବସେ ଗପ ଲେଖିବା ପାଇଁ ।

ବସି ଭାବେ, ଦିନଟା ଏମିତି ଗଲା । ସବୁବେଳେ ସେଇ ନାରୀ ବା ନାରୀ-ବିଷୟ ଚିନ୍ତା । ଆଉ କେଉଁ ବିଷୟରେ ଗପ ଲେଖିବି ? ଗପ ଲେଖିବା ବନ୍ଦକରି ମୁଁ କଲମରେ ଏଣୁତେଣୁ ଗାର କାଟିବାକୁ ଆରମ୍ଭ କରେ । ଆବିଷ୍କାର କରେ ଗୋଟିଏ ନାରୀର ମୁହଁଭଳି ହୋଇଯାଉଛି ଚିତ୍ରଟା । ଶେଷରେ ତାରି ପାଖରେ ମୁଁ ଗୋଟିଏ କୁକୁରର ମୁହଁ ତିଆରି କରେ ।

ଅଶ୍ୱିନୀବାବୁ ଶୋଇଗଲେଣି । ତାଙ୍କ ଘୁଙ୍ଗୁଡ଼ି ଶୁଣାଯାଏ । ଖୁବ୍ ସୁଖୀ ଲୋକ ସେ । ଶୋଇବା ଆଗରୁ ସେ ନିଦେଇ ଯାଆନ୍ତି । ଅବଶ୍ୟ ମିନି ବୋଲି ଗୋଟିଏ ଝିଅ ତାଙ୍କୁ ନିର୍ଘାତ ପ୍ରେମ କରୁଛି ପିଲାଦିନରୁ । ସେ କିନ୍ତୁ ବାପାଙ୍କର ଏକମାତ୍ର ବିଶ୍ୱସ୍ତ ପୁତ୍ର । ପୃଥିବୀର ଯେକୌଣସି ନାରୀର ପବିତ୍ର ପ୍ରେମକୁ ସେ ବାପାଙ୍କ ପାଇଁ ପ୍ରତ୍ୟାଖ୍ୟାନ କରିପାରନ୍ତି । ଗିରୀଶ ସେପଟେ ମୁହଁକରି ବହି ପଢୁଛି । ବୋଧହୁଏ ପ୍ରତିଭା କଥା ଛାଡ଼ି ସେ ଦୀପ୍ତିକଥା ଭାବିଚାଲିଛି । ଦୀପ୍ତି ଲାଭ ଗୀତ ଗାଏ ।

ଆଉ ମୁଁ ? ଥରେ ଥରେ ବିଜୁଳି ମାରିଲେ ହଠାତ୍ ଅନ୍ଧକାରରେ ଯେପରି ସବୁ ଦୃଶ୍ୟ ଦେଖାଯାଇ ମିଳେଇଯାଏ, ସେଇପରି ଏକ ଝଲକ ଦେଖାଯାଏ–କୁଞ୍ଜଭାଇ ହାତୁଡ଼ି ଧରି ବସିଛନ୍ତି ଓ କହୁଛନ୍ତି–ସାହିତ୍ୟରୁ ନାରୀକୁ ନିର୍ବାସନ କରିବାକୁ ହେବ, ପ୍ରେମ ଭଳି କାନ୍ଦୁରା ସେଣ୍ଟିମେଣ୍ଟକୁ ବାଦ୍‌ଦେଲେ ଯାଇ ଉତ୍କୃଷ୍ଟ ସାହିତ୍ୟ ସୃଷ୍ଟି ହେବ ।

ମୁଁ ଗଳ୍ପ ଖାତାରେ ଦେଖେ ଗୋଟିଏ ବିରାଟ ପ୍ରସେସନ । ସେମାନେ ଯେପରି ମୋ ଆଡ଼କୁ ହାତ ଉଞ୍ଚେଇ ମାଡ଼ି ଆସୁଛନ୍ତି । ପ୍ରଥମେ ଶୈଳପା' –ଗପ କାହିଁ !

ତାପରେ ଝୁନୁ, ମୀନା, ବୀଣା, ତା'ପରେ ଅନୁପମାର ଗାଧୋଇବାର ଦୃଶ୍ୟ, ବବିର ସୁଇମିଂ ପୁଲରୁ ଉଠି ଆସିବାର ଦୃଶ୍ୟ ଏବଂ ଅଫିସର କାଳୀ ଝିଅ, ମିହିର, ଜୟନ୍ତିକା, ତା'ପରେ ଇନ୍ଦିରା, ରୀତା ଓ ନିରୁପମାର ନିରୀହ ଚାହାଣି, ଗିରୀଶ, ପ୍ରତିଭା, ଦୀପ୍ତି, ସୁଧୀର, ମନୋରମା, ଅଶ୍ୱିନୀବାବୁ, ମିନି ଆଉ ଶେଷରେ ମୁଁ ଓ ମୋ ସହ ଅନେକ ଅନେକ ଭୁଲା ଅଭୁଲା ଚିହ୍ନା ଅଚିହ୍ନା କିଶୋର ତରୁଣୀ ବୟସ୍କା ନାରୀର ଶୋଭାଯାତ୍ରା । ତାପରେ ମୁଁ କ୍ଲାନ୍ତ ହୋଇ ଢୁଳେଇ ପଡ଼େ ଓ ସ୍ୱପ୍ନ ଦେଖେ ଅନେକ ବିଭିନ୍ନ ବୟସର ନାରୀର ଛବି ପାଖରେ ଅନେକ କୁକୁରର ମୁହଁ ସେମାନଙ୍କ ଆଡ଼େ ଚାହିଁ ବସିଛି ।

ମୁଁ ସଚେତନ ହୋଇ ଭାବେ, ହୁଏତ ସେଇଠୁ ଗଳ୍ପଟା ଆରମ୍ଭ କରିବି ।

('ଚୁମ୍ବକ', ଦ୍ୱିତୀୟ ବର୍ଷ, ତୃତୀୟ ସଂଖ୍ୟା, ମଇ-ଜୁନ୍-ଜୁଲାଇ, ୧୯୭୪)



# ବିଶେଷ ସମ୍ବାଦ

ମୁଁ ଶୋଇ ଶୋଇ ଖବରକାଗଜ ପଢୁଛି ।

ପ୍ରଶାନ୍ତି ଶୋଇଯାଇଛି ।

ମଶାମାନେ ମୋ କାନ ପାଖରେ ବିରକ୍ତିକର ଶବ୍ଦ କରୁଛନ୍ତି ।

କୋରାପୁଟ ଜିଲାରେ ସମସ୍ତ ବସ୍ ଅଚଳ : ଜୟପୁର, ୧୦/୫ (ନି.ପ୍ର.)– ଧର୍ମଘଟ ଫଳରେ କୋରାପୁଟ ଜୋନରେ ଯାତାୟାତ କରୁଥିବା ସମସ୍ତ ବସ୍ ଗତ କାଲିଠାରୁ ଅଚଳ ହୋଇପଡ଼ିଛନ୍ତି । ଏଠାରୁ କୌଣସି ବସ୍ ଛାଡ଼ିନାହିଁ କିନ୍ତୁ ଯେଉଁ ବସ୍‌ଗୁଡ଼ିକ ଅନ୍ୟତ୍ର ଯାଇ ରାତିରେ ଅଟକିଥିଲା ସେଗୁଡ଼ିକ ଗ୍ୟାରେଜକୁ ଫେରିଆସିଛନ୍ତି ବିଶେଷତଃ ବିବାହ ତିଥି ଭିତରେ ଧର୍ମଘଟ ହେଉଥିବାରୁ ବହୁ ବରଯାତ୍ରୀଦଳ ପ୍ରାୟ ପ୍ରତି ଗ୍ରାମରେ ଅଟକି ରହିଛନ୍ତି ।

ମୁଁ ଯେତେବେଳେ ପ୍ରଶାନ୍ତିକୁ ବାହା ହେଲି ସେତେବେଳେ ଏ ଧରଣର ଧର୍ମଘଟ ସବୁ ଏତେ ନଥିଲା । ମୁଁ ଦଳେ ବରଯାତ୍ରୀ ସହ ଗୋଟିଏ ଦ୍ରୁତଗାମୀ ବସ୍‌ରେ ଯେତେବେଳେ ପ୍ରଶାନ୍ତିର ସହରରେ ଓହ୍ଲାଇଲି ମନେହେଲା ଏଠାରେ ସମସ୍ତେ ଯେପରି ପ୍ରଶାନ୍ତି ପରି ସୁନ୍ଦର, ସରଳ ଓ ଶାନ୍ତ । ସମସ୍ତଙ୍କ ଘର ସାମ୍ନାରେ ଚମତ୍କାର ଫୁଲ ବଗିଚା । ସମସ୍ତଙ୍କ ଘରେ ଧାନ ଚାଉଳ ଲୁଗାପଟା ଭର୍ତ୍ତି । ବେଦୀରେ ପ୍ରଶାନ୍ତି ପାଖରେ ବସି ମନ୍ତ୍ର ଉଚ୍ଚାରଣ କରୁଥିବା ବେଳେ ଗୋଟିଏ ପାଖରେ ସବୁ ସୁନ୍ଦରୀ ତରୁଣୀଙ୍କ ଶାଢ଼ିର ଫୁଲ ଦେଖି ଗୋଟିଏ ମୁହୂର୍ତ୍ତପାଇଁ ମୋର ଇଚ୍ଛା ହୋଇଥିଲା ଶାଢ଼ିର ଫୁଲ ସବୁ ତୋଳି ଆଣି ସେଥିରେ ହାର ତିଆରି କରି ସମସ୍ତଙ୍କ ବେକରେ ପକାଇ ଦେବି । ଯାହାହେଉ ପ୍ରଶାନ୍ତି ମୋର ଫୁଲହାର ପିନ୍ଧି ଘରକୁ ଆସିଲା । ଘର ଆଗରେ ତିଆରି ହେଲା ଫୁଲ ବଗିଚା । ଧାନଚାଉଳ, ରଙ୍ଗିନ ଫୁଲପକା ଲୁଗାପଟାରେ ଘର ଭର୍ତ୍ତି ହେଲା । ଗୋଟିଏ ବର୍ଷର ସୁନ୍ଦର ଫୁଲ ବଗିଚା ପାରିହେଲା ପରେ ପ୍ରଶାନ୍ତିର କୋଳ ଭର୍ତ୍ତି କରି ଆସିଲା ଆନନ୍ଦ । ସେତେବେଳେ ପ୍ରଶାନ୍ତି ଅନେକ ରାତି ପର୍ଯ୍ୟନ୍ତ ଶୋଇ ଶୋଇ ଏଣୁ ତେଣୁ ଗପୁଥିଲା ଆଉ ଲୁଗା କାନି ବିଞ୍ଚି ଆନନ୍ଦ ଦେହରୁ ମଝିରେ ମଝିରେ ମଶା ଘଉଡ଼ାଇ ଦେଉଥିଲା । ଏବେ ଆଉ ସେଦିନ ନାହିଁ । ପ୍ରଶାନ୍ତି ଶୋଇଯାଇଛି ।

ରାଣୀଗଞ୍ଜ ନିକଟରେ ଗୋଟିଏ ମାଲଗାଡ଼ି ଲାଇନଚ୍ୟୁତ : ୧୦।୫– ରେଳ କର୍ମଚାରୀମାନଙ୍କ ଧର୍ମଘଟର ଦ୍ୱିତୀୟ ଦିବସରେ ବିକ୍ଷୋଭକାରୀମାନେ ରାଣୀଗଞ୍ଜଠାରୁ ଦୁଇମାଇଲ ଦୂରରେ ରେଳ ଲାଇନର ଫିସ୍‌ପ୍ଲେଟ କାଢ଼ି ନେଇଥିଲେ । ରାଣୀଗଞ୍ଜ କୋଇଲା ଖଣିରୁ କୋଇଲା ଆଣୁଥିବା ମାଲଗାଡ଼ିର ଦୁଇଟି ଡବା ତଳକୁ ଖସିଯାଇଥିଲା । ବର୍ତ୍ତମାନ ପୂର୍ବ ରେଳପଥର ବଡ଼ ବଡ଼ ଷ୍ଟେସନମାନଙ୍କରେ ବିକ୍ଷୋଭକାରୀମାନଙ୍କୁ ଘଉଡ଼ାଇବା ପାଇଁ ପୋଲିସ ମୁତୟନ କରାଯାଇଛି ଏବଂ ଅବସ୍ଥା ଆୟତ୍ତାଧୀନ ରହିଛି ।

ମୋର ସବୁବେଳେ ରେଳଯାତ୍ରାର ନିଶା ଥିଲା । ପ୍ରଶାନ୍ତିକୁ ବାହାହେବା ଆଗରୁ ମୁଁ ସମୟ ପାଇଲେ ଅନିର୍ଦ୍ଦିଷ୍ଟ ଭାବେ ପାସେଞ୍ଜର ଟ୍ରେନରେ ଘୂରି ବୁଲୁଥିଲି । ବିଭିନ୍ନ ଅଞ୍ଚଳର ଲୋକଙ୍କୁ ଦେଖିବା, ନୂଆ ନୂଆ ସ୍ଥାନରେ ପାଦ ଦେବା ଥିଲା ମୋର ନିଶା । ଆନନ୍ଦର ଜନ୍ମ ପରେ ହଠାତ୍ ସେଇ ନିଶା ଭିତରେ ଚେଇଁ ଉଠିଲା । ଦିନେ ପ୍ରଶାନ୍ତି ଓ ଆନନ୍ଦକୁ ନେଇ ଟ୍ରେନରେ ଚଢ଼ିଗଲି । ସୁନ୍ଦରଗଡ଼ରେ ଜଣେ ସଂପର୍କୀୟ ଭାଇ ରହୁଥିଲେ । ଲକ୍ଷ୍ୟ ତାଙ୍କଠାରେ କିଛି ଦିନ ବିତାଇ ଫେରିଆସିବା । ରାତିର ଅନ୍ଧକାରରେ ଟ୍ରେନ ଝୁକ୍ ଝୁକ୍ ଶବ୍ଦ କରି ଆଗେଇ ଯାଉଥାଏ । ଷ୍ଟେସନ ପରେ ଷ୍ଟେସନ ପାରି ହୋଇ ଯାଉଥିବାର ମୁଁ ଲକ୍ଷ୍ୟ କରେ । ଝର୍କା ପାଖରେ ମୁଁ । ଆନନ୍ଦ ମୋ ଆଡ଼େ ମୁଣ୍ଡ କରି ପ୍ରଶାନ୍ତିର କୋଳରେ ତାର ବଳିଲା ବଳିଲା ପାଦ ଦୁଇଟି ଟେକି ଆରାମରେ ଶୋଇଯାଇଥାଏ । ପ୍ରଶାନ୍ତି ଢୁଳାଉଥାଏ । ମୁଁ ତା ଆଡ଼େ ଜିରାଫ ଭଳି ମୁହଁ ବଢ଼ାଇ ମନେ ମନେ ଚୁମା ଖାଉଥାଏ । ହଠାତ୍ ଟ୍ରେନଟା ଯେମିତି ଖୁବ୍ ସ୍ପିଡ଼୍ ନେଲା ବୋଲି ମୋତେ ମନେହେଲା । ଝକାଂ ଝକାଂ ଶବ୍ଦଟା ଦ୍ରୁତତର ହୋଇ ଉଠିଲା । କିନ୍ତୁ ହଠାତ୍ ଦପ୍‌କରି ସବୁ ଆଲୁଅ ଲିଭିଗଲା । ସବୁ ଯେପରି ଓଲଟପାଲଟ ହୋଇଗଲା । ମୁଁ ହଠାତ୍ କିଛି ବୁଝିପାରିଲି ନାହିଁ। ନିଜକୁ ଠିକ୍ ଭାବେ ଯେତେବେଳେ ଅନୁଭବ କଲି ବୁଝିପାରିଲି ଟ୍ରେନ୍‌ଟା ଲାଇନଚ୍ୟୁତ ହୋଇଯାଇଛି । ମୁଁ ଅଣ୍ଡାଳି ଅଣ୍ଡାଳି ଅନେକ ବାକ୍‌ସ ସୁଟକେଶ ବେଡ଼ିଂ ଅତିକ୍ରମ କରି ପ୍ରଶାନ୍ତିର ପାଦଟା ଏବଂ କ୍ରମେ ଭଙ୍ଗାରୁଜା ଭିତରୁ ସଂପୂର୍ଣ୍ଣ ପ୍ରଶାନ୍ତିକୁ ଖୋଜିପାଇଲି । ଅବଶ୍ୟ ଦୁଇ ସପ୍ତାହ ପରେ ପ୍ରଶାନ୍ତି ଓ ମୁଁ ଡାକ୍ତରଖାନାରୁ ଘରକୁ ଫେରିଲୁ । ପ୍ରଶାନ୍ତି କେମିତି ଖୁବ୍ ଏକା ହୋଇଗଲା । ସେଦିନରୁ ତାର ଅସମ୍ଭବ ନିଦ । ବହୁତ ସମୟ ଶୋଇ ଶୋଇ କଟାଏ । ମନେହୁଏ ସେ ଯେପରି ଆନନ୍ଦକୁ ସ୍ୱପ୍ନ ଦେଖୁଛି । ଏବେ ସେ ଶୋଇଯାଇଛି ।

ଚାଉଳ ଦର କମାଇ ଦିଆଯାଉ: ବରଗଡ଼, ୧୦।୫ – ଶ୍ରୀ ଶୁଭେନ୍ଦୁ ମୁଣ୍ଡ ଜଣାଇଛନ୍ତି ଯେ ବର୍ଷ ଆରମ୍ଭରୁ ସରକାର ଚାଉଳ ଦର ବଢ଼ାଇ ଦେଇଥିବାରୁ ଦେଶର ଚାରିଆଡ଼େ କିଣିଖିଆ ଲୋକଙ୍କ ମଧ୍ୟରେ ଭୀଷଣ ଅସନ୍ତୋଷ ପ୍ରକାଶ ପାଇଛି । ନୂତନ ଧାନ ଫସଲ ଆଦାୟ ପର୍ଯ୍ୟନ୍ତ ଲୋକେ କିପରି ଚଳିବେ ତାହା ସବୁ ସ୍ଥାନରେ ଆଲୋଚନା

କରାଯାଉଛି । ଏଥିର ପ୍ରତିକାର ସକାଶେ ଜନସାଧାରଣଙ୍କ ମଧ୍ୟରେ ପ୍ରତିବାଦ ସଭା ହୋଇ ବିକ୍ଷୋଭ କରାଯାଉଛି । ଏହି ଅବସ୍ଥାକୁ ବଢ଼ାଇଦେବା ବର୍ତ୍ତମାନ ସରକାରଙ୍କ ପକ୍ଷେ ଉଚିତ ନୁହେଁ । ଏପରି ଅବସ୍ଥାରେ ଧାନଚାଉଳ ଦର କମାଇ ଦେଇ କୃଷକଙ୍କ ମଙ୍ଗଳ କରିବା ଠିକ୍ ବୋଲି ଧରାଯାଉନାହିଁ । ସରକାର ଏଥିର ସୁବିଚାର କରି ଅତିଶୀଘ୍ର ଚାଉଳଦର କମାଇ ଦେଇ ଲୋକଙ୍କ ମଙ୍ଗଳ କରନ୍ତୁ ।

ସବୁ ଠିକ୍ ଚାଲିଥିଲା । ହଠାତ୍ ତାପରେ ଧୀରେ ଧୀରେ ଧାନ ଚାଉଳର ଦର ହୁହୁ ବଢ଼ିଗଲା । କ୍ରମେ କ୍ରମେ ମୁଁ ଅନୁଭବ କଲି ପ୍ରଶାନ୍ତି ଦୁର୍ବଳ ହୋଇ ଉଠିଛି । ଖାଦ୍ୟ ଖାଦ୍ୟସାର ବିହୀନ ହୋଇଗଲା ପରି ପ୍ରଶାନ୍ତିର ଅସ୍ଥିମଜ୍ଜା ଶୂନ୍ୟ ହୋଇ ଉଠୁଛି । ମୁଁ ଦେଖେ ପ୍ରଶାନ୍ତି ଝାଳସରସର ହୋଇ ରୋଷେଇ ଘରୁ ବାହାରିଆସେ । ଘର ଓଳେଇ ସାରି ଅସମ୍ଭବ ଧକେଇ ହୁଏ । ତା ଆଖି କୋଣ କ୍ରମେ କଳା ପଡ଼ିଆସେ । ତାର ଓଠର ରଙ୍ଗ ଫିକା ହୋଇଯାଏ । କ୍ରମେ ପ୍ରଶାନ୍ତି ପ୍ରକାଶ କରେ ସେ ଅନ୍ତଃସତ୍ତ୍ୱା । ମୁଁ ପୁଣି ଆନନ୍ଦର ହଳଦିଆ ତିକ୍ତତା ଉପରେ ସୁଗାର କୋଟିଂ ଦେଇ ପ୍ରଶାନ୍ତିକୁ ସ୍ନେହ କରେ, ଚୁମାଖାଏ । ପୁଅ ହେଲେ ତାର ନାମ ସୁନ୍ଦର ଓ ଝିଅ ହେଲେ କଞ୍ଚନା ଦିଆଯିବ ବୋଲି ଘୋଷଣା କରେ। ପ୍ରଶାନ୍ତି ଭାବହୀନ ଆଖିରେ ମୋତେ ଚାହେଁ । ବ୍ଲାକରେ ବେଶୀ ଦାମ୍ ଦେଇ ଅମୁଲ ଆଣି ଘରର ଥାକ ଭର୍ତ୍ତି କରିଦିଏ । ପ୍ରଶାନ୍ତି ବି କେମିତି ହଠାତ୍ ଜୀବନ୍ତ ହୋଇଉଠେ । ସେ ହୁଏତ ବୁଝିପାରେ ତାର ଏଥର ଝିଅ ହେବ । ସେ ଦ୍ୱିପ୍ରହରରେ ବାଳ ମୁକୁଳା କରି ଗୋଡ଼ ଲମ୍ବାଇ ବସି କୁନି କୁନି ଫ୍ରକ୍ ତିଆରି କରେ । ସେ ଦିନମାନଙ୍କରେ ପ୍ରଶାନ୍ତି ରାତିରେ ଶୋଇ ଶୋଇ ମୋ ସହ ଗପୁଥିଲା, ମୋ ପିଠି ଆଉଁଶି ଦେଉଥିଲା ଏବଂ ମୋ ଛାତି ବାଳରେ ତାର ସୁନ୍ଦର ନରମ ଆଙ୍ଗୁଳିରେ ସିଆର କାଟୁଥିଲା । କିନ୍ତୁ ଏତେ ଆଉ ସେଦିନ ନାହିଁ । ପ୍ରଶାନ୍ତି ବହୁତ ବେଳୁ ଶୋଇ ଯାଇଛି ।

ପ୍ରୋଭିଡ଼େଣ୍ଟ ଫଣ୍ଡ କର୍ମଚାରୀମାନଙ୍କ ବିକ୍ଷୋଭ  ଭୁବନେଶ୍ୱର, ୧୦।୫ – ପ୍ରୋଭିଡ଼େଣ୍ଟ ଫଣ୍ଡ ଅଫିସ କର୍ମଚାରୀ ୟୁନିୟନର ସାଧାରଣ ସଂପାଦକଙ୍କ ଆହ୍ୱାନକ୍ରମେ ଅଫିସର ସମସ୍ତ କର୍ମଚାରୀ କମିଶନରଙ୍କ ଅଫିସ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ବେତନ ବୃଦ୍ଧି, ନୂତନ ବେତନ ହାର ସ୍ଥିରୀକରଣ ପ୍ରଭୃତି ଆଠଟି ଦାବି ଉପରେ ମହା ସଂଘର ନିର୍ଦ୍ଦେଶାନୁଯାୟୀ ବିକ୍ଷୋଭ କରାଯାଇଥିଲା। ଚଳିତ ମାସ ମଧ୍ୟରେ ଦାବୀଗୁଡ଼ିକର ନିଷ୍ପତ୍ତି କରା ନ ଗଲେ ସର୍ବଭାରତୀୟ ସ୍ତରରେ ବିକ୍ଷୋଭ, ଧର୍ମଘଟ ଓ ଅନଶନ ଆଦି କରାଯିବ ବୋଲି ସଂଘ ତରଫରୁ ଘୋଷଣା କରାଯାଇଛି ।

ମୋର ମନେ ଅଛି ସେଦିନ ଏହିପରି ଦରମା ହାର ଇତ୍ୟାଦି ନେଇ ଅଫିସରେ ବିକ୍ଷୋଭ ପ୍ରଦର୍ଶନ କରାଯିବାର ଥିଲା । ସେଦିନ ଲେବର ରୁମ୍‌ରେ ପ୍ରଶାନ୍ତି । ମୁଁ

ବିକ୍ଷୋଭ ଇତ୍ୟାଦି ଛାଡ଼ି ଲେବର ରୁମ୍ ବାହାରେ ଚାରମିନାର ଟାଣି ଏପଟ ସେପଟ ହେଉଥିଲି । ପୁଅ ହେଲେ ତା ନାଁ ସୁନ୍ଦର ଓ ଝିଅ ହେଲେ କଞ୍ଚନା । ମୋର କଞ୍ଚନାର ହାବେଳିଟା ସୁଁ ସୁଁ ଉପରକୁ ଉଠି ଯେତେବେଳେ ତଳକୁ ତଳକୁ ଖସିଲା, ସେତିକିବେଳେ ନର୍ସ ଆସିଲା । ମୁଁ ଭିତରକୁ ଗଲି । ପ୍ରଶାନ୍ତିର ମୁଣ୍ଡରେ ସାନ୍ତ୍ୱନାମୂଳକ ହାତଟା ଥାପି ବାହାରକୁ ବାହାରି ଆସିଲି । ତା'ପରେ ବିକ୍ଷୋଭରେ ଗଳା ଫଟାଇ ଚିତ୍କାର କଲି । କଞ୍ଚନା ଜନ୍ମ ହୋଇଥିଲା ସତ, କିନ୍ତୁ ନିଷ୍ପ୍ରାଣ ଦେହ ନେଇ ପୃଥିବୀର ଆଲୁଅକୁ ବାହାରି ଆସିଥିଲା । ପ୍ରଶାନ୍ତି ସେଦିନରୁ କେମିତି ନିଷ୍ପ୍ରାଣ ହୋଇଗଲା । କାହାରି ସହ ପ୍ରାୟ କଥା କହେ ନାହିଁ । କେବଳ ଗଣ୍ଡେ ଖାଏ, ରଙ୍ଗବେରଙ୍ଗର ଔଷଧ ପିଏ ଓ ଶୁଏ । ସେଇ ଔଷଧ ପିଇ ପିଇ ସେ ଆଜିକାଲି ସବୁବେଳେ ଶୋଉଛି ।

ଚୋରି ଅଭିଯୋଗରେ ଜଣେ ଆସାମୀ ଗିରଫ : ବାଲେଶ୍ୱର, ୧୦।୫ (ନି.ପ୍ର.)– ମେ ଆଠ ତାରିଖ ପାହାନ୍ତିଆ ତିନିଟା ବେଳେ । ଶ୍ରୀ ଅଶୋକ ମାଇତି ନାମରେ ଜଣେ ଲୋକ ମାଣିଖମ୍ବ ଅଞ୍ଚଳରୁ ଚୋରି କରିବାକୁ ଉଦ୍ୟମ କରୁଥିଲା ବେଳେ ସ୍ଥାନୀୟ ଟାଉନ ଥାନାର ଏ.ଏସ.ଆଇ. ଖୁବ୍ ତତ୍‌ପରତାର ସହିତ ଆସାମୀକୁ ଧରି ହାଜତକୁ ପଠାଇଛନ୍ତି । ଏହି ଆସାମୀର ଘର ଖାନଖୋଲା ହୁଗୁଳି ବୋଲି ଜଣାଯାଇଛି ଏବଂ ସେ ବଡ଼ ବଡ଼ ଚୋରି ଅପରାଧରେ ସଂପୃକ୍ତ ବୋଲି ସନ୍ଦେହ କରାଯାଉଛି ।

ସବୁ ଘଟଣା ଦୁର୍ଘଟଣା ଅତିକ୍ରମ କରି ପ୍ରଶାନ୍ତିର ସୁଖ ଫେରାଇ ଆଣିବାକୁ ଅନେକ ଚେଷ୍ଟା କରିଥିଲି । ଋଣ କରି ପ୍ରଶାନ୍ତି ପାଇଁ ସୁନ୍ଦର ଶାଢ଼ି କିଣିଲି । ନୂଆ ଡିଜାଇନର ଗହଣା ତିଆରି କରିଦେଲି । ମୁଁ ଦେଖିଲି ପ୍ରଶାନ୍ତି ସେଗୁଡ଼ା କିଛି ବ୍ୟବହାର କରୁନାହିଁ । କେବଳ ଆଲମିରାରେ ସାଇତି ରଖୁଛି । ଦିନେ ସକାଳେ ବିଛଣାରୁ ଉଠି ଦେଖିଲି ପ୍ରଶାନ୍ତି ଆଲୁଳାୟିତ ବେଶବାସରେ ନିଷ୍ପଲକ ଆଖିରେ ବସିଛି । ଆଲମିରା ଖୋଲା । ମୁଁ ହଠାତ୍ କିଛି ବୁଝିପାରିଲି ନାହିଁ । ପ୍ରଶାନ୍ତି ବାରିପଟ କବାଟ ଆଡ଼େ ଆଙ୍ଗୁଠି ଦେଖାଇଲା । ମୁଁ ଦେଖିଲି ବାରିପଟ ମେଲା । କିଛି ସମୟ ପରେ ବୁଝିପାରିଲି ଋଣ କରି ପ୍ରଶାନ୍ତି ପାଇଁ ଦୋକାନମାନଙ୍କରୁ ଯେଉଁ ସୁଖ ସବୁ ଆଣି ଆଲମିରାରେ ସାଇତିଥିଲି, ସେଗୁଡ଼ା କେଉଁ ଏକ ଅଜଣା ଆସାମୀ ହାତରେ ରାତିର ଅନ୍ଧକାରରେ ଚାଲାଣ ହୋଇଯାଇଛି । କାରଣ ପ୍ରଶାନ୍ତି ସବୁବେଳେ ନିଘୋଡ଼ ନିଦରେ ଶୁଏ ଯେମିତି ସେ ବର୍ତ୍ତମାନ ଶୋଇଯାଇଛି ।

ଉତ୍କଟ ଖାଦ୍ୟ ଓ କିରାସିନି ଅଭାବ : ଆଳି, ୧୦।୫ (ନି.ପ୍ର.)– ବର୍ତ୍ତମାନ ଏ ଅଞ୍ଚଳରେ ଉତ୍କଟ ଖାଦ୍ୟାଭାବ ସାଙ୍ଗକୁ କିରାସିନି ଅଭାବ ମଧ୍ୟ ଦେଖାଦେଇଛି । ଏଠାରେ ଚାଉଳ କିଲୋ ପ୍ରତି ଟ ୨-୫୦, ଅଟା କିଲୋ ପ୍ରତି ଟ ୨-୫୦ ପଇସାରେ ବିକ୍ରୟ ହେଲାଣି । ଏହାବ୍ୟତୀତ କିଲୋ ପ୍ରତି ସୁଜି ଟ ୩-୦୦, ଡାଲଡ଼ା ଟ ୧୪-୦୦

ଦରରେ ବିକ୍ରି ହେଉଛି । ଗତ ୨ ମାସ ଧରି କିରାସିନି ଲିଟର ଟ ୧-୫୦ ଦରରେ ମଧ୍ୟ ମିଳୁନି । ଏଠାକାର ଶତକଡ଼ା ୯୫ ଭାଗ ଲୋକ ଖଟିଖିଆ । ସେମାନେ କୌଣସି କାମଧନ୍ଦା ନ ପାଇ ଭୋକ ଉପାସରେ ଦିନ କାଟୁଛନ୍ତି । ସରକାର ତୁରନ୍ତ ପ୍ରତି ପଞ୍ଚାୟତରେ ୨।୩ଟି କରି ବିକ୍ରୟ କେନ୍ଦ୍ର ଖୋଲି ଖାଦ୍ୟଦ୍ରବ୍ୟ ଓ କିରାସିନି ଯୋଗାଇ ଦେବାକୁ ଦାବି ହେଉଛି ।

ମୁଁ ଏଥର ଖବରକାଗଜ ମୋଡ଼ିମାଡ଼ି ମୁଣ୍ଡ ଆଡ଼େ ଫିଙ୍ଗିଦେଲି । ଆଉ ଖବରକାଗଜ କିଣିବି ନାହିଁ । ସବୁଦିନେ ସେଇ ଏକପ୍ରକାର ଖବର । ବିକ୍ଷୋଭ, ଆନ୍ଦୋଳନ, ଧର୍ମଘଟ, ଚୋରି, ଘରପୋଡ଼ି, ଆତ୍ମହତ୍ୟା, ଦରବୃଦ୍ଧି, ଅନାହାର ମୃତ୍ୟୁ– । ବିଶେଷ ସଂବାଦ ଆଉ କ'ଣ ? ପ୍ରଶାନ୍ତି ନିଦରେ ତା ବେକ କୁଣ୍ଡାଇ ହେଲା । ବେକରେ ମଶା ବସିଥିଲା ବୋଧହୁଏ । ପ୍ରଶାନ୍ତି ଦେହରେ ରକ୍ତ ନାହିଁ । ଗୋରା ଦେହ ଶେତା ପଡ଼ିଗଲାଣି । ତା ଉପରେ ମଶାର ଶୋଷଣ । ପ୍ରଶାନ୍ତି ଚମତ୍କାର ଭଙ୍ଗୀରେ ମୋ ଆଡ଼େ ବୁଲି ଶୋଇଲା । ମୁଁ ଦେଖିଲି ତା ବ୍ଲାଉଜର ଉପର ବୋତାମ ଖୋଲା । ମୁଁ ଖୁବ୍ ଭିତରେ ଖୁବ୍ ସୂକ୍ଷ୍ମ ଭାବରେ ଶୃଙ୍ଗାରର ଉତ୍କଣ୍ଠା ଅନୁଭବ କଲି । ମୋ କାନ ପାଖ ଦେଇ ସୁଁ କରି ଗୋଟିଏ ମଶା ଉଡ଼ିଗଲା । ମୁଁ ଉଠି ମଶାରି ପକାଇଦେଲି । ଏବେ ମୁଁ ଓ ପ୍ରଶାନ୍ତି ବେଶ୍ ସୁରକ୍ଷିତ । ପ୍ରଶାନ୍ତିକୁ ଡାକିଲି । କ୍ଷୀଣ ସ୍ୱରରେ କେବଳ ଉଁ ଉଁ ହେଲା । କିନ୍ତୁ ଉଠିଲା ନାହିଁ । ମୁଁ ଆଲୁଅ ଲିଭାଇ ଦେଲି । ତା ଆଡ଼େ ମୁହଁ କରି ଶୋଇଲି । ମୋ ଦେହ ଆଉ ତା ଦେହ ମଝିରେ ପଡ଼ିଥିବା ତାର ଦୁର୍ବଳ ହାତଟା ଉଠାଇ ଧରି ମୁଁ ତା ପାଖକୁ ଘୋଷାରି ଗଲି ଏବଂ ତା ହାତଟା ମୋ ଅଣ୍ଟାରେ ପକାଇ ଦେଲି । ରୋଗୀର ନିଃଶ୍ୱାସ ଭଳି ତାର ତାତିଲା ନିଃଶ୍ୱାସ ମୋ ଗାଲରେ ବାଜିଲା । ଠିକ୍ ସେଇ ସମୟରେ ଅନୁଭବ କଲି ଅନ୍ଧକାରରେ ମଶାରି ଭିତରେ ବି ଗୋଟିଏ ମଶା ବିରକ୍ତିକର ଶବ୍ଦ କରି ଉଡ଼ି ବୁଲୁଛି । ହାତଟାକୁ ଶବ୍ଦଭେଦୀ ଅସ୍ତ୍ର କରି ଘୂରାଇ ଆଣିଲି । ଡାହାଣ ହାତରେ ବ୍ଲାଉଜର ବୋତାମ ଖୋଲିଲା ବେଳେ ମନେହେଲା ମଶାଟା ଡାହାଣ ହାତ ପାପୁଲିର ପିଠି ଉପରେ ବସିଛି । ହାତଟା ଜୋରେ ବିଞ୍ଚିଦେଲା ମାତ୍ରେ ସେଇଟା ଉଡ଼ିଗଲା । ମୁଁ ପ୍ରଶାନ୍ତିକୁ ଆଉଥରେ ଡାକିଲି । ସେ ସେମିତି ନିର୍ଜୀବ ଭାବରେ ପଡ଼ି ରହିଥିଲା । ମୋର ଇଚ୍ଛା ହେଲା ପ୍ରଶାନ୍ତି ହଠାତ୍ ଉଠି ମୋର କଣ୍ଠସଂଲଗ୍ନା ହୋଇ କାନ ପାଖରେ କହନ୍ତା କି–ପୃଥିବୀରେ ଯେତେ ବିପ୍ଳବ ହେଉ ପଛକେ ମୁଁ ତୁମକୁ ଭଲପାଏ । ହଠାତ୍ ମଶାଟା ମୋ କାନ ପାଖରେ ସେଇ ବିରକ୍ତିକର ଶବ୍ଦ କରି ଦୂରକୁ ଉଡ଼ିଗଲା । ପ୍ରଶାନ୍ତିର ନରମ ଗାଲରେ ଓଠ ଲଗାଇଲା ବେଳେ ମୋର ଇଚ୍ଛା ହେଲା ସେ ନିଦରୁ ଉଠି ମୋ ଗାଲରେ ଓଠ ଲଗାନ୍ତା କି ! ଠିକ୍ ସେଇ ସମୟରେ ମଶାଟା ମୋ ଗାଲରେ ତାର ଶୁଣ୍ଢ ପୂରାଇ କିଛି ରକ୍ତ ଶୋଷି ନେଲା । ମୁଁ ନିଜ ଗାଲରେ ଖୁବ୍ ଜୋରେ ଚାପୁଡ଼ାଟାଏ ମାରିଲି ଏବଂ ଉଠି ଆଲୁଅ ଜଳାଇଲି ।

ତଥାପି ମଶାମାନେ କେଉଁଠି କେଉଁ ଏକ ସନ୍ଧିରେ ରହି ବିରକ୍ତିକର ଆଓ୍ଵାଜ କରୁଥିଲେ । ମୁଁ ଚୁପ୍‌ଚାପ୍ ମଶାରି ଭିତରେ ବସି ରହି ପ୍ରଶାନ୍ତିକୁ ଦେଖିଗଲି । ମୁଁ ଜାଣେ ଆଉ ଗୋଟିଏ ନୂଆ ସୂର୍ଯ୍ୟୋଦୟ ନ ହେଲା ପର୍ଯ୍ୟନ୍ତ ସେ କେବେହେଲେ ଉଠିବ ନାହିଁ । ତାକୁ ଆଉ ଡାକିବା ବୃଥା । ମୁଁ ଧୀରେ ଧୀରେ ତାକୁ ବିବସ୍ତ୍ର କଲି ଏବଂ ଚିତ୍ କରି ଶୁଆଇ ଦେଲି । ହଠାତ୍ ମନେ ହେଲା ମଶାରି କୋଣର କେଉଁ ଏକ ଅଜଣା ରାସ୍ତା ଦେଇ ଗୋଟିକ ପରେ ଗୋଟିଏ ମଶା ପଶିଆସୁଛନ୍ତି । ଗୋଟିକୁ ଦେଖିଲି ମୁଣ୍ଡ ଆଡ଼େ ମଶାରି ଦେହରେ ବସି ରହିଛି । ମୁଁ ଖୁବ୍ ରାଗରେ ତାକୁ ଦୁଇ ପାପୁଲି ଘେରକୁ ଆଣି ଚାପିଦେଲି । ତାଳି ମାରିବାର ଶବ୍ଦ ହେଲା ଓ ହାତକୁ କେବଳ କାଟିଲା । ଆଉ ଗୋଟାକୁ ଦେଖିଲି ପ୍ରଶାନ୍ତିର ଖୋଲା ଛାତିରେ ଆରାମରେ ବସି ତାର ଶୁଣ୍ଢ ଭିତରକୁ ରକ୍ତ ଚାଲାଣ କରି ଦେଉଛି । ସେଇ ଆଡ଼କୁ ଲକ୍ଷ୍ୟ କରି ହାତ ଉଠାଇଲା ମାତ୍ରେ ସେଠାରୁ ଅଦୃଶ୍ୟ । ତାପରେ ଏକ ସମୟରେ ମନେ ହେଲା ମୋ ପିଠିରେ ଗୋଟିଏ ମଶା ତାର ଶୁଣ୍ଢ ପୂରାଇ ଦେଉଛି ଏବଂ ଆଉ ଗୋଟିଏ ମଶା ତିଳ ଚିହ୍ନ ଭଳି ପ୍ରଶାନ୍ତିର ଗାଲ ଉପରେ ବସିଯାଇଛି ଏବଂ ମୋ କାନ ପାଖରେ ଆଉ ଗୋଟିଏ ବିକ୍ଷୋଭ କରୁଛି ଏବଂ ପ୍ରଶାନ୍ତିର ପେଟ ଉପରେ ଏବଂ ମୋ ବାହୁରେ ଏବଂ ପ୍ରଶାନ୍ତିର ଜଙ୍ଘରେ ଏବଂ ମୋ ଗାଲରେ ଏବଂ ପ୍ରଶାନ୍ତିର ପାଦରେ ଏବଂ ମୋ କପାଳରେ ଏବଂ ପ୍ରଶାନ୍ତିର ଧଳା ଦେହର ସର୍ବତ୍ର ଅସଂଖ୍ୟ ତିଳଚିହ୍ନ ଭଳି ମଶାମାନେ ବସିଯାଇଛନ୍ତି ।

ମୁଁ ନିରୁପାୟ ହୋଇ ଆଲୁଅ ଲିଭାଇ ଶୋଇଯିବା ପୂର୍ବରୁ ଦେଖିଲି ପ୍ରଶାନ୍ତିର ସୁନ୍ଦର ଗୋରା ଦେହ ଗୋଟିଏ ଖବରକାଗଜ ହୋଇଯାଇଛି ଏବଂ ଅସଂଖ୍ୟ ତିଳ ଚିହ୍ନ ଭଳି ବସିଥିବା ମଶାମାନେ ଅକ୍ଷର ହୋଇଯାଇଛନ୍ତି ଏବଂ ପରିଷ୍କାର ପଢ଼ିଗଲି ବିଶେଷ ସମ୍ବାଦ ସବୁ–ରେଳ ବସ୍ କର୍ମଚାରୀ ଓ ସମସ୍ତ ଶ୍ରମିକ ଧର୍ମଘଟ, ବିକ୍ଷୋଭ, ଧାନ, ଚାଉଳ, କିରାସିନି, ପେଟ୍ରୋଲ, ଲୁଗାପଟା, କାଗଜ ଇତ୍ୟାଦିର ଅସମ୍ଭବ ଦରବୃଦ୍ଧି, ଚୋରି, ଘରପୋଡ଼ି, ଆତ୍ମହତ୍ୟା, ଅନାହାର ମୃତ୍ୟୁ ଏବଂ ପୃଥିବୀକୁ ଭୀଷଣ ବେଗରେ ଏକ ଅବଶ୍ୟମ୍ଭାବୀ ବିପ୍ଳବ ମାଡ଼ି ଆସିବାର ସୂଚନା ।

('ନବରବି', ଜୁନ୍, ୧୯୭୪)



# କଉ

ଅନୁର ମୁହଁ ଦେଖିଲେ ଜଣାଯାଏ ସେ ଖୁବ୍ ବ୍ୟସ୍ତ । ସେ ହାତ ପାପୁଲିର ପିଠିରେ ଗାଲର ଝାଳ ପୋଛି ନେଉଛି । ଅଲରା ବାଳକୁ ମୁହଁ ହଲେଇ ଉପରକୁ ଟେକି ନେଉଛି । ତା ସାମ୍ନାରେ ପନିକି । ହାତରେ କଉମାଛ । ବାବି ବଜାର ଯାଇ ଜୀଅନ୍ତା କଉମାଛ ଆଣିଛି । ଅନୁ ହାତରେ ରହି ବି କଉମାଛଟା ଛଟପଟ କରି ଉଠୁଛି । ଅନୁର ହାତ ପାପୁଲି ଖୁବ୍ ନରମ ମୁଁ ଜାଣେ । ସେ କଉମାଛର ଡେଣା ସବୁ ଯାରି ଭିତରେ କାଟି ପକାଇଛି । ପିଠି ଉପରେ ଧାଡ଼ି ଧାଡ଼ି କଣ୍ଟା ବି । ମାଛର ଲାଞ୍ଜଟାକୁ ପାଉଁଶରେ ଘଷି ପନିକିରେ ଏକଡ଼ ସେକଡ଼ କରି କାଟି ଛଡ଼େଇ ଦେଉଛି । ତାରି ଭିତରେ ମୋତେ ଥରେ ଥରେ ଚାହିଁ ଅନ୍ୟ ପ୍ରକାର ହସୁଛି । ମୁଁ ତା'ଠୁଁ କିଛି ଦୂରରେ ଛାତି ତଳେ ତକିଆ ରଖି ତାରି ଆଡ଼େ ଚାହିଁରହିଛି । ମୋ ସାମ୍ନାରେ ଖାତା, ଡଟ୍‌ପେନ । କବିତା ଲେଖିବି ବୋଧହୁଏ । ଖାତାଟା ମୋର । ଡଟ୍‌ପେନଟା ବାବିର । ମୋ ପାଖରେ ଗୋଟିଏ ମେଗାଜିନ୍ । ବାବି ଏବେ ବାହାରେ କାହାସହ ମସ୍‌ଗୁଲ । ମୁଁ ଅନୁକୁ ଦେଖିବାରେ ମସ୍‌ଗୁଲ । କବିତା ନାମକ ପଦାର୍ଥ ଏଇ ସମୟରେ ଲେଖିହୁଏ କି ନା ମୋତେ ଜଣା ନାହିଁ । ବାବି ଆଜି ପାଣି ଟେକିଛି, ବଜାର ଯାଇଛି । ଅନୁ ଚୁଲି ଲଗାଇଛି । ଭାତ ହାଣ୍ଡିରେ ଚାଉଳ ଢାଳିଛି । ଅନୁର ବାପାବୋଉ ତା ମାମୁ ଘରକୁ ଯାଇଛନ୍ତି । ଅନୁ କେବଳ ମାଛଟା ଦେହରୁ କାତି ଛଡ଼େଇ ଚାଲିଛି । ମୋ ହାତରେ ଡଟ୍‌ପେନ । ବାବି ବାହାରେ । କଟି ମନ୍ଦିର ଯାଇଛି । କଟିର ବୟସ ବାର । ମନ୍ଦିରରେ ଉତ୍ସବ । କଟି ଉତ୍ସବର ଗୋଟିଏ ଅଂଶ । ଅନୁ ହସୁଛି । କଉ ମାଛଟାର କାତି କଟା ଶେଷ ହୋଇ ଯାଇଛି । ମୋତେ ବହୁତ ଗରମ ଲାଗୁଛି । ମୋ ଦେହ ପୋଡ଼ିଗଲା ଭଳି ମନେ ହେଉଛି । ଏଇ ସମୟରେ ଗୋଟିଏ ଗଡ଼ିଆର ଥଣ୍ଡା ପାଣିରେ ଯଦି ଅନୁ ମୋତେ ନେଇ ଛାଡ଼ି ଦିଅନ୍ତା, ମୁଁ କଉମାଛ ଭଳି ଲାଞ୍ଜ ମୁଣ୍ଡ ହଲାଇ ପାଣିର ଭିତରକୁ ପଶିଯାଆନ୍ତି । ବାବି ବାହାରେ, କଟି ମନ୍ଦିରରେ । ଅନୁ ହସୁଛି । ମୁଁ କବିତା ଲେଖିବି ବୋଲି ଭାବୁଛି । ଅନୁର ହସକୁ ନେଇ ନା ମୋର କାନ୍ଦକୁ ନେଇ ? କଟି ବୋଧହୁଏ ଠାକୁର ପାଖରେ ଆଣ୍ଠେଇ ପଡ଼ି କହୁଛି ତାର ପାଠ ମନେ ରହେନି । ମୋର ବି ମନେ ରହେନି ଅନେକ

କଥା । ମୋ ଜୀବନରେ କେତେଜଣ ଆସିଥିଲେ ମନେ ରଖିନି କିମ୍ବା କେବେ ଠାକୁରଙ୍କ ପାଖରେ ନିଲ୍‌ଡାଉନ ହୋଇ ସେମାନଙ୍କୁ ମନେ ରଖେ ବୋଲି କେବେ କହିନି । ଅନୁ କଉମାଛର ଗାଲିସିଟା କାଟି ଦେଉଛି । କଟା ଗାଲିସି ଦେଇ ଦେଖାଯାଉଛି ତାର ନାଲି ଫୁସ୍‌ଫୁସ୍ । ତଥାପି ବଞ୍ଚିଛି କଉମାଛଟା । କାରଣ ଅନୁ ହସୁଛି । ହସି ହସି କାଟୁଛି ମାଛଟା । ତେଣୁ ପରମ ସ୍ନେହରେ ମାଛଟା ଲାଞ୍ଜ ହଲାଇ ଚାଲିଛି । ମୋ ଛାତିରେ ବା ପିଠିରେ ଆଖି ଲଗାଇ ଚାହିଁଲେ ନାଲି ଫୁସ୍‌ଫୁସ ଦେଖାଯିବ ବୋଧହୁଏ, କିନ୍ତୁ ହୃତ୍‌ପିଣ୍ଡ ଦେଖାଯିବ ନାହିଁ । ଯେଉଁମାନେ ମୋ ଛାତିରେ ମୁଣ୍ଡ ରଖିଥିଲେ ଏବଂ ଆଖି ଲଗାଇ ଛାତି ଭିତରର ହୃତପିଣ୍ଡ ଦେଖିବାକୁ ଚାହିଁଥିଲେ, ସେମାନେ ବୋଧହୁଏ କେବଳ ନାଲି ଫୁସ୍‌ଫୁସ ଦେଖିଥିଲେ। ହୃତ୍‌ପିଣ୍ଡ ଖୋଜି ପାଇ ନ ଥିଲେ। କଉମାଛଟା ଆରାମରେ ଛଟପଟ ହେଉଛି, ତାର ପୁସ୍‌ଫୁସ ସିଧାସଳଖ ମୁକ୍ତ ପବନ ପାଇ ପାରୁଛି ବୋଲି । ମୋତେ ବି ଗୋଡ଼ କଚାଡ଼ିବାକୁ ଇଚ୍ଛା ହେଉଛି। ଅନୁ ହସିଛି। କବତା ଲେଖିବା ପାଇଁ ଡଟ୍‌ପେନ୍ ଭିତରେ ଯନ୍ତଣା ଉଠେଇ ଆସୁଛି । ମୋ ଭିତରେ ମେଘର ଗର୍ଜନ, ବିଜୁଳି, ଅନୁକୁ କିନ୍ତୁ ମୁଁ ଏସବୁ କିଛି କହିବି ନାହିଁ । ଗଳ୍ପ କିମ୍ବା କବିତା ସବୁ ମୋର ଏକାନ୍ତ ବ୍ୟକ୍ତିଗତ । କିଛି କହିଲା ମାତ୍ରେ ଅନୁ ପନିକିରେ ହାତ କାଟିପକାଇବ ମୁଁ ଜାଣେ, ପୃଥିବୀର ସମସ୍ତ ଧର୍ମଯାଜକଙ୍କୁ ନେଇ ତା'ର ବାପା ବୋଉ ଧାଇଁ ଆସିବେ, ଚେରମୂଳ ସହ ଧାଇଁ ଆସିବେ ଗଛଲତା, ଆକାଶ ମୋ ଉପରକୁ ଓହ୍ଲାଇ ଆସିବ, ପୃଥିବୀର ସବୁ ପତଙ୍ଗ ମୋ ନାକ ଭିତରେ ପଶି ପୃଥିବୀରେ ମୋର ଜୀବନ ପ୍ରବାହ ବନ୍ଦ କରିଦେବ । ମୁଁ ଅବଶ୍ୟ ସବୁବେଳେ ସତ କୁହେନି, କିନ୍ତୁ ଅପ୍ରିୟ ସତ୍ୟ କହିବାର ଲୋଭ ଖୁବ୍ ବେଶୀ । ତେଣୁ ମୁଁ କହିବି, ଅନୁ ଏବେ ହଠାତ୍ ବାଙ୍କି ଯାଇ ପନିକି ହୋଇଯାଆନ୍ତା କି ! ମୁଁ କଉମାଛ ସାଜି ଗଡ଼ିଆର ଅତଳରୁ ଉଠିଆସି ବେକ ପତେଇ ଦିଅନ୍ତି । ବାବି ଏବେ ବାହାରେ । ସେ ପାଣି ଆଣିଛି, ବଜାର ଯାଇ ବାଇଗଣ, କଉମାଛ ଆଣିଛି । କଟି ମନ୍ଦିରରେ । ଘରେ କେବଳ ଅନୁ, ମୋ ହାତରେ ଡଟ୍‌ପେନ୍ । ଡଟ୍‌ପେନ୍ ମୁନରେ କବିତା । ମୋ ଭିତରେ ଗଳ୍ପ । ଅନୁ ହାତରେ ମାଛ, ଓଠରେ ଚମତ୍କାର ହସ, ସେ ମାଛଟାକୁ କାଟି ପକାଇବାର ଉଦ୍ୟମ କରୁଛି, ମାଛଟା ଦେହ ହଲାଇ ଚାଲିଛି । ପାଉଁଶବୋଳା ଆଖିରେ ବି ଅନୁର ମୁହଁକୁ ଚାହିଁରହିଛି ସେ । ମୋତେ ଇଚ୍ଛା ହେଉନି ଅନୁକୁ କହିବି–ଜାଣ, ଏବେ ବି ମୁଁ ବଞ୍ଚିଛି । ତୁମେ ବୁଝିପାରୁନ ! ମୋ ବେକରେ ପନିକି ଲଗାଇ ଦେଖିଲ ରକ୍ତ ବାହାରୁଛି କି ନା । କିନ୍ତୁ ମୁଁ ଏସବୁ କିଛି କହିବି ନାହିଁ । ଅନୁ ହାତରେ କଉମାଛ, ମୋ ହାତରେ ଡଟ୍‌ପେନ । ଅନୁ ସାମ୍ନାରେ ପନିକି, ମୋ ସାମ୍ନାରେ ଧଳା କାଗଜ । ମାଛଟା କଟା ହେଲେ ସେଇ ରକ୍ତରେ ମୁଁ କବିତା ଲେଖିବି । ଅନୁ କବିତା ବୁଝିପାରେ, ତଥାପି କଉମାଛଟାକୁ ପନିକିରେ ଦି'ଗଡ଼ କରୁନାହିଁ, ମୋ

ଦେହସାରା ଝାଳ କଣ୍ଟି ଆସୁଛି, ମୋ ଗାଲରୁ ଝାଳ ପୋଛି ନେଉ ନେଉ ମୋ ବେକରେ ହାତ ଦେଇ ଦେଖୁଛି ରକ୍ତ । କାଗଜରେ ବି ରକ୍ତ । ଓହୋ, ଅନୁ ମାଛଟାକୁ ଦି'ଗଡ଼ କରି ଦେଇଛି । ପନିକିରେ କାଳି, କଳାରଙ୍ଗ, ପିଭଟା କଟିଯାଇଛି ବୋଧହୁଏ । ବାବି ବାହାରେ, କଟି ମନ୍ଦିରରେ, କବାଟ ବେଶ୍ ଆଉଜା । ଅନୁ ମାଛଟାର ବେକ ଚିପି ସର୍ ସର୍ କରି ଅନ୍ତ ବାହାର କରି ଆଣୁଛି। କଉ ମାଛଟାର ହୃତ୍‌ପିଣ୍ଡ ଖୋଜି ପାଇଯାଇଛି । ତାକୁ ଟାଣି କାଢ଼ି ପକାଇ ଦେଉଛି । ମୋ ଭିତରୁ ସର୍ ସର୍ ହୋଇ ସବୁଗୁଡ଼ା ଯେପରି ବାହାରି ଯାଉଛନ୍ତି, ମୁଁ ଅନୁଭବ କରୁଛି ମୋ ଭିତରେ ଆଉ ହୃତ୍‌ପିଣ୍ଡ ନାହିଁ । ଅନୁ ହସୁଛି ଓ ମାଛଟା ଆନନ୍ଦରେ ଲାଞ୍ଜ ହଲାଇ ଚାଲିଛି, କାରଣ ହୃତ୍‌ପିଣ୍ଡର ଅନୁଭବ ଆଉ ଉପଲବ୍ଧି ପାଇଁ ଯେତେ ଦୁଃଖ, ଯେତେ ଯନ୍ତ୍ରଣା । ହୃତ୍‌ପିଣ୍ଡହୀନ ହୋଇ ବଞ୍ଚିବାଠାରୁ ବଳି ସୁଖ ଆଉ କିଛି ନାହିଁ, ମୁଁ ଗୋଡ଼ ହଲାଇ ଦେଖି ନେଉଛି ଏପର୍ଯ୍ୟନ୍ତ ବଞ୍ଚିଛି କି ନାହିଁ । ମୁଁ ଅନୁଭବ କରୁଛି, ତଥାପି ବି ମୁଁ ବେଶ୍ ବଞ୍ଚିଛି ଏବଂ ମୋର ବଞ୍ଚିବାଟା ଘୋଷଣା କରୁଛି ଖୁବ୍ ଭିତରେ, ଗୋଟିଏ ଧାଡ଼ି କବିତାରେ–ମୋ ହୃଦୟ କାଟିଦିଅ ପନିକିରେ, ତଥାପି ବି ମୁଁ ହସିବି, ମୁଁ ଦେଖିବି ତୁମ ମୁହଁ ଆକାଶରେ ନୂଆ ସୂର୍ଯ୍ୟୋଦୟ... ।

('ଜୀବନରଙ୍ଗ', ଅଷ୍ଟମ ବର୍ଷ, ନବମ ସଂଖ୍ୟା, ୧୯୭୪)



# ଏକ ବିଗ୍ରହହୀନ ମନ୍ଦିର ସାମ୍ନାରେ ମାଲବୋଝେଇ ଲରୀଟାର କିଛି ସମୟ ଅଟକି ଯାଇଥିବାର ଦୃଶ୍ୟ

ହଠାତ୍ ନିଦ ଭାଙ୍ଗିଯାଏ । ଖୋଲା ଝର୍କାଦେଇ ବାହାରକୁ ଚାହେଁ । ଘର ଭିତରେ ନିଷ୍ପ୍ରଭ ସବୁଜ ଆଲୁଅଟା ଯେଉଁ ସ୍ୱପ୍ନସବୁ ବୁଣି ଦେଉଥାଏ, ସେକଥା ମୁଁ ଭୁଲିଯାଏ । ଚୁପ୍‌ଚାପ୍ ଆଖି ମେଲାକରି ଶୋଇରହେ । ଝର୍କାଦେଇ ଶେଷରାତିର ନକ୍ଷତ୍ର ଗୋଟିଏ ଆଖିରେ ପଡ଼େ । କାନଡ଼େରି ଶୁଣେ, ପାଖଘରେ କିଏ ଯେପରି ଫିସ୍ ଫିସ୍ କଥା ହେଉଛି । ପବନରେ ହାହାକାର ଶୁଣାଯାଏ । ଗଛଲତାରେ ସନ ସନ ଶବ୍ଦ ଉଠେ । ଖୁବ୍ ଦୂରରେ ଗୋଟିଏ ନାମ ନଜଣା ପକ୍ଷୀ ଡାକିଯାଏ । କେଉଁ ବିଲ ରାସ୍ତା ବା ଅନ୍ଧାରୁଆ ଗଳି ଭିତରେ କିଏ ଯେପରି ଗୀତ ଗାଇ ଗାଇ ଚାଲିଯାଏ । ମୁଁ ବିଛଣାରେ ଉଠିବସେ । ଆଲୁଅ ଜଳାଇବା ପୂର୍ବରୁ ସେଇ ଦୃଶ୍ୟ ଦେଖିବାକୁ ଆରମ୍ଭ କରେ, ଯେଉଁ ଦୃଶ୍ୟ ଦେଖିବା ପଛରେ କିଛି କାରଣ ଥାଉ କି ନଥାଉ, ଅନେକ ସ୍ତବ୍ଧ ମୁଖର ମୁହୂର୍ତ୍ତରେ ଦେଖିବାକୁ ବାଧହୁଏ । ଦେଖେଁ, ଗୋଟାଏ ମାଲବୋଝେଇ ଲରୀ ଅନେକ ଅଙ୍କାବଙ୍କା ଖଣ୍ଡିଆ ପଥର ବାହାରିଥିବା ଧୂଳିଆ ରାସ୍ତାରେ ଆଗେଇ ଚାଲିଛି । ତା'ର ଯେପରି ଗନ୍ତବ୍ୟ ଅନେକ ଦୂର, ରାସ୍ତାରେ କୌଣସି ସ୍ଥାନରେ ଛିଡ଼ା ହେବନାହିଁ । ମୁଁ ଉଠି ଆଲୁଅ ଜଳାଏ । ସୁରେଇ ମୁହଁରେ ଗ୍ଲାସ ଧରେ । ସୁରେଇରେ ଅଳ୍ପ ପାଣି ଥାଏ ବୋଲି ଭକ୍‌ଭକ୍ କରି ଗ୍ଲାସ୍‌ଟା ଅଧେ ପୂର୍ଣ୍ଣହୁଏ । ପାଣିତକ ପିଇସାରି ତାକୁ ଲକ୍ଷ୍ୟକରେ । ସେ ମୋରି ଆଡ଼କୁ ମୁହଁକରି ଶୋଇଥାଏ । ତାର ପାଦତଳେ ଖୁବ୍ ଧଳା, ଆଦୌ ମଇଳା ନଥାଏ । ତା'ର ସାୟାର ଲେସ୍ ଦେଖାଯାଏ । ଲେସ୍‌ଟା ତରଙ୍ଗାୟିତ । ରାତିରେ ସେ ଅନ୍ତର୍ବାସ ପିନ୍ଧେନାହିଁ । ବ୍ଲାଉଜର ଉପର ବୋତାମ ଖୋଲାଥାଏ ବୋଲି ଛାତିର ଅନେକ ଅଂଶ ପରିଷ୍କାର ଦେଖାଯାଏ । ମୁଁ ତାର ନିଦୁଆ ଚେହେରା ଦେଖିବାକୁ ଖୁବ୍ ଭଲପାଏ । ତେଣୁ ଅନେକ ଥର ରାତି ଅଧରେ ଉଠି ଖୁଟ୍‌କରି ଆଲୁଅ ଜଳାଇଛି ଏବଂ ତା ପାଖରେ ଚୁପ୍‌ଚାପ୍ ବସି ରହିଛି । କେବେ ହଠାତ୍ ନିଦ ଭାଙ୍ଗିଗଲେ ସେ ଉଠିଛି ଓ ମୋତେ 'ପାଗଳ' ପର୍ଯ୍ୟନ୍ତ

କହିବାକୁ ଛାଡ଼ିନାହିଁ । ମୁଁ ଦେଖେ ତାର ଲମ୍ବା ବେଣୀଟା ତକିଆ ଉପରେ ଟିକିଏ ଖେଳେଇ ହୋଇ ତଳଆଡ଼କୁ ଲମ୍ବିଯାଇଛି । ହାତରେ ଗୋଛାଏ କାଚଚୁଡ଼ି । ଚୁଡ଼ି ପିନ୍ଧିବାକୁ ଖୁବ୍ ଭଲପାଏ ସେ । ମୋର କଣ୍ଠସଂଲଗ୍ନା ହୋଇ ମୁହଁ ପାଖକୁ ଚାଲିଆସିଲେ ତାର ଚୁଡ଼ିର ଝଙ୍କାରରେ ମୋ ରକ୍ତରେ ଘୁଙ୍ଗୁର ବାଜେ । ଆଉ ତିନିମାସ ପରେ ଆମ ବିବାହର ବର୍ଷେ ପୂରିବ । ମୁଁ ଝର୍କା ପାଖକୁ ଯାଏ । କିଏ ଯେପରି କେଉଁଠି କାନ୍ଦୁଛି । ଆକାଶର ନକ୍ଷତ୍ର ସବୁ ଫିକା ହଳଦିଆ । ଆକାଶରେ କେତୋଟି ଛିଣ୍ଡା ମେଘ । ଏଇ ସମୟରେ ଠିକ୍ ମୋର ହଜିଯାଇଥିବା ପ୍ରେମିକାମାନଙ୍କ କଥା ମନେ ପଡ଼ିବା ଉଚିତ । ଖୁବ୍ ଭଲଭାବେ ମନେ ପଡ଼େ ନାହିଁ । କେବଳ ସାମାନ୍ୟ ମନେପଡ଼େ, ଥରେ ଗୋଟିଏ ଝିଅ ମତେ ଖୁବ୍ ସ୍ନେହକରି ମୋ ଆଖିରୁ ଅସହାୟତା ଓ ନିଃସଙ୍ଗତାର ଲୁହ ପୋଛି ନେଇଥିଲା । ଆଉ ଅନେକ ପ୍ରତିଶ୍ରୁତି ଦେଇ ଶେଷରେ ସମ୍ପର୍କ ତୁଟାଇବା ପାଇଁ ଏକ କଦର୍ଯ୍ୟ ଚିଠି ଲେଖି ମୋ ହାତପାହାନ୍ତରୁ ଦୂରକୁ ପଳେଇଥିଲା । ଆଉ ଜଣେ ପ୍ରତିଶ୍ରୁତି ଇତ୍ୟାଦି କିଛି ନ ଦେଇ ମୋତେ ବୁଝିବାର ଚେଷ୍ଟା କରୁଥିଲା ଏବଂ ମୁଁ ତାର ପବିତ୍ର ମନଖୋଲା ହସ ଆଉ ନିରୀହ ଆଖିପତାରେ ଅନେକ ଦିନ ବଞ୍ଚିରହିଲା ଉତ୍ତାରୁ ସେ ବି ବାଧହୋଇ ଅନ୍ୟର ହୋଇଗଲା । ତା'ପରେ ଆଉ ଜଣେ, ପୁଣି ଆଉ ଜଣେ । କ୍ରମେ ଭାବନାଟା ଲମ୍ବିଯାଏ । ମୁଁ କ୍ରମେ ଝର୍କା ରେଲିଂ ବାହାରେ ପରିବ୍ୟାପ୍ତ ହୋଇଯାଏ । ଭାବେ, ମୁଁ ଜୀବନରେ ଯେଉଁମାନଙ୍କୁ ଚାହିଁ ମଧ ପାଇନାହିଁ ସେମାନେ ଯଦି ଏହି ମୁହୂର୍ତ୍ତରେ ମୋତେ ଦେଖନ୍ତି ତା'ହେଲେ ବୁଝିପାରିବେ ଯେ, ସବୁଥାଇ ମୁଁ କେତେ ଦରିଦ୍ର, ସମସ୍ତେ ଥାଇ ବି ମୁଁ କେତେ ଅସହାୟ । ମୁଁ ଆଉଥରେ ତାକୁ ଚାହେଁ । ସୁନ୍ଦର ଓଠ, ଛୋଟ ମୁଖମଣ୍ଡଳ, ଚମତ୍କାର ଆଖି ! ଆଖିରେ ଅନେକ ସ୍ୱପ୍ନ, ଅନେକ ପରିତୃପ୍ତି । ଶୋଇବାର ଭଙ୍ଗୀଟି ବି ଚମତ୍କାର । ଦେହର ସବୁ ବକ୍ରରେଖା କେତେ ନିର୍ଭୁଲ ଭାବେ ଅଙ୍କିତ । କିନ୍ତୁ ଏ ସବୁର ଅର୍ଥ କଣ ? ମୁଁ ସେଇ କେତୋଟି ମୁହୂର୍ତ୍ତ ପୂର୍ବରୁ ଘଟିଯାଉଥିବା ଉତ୍ତପ୍ତ ମୁହୂର୍ତ୍ତ କଥା ମନେ କରେ ନାହିଁ । ଦୂରରୁ କେଉଁ ଏକ ରାତିଟ୍ରେନ୍‌ର ଶବ୍ଦହୁଏ । ମୋର ମନେହୁଏ ଗୋଟିଏ ମୋଡ଼ ପାରିହେବା ମାତ୍ରେ ଲରୀଟାର ଗତି କମିଆସୁଛି । କ୍ରମେ ଲରୀଟା ବନ୍ଦହୁଏ ଗୋଟିଏ ମନ୍ଦିର ସାମ୍ନାରେ । ମନ୍ଦିରଟି ଭଙ୍ଗା, ପରିତ୍ୟକ୍ତ; ସେଠି ବିଗ୍ରହ ନାହିଁ । ଲରୀର ଶବ୍ଦ ବନ୍ଦ ହେଲା ମାତ୍ରେ ମୋ ଭିତରୁ ଏକ ଅଜବ ଶବ୍ଦ ଉଠିଆସେ । ହଠାତ୍ ପୋଡ଼ା ପେଟ୍ରୋଲ ଗନ୍ଧ ମୋ' ନାକରେ ବାଜେ । ମୁଁ ସନ୍ତର୍ପଣରେ କବାଟ ଖୋଲି ସିଡ଼ିରେ ଚଢ଼େ । ତା'ପରେ ଉପରକୁ ଚାହିଁ ଦେଖେ ଏକ ମୁକ୍ତ ନକ୍ଷତ୍ରଭରା ଆକାଶ । ମୋ ଚାରିପଟେ ଅନେକ ନିଦ୍ରିତ କୋଠାଘର । ଫିକା ଜ୍ୟୋତ୍ସ୍ନାରେ ରାସ୍ତା ଉପରେ ସେମାନଙ୍କର ଭୌତିକ କଳାଛାଇ । ଟ୍ରେନ୍‌ଟାର ଶବ୍ଦ କ୍ରମେ ଦୂରକୁ ଘୁଞ୍ଚିଯାଏ । ଗୋଟିଏ ପୋଲ ଉପରେ ଅନେକ ଭାରି ଲୁହାର ଚକ ଘଡ଼ ଘଡ଼ କରି ଶବ୍ଦ ହେଲା

ଉତ୍ତାରୁ ଟ୍ରେନ୍‌ଟା ସ୍ୱପ୍ନଭଳି ମିଳେଇଯାଏ । ମୁଁ ଅନ୍ୟମନସ୍କ ହୋଇ ଉଠେ, ସେଇ ଟ୍ରେନ୍‌ର ଯାତ୍ରୀମାନଙ୍କ କଥା, ଯେଉଁମାନେ ପ୍ରତିମୁହୂର୍ତ୍ତରେ ମୋଠାରୁ , ମୋ ଚିନ୍ତାଠାରୁ, ମୋ ସ୍ମୃତି, ସ୍ୱପ୍ନଠାରୁ, ମୋର ଅନେକ ଅବ୍ୟକ୍ତ ଅନୁଭବ, ଅନେକ ଅଲୁପ୍ତ ଉପଲବ୍ଧିଠାରୁ ଅନେକ ଦୂରକୁ ଘୁଞ୍ଚିଯାଉଛନ୍ତି । ଏସବୁ କଥା ଚିନ୍ତା କଲାମାତ୍ରେ ମୁଁ ତରଳିଯାଏ । ସ୍ରୋତ ହୋଇ ବହି ଗୋଟିଏ ନଦୀରେ ପରିଣତ ହୋଇଯାଏ । ଅନେକ ବଣ ବିଲ ପାହାଡ଼ ପର୍ବତ ଅତିକ୍ରମ କରି କେଉଁ ଏକ ଅଦେଖା ପଦାର୍ଥ ଖୋଜୁ ଖୋଜୁ ସମୁଦ୍ରରେ ମିଶିବା ପୂର୍ବରୁ ହଠାତ୍ ଶୁଣେ ଗୋଟିଏ କୁକୁରର ଚିତ୍କାର । ତାକୁ ବୋଲି ନିଶାଚର ଆକ୍ରମଣ କରେ ବୋଧହୁଏ । କୁକୁରଟା ଛାଇ-ଅନ୍ଧାରୀ ପଡ଼ିଆ ଆଡ଼େ ଦୌଡ଼ି ପଳାଏ । ମୁଁ ଆଉ ଏକ ପଡ଼ିଆ କଥା ଚିନ୍ତାକରେ, ଯେଉଁ ପଡ଼ିଆରେ ସଞ୍ଜବେଳେ ଅନେକ ଲୋକ ଯାଇ ବସନ୍ତି । ଅନେକ- ପ୍ରେମିକା-ପ୍ରେମିକା ବସି ଅନେକ ଭାବପ୍ରବଣତାକୁ ସେଇଠି ହାଲୁକା କରନ୍ତି, ଅନେକ ମିଛସ୍ୱପ୍ନ ଦେଖନ୍ତି । ଅନେକ ଖେଳାଳି ସେଇଠି ଖେଳି ଖେଳି କ୍ଳାନ୍ତ ହୋଇ ଘରକୁ ଫେରିଆସନ୍ତି । ଅନେକ ଗୋରୁଗାଈ ସେଇ ପଡ଼ିଆରେ ମୁହଁ ମାରନ୍ତି । ପଡ଼ିଆଟାର ଉତ୍ତରପଟ ବୁଦୁବୁଦୁକିଆ ଅଂଶରେ ଖୁବ୍ ସକାଳେ ଅନେକ ପୁରୁଷ, ସ୍ତ୍ରୀ ବର୍ଜ୍ୟବସ୍ତୁ ବି ତ୍ୟାଗ କରନ୍ତି । ସେମାନଙ୍କ କାହାରି କଥା ମୁଁ ଚିନ୍ତା କରେନାହିଁ । କେବଳ ପଡ଼ିଆଟା କଥା ହିଁ ଚିନ୍ତାକରେ । କେମିତି ଏକ ପ୍ରକାର ଯନ୍ତ୍ରଣା ମୋ ଭିତରେ ଘୁରିବୁଲେ । ମୁଁ ଭାବେ ପଡ଼ିଆଟାର ଟିକିଟିକି ଘାସଫୁଲ ଆଉ ଦୁବଘାସ ତଳେ ତଳେ ଘୂରି ବୁଲୁଥିବା ପିମ୍ପୁଡ଼ିମାନଙ୍କ କଥା । ମୋଭିତରେ ଯନ୍ତ୍ରଣାଟା ବେଶ୍ ଜମିଆସେ । ପୃଥିବୀ ଓ ତାର ଜ୍ୟୋତ୍ସ୍ନାର ପତଳା ଲୁଗା ଅର୍ଥହୀନ ମନେହୁଏ । ମନେହୁଏ ଗଳିମୁଣ୍ଡରେ ଗୋଟିଏ ମଦୁଆ ଯେମିତି ଏକ ପ୍ରକାର ଗୀତଗାଇ ଟଳି ଟଳି ଚାଲିଯାଉଛି । ମୋତେ ଯେମିତି ସେ ଗୀତର ଅର୍ଥ ବୁଝିବାକୁ ହେବ । କେଉଁ ଏକ ଦୁର୍ବୋଧ କବିତାର ଲାଇନ୍ ବା ହଜିଯାଇଥିବା ପୁରୁଣା ଗୀତର ସ୍ୱର ମୋ ଭିତରେ ଧୀରେ ଧୀରେ ଜାଗିଉଠେ । ପୃଥିବୀଟା ହଠାତ୍ ଅନେକ ପବିତ୍ର ହୋଇଯାଇଛି ବୋଲି ମନେହୁଏ । ଏଇ ପ୍ରକାର ପବିତ୍ର ମୁହୂର୍ତ୍ତରେ ମୋର ଇଚ୍ଛା ହେବାକଥା—ମୋ ଜୀବନର ସବୁଠୁ ଈପ୍‌ସିତା ନାରୀଟି ସ୍ନାନକରି ଆନିତମ୍ବ କେଶ ଝୁଲାଇ ଝୁଲାଇ ଏକ ଧଳା ତନ୍ତଲୁଗା ପିନ୍ଧି ମୋ ସାମ୍ନାରେ ଛିଡ଼ା ହୋଇ କହନ୍ତା— ହେ, ଏବେ ବି ତୁମେ ମତେ ଭଲପାଅ ? ମୁଁ କିଛି ଉତ୍ତର ନ ଦେଇ ଧୀରେ ଧୀରେ ତା ପାଦଛୁଇଁ ପ୍ରଣାମ କରନ୍ତି । ମୋ ମୁଣ୍ଡକୁ ତା ଛାତିକୁ ଆଉଜାଇ ନେଇ ମୋ ପିଠିରେ ସେ ହାତ ବୁଲାଇ ଦିଅନ୍ତା । କିନ୍ତୁ ଏ ମୁହୂର୍ତ୍ତରେ ମୋର ସେ ପ୍ରକାର ଇଚ୍ଛା ଜାଗିଉଠେନା କିମ୍ବା ଆଉ କିଛି ପବିତ୍ର ଅଭିଳାଷ କଡ଼ ଲେଉଟାଏନା । କେବଳ ମନେହୁଏ ମନ୍ଦିର ସାମ୍ନାରେ ଅଟକି ଯାଇଥିବା ମାଲବୋଝେଇ ଲରୀଟା ଅନେକ ମାଲପତ୍ର ଓହ୍ଲାଇଦେଇ ଉପରକୁ ମୁହଁଟେକି ବିଶ୍ରାମ ନେଉଛି । ହଠାତ୍ ସେଇ ଜହ୍ନରାତିରେ ଦୂରରୁ କୋଇଲିର

ଡାକ ଶୁଣେ । ଦକ୍ଷିଣ ଦିଗରୁ ରାତି ଶେଷରେ ହୁହୁ ବତାସ ବହିଆସି ଦେହ ଥରାଇ ଦିଏ । କେମିତି ଶୀତ ଶୀତ ଲାଗେ । ଭିତରଟା ଖୁବ୍ ଶୂନ୍ୟ ହୋଇଯାଇଛି ବୋଲି ମନେହୁଏ । ସେ ପବନଟା କାନ ପାଖଦେଇ ହୁହୁ କରି ବହିଗଲେ ଅନେକ ଘଟଣା ଓ ଅନେକ ପୁରୁଣା ଚିତ୍ର ଫଡ଼୍ ଫଡ଼୍ ହୋଇ ଓଲଟିପଡ଼େ । କିନ୍ତୁ କିଛିଟା ସଂପୂର୍ଣ୍ଣ ଭାବେ ମନେପଡ଼େ ନାହିଁ । ମୋ ଭିତରେ ଅନେକ ବନ୍ଦ ଝର୍କାର କବାଟ ଧଡ଼୍ଧାଡ଼୍ ହୋଇ ଖୋଲିଯିବାକୁ ଆରମ୍ଭ କରେ । ଅନେକ କୋଠରି ଭିତରୁ କେବଳ ଅନେକ ଦିନରୁ ସଞ୍ଚିତ ଆବଦ୍ଧ ବାୟୁ ବାହାରିଯାଏ । କୋଠରି ଶୂନ୍ୟ । ମୋତେ ମନେହୁଏ ବାୟୁମଣ୍ଡଳ ମଧ୍ୟରେ ଜ୍ୟୋତ୍ସ୍ନାର ଆଦିଗନ୍ତ ବ୍ୟାପ୍ତି ଭିତରେ ଗୋଟିଏ ବ୍ଲେଡ଼୍ଭଳି ପଦାର୍ଥ କେଉଁଠି ଯେପରି ଭାସିବୁଲୁଛି । ପୃଥିବୀର ସବୁ ଅଦୃଶ୍ୟ ସତ୍ତାକୁ ସମସ୍ତଙ୍କ ଅଲକ୍ଷ୍ୟରେ କାଟି କାଟି ଯେପରି ବ୍ଲେଡ଼୍ଟି ପୃଥିବୀ ପରିକ୍ରମା କରୁଛି । ମୁଁ ବୁଝିପାରେ, ମୋ ବେକ ପାଖକୁ ଲାଗି ଆସିବାକୁ ଖୁବ୍ ବେଶୀ ଡେରିନାହିଁ । ପବନ ଗଛପତ୍ର ଦୋହଲାଇ ଦିଏ । ଥାକ ଥାକ କୋଠାର ଜଙ୍ଗଲରେ କେଉଁ ଏକ କୋଠାର କେଉଁ ଏକ ନିର୍ଜନ ଖୋପରେ ଚୁପ୍‌ଚାପ୍ ଆଖି ବନ୍ଦ କରି ବସିଥିବା ଗୋଟିଏ ନିଃସଙ୍ଗ ପାରା କଥା ମୁଁ ମନେ ପକାଏ । ହଠାତ୍ ମୁଁ ଖୁବ୍ ସଙ୍କୁଚିତ ହୋଇ ଶେଷରେ ଗୋଟିଏ ଆଲୋକବିନ୍ଦୁ ହୋଇଯାଏ । ସେ ଆଲୋକ ପୃଥିବୀର ସର୍ବତ୍ର ବ୍ୟାପିଯାଏ । ଦେଖେ, ଖୁବ୍ ଦୂରରେ ସବୁ ମଣିଷର ଅଲକ୍ଷ୍ୟରେ ଏକ ଜ୍ୟୋତିର୍ମୟ ପୁରୁଷ ଅବସ୍ଥାପିତ, ଯାହା ଦେହରୁ ଆଲୋକର ନଦୀ ବହିଆସି ପୃଥିବୀର ଅନ୍ଧାରକୁ ଦୂର କରୁଛି । ସତତ ପ୍ରସନ୍ନ ସେଇ ମୂର୍ତ୍ତିକୁ ସ୍ମରଣ କରି ମନେହୁଏ ମୁଁ ଯେପରି ଖୁବ୍ ଆଲୋକିତ ହୋଇଉଠିଛି । ଜହ୍ନଟା କ୍ରମେ କୋଠାଗୁଡ଼ିକର ପଛ ପାଖକୁ ଓହ୍ଲେଇଯାଏ । ଘରର ଛାଇଗୁଡ଼ା ଭୌତିକ ହୋଇ ଖୁବ୍ ଦୂରକୁ ଲମ୍ବିଯାଏ । ପୃଥିବୀ ଟିକେ ବେଶୀ ଅନ୍ଧକାରାଚ୍ଛନ୍ନ ହୋଇଯାଇଛି ବୋଲି ମୁଁ ସଚେତନ ହୁଏ । ଅଧା ଅନ୍ଧାରର ଆଲୋକଟା କେମିତି ଖୁବ୍ ପବିତ୍ର ଓ ନିଃସଙ୍ଗ । ସବୁ ହଠାତ୍ ଅବାନ୍ତର ହେବାକୁ ଆରମ୍ଭ କରେ । ବାୟୁମଣ୍ଡଳରେ ଭାସି ବୁଲୁଥିବା ସେଇ ଅଦୃଶ୍ୟ ବ୍ଲେଡ଼୍‌କୁ ମୁଁ ଅପେକ୍ଷା କରେ । ମୁଁ ଗଦ୍‌ଗଦ ହୋଇଉଠେ । କେଉଁ ଏକ ଅଦୃଶ୍ୟ ପ୍ରାପ୍ତିର ଅଭାବରେ ଚିତ୍କାର କରି କାନ୍ଦିବାକୁ ଇଚ୍ଛା ହୁଏ । କାହାସହ ଯେପରି ନିବିଡ଼ ଭାବେ ସଂଲଗ୍ନ ହେବା ପାଇଁ ମୁଁ ଅଣନିଃଶ୍ୱାସୀ ହୋଇ ଉଠେ । ମୋ ଆଖିରୁ ଲୁହ ବୋହିଯାଏ । ମୋ ଭିତରେ ନୀରବରେ ଚିତ୍କାର କରି ଆତ୍ମା-ପୁରୁଷ କାନ୍ଦୁଥିବାର ମୁଁ ପରିଷ୍କାର ଜାଣିପାରେ । ଭୀଷଣ ଭାବେ ସେଇ ଅଦୃଶ୍ୟ ବ୍ଲେଡ଼୍‌କୁ ଅପେକ୍ଷା କରେ । ପ୍ରାର୍ଥନାର ଭଙ୍ଗୀରେ ଆବାହନୀ ମନ୍ତ୍ର ଉଚ୍ଚାରଣ କରେ । କିନ୍ତୁ କେହି ଆସେ ନାହିଁ । କୋଠାର କେଉଁ ଅଲୌକିକ ଖୋପରେ ବସି ରହିଥିବା ପାରାଟି ଦେହରୁ ଗୋଟିଏ ପର ଖସିପଡ଼େ ଓ ବାୟୁମଣ୍ଡଳ କାଟି କାଟି ସେଇ ପରଟି ଚହଲି ଚହଲି ଭୂଇଁ ଆଡ଼େ ଆଗେଇଯାଏ । ହଠାତ୍ ଦଉଡ଼ି, ରେଳଧାରଣା, ବିଷ ସହ ଆତ୍ମହତ୍ୟାର

ସବୁ ସହଜ ସୁଲଭ ଉପାଦାନ ଗୋଟିଏ ପରେ ଗୋଟିଏ ମନକୁ ଆସେ । କିନ୍ତୁ କୌଣସିଟା ଭଲ ଲାଗେ ନାହିଁ । ଶେଷରେ ସିଡ଼ିରେ ତଳକୁ ତଳକୁ ଓହ୍ଲାଇ ଆସେ । ସେ ଯେମିତି ଶୋଇଥିବାର ଦେଖେ, ତା' ଆଡ଼େ ପଛ କରି ସେଲଫ୍‌ରୁ ସେଭିଂ ବାକ୍‌ସ ବାହାର କରେ । ଟେବୁଲ ଉପରେ ସେଫ୍‌ଟି ରେଜର, ବ୍ଲେଡ୍‌, ବ୍ରସ୍‌, କ୍ରିମ୍‌, ସବୁ ସଜେଇ ରଖେ । ସାମ୍ନାରେ ଦର୍ପଣ ରଖେ । ମୋ ମୁହଁଟା ଆଉ କାହାର ମୁହଁଭଳି ମନେହୁଏ । ବ୍ଲେଡ୍‌ ଖୋଳମୁକ୍ତ କରେ । ତାକୁ ଚାହେଁ, ତା ସାୟାର ତରଙ୍ଗାୟିତ ଲେସ୍‌ ଦେଖାଯାଏ । ଛାତିର ଉପର ଅଂଶ ବହୁ ପରିମାଣରେ ଦେଖାଯାଏ । ମୁଁ ବାରମ୍ବାର ତା ବେକ ତଳକୁ ଲକ୍ଷ୍ୟ କରେ । ବେକରେ ଫାଶି ଦାଗ ଭଳି ତିନୋଟି ସୁନ୍ଦର ଗାର । ତା ଆଖିପତାରେ ସାରା ବିଶ୍ୱର ସ୍ୱପ୍ନ ଓହ୍ଲାଇ ଆସିଛି ବୋଲି ମନେହୁଏ । ସ୍ମରଣ କରେ, ନିଜ ଆସିବା ପୂର୍ବରୁ ସେ କହୁଥିଲା ଯେ, ମୋର ଦାଢ଼ି ଘଷି ହୋଇ ତାର ବେକ, ଗାଲ, ଛାତି ଖୁବ୍‌ ଜ୍ୱାଳା କରୁଛି । ବ୍ଲେଡ୍‌ଟା ମୋ ସାମ୍ନାରେ ଚକ୍‌ ଚକ୍‌ କରିଉଠେ । ପୋଷ୍ଟମର୍ଟମ ଜାତୀୟ ଶବ୍ଦ ମୋର ଖୁବ୍‌ ଭିତରେ ବୁଣି ହୋଇଯାଏ । ଆଉ ଥରେ ତାର ନରମ ଗାଲକୁ ଚାହେଁ, ସେଇ ଗାଲ ମୋ ଛାତିରେ ମୁଣ୍ଡ ରଖି ଯେତେବେଳେ ତାର ପରପୁରୁଷମାନଙ୍କୁ ସ୍ୱପ୍ନ ଦେଖେ, ସେତେବେଳେ ମୋତେ ତା ପ୍ରତି ଖୁବ୍‌ ଦୟା ହୁଏ । ମୁଁ ଜାଣେ, ଆମେ ବୁଣିଥିବା ଶସ୍ୟରୁ ଗଛ ହୋଇ ଖୁବ୍‌ ଶୀଘ୍ର ଆମ ଉତ୍ତରପୁରୁଷମାନେ ଆମ କୋଳରେ ଫଳ ଭଳି ଖସିପଡ଼େ । ମୁଁ ଆଉଥରେ ଦର୍ପଣକୁ ଚାହେଁ, ମୋ ମୁହଁ ପଛରେ ମୋରି ମୁହଁ ଭଳି ଆଉ ଏକ ମୁହଁ ଦେଖାଯାଏ । ଗାଲରେ କ୍ରିମ୍‌ ଲଗାଇ ବ୍ରସ୍‌ ଘଷେ । ଗାଲ ଦାଢ଼ି ହାଲୁକା ଫେଣରେ ଭର୍ତ୍ତି ହୋଇଯାଏ । ସେଫ୍‌ଟି ରେଜର୍‌ରେ ଧୀରେ ଧୀରେ ସବୁ ପରିଷ୍କାର କରିଦିଏ । କାନ କଡ଼ରେ, ଓଠ ପାଖରେ, ନାକ ତଳେ ଅବଶିଷ୍ଟ ଲାଖିଥିବା ଫେଣ ସବୁ ବାଁହାତ ପାପୁଲିରେ ପୋଛିଦେଲା ପରେ ଦର୍ପଣରେ ଏକ ଦିବ୍ୟ ସୌମ୍ୟ ମୂର୍ତ୍ତି ଦେଖେ । ବ୍ଲେଡ୍‌ଟାକୁ ହାତରେ ଧରି ତା ଦେହର ଚମତ୍କାର ବକ୍ରରେଖାମାନଙ୍କ ଉପରେ ଦେଇ, ଝରକା ରେଲିଂ ଆରପଟେ ଘୋଟି ଆସୁଥିବା ଅନ୍ଧାରର ଆଲୁଅକୁ ଚାହିଁ ମନେ କରେ, ମନ୍ଦିର ସାମ୍ନାରେ କିଛି ସମୟ ପାଇଁ ଛିଡ଼ା ହୋଇଥିବା ଲରୀଟା ଆଗଭଳି ପୁଣି ଧୂଳି ଉଡ଼ାଇ ଚାଲିବା ଆରମ୍ଭ କରି ଦେଇଛି ।

('ଝଙ୍କାର', ୨୬ଶ ବର୍ଷ, ୪ର୍ଥ ସଂଖ୍ୟା, ଜୁଲାଇ, ୧୯୭୪)



# ଆଖିର ବାଲି

ସବୁ କାମଦାମ ଭିତରେ ମୋ ହାତଟା ବାଁ ଆଖିକୁ ଚାଲିଯାଉଚି । ଖଚ ଖଚ କରୁଚି ଆଖିଟା । ଭିତରେ ବାଲିଗରଡ଼ାଟା କେଉଁଠି ଯେମିତି ଲୁଚିବସି ରହିଚି । ଆଜି ଉପରଓଳି ବରଷାରେ ଭିଜିଯାଇଥିଲି । ଭିଜି ଭିଜି ଅଫିସରୁ ଘରକୁ ଫେରିଥିଲି । ମୋ କଡ଼ ଦେଇ କାଚବନ୍ଦ କାରରେ ଅନେକ ଚଷମା ଲଗା ହୋଇ ସରସର କରି ବାହାରି ଯାଉଥିଲେ । ମୋ ଆଖିପତା ଉପରେ ବର୍ଷାପାଣି ଜମି ବିନ୍ଦୁ ହେଉଥିଲା । ବିନ୍ଦୁ ବିନ୍ଦୁ ଜମି ଆଖି କଡ଼ ଦେଇ ଗାଲ ଉପରେ ବହିଆସୁଥିଲା । ମଝିରେ ମଝିରେ ମୁଣ୍ଡର ତେଲମିଶା ମଇଳା ପାଣି ପଶିଯାଉଥିଲା । ପାଟିଟା କେମିତି ଲୁଣିଆ ଲୁଣିଆ ଲାଗିଲା । ସେଇ ପାଣିରୁ ଗୋଟାଏ ଦୁଇଟା ବିନ୍ଦୁ ଆଖିରେ ପଶିଗଲା ବୋଧହୁଏ । ଆଖିଟା ଜଳିଲା । ଆଖିଟାକୁ ଟିକିଏ ଦଳିଦେଲି । ଆଖି ଉପର ପତାରେ ଗୋଟିଏ ବାଲିଗରଡ଼ା ଭଳି ପଦାର୍ଥ ଖଚଖଚ ହେଲା । ଘରେ ପହଞ୍ଚି ଆଇନାରେ ମୋ ଆଖି ଦେଖି ଚମକିଗଲି । ଆଖିଟା ଭୀଷଣ ନାଲି ପଡ଼ିଯାଇଚି । ମୋ ମୁଣ୍ଡ ବାଳ ବର୍ଷାରେ ଚାପି ହୋଇ ବସିଯାଇଚି । ଆଇନାରେ ମୋତେ ଖୁବ୍ ବେଶି ଦରିଦ୍ର ଓ ଅସହାୟ ମନେହେଲା । ମୁଣ୍ଡ ପୋଛୁ ପୋଛୁ ସୀମାକୁ କହିଲି–ଟିକେ କଡ଼ା କରି ଚା' ଆଣ, ଚା'ରେ ଅଦା ଦେବ ।

ସୀମା ଆସି ମୋ ସାମ୍ନାରେ ଛିଡ଼ା ହେଲା–ବର୍ଷାରେ ଏମିତି ଓଦା ହେଲ କାହିଁକି ? ଅଫିସରେ ଆଉ ଟିକେ ରହିଯାଇଥିଲେ କ'ଣ କ୍ଷତି ହୋଇଥାନ୍ତା !

–ତେଣେ ଲୁଗାପଟା ବଦଳାଇ ଟିଉସନ ଯିବାକୁ ହେବ ଯେ !

–ଦିନେ ଅଧେ ଟିଉସନ ନ ଗଲେ କେଉଁଠି ଏମିତି ପୃଥିବୀ ପ୍ରଳୟ ହୋଇ ଯାଉଚି । ସକାଳୁ ସଞ୍ଜଯାଏ ତ କାମ । ଦଣ୍ଡେ ବି ଘରେ ରହିବ ନାହିଁ ।

–ଭାଷଣ ବନ୍ଦ କର, ଆଉ ଚା' କରି ଆଣ ।

ମୁଁ ମୁଣ୍ଡରେ ପାନିଆ ଚଳେଇଲି । ପାନିଆରେ ମଇଳା ଜମିଗଲାଣି । ସେଇ ଗୋଟିଏ ପାନିଆ ମୁଁ, ସୀମା, ବାବୁଲୁ, ଟୁନା, ବୁବୁ ସମସ୍ତଙ୍କ ମୁଣ୍ଡରେ ଚାଲେ । ପାନିଆର ଦୁଇ ତିନୋଟି ଦାନ୍ତ ବି ନାହିଁ । ମୋ ମୁଣ୍ଡରୁ ଅନେକ ବାଳ ଉପୁଡୁଚି ଆଜିକାଲି । ଭେଜାଲର ଆକ୍ରମଣ ।

ସୀମା ସେମିତି ଛିଡ଼ା ହୋଇ ମୋ ମୁଣ୍ଡ କୁଣ୍ଡାଇବା ଦେଖୁଥିଲା । ମୁଁ ହଠାତ୍ ବିସ୍ଫୋରିତ ହୋଇଯାନ୍ତି । କିନ୍ତୁ ସମ୍ଭାଳି ନେଲି । ସୀମା ଖୁବ୍ ଧୀର ସ୍ୱରରେ କହିଲା– ଆଜି ସକାଳେ କହୁଥିଲି ପରା ଘରେ ଚିନି ନାହିଁ ।

ଘରକୁ ଆସିଲେ ଚା, ଚିନି, ଚାଉଳ, ତେଲ, ଲୁଣ, ଡାଲି, ମୋର ମନେହେଲା ମୁଁ ଆଇନା କଚାଡ଼ି ଦେଇଚି । ପାନିଆର ସବୁ ଦାନ୍ତ କଟ୍‌ମଟ୍ କରି ଭାଙ୍ଗି ପକେଇଚି । ମୁଣ୍ଡର ବାଳଗୁଡ଼ା ଉପାଡ଼ି ପକାଇଚି । ଭିତରର ସବୁ କ୍ରିୟା, ପ୍ରକ୍ରିୟା, ପ୍ରତିକ୍ରିୟା ବନ୍ଦ କରି ପଚାରିଲି–

–ପିଲାମାନେ ଗଲେ କୁଆଡ଼େ ?

–ବାବ୍‌ଲୁ ଏବେ ହେମବାବୁ ଘରେ କେରମ୍ ଖେଳୁଥିବ । ଟୁନା ଆଉ ବୁବୁ ଗଦାଧର ବାବୁଙ୍କ ପିଲାଙ୍କ ସଙ୍ଗେ ଥିବେ । ବର୍ଷା ଛାଡ଼ିଲେ ଆସିବେ ।

ମୁଁ ଥଣ୍ଡା ସ୍ୱରରେ କହିଲି–ଚିନି ନ ଦେଇ କେବଳ ଅଦା ଲୁଣରେ ଚା' କରି ଆଣ ।

–ଅଦା ତ ନାହିଁ । ସେଦିନ ମାଂସରେ ତ ସବୁ ଅଦା ପକେଇ ଦେଲି । ଜିନିଷ କିଛି ଘରକୁ ଆଣିବନି ଆଉ ସବୁବେଳେ ଅଫିସର ଭଳି ହୁକୁମ ଛାଡୁଥିବ ।

ମୋ ଭିତରେ ହୁଏତ ହୁକୁମ ଛାଡ଼ିବାର ପ୍ରବୃତ୍ତି ଅଛି, କିନ୍ତୁ ସବୁ ପ୍ରବୃତ୍ତି ଦବିଯାଏ ଅଫିସରେ । ମୋ ବଡ଼ ଅଫିସରର ହୁକୁମ ଶୁଣୁଶୁଣୁ ମୋ ଭିତରେ ଶୁଣେ ଲକ୍ଷଲକ୍ଷ ଫାଇଲ ପୃଷ୍ଠା ଉଡୁଥିବାର ଶବ୍ଦ । ମୋ ଭିତରେ ଅଫିସରର କଲିଂବେଲ ବୀଭତ୍ସ ସ୍ୱରରେ ଚିତ୍କାର କରେ । ମୋ ଭିତରର ସୂକ୍ଷ୍ମ ଚେତନାମାନଙ୍କ ପିଠିରେ ଖଟ୍ ଖଟ୍ ମାଡ଼ ଦେଇ ଟାଇପ୍ ମେସିନ୍ ଆଗେଇ ଚାଲେ । ମୁଁ କେବଳ ଗୋପନରେ ମୋତେ ହିଁ ହୁକୁମ ଦିଏ–ଆଜି ବଜାରରୁ ପୋଇଶାଗ, ଚୁଙ୍ଗୁଡ଼ି ଆଣିବୁ । ଆଜି ସୀମା ପାଇଁ ନୂଆ ବ୍ଲାଉଜ, ଆଜି ବାବ୍‌ଲୁ ପାଇଁ କେରମବୋର୍ଡ଼, ଟୁନା ପାଇଁ ବିରିବରା ଓ ବୁବୁ ପାଇଁ କଣ୍ଢେଇ ମାଙ୍କଡ଼ ଆଣିବୁ । ଯେତେବେଳେ ବିରକ୍ତ ହୁଏ ସେତେବେଳେ ସୀମା ଉପରେ ହୁକୁମ ଚାଲେ । ପୁଣି ସଚେତନ ହୁଏ । ଲାଭ ନାହିଁ ।

ଆଖିରୁ ପାଣି ବହିବା ଆରମ୍ଭ କଲାଣି । ଖଚ ଖଚ ହେଉଚି ଭିତରଟା । ଥରେ ଦିଥର ଉପରପତା ତଳପତା ଉପରେ ଚଢ଼େଇ ଦଳି ନେଲି । କିନ୍ତୁ ସବୁ ବୃଥା । ମୋ ଲୁଙ୍ଗିର କୋଣ ବୁଙ୍ଗୁଳା କରି ସେଥିରେ ପାଟିରେ ହାଓ୍ୱା ନେଇ ମାଡ଼ିଦେଲି, ଟିକିଏ ଆରାମ ଲାଗିଲା । କିନ୍ତୁ ପୁଣି ସେମିତି ଖଚ ଖଚ ହେଉଚି ଭିତରଟା । ଆଖିଟା ଯଦି ନଷ୍ଟ ହୋଇଯାଏ ।

ଅନ୍ଧକାର ନଇଁ ଆସିଲାଣି । ତଥାପି ଟୁପୁ ଟୁପୁ ବର୍ଷା ପଡୁଚି ବାହାରେ । ସେ ବର୍ଷାକୁ ଖାତିର ନକରି କେତୋଟି ଅବାଧ ସ୍କୁଲପିଲା ଏପଟ ସେପଟ ବଲ ଗଡ଼େଇ ଚାଲିଛନ୍ତି । ବାହାରୁ କେମିତି ଏକପ୍ରକାର କୋଇଲା ଓ କିରାସିନି ଜଳିବାର ଗନ୍ଧ ଆସୁଚି । କାହାର କୋଇଲା ଚୁଲାରୁ ଧୂଆଁର ରେଖା ମାଡ଼ିଯାଉଚି ସେପଟରେ ଧାଡ଼ି ଧାଡ଼ି କ୍ୱାଟର୍ସ ଆଡ଼େ । ରୋଷେଇ ଘରେ ଝରଝର ପାଣି ପଡୁଚି ଟ୍ୟାପରୁ । ସୀମା ଅଇଁଠା ବାସନ, ହାଣ୍ଡି, କରେଇ ଭିତରେ ଏକାକାର ହୋଇ ଆସୁଛି । ଛାତିରୁ ଲୁଗା ଖସିଯାଇଚି ସୀମାର । ଢଙ୍ଗରେ ଛାତି ଓ ପେଟକୁ ଚାପିଧରି ଏକ ମନରେ କାମ କରିଯାଉଚି ସେ । ଏମିତି ବର୍ଷାଭିଜା ସଞ୍ଜରେ ଘରେ ପିଲାମାନେ ନଥିଲା ବେଳେ ସୀମା ଟିକେ ମୋ ପାଖରେ ବସି ମୋ ମୁଣ୍ଡରେ ହାତ ବୁଲାଇ ଦିଅନ୍ତା କି ! ମୁଁ ତାର ଶିଥିଳ ଛାତିରେ ମୁଣ୍ଡ ରଖନ୍ତି ।

ଦରଜାରେ ଧକ୍‌କା ପରେ ଧକ୍‌କା । ମୁଁ ଉଠି କବାଟ ଖୋଲିଦେଲି । ଟୁନା ତା'ର ସ୍ୱଭାବ ସୁଲଭ ଭଙ୍ଗୀରେ ଚିତ୍କାର କଲା—ବାପା, ମୁଣ୍ଡ ଭିଜିଯାଇଚି ବୁବୁର । ତା' ମୁଣ୍ଡରେ ହାତ ବୁଲାଇ ଦେଲି । ଟୁନା ରାସ୍ତାରେ କେଉଁଠି କଞ୍ଚା ଗୋବର ମାଡ଼ି ଆସିଚି । ମୁଁ କହିଲି—ଯା' ଗୋଡ଼ ଧୋଇ ଆସିବୁ । ଜୋତା ବି ଧୋଇବୁ ।

—ବାପା, ମୋ ଜୋତା ପୂରାପୂରି ଛିଡ଼ାଗଲାଣି । ଆଉ ପିନ୍ଧି ହେବନି । ଏଇଟା ଫିଙ୍ଗି ଦେଉଚି ।

—ବରଷାରେ ଓଦା କଲେ ଚମଡ଼ା ଜୋତାଟା ଛିଡ଼ନ୍ତା ନାହିଁ କି ! କେତେମାସ ହେଲା ତୋ ଜୋତା ?

ମୋର ମନେହେଲା ମୁଁ ରାଗରେ ଟୁନା ଗାଲରେ ଗୋଟିଏ ଚାପୁଡ଼ା ମାରିଚି । ତାର ଗୋଡ଼ ଭାଙ୍ଗି ଦେଇଚି । ଆହୁରି ଅନେକ କିଛି ମନେ ହେବା ପୂର୍ବରୁ କହିଲି—ପହିଲା ପର୍ଯ୍ୟନ୍ତ ଚଳେଇ ନେ ।

ବୁବୁ ମୋ ପାଖରେ ବସିପଡ଼ି କହିଲା—ବାପା, ଗଦାଧରବାବୁ ତାଙ୍କ ଝିଅ ପାଇଁ ଗୋଟିଏ ଫ୍ଲାକସ୍ ଆଣି ଦେଇଛନ୍ତି । ମୁଁ ବି ସେମିତି ଗୋଟିଏ ଆଣିବି ।

ମୁଁ ବୁବୁକୁ କିଛି କହିଲି ନାହିଁ । ତାକୁ ପାଖରୁ ଉଠାଇ ଦେଇ ସୀମା ପାଖକୁ ଗଲି । ସୀମା ଥାଳିଗୁଡ଼ା ଧୋଇ ଥାକ ଥାକ କରି ରଖିଲା । ଭାତ, ଚିଙ୍ଗୁଡ଼ି ଖୋଳପା, ଖଡ଼ା ଚୋପା ପାଣିଢ଼ାଳି ସଫା କରିନେଲା । ମୁଁ କହିଲି— ବୁବୁ କିମ୍ୱା ଟୁନାକୁ ଗଦାଧର ବାବୁଙ୍କ ଘରକୁ ଛାଡ଼ିବ ନାହିଁ ।

ଟିଉସନ ଯିବା ରାସ୍ତାରେ କ୍ୟାଣ୍ଟିନ । ମୁଁ ଭିତରକୁ ପଶିଲି । ଚାରିଆଡ଼େ କେମିତି ଉଦାସ ଭାବ । କ୍ୟାଣ୍ଟିନ ମେନେଜରର ଟେବୁଲ ଖୁବ୍ ମଇଳା, ଆଉ ତାର କଳା, ତେଲ

ଚିକିଟା ରେଡ଼ିଓରୁ ଖୁବ୍ ଉଦାସ ସ୍ୱର ଗୋଟିଏ ଆରମ୍ଭ ହୋଇଚି । ମୋ ପାଖ ଟେବୁଲରେ ଲୋକଟା ଦୋସାଟାକୁ ମେଲା କରି ତାର ଅନ୍ତଃସ୍ଥଳ ଦେଖିଲା, ତା ପରେ ଦୋସା କଣରୁ ଗୋଟିଏ ପାଖ ଛିଡ଼ାଇ ନେଇ ପାଟିରେ ଦେଲା ଓ ସମ୍ବରରେ ଚାମଚ ବୁଡ଼ାଇଲା । ମୋ ଆଖିଟା ଖୁବ୍ ବେଶୀ ଖଚ ଖଚ କଲା, ଧୂଆଁ ଲାଗିଲା ବୋଧହୁଏ । ମୁଁ କହିଲି– ଚାଲୁ ଚା' ।

ବାହାରକୁ ଚାହିଁଲି । ମନେହେଲା ଗାଁରେ ଆମ ଘର ବାରିପଟ ତେନ୍ତୁଳି ଗଛ ମୂଳର ଟୁବି ଗଡ଼ିଆରେ ହଳଦିଆ ସର ପଡ଼ିଲା ପରି ମୋ ଆଖିରେ ବି ସର ପଡ଼ିଲାଣି । ଅସ୍ପଷ୍ଟ ଦେଖାଯାଉଚି ବାହାରଟା । ହୁଏତ ବର୍ଷା ପାଇଁ ବେଶୀ ଅନ୍ଧକାର ଦେଖାଯାଉଚି । ଭିତରର କେଉଁ ଏକ ଟୁବି ଗଡ଼ିଆର ମଇଳା ପାଣିକୁ ଟପ୍ ଟପ୍ ଡେଇଁ ପଡୁଛନ୍ତି ବେଙ୍ଗମାନେ । ଭିତରର କେଉଁ ଏକ ଜଙ୍ଗଲରେ ଝିଂକାରୀମାନେ ଝିଁ ଝିଁ ଶବ୍ଦରେ ମାତି ଯାଇଛନ୍ତି । ମୋ ଭିତରର ଶିରା, ଉପଶିରାର ନର୍ଦ୍ଦମା ଦେଇ ଅନେକ ଗୁଡ଼ିଏ ସାଲୁବାଲୁ ଜିଆ ମୋ ମୁଣ୍ଡ ଆଡ଼େ ଚଢ଼ିବାର ଚେଷ୍ଟା କରୁଛନ୍ତି । ମୁଁ ଉଠିଲି । ଆପାତତଃ କିଛି ଟଙ୍କା ଦରକାର, କାଲି ଆଖି ପାଇଁ ଡାକ୍ତର ପାଖକୁ ଯିବାକୁ ହେବ । ତା ପରେ ଚା, ଚିନି, ଚାଉଳ, ଡାଲି, ଟୁନାର ଜୋତା, ବୁବୁର ସ୍ଲାକ୍‌ସ–

ଜୁବୁଲି କହିଲା– ସାର୍, ଆପଣଙ୍କ ଆଖି ଏତେ ନାଲି କାହିଁକି ? ମୁଁ କହିଲି– ଆଜି ବର୍ଷାରେ ଭିଜିଯାଇଥିଲି ତେଣୁ ନାଲି ପଡ଼ିଯାଇଚି । ଜୁବୁଲି କହିଲା–ସାର୍, ଯେଉଁମାନେ ମଦ ପିଅନ୍ତି ସେମାନଙ୍କର ଆଖି ଏମିତି ନାଲି ଦେଖାଯାଏ ।

–ମୁଁ କିନ୍ତୁ ମଦ ପିଏ ନାହିଁ ।

–ତା ହେଲେ ବର୍ଷାରେ ଓଦା ହେଲେ କାହିଁକି ?

–ଅଫିସରୁ ବାହାରିଲା ବେଳେ ବର୍ଷା ହେଲା, ସେଇଥିପାଇଁ ।

–ଅଫିସରେ କିଛି ସମୟ ଅଟକିଗଲେ ନାହିଁ !

ମୋର ମନେହେଲା ସୀମା ଯେପରି ତାରି ସ୍ୱରରେ ମୋତେ ତାଗିଦ୍ କରୁଚି । ସୀମା ହୁଏତ ପିଲାବେଳେ ଜୁବୁଲି ଭଳି ଥିଲା । ଏମିତି ଫ୍ରକ୍ ପିନ୍ଧୁଥିଲା । ପାଠପଢ଼ା ଛାଡ଼ି ତା ଟିଉସନ୍ ମାଷ୍ଟର ସହ ଏଣୁତେଣୁ ଗପୁଥିଲା ।

ବୋଧହୁଏ ସବୁ ନାରୀ ଏକ ନିର୍ଦ୍ଦିଷ୍ଟ ସମୟରେ ଏକପ୍ରକାର କଥା କହନ୍ତି ।

ଜୁବୁଲି ଉଠିଲା । ଫ୍ରକଟାର ତଳ ଅଂଶ ଟିକିଏ ଟାଣିଦେଲା । ତା'ପରେ ଭିତରକୁ ଚାଲିଗଲା । ତା'ର ଅଣ୍ଟା ପର୍ଯ୍ୟନ୍ତ ପଡ଼ିଥିବା ବେଣୀ ଦେଖିଲି । ବେଣୀ ଆଗରେ ନିତମ୍ବକୁ ଛୁଇଁ କଳା ରିବନ ଝୁଲୁଥିବାର ଦେଖିଲି ।

ଜୁବୁଲି ଚା' କପ୍ ଆଣି ମୋ ସାମ୍ନାରେ ରଖିଲା । ମୁଁ ଚା' କପ୍‌ର ଫୁଲ ଦେଖିଲି । ଜୁବୁଲି ହାତର ଲୋମ ଦେଖିଲି । ବାହାରେ ବର୍ଷାଟା ଥମିଗଲାଣି ବୋଧହୁଏ । କିନ୍ତୁ ରାସ୍ତା ଭୀଷଣ ଅନ୍ଧକାର । ରାସ୍ତାକଡ଼ର ଲାଇଟ୍ ପୋଷ୍ଟ ଜଳୁ ନାହିଁ । କେଉଁଠି ଫିଉଜ ଉଡ଼ିଯାଇଚି ବୋଧହୁଏ । ଘର ଭିତରର ଉଜ୍ଜ୍ୱଳ ବାଲଲାଇଟ ତଳେ ବସି ବି ମନେହେଲା ବାହାରୁ ଅନ୍ଧକାର ସବୁ ପବନରେ ଝର୍କାବାଟେ ଉଡ଼ି ଆସୁଛନ୍ତି ଯେମିତି । କିନ୍ତୁ ମୋତେ ସେମାନେ ଘେରିଯାଇ ପାରୁନାହାନ୍ତି ଜୁବୁଲି ପାଇଁ । ଜୁବୁଲି ଦେହରୁ ଏକ କ୍ଷୀଣ ପବିତ୍ର ଆଲୋକ ବାହାରି ସେ ଅନ୍ଧକାରକୁ ଅଟକାଇ ଦେଉଚି । ତା' ଦେହରୁ ବିଚ୍ଛୁରିତ ହେଉଥିବା ଆଲୋକ ତା' ଖାତାରେ ପଡୁଥିବାର ମୁଁ ସ୍ପଷ୍ଟ ଦେଖିପାରୁଥିଲି । ସେ ତଳକୁ ମୁହଁ କରି ଏଣୁତେଣୁ ଗାର କାଟି ଚାଲିଚି । ମୁଁ ଜାଣେ ତାର ଆଜି ପଢ଼ିବାର ଇଚ୍ଛା ନାହିଁ ।

ହଠାତ୍ ଜୁବୁଲି କହିଲା– ଆପଣ ଡାକତରକୁ ଦେଖାନ୍ତୁ ନହେଲେ ଆଖି କଣା ହୋଇଯିବ ।

ମୁଁ ଛଳନା ନ କରି କହିଲି– ଏବେ ଔଷଧ କିଣିବା ପାଇଁ ମୋ ହାତରେ ପଇସା ନାହିଁ ।

ସେ ଟିକିଏ ରହିଗଲା । ମୁଁ ବି ମନେ ମନେ ଲଜ୍ଜିତ ହେଲି । ଏମିତି କଥା ଜୁବୁଲି ପାଖରେ କହି ପକାଇବା ଆଦୌ ଉଚିତ ନଥିଲା । ଜୁବୁଲି କହିଲା– ଆପଣଙ୍କୁ ମୁଁ ଗୋଟିଏ ଔଷଧ ଦେବି, ଆଖି ଭଲ ହୋଇଯିବ ।

–କି ଔଷଧ ?

–କିନ୍ତୁ ଆପଣ କୁହନ୍ତୁ ଆଗ, କାହାରି ଆଗରେ କହିବେ ନାହିଁ ।

–ମାନେ ?

–ନା, କାହାରି ଆଗରେ କହିଲେ ମୁଁ ସେ ଔଷଧ ଦେବି ନାହିଁ ।

–କି ଔଷଧ ?

–ଥରେ ଭାଇଙ୍କ ହାତ କଟିଗଲା । ରକ୍ତ ବାହାରିଲା । ମୁଁ ଦେଖିଚି ଭାଉଜ ଔଷଧ ଦେଲେ, ଭଲ ହୋଇଗଲା । ଆପଣଙ୍କ ଆଖି ବି ଭଲ ହୋଇଯିବ ।

–ହେଲେ, ଆଗ ଔଷଧ ନେଇ ଆସ ।

–ମୋ ପାଖରେ ଅଛି । ଆପଣ ଆଖି ବନ୍ଦ କରନ୍ତୁ ।

–ମୁଁ ଅବାକ୍ ହେଲି । ଆଖିରେ ଔଷଧ ନେବି ଆଖି ବନ୍ଦ କରି ?

–ଆପଣ ଆଖି ବନ୍ଦ କରନ୍ତୁ ନା !

—ମୁଁ ଆଖି ବନ୍ଦ କଲି ।

ଲୁବୁଲି ମୋ ଆଖିରେ ଚୁମା ଦେଲା—

ମୁଁ ଉଠିଲି । ଅନ୍ଧକାର ରାସ୍ତାରେ ଘରକୁ ଆସିଲି । ସୀମା ରଖିଥିବା ତିନିଖଣ୍ଡ ରୁଟି ଓ ହେଣ୍ଡଲ୍ ଭାଙ୍ଗିଯାଇଥିବା କପ୍‌ରେ ଡାଲି ନେଇ ବସିଲି । ଖାଇଲି । ହାତ ମୁହଁ ଧୋଇଲି । ପୋଛିଲି । ସୀମାକୁ ଡାକିଲି । ଟୁନା ଆଉ ବୁବୁ ଦେହରେ ଚଦର ଘୋଡ଼ାଇ ଦେଲି । ଆଲୁଅ ଲିଭାଇଲି । ସୀମାକୁ କହିଲି—ମୋ ବାଁ ଆଖିରେ ଚୁମା ଦିଅ । ସେ ଅବାକ୍ ହେଲା ବୋଧହୁଏ । ମୁଁ ତାକୁ ବାଧ କଲି । ଘର ଅନ୍ଧକାର । ସେ ଚୁମା ଦେଲା । ମୋ ବାଁ ଆଖିରେ ଚୁମା ଦେଲା ।

ମୁଁ ଅନ୍ଧକାର ଭିତରୁ ବାହାର ରାସ୍ତାକୁ ଚାହିଁଲି । ଗୋଟାଏ ଜୁଳୁଜୁଳିଆ ପୋକ ରାସ୍ତା ଉପରୁ ଉଡ଼ିଆସିଲା । ଝର୍କା ରେଲିଂ ଭିତରେ ପଶିଲା । ମୁଁ ପରିଷ୍କାର ଦେଖିଲି ।

ସୀମା ଆଉ ଲୁବୁଲିର ସତ୍ତା ମିଶି ଏକକାର ହୋଇଗଲା । ମୁଁ ଅନୁଭବ କଲି ମୋ ବାଁ ଆଖିଟା ଖୁବ୍ ସ୍ୱାଭାବିକ ହୋଇ ଉଠିଚି ।

**('ସାରଥି', ପୂଜାସଂଖ୍ୟା, ୧୯୭୪)**



# ଆଲୁଅ

—ହେ, ଶୋଇଗଲ କି ?

—ଉଁ !

—ଆଲୁଅଟା କମିଆସିଲା କାହିଁକି ?

—ତେଲ ସରିଯାଇଥିବ !

—ଉଠି ଗିଲାସେ ପାଣି ଆଣିଲ ।

—ମୋତେ ନିଦ ଲାଗୁଛି, ମୁଁ ଉଠି ପାରିବିନି । ଏଥର ବହି ବନ୍ଦକର ।

—କାହିଁକି ? ହାରିକିନ୍‌ରେ ଟିକେ ତେଲ ଦିଅନା !

—ଘରେ ତେଲ ନାହିଁ ।

—ଯାହା କହିଲେ ତ ନାହିଁ, ଚାଉଳ ନାହିଁ, ଡାଲି ନାହିଁ, ତେଲ ନାହିଁ, ଆଉ ଅଛି କଣ ?

—କାହିଁକି, ମୁଁ ଅଛି ।

—ଥଟ୍ଟା କରୁଛ ?

—ଏଥିରେ ଥଟ୍ଟା କଣ ହେଲା ?

ତା ପରେ ମଶାରି ଭିତରର ଛାୟାମୂର୍ତ୍ତି ଦୁଇଟି ଅନେକ ସମୟ ଚୁପ୍‌ଚାପ୍ । ବାହାରେ ଟପ୍‌ଟପ୍ ବର୍ଷା । ଅନ୍ଧକାର । କେବଳ ବେଙ୍ଗମାନଙ୍କର ଗୋଟିଏ ପ୍ରକାର ବିରକ୍ତିକର ଶବ୍ଦ ।

ତାପରେ—

—ହେ, ରାଗିଲ ?

—ନାଇଁ ତ ।

—ମୁଁ ଥଟ୍ଟା କଲି ବୋଲି ରାଗୁଛ ?

—ମନା କଲି ପରା !

—ମୁଁ ଯେ କହୁଥିଲି ଆଉ କିଛି ଦିନ ଯାଉ ତୁମେ ଟିକିଏ ଭଲ ଚାକିରି କର ।

—ମୋତେ ଆଉ ଭଲ ଚାକିରି ମିଳିବନି ।

—ଆଚ୍ଛା, ମୋ ବାପା ବର୍ତ୍ତମାନ କଣ କରୁଥିବେ ? ମୋ କଥା ମନେ କରୁଥିବେ ?

—ମୁଁ ଜାଣେ ନାହିଁ ।

—ଜାଣ, ମୋ ବାପା ମୋ ପାଇଁ ଆଇ. ଏ. ଏସ୍. ଫଳ ବାହାରିଲେ ଯା'ତା ସଙ୍ଗରେ ଫୁସ୍‌ଫାସ୍ ହେଉଥିବେ ।

—ଛାଡ଼ ସେ କଥା ।

—ତୁମେ ଯେଉଁଦିନ ମୋତେ ନେଇ ଚାଲି ଆସିଲ ସେଦିନ ବାପା ମୋତେ କହୁଥିଲେ ମୁଁ କୁଆଡ଼େ ଖୁବ୍ ଭାଗ୍ୟବତୀ ହେବି ।

—ସେଥିପାଇଁ ମୋ ପରି କିରାଣି ତୁମକୁ ଭୁଲାଇ ନେଇ ଆସିଲା ଆଉ ଏ ଦାରିଦ୍ର୍ୟ ଭିତରେ ତୁମକୁ କଷ୍ଟ ଦେଲା ।

—ତୁମେ ଏ ସବୁ ଆଉ କହିବ ନାହିଁ, ମୋତେ ଭଲ ଲାଗେ ନାହିଁ ।

—ଏଇଟା ତ ସତ୍ୟ । ଏଥିରେ ଭଲ ନ ଲାଗିବାର କଣ ଅଛି ?

ତା ପରେ ଘର ଭିତରେ ପୁଣି ଚୁପ୍‌ଚାପ୍ । ବାହାରେ ଟପ୍‌ଟପ୍ ବର୍ଷା । ଅନ୍ଧକାର । ସେହିପରି ବେଙ୍ଗମାନଙ୍କର ବିରକ୍ତିକର ଶବ୍ଦ ।

ତା ପରେ—

—ଆଃ, ଏମିତି ଚିମୁଟୁଛ କାହିଁକି ?

—କଣ ଶୋଇଗଲ ?

—ହଁ ।

—ଗୋଟିଏ କଥା କହିବି ?

—କଣ ?

—ଏପଟେ ମୁହଁ କଲ !

—କଣ କହୁନ ? ଆରେ ଶାଢ଼ିଟା ଚିରି ଯିବ ଯେ ।

—ଚିରିଯାଉ ।

—କଣ ମୁଁ ଲଙ୍ଗଳା ରହିବି ?

—ଆମେ ଲଙ୍ଗଳା ରହିବା ।

—ହେତ୍ ।

—ମୁଁ ପଶୁ ଶିକାର କରିବି ।

—ତା ପରେ ?

—କଞ୍ଚା ମାଂସ ଖାଇବା ।

—ତା ପରେ ?

—ମୁଁ ତୁମ ସହ ଆଉ କଥା କହିବି ନାହିଁ । ସବୁ ଇସାରାରେ—

ତା ପରେ ସବୁ ଚୁପ୍‌ଚାପ୍ । ବାହାରେ ଟପ୍‌ଟପ୍ ବର୍ଷା । ଅନ୍ଧକାର । ବେଙ୍ଗମାନଙ୍କର ସ୍ୱର ଆଉ ଶୁଣାଯାଉନାହିଁ ।

–ହେ, ମୋତେ କିଛି ଦିଶୁନି ।

–ମୁଁ ଦେଖୁଛି ।

–କଣ ?

–ଅନ୍ଧକାର ।

–ମୁଁ ବି ତ ଅନ୍ଧକାର ଦେଖୁଛି ।

–ଆଉ କିଛି ଦେଖୁଛ ?

–ହଁ ।

–କଣ ?

–ଗୋଟିଏ ଜୁଳୁଜୁଳିଆ ପୋକ !

–କେଡେ ସୁନ୍ଦର ଦପ୍‌ଦପ୍ ହେଉଛି !

–ଚାଲ ଧରିବା !

–ଚାଲ !

ତା ପରେ ମଶାରିର ଦଉଡ଼ି ଛିଡ଼ିଲା । ଘରସାରା ଗ୍ଲାସ୍, ଥାଳି, ବହି, ଛାଞ୍ଚୁଣି ସବୁ ପାଦ ତଳେ ମକଚି ହେଲେ । ଦୁହେଁ ଜୁଳୁଜୁଳିଆ ପୋକ ଧରିବା ପାଇଁ ଅନ୍ଧାରରେ ଘରସାରା ଡେଇଁ ବୁଲିଲେ । ଲୁଙ୍ଗି, ଶାଢ଼ି, ଗେଞ୍ଜି, ବ୍ଲାଉଜ, ସାୟା, ସବୁ ଦେହରୁ ଅଲଗା ହୋଇଗଲା । ଭିତରୁ ସେଇ ପୁରୁଣା ଚିତ୍କାର ନୀରବରେ ବାରମ୍ବାର ଉଠିଆସିଲା । ଦୁହେଁ ଏକ ଦୁର୍ବୋଧ ଶବ୍ଦ କରି ଉଡ଼ନ୍ତା ଜୁଳୁଜୁଳିଆ ପୋକଟାକୁ ଏକା ସାଙ୍ଗରେ ଧରି ପକାଇଲେ । ସେଇ ଆଲୋକରେ ନିଜ ନିଜର ଦେହ ଦେଖିଲେ । ସେଇ ନୀଳ ଆଲୋକକୁ ଭିତରକୁ ପଠାଇ ନିଜ ନିଜର ଅଭ୍ୟନ୍ତର ଦେଖିଲେ ।

ସେମାନେ ଭୁଲିଗଲେ ହାରକିନରେ ତେଲ ନାହିଁ, ଘରେ ଚାଉଳ ନାହିଁ, ବାହାରେ ଟପ୍‌ଟପ୍ ବର୍ଷା ଏବଂ ଅନ୍ଧକାର । କାରଣ ଜୁଳୁଜୁଳିଆ ପୋକର ଆଲୋକ ସମଗ୍ର ପୃଥିବୀରେ ପରିବ୍ୟାପ୍ତ ହୋଇଯାଇଥିଲା ।

(ଦିଗ୍‌ବଳୟ)



# ପ୍ରଭୁ ଭାରସାମ୍ୟ ରକ୍ଷା କଲେ

ଗୋବର୍ଦ୍ଧନବାବୁ ଆଖି ଦୁଇଟି ବନ୍ଦକରି ଯଥାସମ୍ଭବ କାନର କାର୍ଯ୍ୟ କମାଇ ଦେଇ, ଦେହଟାକୁ ସ୍ଥିର ଅବିଚଳିତ ରଖି ଡାହାଣ ହାତର ସବୁ ଆଙ୍ଗୁଠି ଓ ପାପୁଲି ବାମହାତର ସବୁ ଆଙ୍ଗୁଠି ଓ ପାପୁଲି ଉପରେ ଥାପି ମନ୍ଦିରର ଘଣ୍ଟା ତଳେ ମନେ ମନେ ଉଚ୍ଚାରଣ କଲେ–ପ୍ରଭୁ, ମୋର ଅଭିଳାଷ ପୂର୍ଣ୍ଣ କର । ମୁଁ ସବୁଦିନେ ତୁମ ସାମ୍ନାକୁ ଆସେ, ଏତେ ଭକ୍ତି କରି ତୁମକୁ ଭୋଗ ଦିଏ, ପ୍ରାର୍ଥନା କରେ । ତୁମେ ମୋର ସେଇ ଗୋଟିଏ ଇଚ୍ଛା ପୂରଣ କର । ମୋର ଏଥର ଗୋଟିଏ ପୁତ୍ର ସନ୍ତାନ ହେଉ ।

ପ୍ରଭୁ ମନେ ମନେ ହସି କହିଲେ–ତଥାସ୍ତୁ ।

ସଦାଶିବ ଉପସ୍ଥିତ ସବୁ ମହିଳା ଭକ୍ତଙ୍କୁ ଚମକାଇ ଦେବା ପାଇଁ ଜୋରରେ ଘଣ୍ଟାଟା ବଜାଇ ପୂଜାରୀ ହାତକୁ ଭୋଗଡ଼ାଲା ବଢ଼ାଇଦେଲା ଏବଂ ଠାକୁର ମୂର୍ତ୍ତିକୁ ଚାହିଁ ଥରେ ଆଖି ବନ୍ଦ କରି ପକେଟରୁ ପାଞ୍ଚ ପଇସିଟିଏ କାଢ଼ି ବ୍ରାହ୍ମଣ ଥାଳିଆକୁ ଫିଙ୍ଗି ବେକରେ ଟିକିଏ ସିନ୍ଦୂର ଲଗାଇ ଉଚ୍ଚାରଣ କଲା–ପ୍ରଭୁ, ମୋତେ ଏ ଇଣ୍ଟରଭିୟୁରେ ମନୋନୀତ କରାଅ, କାରଣ ଏଥିରେ ବହୁତ ଉପୁରି ଅଛି । ପ୍ରଭୁ ହେ, ମୁଁ ତୁମକୁ ଏତେ ଭକ୍ତି କରେ ଅଥଚ ମୋର ଏଇ ସାମାନ୍ୟ ଗୁହାରି ଶୁଣିବ ନାହିଁ ?

ପ୍ରଭୁ ମନେ ମନେ ହସି କହିଲେ–ତଥାସ୍ତୁ ।

ହେମାଙ୍ଗିନୀ ଦେବୀ ବେକରେ ଲୁଗା ଗୁଡ଼ାଇ ଧୂପର ଧୂଆଁ ସାମ୍ନାରେ ପେଟର ଚର୍ବିକୁ ଯଥାସମ୍ଭବ ଭାଙ୍ଗି ଖୁବ୍ କଷ୍ଟରେ ଆଣ୍ଠେଇ ପଡ଼ି ଭୂଇଁରେ ମୁଣ୍ଡ ଲଗାଇ ଉଚ୍ଚାରଣ କଲେ–ପ୍ରଭୁ, ମୋର ଦୁଃଖ ତୁମେ ତ ବୁଝୁଛ । ତାଙ୍କୁ ଶୀଘ୍ର ମନ୍ତ୍ରୀ କରିଦିଅ । ତୁମେ ତ ଜାଣ ସେ ଦେଶ ପାଇଁ କେତେ କାମ କରିଛନ୍ତି । ତୁମେ ଏତେ ନିଷ୍କର୍ମା ଲୋକର ଭାଗ୍ୟ ପରିବର୍ତ୍ତନ କରୁଛ, ମୋର ଏଇ ସାମାନ୍ୟ ପରିବର୍ତ୍ତନ କରିଦିଅ ହେ ପ୍ରଭୁ । ମୁଁ ତୁମ ପାଇଁ ମନ୍ଦିର ତୋଳାଇବି ।

ପ୍ରଭୁ ମନେ ମନେ ହସି କହିଲେ–ତଥାସ୍ତୁ ।

ନିଧିଆ ମା' ପୋଖରୀରୁ ଗାଧୋଇ ଆସି ଓଦା ସରସର ଦେହରେ ଖୁବ୍ ଜୋରରେ ମନ୍ଦିରର ଘଣ୍ଟାଟା ବଜାଇଲା । କାନ ନାକ ମୋଡ଼ି ଭୂଇଁରେ ମୁଣ୍ଡ ଲଗାଇଲା ଏବଂ ପ୍ରଭୁଙ୍କୁ

ଚାହିଁ ବେଶ୍ ବଡ଼ ପାଟିରେ ଉଚ୍ଚାରଣ କଲା–ବାଡ଼ିପଡ଼ା ବୁଲାବୋଉର ଝାଡ଼ାବାନ୍ତି ହେଉ । ଯଦି ପୃଥିବୀରେ ସତରେ ତୁମେ ଥିବ, ତୁମ ଆଜ୍ଞାରେ ଯଦି ଚନ୍ଦ୍ର ସୂର୍ଯ୍ୟ ଆତଯାତ ହେଉଥିବେ ତା'ହେଲେ ମୋର ଏଇ ମନସ୍କାମନା ପୂର୍ଣ୍ଣକର ପ୍ରଭୁ ।

ପ୍ରଭୁ ମନେ ମନେ ହସି କହିଲେ–ତଥାସ୍ତୁ ।

ଏଣେତେଣେ ଗୀତ ଗାଇ ଭିକ ମାଗି ବରଗଛ ମୂଳକୁ ଫେରି ବୁଢ଼ା ଭିକାରିଟା ହାତ ଗୋଟିକୁ ତକିଆ କରି ଶୂନ୍ୟକୁ ଚାହିଁ ଉଚ୍ଚାରଣ କଲା–ପ୍ରଭୁ, ତୁମେ ମଙ୍ଗଳମୟ । ମୋର କିଛି ଦର୍କାର ନାହିଁ । ଯାହା ଦେଉଛ ଏ ତ ସବୁ ତୁମ ଦୟା । ମୁଁ କିଛି ମାଗୁନାହିଁ, କେବଳ ଏତିକି ମାଗୁଛି ତୁମକୁ ଚିହ୍ନିବାକୁ, ଭକ୍ତି କରିବାକୁ ଶିଖାଅ ।

ପ୍ରଭୁ ମନେ ମନେ ହସି କହିଲେ–ତଥାସ୍ତୁ ।

କେତେଦିନ ପରେ–

ଗୋବର୍ଦ୍ଧନବାବୁଙ୍କର ପୁତ୍ର ସନ୍ତାନ ହେଲା । ସେ ସନ୍ତାନ ଲାଳନପାଳନରେ ଏତେ ବ୍ୟସ୍ତ ରହିଲେ ଯେ ତାଙ୍କୁ ଆଉ ମନ୍ଦିରରେ ଦେଖିବାକୁ ମିଳିଲା ନାହିଁ । ଭୋଗ ପାଇଁ ଖର୍ଚ୍ଚ ହେଉଥିବା ପଇସାରେ ଅମୂଲ ଆଣି ଘର ଭର୍ତ୍ତି କଲେ । ଦିନେ ଅଚାନକ ତାଙ୍କ ଘରେ କାନ୍ଦ ବୋବାଳି ଶୁଣି ଲୋକେ ଜାଣିଲେ ଯେ, ତାଙ୍କର ଏକମାତ୍ର ପୁତ୍ରକୁ ପ୍ରଭୁ କାଢ଼ି ନେଇଛନ୍ତି । ଗୋବର୍ଦ୍ଧନବାବୁ କାନ୍ଦି କାନ୍ଦି କହିଲେ–ପ୍ରଭୁ, ତୁମେ ମୋ ଉପରେ ଦାଉ ସାଧିଲ ।

ପ୍ରଭୁ ହସିଲେ ।

ସଦାଶିବ ଉପୁରି ପଇସା ଥିବା ଚାକିରିଟା ପାଇଗଲା । ଚାକିରିରେ ସେ ଏତେ ବ୍ୟସ୍ତ ରହିଲା ଯେ ମନ୍ଦିରକୁ ଯିବା ପାଇଁ ଆଉ ସମୟ ହେଲା ନାହିଁ । କିଛି ଦିନ ପରେ ଭିଜିଲାନ୍ସ ଦୟାରୁ ତାର ଚଉକି କାଢ଼ି ନିଆଯିବା ସଙ୍ଗେ ସଙ୍ଗେ ଦୁଇମାସ ପାଇଁ ତାକୁ ସରକାରଙ୍କ ଉଚ୍ଚ ପାଚେରି ଥିବା ଅତିଥି ଭବନରେ ଛାଡ଼ି ଦିଆଗଲା । ତାରି ଭିତରେ ରହି ସଦାଶିବ ପାଟିକଲା–ପ୍ରଭୁ, ତୁମେ ସଇତାନ ।

ପ୍ରଭୁ ହସିଲେ ।

ହେମାଙ୍ଗିନୀ ଦେବୀ ସ୍ୱାମୀ ହଠାତ୍ ମନ୍ତ୍ରୀ ହୋଇଯିବା ପରେ ଅନେକ ଲୋକଙ୍କୁ ଧମକ ଦେଲେ, ଅନେକ ସଭା, ପରିଷଦ, କ୍ଲବର ସଭାନେତ୍ରୀ ହେଲେ । ମନ୍ଦିର ପାଖ ଦେଇ ତାଙ୍କ ଗାଡ଼ି ହାୱାଗତିରେ ଗଲା ଆସିଲା । ସେ ମନ୍ଦିରକୁ ଆସିବାକୁ ସମୟ ପାଇଲେ ନାହିଁ । କିନ୍ତୁ ଅଚାନକ ଯେଉଁଦିନ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା, ହେମାଙ୍ଗିନୀ ଦେବୀ ଭାଷଣ ଦେଲେ–ପ୍ରଭୁ, ତୁମେ ଈର୍ଷା କଲ । ମୋ ସୁଖ ସହିପାରିଲ ନାହିଁ ।

ପ୍ରଭୁ ହସିଲେ ।

ଗାଁରେ ହଇଜା ଲାଗିଲା । ବୁଲାବୋଉ ଆକ୍ରାନ୍ତ ହେଲା । ନିଧିଆ ମା' ଘରେ ବସି ପ୍ରଭୁଙ୍କୁ ଦୟାମୟ ବୋଲି ସାର୍ଟିଫିକେଟ ଦେଲା । କିନ୍ତୁ ସେଦିନ ରାତିରେ ଯେତେବେଳେ ନିଧିଆର ନାଡ଼ି ଛାଡ଼ିଗଲା ସେତେବେଳେ ଚିତ୍କାର କରି କହିଲା–ପ୍ରଭୁ, ତୁମକୁ ବି ଝାଡ଼ାବାନ୍ତି ହଉ । ତୁମକୁ ପାଇଲେ ମୁଁ ଠିଆ ଫାଡ଼ିଦେବି ।

ପ୍ରଭୁ ହସିଲେ ।

ବୁଢ଼ା ଭିକାରିଟି ଯେଉଁଦିନ ଚାରିଆଡ଼େ ବୁଲି ବୁଲି କିଛି ପାଇଲା ନାହିଁ ସେଦିନ ରାତିରେ ବରଗଛ ମୂଳରେ ପାଣି ପିଇ ଶୋଇଲା ଏବଂ ଶୂନ୍ୟ ଆକାଶକୁ ଚାହିଁ ଉଚ୍ଚାରଣ କଲା–ପ୍ରଭୁ, ମୋର କିଛି ଦର୍କାର ନାହିଁ । କେବଳ ତୁମକୁ ଭକ୍ତି କରିବା ଶିଖାଅ ।

ପ୍ରଭୁ କେବଳ ହସିଲେ ।

(କନ୍‌ହେଇନାମା)



# ଘଟଣା

ମଇଳା କରନ୍ତୁ ନାହିଁ– ।

ପରିସ୍ରା କରନ୍ତୁ ନାହିଁ, ଧୂମ୍ରପାନ ନିଷେଧ, ବିଜ୍ଞାପନ ମାରନ୍ତୁ ନାହିଁ, ସନ୍ତାନ ଆଉ ଏବେ ନୁହେଁ, ବାହାରକୁ ହାତ ରଖନ୍ତୁ ନାହିଁ, ଛେପ ପକାନ୍ତୁ ନାହିଁ, ପ୍ରବେଶ ନିଷେଧ ଇତ୍ୟାଦି ବାକ୍ୟ, ଖଣ୍ଡବାକ୍ୟ ହଠାତ୍ ମୋ ଚାରିପଟେ ଘେରିଗଲେ। ମୋତେ ଏଇମାନଙ୍କୁ ଖୁବ୍ ଭୟ। ପରିଷ୍କାର ପରିଛନ୍ନତା ଶୃଙ୍ଖଳା ଇତ୍ୟାଦି ସବୁବେଳେ ମୋତେ ଭଲ ଲାଗେ ନାହିଁ। ସେଥିପାଇଁ ନିର୍ଦ୍ଦେଶାତ୍ମକ ନିୟମକାନୁନ ମୁଁ ଆଦୌ ସହି ପାରେନି। ଅବଶ୍ୟ ଶୃଙ୍ଖଳିତ ଉପାୟରେ ନିୟମକାନୁନ ମାନିବାର ନଜିର ଆମ ଦେଶରେ କମ୍ ଅଛି।

ମଇଳା କରନ୍ତୁ ନାହିଁ ବୋଲି ଲେଖାଥିବାର ଦେଖିଲା ପରେ ମୋର ମନେହେଲା ଅନ୍ତତଃ ଏଇ ପାର୍କର ସିମେଣ୍ଟ ବେଞ୍ଚରେ ଓ ବେଞ୍ଚ ତଳେ ବେଶ୍ କିଛି ଚିନାବାଦାମ ଚୋପା ପଡ଼ିଥିବ । ଘାସ ଉପରେ ପଡ଼ିଥିବ ସିଗାରେଟ ଖୋଳ, ଚିରା କାଗଜ । ପାର୍କର ସେ କୋଣରେ କେହି ବର୍ଜ୍ୟବସ୍ତୁ ତ୍ୟାଗ କରିଥିବା ବି ବିଚିତ୍ର ନୁହେଁ ।

ବସ୍‌ରେ ଗଲାବେଳେ ଯେତେବେଳେ ଆଖିରେ ପଡ଼େ–ଧୂମପାନ ନିଷେଧ, ସେତେବେଳେ ପକେଟ ଭିତରେ ଆରାମରେ ଶୋଇଥିବା ସିଗାରେଟ ପ୍ୟାକେଟ ଆଡ଼େ ହାତ ଚାଲିଯାଏ । ପାଟିଟା କେମିତି ଅଠାଳିଆ ଲାଗେ । ମୋର ମନେହୁଏ ଏଇ ନାସ୍ତିବାଚକ ନିୟମକାନୁନଗୁଡ଼ିକ ଉଦ୍ଦୀପନ ବିଭାବ । ଏଇମାନେ ଉତ୍ତେଜିତ କରନ୍ତି ବେଶି, ଯେମିତି ଶୃଙ୍ଗାରରେ ନାହିଁ ନାହିଁ ଶବ୍ଦ ସଂଗମ ପାଇଁ ପ୍ରେରଣା ଦିଏ । ପାର୍କକୁ ପ୍ରବେଶ କଲାବେଳେ ଧାରଣା କରି ନେଇଥିଲି ଭିତରେ ଅନୁରୂପ ମଇଳା ହୋଇଥିବ । ପ୍ରଥମେ ତ ଦୁର୍ନୀତି ତା'ପରେ ସିନା ଦୁର୍ନୀତି ନିବାରଣ ବିଭାଗ ।

ମଇଳା କରନ୍ତୁ ନାହିଁକୁ ଅତିକ୍ରମ କରିଗଲି । କିନ୍ତୁ ବେଞ୍ଚଗୁଡ଼ାକ ପରିଷ୍କାର ଥିଲା । ମୋତେ ମନେ ହେଉଥିଲା ମଇଳା ପେଣ୍ଟ ପିନ୍ଧି ବସିଗଲେ ଯେମିତି ବେଞ୍ଚରେ ଦାଗ ଲାଗିଯିବ । ଘାସରେ ଚାଲିଲେ ଯେମିତି ଘାସଗୁଡ଼ା ଦଳି ମକଚି ନଷ୍ଟ ହୋଇଯିବ । ମୁଁ ଫୁଲଗଛ ପାଖ ଦେଇ ଚାଲିଗଲେ ଯେମିତି ହସକୁରି ଫୁଲଗୁଡ଼ାର ମୁହଁ ଶୁଖିଯିବ । କାରଣ ମୁଁ ଜାଣେ ମୋ ପାଦ ପଡ଼ି ସବୁଜ ଭୂଇଁରେ ନିଆଁ ଲାଗିଯାଇଛି ଅନେକଥର ।

ମୋ ହାଓ୍ୱା ଲାଗି ଅନେକ ଫୁଲ ଗର୍ଭକେଶର ଶୁଖିଯାଇଛି । ସବୁଜ ଘାସ ଜଳିଯାଇ ଘାସର ହାଡ଼ ଚାରିଆଡ଼େ ଜଳଜଳ କରିଛି । ତେଣୁ ମୁଁ ବିମର୍ଷ ହୋଇ ଉଠିଲି ଓ ମନେ କଲି ମୁଁ ଖୁବ୍ ନିଃସଙ୍ଗ ।

ଅବଶ୍ୟ ଯେତେବେଳେ ମୁଁ ଖୁବ୍ ପରିଷ୍କାର ପରିଚ୍ଛନ୍ନ ରହେ ସେତେବେଳେ ମୋତେ ଖୁବ୍ ନିଃସଙ୍ଗ ଲାଗେ । ତେଣୁ ପରିଷ୍କାର ଧଳା କାନ୍ଥ, ପରିଷ୍କାର ବିଛଣାଚଦର, ପରିଷ୍କାର କୁର୍ତ୍ତାପେଣ୍ଟ ମୋତେ ଭଲ ଲାଗେ ନାହିଁ । ତେଣୁ ମୁଁ ରହୁଥିବା ସରକାରୀ କ୍ୱାଟର୍ସ କାନ୍ଥରେ ରଙ୍ଗିନ ପେନ୍‌ସିଲରେ ଅନେକ ଚିତ୍ର ଅଙ୍କା ହୋଇଥାଏ । କାନ୍ଥସାରା କଣ୍ଟା ପୋତା ହୋଇଥିବାର କ୍ଷତଚିହ୍ନ ଓ ଘର କୋଣରେ ବୁଢ଼ିଆଣୀ ଜାଲ । ତା'ରି ଭିତରେ ବି ଷ୍ଟୁଡ଼ିଓର ଝାଳବୁହା ଆଲୋକ ତଳେ କ୍ୟାମେରା ଲେନ୍‌ସକୁ ଅନାଇ ବସିଥିବା ମୋ ନିଃସଙ୍ଗ ଫଟୋ ।

ମୋ ମୁହଁରେ ସବୁବେଳେ ବଢ଼ିଲା ଦାଢ଼ି । ଦର୍ପଣରେ ବଢ଼ିଲା ଦାଢ଼ି ମୋତେ ବେଶ୍ ଭଲ ଲାଗେ । ଦାମୀ ପରିଷ୍କାର କରିଦେଲେ କେମିତି ଏକ ପ୍ରକାର ସରଳତା ଓ ପୌରୁଷହୀନତା ମୋତେ ଆଛନ୍ନ କରିପକାଏ । ମୋ ତକିଆଖୋଳ ଓ ବିଛଣାଚଦର ମଇଳା । ମୋ ଖଟ ଉପରେ ମୋଡ଼ିମାଡ଼ି ହୋଇ ତଉଲିଆ ଲୁଙ୍ଗି ଗେଞ୍ଜି ଅଣ୍ଡରଓ୍ୱାର୍ଡ଼ ପଡ଼ିରହେ । ଦୁଇ ଚାରୋଟି ଗପ ବହି ମଧ୍ୟ ମୁହଁମାଡ଼ି ପଡ଼ି ରହନ୍ତି । ଚଟାଣରେ ପଡ଼ିଥାଏ ଖଣ୍ଡିଆ ସିଗାରେଟ, ସିଗାରେଟର ପାଉଁଶ, ପୋଡ଼ା ଦିଆସିଲି କାଠି । ହୁଏତ ନିୟମ ଭଙ୍ଗ କରିବାକୁ ମୋତେ ବେଶ୍ ଭଲ ଲାଗେ ଏବଂ ଖୁବ୍ ବେଶି ପରିଷ୍କାର ପରିଚ୍ଛନ୍ନତା ମୁଁ ସହିପାରେନି ।

ଆଜି ଖରାବେଳେ ଖାଇ ସାରିଲା ପରେ ମନେହେଲା ଘରଟା ଖୁବ୍ ପୁରୁଣା । କାନ୍ଥର ସେଇ ଦୃଶ୍ୟ ସବୁବେଳେ ଆଖିରେ ପଡ଼େ । ଶୋଇପଡ଼ିଲେ ମୁଣ୍ଡ ଉପରେ ସୁଁ ସୁଁ କରି ମଇଳା ସିଲିଂଫେନ୍ ବାମରୁ ଡାହାଣକୁ ଘୂରେ, ଟେବୁଲ ଘଣ୍ଟାର ମଇଳା ଡାଏଲ ଉପରେ କଣ୍ଟା ଦିଟା ଧୀରେ ଧୀରେ ଡାହାଣରୁ ବାମକୁ ଘୂରନ୍ତି । ସବୁଦିନେ ଦ୍ୱିପ୍ରହରର ମାଲଗାଡ଼ିଟା ଘଡ଼ ଘଡ଼ କରି ପାର୍କ ଆରପଟ ରେଳଲାଇନ ଉପରେ ଗଡ଼ିଯାଏ । ମୁଁ ବିରକ୍ତ ହୁଏ । ନିଦ ଆସେନି । ସେଇ ପୁରୁଣା କଥା । ମୁଁ ତେଣୁ ଉଠିଲି । ଘଟଣାହୀନ ହୋଇ ବଞ୍ଚିବା ମୁସ୍କିଲ । ଆଜି କିଛି ଘଟଣା ଘଟାଇବାକୁ ପଡ଼ିବ । ଖାଇସାରି ହାକୁଟି ମାରିବା ଯଦି ଗୋଟିଏ ଘଟଣା ହୁଅନ୍ତା, ଆଉ ଏସବୁ ଘଟଣାକୁ ନେଇ ଯଦି ବଞ୍ଚି ହୁଅନ୍ତା ତାହେଲେ କିଛି ଅସୁବିଧା ନ ଥିଲା । କିନ୍ତୁ ଏମିତି ଏକ ରବିବାର ଦ୍ୱିପ୍ରହରରେ କର୍ମହୀନ ହୋଇ ପୁରୁଣା ଖଟରେ ଶୋଇ ପୁରୁଣା ଦୃଶ୍ୟ ସବୁ ଦେଖିବା ଯେ ମୁସ୍କିଲ ।

ପାର୍କକୁ ବାହାରି ଆସିଲି, ବୋଧହୁଏ ଘଟଣାର ସନ୍ଧାନରେ । କାଖତଳ ଭିଜା ମଇଳା ଗେଞ୍ଜି ଦେହରେ କ୍ଳାନ୍ତ ରିକ୍‌ସାବାଲା ତଳକୁ ଗଡ଼ିଗଲା । ନୀଳ ଗେଞ୍ଜି ପିନ୍ଧା

ଗଗଲସ ଆଖିରେ ତରୁଣଟା ସ୍କୁଟରରେ ଉଡ଼ିଗଲା । ମୁଁ ଦେଖିଲି ଓ ପାର୍କରେ ଗୋଟିଏ ଝଙ୍କାଳିଆ ଗଛ ତଳର ସିମେଣ୍ଟ ବେଞ୍ଚରେ ବସିଗଲି ।

ମଇଳା କରନ୍ତୁ ନାହିଁ–

ପୁଣି ସେଇ ନାସ୍ତିବାଚକ ନିର୍ଦ୍ଦେଶ । ଅନୁରୋଧ ନୁହେଁ, ଆଦେଶ । ଅବଶ୍ୟ ଅପେକ୍ଷାକୃତ ସାନ ସାନ ଅକ୍ଷରରେ ଲେଖା । ମୁଁ ଆଉଥରେ ପଢ଼ିଲି । ଗଛର ଫୁଲମାନଙ୍କୁ ଚାହିଁଲି । ସତେଜ ସୂର୍ଯ୍ୟମୁଖୀ । ଜିନିଆ ଡାଲିଆର ନୀରବ କଥୋପକଥନ । କାଗଜ ଫୁଲର ବେହିଆଙ୍କ ଭଳି ହି-ହି ହସ । ପାଦତଳେ ପଚକିତ ଜୀବନ୍ତ ଘାସ । ହୃତୟାକୃତି ପାଣି କୁଣ୍ଡରେ ନାଲି କଇଁ ଓ ମଝିରେ ଝରଣାର ଫୁତ୍କାର । ବାସ୍, ଆଉ କିଛି ଘଟଣା ନାହିଁ । ସବୁ ଶୂନ୍‌ଶାନ୍ । ସବୁ ଶୃଙ୍ଖଳିତ । ସବୁ ନିୟମିତ । ମଣିଷ ନାହିଁ । ଘଟଣା ନାହିଁ । ଦୁର୍ଘଟଣା ନାହିଁ । କ୍ଷୋଭ ନାହିଁ । ପ୍ରତିକ୍ରିୟା ନାହିଁ । ହତ୍ୟା ନାହିଁ । ଧର୍ଷଣ ନାହିଁ । ପାପ ନାହିଁ । ବିପ୍ଳବ ନାହିଁ । କିଛି ନାହିଁ । କିନ୍ତୁ ଏମାନେ ଆସନ୍ତି । ଏମାନେ ଯେମିତି କେଉଁଠି ଆତ୍ମଗୋପନ କରି ରହନ୍ତି । ହୁଏତ ଏଇ ପାର୍କରେ, ଏଇ ଖରାବେଳେ କେଉଁଠି ଯେପରି ମଣିଷ ଲୁଚି ରହିଛି । ଘଟଣା ଦୁର୍ଘଟଣା ବେଳ ଉଣ୍ଡୁଛନ୍ତି । କ୍ଷୋଭ କ୍ରିୟା ପ୍ରତିକ୍ରିୟା ହତ୍ୟା ଧର୍ଷଣ ପାପ ବିପ୍ଳବ ସମସ୍ତେ କେଉଁଠି ଯେପରି କେଉଁ ଏକ କୁଞ୍ଜରେ ମୁଖା ପିନ୍ଧି ମୁଣ୍ଡରେ ଫୁଲ ଫୁଟାଇ ବସି ରହିଛନ୍ତି । ସେମାନଙ୍କୁ ଖୋଜି ବାହାର କରିବାକୁ ପଡ଼ିବ ।

ମୁଁ ବେଞ୍ଚରୁ ଉଠିଲି । ଘାସକୁ ପାଦରେ ଦଳି ଦଳି ଚାଲବୁଲ କଲି । ଦୂରରେ ଗୋଟିଏ ଲାଲ ଗୋଲାପ ଦେଖିଲି । ଗୋଲାପ ଗଛଟି ଆଣ୍ଠୁଏ ଉଚ୍ଚ । କିନ୍ତୁ ଫୁଲଗୁଡ଼ିକ ଖୁବ୍ ବଡ଼ ବଡ଼ ଆଉ ଖୁବ୍ ଗାଢ଼ ଲାଲ । ସେଇ ଗୋଲାପ ଆଡ଼େ ଆଗେଇଲି । ହାତରେ ଛୁଇଁଯାଉଥିବା ତିନି ଚାରିଟା ଫୁଲ ଛିଡ଼ାଇଲି । ଚାଲୁଚାଲୁ କିଛି ରଙ୍ଗିନ ପତ୍ର କ୍ରୋଟନ ଗଛ ଦେହରୁ ଅଲଗା କରିନେଲି । ସେଗୁଡ଼ାକୁ ହାତରେ ଦଳି ମକଚି ଏତେ ତେଣେ ପକାଇଲି । ଦୂରର ଲାଲଗୋଲାପ ପାଖକୁ ଲାଗି ଆସିଲି । ଗୋଲାପଟା ଛିଡ଼ାଇବାକୁ ଉଦ୍ୟତ ହେଲା ବେଳେ ଦେଖିଲି ଫୁଲର ଜଙ୍ଗଲ ଭିତରେ ଗୋଟିଏ ଝିଅ । ବୟସ ଚଉଦ ପନ୍ଦର ହେବ । ଦେହରେ ରଙ୍ଗିନ ଫ୍ରକ । ରକ୍ତ ଗୋଲାପର ଆରପଟେ ଗୋଟିଏ ଝଙ୍କାଳିଆ କ୍ରୋଟନ ମୂଳରେ ବସି ଦୁଇ ପାଦକୁ ଅର୍ଦ୍ଧ ବୃତ୍ତରେ ଘେରାଇ ଫୁଲ କେତେଟା ଓ ଗୋଟିଏ ପଥରକୁ ନେଇ ଖୁବ୍ ଅନ୍ୟମନସ୍କ ଭାବରେ ଖେଳିଯାଉଛି ସେ । ଠିକ୍ ଖେଳ ନୁହେଁ, ସେ ଯେମିତି ପୂଜା କରୁଛି ପଥର ଭିତରେ ତାର କାଳ୍ପନିକ ଭଗବାନଙ୍କୁ ସ୍ଥାପନା କରି । ମୁଁ ଜାଣେ ତାର ବୟସ ଦୃଷ୍ଟିରୁ ଏ ଦୃଶ୍ୟ ଅବାନ୍ତର । ବର୍ତ୍ତମାନ ଏଇ ଝିଅର ଉଚିତ ଏଇ ଦ୍ୱିପ୍ରହରେ ତା' ବୋଉ ଶୋଇଥିଲା ବେଳେ ଚୁପି ଚୁପି ପାଦରେ ଯାଇ ଆଚାର ଚୋରି କରିବା । ବର୍ତ୍ତମାନ ହୁଏତ ଏ ଝିଅର ଉଚିତ କୌଣସି ପିଜୁଳି ଗଛରେ

ଚଢ଼ି ପିନ୍ଧୁଳି ପାରିବା । ବର୍ତ୍ତମାନ ହୁଏତ ଏ ଝିଅର ଉଚିତ ରୁଲିଂ ପକା କାଗଜରେ ଗୋଲାପ ଫୁଲ ଆଙ୍କି କେଉଁ ଏକ ସହପାଠୀକୁ ଚିଠି ଲେଖିବା । ଅଥଚ ସାନପିଲା ଭଳି ବସି ଏଇଠି ଭଗବାନ ପୂଜା ଆରମ୍ଭ କରି ଦେଇଛି । ମୁଁ ପ୍ରାୟ ଏଇ ଧରଣର ଅବାନ୍ତର ଦୃଶ୍ୟ ସହିପାରେନି । ତେଣୁ ତାର ଦୃଷ୍ଟି ଆକୃଷ୍ଟ କରିବା ପାଇଁ ଗଳା ଖଙ୍କାରିଲି । ସେ ମୋତେ ଚାହିଁଲା । ହଠାତ୍ ଅବାକ୍ ହେଲା । ଆଣ୍ଠୁର ବହୁତ ଉପରକୁ ଉଠି ଯାଇଥିବା ଫ୍ରକକୁ ଆଣ୍ଠୁ ତଳକୁ ଟାଣି ଆଣିଲା । ସଂଯତ ହୋଇ ଗୋଡ଼ ଗୋଟାଇ ବସିଲା । ମୁଁ ବୁଝିଲି ଝିଅଟି ଦେହରେ ନାରୀତ୍ୱର ସଚେତନତା ଆସିଗଲାଣି ।

ମୁଁ ତା' ପାଖ ସିମେଣ୍ଟ ବେଞ୍ଚରେ ବସିଗଲି । ମୋତେ ସେ ସନ୍ଦେହ ଆଖିରେ ଚାହିଁଲା । ତା' ପରେ ଉଠିଯିବା ପାଇଁ ଉଦ୍ୟତ ହେଲା । ମୁଁ ବୁଝିପାରିଲି ସେ ଏଇ ପାର୍କ କେୟାର-ଟେକାରର ଝିଅ । ତାକୁ ମୁଁ କହିଲି ସେମିତି ବସି ଖେଳିବାକୁ । ସେ ପ୍ରଥମେ ଇତସ୍ତତଃ ହେଲା । ତା' ପରେ ସେଇଠି ବସି ସେଇ ପୂର୍ବ ଭଙ୍ଗୀରେ ପଥର ଉପରେ ଫୁଲ ସଜାଇଲା ।

ମୁଁ ଦେଖିଲି ପାର୍କରେ କେବଳ ଗଛ ଆଉ ଫୁଲ । ଝିଅଟି ସାମ୍ନାରେ ଫୁଟିଥିବା ବଡ଼ ଲାଲ ଗୋଲାପଟିଏ ମୁଣ୍ଡ ହଲାଇଲା । ଝିଅଟିର ଈଶ୍ୱର ପୂଜା ଆଗେଇ ଚାଲିଲା । ମୁଁ ନାସ୍ତିକ ନୁହେଁ କିନ୍ତୁ ଈଶ୍ୱରଙ୍କୁ ସହିପାରେନି । ତେଣୁ ମନ୍ଦିରକୁ ଯାଇ ଈଶ୍ୱରଙ୍କୁ ନ ଦେଖି ଈଶ୍ୱରଙ୍କୁ ଦେଖିବାକୁ ଯାଇଥିବା ଈଶ୍ୱରୀମାନଙ୍କୁ ଦେଖେ ।

ଆଖିରେ ପଡ଼ିଲା–ମଇଳା କରନ୍ତୁ ନାହିଁ । ଅଥଚ ଝିଅଟି ଫୁଲମାନଙ୍କୁ ଈଶ୍ୱର ପୂଜା ନାଁରେ ବୁଣି ଚାଲିଛି । ମୁଁ ଭାବିନେଲି ଏଇ ରବିବାର ଦ୍ୱିପ୍ରହରରେ ମୋତେ ବେଶ୍ କାମ ମିଳିଗଲା । ତା'ର ଈଶ୍ୱରଙ୍କୁ ନେଇ ମୁଁ ଷ୍ଟେସନ ଯିବି ଏବଂ ସଂଜ ଟ୍ରେନରେ ବସାଇ ଦେଇ ଫେରିଆସିବି ଏଇ ଝିଅଟି ପାଖକୁ । ହୁଏତ ଏଇଟା ହେବ ଗୋଟିଏ ଘଟଣା । ତା'ପରେ ଦୁର୍ଘଟଣାର ଲୋଭ । ପାପ କରିବାର ଅଭିଳାଷ ।

ମୁଁ ଝିଅ ପାଖକୁ ଯାଇ ବସିବି । ତା ସାମ୍ନାରୁ ପଥରଟା ଘୁଞ୍ଚାଇ ଦେବି । ସେ ଅପସ୍ତୁତ ହୋଇଯିବ । ମୁଁ କିନ୍ତୁ ମୁରୁକି ହସି ଖୁବ୍ ବିଶ୍ୱସ୍ତ ଭାବରେ ପଚାରିବି–ତୁମ ନାଁ କଣ ?

–ମୋ ନାଁ କାମିନୀ ।

–ତୁମେ ପଢୁଛ !

–ହଁ !

–କେଉଁ ଶ୍ରେଣୀ ?

–ଦଶମ ଶ୍ରେଣୀ ।

–ତୁମର କୌଣସି ପୁରୁଷ ବନ୍ଧୁ ସହ ପରିଚୟ ଅଛି ?

ସେ ମୋତେ ସନ୍ଦେହ ଆଖିରେ ଚାହିଁବ । ତା' ଆଖିଡ଼ୋଳା କୁଞ୍ଚିତ ହୋଇଯିବ । ତା' ଛାତି ଉପରେ ପଡ଼ିଥିବା ବେଣୀ ଦୁଇଟାକୁ ପିଠି ଉପରେ ଫିଙ୍ଗି ଝିଙ୍କ ଭଳି ପ୍ରସ୍ତୁତ ହୋଇଯିବ ।

କିନ୍ତୁ ମୁଁ ତାକୁ ଠିକ ରାସ୍ତାକୁ ନେଇ ଆସିବି । ଏପଟ ସେପଟ କଥା କହି ଭୁଲାଇ ଦେବି । ସେ ମାନିଯିବ ଯେ ତା'ର କେହି ପୁରୁଷ ବନ୍ଧୁ ନାହାନ୍ତି । କିନ୍ତୁ ତା'ର ସାଙ୍ଗ ମାନୀର ଜଣେ ପୁରୁଷ ବନ୍ଧୁ ଥିଲେ । ମାନୀ ତାକୁ ଚିଠି ଲେଖୁଥିଲା । ତା' ସହ ଗପୁଥିଲା । ଏବେ ସେ ଖୁବ୍ ଅଭଦ୍ର ହୋଇଗଲାଣି । କାରଣ ଦୁହେଁ ଅନ୍ୟମାନଙ୍କୁ ଲୁଚାଇ ଏଇ ପାର୍କରେ ଆସି ଚୁମା ଖାଆନ୍ତି ।

ବଡ଼ ଲାଲ ଗୋଲାପକୁ ଚାହିଁ ମୁଁ କହିବି—କାମିନୀ, ମୁଁ ତୁମକୁ ଚୁମା ଖାଇଲେ !

କାମିନୀ ପ୍ରଥମେ ମୁହଁ ବିକୃତ କରିବ । ତା'ପରେ, ଥରେ ମାନୀ ତାକୁ ଚୁମା ଉପରେ କହିଥିବା ଗୋଟିଏ ମିଠା କଥା ମନେ ପକାଇବ ଏବଂ କହିବ—ଆଚ୍ଛା ଖାଆନ୍ତୁ, କିନ୍ତୁ ଥରେ ମାତ୍ର ।

ମୁଁ ମୁହଁକୁ ତା ମୁହଁ ପାଖକୁ ଆଗେଇ ନେଲାମାତ୍ରେ ଅଟକାଇ ଦେଇ କହିବ—

—କିନ୍ତୁ କାହାକୁ କହିବେ ନାହିଁ ।

—ନା ।

ତା'ପରେ ଥରେ ନୁହେଁ ଅନେକ ଚୁମା ଖାଇବି । ଲାଲ ଗୋଲାପ ଦେହରୁ ନିଆଁ ବାହାରିବ । ଘାସସାରା ନିଆଁ ଚରିଯିବ । ଦୁର୍ଘଟଣା ଆସି ଲୋଭେଇବ । ପାପ କରିବାର ଇଚ୍ଛା ମୋତେ ଆସି କେଞ୍ଚାଟିଏ ମାରି ଟିଆଇଦେବ । ମୁଁ ତା'ର ସାନ ଇଚ୍ଛା ଅନିଚ୍ଛା ନ ମାନି ତାକୁ କ୍ରୋଟନ ଗଛ ତଳକୁ ଡାକି ନେଇଯିବି । ତା'ପରେ କିଛି ଫୁଲ ଛିଡ଼ାଇ ତାକୁ ରାସ୍ତାସାରା ବୁଣିବୁଣି ପାର୍କରୁ ବାହାରି ଆସିବି ।

ମୁଁ ଝିଅଟିକୁ ଦେଖିଲି । ଶାଢ଼ି ପିନ୍ଧିଲେ ବେଶ୍ ବଡ଼ ଦେଖାଯିବ । ତା' ପାଖକୁ ଉଠିଗଲି । ପ୍ରସ୍ତୁତ ହୋଇଗଲି କଥାବାର୍ତ୍ତା ଆରମ୍ଭ କରିବା ପାଇଁ । ଲାଲ ଗୋଲାପକୁ ଚାହିଁ ପଚାରିଲି—

—ତୁମ ନାଁ କ'ଣ ?

—କାହିଁକି କ'ଣ ଦର୍କାର ?

—ତୁମେ ଏଇ ଘରେ ରୁହ ?

—କାହିଁକି ?

—କିଛି ନୁହେଁ ଯେ ଏମିତି ପଚାରୁଥିଲି ।

ସେ ଉଠି ଛିଡ଼ାହେଲା । ମୋ ମୁହଁକୁ ଚାହିଁଲା । ତା'ପରେ ଦୁଲ୍ ଦୁଲ୍ ପାଦ ପକାଇ ତା' ଘର ଆଡ଼େ ମୁହାଁଇଲା । ମୁଁ ମନେକଲି—ମୁଁ ତାକୁ ପଛରୁ ଧରି ଟାଣି

ଆଣିଛି । ତାକୁ ଖୁବ୍ ଜୋରରେ ଚାପିଧରି ଧମକ ଦେଉଛି– ଏଇ ଟିକି ବୟସରୁ ତୋର ଏତେ ସାହସ ? ସେ ଚିତ୍କାର କରୁଛି ପ୍ରାଣପଣେ । ଚାରିଆଡ଼େ ଆତତାୟୀମାନେ ଏଇ ସୁଯୋଗକୁ ଅପେକ୍ଷା କରି କେଉଁଠି ଲୁଚି ବସିଥିଲେ । ସମସ୍ତେ ମୋତେ ମାଡ଼ି ବସିଛନ୍ତି । ମୋ ନାକରୁ ଭକ୍ ଭକ୍ ରକ୍ତ ଉଛୁଳି ଆସୁଛି । ମୁଣ୍ଡଟା ଝିମ୍‌ଝିମ ହେଉଛି । ଅଥଚ ଝିଅଟା ଫୁଲଭଳି ଟକ୍‌ଟକ୍ ହସୁଛି । ମୁଁ କ୍ରମେ ଚେତନାହୀନ ହୋଇଯାଉଛି । ଝିଅଟାର ହସ ସାରେଗାମାପାଧାନି ହୋଇ ସାରା ପୃଥିବୀରେ ମାଡ଼ି ଯାଉଛି । ସେ ଲାଲ ଗୋଲାପଟି ଅଦୃଶ୍ୟ । ମୁଁ ମନେ ମନେ କହୁଛି ଘଟଣାହୀନ ବିରକ୍ତିକର ସମୟ ପାରିହେବା ପାଇଁ ସମୟହୀନ ଚେତନାହୀନ ହୋଇଯିବା ସବୁଠାରୁ ଭଲ । ଏଇଟା ହିଁ ସବୁଠାରୁ ବଡ଼ ଘଟଣା ।

ଝିଅଟାକୁ ଚାହିଁ ଦେଖିଲି, ସେଇ ଘରଆଡ଼େ ଉଭାନ ହୋଇଗଲା । ବୁଝିପାରିଲି ସେ ଝିଅଟିକୁ ଘେରି ମୋ ଭିତରେ ଅନେକ ଘଟଣା ଦୁର୍ଘଟଣା ଘଟିଗଲା ।

କିନ୍ତୁ ସମସ୍ତଙ୍କ ଆଖିରେ ପଡ଼ିଲା ଭଳି କିଛି ଘଟଣା ଘଟିଲା ନାହିଁ ଯେ ! ମୁଁ ପୁଣି ଉଦାସ ହେଲି । ବୁଝିପାରିଲି ମୁଁ ହୁଏତ ଚାହେଁ ଏମିତି ସବୁ ଘଟଣା ଘଟୁ ଯାହା ସମସ୍ତଙ୍କ ଆଖିରେ ପରିଷ୍କାର ଭାବେ ପଡ଼ି ପାରିବ । ହୁଏତ ତେଣୁ ମୁଁ ପିନ୍ଧେ ମଇଳା କୁର୍ତ୍ତାପେଣ୍ଟ । ଦାଢ଼ି ବାଳ ବଢ଼ାଏ । ଚିତ୍ରିତ କାନ୍ଥ ବୁଢ଼ିଆଣୀ ଜାଲ ଥିବା ଘର ଭଲପାଏ ।

ମୁଁ ଲାଲ ଗୋଲାପକୁ ଚାହିଁଲି । ମୋତେ ଖାତିର ନକରି ପବନ ସହ କଥାବାର୍ତ୍ତା କଲା । ଗଛଲତାକୁ ମୁଣ୍ଡ ହଲାଇ କଣ କହିଲା । ଆକାଶ ସହ ହସିଲା । ମଇଳା କରନ୍ତୁ ନାହିଁକୁ ଚାହିଁ ଖତେଇ ହେଲା ।

ସେଇ ମଇଳା କରନ୍ତୁ ନାହିଁ ନିର୍ଦ୍ଦେଶ । ଲାଲ ଗୋଲାପଟାକୁ ଛିଡ଼ାଇ ଆଣି ଚକଟି ଦେଲେ ? କିନ୍ତୁ ଲାଭ କଣ ? ମୁଁ ଏସବୁ କରିଛି ବୋଲି କିଏବା ଜାଣିବ ?

ଦୂରରେ ଛିଡ଼ା ହୋଇ ସେଇ ଝିଅଟା ମୋତେ ଚାହିଁଛି ।

ଲାଲ ଗୋଲାପ ଯେମିତି କହୁଛି–ମଇଳା କରନ୍ତୁ ନାହିଁ । ଝିଅଟା ଯେମିତି ନୀରବରେ ବାର୍ତ୍ତା ପଠାଉଛି–ମଇଳା କଲେ ବାପାଙ୍କୁ ଡାକି ଦେବି ।

ମୁଁ ପେଣ୍ଟ ବୋତାମ ଖୋଲିଲି । କୁନ୍ଥେଇ କୁନ୍ଥେଇ ସେଇ ଗୋଲାପ ଉପରେ ପରିସ୍ରା କଲି । ପେଣ୍ଟ ବୋତାମ ଲଗାଇଲି । ରୁମାଲ ବାହାର କରି ମୁହଁ ପୋଛିଲି । ପକେଟରୁ ପାନିଆ ବାହାର କରି ମୁଣ୍ଡ କୁଣ୍ଡାଇଲି । ଝିଅଟିକୁ ଚାହିଁଲି । ପାର୍କରୁ ବାହାରି ଆସିଲି ।

('ଆସନ୍ତାକାଲି', ଜାନୁଆରୀ, ୧୯୭୫)

●

# ଉଜାଣିରେ କିଛିକାଳ

– ହ୍ୟାଲୋ ।

– ହ୍ୟାଲୋ, ହଁ ମୁଁ କନ୍‌ହେଇ କହୁଛି । ଆପଣ ?

– ମୁଁ !

– କିଏ ? ନାଁ କ'ଣ ?

– ନାଁ ଜଣାଇବାକୁ ଇଚ୍ଛୁକ ନୁହେଁ । କହିଲେ, ମୁଁ ଆପଣଙ୍କର କୌଣସି ପରିଚିତ ଭଳି ମନେ ହେଉଛି ?

– ନା, ମୁଁ ଜାଣିପାରୁନି ।

– କିନ୍ତୁ ମୁଁ ଆପଣଙ୍କୁ ଜାଣିଲି କେମିତି ?

– ଆଶ୍ଚର୍ଯ୍ୟ ଲୋକ ତ ଆପଣ, କ'ଣ ଆପଣଙ୍କ ନାଁ ? କ'ଣ ଚାହାନ୍ତି ?

– ନାଁ ଜାଣିବା କ'ଣ ନିହାତି ଦରକାର । ନାଁର କିଛି ଅର୍ଥ ନାହିଁ ।

– ମାନେ ?

– ମାନେ ଆଉ କ'ଣ ? ସେଇ ପୁରୁଣା କଥା । ଅନ୍ଧର ନାମ କମଳଲୋଚନ, ରାବଣ ଭଳି ଚେହେରାର ନାମ ରାମଚନ୍ଦ୍ର, ମିଥ୍ୟାବାଦୀର ନାମ ସତ୍ୟପ୍ରିୟ, ଆହୁରି କେତେ କ'ଣ । ତେଣୁ ମୋର ଧାରଣା, ନାଁରେ କିଛି ନଥାଏ । ଦୁନିଆରେ ଅନେକ ନାଁ ଭିତରୁ ମୋ ନାଁ ବି ସେମିତି ଗୋଟିଏ ।

– ନାଁ ଜାଣିବା ଦର୍କାର । କାରଣ ତାଦ୍ୱାରା ଲକ୍ଷ ଲକ୍ଷ ମଣିଷ ଭିତରୁ ବିଶେଷ ଲୋକକୁ ଚିହ୍ନି ହୁଏ । ସମ୍ବୋଧନ କରି ହୁଏ । ତେଣୁ ମୁଁ ଜାଣିବାକୁ ଚାହେଁ ଆପଣଙ୍କ ନାଁ କ'ଣ ?

– ଆଚ୍ଛା, କୁହନ୍ତୁ ତ, ମୁଁ ନାରୀ ନା ପୁରୁଷ ?

– ଆଚ୍ଛା ମଣିଷତ ଆପଣ ! ଅବଶ୍ୟ କଣ୍ଠସ୍ୱରରେ ଆପଣ ନାରୀ । ତଥାପି ଯଦି କୋକିଳକଣ୍ଠୀ ନିଶୁଆନର ହୋଇଥିବେ ତା'ହେଲେ ଭିନ୍ନ କଥା ।

– ଆପଣ ସତରେ କେତେ ମଜା କରି ପାରନ୍ତି ।

– ବୁଝିଲି, ଆପଣ ମଜା କରିବାକୁ ଚାହାନ୍ତି । ଆପଣ ମୋର କୌଣସି ପରିଚିତା ନୁହନ୍ତି । ଆପଣଙ୍କୁ କେବେ ଦେଖିଲା ପରି-

– ଆପଣ ମୋତେ ନ ଦେଖିଲେ କ'ଣ ହେଲା, ମୁଁ ଆପଣଙ୍କୁ ଦେଖିଛି । ଆପଣ ଇନ୍ଦିରା ଗାନ୍ଧୀଙ୍କୁ ଦେଖିଛନ୍ତି ?

– ଅଜବ ପ୍ରଶ୍ନ ଆପଣଙ୍କର ! ମୁଁ ଏବେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ । ସେ ଉତ୍ତର ପ୍ରଦେଶର ।

– ନା, ମୁଁ କିମ୍ବା ଆପଣ କେହି ରାଷ୍ଟ୍ରର କାଙ୍କେ ଗାରଦରେ ନାହୁଁ । କୁହନ୍ତୁ ଆପଣ ଇନ୍ଦିରା ଗାନ୍ଧୀଙ୍କୁ ଦେଖିଛନ୍ତି ?

– ଆପଣ କ'ଣ ଇନ୍ଦିରା ଗାନ୍ଧୀ ?

– ନା; ତା ନୁହେଁ । ମାନେ ମୁଁ କହିବାକୁ ଚାହେଁ ଯେ ଆପଣ ନିଶ୍ଚୟ ଇନ୍ଦିରା ଗାନ୍ଧୀଙ୍କୁ ଦେଖିଛନ୍ତି । ଅଥଚ ଆଶ୍ଚର୍ଯ୍ୟ, ଇନ୍ଦିରା ଗାନ୍ଧୀ ଆପଣଙ୍କୁ ଦେଖିନାହାନ୍ତି । ସେହିପରି ଆପଣଙ୍କୁ ଦେଖିଛି, କିନ୍ତୁ ଆପଣ ମୋତେ ଦେଖିନାହାନ୍ତି ।

– ଆପଣ କ'ଣ କରନ୍ତି, ମାନେ ଆପଣଙ୍କ ବ୍ୟବସାୟ ?

– ନାଇଁ ଆଜ୍ଞା, ମୁଁ ବ୍ୟବସାୟୀ ନୁହେଁ । କିନ୍ତୁ ମୋ' କାମ ଖୁବ୍ ଏକା ଥିଲା ବେଳେ ଲୋକକୁ ଟିକିଏ ହଇରାଣ କରିବା ।

– ଭଲ ବ୍ୟବସାୟ ତ ଆପଣଙ୍କର । ମୁଁ ତାରିଫ୍ କରୁଛି ।

– ଭଲହେଲା । କହିଲେ ଏଥର ମୋ ନାଁ କ'ଣ ? ଯଦି କଥାବାର୍ତ୍ତାରୁ ମୋ ନାଁ କହିଦେବେ, ତା'ହେଲେ ଆପଣଙ୍କୁ ବଡ଼ ଲେଖକ ବୋଲି ମାନିବି । ଆଉ ଆପଣ ଖୁବ୍ ବଡ଼ ହେବେ ।

– ଏଇଟା ଅଭିଶାପ ନା ଆଶୀର୍ବାଦ ନା ଶୁଭେଚ୍ଛା ନା ବର ?

– ଏଇଟା ମୋର ଅନ୍ତରର କାମନା ।

– ଆଉ ଦୈହିକ କାମନା ?

– ଆପଣ ଏଡ଼େ ନିର୍ଲଜ୍ଜ । ଆପଣଙ୍କ ବିଷୟରେ ଯାହା ଶୁଣିଛି ବା ଶୁଣୁଛି ମିଛ ନୁହେ ଦେଖୁଛି ।

– ଆପଣ ମୋ ବିଷୟରେ କ'ଣ ଶୁଣିଛନ୍ତି ।

– ମୁଁ ଶୁଣିଛି ଆପଣ ଜଣେ - । ନା ଥାଉ, କହିବି ନାହିଁ ।

– ଦୟାକରି ଆପଣ ନାଁଟା ଜଣାଇବେ ?

– ଆପଣଙ୍କ ଚେହେରାଟା ଭଲ ।

– ଚେହେରାରୁ କ'ଣ ମିଳିବ ?

– ମୋ ମତରେ ଚେହେରାଟା ସବୁ କିଛି । ଚେହେରା ନଥିଲେ, ଦେହ ନଥିଲେ ସାହିତ୍ୟ ଫାହିତ୍ୟ, ଥଟ୍ଟା ତାମସା, ଜୀବନ ଯନ୍ତ୍ରଣାରୁ କ'ଣ ମିଳିବ । ପୁଣି ଝିଅ ପାଇଁ ଚେହେରାଟା ସବୁ କିଛି ।

– ଆଉ ପୁଅ ପାଇଁ ବିଲ୍‌କୁଲ୍ ନ ହେଲେ ଚଳିବ ?

– ଆପଣ ତ ଯୁକ୍ତିରେ ଅଜାତଶତ୍ରୁ !

– ମୋର ପ୍ରଶଂସା ଆରମ୍ଭ କରିଦେଲେଣି । ଆପଣ ମୋ' ନାଁ ଜାଣିଯିବେ । ଏଥର କୁହନ୍ତୁ ।

– ଆଗ ଆପଣ କୁହନ୍ତୁ ଆପଣ ମୋତେ କେମିତି ଚିହ୍ନିଲେ ?

– ମୁଁ ଚିହ୍ନେ । ତା'ଛଡ଼ା ଆପଣଙ୍କ ଫଟୋ ପତ୍ରପତ୍ରିକାରେ ଦେଖୁଛି । ସାହିତ୍ୟ ସଭାରେ ଆପଣଙ୍କୁ ଦେଖିଛି ।

– ବାଃ, ଆପଣ ବି ସାହିତ୍ୟ ସଭା ଯାଆନ୍ତି । କବିତା ଲେଖନ୍ତି ବୋଧହୁଏ ?

– କାହିଁକି, କବିତା ନ ଲେଖିଲେ କ'ଣ ସାହିତ୍ୟ ସଭା ଯାଇ ହୁଏନି ?

– ନାଇଁ, ଅସମ୍ଭବ । ଓଡ଼ିଶାରେ ଏକଥା ନିହାତି ଅସମ୍ଭବ । ମୁଁ ଅନେକ ସାହିତ୍ୟ ଦେଖିଛି । ସାହିତ୍ୟ ସଭାରେ ଯେଉଁମାନେ କବିତା ପଢ଼ନ୍ତି ବା ଆଲୋଚନାରେ ଅଂଶଗ୍ରହଣ କରନ୍ତି, ସେଇମାନେହିଁ ଦର୍ଶକ ହୁଅନ୍ତି । ଯେଉଁମାନେ ଲେଖନ୍ତି ସେଇମାନେ ହିଁ ସାହିତ୍ୟ ସଭା ଯାଆନ୍ତି ।

– କିନ୍ତୁ ମୁଁ କବିତା ଲେଖେ ବୋଲି ଆପଣଙ୍କର କାହିଁକି ଧାରଣା ହେଲା ?

– କାରଣ ଏ ସହରରେ ପ୍ରାୟ ଅଧଶହ ଝିଅ କବିତା ଲେଖନ୍ତି ଏବଂ ସେମାନେ ସେମାନଙ୍କ ବନ୍ଧୁବାନ୍ଧବଙ୍କ ନିକଟରେ ନିର୍ଘାତ କବି ବୋଲି ପରିଚିତ । ସେମାନଙ୍କ ମୂଳସ୍ୱର ମନର ହତାଶା ।

– ଆପଣଙ୍କ ଗଳ୍ପରେ ପ୍ରେମ ଛଡ଼ା ଆଉ କ'ଣ ଅଛି ?

– ଆଃ, ଆପଣ ସମାଲୋଚନା ଆରମ୍ଭ କରି ଦେଲେଣି ଯେ ! ମାନ କରିବା ଆରମ୍ଭ କଲେଣି । ମୁଁ ଜାଣେ ଝିଅମାନେ ଯେତେଶୀଘ୍ର ମାନ କରନ୍ତି ସେତେ ଶୀଘ୍ର ମନେଇ ନେଇପାରନ୍ତି । ଭାବପ୍ରବଣ ହେଲେ କବିତା ଲେଖନ୍ତି । ଭାବପ୍ରବଣତା ସରିଲେ ଗୃହକର୍ମରେ ଯୋଗ ଦିଅନ୍ତି । ତେବେ ସେ କଥା ଛାଡ଼ନ୍ତୁ । କହନ୍ତୁ ଆପଣଙ୍କ ଉଦ୍ଦେଶ୍ୟ ?

– ଉଦ୍ଦେଶ୍ୟ ଆପଣଙ୍କ ସହ ଗପିବା ।

– ପରିଚୟ ନଥିଲେ ଗପରେ ମଜା ନଥାଏ ।

– ତା'ହେଲେ କହନ୍ତୁ ମୋ ନାଁ କ'ଣ ?

– ଯଦି କହିଦିଏ ?

– ମୁଁ ଜାଣେ ଆପଣ ସହଦେବ ନୁହନ୍ତି ।

– ଆପଣ କ'ଣ ଦ୍ରୌପଦୀ ?

– ଆପଣତ ସାଦାସିଧା ଲୋକ ନୁହନ୍ତି । ତଥାପି କହନ୍ତୁ ମୋ ନାଁ କ'ଣ ?

– ଆପଣଙ୍କ ନାମ ?

– ହଁ ମୋ ନାଁ ।

– ଆପଣଙ୍କ ନାଁ ଅନାମିକା ।

– ଆପଣ ବହୁତ ସିନେମା ଦେଖନ୍ତି ବୋଧହୁଏ । ଆପଣ ମୋର ଠିକ୍ ନାଁଟା କହିଲେ ନାହିଁ ।

– ଠିକ୍ ନାଁ ଭୁଲ୍ ନାଁରୁ କ'ଣ ମିଳିବ ? ନାଁ ତ ନାଁ ।

– ମୋ ସଂପର୍କରେ ଆଉ କିଛି କହିପାରିବେ ?

– ଆପଣ ନିରୋଳା ସମୟରେ ଆସନ୍ତି । ଟିକିଏ ସୁଯୋଗ ପାଇଲେ ଭିତର ଦୃଶ୍ୟ ସବୁ ଦେଖାଇଦେଇପାରନ୍ତି ।

– ଥାଉ ଥାଉ, ପୁରୁଷମାନେ ଭିତର ଦୃଶ୍ୟ ଦେଖନ୍ତି ନାହିଁ ବୋଲି ଦେଖାଇବାକୁ ପଡ଼େ । ଆଉ ପୁରୁଷମାନେ ତ ନାରୀର ଉପର ଦୃଶ୍ୟ ନେଇ ସନ୍ତୁଷ୍ଟ ।

– ଅବଶ୍ୟ ସାଧାରଣ ପୁରୁଷ ବହିର୍ଦୃଶ ନେଇ ବ୍ୟସ୍ତ । କିନ୍ତୁ କବି, ଶିଳ୍ପୀମାନଙ୍କ ପାଇଁ ସମସ୍ତଙ୍କ ବାହାର ଦୃଶ୍ୟ ପ୍ରାୟ ସମାନ । ସେମାନେ ଭିତର ଦେଖିବାକୁ, ଉଦ୍‌ଘାଟନ କରିବାକୁ ଚେଷ୍ଟା କରନ୍ତି; କାରଣ ଭିତର ଦୃଶ୍ୟରେ ବୈଚିତ୍ର୍ୟ ଥାଏ ।

– କହନ୍ତୁ ନା, ମୋ ଭିତରେ କ'ଣ ସବୁ ଅଛି ?

– ଆପଣଙ୍କ ସହ ଏଇ କେତେ ମିନିଟ୍ ଗପି ଯଦି ଆପଣଙ୍କ ବିଷୟରେ ଧାରଣା କରିପାରନ୍ତି ତା'ହେଲେ ତ କଥା ନଥିଲା । ଧାରଣା ହୋଇପାରନ୍ତା । କିନ୍ତୁ ଝିଅ ତ ଅଭିନୟ ନେଇ ବଞ୍ଚନ୍ତି । ଭିତରେ ଲୁହଲହୁ ଝରୁଥିବା ବେଳେ ହୋ ହୋ ହୋଇ ହସନ୍ତି । ଦୁଃଖ ନ ଥାଇ ବି ପ୍ରେମିକ ଆଗରେ ଘଣ୍ଟା ଘଣ୍ଟା ମୁହଁ ଶୁଖାଇ ବସି ଦର୍କାର ପଡ଼ିଲେ ସକସକ୍ କାନ୍ଦି ଯାଆନ୍ତି ।

– ଥାଉ, ବହୁତ କହିଦେଲେଣି । ମୁଁ ବି ପୁରୁଷଙ୍କୁ ଚିହ୍ନେ । ମୁହଁରେ ଅନେକ ପ୍ରତିଶ୍ରୁତି, ଅନେକ ମୌଖିକ ସ୍ନେହ । ଭଲ ପାଇବା ଉଜାଡ଼ି ଦେଇ ଶେଷରେ ସେମାନେ ପ୍ରତିଶ୍ରୁତି ରକ୍ଷା କରିବା ପାଇଁ ରଙ୍ଗିନ ବିବାହ ନିମନ୍ତ୍ରଣ ପତ୍ର ପଠାଇ ଦିଅନ୍ତି ।

– ଆଉ ଝିଅମାନେ ଅନ୍ୟ ପୁରୁଷକୁ ବାହା ହେଇଗଲାବେଳେ ପ୍ରେମିକକୁ ଶେଷ ଚିଠି ଲେଖି ଯାଆନ୍ତି- ଯେଉଁଠି ଥିଲେ ବି ମୁଁ ତୁମକୁ ଭଲ ପାଇବି । ତୁମେ ଏକ ଝିଅକୁ ବାହା ହୋଇ ସୁଖରେ ରୁହ, ଆହୁରି ବି ସୁନ୍ଦର ଅନୁପ୍ରାସ ଯମକ ଦେଇପାରନ୍ତି- ପ୍ରଣୟର ପରିଣତି ପରିଣୟ ନୁହେଁ ।

– ଆପଣଙ୍କୁ ଏମିତି ଅନୁପ୍ରାସ ଯମକ ଥିବା ବାକ୍ୟ କେହି ଶୁଣାଇଛି କି ?

– ଆପଣଙ୍କୁ ଶେଷରେ କେହି ରଙ୍ଗିନ ବିବାହ ନିମନ୍ତ୍ରଣ ପତ୍ର ଦେଇଛି କି ?

– ଆପଣଙ୍କର କଥା କହିବା ଶୈଳୀ ଚମତ୍କାର୍ ।

– ମୋତେ ପ୍ରଶଂସା କରୁଛନ୍ତି ? ଆପଣଙ୍କର ବି କମ୍ ନୁହେଁ ।

– ମୋତେ ବି ପ୍ରଶଂସା କରୁଛନ୍ତି ? ଆପଣଙ୍କ ଉପରେ ବୋଧହୁଏ କାହାରି ଋଣ ନାହିଁ ?

– ଏ ଧରଣର ମୌଖିକ ଋଣ ସଙ୍ଗେ ସଙ୍ଗେ ପରିଶୋଧ କରିଦିଏ ।

– ଆପଣଙ୍କୁ ଗୋଟିଏ କଥା ପଚାରିବି ?

– ଅନୁମତି ?

– ହଁ ।

– ଦେଲି ।

– ଆପଣଙ୍କ ଲେଖାର କେତେ ଭାଗ ନିଜସ୍ୱ ଘଟଣା ?

– ଶତକଡ଼ା ଦୁଇଶହ ଭାଗ । କାହିଁକି ?

– ଉପହାସ କରୁଛନ୍ତି ?

– ମୁଁ ଅଙ୍କରେ ପିଲାଦିନେ ଭଲ ନମ୍ବର ରଖି ନ ପାରି ମାଡ଼ ଖାଇଛି । ଶତକଡ଼ା, ସାଙ୍କେତିକ, ସମୟ ଦୂରତା- ଏଗୁଡ଼ା ଯମରାଜଙ୍କର ଗୋଟିଏ ଗୋଟିଏ ପ୍ରତିଶବ୍ଦ ମୋର ମନେ ହେଉଥିଲା । ତେଣୁ କେତେଭାଗ ନିଜସ୍ୱ କେତେଭାଗ ପରସ୍ୱ ମୁଁ ହିସାବ କରିପାରିବି ନାହିଁ । ବରଂ ଗୋଟିଏ କାମ କରନ୍ତୁ, ଆପଣ ଯଦି ମୋତେ ବା ମୋ ଦୁଃଖ ଜାଣିବାକୁ ଚାହାନ୍ତି, ତା'ହେଲେ ମୋ ପାଖେ ପାଖେ ରହନ୍ତୁ । ଖାତା, କଲମ ରଖନ୍ତୁ । ଶତକଡ଼ା ହିସାବରେ ଦକ୍ଷତା ଅର୍ଜନ କରନ୍ତୁ । ତା'ହେଲେ ହୋଇଯିବ ।

– ମୁଁ ତ ଆପଣଙ୍କ ପାଖେ ପାଖେ ପ୍ରାୟ ସବୁବେଳେ ଅଛି । ଆପଣ ଖୁବ୍ ନିଃସଙ୍ଗ ହେଲା ପରେ ମୁଁ କଥାବାର୍ତ୍ତା କରେ ।

– ଆପଣ କେଉଁଠୁ ମୋତେ ଫୋନ୍ କରୁଛନ୍ତି ?

– କାହିଁକି ! ହଜି ଯାଇଥିବା ଦୂର ଦିଗନ୍ତରୁ ।

– ବାଜେକଥା ଛାଡ଼ନ୍ତୁ । ମୋର ଏବେ ଅନେକ କାମ ।

– ମୁଁ ଜାଣେ ଏବେ ଆପଣଙ୍କର କିଛି କାମ ନଥିଲା । ସେଥିପାଇଁ ତ ଆପଣଙ୍କୁ ଫୋନ୍ କଲି । ଆଚ୍ଛା କୁହନ୍ତୁ, ଆପଣ ଏକା ଥିଲା ବେଳେ କ'ଣ କରନ୍ତି ?

– ପୁରୁଣା କଥା ମନେ କରେ । ହଜିଯାଇଥିବା ମଣିଷ, ଘଟଣା ଓ ସମୟ କଥା ମନେ କରେ ।

– ତେବେ ନିର୍ଦ୍ଦିଷ୍ଟ ଭାବରେ କେଉଁ କଥା ଚିନ୍ତା କରନ୍ତି ?

– ସେମିତି କିଛି କହିପାରିବି ନାହିଁ । ତଥାପି ମନେ କରେ– ଗୋଟିଏ ଝିଅ ମୋତେ ଖୁବ୍ ନିଃସ୍ୱାର୍ଥପର ଭାବରେ ସ୍ନେହ କରୁଥିଲା, ଭଲ ପାଉଥିଲା । ମୁଁ ତା'ର ଭଲ ପାଇବାର ମୂଲ୍ୟ ଦେଇପାରିଲି ନାହିଁ । ମୁଁ ତାକୁ ମୋ ଭିତରେ ବଞ୍ଚାଇ ରଖି ପାରିଲି ନାହିଁ ।

– ଏମିତି ସମୟରେ ହିଁ ମୁଁ ଆପଣଙ୍କ ସହ ଯୋଗାଯୋଗ ସ୍ଥାପନ କରେ । ମୁଁ ସେଇ ପୁରୁଣା ସମୟ । ଏଥର କୁହନ୍ତୁ ତ ମୋ ନାଁ କ'ଣ ?

– ଜାଣିଯାଇଛି ଏଥର !

– ଆଚ୍ଛା ! ତା'ହେଲେ କୁହନ୍ତୁ ।

– କହିବି ?

– ହଁ ।

– ତା' ହେଲେ କହିବି ?

– କୁହନ୍ତୁ ।

– ଆପଣଙ୍କ ନାଁ-

ହଁ କୁହନ୍ତୁ ।

– ସ୍ମୃତି !!

(ଚୁମ୍ବକ, ତୃତୀୟ ବର୍ଷ, ପ୍ରଥମ ସଂଖ୍ୟା)



# ବ୍ୟୁମେରାଂ

ଭୂତଟାକୁ ଆଜି ମୁଁ ଦେଖିଲି ନାହିଁ, କେମିତି ଏକ ପ୍ରକାର ଅନୁଭବ କଲି ।

ମୁଁ ଜୀବନରେ ଅନେକ ଲୋକଙ୍କୁ ଅନେକ ପ୍ରକାରର ଚିଠି ଲେଖିଥିବା କଥା ଧୀରେ ଧୀରେ ଭୁଲି ଆସିଲିଣି । କିନ୍ତୁ କେଉଁ ଏକ ପୁରୁଣା ବର୍ଷର ଜୁନ୍ ପଚିଶ ତାରିଖରେ କୌଣସି ଏକ ଜିଦ୍‌ଖୋର ଓ ସୁନ୍ଦରୀ ଝିଅକୁ ଲେଖିଥିବା ଚିଠି କଥା ଏ ଯାଏଁ ଭୁଲିପାରିନି । କାରଣ ସେଇଟା ଥିଲା ତା ପାଖକୁ ମୋର ଶେଷ ଚିଠି ଏବଂ ସେ ଚିଠିଟା ତା ପାଖକୁ ପଠାଇଥିଲି ତା ସାନଭାଇ ହାତରେ । ସେ ମୋ ଚିଠି ସବୁ ପରେ ମୋତେ ଫେରାଇ ଦେଉଥିଲା, କାରଣ ହୁଏତ ତାର ଭୟ ଥିଲା କାଳେ ତା ବାପା ମା ସେଗୁଡ଼ିକୁ ଆବିଷ୍କାର କରି ପକାଇବେ । କିନ୍ତୁ ମୋର ସେଇ ଜୁନ୍ ପଚିଶ ତାରିଖରେ ଲେଖା ଚିଠି ମୋ ପାଖକୁ ଫେରିଆସିଲା ନାହିଁ ଏବଂ ତା'ପରେ ଅନେକ ଘଟଣା ଦୁର୍ଘଟଣା, ଯାହା ପ୍ରଣୟରେ ସଚରାଚର ଘଟେ, ତାହା ସବୁ ଘଟିଗଲା । ଏବଂ ଧୀରେ ଧୀରେ ବର୍ଷ ପରେ ବର୍ଷର ପଲସ୍ତରା ତା ଉପରେ ପଡ଼ିଆସିଲା । ମୋର ମନେଅଛି, ସେ ଚିଠିରେ ମୁଁ କେବଳ ଦୁଇଟା ପ୍ରଶ୍ନ ପଚାରିଥିଲି- ତୋର ଆଉ ମୋର ପ୍ରକୃତରେ ସଂପର୍କ କ'ଣ ? ଏସବୁ ସତ୍ତ୍ୱେ ତୋତେ କାହିଁକି ଏତେ ଭଲ ଲାଗେ ?

ତାର ଚାରିବର୍ଷ ପରେ ସେ ବା' ହେଲା, ପାଞ୍ଚବର୍ଷ ପରେ ମରିଗଲା ତା ପେଟରେ ଥିବା ପିଲାକୁ ଜନ୍ମ ଦେଇ ନପାରି । ମୁଁ ବାହା ହୋଇନି, ଆସି ଜୀବନର ଶେଷ ପାହାଚରେ, ଯଦିବା ଅନେକଥର ବାହାହେବାକୁ ଇଚ୍ଛା କରିଛି । ମୁଁ ଜୀବନର ବେଶୀ ସମୟ କଟାଇଛି ତା'ରି ଚିନ୍ତା ତା'ରି ଅନୁଚିନ୍ତାରେ ।

ଏବେ ମୁଁ ଅଗଣାରେ ବସି ଅପରାହ୍ନର ଖରା ଦେଖେ । କୂଅମୂଳରେ ପାଚିଲା ପଣସପତ୍ର ଖସିପଡ଼େ । ଶୁଖିଲା କାଠଗଦା ଭିତରୁ ବୁଢ଼ା ବିଲେଇଟା ଦେହଝାଡ଼ି ଉଠିଆସେ । ମୁଁ ଆକାଶରେ ଦେଖେ ଗୋଟିଏ ଗୁଡ଼ି ପତ୍ ପତ୍ ହେଉଛି । ମନେ ମନେ ଉଚ୍ଚାରଣ କରେ– ପ୍ରକୃତରେ ଏ ସବୁର ସଂପର୍କ କ'ଣ ? ଏସବୁ ସତ୍ତ୍ୱେ କାହିଁକି ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁ ଭଲ ଲାଗେ ?

ମୁଁ ପ୍ରାୟ ସଂଜବେଳେ ନଈକୂଳକୁ ଯାଏଁ । ନଈକୂଳରେ ବସି ତରତର ବହିଯାଉଥିବା ପାଣିରେ ସୂର୍ଯ୍ୟାସ୍ତର ରଂଗ ସହ ଲହରୀର ଖେଳ ଦେଖେ ।

ମୁଁ ଆଜି ବି ଯାଇଥିଲି । ନଈକୂଳରେ ସେଇ ଗୋଟିଏ ସ୍ଥାନରେ ବସି ଦେଖୁଥିଲି ନଈ ଆରପଟେ ଆଖୁ କିଆରୀ ହିଡ଼ରେ ସୂର୍ଯ୍ୟାସ୍ତର ରଂଗରେ ଜୁଡୁବୁଡୁ ହୋଇ ଦୁଇଟି ଲୋକ କଳିକଜିଆରେ ମାତି ଯାଇଛନ୍ତି । ହାତାହାତି ହେବାକୁ ବେଶୀ ଡେରିନାହିଁ । ମନେ ମନେ ପ୍ରଶ୍ନ କଲି, ଆଖୁକିଆରୀ ପାଖରେ ଏତେ ତିକ୍ତତା ?

କ୍ରମେ ସଂଜ ହୋଇଆସିଲା । ତର ତର କରି ବହି ଯାଉଥିବା ସବୁ ଧାର ଉପରେ ଅନ୍ଧାର ବର୍ଷା ହେଲା । କେଉଁ ପ୍ରେତଲୋକରୁ ନକ୍ଷତ୍ରମାନେ ଦପ୍ ଦପ୍ କରି ଜଳି ଉଠିଲେ । ପାଖ ଶ୍ମଶାନରେ କେମିତି ଏକ ଅଜବ ଶବ୍ଦ ହେଲା । କିଏ ଯେମିତି ନଈର ସରୁଧାରକୁ ଚବର୍ ଚବର୍ ଅତିକ୍ରମ କରି ଆରପଟ ଆଖୁ କିଆରୀ ଆଡ଼େ ଚାଲିଗଲା ।

ମୁଁ ବୁଝିପାରିଲି ଅନ୍ଧକାର ଚାରିଆଡ଼େ ମଶାରୀ ଭଳି ଘେରି ଆସିଲାଣି । ମୁଁ ଜାଣେ ଠିକ୍ ଏହି ସମୟରେ ସବୁ ନିର୍ଜୀବ ପଦାର୍ଥ ଜଗି ଉଠନ୍ତି । ଚାରିଆଡ଼େ ଅବ୍ୟକ୍ତ କଥାବାର୍ତ୍ତା ଆରମ୍ଭ ହୁଏ । ମୁଁ ବୁଝିପାରିଲି ମୋ ଚାରିପଟେ ଅପେକ୍ଷା କରି ରହିଥିବା ଲତାଗୁଳ୍ମ, ଧୂଳିବାଲି, ପାଣି ପଥର ସମସ୍ତେ ଦେହ ଝାଡ଼ି ଉଠିଲେ । ନିଃଶବ୍ଦ ଭାଷାରେ ସେମାନଙ୍କ ନିଜ ନିଜ ମଧ୍ୟରେ କଥାବାର୍ତ୍ତା ଆରମ୍ଭ କରିଦେଲେ । ମୁଁ କାନଡ଼େରି ଶୁଣିଲି, କୀଟ ପତଙ୍ଗ, ଆକାଶ ବତାସ, ଉତ୍ତର ଦକ୍ଷିଣ, ପୂର୍ବ ପଶ୍ଚିମ, ଅଗ୍ନି ନୈରତ, ବାୟବ୍ୟ ଐଶାନ୍ୟ, ଊର୍ଦ୍ଧ୍ୱ ଅଧଃ, ଆଲୋକ ଅନ୍ଧାର, ରୂପ ଅରୂପ ସମସ୍ତେ ବାଙ୍‌ମୟ । ନଈଆଡ଼େ ଚାହିଁଲି । ଦୂରଗାଁର କେଉଁ ଏକ ଗୃହସ୍ଥଘରର ଡିବିରିରୁ ମିଞ୍ଜି ମିଞ୍ଜି ଆଲୁଅ ପୃଥିବୀରେ ମାଡ଼ିଯାଉଛି । ସେଇ ଆଲୋକରେ ରାସ୍ତା ଚିହ୍ନି ମୋତେ ଖୁବ୍ ଶୀଘ୍ର ମୋ ଜାଗାରେ ପହଞ୍ଚିବାକୁ ପଡ଼ିବ । ହଠାତ୍ ଦୂରର ସେଇ ଆଲୋକ ଦପ୍ କରି ଲିଭିଗଲା ବୋଧହୁଏ । ଗୋଟିଏ ଘନ ବତାସର ପେଣ୍ଡୁଳା ଶ୍ମଶାନ ଆଡୁ ମୋ ଦେହରେ ଧକ୍‌କା ଖାଇଲା । ଦେହଟା ଶୀତେଇ ଉଠିଲା । ମୋର ହେଲା ମୋ ପାଖରେ ଦୂରଗାଁ ଗୃହସ୍ଥର ଡିବିରି ଆଲୁଅ କାଗଜ ଭଳି ଚଉଡା ହୋଇଯାଉଚି । ମୁଁ ତାକୁ ଉଠାଇ ନେବାକୁ ଯାଇ ଥମିଗଲି । ହଠାତ୍ ମୋ ଚାରିପାଖେ ଘେରିଯାଇଥିବା ଲତାଗୁଳ୍ମ, ପାଣି ପଥର, ମାଟି ଗୋଡ଼ି, ଦିଗ ବିଦିଗ, ରୂପ ଅରୂପ ସ୍ଥାବର ଜଂଗମ, ଭଗବାନ ସଇତାନ ସମସ୍ତେ ଚିତ୍କାର କରି ଉଠିଲେ, ଉଠାଇ ନିଅ ଏଇଟା ତୁମର । ସେ ଆଦେଶ ଏଡ଼ାଇ ହୁଏନା । ଉଠାଇନେଲି । ସହରର ଆଲୁଅକୁ ମୁହଁ କରି ଆଗେଇ ଚାଲିଲି । ରାସ୍ତାର ପ୍ରଥମ ଲାଇଟ ତଳେ ଛିଡ଼ା ହୋଇ କାଗଜଟା ଖୋଲିଲି । ଚିଠି । ଜୁନ୍ ପଚିଶର ସେ ଦୁଇଧାଡ଼ି ଲେଖା- ତୋର ଆଉ ମୋର ସଂପର୍କ କଣ ? ଏସବୁ ସତ୍ତ୍ୱେ ତୋତେ କାହିଁକି ଏତେ ଭଲଲାଗେ ?

ମୁଁ ନଈଆଡ଼େ ଚାହିଁଲି । ଅନ୍ଧକାର । ନଈର ସ୍ଥିତି ବାରି ହେଉନାହିଁ । ସମୟଟା ଜମାଟ ଅନ୍ଧକାର ହୋଇଗଲାଣି– ଆଜିବି ଜୁନ୍ ପଚିଶ ତାରିଖ ।

(ବିନ୍ଦୁ, ଜାନୁଆରୀ, ୧୯୭୫)

●

# କୁହେଳି

ଲୋକଟାକୁ ଯେପରି ମୁଁ ଚିହ୍ନିଛି । ମୋର ମନେହୁଏ ସେ ଲୋକଟାକୁ ପ୍ରାୟ ପ୍ରତିଦିନ ମୁଁ ଅନ୍ୟମନସ୍କ ହୋଇ ଦେଖିଛି, ଦେଖି ଆସୁଛି । ଲୋକଟା ଷ୍ଟେସନ ଚା' ଦୋକାନରେ ଚା' ପିଉଥିଲା । ମୁଁ ସେତେବେଳେ ଛିଡ଼ାହୋଇ ଦୁଇ ହାତରେ ଦୁଇଟି ରେଲିଂ ଧରି ପ୍ଲାଟଫର୍ମ ଉପରକୁ ଚାହୁଁଥିଲି, କୌଣସି ପରିଚିତ ଲୋକ ଦେଖାଯାଆନ୍ତି କି ନାହିଁ । ସେ ଲୋକଟା କେମିତି ଏକପ୍ରକାର ନିଃସଙ୍କୋଚରେ, ଯେପରି ପୃଥିବୀସାରା ଲୋକଙ୍କ ସ୍ଥିତି ବି ସେ ବେଖାତିର  କରିପାରେ–ଏଇ ଭାବ ଦେଖାଇ ଚା' ପିଉଥିଲା । ତାର ମୋଟା ମୋଟା ପେଶୀବହୁଳ ହାତ । ଦେହରେ ଗାଢ଼ ନୀଳ ରଙ୍ଗର ଜାମା ଓ ପେଣ୍ଟ । ମୁଣ୍ଡରେ କଳା ରୁମାଲ ବନ୍ଧା । ଲୋକଟା ଚା' ପିଇସାରି କେମିତି ଏକ ଦୃପ୍ତ ଭଙ୍ଗୀରେ କାହାକୁ ଇସାରା କଲା, ତା'ପରେ ଇଞ୍ଜିନ ଆଡ଼େ ଆଗେଇଗଲା । ସେ ଇଞ୍ଜିନରେ ଚଢ଼ିବାକ୍ଷଣି ହୁଇସିଲ ବାଜିଲା । ଆଗପଛ ସଂକେତକୁ ଚାହିଁ ଟ୍ରେନଟା ଭକ୍ ଭକ୍ ଧୂଆଁ ବାନ୍ତିକରି ପ୍ଲାଟଫର୍ମ ଛାଡ଼ି ଆଗେଇ ଚାଲିଲା । ମୁଁ ଯାଇ ପୁଣି ମୋ ସ୍ଥାନରେ ବସିଗଲି । ବସି ଭାବିଲି ମୁଁ କେବଳ ଗାଢ଼ ନୀଳ ପୋଷାକ ପିନ୍ଧା ଲୋକଟାର ଅଧୀନରେ ଆଗକୁ ମାଡ଼ି ଚାଲିଛି ।

ମୋ ସାମ୍ନାରେ ଲୋକଟା ଆଗରୁ ମୋ ସହ ଗପ ଜମେଇଥିଲା । ଦେଶର ଅବସ୍ଥା, ବଜାରଦର, ତେଲ ନିୟନ୍ତ୍ରଣ, ଯୁଦ୍ଧ, ରାଜନୀତି, ସିନେମା, ଲଘୁଚାପ ସବୁ ବିଷୟ ଉପରୁ ଥରେ ଥରେ ବୁଲି ଆସିଥିଲା । କିନ୍ତୁ ସେତେବେଳୁ ସେ ମୋତେ ସନ୍ଦେହ କରି ଚୁପ୍ ହୋଇଯାଇଛି ଯେତେବେଳେ ଟି.ଟି.ଇ. ଆସିଥିଲା ଟିକଟ ଚେକ୍ କରିବା ପାଇଁ । ମୋ ସାମ୍ନାରେ କଳାକୋଟ ଓ ବୀଭତ୍ସ ସଣ୍ଡୁଆଶି ଦେଖି ମୁଁ ଅପ୍ରତିଭ ହୋଇଯାଇଥିଲି ।

–ଆପଣଙ୍କ ଟିକଟ ?

–ଏଇ, ମାନେ ମୁଁ ଟିକଟ କରି ନାହିଁ ।

–କାହିଁକି ?

–ମୁଁ ଜାଣେ ନାହିଁ ମୁଁ ଠିକ୍ କୁଆଡ଼େ ଯିବି !

–ନିରୁଦ୍ଦେଶ ଯାତ୍ରା ?

–ପ୍ରାୟ ସେଇପ୍ରକାର ।

–ଦର୍ଶନ ଓ ସାହିତ୍ୟ ଛାଡ଼ି ଟଙ୍କା ବାହାର କରନ୍ତୁ ।

–ଟ୍ରେନଟା କୁଆଡ଼େ ଯାଉଛି ।

–ଦକ୍ଷିଣକୁ, କାହିଁକି ?

–ଟ୍ରେନଟା ଯେତେଦୂର ଯିବ ସେତେପର୍ଯ୍ୟନ୍ତ ଟିକଟ କରି ଦିଅନ୍ତୁ । ମୁଁ ଯାହାକୁ ଖୋଜୁଛି ପାଇଗଲେ ରାସ୍ତାରେ ଓହ୍ଲାଇଯିବି ।

ଟି.ଟି.ସି. ଗଲାପରେ ଲୋକଟା ମୋ ମୁହଁକୁ ଚାହିଁଲା । ତା ମୁହଁରେ ଯେପରି ପ୍ରଶ୍ନ–ଆପଣ କାହାକୁ ଖୋଜୁଛନ୍ତି ? ସଙ୍ଗେ ସଙ୍ଗେ ମୋର ସେପରି ସିଧାସଳଖ ଉତ୍ତର–କୁହେଳିକୁ ।

ମୁଁ ଯେମିତି ସେଇ ଲୋକ ଉଦ୍ଦେଶ୍ୟରେ ଖୁବ୍ ଗୋପନରେ ଖୁବ୍ ନୀରବରେ ମୋର ସେଇ କାହାଣୀଟା କହିଗଲି ଆପଣ ହୁଏତ ବିଶ୍ୱାସ କରିବେ ନାହିଁ ମୋ କଥା । ଏଇ ମାନେ ମନେକରନ୍ତୁ ହଠାତ୍ ମୋତେ ମନେହୁଏ ମୁଁ ଯେପରି ସ୍ଲେଜରେ ବସି ଯାଉଛି । ମୋତେ ଦୁଇଟି କୁକୁର ଟାଣି ଚାଲିଛନ୍ତି । ମାଇଲ ମାଇଲ ବ୍ୟାପୀ କେବଳ ବରଫ ଆଉ ବରଫ ଅଥଚ ମଣିଷ ନାହାନ୍ତି । ମୁଁ ଜାଣେ ମୁଁ କେବେ ତୁନ୍ଦ୍ରା ଅଞ୍ଚଳକୁ ଯାଇନାହିଁ । ତଥାପି ଏ ଧରଣର ଦୃଶ୍ୟ କେମିତି ମୋ ଭିତରେ ଜମିଗଲା ବୁଝିପାରୁନାହିଁ । ମୁଁ ଯାହା କହିବି ସେ କଥାଟା ଠିକ୍ ଏଇ ଧରଣର ମାନେ ମୋର ପ୍ରାୟ ଅନେକ ସମୟରେ ମନେହୁଏ ଟ୍ରେନରେ ଯାଉଯାଉ ଗୋଟିଏ ସୁନ୍ଦର ପାହାଡ଼ ତଳ ଷ୍ଟେସନରେ ଓହ୍ଲାଇ ପଡ଼ିଛି । ଷ୍ଟେସନ ପାଖରେ ସୁନ୍ଦର ଫୁଲ ବଗିଚା । ବାହାରେ ଗୋଟିଏ ଯୋଡ଼ିଏ ସୁନ୍ଦର ଦୋକାନ । ସେ ଦୋକାନରେ ଥାକ ଥାକ ସଜା ହୋଇଛି ଖାଦ୍ୟପଦାର୍ଥ । ସେ ଖାଦ୍ୟରେ କିଛି ଭେଜାଲ ନାହିଁ କି ତା ଉପରେ ଧୂଳି ମାଛିର ଭିଡ଼ ନାହିଁ । ମୁଣ୍ଡରେ ଶ୍ୱେତ ଚନ୍ଦନ ଟୋପା ଲଗାଇ ଦୋକାନୀ ଖୁବ୍ ବିନୟୀ ହୋଇ ଆହ୍ୱାନ କରୁଛି ଭିତରକୁ । ସେ ଦୋକାନ ପାରିହେଲେ ସୁନ୍ଦର ଫୁଲର ବଗିଚା ଭିତର ଦେଇ ଅଣଓସାରିଆ ରାସ୍ତା । ସେ ରାସ୍ତାରେ ଗାଡ଼ି ମଟର ସହ ଧକ୍‌କା ହେବାର ଭୟ ନାହିଁ । ଦୁଇ ପାଖରେ ଫୁଲ ଚଢ଼େଇ ଚଢ଼େଇ ଫୁଲ ଫୁଲ ପ୍ରଜାପତି ପ୍ରଜାପତି ଫୁଲ ଏବଂ ଫୁଲ । ମୁଁ ଆଗେଇ ଚାଲିଛି ସେ ରାସ୍ତାରେ । ଅବଶ୍ୟ ରାସ୍ତାସାରା କେମିତି କୁହୁଡ଼ି ଘୋଟି ରହିଛି । ଖୁବ୍ ଭୋରରୁ ଉଠି ଗାଧୋଇ ପଡ଼ିଲେ ଯେପରି ଅକାରଣରେ ପବିତ୍ର ଲାଗେ, ସେଇ ସମୟରେ ସେମିତି ପବିତ୍ର ଲାଗୁଛି । ସାମ୍ନାରେ ସୁନ୍ଦର ବଗିଚା ଘେରା ଗୋଟିଏ ଛୋଟ ଚାଳଘର । ମୁଁ ଯାଇ ସେ ଘରର କବାଟରେ ହାତ ଦେଲାମାତ୍ରେ ଖୋଲିଯାଇଛି କବାଟ । ଭିତରେ କେବଳ ଧୂପର ସୌରଭ । ମୁଁ ଭିତରକୁ ପ୍ରବେଶ କଲାମାତ୍ରେ କେମିତି ତନ୍ମୟ ହୋଇ

ଦେଖିଛି ଚାରିଆଡ଼େ ହାଲୁକା ସବୁଜ ରଙ୍ଗ । ଡାହାଣ ପାଖ ଦର୍ଜା ଖୋଲି ଦେଖିଛି କାଚ ଆଲମାରିରେ ଲୋଭନୀୟ ଖାଦ୍ୟ ସବୁ ସଜା ହୋଇଛି । ବାରିଆଡ଼େ କବାଟ ଖୋଲି ଦେଖିଛି ପଦ୍ମପୋଖରୀ । ସେ ପୋଖରୀରେ ପଦ୍ମପତ୍ର ତଳେ ତଳେ ମାଛ ଚହଟି ଯାଉଛି । ପୋଖରୀ ହୁଡ଼ାରେ ନଡ଼ିଆ କଦଳୀ ଗୁଆର ବଗିଚା । ଟିକିଏ କଡ଼କୁ ପନିପରିବା ବଗିଚା । ବାରିପଟ କବାଟ ବନ୍ଦ କରି ଅବଶିଷ୍ଟ ବନ୍ଦ ଦରଜା ଖୋଲିଦେଲା ମାତ୍ରେ କସ୍ତୁରୀର ସୌରଭରେ ମୁଁ ମୋହାଚ୍ଛନ୍ନ ହୋଇଯାଇଛି । କୋଠରିର ଗୋଟିଏ କୋଣରେ ମହମବତିର ନିଷ୍କମ୍ପ ପବିତ୍ର ଆଲୋକ । ସେଇ ମହମବତିର ଆଲୋକରେ ମୁଁ କେମିତି ଅନୁଭବ କରିଛି ମୋ ଭିତର ବେଶ୍ ଆଲୋକିତ ହୋଇ ଉଠିଲାଣି । ସେଇ କ୍ଷୀଣ ସ୍ୱପ୍ନମୟ ଆଲୋକରେ ଦେଖିଛି ଗୋଟିଏ ବିଛଣାରେ ପ୍ରତୀକ୍ଷାର ମୁଦ୍ରାରେ ଅର୍ଦ୍ଧଶାୟିତା ତରୁଣୀ । ମୋ ଭିତରେ ପ୍ରଣାମ କରିବାର ପ୍ରବୃତ୍ତି ଧୀରେ ଧୀରେ ଜାଗି ଉଠିଛି । ପ୍ରଣାମ କରିବି କି ନାହିଁ ଭାବୁଥିବା ବେଳେ– ତୁମେ ଏତେ ଡେରିରେ ଆସିଲ, ମୁଁ ଯେ ତୁମକୁ ଅପେକ୍ଷା କରିଛି, ବିଶ୍ୱାସ କର କେଉଁ ଅନାଦି କାଳରୁ ତୁମକୁ ଅପେକ୍ଷା କରି ମୁଁ ଏଇ ଘରେ ବସିଛି–ଏଇ ଧରଣର ଅନେକ କଥା ଶୁଣିଲା ପରେ ପଚାରିଛି–

–ତୁମ ନାଁ କଣ ?

–କୁହେଳି ।

କୁହେଳି ମୋ ହାତଧରି ଘର ଭିତରକୁ ନେଇଛି । ମୋ ଭିତରେ ଆଲିଙ୍ଗନ, ଚୁମ୍ବନାଦି ପ୍ରବୃତ୍ତି ଧୀରେ ଧୀରେ ଆତ୍ମପ୍ରକାଶ କରିଛନ୍ତି । ହଠାତ୍ ମୁଁ ତାଠାରୁ ମୁକ୍ତି ଚାହିଁଛି । ସେ ମୋ ସହ ଆସିଛି ଷ୍ଟେସନ ପର୍ଯ୍ୟନ୍ତ । ମୁଁ ଟ୍ରେନକୁ ଉଠିଲା ପରେ ସେ ତଳେ ଛିଡ଼ାହୋଇ ମୋର ଦୁଇ ହାତ ପାପୁଲି ଭିତରେ ତାର ହାତ ରଖି ତା ଉପରେ ତାର ନରମ ଗାଲ ରଖି କହିଛି–ମୁଁ ଏଇଠି ଏଇ ଷ୍ଟେସନରେ ତୁମକୁ ଅପେକ୍ଷା କରିଛି । ତୁମେ ଆସିବ । ଏଇ ଷ୍ଟେସନରେ ଦେଖିବ ମୁଁ ନିଶ୍ଚୟ ତୁମକୁ ଅପେକ୍ଷା କରିଥିବି । ମୋର ସ୍ପଷ୍ଟ ମନେଅଛି ସେତେବେଳେ ଚାରିଆଡ଼େ ପତଳା କୁହୁଡ଼ି ଘେରି ରହିଥିଲା । ଷ୍ଟେସନର ଫୁଲ ଆଲୁଅ ସବୁ ଅସ୍ପଷ୍ଟ ଦେଖାଯାଉଥିଲେ । ଟ୍ରେନ ଷ୍ଟେସନ ଛାଡ଼ି ଆସିବା ପରେ ମୋର ମନେହେଲା ମୁଁ ଷ୍ଟେସନର ନାମ ଜାଣେ ନାହିଁ । କୁହେଳିକୁ ପାଇବି କେମିତି ?

ମୁଁ ଏତେ କଥା ମୋ ସାମ୍ନା ଲୋକଟାକୁ ନୀରବରେ କହିଗଲା ପରେ ସଚେତନ ହୋଇ ଦେଖିଲି ଲୋକଟା ମୋ ଉପରେ ରାଗି କିମ୍ବା ଈର୍ଷା କରି ତୁଳେଇବାକୁ ଆରମ୍ଭ କଲାଣି । ମୁଁ ଅନ୍ୟ ଲୋକମାନଙ୍କୁ ଚାହିଁ ଦେଖିଲି ସେମାନଙ୍କ ମୁହଁରେ ସେଇ ଅଭିବ୍ୟକ୍ତି ଯାହାର ତର୍ଜମା– ନିଜ କାମକୁ ତ ବେଳ ଅଣ୍ଟୁନି ପୁଣି ତୁମର ଏଇ ସ୍ୱପ୍ନ କାହାଣୀ, ଫୁଃ ! ପୃଥିବୀର ସମସ୍ତେ ପ୍ରାୟ ଏମିତି । କାହାରିକୁ କହିବାକୁ ଆରମ୍ଭ କଲେ ସେମାନେ

ଶୋଇପଡ଼ନ୍ତି ନ ହେଲେ ଥଟ୍ଟା କରନ୍ତି । ମନେକର ଦିନେ ଜଣେ ବନ୍ଧୁଙ୍କ ନିକଟରେ ଏଇ କଥା କହିଲି । ସେ ଧୈର୍ଯ୍ୟ ଧରି ଶୁଣିଲା । କହିଲା–ସ୍ୱପ୍ନ ନିଶ୍ଚୟ ! –ନା ସ୍ୱପ୍ନ ନୁହେଁ, କୁହେଳି କେଉଁ ଏକ ଷ୍ଟେସନରେ ମୋତେ ଅପେକ୍ଷା କରିଛି । –କେଉଁ ଷ୍ଟେସନ ? –ଫୁଲଫଳରେ ସଜା ପାହାଡ଼ ତଳର ସୁନ୍ଦର ଏକ ଛୋଟ ଷ୍ଟେସନ । –କ'ଣ କବିତା ? –ନା, କବିତା ନୁହେଁ, ସତରେ ମୋତେ ତାକୁ ଖୋଜି ବାହାର କରିବାକୁ ପଡ଼ିବ । ତାର ଯୁକ୍ତି–ଦେଖ୍, ଅନେକ ସ୍ୱପ୍ନ ଏମିତି ସ୍ମୃତି ଭିତରେ ଜମି ରହିଥାଏ ଯେ ତା ସତ ଭଳି ମନେହୁଏ, ତୋର ଏ ଘଟଣାଟା ଠିକ୍ ସେମିତି । –ମୋର ମନେ ଅଛି ତାର ସେଇ ଦିବ୍ୟ ଚେହେରା, ତାର ସଙ୍ଗୀତର ଛନ୍ଦ ଭଳି କଥାବାର୍ତ୍ତା, ତାର ଆଲିଙ୍ଗନର ଦୃଢ଼ତା, ତାର ଚୁମ୍ବନର ଉଷ୍ଣତା, ତାର ପ୍ରତୀକ୍ଷମାଣ ଆଖି–ଏସବୁ କେବେ ମିଥ୍ୟା ହୋଇପାରେନା । –ତାହେଲେ ଆଗେଇ ଯାଅ, ଆଗେଇ ଯାଅ, ଖୋଜି ବାହାର କର ତାର ଆଲିଙ୍ଗନର ଦୃଢ଼ତା, ଚୁମ୍ବନର ଉଷ୍ଣତା । ବନ୍ଧୁ କେବଳ ହସେ ନାହିଁ, ଉପହାସ କରେ ।

ମୁଁ ଜାଣେ ସେଇ ଚିହ୍ନାଭଳି ମନେ ହେଉଥିବା ନୀଳ ପୋଷାକ ପିନ୍ଧା କଳା ରୁମାଲ ମୁଣ୍ଡରେ ଗୁଡ଼ାଇ ହୋଇଥିବା ଇଞ୍ଜିନ ଚାଳକ ମୋତେ ପ୍ରତି ମୁହୂର୍ତ୍ତରେ ଆଗକୁ ଟାଣି ନେଉଛି । ମୁଁ ଏତେ ଲୋକ ଥାଇ ବି ନିଃସଙ୍ଗ । ମୁଁ ଏ ସହଯାତ୍ରୀମାନଙ୍କୁ ଅନେକ କଥା କହିବାକୁ ଚାହେଁ । ସେମାନେ କିନ୍ତୁ ନିଦେଇ ନିଦେଇ ରାସ୍ତା ପାରି ହୋଇଯିବାକୁ ଚାହାନ୍ତି । ମୁଁ କିନ୍ତୁ ସମସ୍ତଙ୍କ ଉଦ୍ଦେଶ୍ୟରେ ଖୁବ୍ ସଂଗୋପନରେ ଖୁବ୍ ନୀରବରେ କହିଯାଏ–କେବଳ ସେତିକି ନୁହେଁ, ଆହୁରି ଅନେକ କଥା ଅଛି । ସବୁକଥା ସବୁବେଳେ ସମସ୍ତଙ୍କ ପାଖରେ ତ କହିହୁଏ ନାହିଁ । ତଥାପି କିଛି କହିବାର ଚେଷ୍ଟା କରିବି । ମୁଁ କେଉଁଠୁ ଆସିଛି, କିପରି ଆସିଛି ସେ ସବୁ କଥା କହି ଆପଣମାନଙ୍କୁ ହଇରାଣ କରିବି ନାହିଁ । ମୁଁ ଜାଣେ ଲୋକମାନେ ଅନିର୍ଦ୍ଦିଷ୍ଟ ପଥରେ ପାଦ ବଢ଼ାନ୍ତି ଖୁବ୍ ନିରାଶ ହୋଇଗଲେ, ବଞ୍ଚିବାର କ୍ଷୀଣ ଆଲୋକ ବି ଆଖି ସାମ୍ନାରୁ ଉଭେଇଗଲେ । ମୋ କଥା ପ୍ରାୟ ସେଇଆ । ଖୁବ୍ ହତାଶ ହେଲି । ପାରିଲି ନାହିଁ । ଜାଣିପାରିଲି ପଳାଇ ନ ଗଲେ ଆଉ ରକ୍ଷା ନାହିଁ । ମୋତେ ଦାୟିତ୍ୱ ତୁଲାଇବାକୁ ଭଲ ଲାଗେ । କିନ୍ତୁ ଏକାଥରେ ଏତେ ଦାୟିତ୍ୱ ତୁଲାଇବା ମୋ ପକ୍ଷରେ ଅସମ୍ଭବ । ଥରେ ଥରେ ମନେହୁଏ ଏ ପୃଥିବୀରେ ମୁଁ ଖୁବ୍ ଏକା, ଭୀଷଣ ନିଃସଙ୍ଗ । ସେତେବେଳେ ମୋ ଭିତରେ ଯନ୍ତ୍ରଣାର ସରୀସୃପ ଗୁରୁଣ୍ଡିବାକୁ ଆରମ୍ଭ କରେ । ଏବଂ ଠିକ୍ ସେତିକିବେଳେ ମୁଁ ସେଇ ସୁନ୍ଦର ଷ୍ଟେସନ ଆଉ ଷ୍ଟେସନରେ ଅପେକ୍ଷମାଣ କୁହେଳି କଥା ମନେ କରେ । ଦିନେ ହଠାତ୍ ଷ୍ଟେସନରେ ଗାଢ଼ ନୀଳ ପୋଷାକପିନ୍ଧା, ମୁଣ୍ଡରେ କଳାରୁମାଲ ଗୁଡ଼ାଇ ହୋଇଥିବା ଲୋକଟାକୁ ଦେଖି ପ୍ରତ୍ୟୟ ହେଲା–କେବଳ ଏ ସେଇ ଲୋକ ଯିଏ ମୋତେ କୁହେଳି ପାଖରେ ପହଞ୍ଚାଇ ଦେଇ ପାରିବ । ଆଶ୍ଚର୍ଯ୍ୟ, ଲୋକଟାକୁ ଯେପରି ମୁଁ ଆଗରୁ ଅନେକଥର ଦେଖିଛି ।

ପ୍ରାୟ ପ୍ରତିଦିନ ମୋର ଅଲକ୍ଷ୍ୟରେ ତାକୁ ମୁଁ ଦେଖିଆସିଛି । ମୁଁ ତାରି ଉପରେ ବିଶ୍ୱାସ ରଖି ଟ୍ରେନରେ ଚଢ଼ିଗଲି । ସବୁ ଷ୍ଟେସନ ଉପରେ ଚାଲୁଥିବା, ବସିଥିବା, କଥା କହୁଥିବା, ଅପେକ୍ଷା କରୁଥିବା ଝିଅଙ୍କୁ ଲକ୍ଷ୍ୟ କଲି । ହଠାତ୍ ଗୋଟିଏ ବଡ଼ ଷ୍ଟେନରେ ଗାଡ଼ି ରହିଲା । ବହୁତ ଜନଗହଳି, କିଣାବିକା, ଇତସ୍ତତଃ ଧାଁ-ଦଉଡ଼ । ତା ଭିତରେ ବି ମୋ ଆଡ଼େ ପଛକରି ଗୋଟିଏ ଝିଅ ଛିଡ଼ାହୋଇଥିଲା । ତାର ଆନିତମ୍ବ ବେଣୀ । ସୁନ୍ଦର ଚେହେରା । ମୋତେ ମନେହେଲା ଯେପରି କୁହେଳି ଅଭିମାନ କରି ଛିଡ଼ା ହୋଇଛି । ମୁଁ ସେ ଷ୍ଟେସନରେ ଓହ୍ଲାଇ ପଡ଼ିଲି । ତା ସାମ୍ନାକୁ ଗଲି । ଆକାଶନୀଳ ସୁନ୍ଦର ଆଖି ଟେକି ସେ ମୋତେ ଚାହିଁଲା । ଚାହିଁବାଟା ଅନେକାଂଶରେ କୁହେଳି ଭଳି । ମୁଁ ତା ସାମ୍ନାରେ ପ୍ରଶ୍ନ ଚିହ୍ନ ହୋଇ ଛିଡ଼ାହୋଇ ପଡ଼ିଲି–

–ଆପଣ ?

–ହଁ, ମୁଁ ।

–ମୋତେ କିଛି କହୁଛନ୍ତି ?

–ତୁମ ନାଁ କୁହେଳି ?

–ନା, ରାଣୀ ।

–ଓହୋ !

–ଆପଣଙ୍କ ନାଁ ?

–ତୁମେ ଏଇଠି ଏମିତି ?

–ଅପେକ୍ଷା କରିଛି ।

ତାର ଈପ୍‌ସିତ ଲୋକକୁ ଅପେକ୍ଷା କରି ଛିଡ଼ାହୋଇଛି ସେ । ତାର ଅପେକ୍ଷାର ବିରକ୍ତିକର ମୁହୂର୍ତ୍ତ ପାରି ହେବା ପାଇଁ ଏଣୁତେଣୁ ଅନେକ କଥା କହିଲା । ମୁଁ ଶୁଣିଲି । ମୁଁ ବି କହିଲି, ସେ ଶୁଣିଲା । ସେଇ କଥୋପକଥନ ମଝିରେ ମୁଁ ମନେ ମନେ ତାକୁ ଆଲିଙ୍ଗନ କଲି, ଚୁମ୍ବନ କଲି ଓ ଖୁବ୍ ଭିତରେ, ଖୁବ୍ ସଂଗୋପନରେ କହିଗଲି– ମୁଁ ତମକୁ ଭଲପାଏ । ଟ୍ରେନର ହୁଇସିଲ ବାଜିଲା । ମୁଁ ଦୌଡ଼ିଯାଇ ଟ୍ରେନରେ ଚଢ଼ିଗଲି । ରାଣୀ ତଳେ ଥାଇ ହାତ ହଲାଇଲା ପୁଣି ପର ଟ୍ରେନକୁ ଅପେକ୍ଷା କଲା ତାର ଈପ୍‌ସିତ ବ୍ୟକ୍ତି ପାଇଁ । ଗ୍ରାମ ନଗର ଜନପଦ । ଗତ ଷ୍ଟେସନର ସେଇ ଆକାଶନୀଳ ଆଖିର ସ୍ମୃତି ।

ପୁଣି ଗୋଟିଏ ବଡ଼ ଷ୍ଟେସନରେ ଗାଡ଼ି ରହିଲା । ମୁଁ ଓହ୍ଲାଇ ପଡ଼ିଲା । ଏଣେ ତେଣେ ଚାହିଁଲି । ସେ ଷ୍ଟେସନରେ କୋଳାହଳ ବେଶୀ ନଥିଲା । ଷ୍ଟେସନ କଡ଼କୁ ଗୋଟିଏ ଛୋଟ ଫୁଲ ବଗିଚା । ମୋତେ ମନେ ହେଲା ଏଇଟା ବୋଧହୁଏ ସେଇ କୁହେଳିର ଷ୍ଟେସନ । ହୁଏତ ଅନେକ ଦିନ ପରେ ସେ ଷ୍ଟେସନର ଚେହେରା ଏମିତି ବଦଳି ଯାଇଛି । ଫୁଲ ବଗିଚା ପାଖରେ ଗୋଟିଏ ଝିଅ ସେପଟକୁ ମୁହଁ କରି ଛିଡ଼ା

ହୋଇଥିଲା । ତାର ସୁନ୍ଦର ବେକ, ସିଂହକଟି ଦେଖି ଚିହ୍ନିପାରିଲି ଝିଅଟି ଆଉ କେହି ନୁହେଁ, କୁହେଳି । ମୁଁ ଯାଇ ପଛପଟୁ ତା' ଆଖି ବୁଜି ଧରିଲି । ଝିଅଟି ମୋ ସାମ୍ନାକୁ ବୁଲିଲା ମାତ୍ରେ ଭୟରେ କାକୁସ୍ଥ ହୋଇଗଲି ।

—ଗୋଟିଏ ଅପରିଚିତ ଝିଅ ସହ କେମିତି ବ୍ୟବହାର କରିବାକୁ ହୁଏ ଆପଣ ଜାଣିନାହାନ୍ତି ।

—ମୁଁ ତୁମକୁ କୁହେଳି ବୋଲି ଭାବିଥିଲି ।

—ମୁଁ ଆପଣଙ୍କର କୁହେଳି ନୁହେଁ, ଅସୀମା ।

—ତୁମେ କିନ୍ତୁ ଦେଖିବା ପାଇଁ ଅବିକଳ କୁହେଳି ଭଳି ।

—ମୁଁ ତ କୁହେଳି ନୁହେଁ, କୁହେଳି ଭଳି କିପରି ହେବି ?

—ତୁମେ କାହାକୁ ଅପେକ୍ଷା କରିଥିଲ ?

—ମୋ ଭାଇଙ୍କ ଏଇ ଟ୍ରେନରେ ଆସିବାର ଥିଲା ।

—ସେ ଆସିନାହାନ୍ତି ?

—ନା ।

—ମୋତେ ତୁମେ ଭାଇ ବୋଲି ଗ୍ରହଣ କର ।

ତା ମୁହଁରୁ ବିରକ୍ତି ଓ ରାଗ ଉଭେଇଗଲା । ସେ ମୋତେ ଭଲ ମଣିଷ ବୋଲି ଗ୍ରହଣ କରିନେଲା । ତା ବିଷୟରେ ଅନେକ କଥା କହିଲା । ମୋ ବିଷୟରେ ଅନେକ କଥା ଶୁଣିଲା । ମୁଁ ସେଇ କଥୋପକଥନ ଭିତରେ ଖୁବ୍ ନୀରବରେ କହୁଥିଲି—ତୁମେ ଯଦି ଚାହିଁବ ମୁଁ ଆଉ କୁହେଳି ପର୍ଯ୍ୟନ୍ତ ଯିବି ନାହିଁ । ଏଇ ଷ୍ଟେସନରେ ସୁନ୍ଦର ଫୁଲ ବଗିଚା ଅଛି, ତୁମେ ତ କୁହେଳି ଭଳି ସୁନ୍ଦର । ତେଣୁ ଷ୍ଟେସନ ବାହାରେ ଆମେ ନିଜ ହାତରେ ଗୋଟିଏ ଛୋଟ ଚାଳଘର ତିଆରି କରିବା । ମୁଁ ସେ ଘରର ସାମ୍ନାରେ ତିଆରି କରିବି ଫୁଲ ବଗିଚା, ବାରିଆଡ଼େ ଖୋଳିଦେବି ପୋଖରୀ, ପୋଖରୀରେ ଛାଡ଼ିଦେବି ମାଛ ଯାଆଁଳ, ପୋଖରୀ ହୁଡ଼ାରେ ଲଗାଇଦେବି ନଡ଼ିଆ, କଦଳୀ, ଗୁଆ । ତୁମେ ସୁନ୍ଦର ସୁନ୍ଦର ଖାଦ୍ୟପଦାର୍ଥରେ ରୋଷେଇ ଘର ଭର୍ତ୍ତି କରିଦେବ, ଶୋଇବା ଘରେ ମହମବତି ଜଳାଇ ମୋତେ ଅପେକ୍ଷା କରି ବସି ରହିବ । କିନ୍ତୁ ମୋର ଖୁବ୍ ଭିତର ଘରେ ସେ କଥା ସବୁ ରହିଗଲା । ଟ୍ରେନରେ ଘଣ୍ଟା ବାଜିଲା, ସବୁଜ ପତାକା ଉଡ଼ିଲା । ମୁଁ ପୁଣି ଟ୍ରେନରେ ଚଢ଼ିଗଲି । ଟ୍ରେନ ଉପରୁ ଦେଖିଲି ଅସୀମାର ଆଖି ଛଳ ଛଳ, ତା ମୁହଁରେ ରାଗ ଅଭିମାନ ବିରକ୍ତି । ସ୍ଥିର କଲି ଆଉ କୌଣସି ଷ୍ଟେସନରେ ଓହ୍ଲାଇବି ନାହିଁ ।

ମୁଁ ଉଦାସ ଦୃଷ୍ଟି ମିଳେଇ ବାହାରକୁ ଚାହିଁ ରହେ । ଅସୀମାର ସୁନ୍ଦର ବେକ ଓ ସିଂହକଟି ଏବଂ ତା ଆଖିର ଲୁହ କଥା ମନେ କରି ମୋର ପାଦ ଆଙ୍ଗୁଳି ପର୍ଯ୍ୟନ୍ତ ଯନ୍ତ୍ରଣାର ସ୍ରୋତ ଖେଳିଯାଏ । ମୁଁ ବାହାରକୁ ଚାହିଁ ଦେଖେ ଧୀରେ ଧୀରେ ପଛକୁ ଘୁଞ୍ଚି ଯାଉଥିବା ଧାନ କ୍ଷେତ, ଅବାକ୍ ଆଖିରେ ଚାହିଁଥିବା ଗାଈଆଳ ଟୋକା, ଟେଲିଫୋନ

ତାରରେ ନିଃସଙ୍ଗ କଣ୍ଟକପାତି । ଅନେକ ସମୟ ଏହିପରି ବଢ଼ିଯାଏ । ସଞ୍ଜ ହୋଇ ଆସେ । ଟ୍ରେନର ଗତି କମି ଆସେ । ଟ୍ରେନ ଆସି ଏମିତି ଏକ ଷ୍ଟେସନରେ ଛିଡ଼ା ହୋଇପଡ଼େ ଯେଉଁଠି ମୁଁ ନ ଓହ୍ଲାଇ ରହିପାରେ ନାହିଁ । ଷ୍ଟେସନର ଦୃଶ୍ୟ ଦେଖି ମୋ ଭିତରେ ଆରମ୍ଭ ହେଲା ଆଲୋକର ବିଚ୍ଛୁରଣ । ମୁଁ ଚିହ୍ନିପାରିଲି ଷ୍ଟେସନଟା କୁହେଳିର । ଷ୍ଟେସନରେ ଫୁଲ-ଫଳର ବଗିଚା । ଷ୍ଟେସନ ବାହାରେ ଚନ୍ଦନ ଟୋପା ଲଗାଇ ବସିଥିବା ଜଳଖିଆ ଦୋକାନୀ । ଦୋକାନ ଭିତରେ ଟଟକା ଖାଦ୍ୟ । ତାପରେ ସୁନ୍ଦର ଅଣଓସାରିଆ ରାସ୍ତା । ରାସ୍ତା ଦୁଇ କଡ଼ରେ ଫୁଲ ଚଢ଼େଇ ଚଢ଼େଇ ଫୁଲ ଫୁଲ ପ୍ରଜାପତି ପ୍ରଜାପତି ଫୁଲ ଏବଂ ଫୁଲ । ତା'ପରେ ଦୂରରୁ ଦେଖାଗଲା ସେଇ ସୁନ୍ଦର ଚାଳଘର, ମୁଁ ଟ୍ରେନରୁ ଓହ୍ଲାଇ ଏଣେ ତେଣେ ଚାହିଁଲି । ଚାରିଆଡ଼େ କେମିତି କୁହୁଡ଼ି ଜମି ରହିଥିଲା, ଆକାଶରେ ସୂର୍ଯ୍ୟାସ୍ତର ରଙ୍ଗ । ଦୂରରେ ଗୋଟିଏ ଝିଅ ମୋ ଆଡ଼େ ଚାଲି ଚାଲି ଆସୁଥିବାର ଦେଖିଲି । ଅସ୍ପଷ୍ଟ ଚେହେରା । ମୁଁ ଠିକ୍ ଜାଣିପାରିଲି କୁହେଳି । ତା ଆଡ଼େ ଦୌଡ଼ିଲି । କିନ୍ତୁ ତା ସାମ୍ନାରେ ହଠାତ୍ ଛିଡ଼ାହୋଇ ପଡ଼ିଲି । ମୁଁ ଠିକ୍ ବୁଝିପାରିଲି ଝିଅଟି ଅବିକଳ କୁହେଳି ଭଳି ହେଲେ ମଧ୍ୟ ପ୍ରକୃତରେ କୁହେଳି ନୁହେଁ । କୁହେଳି ପରି ସୁନ୍ଦର ମମତାମୟୀ ତାର ଆଖି, ଓଠରେ ଅନେକ ଅକୁହା ଭାଷା, ଆଜାନୁଲମ୍ବିତ ମୃଣାଳବାହୁ । ଦେଖିଲେ ଶୃଙ୍ଗାରର ଉଦ୍ଦାମତା ଯାଇ ପ୍ରଣିପାତର ଉତ୍କଣ୍ଠା ଜାଗେ ।

ମୁଁ ପଚାରିଲି–

–ତୁମେ କୁହେଳି ନୁହଁ ?

–କୁହେଳି କିଏ ?

–ତୁମ ନାଁ ?

–ଦେବୀ ।

–କୁହେଳିର ଏଇ ଷ୍ଟେସନରେ ମୋତେ ଅପେକ୍ଷା କରିବାର ଥିଲା । ଆଉ ତୁମେ ଠିକ୍ କୁହେଳି ଭଳି ।

–ମୁଁ କୁହେଳି ନୁହେଁ, ଦେବୀ ।

–ତୁମେ କାହାକୁ ଅପେକ୍ଷା କରିଥିଲ ?

–ମୋର ଅପେକ୍ଷା କାହାରିକୁ ନାହିଁ । ମୁଁ ଟ୍ରେନର ମଣିଷଙ୍କୁ ଦେଖେଁ ।

–ସେଇ ଦୂରରେ ଦେଖାଯାଉଥିବା ଫୁଲ ବଗିଚା ଭିତରେ ଘରଟି ?

–ମୁଁ ସେଇଠି ରହେ ।

–ସେଇଠି କୁହେଳି ରହୁଥିଲା । ତୁମେ ଏକା ରହୁଛ ?

–ନା, ମୋ ସହ ବାପା ବୋଉ ଭାଇ ଭଉଣୀ ସମସ୍ତେ ରହନ୍ତି ।

–ତୁମେ ମୋ ସହ ଯିବ ?

–ନା ।

—କାହିଁକି ?

—ମୋତେ ବିଶ୍ୱାସ କର ମୁଁ ଖୁବ୍ ଭଲ ମଣିଷ । ମୁଁ ସୁନ୍ଦର ଭାବେ ବଞ୍ଚିବାକୁ ଚାହେଁ ।

ମୋତେ ଦେବୀ ବୋଧହୁଏ ସାମାନ୍ୟ ବିଶ୍ୱାସ କଲା । ମୋ ସହ ଆହୁରି ଅନେକ କଥାବାର୍ତ୍ତା ହେଲା । କିନ୍ତୁ ମୋ ସହ ହଠାତ୍ ଯିବାକୁ ଚାହିଁଲା ନାହିଁ । ମୋଠାରୁ ମୋର ଛାଡ଼ି ଆସିବାର ଷ୍ଟେସନ ସ୍ମୃତି ବିସ୍ମୃତି ଘଟଣା ଦୁର୍ଘଟଣା ଶୁଣିଲା । ସେଇ ସୁଯୋଗରେ ମୁଁ ମୋ ଓଠ ଚଢ଼େଇ ଥଣ୍ଟ ଭଳି ଲମ୍ବା କରି ତାର ସୁନ୍ଦର ଓଠ ପର୍ଯ୍ୟନ୍ତ ବଢ଼ାଇଦେଲି । ଦୂରରେ ଛିଡ଼ା ହୋଇ ବି ତା କାନ୍ଧରେ ମୁଣ୍ଡ ରଖିଲି । ତାକୁ ଆଲିଙ୍ଗନ କଲି । ମୋର ଆଲିଙ୍ଗନ ଚୁମ୍ବନରେ ସେ ଯେପରି ଆଖିବୁଜି ତନ୍ମୟ ହେଲା । ଏଲୋରାୀୟ ମୁଦ୍ରାରେ କହିଲା—ମୁଁ ତୁମକୁ ଭଲପାଏ, ତେଣୁ ତୁମକୁ ଜନ୍ମ ଜନ୍ମାନ୍ତରରୁ ଅପେକ୍ଷା କରି ଆସିଛି । ମୁଁ ବି କହିଗଲି—ମୁଁ ବି ତୁମକୁ ଭୀଷଣ ଭଲପାଏ, ତେଣୁ ଅନେକ ଗ୍ରହନକ୍ଷତ୍ର ପାରି ହୋଇ, ଅନେକ ଆଲୋକବର୍ଷ ଅତିକ୍ରମ କରି ତୁମ ପାଖକୁ ଧାଇଁ ଆସିଛି । ସେ ଯେପରି କହିଲା—କିନ୍ତୁ ତୁମକୁ ଯେ କୁହେଳି ଅପେକ୍ଷା କରିଥିବ । ମୁଁ କହିଗଲି—ତୁମେ କୁହେଳିଠାରୁ କୌଣସିଥିରେ କମ୍ ନୁହଁ, ତେଣୁ କୁହେଳିକୁ ନ ପାଇଲେ ମୋର ଦୁଃଖ ନାହିଁ । ସେ କହିଲା—କିନ୍ତୁ ବାପା ବୋଉ ଭାଇଭଉଣୀ ଆଉ ସେମାନଙ୍କ ସ୍ନେହ ଶ୍ରଦ୍ଧା ଆଶ୍ୱାସ ବିଶ୍ୱାସ ! ହଠାତ୍ ଟ୍ରେନର ହୁଇସିଲ ବାଜିଲା । ମୁଁ ସଚେତନ ହୋଇ ଟ୍ରେନ ଆଡ଼େ ଚାହିଁଲି । ଦେବୀ ମୋତେ ସନ୍ଦେହ କଲା, କହିଲା—ଯାଅ, ତୁମ ରାସ୍ତା ଭିନ୍ନ । ମୁଁ ଟିକିଏ ବେଶୀ ସାମାଜିକ । ତୁମକୁ ପୁଣି କୁହେଳି ପର୍ଯ୍ୟନ୍ତ ଯିବାକୁ ପଡ଼ିବ । ଆଉ ମୋତେ ଟ୍ରେନର ସମସ୍ତ ମଣିଷଙ୍କୁ ଦେଖି ନେବାକୁ ହେବ । ମୁଁ ତାକୁ ବୁଝାଇଲି—ମୁଁ ତୁମକୁ ସଙ୍ଗରେ ନେଇଯିବାକୁ ଚାହେଁ, କିମ୍ବା ତୁମେ ଯଦି ଚାହିଁବ ମୁଁ ତୁମକୁ ଛାଡ଼ି କୌଣସି ଆଡ଼େ ଯିବି ନାହିଁ, ଏଇଠି ମୋର ଯାତ୍ରା ଶେଷ କରିବି । ସେ ବିରକ୍ତ ହେଲା । ମୋତେ ସନ୍ଦେହ ଆଖିରେ ଚାହିଁଲା । ମନେ ମନେ ଗାଳି ଦେବାକୁ ଆରମ୍ଭ କଲା । ମୁଁ ତା ଆଖିକୁ ଚାହିଁ ଦେଖିଲି ତାର ଆଖି କୁହେଳିର ଆଖି ଭଳି ଆଉ ମମତାମୟୀ ନୁହେଁ, ଈର୍ଷା ସନ୍ଦେହ ଘୃଣାରେ ଯେକୌଣସି ସାଧାରଣ ତରୁଣୀ ଭଳି ସେ ଦେଖାଯାଉଥିଲା । ମୁଁ ଦୌଡ଼ି ଦୌଡ଼ି ଯାଇ ଚଳନ୍ତା ଟ୍ରେନରେ ଚଢ଼ିଗଲି ।

ଟ୍ରେନ ଅନେକ କଳାଧୂଆଁ ଛାଡ଼ି ଆଗକୁ ଆଗେଇ ଚାଲେ । ରାତ୍ରି ମାଡ଼ିଆସେ । ବାହାରେ ଭୀଷଣ ଅନ୍ଧକାର । କେତୋଟି ଦୂର ଷ୍ଟେସନରେ ଛାଡ଼ି ଆସିଥିବା ସ୍ମୃତି ସବୁ ଅନ୍ଧକାରରେ ଦୂର ଗାଁଗଣ୍ଡାର ଲଣ୍ଠନ ଆଲୁଅ ଭଳି ଦପ୍ ଦପ୍ ହୁଅନ୍ତି । ମୁଁ ସହଯାତ୍ରୀମାନଙ୍କୁ ମୋର ଏ ଯାତ୍ରାର ଅନୁଭୂତି ସବୁ କହେ । ସେମାନେ ଶୁଣନ୍ତି ନାହିଁ । ବସି ଢୁଳାନ୍ତି । ମୁଁ ଭାବେ ଏମିତି ଏକ ସମୟ ଆସିବ, ଅନ୍ଧକାର ତୁଟିଯିବ । ଭୋର୍‌ର ପବିତ୍ର ଆଲୋକରେ ଦେଖିବି ସେଇ ଷ୍ଟେସନ । ଷ୍ଟେସନର କୁହୁଡ଼ି ଭିତରେ ଫୁଲ ବଗିଚା । ଫୁଲ ବଗିଚା

ଭିତର ଦେଇ ସୁନ୍ଦର ଅଣଓସାରିଆ ରାସ୍ତା । ଚାଳଘର । କୁହେଳି । ମୋ ଅପେକ୍ଷାରେ କୁହେଳିର କ୍ଳାନ୍ତ ଆଖି । ମୋ ସ୍ୱାଗତ ପାଇଁ କୁହେଳିର ପ୍ରସାରିତ ମୃଣାଳବାହୁ । ମୋ ଉପଚାର ପାଇଁ କୁହେଳିର ତୃଷିତ ଅଧର ।

ହଠାତ୍ ଗୋଟିଏ ଅଜଣା ସ୍ଥାନରେ ଟ୍ରେନ ଅଟକିଯାଏ । ସବୁ ନିଦ୍ରାଳୁ ଯାତ୍ରୀ ଚମକି ଉଠି ସିଧା ହୋଇ ବସନ୍ତି । ସମସ୍ତେ ବାହାରକୁ ଚାହିଁ ଦେଖନ୍ତି ସାମ୍ନା ଲେଭଲକ୍ରସିଂ ଅତିକ୍ରମ କରି ଚାଲିଛି ଏକ ବିରାଟ ଶୋଭାଯାତ୍ରା । ସମସ୍ତଙ୍କ ମୁହଁରେ ସିଂହନାଦ, ବିପ୍ଳବର ଶବ୍ଦ, ମୁକ୍ତିର ଜୈତ୍ରନାଦ । ସମସ୍ତଙ୍କ ହାତରେ ମଶାଲ । ହଠାତ୍ ମଶାଲ ଦେଖିଲା ପରେ ମୋର ମନେହୁଏ କୁହେଳିର ଶୋଇବା ଘରର ନିଷ୍କମ୍ପ ମହମବତିର ଶିଖା ସହ ଏହାର ଅନେକ ସାମଞ୍ଜସ୍ୟ ଅଛି । ହୁଏତ ଏ ମଶାଲ ଜଳି ଜଳି ଶେଷରେ ଧୀର ଭାବରେ ଖୁବ୍ ଶାନ୍ତଶିଷ୍ଟ ହୋଇ ମହମବତିର ଶିଖାରେ ପରିଣତ ହୋଇଯିବ । ହୁଏତ ଏଇ ଶୋଭାଯାତ୍ରା ମୋତେ କୁହେଳିର ସନ୍ଧାନ ଦେବ କିମ୍ୱା ଏଇ ଶୋଭାଯାତ୍ରାରେ ମିଶିଗଲେ କୁହେଳିର ସେଇ ମନୋରମ ଷ୍ଟେସନ ପାଇବି ।

ମୁଁ ଟ୍ରେନରୁ ଓହ୍ଲାଇପଡ଼େ । ରେଳଲାଇନ ଉପରେ ସାମ୍ନାକୁ କିଛି ଦୂର ଗଲାପରେ ନୀଳପୋଷାକ ପିନ୍ଧା, ମୁଣ୍ଡରେ କଳାରୁମାଲ ବନ୍ଧା ଇଞ୍ଜିନ ଚାଳକକୁ ମୋ ସାମ୍ନାରେ ଦେଖେ । ସେ ଇଞ୍ଜିନ ଛାଡ଼ି ଆସି ସେଇ ଶୋଭାଯାତ୍ରା ଦେଖୁଥାଏ । ମୁଁ ମୋର ଅଜାଣତରେ ତାର ସମ୍ମତି ଚାହେଁ । ସେ ମୋତେ ନୀରବରେ ବୁଝାଇଦିଏ ଯେ ଦିନେ ନା ଦିନେ ସେଇ ଟ୍ରେନ ମୋତେ ମୋର ଈପ୍ସିତା ନିକଟରେ ପହଞ୍ଚାଇ ଦେବ, ମୋର ଅଭିଳଷିତ ଷ୍ଟେସନରେ ମୋତେ ଓହ୍ଲାଇଦେବ ।

ମୁଁ ମୋ ସ୍ଥାନକୁ ଫେରିଆସେ । ଲେଭଲକ୍ରସିଂ ପାରିହୋଇ ମଶାଲ ଜାଳି ସେ ଶୋଭାଯାତ୍ରା ଖୁବ ଦୂରକୁ ଦୂରକୁ ଆଗେଇଯାଏ । ମଶାଲର ଆଲୋକରେ ଦୂର ଦିଗ୍‌ବଳୟ ତଳର ଘନୀଭୂତ ଅନ୍ଧକାର କିଛି ପରିମାଣରେ କଟିଯାଏ । ଟ୍ରେନ୍ ପୁଣି ଚାଲିବାକୁ ଆରମ୍ଭ କରେ ।

ତାପରେ ସମୟହୀନ ସମୟ ଭିତର ଦେଇ, କେଉଁସବୁ ଅଜଣା ଗ୍ରାମ ସହର ଜନପଦ ଭିତର ଦେଇ ଦକ୍ଷିଣ ଦିଗନ୍ତ ଆଡ଼େ ଅଣନିଃଶ୍ୱାସୀ ହୋଇ ଟ୍ରେନ ଛୁଟିଚାଲେ । ମୁଁ ରାଣୀ ଅସୀମା ଓ ଦେବୀର ସ୍ମୃତିକୁ ଖୁବ୍ ଭିତରେ ରଖି ଏବଂ ମୋର ଯନ୍ତ୍ରଣାମାନଙ୍କ ପ୍ରେମରେ ପଡ଼ି କୁହେଳିର ଅଜଣା ଷ୍ଟେସନ ଆଡ଼େ ଆଗେଇଯାଏ ଆଗେଇଯାଏ ଆଗେଇଯାଏ–

('ନବରବି', ଫେବୃଆରୀ, ୧୯୭୪)

●

# ଉତ୍ତାନପାଦ

ଗୋଟିଏ ହାଇଫେନ୍ ପାରି ହେଲା ବେଳକୁ ଏତେ ପରିବର୍ତ୍ତନ । ରାତିରେ ଯେଉଁ ସ୍ତ୍ରୀ ସହ ଶୋଇ ଆଲୁଅ ଲିଭାଇଥିଲି, ସକାଳେ ଦେଖିଲି ସେ ନାହିଁ, ଆଉ ଜଣେ।

ସକାଳେ ଆଖି ଖୋଲିଲେ ପ୍ରଥମେ ଆଖିରେ ପଡ଼େ କ୍ୟାଲେଣ୍ଡର । କ୍ୟାଲେଣ୍ଡରରେ ତନ୍ମୟ ମୁଦ୍ରାରେ ଏଲୋରାୟ ପ୍ରକୃତି-ପୁରୁଷ । ଅଥଚ ସେ କ୍ୟାଲେଣ୍ଡରଟା ଏଠୁ ନେଇଗଲା କିଏ ? ପୁଣି ସେ ଜାଗାରେ ହେମାମାଳିନୀର ଏ ବିକୃତ ଛବି କିଏ ଟଙ୍ଗାଇଲା ? ମୁଁ ଚିତ୍କାର କରିବାକୁ ଯାଇ ଥମିଗଲି। ସବୁଦିନେ ସୁନୀତି ଗୋଛାଏ ସଜଫୁଲ ଆଣି ମୋ ମୁଣ୍ଡ ପାଖରେ ରଖିଦିଏ, ଅଥଚ ଏ ପ୍ଲାଷ୍ଟିକ ଫୁଲ ଏଠି ଜମେଇଲା କିଏ ?

ଅବଶ୍ୟ ଖୁବ୍ ଡେରିରେ ଆଜି ମୋ ନିଦ ଭାଙ୍ଗିଲା । ମୁଁ କାନ ଡେରିଲି । ବାହାରେ ସୁ ସୁ ଗର୍ଜନ । ଝଡ଼ ତୋଫାନ ଚାଲିଛି । ପ୍ରବଳ ବର୍ଷା । ମୋର ମନେ ଅଛି, କାଲି ଶୋଇବା ପୂର୍ବରୁ ସୁନୀତି ଆଉ ମୁଁ ବାହାରେ ଚନ୍ଦ୍ରକିରଣରେ କିଛି ସମୟ ବସିଥିଲୁ । ହୁହୁ ଦକ୍ଷିଣା ପବନରେ ସୁନୀତିର ଧଳା ଲୁଗା ଉଡୁଥିଲା । ତାର ଅଳରା ବାଳ ଗାଲ ଉପରେ ଘଷି ହେଉଥଲା । ଘର ସାମ୍ନାରେ ଯେଉଁଠି ଚନ୍ଦ୍ରକିରଣ ତିଳତଣ୍ଡୁଳିତ ହୋଇ ବୁଣି ରହିଥାଏ, ସେଇଠି ସୁନୀତି ଗୋବର ଲିପି ପରିଷ୍କାର କରେ । କଡ଼ରେ ତୁଳସୀ ଚଉରା, ସେଇ ଚଉରା ପାଖରେ ମସିଣାରେ ମୁଁ ଶୋଇଥିଲି । ସୁନୀତି ଚଉରା ଚଉତରାକୁ ଆଉଜି ମୋ ପାଖରେ ବସିଥିଲା । ମୁଁ ମୁଣ୍ଡଟା ଉଠାଇ ନେଇ ତା କୋଳରେ ରଖିଲି ଓ ନକ୍ଷତ୍ର ଖଞ୍ଜା ହୋଇଥିବା ଆକାଶର ଚାନ୍ଦୁଆକୁ ଦେଖୁଥିଲି । ମୋତେ ସେତେବେଳେ ଖୁବ୍ ସାନପିଲାଭଳି ମନେ ହେଉଥିଲା । ସୁନୀତି ମୋ ମୁଣ୍ଡରେ ହାତ ବୁଲାଇ ଦେଉଥିଲା । ମୋର ମନେ ଅଛି ଦୂରରେ କେଉଁଠି ଯେମିତି କୀର୍ତ୍ତନ ଜମି ଯାଇଛି । ସୁନୀତି ଠିକ୍ ଏମିତି ସମୟରେ ଆରମ୍ଭ କରେ ଧ୍ରୁବ କଥା । ମୁଁ ଜାଣେ ଧ୍ରୁବ ପାଇଁ ତାର ଚିନ୍ତାର ସୀମା ନାହିଁ । ସୁନୀତି କହିଚାଲେ–ଧ୍ରୁବ ମୋତେ ସବୁବେଳେ ବିରକ୍ତ କରୁଛି । ଅଜବ ସବୁ ତାର ପ୍ରଶ୍ନ, ସୂର୍ଯ୍ୟ ଆସିଲା କେଉଁଠୁ ? ନଦୀ, ହ୍ରଦ, ବଣ ପାହାଡ଼ ସବୁ ତିଆରି କଲା

କିଏ ? ଈଶ୍ୱର କାହିଁକି ଦେଖାଦିଅନ୍ତି ନାହିଁ ଇତ୍ୟାଦି । ମୁଁ କହେ ସୁନୀତି, ଏ ଧରଣର ଉଜ୍ଜ୍ୱଳ ଜହ୍ନ ଆଉ ମଳୟର ପବନ ଭିତରେ ପୃଥିବୀର ଲୋକମାନେ ଖୁବ୍ ସୁଖରେ ଅଛନ୍ତି, ନୁହେଁ ?

କାଲି ରାତିରେ ମଳୟ ବହୁଥିଲା । ଅଥଚ ଆଜି ଝଡ଼ତୋଫାନ । ଗୋଟିଏ ହାଇଫେନ୍ ପରେ ଜଳବାୟୁ କି ପରିବର୍ତ୍ତନ ହୋଇଗଲା !

ମୁଁ ବିଛଣାରେ ସିମିତି ଶୋଇ ରହି ଚିତ୍କାର କଲି– ସୁନୀତି ।

ବାହାରେ ଝଡ଼ର ସୁସୁ ଗର୍ଜନ । ସବୁଜ ଗଛ ଗୋଟିଏ କେଉଁଠି ଭାଙ୍ଗିପଡ଼ିଲା । କେହି ମୋ କଥା ଶୁଣିପାରିଲେ ନାହିଁ । ଆଉ ଥରେ ଡାକିଲି, ଆହୁରି ଥରେ । କିନ୍ତୁ ନିଷ୍ଫଳ ।

ସୁନୀତି ଖୁବ୍ ଭୋରରୁ ନଈକୁ ଗାଧୋଇବାକୁ ଯାଏ । କିନ୍ତୁ ଆଜି ଏ ଝଡ଼ରେ ତ ବାହାରିବା କଥା ନୁହେଁ ।

ସକାଳେ ଆଖି ଖୋଲିଲା ମାତ୍ରେ ସୁନୀତିକୁ ନ ଦେଖିଲେ ମୁଁ ବିରକ୍ତ ହୋଇଯାଏ । କେବେ କେମିତି ରାତିରେ ଦୁଃସ୍ୱପ୍ନ ଦେଖିଲେ ସକାଳଟା ବିରକ୍ତିକର ମନେହୁଏ । କିନ୍ତୁ ସୁନୀତି ଗାଧୋଇ ଆସି କେଶ ମୁକୁଳା କରି ମୋ ସାମ୍ନାରେ ଛିଡ଼ା ହୋଇଗଲେ ତା ଦେହର ମିଠା ଗନ୍ଧରେ ମୋର ସବୁ ବିରକ୍ତି ଉଭେଇଯାଏ । ସେ ମୋ ପାଖରେ ବସେ । ତା କେଶରୁ ଗୋଟିଏ ଦୁଇଟି ପାଣିବିନ୍ଦୁ ମୋ ଉପରେ ଖସିପଡ଼ିଲେ ମୋତେ ଗଙ୍ଗାଜଳ ପଡ଼ିଲା ଭଳି ଲାଗେ । ଅଥଚ ଏ ଝଡ଼ରେ ସେ ଯେମିତି କୁଆଡ଼େ ଉଡ଼ିଯାଇଛି ।

କାଲି ରାତିରେ ଶୋଇଲା ବେଳେ ସୁନୀତି ଗିଲାସେ ଉଷୁମ ବହଳିଆ ଦୁଧ ପିଇବାକୁ ଦେଇଥିଲା । ତା ପରେ ଧ୍ରୁବ ଘରେ ଆଲୁଅ ଲିଭାଇ ତା ଦେହରେ ଚଦର ଘୋଡ଼ାଇ ଦେଇଥିଲା । ମୁଁ ସେତେବେଳେ ଶୋଇ ଶୋଇ ବହି ପଢୁଥିଲି । ସେ ମୋ ହାତରୁ ବହି କାଢ଼ି ନେଇ ମୁଣ୍ଡ ଆଡ଼େ ରଖିଦେଲା । ମୋ ପାଦ ପାଖରୁ ଚଦର ଟାଣିଆଣି ଛାତି ପର୍ଯ୍ୟନ୍ତ ଘୋଡ଼ାଇଦେଲା । ନିଜେ ଶୋଇ ଆଲୁଅ ଲିଭାଇଦେଲା । ଝରକା ଦେଇ ସେତେବେଳେ ତେରଛା ଚନ୍ଦ୍ରକିରଣ ଘରେ ପଡୁଥିଲା । ସେଇ କିରଣରେ ସୁନୀତି ଖୁବ୍ ସୁନ୍ଦର ଦେଖାଯାଉଥିଲା ।

ମୁଁ ଅନେକଥର ଅନୁଭବ କରିଛି, ସୁନୀତି ଦେହରେ ଏକ ପ୍ରକାର ସ୍ନିଗ୍ଧ ଆଲୋକ ଅଛି । ମୁଁ ଏକଥା ଠିକ୍ ଭାବେ କାହାରିକୁ ବୁଝାଇ କହି ପାରିନି । ହୁଏତ ଏଇ କଥା ବୁଝାଇବା ପାଇଁ ମୋ ପାଖରେ ଭାଷା ନାହିଁ । କିନ୍ତୁ ଖୁବ୍ ଅନ୍ଧକାରରେ, ଖୁବ୍ ଅସହାୟ ମୁହୂର୍ତ୍ତରେ ସୁନୀତିର ଆଲୁଅ ସବୁ ଅନ୍ଧକାର ଓ ସବୁ ଅସହାୟତାକୁ ତଡ଼ି ନିକାଲି ଦେଇଛି– ମୋ ଭିତରେ ଏକ ପବିତ୍ର ସାହସ ଆଣି ଦେଇଛି ।

ଏ କଥା ବୁଝାଇବା ପାଇଁ ମୋ ଜୀବନର ଅନେକ ଘଟଣା ଦୁର୍ଘଟଣାର ଉଦାହରଣ ଦେବାକୁ ହୁଏ । କିନ୍ତୁ ଗୋଟିଏ ଦୁର୍ଘଟଣା କଥା କହିଲେ ସୁନୀତିର ଉଜ୍ଜ୍ୱଳ ଭୂମିକା ବେଶ୍ ସ୍ପଷ୍ଟ ହେବ ।

ଥରେ ଥରେ ଧରାବନ୍ଧା ଜୀବନରୁ ଛିଟିକି ଯିବାକୁ ବେଶ୍ ଲୋଭ ହୁଏ । ନ୍ୟାୟନୀତି ମଝିରେ ଜୀବନ ଅଣନିଶ୍ୱାସୀ ହୋଇ ଉଠେ । ସୁନୀତିକୁ ବାହା ହେବାର ତିନିବର୍ଷ ପରେ ମୁଁ ଖୁବ୍ ଭୀଷଣ ଭାବେ ଏଇ କଥା ଅନୁଭବ କଲି ।

ମୁଁ ସହରର କୋଠା, ବାପାଙ୍କ ବ୍ୟବସାୟ, ଝକ୍‌ଝକ୍ ରାସ୍ତାଘାଟ, ଦୋକାନ ବଜାର ଛାଡ଼ି ଦୂର ଗାଁରେ ରହେ । ଏଠାରେ ଫୁସ୍‌ଫୁସ୍ ଭର୍ତ୍ତି ମୁକ୍ତ ପବନ ନିଏ, ବିଶୁଦ୍ଧ ଜଳ ପିଏ । ତଟକା ପରିବା ଓ ନିଜ କ୍ଷେତର ଶସ୍ୟରେ ପାକସ୍ଥଳୀ ଭର୍ତ୍ତି କରେ । ଏଠି ଦିଗ୍‌ବଳୟ ବ୍ୟାପୀ ଶସ୍ୟକ୍ଷେତ୍ର, ଚକ୍ରବାଳରେ ନୀଳ ପାହାଡ଼, ମିଠା ସ୍ମୃତି ପରି ସବୁଜ ଘାସ ପଡ଼ିଆ, ତା’ ଛଡ଼ା କାଳିଗାଈର କ୍ଷୀର, ପୋଖରୀର ମାଛ, ବଗିଚା ଭର୍ତ୍ତି ପରିବା, ସୁନୀତିର ସେବା ଓ ସାନ୍ନିଧ । ଏଇଠି ସବୁଦିନେ ସୂର୍ଯ୍ୟୋଦୟ ହୁଏ । ସୂର୍ଯ୍ୟାସ୍ତ ବି ହୁଏ । ସୁନୀତି ଗାଈ ଦୁହେଁ । ଗୁହାଳ ପୋଛେ । ଗାଈକୁ ଘାସ ଦିଏ । ବଗିଚାରେ ଫୁଲଫଳର ରୋଶଣି ସଜାଏ । ଧାନ ଚାଉଳର ହିସାବ ରଖେ । ଦୁଃଖୀ ଦରିଦ୍ରଙ୍କୁ ଦାନ କରେ । ମୋର ସେବା କରେ ।

ଦିନେ ରାତିରେ ମୁଁ ଶୋଇଛି । କଣ୍ଠ-ସଂଲଗ୍ନା ସୁନୀତି । ଖୁବ୍ ଦୂରରୁ ଟ୍ରେନର ଶବ୍ଦ ହେଲା । ଆଖି ବନ୍ଦ କରି ଟ୍ରେନ୍ ଗଡ଼ି ଯାଉଥିବାର ଦୃଶ୍ୟ ଦେଖିଲି । ଦୁଇଟି ସମାନ୍ତର ଲୁହାଧାରଣା ଉପରେ ଗୋଟିଏ ରାସ୍ତାରେ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଗଡ଼ିଯାଏ ଟ୍ରେନ୍ । ଟିକିଏ ଏପଟ ସେପଟ ହେବାର ଜୁ ନାହିଁ । କେତେ ନିୟମିତ କେତେ ପରାଧୀନ ଏ ଟ୍ରେନ୍‌ଟା । ଟ୍ରେନ୍‌ର ଶବ୍ଦ ଦୂରକୁ ଦୂରକୁ ମିଳେଇଗଲା । ଯେମିତି ସେଇ ଅନ୍ଧାରରେ ଟ୍ରେନ୍ ଭିତରୁ ମୋତେ କିଏ ଡାକି ଦେଇଗଲା । ମୁଁ ଅନ୍ୟମନସ୍କ ଭାବେ ଉତ୍ତର ଦେଲି– ଯାଉଛି ।

ତା ଆରଦିନ ମୋ ଚାରିପଟେ ଘେରା ଅସମ୍ଭବ ମୁକ୍ତିର ପାଚେରି ଟପି ବାହାରିଲି ବାହାରକୁ । ସୁନୀତି ସବୁ ସଜେଇଦେଲା । ସାଥିରେ ପିଲାଦିନର ବନ୍ଧୁ ଛ’ଜଣ ।

ପଶ୍ଚିମ ଆଡ଼େ ମୁହଁ କରି ଟ୍ରେନ୍ ଚଢ଼ିଲୁ । ଲକ୍ଷ୍ୟ–ବମ୍ବେ । ଆମେ ସମସ୍ତେ ଉଦ୍ଦାମ । ସମସ୍ତେ ମୁକ୍ତ । ଚାରିଆଡ଼େ ମଣିଷ । ଧର୍ମ ଅଧର୍ମ, ପାପପୁଣ୍ୟ, ଅନ୍ୟାୟ ନ୍ୟାୟରେ ବୁଡ଼ି ରହିଥିବା ମଣିଷ–ଛଅଟି ବନ୍ଧୁ ସେମାନଙ୍କ କାର୍ଯ୍ୟରେ ଲାଗିଗଲେ । କିଏ ବାରମଜା ଖାଇ ପଇସା ଦେଲା ନାହିଁ ତ କିଏ ଟି.ଟି.ସି.କୁ ବାଡ଼େଇବ ବୋଲି ଧମକ ଦେଲା ତ କିଏ ପ୍ରତି କମ୍ପାର୍ଟମେଣ୍ଟରେ ବୁଲିବୁଲି ଲୁଙ୍ଗୁଡ଼େଇବା ଆରମ୍ଭ କରିଦେଲା ।

ମୁଁ ଝରକା ପାଖରେ ଗୋଟିଏ ସ୍ଥାନରେ ବସି ମୋ ସାମ୍ନା ଝିଅଟିକୁ ଲକ୍ଷ୍ୟ କରୁଥିଲି । ଏତେ ସୁନ୍ଦର ଚେହେରା ମୁଁ ଖୁବ୍ କମ୍ ଦେଖିଛି । ସୁନୀତି କଥା ମନେ ପଡ଼ିଲା । ତୁଳନାଟା ଏମିତି ଦିଆଯାଇପାରେ, ସୁନୀତି ଏକ ନିଷ୍କର୍ମା ମହମବତି ଶିଖା ହେଲେ ସେ ଗୋଟିଏ ନିଅନ ଆଲୁଅ ।

ଝିଅଟିର ମୁଣ୍ଡରେ ବବୁରି ବାଳ । ଗୋଟିଏ ମିନି ସ୍କାର୍ଟ ପିନ୍ଧିଛି । ଦେହର ଖୁବ୍ ଅଳ୍ପ ଅଂଶ ଆବୃତ । ଗୋଟିଏ ଝଲକରେ ସୁନୀତି କଥା ମନେ ପଡ଼ିଲା । ସୁନୀତିର କେଶ ଖୁବ୍ ଲମ୍ବା । ଦିନରେ ସୁନୀତିର ବେକତଳ କିମ୍ବା କହୁଣି ଉପରର ଅଂଶ ଯେ ମୁଁ ଦେଖିପାରିନାହିଁ ସେଥିପାଇଁ ହସ ଲାଗିଲା । ଝିଅଟିର କୋଳରେ ଗୋଟିଏ ବଡ଼ ଭ୍ୟାନଟି ବ୍ୟାଗ୍ । ସେ ବ୍ୟାଗ୍ ଉପରେ ଏକ ଅଜବ ଚିତ୍ର–ବୁଝି ହୁଏ, କିନ୍ତୁ ବୁଝାଇ ହୁଏ ନାହିଁ । ମୁଁ ସେହି ଚିତ୍ରକୁ ଦେଖି ଦେଖି ସ୍ୱପ୍ନାଛନ୍ନ ହେଲି । ମୋର ଆଲୋକିତ ଗଳି ଉପଗଳିରେ ଗୁରୁଣ୍ଡି ଗୁରୁଣ୍ଡି ଅନେକ ଅନ୍ଧକାର ଯେମିତି ବାହାରି ଆସିବାକୁ ଚାହିଁଲେ । ଗପ ଜମିଲା । ଝିଅଟିର ପାଣିବୋତଲରୁ ମୁଁ ପାଣି ପିଇଲି । କିଛି ଦୂରରେ ତାର ବାପା ବୋଉ ବସିଥିଲେ । ପରିଚୟ ହେଲା । ବାପା ବମ୍ବେରେ ବଡ଼ ବ୍ୟବସାୟୀ । ବୋଉ ଏକଦା ମଡେ଼ଲ୍ ହେଉଥିଲେ । ଝିଅ ବି ଏବେ ବୋଉର ଉତ୍ତରାଧିକାର ନେଇଛି । ନାଁ ସୁରୁଚି ।

ଷ୍ଟେସନରେ ଗାଡ଼ି ପହଞ୍ଚିଲା । ସମସ୍ତେ ଓହ୍ଲାଇଲୁ । ଆଗରେ ବାପା ବୋଉ, ପଛରେ ସୁରୁଚି । ତାର ଆଣ୍ଠୁ ଉପରର ଅଂଶକୁ ଲକ୍ଷ୍ୟ କରି ମୁଁ ଚାଲିଛି । ମୋ ସାମ୍ନାରେ ତାର ଭ୍ୟାନିଟି ବ୍ୟାଗ୍‌ର ଅଜବ ଚିତ୍ର । ସୁରୁଚି ମୋ ପାଖକୁ ଲାଗି ଆସି କହିଲା–ପୁଣି କେବେ ?

ମୁଁ ଗୋଟିଏ କାଗଜ ଟୁକୁରାରେ ଲେଖି ଦେଲି ରିଜର୍ଭ ହୋଇଥିବା ହୋଟେଲର ନାମ ଓ ରୁମ୍‌ର ନାମ । ସୁରୁଚି ଗୋଟିଏ ଝଲକରେ ଅନେକ ପ୍ରତିଶ୍ରୁତି ଆଖିବାଟେ ଫିଙ୍ଗି ଦେଇ ଗୋଟିଏ କଳା ରଙ୍ଗର ଗାଡ଼ିରେ ବସିଲା । ମୁଁ ବନ୍ଧୁମାନଙ୍କ ସହ ଟ୍ୟାକ୍‌ସିରେ ଚଢ଼ିଗଲି ।

ଟ୍ୟାକ୍‌ସିର ଝରକା ଦେଇ ଦେଖିଲି ବିଜ୍ଞାପନ ଆଉ ବିଜ୍ଞାପନ । ମନେ ମନେ ଉଚ୍ଚାରଣ କଲି, ସହରର ମଣିଷ ସବୁ ବିଜ୍ଞାପନ ହୋଇଗଲେଣି । ସବୁ ବିଜ୍ଞାପନରେ ଯେମିତି ସୁରୁଚିର ବିଭିନ୍ନ ଭଙ୍ଗୀର ଫଟୋ ।

ତାର ଦୁଇଦିନ ପରେ ଯେତେବେଳେ ଗୋଟିଏ ଜଳନ୍ତା ସିଗାରେଟ ହାତରେ ଧରି ମୁଁ ମୋର ହୋଟେଲ ରୁମ୍‌ରେ ବସି ପତ୍ରିକାରୁ ବିଜ୍ଞାପନ ଦେଖୁଥିଲି ସେତେବେଳେ ମୋ ରୁମ୍‌ର ଦରଜା ଖୋଲିଯାଏ । ସୁରୁଚି ଏକା ଭିତରକୁ ପଶିଆସେ ଓ ଭିତରରୁ

କବାଟ ବନ୍ଦ କରେ । କଥା ନାହିଁ, ବାର୍ତ୍ତା ନାହିଁ, ଭୂମିକା ନାହିଁ, ମୋ ହାତକୁ ଗୋଟିଏ ନୂଆ ସିଗାରେଟ ବଢ଼େଇଦିଏ ଓ ନିଜେ ଦୁଇ ଓଠରେ ଆଉ ଗୋଟିଏ ଚାପି ଧରେ । ସେ ସିଗାରେଟରେ ନିଆଁ ଲଗାଏ । ତା ପରେ ତା ଦେହର ସଂକ୍ଷିପ୍ତ ପୋଷାକ ଗୋଟିକ ପରେ ଗୋଟିଏ ଖୋଲି ପକାଏ । ମୋତେ ମଧ ଅନୁରୂପ କର୍ମ କରିବାକୁ ବାଧ କରେ । ମୁଁ ଜଳନ୍ତା ସିଗାରେଟ ଆସ୍‌ଟ୍ରେ ଭିତରେ ଗୁଞ୍ଜିଦିଏଁ । ତା ପରେ ସେ କୋଠରି, ବିଛଣା, ଚଉକି, ଟେବୁଲ, ବମ୍ବେ, ରୋମ, ମସ୍କୋ, ପୃଥିବୀ, ଆକାଶ, ବ୍ରହ୍ମାଣ୍ଡ, ସବୁ ଏକାକାର ହୋଇଯାଏ । କ୍ରମେ ଆମେ ବିନ୍ଦୁସ୍ଥ ହେଉ । ସୁରୁଚି ଅବଳୀଳା କ୍ରମେ କବାଟ ଠେଲି ବାହାରିଯାଏ । ଏହିପରି କ୍ରମେ ମୋର ବମ୍ବେ ରହଣି ବଢ଼ିଯାଏ । ପ୍ରତିଦିନ ସୁରୁଚି ଆସେ । ଆମେ ଘୂରି ବୁଲୁ । ରାସ୍ତା, ପାର୍କ, କ୍ଲବ, ସିନେମା, ବାର୍ । ସେଇ ଏକ ପ୍ରକାର ନାଟକ । ଆସ୍‌ଟ୍ରେ ସିଗାରେଟ ପାଉଁଶରେ ଭର୍ତ୍ତି ହୋଇଯାଏ ।

ଅନେକ ଦିନ ପରେ ଘରକୁ ଫେରେ । ଭିତରେ ଖୁନ୍ଦାଖୁନ୍ଦି ପାପବୋଧ । ସୁନୀତି ପାଇଁ ଭୟ ହୁଏ । କିନ୍ତୁ ପୁଣି ସୁନୀତି, ଦିଗନ୍ତବିସ୍ତାରୀ ଶସ୍ୟକ୍ଷେତ୍ର, କାଳି ଗାଈର ବହଳିଆ କ୍ଷୀର, ଚନ୍ଦ୍ରର ତିଳତଣ୍ଡୁଳିତ କିରଣ ଭିତରେ ଦିନଗୁଡ଼ା ସାଦାସିଧା ଝୋଙ୍କିଲା ଚଢ଼େଇ ଭଳି ଉଡ଼ିଚାଲେ ।

ଦିନେ ସୁନୀତି ମୋ ଆଗରେ ଗୋଟିଏ ଓଜନିଆ ଲଫାପା ଖୋଲି ଧରେ । ସୁରୁଚି ଅନ୍ତଃସତ୍ତ୍ୱା । ଏଥିପାଇଁ କେବଳ ମୁଁ ଦାୟୀ, ତଥାପି ଭୟ ନାହିଁ । ଔଷଧ ବଳରେ ସେ ପରିଷ୍କାର ହୋଇପାରିବ । ମୁଁ ବିଜ୍ଞାପନ-ନଗରୀ ଉପର ଦେଇ ଗୋଟିଏ ଶିଶୁ କ୍ରମାଗତ ଚାଲବୁଲ କରୁଥିବା ଦେଖେ । ସବୁ ବିଜ୍ଞାପନର ସୁନ୍ଦରୀମାନେ ଅନ୍ତଃସତ୍ତ୍ୱା ହୋଇଯାଇଥିବାର ମୋତେ ମନେହୁଏ ।

ସୁନୀତି ଧୀରସ୍ଥିର ଭାବରେ ତାର ଧୈର୍ଯ୍ୟର ପରୀକ୍ଷା ଦିଏ । ମୋତେ ବାଧ କରେ ସୁରୁଚିକୁ ବାହା ହେବା ପାଇଁ । ବାପାଙ୍କ ନାଲି ଆଖି, ସୁନୀତିର ଅନୁନୟର ପ୍ରେରଣାରେ ବମ୍ବେ ଯାଏ । ଆଉ ସନ୍ତାନସମ୍ଭବା ସୁରୁଚିକୁ ବିଜ୍ଞାପନ ଭିତରୁ ମୁକୁଳେଇ ଆଣି ମୋ ଘରର ସୋ-କେଶ୍ ସଜାଏ ।

ସୁରୁଚି ପୁତ୍ରବତୀ ହୁଏ । ନାଁ ଦିଏ ଉତ୍ତମ । ବମ୍ବେ ନଗରୀର ମଡ଼େଲ ଗାର୍ଲ ଗାଁରେ ଚଳିପାରିବ ନାହିଁ ବୋଲି ତାକୁ ସହରର ଗାଡ଼ି, ଡ୍ରେସିଂ ଟେବୁଲ, ସିନେମା ହଲ, ପାର୍କ, କ୍ଲବ, ରେଷ୍ଟୋରାଁ ପାଖରେ ଜିମା ଦେଇ ମୁଁ ଗାଁକୁ ସୁନୀତି ଓ ଧ୍ରୁବ ପାଖକୁ ଚାଲେ । ବାହାରେ ଝଡ଼ଟା ଅବିରାମ ଚାଲିଛି । ବଡ଼ ନିଃସଙ୍ଗ ଲାଗୁଚି ଏଇ ସମୟଟା । ଦେହଟା ବି କେମିତି ଅବଶ ଲାଗୁଚି । କିନ୍ତୁ ସୁନୀତି ଗଲା କୁଆଡ଼େ ? ଶୋଇ ଶୋଇ ଆଉଥରେ ଚିତ୍କାର କଲି– ସୁନୀତି ।

ଭିତରୁ ପାଟି ଶୁଭିଲା । ବିରକ୍ତ ହୋଇ ବାହାରି ଆସିଲା ସୁରୁଚି, ଦେହରେ ମିନି ସ୍କାର୍ଟ । ମୁଁ ବିଶ୍ୱାସ କରିପାରିଲି ନାହିଁ ।

–ସୁରୁଚି, ତୁମେ ଏଠାରେ ?

–ଚାଲିଆସିଲି ।

–କେବେ ?

–ଆଜି ସକାଳେ ।

ମୁଁ ଟିକିଏ ଥମିଗଲି । ତାପରେ ମୋର ଚା ପିଇବାକୁ ଇଚ୍ଛା ହେଲା । କହିଲି–

–ଟିକିଏ ଚା କରିଆଣ ।

–ଘରେ ଦୁଧ ନାହିଁ ।

–କାହିଁକି ? ସୁନୀତି ଗାଈ ଦୁହିଁନି ।

–କାଳିଗାଈର କ୍ଷୀର ଶୁଖିଯାଇଛି । ବାଛୁରୀ ବଡ଼ ହୋଇଗଲାଣି ।

ଆଶ୍ଚର୍ଯ୍ୟ, କାଲି ରାତିରେ ସୁନୀତି ମତେ ଗିଲାସେ ବହଳିଆ କ୍ଷୀର ପିଇବାକୁ ଦେଇଥିଲା ।

ପୁଣି ପଚାରିଲି, ସୁନୀତି ଗଲା କୁଆଡ଼େ ?

–ସେ ଚାଲିଯାଇଛି ।

–କୁଆଡ଼େ ?

–ମୁଁ ଜାଣେ ନାହିଁ ।

–ଧ୍ରୁବ ?

–ସେ ବି ।

–ଏ ଝଡ଼ ତୋଫାନରେ ସେମାନେ ଗଲେ କୁଆଡ଼େ ?

–ମୁଁ ଜାଣେ ନାହିଁ । ମୁଁ ଆସିବା ମାତ୍ରେ ସେମାନେ ଚାଲିଗଲେ ।

–ମୋତେ ଡାକିଲ ନାହିଁ ?

–ତୁମେ ଶୋଇଯାଇଥିଲ ।

ମୁଁ ବିଛଣାରେ ଉଠି ବସିଲି । ସୁରୁଚି ମୋର ପାଖରେ ବସିଲା । କହିଲା–

–ବ୍ୟସ୍ତ ହୁଅ ନାହିଁ । ସେମାନେ ବୋଧହୁଏ ସହରକୁ ଯାଇଛନ୍ତି । ଫେରି ଆସିବେ ।

ମୁଁ ସୁରୁଚିର ମିନି ସ୍କାର୍ଟ ଦେଖିଲି । ତା ହାତରେ ସେଇ ଚିତ୍ର ଥିବା ଭ୍ୟାନିଟି ବ୍ୟାଗ୍ । ମୁଁ ଭ୍ୟାନିଟି ବ୍ୟାଗ୍ ଉଠେଇ ନେଲି । ଖୋଲିଲି । ଭିତରେ କିଛି ରେଜା

ପଇସା, ଲିପ୍‌ଷ୍ଟିକ୍, ପାନିଆଁ, ସାନ ଦର୍ପଣ, ଚାରି ପାଞ୍ଚୋଟି ନିରୋଧ, ଜନ୍ମ ନିୟନ୍ତ୍ରଣ ବଟିକା । ମୁଁ ବନ୍ଦ କରିଦେଲ । ତା' ହାତକୁ ବଢ଼ାଇଦେଲି ।

ସୁରୁଚି ଉଠିଯାଇ ଦୁଇଟି ଗ୍ଲାସ ଆଣିଲା । ଗୋଟିଏ ବ୍ୟାଗ୍‌ରୁ ମଦ ବୋତଲ ବାହାର କଲା । ଦୁଇଟି ଗ୍ଲାସରେ ଢାଳିଲା । ଗୋଟିଏ ମୋ ହାତକୁ ବଢ଼ାଇ ଦେଲା । ଅନ୍ୟଟି ହାତରେ ଧରିଲା । ମୋ ଗ୍ଲାସରେ ତା ଗ୍ଲାସକୁ ଠୁକି ସେ ଔଷଧ ପରି ତାକୁ ପିଇଗଲା । ମୁଁ ସେମିତି ବସି ରହିଲି ।

ସୁନୀତି ମତେ ମଦ ପିଇବାକୁ ଦେଉ ନଥିଲା । କେବଳ ଗାଈର କ୍ଷୀର ଦେଉଥିଲା । ସିଗାରେଟ୍ ମାଗିଲେ ସୁନୀତି ମୋ ଓଠରେ ଚୁମା ଦେଇ କହୁଥିଲା–

–ଚୁମା ଆଉ ଚୁରୁଟ ଏକା ସାଙ୍ଗରେ ହୁଏ ନାହିଁ ।

ସୁରୁଚି ପାଇଁ ବମ୍ବେରୁ ମୋର ମଦ ଆଉ ସିଗାରେଟ୍ ଅଭ୍ୟାସ ହୋଇଯାଇଥିଲା ।

ମଦଗ୍ଲାସ ମୁଁ ତଳକୁ ଓହ୍ଲାଇ ରଖିଲି । ପିଇବି ନାହିଁ । ଏ ଝଡ଼ ତୋଫାନ ଭିତରେ ସୁନୀତି ଧ୍ରୁବକୁ ନେଇ କୁଆଡ଼େ ଗଲା । ସେଥିପାଇଁ ମନ ଭଲ ଲାଗୁନାହିଁ । ସୁରୁଚି ମୋ ପାଖକୁ ଲାଗି ଆସିଲା । ତା ପିଠିର ବୋତାମ ଖୋଲିଲା । ତା' ପରେ ଏକ ଅଜବ ଭାଷା ଆଖିରେ ଖେଳାଇ ମୋ ଓଠରେ ଗ୍ଲାସ ଛୁଆଁଇ ଦେଲା । ମୁଁ ବୁଝିଲି, ସେ ଅନୁନୟକୁ ଉପେକ୍ଷା କରିବା ମୁସ୍କିଲ । ମୁଁ ଢକ ଢକ କରି ପିଇଗଲି ଓ ସୁରୁଚିକୁ ଅନାବୃତ କଲି ।

ଦେଖିଲି, ସୁରୁଚିର ଦେହରେ ଆଶ୍ଚର୍ଯ୍ୟ ବିଜ୍ଞାପମୟ ଏକ ଜଗତ । ନିଃଶଙ୍କ । ନିର୍ବିକାର । ଏକ ନୂତନ ଅନୁଭବ । ଏକ ଅଜବ ଉପଲବ୍ଧି । ଏକ ଭିନ୍ନ ଧରଣର ଉପଲବ୍ଧି । ମୋ ପାକସ୍ଥଳୀରେ ପାନୀୟର ପ୍ରତିକ୍ରିୟା । ଭିତର ବାହାର ଚାରିଆଡ଼େ ତୋଫାନ ।

ମୁଁ ଖୁବ୍ କ୍ଷୀଣଭାବରେ ଅନୁଭବ କଲି, କେଉଁଠି ଯେମିତି ହାତାହାତି ସଂଘର୍ଷ ଲାଗିଯାଇଛି । ପ୍ରବଳ ବାୟୁରେ ଗଛଲତା ଉପୁଡ଼ିଯାଉଛି । କେଉଁ ଏକ ପ୍ରଚଣ୍ଡ ଭୂମିକମ୍ପରେ ପର୍ବତ ଦୋହଲି ଯାଉଛି । ବିଜ୍ଞାପନମୟ ଜଗତ ମୋ ଚାରିପଟରେ ଦାବାନଳ ପରି ଘେରି ଯାଉଛି । ଭିତରର କେଉଁ ଏକ ସୂକ୍ଷ୍ମ ତନ୍ତ୍ରୀରେ ସାମାନ୍ୟ ପ୍ରତିବାଦ ଅନୁଭବ କଲି । ମତେ ମନେ ହେଲା, ସୁରୁଚିର ଆଲିଙ୍ଗନ ଅକ୍ଟୋପାଶ ଭଳି, ଚୁମ୍ବନ ସର୍ପ ଦଂଶନ ଭଳି ।

ମୁଁ ଉଠି ବସିଲି ।

କିନ୍ତୁ ସୁରୁଚିର ତୋଫାନ ଓ ବନ୍ୟାରେ ପୁଣି ପଡ଼ିଗଲି । ଉଠିବା ପାଇଁ ଧସ୍ତାଧସ୍ତି କଲି । ଚିତ୍କାର କଲି । ପ୍ରତିବାଦ କଲି । ପାରିଲି ନାହିଁ ।

ମୁଁ ସେଇ ଶେଷ ମୁହୂର୍ତ୍ତରେ ସୁନୀତି ଉଦ୍ଦେଶ୍ୟରେ କଥା ପଦକ କହିଗଲି– ସୁନୀତି, ତୁମେ ନିରୁଦ୍ଦେଶ୍ୟ ହୁଅ ନାହିଁ, ଫେରିଆସ । ଧ୍ରୁବଙ୍କୁ ଜଙ୍ଗଲରେ ବାଘଭାଲୁଙ୍କ ଗହଣରେ ତପସ୍ୟା କରିବାକୁ ଛାଡ଼ିଦିଅ ନାହିଁ । ଏ ଝଡ଼ ଥମିଗଲେ ମୁଁ ପୁଣି ତୁମମାନଙ୍କୁ ଉଦ୍ଧାର କରିବି ।

ତକିଆ ଚିରିଲା ଭଳି ସୁରୁଚି ମୋ ଛାତି ଚିରି ପକାଇଲା । ମୁଣ୍ଡମଣ୍ଡଳ ଉପରେ ଥାଇ ମୋ ଦୁଇଟି ଆଖିକୁ ଦେଖିଲା । ସବୁ ଶିରାପ୍ରଶିରା ଛିଡ଼ାଇ ଲାଲ ହୃତ୍‌ପିଣ୍ଡଟା ବାହାର କରିନେଲା । ତାପରେ ଝାନ୍‌ସୀରାଣୀ ଘୋଡ଼ାରୁ ଓହ୍ଲାଇଲା ଭଳି ଲାଲ ହୃତପିଣ୍ଡଧାରିଣୀ ମୋ ଉପରୁ ଓହ୍ଲାଇଲା । ସେମିତି ଉଲଗ୍ନ ହୋଇ ତା ଚିତ୍ରିତ ଭ୍ୟାନିଟି ବ୍ୟାଗ୍‌ରେ ସେଇଟାକୁ ରଖିଲା ।

ହୃତ୍‌ପିଣ୍ଡଟା ଭ୍ୟାନିଟି ବ୍ୟାଗ୍‌ର ରେଜା ପଇସା, ଲିପଷ୍ଟିକ୍, ପାନିଆଁ, ପାଉଡ଼ର, ଦର୍ପଣ, ନିରୋଧ, ଜନ୍ମନିୟନ୍ତ୍ରଣ ବଟିକା ଭିତରେ ଦୁଇ ଚାରିଥର ଛଟପଟ ହେଲା । ତା ପରେ ସ୍ଥିର ହୋଇଗଲା ।

ମୁଁ ମନେ ମନେ କହିଲି–ମାନିବାକୁ ହେବ, ଗ୍ରହଣ କରିନେବାକୁ ହେବ । ଉପାୟ ନାହିଁ । ତଥାପି ବଞ୍ଚିବାକୁ ହେବ । ନିଜକୁ ବଞ୍ଚାଇ ରଖିବାକୁ ହେବ ।

ଆଖି ବୁଜିଲି ।

('ଝଙ୍କାର', ୨୬ଶ ବର୍ଷ ୧୦ମ ସଂଖ୍ୟା ଜାନୁଆରୀ, ୧୯୭୫)



# ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର

ତୁମକୁ କେତେ ବର୍ଷ ବୟସ ହେଲା ଈଶ୍ୱର ।

ତୁମେ ନିଶ୍ଚୟ ମୋଠୁ ସାନ । ଏବେ ମୋର ପଚିଶ ବର୍ଷ ଚାଲିଲା । ତୁମର ଏଯାଏଁ ନିଶ ଦାଢ଼ି ଉଠିଲାନି । ତୁମେ ଏବେ ବି ଅପ୍ରାପ୍ତବୟସ୍କ ।

ତୁମେ ମାଇଚିଆ ନିଶ୍ଚୟ । ନ ହେଲେ ନାକ ତ କଳା ପଡ଼ିଥାନ୍ତା ! ତୁମ କାଖ ତଳେ କଣ ବାଳ ନାହିଁ ? ତୁମ ଛବି ଆଉ ମୂର୍ତ୍ତି ଯେତେ ଜାଗାରେ ଦେଖିଛି, ମୁଁ ଭଲ କରି ଲକ୍ଷ୍ୟ କରିଛି, ତୁମ ଛାତିରେ ବାଳ ନାହିଁ । ତୁମ ଦେହର ଅନ୍ୟ ସବୁ ଜାଗାରେ ?

ତୁମେ ବଡ଼ ସ୍ୱାର୍ଥପର ।

ଥରେ ଗୋଟିଏ ବୀଭତ୍ସ ଚେହେରାର ଭିକାରି ରାସ୍ତା କଡ଼ରେ ବସି ଭିକ ମାଗୁଥିଲା । ପ୍ରକୃତରେ ଦୟା ହେଲା ତା ପ୍ରତି । ପକେଟ ଅଣ୍ଡାଳିଲି । ବଡ଼ ଦଶପଇସି ଗୋଟିଏ ହାତରେ ପଡ଼ିଲା । ଟିକିଏ ଇତସ୍ତତଃ ହୋଇ ତା ଆଡ଼େ ଫୋପାଡ଼ିଦେଲି । ସେ ଗୋଟାଇ ନେଲା । ତା ପରେ– 'ଈଶ୍ୱର ତୁମର ମଙ୍ଗଳ କରନ୍ତୁ । ବଡ଼ ଦୟାବାନ ପ୍ରଭୁ ।'

ମୁଁ ତାକୁ ଦୟା ଦେଖାଇଲି, ଆଉ ତୁମେ ହେଲ ଦୟାବାନ । କାମ ମୋର ନାମ ତୁମର । ବାଃ ବାଃ ।

ତୁମର ଗୋଟିଏ ଛଳନା ତୁମେ ନିରାକାର ଆଉ ସର୍ବବ୍ୟାପୀ । ପବନ ତ ନିରାକାର ଆଉ ସର୍ବବ୍ୟାପୀ, ପବନ କଣ ତୁମର ସୃଷ୍ଟି ? ପରମାଣୁ ବି ତୁମର ସୃଷ୍ଟି ବୋଲି ବାହାଦୁରୀ ନେବାକୁ ପଛେଇବନି ଯେ !

ତୁମେ ଗୋଟିଏ ମଣିଷ ହୁଅନ୍ତ କି ! ଠିକ୍ ମୋ ଭଳି ଗୋଟିଏ ମଣିଷ ହୁଅନ୍ତ କି ! ମଜା ବୁଝନ୍ତ । ତା ନାହିଁ, ଅଦୃଶ୍ୟରେ କେଉଁଠି ଲୁଚିଛ । ନାକରେ ସୋରିଷ ତେଲ ପକାଇ କେଉଁ ଏକ ସୁନ୍ଦରୀ ତରୁଣୀ କୋଳରେ ଶୋଇ ଘୁଙ୍ଗୁଡ଼ି ମାରୁଛ । କଣ ନା ଈଶ୍ୱର !

ଈଶ୍ୱର, ଯିଏ ଯାହା କହନ୍ତୁ ପଛକେ ମୁଁ ଜାଣେ ତୁମେ ମୃତ । ମୁଁ ଆଜି ତୁମକୁ ଜୀବନ୍ୟାସ ଦେବି । ତୁମକୁ ମଣିଷ କରି ଗଢ଼ିବି । ତା ପରେ ଖୁବ୍ ଅସହାୟ କରି ନିଜ

ହାତରେ ତୁମକୁ ଖୁନ୍ କରିବି । ତାହେଲେ ବୁଝିବ ଦୁଃଖ କେତେ, ଯନ୍ତ୍ରଣା କେତେ । ମଣିଷ କେତେ ନିଃସଙ୍ଗ ଆଉ କେତେ ଅସହାୟ ।

ତୁମେ ମଣିଷ ବନିଗଲା ପରେ ମୋ ସହ ଦୋସ୍ତୀ କରିବ ? କେହି ତୁମକୁ ମୋ ସହ ପରିଚୟ କରାଇବା ଦର୍କାର ନାହିଁ । ମୁଁ ଏ ଘରେ ବର୍ତ୍ତମାନ ଏକା । ତୁମେ ଆସି ଠିକ୍ ଏକ ମୁହୂର୍ତ୍ତରେ କବାଟ ଖଟଖଟ କରନ୍ତ । ମୁଁ ଯାଇ କବାଟ ଖୋଲି ଦିଅନ୍ତି ।

ତୁମେ ମୋତେ ନମସ୍କାର କରି କହନ୍ତ–ମୁଁ ଈଶ୍ୱର ।

ମୁଁ ବି ତୁମକୁ ନମସ୍କାର କରନ୍ତି–ଆରେ ଈଶ୍ୱରବାବୁ ଯେ ! ଆସନ୍ତୁ ଆସନ୍ତୁ । ଅନେକଥର ଆପଣଙ୍କ ନା ଶୁଣିଛି ।

ତୁମେ ଟିକେ ହସନ୍ତ । ଭିତରକୁ ଆସନ୍ତ । ମୁଁ କହନ୍ତି–ଏକା ଏକା ବୋର୍ ହେଉଥିଲି । ଆସିଲେ ଯାହାହେଉ ଭଲ ହେଲା ।

ତୁମେ ମୋ ଖଟ ଉପରେ ବସନ୍ତ । ମୁଁ ଖଟ ଉପରେ ପଡ଼ିଥିବା ବହି ଲୁଙ୍ଗି ଅଣ୍ଡରୱାୟାର ଘୁଞ୍ଚାଇ ଦେଇ ତୁମର ବସିବା ପାଇଁ ଜାଗା କରି ଦିଅନ୍ତି ।

ତୁମେ ଟିକେ ଥକା ମାରିବା ଭଙ୍ଗୀରେ ପଚାରନ୍ତ–ଆଉ ସବୁ କେମିତି ଚାଲିଛି । ସବୁ ଭଲ ତ !

ମୁଁ କହନ୍ତି, ଭଲ ଆଉ କଣ । ଭଲମନ୍ଦ ମିଶାମିଶି ।

ତା ପରେ ମୁଁ ଉଠି ଯାଆନ୍ତି । ଜଗନ୍ନାଥକୁ ପଠାନ୍ତି ଗାନ୍ଧୀ ଦୋକାନରୁ ଚା' ଆଉ ରାମକୃଷ୍ଣ ପାଖରୁ ଜର୍ଦ୍ଦାରିଆ ପାନ ଆଉ ଚାର୍ମିନାର ଆଣିବାକୁ ।

ମୋ ପାଖରେ ପଇସା ନିଅଣ୍ଟ ହୁଅନ୍ତା । ମୁଁ ବ୍ୟସ୍ତ ହୋଇ ମୋ ପକେଟ ଖୋଜନ୍ତି । ତକିଆ ତଳେ ଖୋଜନ୍ତି । ତୁମେ ତୁମ ପକେଟରୁ ଟଙ୍କାକିଆ ନୋଟ ଗୋଟିଏ ବାହାର କରି ଜଗନ୍ନାଥକୁ ବଢ଼ାଇ ଦେଇ କହନ୍ତ–ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଦେଉଛି ।

ମୁଁ ଆହୁରି ବ୍ୟସ୍ତ ହୋଇ ଉଠନ୍ତି । ମୋ ପାଖରେ ଗୋଟିଏ ଦଶଟଙ୍କିଆ ନୋଟ ବ୍ୟତୀତ ଆଉ କିଛି ନାହିଁ । ସେଥିରେ ପୁଣି ପହିଲା ଦେବାକୁ ଆଉ ଦଶ ଦିନ ବାକୀ । କେବଳ ମୁହଁରେ ବ୍ୟସ୍ତତାର ଅଭିବ୍ୟକ୍ତି ନେଇ ଚୁପ୍‌ଚାପ୍ ରହିଯାଆନ୍ତି ।

ଆମର କଥାବାର୍ତ୍ତା ଚାଲନ୍ତା । ଆମେ ଆପଣରୁ ତୁମେକୁ ଓହ୍ଲାଇ ଆସନ୍ତେ । ଜଗନ୍ନାଥ ଚା' ଆଣି ହେଣ୍ଡେଲ ଭଙ୍ଗା କପ୍‌ରେ ତୁମକୁ ପିଇବାକୁ ଦିଅନ୍ତା । ତୁମେ ମନ ଖୁସିରେ ପିଅନ୍ତ । ଚାର୍ମିନାର ଲଗାଇ ଧୂଆଁ ଛାଡ଼ନ୍ତ । ପାନ ଚୋବାଇ ଝର୍କା ରେଲିଂ ଦେଇ ପାନପିକ ବାହାରକୁ ପକାଇ କହନ୍ତ–ଟିକେ ଚୂନ ଲାଗିଗଲା ।

କ୍ରମେ ତୁମେ ଏଠାକୁ ଆସିବାର କାରଣ କହନ୍ତ । ଚାକିରି ଦର୍କାର ଚାକିରି । ଏ.ଜି.ଅଫିସରେ ଇଣ୍ଟରଭିୟୁ ଦେବାକୁ ଆସିଛ ।

ତୁମେ ପଚାରନ୍ତ–ଧରାଧରି ଚଳିବ ? ଯଦି କିଛି ଟଙ୍କା ଲାଗେ ତା ବି ବ୍ୟବସ୍ଥା କରିବି । କିନ୍ତୁ ଚାକିରି ନ ହେଲେ ବହୁତ ଅସୁବିଧା ।

ସେତେବେଳେ ମୋତେ ତୁମ ଅପେକ୍ଷା ଅଧିକ ସୁଖୀ ଦେଖାଯିବା କଥା । କିନ୍ତୁ ମୁଁ ସେସବୁ 'ବାହାରେ ପ୍ରକାଶିତ ହେବାକୁ ଦିଅନ୍ତି ନାହିଁ । କେବଳ ଗୁରୁଜନ ଭଳି ଉପଦେଶ ଦିଅନ୍ତି–ଇଣ୍ଟରଭିୟୁରେ ଭଲ କର, ହୋଇଯାଇପାରେ ।

ତା ପରେ କଥା ପ୍ରସଙ୍ଗରେ ତୁମେ ତୁମର ପ୍ରେମ କାହାଣୀ କହନ୍ତ । ପ୍ରେମିକାର ବାପା ଯେ ତୁମ ଭଳି ବେକାର ଅପଦାର୍ଥକୁ ଝିଅ ଦେବେ ନାହିଁ ସେ କଥା ବି କହନ୍ତ । ତୁମେ ଆହୁରି କହନ୍ତ–ଗାଁରେ ତୁମର ଅଳ୍ପ ଚାଷ ଜମି । ଘରେ ବିଧବା ମା । ବାହା ହେବା ପାଇଁ ଦୁଇଟି ଭଉଣୀ । ଅଷ୍ଟମ ଶ୍ରେଣୀରେ ପଢୁଛି ତୁମ ସାନଭାଇ । ବାପା କରି ଯାଇଥବା ଋଣର ସୁଧ ବଢ଼ିଚାଲିଛି । ଗଲା ତିନି ବର୍ଷରେ ବନ୍ୟାରେ ଫସଲ ଧୋଇ ଯାଇଛି ।

ମୁଁ ମୌଖିକ ସାନ୍ତ୍ୱନା ଦିଅନ୍ତି–ସମସ୍ତଙ୍କ ଅବସ୍ଥା ସେମିତି । ଚାକିରି ଖଣ୍ଡେ ପାଇଲେ ସବୁ ଠିକ୍ ହୋଇଯିବ ।

ତୁମେ ହଜାର ହଜାର ବେକାରଙ୍କ ଗହଣରେ ଇଣ୍ଟରଭିୟୁ ଦିଅନ୍ତୁ । ସମସ୍ତଙ୍କ ଭଳି ବାହାରକୁ ଆସି କହନ୍ତ–ହେବନି । ଖରାପ ହୋଇଛି ।

ସଞ୍ଜରେ ତୁମକୁ ନେଇ ମୁଁ ଷ୍ଟେସନ ଯାଆନ୍ତି । ଇଣ୍ଟରଭିୟୁରେ ଖରାପ ହୋଇଛି ବୋଲି ତୁମେ ଟିକଟ କରନ୍ତ ନାହିଁ । ଡବ୍ଲୁଟିରେ ଯାଆନ୍ତ ।

ଟ୍ରେନରେ ବସିଲା ପରେ ମୁଁ କହନ୍ତି–କେବେ ସମୟ ପାଇଲେ ଆସ । ତୁମେ କେମିତି ଏକ ପ୍ରକାର ଅସହାୟତାର ଆଖି ନେଇ ମୁଣ୍ଡ ହଲାନ୍ତ । ମୁଁ ତୁମର ସେଇ ମୁହଁ ଦେଖି ଭିତରେ ଖୁସି ହୋଇ ଉଠନ୍ତି । ତା ପରେ ଟ୍ରେନର ଚକ ଗଡ଼ିଲେ ତୁମ ପାଇଁ ହାତ ହଲାଇ ଦେଇ ମୁଁ ଅଳ୍ପ ସମୟ ପାଇଁ ଉଦାସ ହୋଇ ଉଠନ୍ତି ।

ତୁମେ କେବେ ଗଞ୍ଜେଇ ଟାଣିଛ ଈଶ୍ୱର, କେବେ ମଦ ପିଇଛ ? କେବେ ବେଶ୍ୟା ଘରକୁ ଯାଇଛ ?

ମୁଁ ଜାଣେ ତୁମକୁ ମଣିଷ ରୂପ ଦେଲା ପରେ କେଉଁଠି ନା କେଉଁଠି ଏସବୁ ଧନ୍ଦା ଆରମ୍ଭ କରିବ । ଯଦି ପୃଥିବୀରେ ମୋ ପାଖାପାଖି ରହିବ, ତାହେଲେ ମୋ ସହ ଦୋସ୍ତୀ ଜମିଯିବ । କାରଣ ଚୋରକୁ ଚୋର ଚିହ୍ନେ ପରା !

ତୁମର ପ୍ରେମିକା ଅଛନ୍ତି ? କେବେ ତାକୁ ଚୁମା ଖାଇଛ । କେବେ ତା' ବ୍ଲାଉଜ ବୋତାମ, ବ୍ରା'ର ହୁକ ଖୋଲିବାର ଚେଷ୍ଟା କରିଛ ?

ଈଶ୍ୱର, ତୁମର କେହି ନାହିଁ । ତୁମେ କେବେ କିଛି କରିପାରିନାହଁ । ମୁଁ ଚାଲେଞ୍ଜ ଦେଉଛି ତୁମେ ଏଇ ଈଶ୍ୱର ଜନ୍ମରେ କିଛି କରି ପାରିପାରିବ ନାହିଁ । ତେଣୁ ଆସ, ବରଂ ମଣିଷ ହୋଇ ବଞ୍ଚ । ବେଦ ଉପନିଷଦ, କୋରାନ, ବାଇବେଲ ପୃଷ୍ଠାରେ ରହି ତୁଚ୍ଛାଟାରେ ଆଉ ସଢ଼ ନାହିଁ ।

ସମସ୍ତେ କହନ୍ତି ପରା–ତୁମେ ଯେତେବେଳେ ଯାହା ଚାହିଁବ ତା ପାରିବ । କିନ୍ତୁ ମୁଁ ତୁମକୁ ଚାଲେଞ୍ଜ ଦେଇ କହୁଛି–ଏଇ ମୁହୂର୍ତ୍ତରେ, ଠିକ ଏଇ ମୁହୂର୍ତ୍ତରେ ପାରିବ ମୋତେ ମାରି ଦେଇ ?

ପାରିଲ ନାହିଁ । ମୁଁ ଆଗ ଭଳି ଲେଖୁଛି । ଏଇ ମୁହୂର୍ତ୍ତରେ ଲେଖୁଛି । ମୁଁ ବଞ୍ଚିଛି । ତୁମେ ହାରିଗଲ । ଏଇ ଧରଣର ଚାଲେଞ୍ଜ ନ ହାରିବା ପାଇଁ ସମସ୍ତଙ୍କୁ ବୋଧହୁଏ ଶିଖେଇ ଦେଇଛ–ଈଶ୍ୱର ମଙ୍ଗଳମୟ । ସେ କାହାରି କ୍ଷତି କରନ୍ତି ନାହିଁ ।

ଠିକ ହେଲା, ତୁମେ ମଙ୍ଗଳମୟ । ତୁମେ ମୋର ମଙ୍ଗଳ କର ! ଏଇ ମୁହୂର୍ତ୍ତରେ ମୋ ହାତକୁ ଲକ୍ଷେ ଟଙ୍କା ଆଣି ଦେଲ ! ତୁମେ ନିଶ୍ଚୟ ପାରିବ ନାହିଁ । ସେ ସାଧ ତୁମର ନାହିଁ । ଏ ଧରଣର ଚାଲେଞ୍ଜରୁ ନ ହାରିବା ପାଇଁ ତୁମେ ବୋଧହୁଏ ସମସ୍ତଙ୍କୁ ମୁଖସ୍ଥ କରାଇ ଦେଇଛ–ଭାଗ୍ୟଂ ଫଳତି ସର୍ବତ୍ର ।

ଶୁଣିଛି ସ୍ୱର୍ଗରାଜ୍ୟ ଖୁବ୍ ନିଃସଙ୍ଗ । ତୁମେ ଯଦି ସେମିତି ଏକ ରାଜ୍ୟରେ ଥାଅ ତା'ହେଲେ ଖୁବ୍ ନିଃସଙ୍ଗ ହୋଇପଡୁଥିବ, ନୁହେଁ ? ତୁମେ କଣ ଥରେ ଥରେ ନିର୍ଜନରେ ବସି କାନ୍ଦ ? ବେଶୀ ନିଃସଙ୍ଗ ହେଲେ ମୋ ଭଳି କ'ଣ ସିଗାରେଟ୍ ଟାଣ ?

ତୁମେ ମୋର ବନ୍ଧୁ ହୋଇ ଆସ । ମୁଁ ତୁମକୁ କେତେ ଝିଅ ଘରକୁ ବୁଲାଇ ନେବି । ତୁମକୁ ସାଇକେଲ ଆଗରେ ବସାଇ ସହର ପରିକ୍ରମା କରିବି । ସଞ୍ଜରେ ସାଇକେଲ ରଖି ରାସ୍ତା ଉପରେ ଘୂରି ବୁଲିବା । ସିଗାରେଟ୍ ଭିତରେ ଗଞ୍ଜେଇ ଭର୍ତ୍ତି କରି ଟାଣିବା । କେତେବେଳେ ପୁଣି ପଇସା ହେଲେ ଦି ପେଗ୍ ପକାଇ ନେବା । ରାସ୍ତା କଡ଼ରେ ଛିଡ଼ାହୋଇ ବାଦାମ ଖାଇବା । ନ ହେଲେ ଟ୍ରେନରେ ଟିକେଟ ନ କରି ଅନେକ ଅନେକ ଦୂରକୁ ଚାଲିଯିବା ।

ମୋର ଅନେକ ଦିନର ଧାରଣା ଥିଲା ତୁମେ ଗୋଟିଏ ସୁଗନ୍ଧ । ମୁଁ ତୁମକୁ ଅନୁଭବ କରିଛି ଅନେକଥର । ସେତେବେଳେ ମୁଁ ଖୁବ୍ ସାନ । ମା' ମୋତେ ନେଇ ମନ୍ଦିର ଯାଇଥିଲେ । ମୁଁ ଛିଡ଼ା ହୋଇ ତୁମର ଆଖି କାନ ନାକ ବେଶ ଦେଖୁଥିଲି । ଘଣ୍ଟା ବାଜିଲା । ଆରତି ହେଲା । ମୁଁ ଏକ ପ୍ରକାର ବାସ୍ନା ପାଇଲି । ଝୁଣା ଧୂପ ଫୁଲ ଚନ୍ଦନର ସମ୍ମିଳିତ ଏକ ପ୍ରକାର ଥଣ୍ଡା ବାସ୍ନା । ମା'କୁ ପଚାରିଲି, ସେ କହିଲେ ତୁମର ବାସ୍ନା । ସେଇଟା ତୁମକୁ ମୋ ପ୍ରଥମ ଅନୁଭବ ।

ତା' ପରେ ଆଉ ଦିନେ ସଞ୍ଜରେ ନଈକୂଳରେ ଏକା ବସି ପଶ୍ଚିମ ଆକାଶ ଦେଖୁଥିଲି । ରଙ୍ଗିନ ଆକାଶ । ନଈ ପାଣିରେ ଆକାଶ । ଧାନ ବିଲରେ ଆକାଶ । ଚାରିଆଡ଼େ ଆକାଶଟା କେମିତି ମାଡ଼ି ମାଡ଼ି ରହିଥିଲା । ଦୂର ଗାଁ ଉପରେ ଧୂଆଁର ରେଖା ଗୋଟିଏ ଲେସି ହୋଇଯାଇଥିଲା । ମୋ ମୁଣ୍ଡ ଉପରେ କିଚିରମିଚିର୍ ଚଢ଼େଇ କେତେଟା ଉଡ଼ିଗଲେ । ମୁଁ କେମିତି ଆଚ୍ଛନ୍ନ ହୋଇ ଆସିଲି । ସେତେବେଳେ ତୁମ ବାସ୍ନା ପାଇଲି । ମନ୍ଦିର ଭିତରର ସେଇ ବାସ୍ନା । ବୁଝିପାରିଲି ତୁମେ ସୁନ୍ଦର ସୁନ୍ଦର ନିରୋଳା ସ୍ଥାନରେ ଘୂରିବୁଲ ।

ଆଉ ଦିନେ ତୁମେ ବୋଧହୁଏ ଆସିଥିଲ ଦେବୀ ଘର ଆଡ଼େ । ତୁମେ ହୁଏତ ଜାଣ–ମୋର ସେଇ ବେମାରି ଥରେ ଥରେ ଦେଖା ଦିଏ । ଦେବୀର ପାଦରେ ଚୁମା ଦେବାର ବେମାରି । ମୁଁ ସେଦିନ ତାର କପାଳ ଚୁମ୍ବନ କଲି । ଆନିତମ୍ବ କେଶ ଝୁଲାଇ ଦେବୀ ଆଖି ବନ୍ଦ କରି ଛିଡ଼ାହୋଇ ରହିଲା । ମୋ ଭିତରେ ତାକୁ ପ୍ରଣାମ କରିବାର ଇଚ୍ଛା ଧୀରେ ଧୀରେ ଜାଗିଉଠୁଥିଲା । ସେତେବେଳେ ତୁମର ସେଇ ବାସ୍ନା ପାଇଲି । ଖୁବ୍ ଥଣ୍ଡା ସ୍ନିଗ୍ଧ ବାସ୍ନା । ତୁମେ ବୋଧହୁଏ ଆମର ଖୁବ୍ ପାଖ ଦେଇ ଚାଲିଗଲ । ମୁଁ ତୁମକୁ ମୋର ସ୍ନାୟୁରେ ଅନୁଭବ କଲି ଏବଂ ଦେବୀର ପାଦଛୁଇଁ ପ୍ରଣାମ କଲି ।

ତୁମେ କେବେ ମରିବ ମୁଁ ଜାଣେ । ଯେଉଁଦିନ ମୋର ସବୁ ଅନୁଭବ ଶକ୍ତି ଲୋପ ପାଇବ । ସେଇ ଯେଉଁଦିନ ଚାରୋଟି ବାଉଁଶ ଉପରେ ପକାଇ ଲୋକମାନେ ତୁମକୁ ଡାକି ଡାକି ମୋତେ ମଶାଣି ଆଡ଼େ ନେଇଯିବେ, ସେଦିନ ତୁମକୁ ମୋ ସହ ଯିବାକୁ ହେବ ଯେ ! ତୁମର ସେଦିନ ରକ୍ଷା ନାହିଁ । କାରଣ ମୁଁ ଯେ ତୁମକୁ ତିଆରି କରିଛି । ତୁମେ ସିନା ବ୍ରହ୍ମାଣ୍ଡ ସ୍ରଷ୍ଟା । ମୁଁ ଯେ ତୁମର ସ୍ରଷ୍ଟା !

ଏତେ ସବୁ ବାଜେ କଥାରୁ କଣ ମିଳିବ । ତୁମେ ଆସ । ଯଦି ଏ.ଜି.ଅଫିସରେ ତୁମ ଚାକିରି ମିଳିଯାନ୍ତା ତାହେଲେ ଦୁହେଁ ସାଙ୍ଗ ହୋଇ ଗୋଟିଏ ଜାଗାରେ ରହନ୍ତେ । ତୁମର ଯଦି ଚାକିରିଟା ନ ମିଳେ ?

ଚାକିରି ନ ପାଇଲେ ଅବଶ୍ୟ ଖୁବ୍ ଅସୁବିଧାରେ ପଡ଼ିବ । ପୃଥିବୀରେ ବଞ୍ଚିବା ପାଇଁ ତ ପଇସା ଦରକାର । ଗୋଟିଏ କାମ କରିବ ?

କାମଟା ହେଲା ସ୍ମଗଲିଂ କରିବା । ବହୁତ ପଇସା । ଏଇ ଦେଖୁଛ ଏଠି ଯେଉଁମାନେ ବଡ଼ ହୋଇଛନ୍ତି ସେମାନେ ସମସ୍ତେ ସ୍ମଗଲିଂ କରିଛନ୍ତି । ଅବଶ୍ୟ ଏଇ ଧରଣର ହେବା ମୋ ଜୀବନର ଲକ୍ଷ୍ୟ ନୁହେଁ । ନ ହେଲେ କେଉଁଦିନରୁ ଆରମ୍ଭ କରି ଦିଅନ୍ତିଣି । କିନ୍ତୁ ତୁମେ ମୁଁ ହାତ ମିଳେଇ କାମ ଆରମ୍ଭ କରିଦେବା ।

ଅବଶ୍ୟ ଏ ଧନ୍ଦାରେ ଖୁବ୍ ରିସ୍କ ଅଛି । ମିସାରେ ପଡ଼ିବାର ଭୟ ଅଛି ।

ତୁମେ ସିନେମା ଷ୍ଟାର ହୋଇ ପାରିବ ଈଶ୍ୱର ! ବହୁତ ପଇସା, ବହୁତ ଆରାମ । କିନ୍ତୁ ଇନ୍‌କମ୍‌ଟେକ୍ସ ଆଉ ଭକ୍ତମାନଙ୍କୁ ସବୁବେଳେ ଡରି ଚାଲିବାକୁ ପଡ଼ିବ ।

ବରଂ ତୁମେ ଏଥର ଇଲେକସନରେ ଛିଡ଼ା ହୁଅ । ତୁମ ନାଁ ତ ସମସ୍ତେ ଜାଣିଛନ୍ତି । ମୁଁ ତୁମ ପାଇଁ ପ୍ରଚାର କରିବି । ଥରେ ନେତା ହୋଇଗଲେ ତୁମ ସାତପୁରୁଷ ଆରାମରେ ବସି ଖାଇ ପାରିବେ ।

କିନ୍ତୁ ସେଥିରେ ବି ଅସୁବିଧା ଅନେକ ।

ଛାଡ଼ ଏସବୁ ଧନ୍ଦା । ପ୍ରେମ କର । ଯେତେ ଦିନ ବଞ୍ଚୁଛ ମଣିଷ ଭଳି ସବୁ ଅନୁଭବ ଉପଲବ୍ଧିର ଝର୍କା କବାଟ ଖୋଲି ବଞ୍ଚିରହ ।

ତୁମର ପ୍ରେମିକା ନାହାନ୍ତି ଈଶ୍ୱର ! ବ୍ୟସ୍ତ ହୁଅନି । ତୁମେ ମୋ ସହ ଦେବୀ ଘରକୁ ଚାଲ । ଦେବୀ ସହ ତୁମର ପରିଚୟ କରାଇଦେବି । ଚମତ୍କାର ଝିଅ ଦେବୀ । ସେ ସକାଳେ ଗାଧୋଇ ସାରିଲା ପରେ ତାର ଚମତ୍କାର ଆଖି, ଖୋଲା କେଶ, ବତୁରା ଦେହ ଦେଖିବାକୁ ମୋତେ ଭାରି ଭଲ ଲାଗେ । ମୁଁ ଜାଣେ ତୁମକୁ ବି ବେଶ୍ ଭଲ ଲାଗିବ । ଦେବୀ ଗପିବାକୁ ଖୁବ୍ ଭଲପାଏ ।

ତାପରେ ଯାହା ସହ ତୁମର ପରିଚୟ କରାଇ ଦେବି ସେଇ ହେବ ତୁମର ପ୍ରେମିକା । ଦେବୀର ସାନ ଭଉଣୀ ମାନବୀ । ଭୀଷଣ ବଦମାସ ଝିଅଟି । କିଶୋରୀ । ତାର ସମସ୍ତ ଅବୟବରୁ ଧୀରେ ଧୀରେ ସଙ୍ଗୀତର ସ୍ୱର ଉଠି ଆସୁଛି । ଅଦୃଶ୍ୟ ଫୁଲ ଫୁଟି ଆସୁଛି ତାର ଲୋମକୂପରେ । ସେ ବି ତୁମ ସହ ଜମିଯିବ । ବେଶ୍ ସମୟ କଟିଯିବ । କୈଶୋର ପ୍ରେମ ଖୁବ୍ ମିଠା ।

ବୟସ ତୁମର ତ ଅଛ । ତା ସହ ବେଶ୍ ମାନିବ ।

ମୁଁ ଜାଣେ ତୁମେ ବିଶ୍ୱାସଘାତକ । ତୁମେ ଦିନେ ନା ଦିନେ ସୁଯୋଗ ପାଇଲେ ମାନବୀକୁ ଛାଡ଼ି ଦେବୀ ଉପରେ ଆଖି ପକାଇବ । ସେଦିନ ମୁଁ ତୁମକୁ ଶେଷ କରିଦେବି । ମୁଁ ତୁମକୁ ସୃଷ୍ଟି କରିଛି ମାନେ ମୋତେ ନିଜ ହାତରେ ତୁମକୁ ଖତମ କରିଦେବାକୁ ହେବ । ଅବଶ୍ୟ ଗୋଟିଏ କାମ କରାଯାଇପାରେ । ଅନେକ ଦିନ ହେଲା ଭାବୁଛି କଥାଟା । ଦେଖ, ଆମ ଜୀବନରେ ତ କିଛି ଘଟଣା ଘଟୁନି ।

ତେଣୁ–

ମନେକର ତୁମେ ମୋ ସହ ବିଶ୍ୱାସଘାତକତା କଲ । ଦିନେ ମୋ ଅବର୍ତ୍ତମାନରେ ଘରେ ବସି ଦେବୀ ସହ ଜମେଇଲ । ମାନବୀ ସେଠାରେ ଉପସ୍ଥିତ ନଥିବା ବେଳେ

ଦେବୀକୁ ଆଲିଙ୍ଗନ କଲ । ମନେ୍କର ସେ ଚିତ୍କାର କଲା । ତା ମୁହଁରେ ତୁମ ମୁହଁ ମାଡ଼ିଦେଲ ।

ସେଇ ସମୟରେ ମୁଁ ଭିତରକୁ ପଶିଆସିଲି । ଏ ଦୃଶ୍ୟ ଦେଖି ନୀରବରେ ହସିଲି । କିଛି କହିଲି ନାହିଁ । ତୁମେ ସେତେବେଳେ ସାବଧାନ ପଜିସନରେ ଛିଡ଼ା ହୋଇ ରହିଛ । ଦେବୀ ଥରୁଛି । ମୁଁ ଭିତରପଟୁ କବାଟ ଲଗାଇ ଦେଲି । ତାପରେ ପକେଟରୁ ଛୁରୀ ବାହାର କରି ତୁମ ଛାତି ପେଟ ବେକ ମୁହଁ ଛାତି ପେଟ ଗୋଡ଼ ହାତ ଛାତି ବେକ ମୁହଁରେ ବସାଇଗଲି । ରକ୍ତଜବା ପରି ତୁମେ ଖସି ପଡ଼ିଲ । ଦୁଇ ଚାରିଥର କଡ଼ ଲେଉଟାଇ ନୀରବ ହୋଇଗଲ ।

ଦେବୀକୁ ଚାହିଁଲି । ସେ ଅଚେତ ହୋଇଯାଇଥିଲା । ମୁଁ ତାକୁ ବିବସ୍ତ୍ର କଲି । ତୁମର ରକ୍ତାକ୍ତ ଦେହ ପାଖରେ ତାକୁ ସଙ୍ଗମ କଲି ଏବଂ ସେଇ ଛୁରୀ ତାର ଛାତି ପେଟ ବେକ ମୁହଁ ଛାତି ପେଟ ଗୋଡ଼ ହାତ ଛାତି ବେକ ମୁହଁରେ ବସାଇ ଦେଲି ଏବଂ ଶେଷରେ ସେଇ ଛୁରୀ ମୋ ଛାତି– ଛାତି– ଛାତି–ପେଟ–ପେଏଏଟ–

କେମିତି ହୁଅନ୍ତା ଈଶ୍ୱର ! ଖୁବ୍ ଜମନ୍ତା, ନୁହେଁ ?

ମୁଁ ଜାଣେ ତୁମେ ମୋର, ମୁଁ ତୁମର ଅନ୍ୟ ଏକ ସତ୍ତା !

ତେଣୁ ଏ ପୃଥିବୀ ଛାଡ଼ି ଅନ୍ୟ ଏକ ସୁନ୍ଦର ପୃଥିବୀରେ ମୁଁ ତୁମକୁ ଖୁବ୍ ଆରମ୍ଭରୁ ଭକ୍ତି କରିବା ଶିଖିବି ।

('ନବରବି', ଜାନୁଆରୀ, ୧୯୭୫)



# ଏକ ବ୍ୟବଚ୍ଛେଦର ଧାରା ବିବରଣୀ

କନ୍‌ହେଇରେ, ବାପା ମୋର, ଧନ ମୋର ଆଉ ଟିକିଏ ରହ। ଆଉ ଦି ଚାରିମିନିଟ ଧୈର୍ଯ୍ୟଧରି ବସ। ନ ବସିଲେ ଆଉ କଣ କରିବୁ। ଅନେକ ଗାଁ ଗଣ୍ଡା ବଣବିଲ ପାରି ହୋଇ ଆସିଛୁ ଯେତେବେଳେ ତୋତେ ବସିବାକୁ ପଡ଼ିବ। ଅପେକ୍ଷା କରିବାକୁ ପଡ଼ିବ। ଜୀବନର ତ ସବୁ ମୁହୂର୍ତ୍ତ କଟିଯାଏ ଏମିତି ଭଲ ସମୟକୁ ଅପେକ୍ଷା କରି। ତେଣୁ ଅପେକ୍ଷା କର। ନିଶ୍ଚୟ ଭଲ ସମୟ ଆସିବ। ବର୍ତ୍ତମାନ କାନ ଡେରି ଶୁଣିଲୁ ଆଉ ମାଛି ଦି'ଟା ଉଡୁଛନ୍ତି କି ନାହିଁ। ତୁ ଚୁପ୍‌ଚାପ୍ ବସିଲେ ସେମାନେ ତୋ ଭିତରେ ଉଡ଼ି ବୁଲନ୍ତି ପରା। ଆଉ ଭୟ କରନା। ଏଥର ଠିକ୍ ହୋଇଯିବ। ଖାଲି ଟିକିଏ ଧୈର୍ଯ୍ୟ ଧର। ଡାକ୍ତରାଣୀ ଭିତରକୁ ଯାଇଛନ୍ତି। ଆସିଲେ ମାଛି ଦି'ଟାଙ୍କୁ ନିକାଲି ଦେବେ।

ତୁ ଏତେ ନର୍ଭସ ହେଉଛୁ କାହିଁକିରେ! ଆରେ ଏଇ କଥାରେ ତ ମରିଯିବୁନି। ହେଲେ ହେଲା ମାଛି ଦି'ଟା ଭିତରେ ଉତ୍ପାତ କରୁଛନ୍ତି, ନ ହେଲା ଟିକିଏ ଅସ୍ୱସ୍ତି ଲାଗୁଛି। କ'ଣଟା ଆଲୁଅ ହେଇଗଲା ସେଠୁ। ଆଉ ଟିକିଏ ପରେ ଡ଼ାକ୍ତରାଣୀ ଯନ୍ତା ସଜ ବସାଇ ସେମାନଙ୍କୁ ଧରିନେବେ ଯେ! ସେ ବୋଧହୁଏ ଭିତରେ ଯନ୍ତା ସଜ କରୁଛନ୍ତି। ଯନ୍ତା ନେଇ ଆସିଲେ ତୁ ପାଟି ମେଲା କରି ରହିବୁ, କଥା କହିବୁ ନାହିଁ। ତୋ ମେଲା ପାଟିରେ ସେ ଯନ୍ତା ବସାଇ ଦେବେ। ଆହା, ସେଇ ସୁନେଲି ରଙ୍ଗର ଯୋଡ଼ିଏ ମାଛି ଆସିବେ, ହଲି ହଲି, ଅଣ୍ଟା ନଚାଇ, ଦଶଣା ଛଅଣା ଚାଲି ଆରାମରେ ଯନ୍ତା ଭିତରେ ବସି ପଡ଼ିବେ। ତୋତେ କେବଳ ଅପେକ୍ଷା କରିବାକୁ ହେବ ସେଇ ମୁହୂର୍ତ୍ତକୁ।

ଆରେ ବାବା ଟିକିଏ ଧୈର୍ଯ୍ୟ ଧର। ନାଳ ନ ଦେଖି ଲୁଗା ଖୋଲୁଚୁ ଯେ। ଏତେ ଶୀଘ୍ର ପାଟି ମେଲା କରନା। ଠିକ ସମୟ ଆସୁ। ଟିକିଏ ବସ। ମୁଁ ଜାଣେ ତୁ ଧୈର୍ଯ୍ୟହରା ହୋଇଗଲୁଣି। ଅବଶ୍ୟ ଅନେକ ବେଳ ହେଲା ଡ଼ାକ୍ତରାଣୀ ଟିକିଏ ଅପେକ୍ଷା କରନ୍ତୁ କହି ଭିତରେ ଗଲିଛନ୍ତି। କେତେ ବା ଅପେକ୍ଷା କରିବୁ। ଖାଦ୍ୟ ଦିଅ ବସ୍ତ୍ର ଦିଅ– ଅପେକ୍ଷା କର ଅପେକ୍ଷା କର, ମହଙ୍ଗା ଭତ୍ତା ବଢ଼ାଇ ଦିଅ– ଅପେକ୍ଷା କର ଅପେକ୍ଷା କର, ପୋଲିସ ଜୁଲୁମ ବନ୍ଦ କର– ଅପେକ୍ଷା କର ଅପେକ୍ଷା କର, ଦେଶର ବେକାରୀ ଦୂର କର– ଅପେକ୍ଷା କର ଅପେକ୍ଷା କର, ଶାସକ ଗାଦି ଛାଡ଼ିଦେଉ– ଅପେକ୍ଷା କର ଅପେକ୍ଷା

କର, ଆମର ଦାବି ପୂରଣ ହେଉ– ଅପେକ୍ଷା କର ଅପେକ୍ଷା କର। ତେଣୁ ଯଦି ଅପେକ୍ଷା କରିବାକୁ ହେବ, ଯଦି ଅନ୍ୟ ଉପାୟ ନାହିଁ ତାହେଲେ ଆରାମରେ ଅପେକ୍ଷା କରିବାକୁ ପଡ଼ିବ। ତେଣୁ ତୁ ଆରାମରେ ବସ। ନରମ ସୋଫାରେ ତୋ ଦେହ ଅଧେ ଭିତରେ ବୁଡ଼ିଗଲାଣି, ଅଥଚ ତୁ ସାବଧାନ ପଜିସନରେ ବସି ରହିଛୁ କହିଁକି? ଆରାମ କରି ବସରେ ବାପା। ଯେତିକି ସମୟ ବଞ୍ଚୁଛୁ ଆରାମରେ ବଞ୍ଚୁଥା। ତୋ ମୁଣ୍ଡ ଉପରେ ପିଙ୍ଗ୍ ପିଙ୍ଗ୍ ହୋଇ ଫେନ୍ ଘୂରୁଛି। ଧଳା କାନ୍ଥରେ କଳା ଶିଙ୍ଗର ଚଢ଼େଇ ଦିଟା ଉପରମୁହାଁ ଉଡ଼ି ଚାଲିଛନ୍ତି। ସେ କଡ଼େ କ୍ୟାଲେଣ୍ଡରଟା ଫଡ଼ ଫଡ଼ ଉଡୁଛି ପବନରେ। ଖସି ପଡ଼ିବ ନା କ'ଣ? ତୁ ଭୟ କରନା। ଏବେ କ୍ୟାଲେଣ୍ଡର ଖସିବନି। ଖସିଲେ ବି ତୋର ବା ଦୋଷ କ'ଣ? ତୁ ତ ଗୋଟିଏ ଜାଗାରେ ସୁନାପିଲା ହୋଇ ବସିଛୁ। ତୁ ତ କ୍ୟାଲେଣ୍ଡର ହିରୋଇନ ଛାତିରେ ହତ ପକେଇନୁ। ତୋର ଏତେ ଡର କାହିଁକି?

ଧନରେ, ଘର ଭିତରର ସବୁ ଜିନିଷକୁ ଭଲ କରି ଲକ୍ଷ୍ୟ କର। ଚାରିଆଡ଼େ କେମିତି ଆଭିଜାତ୍ୟ ଦେଖୁଛୁ। ଏଇ ଯେ ଟେବୁଲ ଉପରେ ଅଧା ଲଙ୍ଗଳା ସ୍ତ୍ରୀ ଲୋକ। ତାକୁ ଘେରି ବୃଦ୍ଧ ଗାନ୍ଧୀ ଯିଶୁର ମୂର୍ତ୍ତି। ତୋ ପଛପଟ କାନ୍ଥରେ କେଉଁ ଏକ ନାମକରା ଶିଳ୍ପୀର ଚିତ୍ର। ବୁଝିପାରିବୁ ନାହିଁ ବାପା। ଏ ଚିତର ଅର୍ଥ ବୁଝିବା ପାଇଁ ଖପୁରି ଦରକାର। ଡାକ୍ତରାଣୀ ଖୁବ୍ ବଡ଼ ଲୋକ। ସେ ଏସବୁ ବୁଝନ୍ତି, ବୁଝି ପାରନ୍ତି। ତୋର ଏତେ ସବୁ ବୁଝିବା ଦର୍କାର କଣ? ତୁ କେବଳ ଦେଖିଯା। ସବୁ କେବଳ ଦେଖିବୁ। ଚୁନି ରହିବୁ, କେବେ ପଚାରିବୁ ନାହିଁ କଣ ଓ କାହିଁକି, କିମ୍ବା କେବେ କିଛି ମନ୍ତବ୍ୟ ଦେବୁ ନାହିଁ। ଯଦି ଏସବୁ ବ୍ୟାପାରରେ କେବେ ଫୁଟାଣି ମାରିବାକୁ ଚେଷ୍ଟା କରୁ ତାହେଲେ ଜାଣିଥା, ନିଶ୍ଚୟ ହାଲ ଖରାପ।

ଛାଡ଼ ସେ ଚିତ୍ରଫିତ୍ରରୁ କଣ ମିଳିବ। ଏପଟେ ଦେଖ। କେଡ଼େ ଅସଭ୍ୟ ହୋଇଛି ଚିତ୍ରଟା, ଭୀଷଣ ଅସଭ୍ୟ ଚିତ୍ର। ଆଚ୍ଛା କନ୍‌ହେଇ, ତୁ କହ, ଲୁଗାପଟା ଖୋଲି ଜିନିଷପତ୍ର ଦେଖାଇଲେ ଯଦ ଅସଭ୍ୟ ହୁଏ, ତାହେଲେ ଚମଡ଼ା ଖୋଲି ହାଡ଼ ଖୋଲି ଜିନିଷପତ୍ର ଦେଖାଇଲେ ଭାରି ଅସଭ୍ୟ ନହେବ ବା କାହିଁକି? ଏ ଅସଭ୍ୟ ଚିତ୍ରଟା ହେଉଛି ମଣିଷର ଅନ୍ତର୍ଦୃଶ୍ୟ। ଭିତରର ଭୌଗୋଳିକ ମାନଚିତ୍ର। ସେଇ ଚିତ୍ରରେ ଯେଉଁ ନୀଳରେଖା ଆଉ ନାଲିରେଖା ସବୁ ଦେଖୁଛୁ ସେଗୁଡ଼ା ହେଉଛି ଭିତରର ନଈ କେନାଲ। ସେସବୁ ଇରିଗେସେନ ଡିପାର୍ଟମେଣ୍ଟ ହାତରେ। ଦେଖୁଛୁ ଏଣେ ତେଣେ କେତେ ଯନ୍ତ୍ରପାତି କେତେ କଳ କାରଖାନା ଚାଲିଛି। ଶିଖି ନେଇଥାରେ ବାପା, ଆଉ ଏ ସୁବିଧା ମିଳିବନି। ଏମିତି ସବୁ ତୋ ଭିତରେ ଅଛି। ଏଇ ଚିତ୍ର ଦେଖି ଡାକ୍ତରାଣୀ ସବୁ ରୋଗ ଚିକିତ୍ସା କରନ୍ତି। ସେଇ ଯେ ମଝିରେ ଦେଖୁଛୁ ସବୁ ଯନ୍ତ୍ରପାତିର କେନ୍ଦ୍ରସ୍ଥଳ, ସବୁ ନଈନାଳ ଆସି ସେଇଠି ଭିଡ଼ କରିଛନ୍ତି ସେଇଟା ପରା ରାଜଧାନୀ। ତାକୁ ହୃତ୍‌ପିଣ୍ଡ କହନ୍ତି । ସେଇଠି ସବୁ ଦୁଃସାଧ୍ୟ ଆଉ ଗୋପନୀୟ ରୋଗ ହୁଏ। ଥରେ ସେଇଠି କିଛି ବେମାରି ଧଇଲେ

ଗଲା। ବଞ୍ଚିବା ମୁସ୍କିଲ। ମାଛି ଦି'ଟା ପରା ତୋ ରାଜଧାନୀରେ ବୁଲୁଛନ୍ତି। ରହ ଡାକ୍ତରାଣୀ ହୃଦ୍‌ରୋଗ ସ୍ପେସାଲିଷ୍ଟ। ସେ ଠିକ୍ କାଢ଼ି ଆଣିବେ ସେମାନଙ୍କୁ।

ବାପା କନ୍‌ହେଇ, ତୁ କ'ଣ ଜାଣିନୁ ଦିନ କାଳ ଖୁବ୍ ଖରାପ ପଡ଼ିଛି। ତୁ ଟିକେ ସାବଧାନରେ ରହିପାରିଲୁ ନାହିଁ ବାପା। ସାମାନ୍ୟ ସାବଧାନ ହୋଇଥିଲେ ତ ଏତେ ଝମେଲା ନଥାନ୍ତା। ତୁ କ'ଣ ଜାଣିନୁ ଏ ଦେଶରେ ପୋକ ମାଛି କାହିଁକି, ମଣିଷମାନେ ବି ଅନ୍ୟର କଣା ସବୁ ଖୋଜି ବୁଲନ୍ତି! ତୁ କଣ ଜାଣିନୁ ଟିକେ ସୁବିଧା ପାଇଲେ ସେମାନେ ଭିତରକୁ ପେଲିଯାନ୍ତି। ବାପା, ମୋ ଧନରେ, ସେଦିନ ଖରାବେଳଟାରେ କାହିଁକି ପାଟି ମେଲାକରି ଶୋଇପଡ଼ିଥିଲୁ କହ ତ। ଏତେ ସାବଧାନ ହେଲେ ଚଳିବ। ଅବଶ୍ୟ ମାନୁଛି ଯେତେବେଳେ ଯାହା ହେବାର କଥା ହେବ। ତୁ ଯଦି ପାଟି ବନ୍ଦ କରି, ନାକରେ ଠିପି ଲଗାଇ, କାନରେ ତୂଳା ଗେଞ୍ଜି ଶୋଇଥାନ୍ତୁ, ତାହେଲେ ସେମାନେ ଆଉ କେଉଁ କଣା ଜାଗା ସବୁ ବାହାର କରନ୍ତେ ଏବଂ ସେଇ ବାଟେ ଭିତରକୁ ଚଳନ୍ତେ। ତୁ ଦେଖ୍ ଆଉ କାହା ଭିତରକୁ ପଶିବା ପାଇଁ ମାଛିମାନଙ୍କ ତତ୍‌ପରତା ନାହିଁ, କିନ୍ତୁ ତୋ ଭିତରକୁ ପ୍ରବେଶ ପାଇଁ ସେମାନେ ଏତେ ବ୍ୟାକୁଳତା କାହିଁକି ? ତୋ ଭିତରେ ମାଲ୍ ଅଛି। ତୋ ଛାତି ଭିତରେ ଏକ ବଢ଼ିଆ ଚିଜ ଅଛି। ସେଥିପାଇଁ ସେ ବେଚାରୀ ତୁ ଶୋଇବାର ଦେଖି ପଶିଗଲା। ହୃଦୟ ପାଖକୁ ହୃଦୟ ଯାଏରେ ବାପା। ଗୁଣ ସିନା ଗୁଣିଆ ଚିହ୍ନେ, କଂସରି ସୁନା ଚିହ୍ନିବ କୁଆଡୁ। ଯାହାହେଉ ସେ ତ ନିଶ୍ଚୟ ପଶିଥାନ୍ତା। ବରଂ ଭଲ ହୋଇଛି ପାଟି ଭିତର ଦେଇ ପଶି।

ସେଦିନ ଖରାବେଳେ ଯେତେବେଳେ ତୋ ନିଦ ଭାଙ୍ଗିଲା, ସେତେବେଳେ ଜାଣିଲୁ କିଏ ଯେମିତି ତୋ ତଣ୍ଟି ପାଖରେ ଧକ୍‌କା ମାରୁଛି। ସେତେବେଳେ ଖଁ ଖଁ କଲୁନିରେ ବାପା! ଆଙ୍ଗୁଠି ଖେଞ୍ଚି ବାନ୍ତି କଲୁନି! ଆହା ହା, ପାରିଲୁ ନାହିଁ? ଖୁବ୍ ବେଗରେ ସେଇଟା ଭିତରକୁ ଉଡ଼ିଗଲା। ଆରେ ତୁ କଣ ସାଧାରଣ ଜ୍ଞାନ ପଢ଼ିନୁ? ମାଛି ସବୁଠୁ ଦ୍ରୁତଗାମୀ ଜୀବ ପରା! ଦ୍ରୁତ ଗତିରେ ପଶିଗଲା ଭିତରକୁ ଭିତରକୁ। ବଡ଼ ସୁନେଲି ମାଛିଟା। ଭଁ ଭଁ ତାର ଆଓ୍ୱାଜ। ତା ପେଟ ଭିତରେ ଗୋଟିଏ ଉଡ଼ାଜାହାଜ ଉଡୁଥିଲା କିରେ! ନା ଗୋଟିଏ ସାନ ଉଡ଼ାଜାହାଜ ଉପରେ ମାଛିର ଘୋଡ଼ଣୀ ଥିଲା। ଯାହା ହେଉ ତୋ ଭିତରେ ଉଡ଼ାଜାହାଜଟା ଉଡ଼ି ବୁଲୁଛି ଆଉ ତୁ ଧାଇଁ ବୁଲୁଛୁ ଏଣେ ତେଣେ। ସେ କଣ ଏମିତି ବାହାରିବ। ଥରେ ଯିଏ ପଶେ ସେ କଣ ଚଞ୍ଚଳ ବାହାରେ! ଯେଉଁମାନେ ତୋ ଭିତରକୁ ପଶିଯାଇଛନ୍ତି ସେମାନଙ୍କୁ କଣ କେବେ ତୁ ବାହାର କରିଦେଇ ପାରିବୁ। ହୁଏତ ଡାକ୍ତରାଣୀ ସେ ସବୁ ପାରିବେ।

ରହ, ଆଉ ଟିକେ ଅପେକ୍ଷା କର। ତୋ ଭିତରେ ତ ଅନେକ ରୋଗ। ତେଣୁ ଟିକେ ଧୈର୍ଯ୍ୟ ଧର। ଡାକ୍ତରାଣୀ ଭିତରୁ ଏବେ ଆସିବେ। ତାଙ୍କୁ ଦେଖିଲା ମାତ୍ରେ ତୋର

ଅଧେ ରୋଗ ଭଲ ହୋଇଯିବ। ଡାକ୍ତରାଣୀଙ୍କୁ ଦେଖିଲା ମାତ୍ରେ ତୁ ନିଶ୍ଚୟ ଗଦ୍‌ଗଦ ହୋଇ କହିବୁ– ଆହା କି ସୁନ୍ଦର କେଶ, କି ତୀକ୍ଷ୍ଣ ନାକ, କି ଚମତ୍କାର ଆଖି, କି ସୁନ୍ଦର ଓଠ, କି ଚିକ୍‌କଣ ଗାଲ, କି ସୁନ୍ଦର ବେକ, କି ଚମତ୍କାର ଛାତି, କି ମନୋରମ ପେଟ, କି ସୁନ୍ଦର। ଥାଉ ଥାଉ, ହେଲା ହେଲା ସବୁ ସୁନ୍ଦର। ତୁ ଏମିତି କାହିଁକିରେ କନ୍‌ହେଇ। ସବୁବେଳେ ଗଦ୍‌ଗଦ। ଯାହା ଦେଖିଲୁ ସବୁ ସୁନ୍ଦର। ଟିକିଏ ସୌନ୍ଦର୍ଯ୍ୟ ଦେଖିଲେ ଲୁଗୁଡ଼େଇ ହେଲୁ। ତୋ ପାଇଁ ଛ'ଗୁ ଷାଠିଏ ସବୁ ଚମତ୍କାର! ଥରେ ତୋ ଆଖି କଣ ଖରାପ ହୋଇଥିଲା, ତୁ ଡାକ୍ତରଖାନା ଗଲୁ। ଡାକ୍ତର ତୋ ଆଖିରେ ଔଷଧ ପକାଇ ପଟି ବାନ୍ଧିଦେଲେ। ପଟିବନ୍ଧା ଆଖିରେ ବି ତୁ ଦେଖିଲୁ ଦୂର ରାସ୍ତାରେ ଗୋଟିଏ ସୁନ୍ଦରୀ ଝିଅ ଚାଲିଗଲା। ଚିଲେଇଲୁ– ଆହା କି ସୁନ୍ଦର! ଏଇ ଗଦ୍‌ଗଦ ଭାବ ତୋ ପାଇଁ ବିପଦରେ ବାପା। ଯାହାକୁ ଦେଖିଲୁ ତା ପାଇଁ ହୃଦୟ ଖୋଲିଦେଲୁ! ଯାହାର ଅସହାୟତା ଦେଖିଲୁ ସଙ୍ଗେ ସଙ୍ଗେ ହୃତ୍‌ପିଣ୍ଡ ଖୋଲି ଅଣ୍ଟାରେ ଗାମୁଛା ଭିଡ଼ିଲୁ। ବାପାରେ, ଏଡ଼େ ଭାବପ୍ରବଣତା ଭଲ ନୁହେଁ। ଟିକିଏ ଭଲ ମନ୍ଦ ବାଛି ଶିଖ। ବୁଦ୍ଧି ଖଟେଇବା ଅଭ୍ୟାସ କର। ସବୁକୁ ହୃଦୟ ଖୋଲି ଦେଖାଯାଏ ନାହିଁରେ, ବୁଦ୍ଧି ଦେଖି ପରଖି ନେବାକୁ ହୁଏ।

କନ୍‌ହେଇରେ, କାଶଠୁ କ୍ୟାନସର ଅନେକ ରୋଗ ମଣିଷକୁ ଧରେ। ତା' ପାଇଁ ଅନେକ ଡାକ୍ତର ଏଠି ସେଠି ଦୋକାନ ମେଲି ବସିଛନ୍ତି। କିନ୍ତୁ ଆମର ଏ ଡାକ୍ତରାଣୀ ଏ ଦେଶରେ ଜଣେ। ସେ ଯେ ସବୁ ରୋଗ ଦେଖନ୍ତି ନାହିଁ। ସେ କେବଳ ହୃଦରୋଗ ବିଶେଷଜ୍ଞ। ଏ ବିରାଟ ଘରେ ସେ ଏକା ରହନ୍ତି ଆଉ ଅଦ୍ଭୁତ ଅଦ୍ଭୁତ ରୋଗର ନିଦାନ କରନ୍ତି। ବାପାରେ, କେତେବେଳେ ଶସ୍ତାରେ ନାଁ କରିବାକୁ ମନ ବଳେଇବୁନି। ବିପଦ ଅନେକ। ଥରେ ଜଣେ ଲୋକ ଖୁବ୍ ସୁବିଧାରେ ନାଁ କରିବା କଥା ଚିନ୍ତା କରି ଭାବିଲା ରାତାରାତି କମ୍ୟୁନିଷ୍ଟ ହୋଇଯିବ। କିନ୍ତୁ ହଠାତ୍ କେମିତି କମ୍ୟୁନିଷ୍ଟ ହେବ। ତାକୁ ଦଳରେ ପୂରେଇବେ ବା କିଏ ?

ସେ ବାହାରକୁ ଚାହିଁଲା। ତା ଘର ସାମ୍ନାରେ ମହିଳା କଲେଜ। କଲେଜ କାନ୍ଥରେ ଆଲକାତରାରେ ଦା' ହାତୁଡ଼ିର ଚିତ୍ର। ଲୋକଟି ଉପାୟ ସ୍ଥିର କରି ନେଲା। ଯେତେବେଳେ ରାତି ଖୁବ୍ ଗାଢ଼ ହେଲା ଲୋକଟି ଖୁବ୍ ଦାମିକା ଧୋତି ପଞ୍ଜାବି ପିନ୍ଧି, ମୁହଁରେ ପାଉଡର ବୋଳି, ଦାଢ଼ିରେ ଟିକିଏ ଅତର ଘଷି କାନ୍ଥପାଖକୁ ଗଲା। ତା ପରେ କାନ୍ଥରୁ ଦା' ହାତୁଡ଼ା ଟେକି ଆଣି ଟାବଲେଟ ଭଳି ଗଳି ପକାଇଲା। କିନ୍ତୁ ଲୋକଟିର ଅବସ୍ଥା ତା ପରେ ଭୀଷଣ ଖରାପ। ଖାଲି ରକ୍ତବାନ୍ତି ହେଲା। ଝାଡ଼ାରେ ଛେଚି ହୋଇଥିବା ମାଂସ ଆଉ ହାଡ଼ଗୁଣ୍ଡ ବାହାରିଲା। ଲୋକମାନେ କମ୍ୟୁନିଷ୍ଟଟାକୁ ଧରି ଏଇ ଡାକ୍ତରାଣୀ ପାଖକୁ ନେଇ ଆସିଲେ। ଡାକ୍ତରାଣୀ ଆମେରିକା ତିଆରି ଦୁଇଟି ଆଣବିକ ହଜମି ବଟିକା ଦେଲେ। ବାସ୍ ଦା' ହାତୁଡ଼ି ହଜମ ହୋଇଗଲା ଓ ଲୋକଟି ଆରାମରେ ବଞ୍ଚିଗଲା।

ତା ପରେ ଆଉ ଜଣେ କବି। ପ୍ରେମରେ ପଡ଼ିଲା। ଗୋଟିଏ ଜିଦ୍‌ଖୋର ଝିଅକୁ ପ୍ରେମ କଲା। ଝିଅ ତାକୁ ପାଖରୁ ଚୁମା ଦେଲା କିନ୍ତୁ ଦୂରରୁ ଚିଠି ଖଣ୍ଡେ ବି ଦେଲାନି। କବିର ହାଲ ଖରାପ। ରାତିରେ ନିଦ ନାହିଁ। ସ୍ଲିପିଂ ପିଲ୍ ଖାଉ ଖାଇ ଶୋଇଲା। ଦିନେ କିନ୍ତୁ ପାଖରେ ସ୍ଲିପିଂ ପିଲ୍ ନ ଥିଲା। ରାତି ଅଧ। ଲୋକଟି ବାହାରକୁ ଯାଇ ଦେଖିଲା ଆକାଶରେ ଚନ୍ଦ୍ର ଠିକ୍ ସ୍ଲିପିଂ ପିଲ୍ ପରି। ଚନ୍ଦ୍ରଟାକୁ ନେଇ ଆସିଲା। ତଣ୍ଟି ପାଖରେ ପକାଇ ଗ୍ଲାସେ ପାଣିରେ ଢକ୍ ଢକ୍ କରି ଗିଳି ଦେଲା। କିନ୍ତୁ ତା'ପରେ ତା' ଆଖିରୁ ନିଦ ଗଲା। ତାକୁ ମନେହେଲା ତା' ରକ୍ତରେ ଲକ୍ଷ ଲକ୍ଷ ଶଶକ ଡେଇଁ ବୁଲୁଛନ୍ତି। ଲକ୍ଷ ଲକ୍ଷ ମୃତ ଆଗ୍ନେୟଗିରିରୁ ଲାଭା ଉଛୁଳି ସାରା ଦେହ ଜଳି ଯାଉଛି। କବି ବନ୍ଧୁଙ୍କ ଉପଦେଶରେ ଡାକ୍ତରାଣୀ ପାଖକୁ ଧାଇଁଲା। ଡାକ୍ତରାଣୀ ଅନାୟାସରେ ଗୋଟିଏ ରକେଟ ମାର୍କା ଟାବଲେଟ ଗିଳାଇ ଦେଲେ। ସେ ଟାବଲେଟ ସହ ଲୋକଟି ଖଣ୍ଡ ଖଣ୍ଡ ଚନ୍ଦ୍ର ବାନ୍ତି କରି ପକାଇଲା।

ଥରେ ଆଉ ଜଣେ ଲୋକ ଦେଶର ମରୁଡ଼ି ବେଳେ ଖାଇବାକୁ ନ ପାଇ ଜାଣି ପାରିଲା ଅନାହାରରେ ମରିବାକୁ ହେବ। ଆଉ ଉପାୟ ନାହିଁ। କେବଳ ମଲା ପରେ ବିରୋଧୀ ଦଳର ଖବରକାଗଜରେ ପୁଣି ଏକ ଅନାହାର ମୃତ୍ୟୁ ଶୀର୍ଷକ ସମ୍ବାଦ ଛଡ଼ା ଏ ଦେଶର ଲୋକେ ତା ପାଇଁ କିଛି କରିବେ ନାହିଁ। ସଞ୍ଜ ହେବା ଆଗରୁ ସେ ତା' ଘର ପଛପଟେ ପାହାଡ଼ ଉପରେ ଯାଇ ଜଗି ବସିଲା। ସୂର୍ଯ୍ୟ ଯେମିତି ତା ହାତପାହାନ୍ତାରେ ସେ ସେଥିରୁ କାମୁଡ଼ି ନେଲା ଖାବୁଳେ। ତା'ପରେ ଚିତ୍କାର କରି ଧାଇଁଲା। ତା ଦେହ ଭିତରେ ସେତେବେଳେ ନିଆଁ ଚରି ଯାଉଛି। ନାକ ଦେଇ ପାଟି ଦେଇ ଭକ୍ ଭକ୍ ଧୂଆଁ ବାହାରୁଛି। ଜଣେ କିଏ ସହୃଦୟ ବ୍ୟକ୍ତି ଲୋକଟିର ଏ ଅବସ୍ଥା ଦେଖି ଫାୟାର ଷ୍ଟେସନକୁ ଫୋନ୍ କରିଦେଲା। ଲୋକଟି ରାସ୍ତା ଉପରେ ଛୁଟୁଥାଏ। ଘଣ୍ଟି ବଜାଇ ବଜାଇ ଦମକଳ ବାହିନୀ ତା ପଛେ ପଛେ ଛୁଟୁଥାଆନ୍ତି। କିନ୍ତୁ ଶେଷରେ ଲୋକଟି ପହଞ୍ଚିଲା ଡାକ୍ତରାଣୀ ପାଖରେ। ଡାକ୍ତରାଣୀ ତାଙ୍କ ବାଥରୁମ୍ ଟବ୍‌ରେ ଲୋକଟାକୁ ସାୱାର ଖୋଲି କିଛି ସମୟ ବତୁରେଇ ଦେଲେ ଏବଂ ତା'ପରେ ଅପରେଶନ କରି ଖଣ୍ଡ ଖଣ୍ଡ ସୂର୍ଯ୍ୟକୁ ନିକାଲି ଦେଲେ।

ତେଣୁ ମୋ କନ୍‌ହେଇଟା, ମୋ ସୁନା ପିଲା। ଟିକିଏ ଧୈର୍ଯ୍ୟ ଧରି ବସ। ତୋ ଭିତରର ମାଛିକୁ ନିକାଲିବା ବାଏଁ ହାତ୍‌କା ଖେଲ୍। ମୁଁ ଜାଣେ ତୋତେ ଖୁବ୍ ଅସ୍ୱସ୍ତି ଲାଗୁଛି। ସେମାନେ ଭିତରେ ଘୁରିବୁଲୁଛନ୍ତି। ଅବଶ୍ୟ ଗୋଟିଏ ମାଛି ପ୍ରଥମେ ପଶିଲା ପରେ ବଡ଼ କଷ୍ଟ ଦେଉଥିଲା। ସେଇ ମାଛିଟା କେତେବେଳେ ଛାତି ପଞ୍ଜରାରେ କୋହ ହୋଇ, କେତେବେଳେ ମସ୍ତିଷ୍କରେ ଦୁଷ୍ଚିନ୍ତା ହୋଇ, କେତେବେଳେ ହୃଦ୍‌ପିଣ୍ଡରେ ଭଲ ପାଇବା ହୋଇ, କେତେବେଳେ ଯୌନାଙ୍ଗରେ କାମନା ହୋଇ ବଡ଼ ହଇରାଣ କରୁଥିଲା। କିନ୍ତୁ ତୁ ଦେଖିଲୁ ପ୍ରଥମ ମାଛିଟା ପଶିଲା ପରେ ଆଉ ଗୋଟିଏ ବଡ଼ ସୁନେଲି ମାଛି ତୋ

ଚାରିପଟେ ଘୂରି ବୁଲୁଛି। ତୁ ତ ସବୁଦିନେ ପ୍ରେମରେ ବିଶ୍ୱାସୀ। ବୁଝିଲୁ। ବୁଝିପାରିଲୁ। ବିଜ୍ଞ ଭଳି ମୁଣ୍ଡ ହଲାଇ ସ୍ୱଗତୋକ୍ତି କଲୁ– ଅଣ୍ଡିରା ମାଛିଟା ଭିତରେ। ତେଣୁ ମାଈ ମାଛିଟା ତା'ପାଇଁ ଡହଳବିକଳ ହୋଇ କାନ୍ଦୁଛି। ଦୁଇଜଣଙ୍କ ମିଳନ ପାଇଁ ତୁ ପାଟି ମେଲା କରି ବସି ରହିଲୁ। କିନ୍ତୁ ମାଈ ମାଛିଟା ସିନା ମୁହଁ ପାଖରେ ଉଡ଼ି ବୁଲିଲା, ହେଲେ ଭିତରକୁ ପଶିଲା ନାହିଁ। ସେ ହୁଏତ ଭାବିଲା ତାକୁ ଧରିବା ପାଇଁ ତୁ ଗୋଟିଏ ଯନ୍ତା ମେଲାଇ ଧରିଛୁ। ସେ କେବଳ ତୋ ଖାଇବା ପଦାର୍ଥ ମାରଫତରେ ଭିତରକୁ ସମ୍ବାଦ ପଠାଇଲା। ତୁ ଶେଷରେ ଗୋଟିଏ ଉପାୟ ବାହାର କଲୁ। ଗୁଡ଼ିଆ ଦୋକାନକୁ ଯାଇ ପଟାପଟ ଦି'ଟା ପୁରୁଣା ଲଡୁ ଗିଳିଦେଲୁ। ତା'ପରେ ପାଟି ମେଲା କଲା ମାତ୍ରେ ମାଛିଟା ଦି' ଚାରିଥର ଭେଁ ଭେଁ ହେଲା, ତା'ପରେ ସିଧା ସିଧା ଭିତରକୁ ମାଡ଼ିଗଲା। ଏଇଆ ତ ସଚ୍ଚା ପ୍ରେମ!

କନ୍‌ହେଇରେ, ସେ ଦି'ଟା ବୋଧହୁଏ ଯା ଭିତରେ ଲକ୍ଷେ ଥର ମୈଥୁନ କର୍ମ କରି ସାରିବେଣି। ଏଇଥିପାଇଁ ବୋଧହୁଏ ମାଈ ମାଛିଟା ଏତେ ଡହଳବିକଳ ହେଉଥିଲା। ଅବଶ୍ୟ ଭଲ କଲୁ ସେମାନଙ୍କୁ ଭିତରକୁ ପଠାଇ ଦେଇ। କିନ୍ତୁ ତୁ କଣ ଜାଣିନୁ ତୋ ଭିତରେ ଅନେକ ପଚା ପୁରୁଣା ଖାଲ ଜାଗା ଅଛି। ଚଟାପଟ ସେମାନେ ଲକ୍ଷ ଲକ୍ଷ ଅଣ୍ଡା ଫୁଟାଇ ଦେବେ। ତୁ ଭୁଲ୍ କଲୁରେ ବାପା! ମାଈ ମାଛିଟାକୁ ଭିତରକୁ ଛାଡ଼ିଲା ବେଳେ ଯଦି ଲୁପ୍ ପିନ୍ଧାଇ ଦିଅନ୍ତୁ ନ ହେଲେ ତା କାନରେ ଭ୍ରୁଣହତ୍ୟା ଆଇନସଂଗତ ବୋଲି କହିଦେଇଥାନ୍ତୁ ତାହେଲେ ଏତେ ଚିନ୍ତା ନଥିଲା। ଯଦି ସେ କଥା ସମ୍ଭବ ନ ହେଲା ତାହେଲେ ଦୁଇଟି ସନ୍ତାନ ଯଥେଷ୍ଟ ବା ସନ୍ତାନ ଆଉ ଏବେ ନୁହେଁ ଜାତୀୟ ସାଇନବୋର୍ଡ଼ ଗୋଟେ ଅଧେ ଗିଳିଦେଇ ପାରିଲୁ ନାହିଁ ବାପା! ତାହେଲେ ଏବେ ଭୟ ନଥିଲା। ତେବେ ଯାହା ତ ହେଲାଣି ହେଲାଣି ଏବେ ଟିକିଏ ଧୈର୍ଯ୍ୟ ଧରି ବସ। ଡାକ୍ତରାଣୀ ବୋଧହୁଏ ନିତ୍ୟକର୍ମ ଶେଷ କରୁଥିବେ। ଆସିଲେ ସବୁ ମାଛି ବାହାର କରିଦେବେ। ଆଉ ଟିକିଏ ବସି ଏଣେ ତେଣେ ଦେଖ। ଦେଖ କ୍ୟାଲେଣ୍ଡରଟା କେମିତି ହଲୁଛି। କଣ୍ଟା ଉପୁଡ଼ିଯିବ ବୋଧହୁଏ। ଭିତର ଦୃଶ୍ୟ ଦେଖାଉଥିବା ଲୋକଟି ହସୁଛି। ଚଢ଼େଇ ଦିଟା ଉପରକୁ ପ୍ରଗତି ଆଡ଼େ ମୁହଁ କରି ଗତିହୀନ। ଅଧା ଲଙ୍ଗଳା ସ୍ତ୍ରୀ ଲୋକଟାକୁ ଖୁବ୍ ନିବିଡ଼ ଭାବେ ଗାନ୍ଧୀ ବୁଦ୍ଧ ଯୀଶୁ ଘେରି ଗଲେଣି।

କନ୍‌ହେଇରେ, ତୁ ବୋର୍ ହୋଇପଡୁଛୁ ବୋଧହୁଏ। ଧୈର୍ଯ୍ୟ ଧର। ଧୈର୍ଯ୍ୟର ଫଳ ସବୁବେଳେ ମିଠା– ଏସବୁ ତ ବଡ଼ ବଡ଼ ଲୋକ କହିଛନ୍ତି। ବଡ଼ ବଡ଼ ଲୋକଙ୍କ ସାମ୍ନା ହେବାକୁ ହେଲେ ଯେ ଧୈର୍ଯ୍ୟ ଦରକାର ଏକଥା ସେମାନେ ଜାଣନ୍ତି। ଯଦି ଡେରି ହେଉଛି ଯା ବାହାରକୁ ବୁଲିଯା। ପରିସ୍ରା କରି ଆ। ମୁଣ୍ଡ କୁଣ୍ଡାଇ ନେ, ଚା'କପେ ବାହାରେ ପି'ନେ, ନ ହେଲେ ଖଣ୍ଡେ ସିଗାରେଟ ଟାଣିପକା।

(ମ-ଧ୍ୟା-ନ୍ତ-ର)

କନ୍‌ହେଇରେ, ବାପା ମୋର, ଧନ ମୋର, ତୁଟା ଏତେ ଟିକେ ପିଲା, କେତେ ବା ବୟସ ତୋର, ଏତେ ସବୁ ଜିନିଷ କେଉଁଠି ରଖିଥିଲୁରେ ବାପା। ଏଇ ବୟସରୁ ତୋର ଏତେ ଅନୁଭୂତି ! ତୁ ଏତେ ଜିନିଷ ଛାତି ଭିତରେ ପୂରାଇ କେମିତି ବଞ୍ଚିଥିଲୁରେ ବାପା ! କିଏ ଜଣେ ଚନ୍ଦ୍ର ଗିଳି ସିନା କଷ୍ଟ ପାଉଥିଲା, ସୂର୍ଯ୍ୟକୁ ଖାଇ ସିନା ଜଳି ଯାଉଥିଲା, ତୁ ତ ସାରା ବ୍ରହ୍ମାଣ୍ଡ ଗିଳି ଦେଇଥିଲୁରେ ବାପା ! ଡାକ୍ତରାଣୀ ସିନା ଅପରେଶନ କଲେ, ନ ହେଲେ ଏତେ କଥା ମୁଁ ବା କେମିତି ଜାଣିଥାନ୍ତି।

ଅବଶ୍ୟ ଅନେକ ସମୟ ଅପେକ୍ଷା କରିବା ପରେ ଡାକ୍ତରାଣୀ ଚେମ୍ବରକୁ ଆସିଲେ। ସେ ଆସିଲା ମାତ୍ରେ ଘରର କେଉଁସବୁ ଅଦୃଶ୍ୟ କୋଣରୁ ଆଲୁଅ ସବୁ ଧପ୍ ଧପ୍ ଜଳି ଉଠିଲା। ସେ ବୋଧହୁଏ ଗାଧୋଇ ସାରିଥିଲେ। ଖୁବ୍ ସତେଜ ଆଉ ସୁନ୍ଦର ଦେଖା ଯାଉଥିଲେ। ପ୍ରଥମ ଦେଖାରେ ତାଙ୍କ ବୟସ ନିର୍ଣ୍ଣୟ କରିବା ମୁସ୍କିଲ। ପ୍ରଥମ ଚାହାଣିରେ ତ ଷୋଡ଼ଶୀ ମନେ ହେବା କଥା। ତାଙ୍କ ମୁଣ୍ଡ ଉପରେ ଗୋଟିଏ ବଡ଼ ଜୁଡ଼ା। ସେତେବେଳେ ତୁ ଅପେକ୍ଷା କରି କରି ବିରକ୍ତ ହୋଇଯାଇଥିଲୁ। ଭାବିଥିଲୁ ଆସିଲେ ଦୁଇପଦ ବତେଇ ଦେବୁ। ସେ କିନ୍ତୁ ଆସି ତୋତେ ଚାହିଁ ମୁରୁକି ହସିଲେ। ତୋ ଭିତରୁ ସବୁ ବିରକ୍ତି ଝାଳ ପୋଛି ଦେଲା ପରି ସେ ପୋଛିଦେଲେ। ତୁ ଧନ୍ୟ ହୋଇଗଲୁ। ତୁ ପୂରା ପ୍ରେମମୟ ହୋଇ ଉଠିଲୁ। ସେ ପଚାରିଲେ– ଆପଣଙ୍କ ଅସୁବିଧା କଣ ? ତୁ ଆଖିରେ ହସିଲୁ। ସେ ପଚାରିଲେ ରୋଗଟା କେଉଁଠି ? ତୁ ଭକ୍ତିରେ ହସିଲୁ। ସେ କହିଲେ– ରୋଗଟା ଖୋଜି ପାଇଛି। ତୁ ବିନୟୀ ହୋଇ ହସିଲୁ। ସେ କାନରେ ଷ୍ଟେଥିସ୍‌କୋପ ଲଗାଇ ତୋ ସାରା ଦେହ ବୁଲାଇ ନେଲେ। ତୁ ତନ୍ମୟ ହୋଇ ହସିଲୁ। ତାଙ୍କ ଆଙ୍ଗୁଠି ଛୁଆଁରେ ତୋ ଦେହରେ ଶୀତ୍କାର ଖେଳିଗଲା। ସେ କହିଲେ– ସବୁ ତ ଠିକ୍‌ଠାକ ଅଛି, କେବଳ ହୃଦୟଟା ଠିକ୍ ଜାଗାରେ ନାହିଁ। ଠିକ୍ ଜାଗାରେ ନାହିଁ ?– ଆଶ୍ଚର୍ଯ୍ୟ ହେଲୁ। ସେ ବୁଝାଇଦେଲେ ସେଇଟା ଭୁଲ୍‌ରେ ଛାତି ଭିତରେ ରହିଯାଇଛି। ମୁଣ୍ଡର ପଛପଟେ ସେଇଟା ରହିବା କଥା। ଛାତି ଭିତରେ ରହିବାର କୁଫଳଟା ବି ସେ ବୁଝାଇଦେଲେ। ଲକ୍ଷଣଟା ବି ସେ କହିଗଲେ– ଅସମୟରେ ଆପଣଙ୍କ ପଞ୍ଜରାରୁ କୋହ ଉଠେ, ଅବେଳରେ ଛାତି ଭିତରେ ଭଲପାଇବା ଉଠାଇ ଆସେ, ଅଯଥାରେ ମସ୍ତିଷ୍କରୁ ଦୁଶ୍ଚିନ୍ତା ଆସେ, ଅକାରଣରେ ମନଟା ଉଦାସ ହୋଇଯାଏ, ଯେକୌଣସି ଅସହାୟ ଦୃଶ୍ୟ ଦେଖି କାନ୍ଦ ମାଡ଼େ, ଯେକୌଣସି ସୁନ୍ଦରୀ ତରୁଣୀ ନିକଟରେ ପ୍ରାର୍ଥନାର ଭଙ୍ଗୀରେ ବସିବାକୁ ଇଚ୍ଛା ହୁଏ। ତୁ କେବଳ ମୁଣ୍ଡ ଟୁଙ୍ଗାରି ଗଲୁ। ତୁ ସେତେବେଳେ ଦେଖିଥିଲୁ କଷି ଲାଉ ଉପରର ଲୋମ ଭଳି ତାଙ୍କ ଗାଲରେ ନରମ ସୁନେଲି ଲୋମ। ସେତେବେଳେ ଖୁବ୍ ଭିତରେ କେବଳ ତାଙ୍କୁ ଚୁମ୍ବନ କରିବାର ଉତ୍କଣ୍ଠା ତୁ ଅନୁଭବ କରୁଥିଲୁ।

କନ୍‌ହେଇରେ, ତୋ ଭିତରେ ସୁନେଲି ମାଛି ଦି'ଟା ଛଟପଟ ହୋଇ ବୋଧହୁଏ ଶୃଙ୍ଗାର ଆରମ୍ଭ କରିଦେଲେ। ତୋର ଅସଲ ରୋଗ କଥା ମନେ ପଡ଼ିଗଲା। ତୁ ବିନୟୀ ହୋଇ ଆରମ୍ଭ କଲୁ– ଆଜ୍ଞା ମାନେ ମୋ ରୋଗଟା ଭିନ୍ନ ଧରଣର, ମାନେ ମୋ ଛାତି ଭିତରେ ଦି'ଟା ବଡ଼ ସୁନେଲି ମାଛି ପଶିଛନ୍ତି। ସଙ୍ଗେ ସଙ୍ଗେ ଡାକ୍ତରାଣୀ ମୁରୁକି ହସିଲେ ଓ ତୋତେ ଆଲିଙ୍ଗନ କଲା ଭଙ୍ଗୀରେ ତୋ ଦୁଇ ବାହୁକୁ ଧରି ତୋ ଛାତିରେ କାନ ଲଗାଇଲେ। ସେ ଶୁଣିଲେ ଖରାବେଳେ ଖୁବ୍ ଦୂର ଆକାଶରେ ମନ୍ଥର ଏରୋପ୍ଲେନ ଉଡ଼ିଯାଉଥିବାର ଶବ୍ଦ। ବିଲ୍‌କୁଲ କିଛି ହୋଇ ନାହିଁ, ଠିକ୍ ଏମିତି ଭାବମୂର୍ତ୍ତିରେ ତୋତେ ଚାହିଁଲେ ଏବଂ ତାଙ୍କ ଡ୍ରୟାରରୁ ଦୁଇଟା ଟାବ୍‌ଲେଟ୍ ବାହାର କରି ତୋ ହାତରେ ଦେଲେ। ତୁ ଦେଖିଲୁ ସେ ଦି'ଟା ଟାବଲେଟ ନୁହେଁ। ଦୁଇଟି କଳା ବୁଢ଼ିଆଣୀ। ତୁ ଇତସ୍ତତଃ ହେଲୁ। ସେ କହିଲେ ଅବ୍ୟର୍ଥ ଔଷଧ। କିନ୍ତୁ ତା'ପରେ କହିଲେ– ରହନ୍ତୁ, ଅପରେଶନ ସରିଲେ ଯାକୁ ଖାଇବେ।

ସେ ତୋତେ ଇଙ୍ଗିତରେ ତାଙ୍କ ଶୋଇବା ଘରକୁ ନେଇଗଲେ। ତୋ ଦେହ ସେତେବେଳେ ଥରୁଥିଲା। ତୁ ତୋ ଜୀବନକାଳ ଭିତରେ କୌଣସି ଅପରିଚିତା ନାରୀର ଶୋଇବା ଘର ଭିତର କେବେ ଦେଖି ନଥିଲୁ। ଅନେକ ନାରୀକୁ ଭଲପାଏ ବୋଲି ଅନେକଥର କହିଛୁ; କିନ୍ତୁ ସବୁ ମୁହଁରେ। କେବଳ ଥରେ ତୋ ଘରେ ଗୋଟିଏ ଝିଅକୁ ଚୁମ୍ବନ କରିଥିଲୁ ଏବଂ ତା'ପରେ ପାଇଖାନାର ଦରଜା କିଳି ଦେଇଥିଲୁ। ଆଉ ଗୋଟିଏ ଝିଅ ତୋ ହାତ ଧରି ଅନେକ ବଣ ଜଙ୍ଗଲ ପାରି କରାଇ ଝରଣା ପାଖ ପର୍ଯ୍ୟନ୍ତ ନେଇ ଯାଇଥିଲା। କିନ୍ତୁ କନ୍‌ହେଇରେ, ତୁ ସବୁଦିନେ ଡରକୁଳା, ସବୁ କଥା ହୃଦୟ ଦେଇ ଦେଖୁ। ବୁଝିଗଲୁ ସେ ଝରଣାରେ ତୋ ପାଦ ପଡ଼ିଲେ ପାଣି ଦୂଷିତ ହୋଇଯିବ। ଧାଇଁଲୁ ବଣ ବୁଦା ପାହାଡ଼ ଅତିକ୍ରମ କରି, ଅଣନିଃଶ୍ୱାସୀ ହୋଇ। ତୁ ଅନେକଥର ଅନେକ ନାରୀକୁ କାମନା କରିଛୁ ମନେ ମନେ। କିନ୍ତୁ କେବେ ଅଧିକାର କରିନୁ। ଅନେକ ପାପ କର୍ମ କରିବା ପାଇଁ ଅନେକଥର ତୁ ଉତ୍ତେଜିତ ହୋଇଛୁ, କିନ୍ତୁ ପାରିନୁ। ପାରିବୁ ନାହିଁ କନ୍‌ହେଇ, ଜୀବନରେ କେବେ ପାରିବୁ ନାହିଁ।

କ'ଣ ଦେଖିଲୁରେ ବାପା, ଡାକ୍ତରାଣୀର ଶୋଇବା ଘରେ। ଗୋଟାଏ ବିରାଟ ଖଟ। ତା ଉପରେ ନରମ ଗଦି। ସେ ଖଟର ମୁଣ୍ଡ ଆଡ଼େ ଡ୍ରେସିଂ ଟେବୁଲ ଓ ବଡ଼ ଦର୍ପଣ। ଏପଟେ ଗୋଟିଏ ଅପରେଶନ ଟେବୁଲ ଓ ତା' ପାଖରେ ଗୋଟିଏ ସାନ ଟେବୁଲ। ସେ ଟେବୁଲରେ ପେନ୍‌ସିଲ୍ କଟା ବ୍ଲେଡ, ସେଫ୍‌ଟିପିନ, ହେୟାରପିନ, ସୁଏଟର ବୁଣା ଛୁଞ୍ଚି। ଡାକ୍ତରାଣୀ ତୋତେ ଅପରେଶନ ଟେବୁଲ ଉପରେ ଶୋଇ ପଡ଼ିବାକୁ ନିର୍ଦ୍ଦେଶ ଦେଲେ। ତୁ ଚିତ୍ ହୋଇ ଶୋଇଗଲୁ। ସେ ସବୁ ଲୁଗାପଟା ତୋ ଦେହରୁ କାଢ଼ିଦେଲେ। ତୁ କେବଳ ସାମାନ୍ୟ ପ୍ରତିବାଦ ସୂଚକ ଛଟପଟ ହେଲୁ।

ଚିତ୍କାର କରିବାକୁ ଯାଇ ପାରିଲୁ ନାହିଁ। ଦୌଡ଼ି ପଳାଇବାକୁ ଯାଇ ପାରିଲୁ ନାହିଁ। ସେ ଘରେ କେମିତି ଏକ ପ୍ରକାର ସମ୍ମୋହନୀ ବାୟୁମଣ୍ଡଳ ଥିଲା। ତୁ ମୋହଗ୍ରସ୍ତ ହୋଇ ଉଲଗ୍ନ ଦେହରେ ଶୋଇ ଶୋଇ ଚାହିଁଲୁ। ତୁ ଦେଖିଲୁ ତୋ ନାକ ଉପରେ ଫ୍ୟାନ୍ ଘୂରୁଛି। ଡାକ୍ତରାଣୀ ଡ୍ରେସିଂ ଟେବୁଲ୍ ସାମ୍ନାରେ ଦେହର ଲୁଗା କାଢ଼ି ପକାଇଲେ। ତୁ ଦେଖିଲୁ ଫ୍ୟାନ୍ ମଝିରେ ଥିବା ଗୋଲ ଦର୍ପଣରେ ତୋ ଅବଶ ମୁଣ୍ଡ ଦେଖାଯାଉଛି। ଡାକ୍ତରାଣୀ ବ୍ଲାଉଜ ସାୟା ସବୁ ଖୋଲି ପକାଇଲେ। ତୋ ମୁଣ୍ଡ ଉପରେ ଖୁବ୍ ଉଜ୍ଜ୍ୱଳ ଦୁଇଟି ବଲ୍‌ବ ଜଳି ଉଠିଲା। ଡାକ୍ତରାଣୀ ଘୋଡ଼ା ଚଢ଼ିବା ଭଙ୍ଗୀରେ ତୋ ଛାତି ଉପରେ ଚଢ଼ି ବସିଲେ। ତୁ ଆଖି ବନ୍ଦ କରିଦେଲୁ। କଣ ଲାଜରେ ନା ଆରାମରେ? ଡାକ୍ତରାଣୀ ଘୂରାଇ ଘୂରାଇ ତୋ ମୁଣ୍ଡଟାକୁ ବେକରୁ ଉପାଡ଼ି ନେଲେ। ତାପରେ ସେଇଟାକୁ ନେଇ ଟେବୁଲ ଉପରେ ରଖି ଦେଇ ଆସିଲେ। ତୁ ସେଇ ଟେବୁଲ ଉପରେ ରହି ଜଳଜଳ ଚାହିଁଲୁରେ ବାପା! ଖୁବ୍ ମଜା ଲାଗୁଥିଲା ସେତେବେଳେ, ନୁହେଁ? ଡାକ୍ତରାଣୀ ତୋ ହାତର ଗଣ୍ଠି ଖୋଲି ହାତ ଦି'ଟା ଦେହରୁ ଅଲଗା କରି ନେଲେ। ହାତଗୁଡ଼ା ଆଣି ଟେବୁଲରେ ରଖିଲାବେଳେ ତୋ ଡାହାଣ ହାତଟା ତାଙ୍କ ଛାତିରେ ବାଜିଲା। ସେ ସାମାନ୍ୟ ହସିଲେ। ତା'ପରେ ଅନେକ ସମୟ ଲାଗି ଅଣ୍ଟା ପାଖରୁ ଗୋଡ଼ର ନଟ ବୋଲ୍‌ଟ ଖୋଲିଲେ। ସେ ସବୁକୁ ଆଣି ଟେବୁଲ ଉପରେ ଗଦା କରିଦେଲେ। ଗୋଟିଏ ଗୋଟିଏ ଗୋଡ଼ ଆଣି ଟେବୁଲରେ ରଖୁଥିଲାବେଳେ ତୋ ଗୋଡ଼ର ଗୋଇଠି ତାଙ୍କ ପେଟରେ ବାଜୁଥିଲା। ସେ କିନ୍ତୁ ସେସବୁ ଖାତିର ନ କରି ତୋ ଗଣ୍ଡିଟା ଉପରେ ଯାଇ ହାମୁଡ଼େଇ ପଡ଼ିଲେ। ବ୍ଲେଡ଼ରେ ଦୁଇଟି କ୍ରସ ଚିହ୍ନ ମାରି ଛାତି ଚିରି ପକାଇଲେ। ହେୟାର ପିନ୍‌ରେ ଫୁସ୍‌ଫୁସ୍ ସାଇଡ଼୍ କରିଦେଲେ ଓ ସେଫ୍‌ଟିପିନ୍‌ରେ ବୋତଲରୁ କର୍କ ଉପାଡ଼ି ଆଣିଲା ଭଳି ହୃତ୍‌ପିଣ୍ଡଟାକୁ ଭିତରୁ ଉଠାଇ ଆଣିଲେ।

କନ୍‌ହେଇରେ, ତୁ ତ ଦେଖିପାରୁଛୁ ସବୁ। ପୃଥିବୀର ସବୁ ଜିନିଷ ତାରି ଭିତରେ ଭର୍ତ୍ତି କରି ରଖିଥିଲୁ। ସେଇଟା ମେଜିକ୍ ବାକ୍‌ସ ନା କଣ! ଟିକିଏ ଚାପ ଦେଲା ମାତ୍ରେ କେତେ ହୃତ୍‌ପିଣ୍ଡ ତା ଭିତରୁ ସର୍ ସର୍ କରି ବାହାରି ଆସିଲା। କନ୍‌ହେଇରେ ଏତେ ସବୁ ହୃତ୍‌ପିଣ୍ଡ ନଷ୍ଟ କରନା। ମୁଁ ବରଂ ସରକାରଙ୍କୁ କହି ହୃଦୟ ବ୍ୟାଙ୍କ ଗୋଟେ ଖୋଲି ଦେଉଛି। ସେଇଠି ସେଗୁଡ଼ା ଡିପୋଜିଟ୍ କରିଦେ। ଏ ପୃଥିବୀରେ ଶତକଡ଼ା ନବେ ଲୋକଙ୍କ ହୃଦୟ ନାହିଁ। ସେମାନଙ୍କୁ ମଣିଷ କରିବା ପାଇଁ ଏ ହୃଦୟ ବ୍ୟାଙ୍କ ଅନ୍ତତଃ ସାହାଯ୍ୟ କରିବ।

ଆରେ ଧନମଣି, ହୃଦୟ ପରେ ଯେଉଁ ଉଜ୍ଜ୍ୱଳ ଚକ୍ ଚକ୍ ଜିନିଷ ବାହାରିଲା, ସେଇଟା କ'ଣ? କାହାରି ପ୍ରାୟ ସେମିତ ନଥାଏ। ଡାକ୍ତରାଣୀଙ୍କ ଆଖି ଚକ୍ ଚକ୍ କରି

ଉଠିଲା। ସେ ସେଇଟାକୁ ଧରି ଡ୍ରେସିଂ ଟେବୁଲ ଆଡ଼େ ଚାଲିଲେ। ଦର୍ପଣ ସାମ୍ନାରେ ବସି ଟାଙ୍କ ମୁଣ୍ଡର ଲୁଡ଼ାଟା ଓହ୍ଲାଇ ରଖିଲେ, ଟାଙ୍କ ମୁଣ୍ଡର ଘୋଡ଼ଣୀ କାଢ଼ି ପକାଇଲେ। କେତେ କେତେ ଯନ୍ତ୍ରପାତି ତା ଭିତରେ। ଘଡ଼ି ବା ରେଡ଼ିଓର ପଛପାଖ ଖୋଲିଦେଲେ ଯେମିତି ଦେଖାଯାଏ ଠିକ୍ ସେମିତି। ହୃତ୍‌ପିଣ୍ଡଟା ତାରି ଭିତରେ ଧୁକ୍ ଧୁକ୍ ହେଉଥିଲା। ତାରି କଡ଼ରେ ତୋର ଉଜ୍ଜ୍ୱଳ ପଦାର୍ଥଟା ଫିଟ୍ କରିଦେଲେ ଠିକ୍ ଲାଞ୍ଚ ଟଙ୍କା ପକେଟରେ ଅବଲୀଳା କ୍ରମେ ରଖିଦେଲା ପରି। କନ୍‌ହେଇରେ, ଏ ଡାକ୍ତରାଣୀର ମୁଣ୍ଡ ଭିତରର ସବୁଗୁଡ଼ା ଚୋରା ମାଲ। ସବୁ ସ୍ମଗଲିଂ ଜିନିଷ। ବ୍ୟବଚ୍ଛେଦ କଲା ପରେ ଯାହର ଯାହା ଭଲ ମାଲ ପାଉଛି ସବୁ ରଖି ନେଉଛି ତାର ଖପୁରି ଭିତରେ। ଏଥିପାଇଁ ବୋଧହୁଏ ଡାକ୍ତରାଣୀ ପଇସା ନିଅନ୍ତି ନାହିଁ ବୋଲି ସୁନାମ ଅଛି। ଏ ଦେଶରେ ଏଇଥିପାଇଁ ଦାରିଦ୍ର୍ୟ ବଢୁଛିରେ ବାପା! ଉପାୟ ନାହିଁ। ସମସ୍ତେ ତ ସହୁଛନ୍ତି। ଯାହା ପଛରେ କେବଳ ସାମାନ୍ୟ ଫୁସୁରଫାସର୍ ହୁଅନ୍ତି, ଚେୟରକୁ ଆସିଲେ ଘଡ଼ିଏ ଘଡ଼ିଏ ତେଲ।

ଖପୁରିଟା ଲାଗିଲା ନାହିଁରେ ବାପା। ପୁଣି ଡାକ୍ତରାଣୀ ଖପୁରି ଖୋଲିଲେ। ଯନ୍ତ୍ରପାତିଗୁଡ଼ା କାଢ଼ି ଡ୍ରେସିଂ ଉପରେ ରଖିଲେ। ଆରେ ଆରେ ତା' ଭିତରେ ଏ ତ ଇନ୍ଦିରା ଗାନ୍ଧିର ମାଇକ, ଏ ତ ହାଜିମସ୍ତାନର ହାତ, ଏ ତ ଜୟପ୍ରକାଶର ଚଷମା। ତା ସାଥିରେ ଜାଲନୋଟର ବ୍ଲକ୍, ଭୋଟର ଠିପି ଆହୁରି କେତେ କ'ଣ। ତାରି ଭିତରେ ପୁଣି ସଜଡ଼ା ସଜଡ଼ି କରି ସେ ଉଜ୍ଜ୍ୱଳ ପଦାର୍ଥଟାକୁ ରଖିଦେଲେ। ମୁଣ୍ଡ ବାନ୍ଧି ସାରିଲା ପରେ ମୁଣ୍ଡରେ ଦୁଇହାତ ଚାପା ଦେଇ ଟାଇଟ ହୋଇଛି କି ନାହିଁ ପରୀକ୍ଷା କଲା ଭଳି ସେ ଦୁଇହାତ ଦୁଇ କଡ଼ରେ ଚାପିଦେଲେ, ତା' ପରେ ଖୋଳପା ଘୋଡ଼ାଇ ଦେଲେ ଏବଂ ଶେଷରେ ସେ ବୃହତ୍ ଲୁଡ଼ାଟା ଉପରେ ବସାଇ ଉଠି ଆସିଲେ।

କନ୍‌ହେଇରେ, ବାପା ମୋର, ଧନ ମୋର, ତୋ ହୃତ୍‌ପିଣ୍ଡ ଭିତରୁ ସବୁ ବାଛେ ଜିନିଷ ବାହାର କରିଦେଲେ ଡାକ୍ତରାଣୀ। ଟେବୁଲ ଉପରେ ସେଗୁଡ଼ା ଗଦା ହୋଇଗଲା। ତା ଭିତରେ ଏତେ ସୂର୍ଯ୍ୟୋଦୟ, ଏତେ ସୂର୍ଯ୍ୟାସ୍ତ, ଏତେ ଦୁଃଖ, ଏତେ ଅସହାୟତା, ଏତେ ବ୍ୟର୍ଥତା, ଏତେ ନିଃସଙ୍ଗତା, ପୁଣି ଏତେ ସ୍ୱପ୍ନ, ଏତେ ଫୁଲ, ଏତେ ଚନ୍ଦ୍ର, ଏତେ ନକ୍ଷତ୍ର, ଏତେ ଆକାଶ! ବିଶ୍ୱରୂପ ଦର୍ଶନ ହୋଇଗଲାରେ କନ୍‌ହେଇ। ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ତୋ ହୃତ୍‌ପିଣ୍ଡେ ବିରାଜଇ।

ଅପରେଶନ ପ୍ରାୟ ଶେଷ। ମାଛି ଦିଟା ବାହାରିଲେ। କିନ୍ତୁ ଡାକ୍ତରାଣୀ ଖୁବ୍ ଚାଲାକ। ସେ ଜାଣନ୍ତି ରକ୍ତକୋଷରେ ସେମାନଙ୍କ ବୀଜ ମାଡ଼ିଗଲାଣି। କିଛିଦିନ ପରେ ସେମାନେ ପୁଣି ଲକ୍ଷ ଲକ୍ଷ ସଂଖ୍ୟାରେ ଭଁ ଭଁ କରି ଉଡ଼ି ବୁଲିବେ। ତେଣୁ ହେୟାରପିନ ଖେଞ୍ଚି ଖେଞ୍ଚି ତୋ ହୃତ୍‌ପିଣ୍ଡରେ ସେ ବୁଢ଼ିଆଣୀ ଟାବଲେଟ ଦି'ଟା ପୂରାଇଦେଲେ ଏବଂ ଟେବୁଲ ଉପରୁ ତୋ' ମୁଣ୍ଡଟାକୁ ଉଠାଇଆଣି ତା ଢାଙ୍କୁଣୀ ଖୋଲିଲେ।

ତୋ ମୁଣ୍ଡ ଭିତରେ ସେମିତି ସବୁ ଯନ୍ତ୍ରପାତି କାହିଁରେ ବାପା ! କେବଳ ତରଳ ପଦାର୍ଥ। ସେଇ ତରଳ ପଦାର୍ଥ ଭିତରେ ବୁଢ଼ିଆଣୀ ଥିବା ହୃତ୍‌ପିଣ୍ଡଟା ବସାଇଦେଲେ ଏବଂ ମୁଣ୍ଡର ଖୋଳପା ଲଗାଇ ଦେଲେ। ତା ପରେ କାନ୍ଧରେ ହାତ ଖଞ୍ଜିଦେଲେ, ଗୋଡ଼ ଖଞ୍ଜିଦେଲେ ଅଣ୍ଟାରେ, ମୁଣ୍ଡଟାକୁ ପୁଣି ବେକରେ ଲଗାଇ ଦେଲେ। ତୁ ଉଠି ବସିଲୁ।

କେମିତି ଲାଗିଲାରେ ବାପା ! ନୂଆ ଭଳି ଲାଗିଲା ! ତୁ ହଠାତ୍ ମନେକଲୁ ତୁ ଖୁବ୍ ହାଲୁକା ହୋଇଯାଇଛୁ। ତୁ ଭଲ ମନ୍ଦର ପାର୍ଥକ୍ୟ ଭୁଲିଯାଇଛୁ। ପୃଥିବୀର ସୁଖ ଦୁଃଖ ଯନ୍ତ୍ରଣା ଅସହାୟତା ନିଃସଙ୍ଗତାର ଅର୍ଥ ଭୁଲିଯାଇଛୁ। ତୁ ଦେଖିଲୁ ଡ୍ରେସିଂ ଟେବୁଲ୍ ସାମ୍ନାରେ ଛିଡ଼ାହୋଇ ଡାକ୍ତରାଣୀ ସାୟା ପିନ୍ଧୁଛନ୍ତି। ତୁ ଉଠି ପଡ଼ିଲୁ। ତାଙ୍କୁ ଭିଡ଼ି ଆଣିଲୁ। ଡ୍ରେସିଂ ଟେବୁଲ ଉପରେ ପକାଇଦେଲୁ ଏବଂ ତୋ ଜୀବନର ପ୍ରଥମ ଧର୍ଷଣ ସେଇଠି ସେଇ ମୁହୂର୍ତ୍ତରେ ସଂପାଦନ କଲୁ।

କନ୍‌ହେଇରେ, ଏବେ ଆଉ ତୋ ଭିତରେ ସୁନେଲି ମାଛି ଭଁ ଭଁ ହୋଇ ଉଡ଼ି ତୋ ଉପରକୁ ଆଞ୍ଜୁଳା ଆଞ୍ଜୁଳା ସ୍ୱପ୍ନ ଓ ଦୁଃସ୍ୱପ୍ନ ଫିଙ୍ଗିବାକୁ ନାହିଁ। ତୁ ସବୁ ଦେଖିପାରୁଛୁ, ଜାଣିପାରୁଛୁ, ବୁଝିପାରୁଛୁ କିନ୍ତୁ ପାଟି ଫିଟୁନି। ତୁ ଆଖି ମେଲାକରି ଦେଖିଛୁ ଇନ୍ଦିରା ଗାନ୍ଧିର ମାଇକ ବକ୍ ବକ୍ କରି ଚାଲିଛି କୋଟି କୋଟି ଭୋକିଲାଙ୍କ ସଭାରେ। ହାକିମସ୍ଥାନର ଅକ୍ଟୋପାଶ ହାତ ବୁଲିଯାଉଛି ସବୁ ମାଲ୍‌ଖାନାରେ। ଢେପିର ଚଷମା ଭିତର ଦେଇ ନୂଆ ନୂଆ ଦୃଶ୍ୟ ସବୁ ଦେଖାଯାଉଛି। କନ୍‌ହେଇରେ, ଦେଖ, କାନ୍ଥରେ କ୍ୟାଲେଣ୍ଡର ହଲୁଛି, କଣ୍ଟାଟା ଉପୁଡ଼ିଯିବ ବୋଧହୁଏ। ବଜାରଦର ଥର୍ମୋମିଟର ପାଦ ଭଳି ଉପରକୁ ଚଢୁଛି। ସମସ୍ତଙ୍କ ଭିତରେ ଦୁରାରୋଗ୍ୟ ବ୍ୟାଧି। ସାମ୍ପେନ କେଉଁଠି ଉଛୁଳି ପଡୁଛି ଚଟାଣରେ। ମଣିଷଗୁଡ଼ାର ହାତ ଗୋଡ଼ର ନଟ ବୋଲ୍ଟ ରାସ୍ତାରେ ଖସି ପଡୁଛି। ହୃତ୍‌ପିଣ୍ଡମାନଙ୍କ ଉଜ୍ଜ୍ୱଳ ପଦାର୍ଥ ସବୁ ଉଭାନ ହୋଇଯାଉଛି। ଜଙ୍ଗରେ ଜଙ୍ଗ ବାଜି କେଉଁଠି ଯେମିତି ନିଆଁ ଲାଗିଗଲାଣି। ଦମକଳ ଘଣ୍ଟି ବଜାଇ ପେଟ୍ରୋଲ ସ୍ପ୍ରେ କରି ଗୋଟିଏ ମୁହଁ ଛୁଟୁଛି। କେଉଁଠି ଯେମିତି ଗୁଳିର ଆଓ୍ୱାଜ। କେଉଁ ଏକ ଫୁଟ୍‌ପାଥରେ ଭୋକିଲା ବୁଢ଼ା ଭିକାରିଟି ଉଠି ପଡୁଛି ଏବଂ ରାସ୍ତାରେ ଯାଉଥିବା ତରୁଣୀକୁ ଧରି ତାର ବ୍ଲାଉଜ ବ୍ରା' ସହ ସ୍ତନ ଚୋବାଇ ଖାଇଯାଉଛି। କନ୍‌ହେଇରେ ରକ୍ଷା ନାହିଁ, କେଉଁ ଏକ ଅଜଣା ଦିଗନ୍ତରୁ ପ୍ରଚଣ୍ଡ ଝଡ଼ ମାଡ଼ି ଆସୁଛି। ଚାରିଆଡ଼େ ଲଣ୍ଡଭଣ୍ଡ ହେବା ଆରମ୍ଭ ହୋଇଗଲାଣି। ଏ ସମୟରେ ତୁ କ'ଣ ବଟପତ୍ରରେ ବସି ପ୍ରଳୟ ପୟୋଧି ଜଳରେ ଭାସୁଛୁ ?

ବାପାରେ, ତୁ କଣ ମହାନନ୍ଦରେ ଅଛୁ ? ମୁଁ ଜାଣେ ସେତକ ଯଦି ପାରନ୍ତୁ ! ଯଦି ପାରନ୍ତୁ ପ୍ରଳୟ ପୟୋଧି ଜଳରେ ବି ମହାନନ୍ଦରେ ନିମଜ୍ଜିତ ହେବା ପାଇଁ ! ପାରିବୁ ନାହିଁ, ପାରିବୁ ନାହିଁ। ତୋ ମୁଣ୍ଡ ଭିତରେ ବୁଢ଼ିଆଣୀମାନେ ଅସଂଖ୍ୟ ଜାଲ ତିଆରି କରି ଚାଲିଛନ୍ତି। ମାଛି ଧରିବା ପାଇଁ ନୁହେଁରେ ବାପା, ତୋତେଇ ଧରିବା ପାଇଁ। ସେଇଟା

ତୋ ପାଇଁ ଔଷଧ ନୁହେଁରେ, ସେଇଟା ମାରଣାସ୍ତ୍ର। ତୋତେ କ୍ରମେ କ୍ରମେ ସେମାନେ ଛନ୍ଦି ଦେବେ। ତଥାପି ଯେତେ ସମୟ ବଞ୍ଚିବୁ ଯୁଦ୍ଧ କର। ମୁଁ ଜାଣେ ସେମାନେ ଜାଲ ଭିତରେ ଜାଲ, ଜାଲ ଭିତରେ ଜାଲ ତା ଭିତରେ ଜାଲ ତା ଭିତରେ ଜାଲ ତା ଭିତରେ ବି ଜାଲ ବୁଣି ଚାଲିଛନ୍ତି। ତୁ ବି ପାରୁଛୁ ଯଦି ଛିଣ୍ଡାଇ ଚାଲ ଜାଲ ପରେ ଜାଲ ତାପରେ ବି ଜାଲ, ତାପରେ ବି ଜାଲ ତାପରେ ବି ଜାଲ ତାପରେ ବି–

('ନବରବି', ଏପ୍ରିଲ୍, ୧୯୭୫)



# ତିନୋଟି ମୃତ୍ୟୁ

(କ)

କଟାପାନ ଉପରେ ଚୂନ ଲେପୁ ଲେପୁ ପଞ୍ଚାନନର ଇଚ୍ଛା ହେଲା ଦୋକାନ ବନ୍ଦ କରି ଉଠିଯିବ। ଲବିକୁ ଟିକିଏ ଦେଖିଆସିବ। ଲବିର ବାପା ଜଣେ ଆଡ୍‌ଭୋକେଟ୍। ସେ ନିଜେ ପ୍ରତିଦିନ ଦଶଟାରେ ଆଉ ଚାରିଟାରେ ଦୋକାନରୁ ପାନ ନିଅନ୍ତି, ସେ ପଞ୍ଚାନନକୁ ଖୁବ୍ ଭଲ ପାଆନ୍ତି । ତେଣୁ ଥରେ ପଞ୍ଚାନନକୁ ଖାଇବାକୁ ଡାକିଥିଲେ ତାଙ୍କ ପୁଅର ଅନ୍ନ ପ୍ରାଶନରେ, ସେଇଦିନୁ ଲବିକୁ ଚିହ୍ନେ ପଞ୍ଚାନନ ଏବଂ ଅନେକ ସମୟରେ ତାଙ୍କ ଘରକୁ ଯାଏ । ଲବି ଆଉ ତା' ସାଙ୍ଗମାନଙ୍କୁ ଭିଡ଼ରେ ସିନେମା ଟିକଟ ଆଣିଦିଏ। ତାର ଯିବା ପାଇଁ ରିକ୍‌ସା ଡାକି ଆଣେ। ଏମିତି ଦିନ ଯାଏ, ଲବି ଆଉ ପଞ୍ଚାନନ କ୍ରମେ ବେଶ୍ ବନ୍ଧୁ ହୋଇଉଠନ୍ତି। ମନେ ପକାଇଲା ପଞ୍ଚାନନ, ଆଜି କଲେଜ ନାହିଁ, ତେଣୁ ଶୀଘ୍ର ପହଞ୍ଚିବାକୁ ପଡ଼ିବ। ସେ ଦୋକାନ ବନ୍ଦକରି ଉଠିପଡ଼ିଲା। କିନ୍ତୁ ଯଦି ତା'ର କଲେଜ ସାଙ୍ଗ ଅଜୟ ଆସିଥାଏ ?

(ଖ)

ପଞ୍ଚାନନ ତା' ଗାଁ'ରେ ପହଞ୍ଚିଲା ଦିନ ଦେଢ଼ଟାରେ। ବସ୍‌ରୁ ଓହ୍ଲାଇ ଅନେକ ରାସ୍ତା ଚାଲିବାକୁ ହୁଏ। ଘରେ ପହଞ୍ଚିଲା ମାତ୍ରେ, ପିଲା ତିନୋଟି ଆସିଲେ । ତାଙ୍କୁ କିଛି ଚକୋଲେଟ୍ ଧରାଇ ଦେଇ ସେ ଆଗେଇଲା ବାସନ୍ତୀଆଡ଼େ। ବାସନ୍ତୀ ତାକୁ ପାଞ୍ଚବର୍ଷରେ ତିନିଟା ପିଲା ଉପହାର ଦେଇଛି। ବାସନ୍ତୀଠାରୁ ଶୁଣିଲା, ମା' ଯାଇଛି ସାମନ୍ତ ଘରୁ ଭୁଜା ଆଣିବା ପାଇଁ। ତା' ମା'କୁ ଭଲପାଏ ପଞ୍ଚାନନ। ମଝିରେ ମଝିରେ ତା' ମା' ଖୁବ୍ କାଶେ । ତାକୁ ଦେଖି ବାସନ୍ତୀ ଦୌଡ଼ିଲା ପଡ଼ୋଶୀ ଘରକୁ। ଲୁଗାକାନିରେ ଚାଉଳ ଉଧାର ନେଇ ଫେରିଲା, ଚୂଲିରେ ପାଣିହାଣ୍ଡି ବସାଇ ଚଟାପଟ ଚାଳରୁ କେରାଏ ନଡ଼ା ଟାଣିଆଣି ଚୂଲିରେ ଜାଳିଦେଲା ଆଉ ତା' ଉପରକୁ ଦି' ଫଡ଼ା ଘସି ପକାଇଦେଲା । ଭୋକରେ ବିରକ୍ତ ହୋଇ ସେ ଘର ଭିତରକୁ ବାସନ୍ତୀକୁ ଡାକିଲା। ପଞ୍ଚାନନ କବାଟ ଆଉଜେଇଦେଲା।

(ଗ)

ଆଜି ଲବିର ଜନ୍ମଦିନ। ଶୀଘ୍ର ଦୋକାନ ବନ୍ଦ କରି ଉଠିପଡ଼ିଲା ସେ। ଖଣ୍ଡିଏ ଆଲବମ୍ ଉପହାର ଦେବ ଲବିକୁ । ଦୋକାନରେ ତାଲା ପକାଇଲା ପୁଣି ଫିଟାଇଲା, ଉପରେ ଝୁଲା ହୋଇଥିବା ନାଲି ରିବନ୍‌ରୁ କିଛିଟା କାଟି ନେଲା, ଆଲବମ୍‌ରେ ନିଜର ଗୋଟିଏ ଛବି ରଖି ତା' ଉପରେ ନାଲି ରିବନ ବାନ୍ଧିଲା। ତା'ର ହଠାତ୍ ମନେପଡ଼ିଲା ତା' ବଡ଼ ଝିଅ କହିଥିଲା ତା' ପାଇଁ ସେ ରିବନ୍ ନେବାକୁ, ଆଉ ଆଜି ଗାଁ'ରୁ ଚିଠି ଆସିଛି ତା' ମା'ର କାଶ ଭୀଷଣ ହୋଇଛି। କିନ୍ତୁ ପଞ୍ଚାନନର ମନ ଦୁଃଖ ଅନ୍ୟ କାରଣ ପାଇଁ। ଆଲବମ୍ ଆଣିଲା ବେଳେ ଦେଖିଲା ଲବିର କଲେଜ ସାଙ୍ଗ ଅଜୟ ଅନେକଗୁଡ଼ାଏ ଜିନିଷ କିଣୁଥିଲା। ଆଜି ଲବି ଅଜୟ ସଙ୍ଗରେ ଗପିବ।

(ଘ)

ପଞ୍ଚାନନର ସଞ୍ଚିତ ଅର୍ଥ ଆଜି ଶେଷ ହୋଇଗଲା ଲବି ପାଇଁ; ଅଥଚ ମା'ର କାଶ ଔଷଧ ସେ କିଣିପାରିଲା ନାହିଁ। ଲବିକୁ ହଠାତ୍ ନେଇ ଯିବାକୁ ହେଲା ଏବଂ ଲବି ଶହ ଶହ କୁମାରୀ କନ୍ୟା ଭଳି ଦେହର ଓଜନ କାଢ଼ି ସତୀସାଧ୍ୱୀ ହୋଇ ଫେରିଲା । ଅବଶ୍ୟ ଲବିର ବାପା ଜାଣନ୍ତି ଲବି ଗାଁ'କୁ ବୁଲିଯାଇଛି। ଅବାକ ହୁଏ ପଞ୍ଚାନନ, ଦିନେ ଗୋଟିଏ ଲବି ପାଖରେ ତା'ର ଝିଅ ହଜି ଯାଇଥିଲା। ଅବଶ୍ୟ ସେଦିନ ଲବିର ବାପା ମା ସିନେମା ଯାଇଥିଲେ। ସେଇମାତ୍ର ଥରେ । କିନ୍ତୁ ଅଜୟ ଆଉ କେତେଦିନ ହେଲା ତାଙ୍କ ଘରକୁ ଆସୁନାହିଁ କାହିଁକି ? ଲବି ଘରକୁ ଆଉ କେବେ ଯିବ ନାହିଁ ବୋଲି ସେ ମନେ ମନେ ଶପଥ କଲା।

(ଙ)

କେତେଦିନ ପରେ ତା ପାନ ଦୋକାନ ସାମ୍ନାରେ ରିକ୍‌ସାରେ ଲବି। ତା ହାତକୁ ଗୋଟିଏ କାର୍ଡ଼ ବଢ଼ାଇଦେଇ କହିଲା– ବାପା କହିଲେ ସବୁ କାମ ତୁମକୁ କରିବାକୁ ହେବ। କାର୍ଡ଼ ଦେଖି ଜାଣିଲା ଜଣେ ବିଜ୍‌ନେସ୍‌ମ୍ୟାନ ସଙ୍ଗେ ଲବିର ବାହାଘର ହେବ। ଠିକ୍ ସେଇ ସମୟରେ ପଞ୍ଚାନନ ହାତରେ ଗୋଟିଏ ଟେଲିଗ୍ରାମ୍ ପହଞ୍ଚିଲା। ପଞ୍ଚାନନ ଜାଣିଲା ରାତିରେ ତା' ମା ସବୁଦିନ ପାଇଁ ଚାଲିଯାଇଛି।

ସେ ଦୁଇଟି ମୃତ୍ୟୁ ପାଇଁ ଦାୟୀ– ଉଚ୍ଚାରଣ କଲା ପଞ୍ଚାନନ । ଗୋଟିକର ହୃତ୍‌ସ୍ପନ୍ଦନ ବନ୍ଦ କଲା ଔଷଧ ଦେଇ ଆଉ ଅନ୍ୟଟିକୁ ନଦେଇ।

ନିଜ ଛାତିରେ ହାତଦେଇ ଦେଖିଲା ତାର ବି ହୃଦ୍‌ସ୍ପନ୍ଦନ ନାହିଁ।

(ଚୁମ୍ବକ, ମେ-ଜୁଲାଇ, ୧୯୭୫)



# ଙ୍ଗଲୀଅପା ଓ ଜଙ୍ଗଲ ବିଷୟରେ ଗଳ୍ପ

ଙ୍ଗଲୀଅପାକୁ ମୋତେ ଭଲ ଲାଗେ ବୋଲି ସମୟ ସମୟରେ ତାଙ୍କ ଘରକୁ ଆସେ। ଦୂର ଗାଁରେ ମୋର ମା' ବାପା ଭାଇ ଭଉଣୀ ସ୍ତ୍ରୀ ପୁଅ ଝିଅ ସମସ୍ତେ। ମୁଁ ବିଦେଶରେ ରହି ଚାକିରି କରେଁ ଏବଂ ଙ୍ଗଲୀଅପା ସ୍ନେହରେ ଏଇଠି ବେଶ୍ କିଛିଦିନ କଟିଯାଏ। କାଲି ମୁଁ ଗାଁକୁ ଯିବି। ମା'ର କାଶ ବଢ଼ିଯାଇଛି। ସ୍ତ୍ରୀ ମୋତେ ଦୁଇମାସ ନ ପାଇ ଏକ ନିର୍ଲଜ୍ଜ ଗୋପନୀୟ ଚିଠି ଲେଖିଛି। ପୁଅର କୁଣ୍ଡିଆ ସାରା ଦେହରେ ମାଡ଼ିଗଲାଣି। ଆଗରୁ ମା'ର କାଶ କଥା ଜାଣିଥିଲି, ପୁଅର କୁଣ୍ଡିଆ କଥା ଚିଠିରେ ପଢ଼ିଥିଲି। କିନ୍ତୁ ଆଜି ସ୍ତ୍ରୀର ଚିଠିଟା ପାଇଲା ମାତ୍ରେ ସ୍ଥିର କରି ନେଇଛି ଯାହା ଅସୁବିଧା ଥାଉ ପଛେ ଯିବି। ଦୂର ଗାଁରେ ଗୋଟିଏ ନରମ ବିଛଣା, ଖରାଦିନ ଦ୍ୱିପ୍ରହରରେ ସାରା ରାସ୍ତା ବୁଲି ଆସି ନିଶ୍ଚିନ୍ତରେ ଥଣ୍ଡା ପାଣିରେ ଗାଧୋଇବାର ଆରାମ। ଆଜି ସଞ୍ଜରେ ହୁଏତ ଚାଲି ଯାଇଥାଆନ୍ତି। କିନ୍ତୁ ଙ୍ଗଲୀଅପାକୁ ଦେଖା ନ କରି ଯିବା ଅସମ୍ଭବ। ତେଣୁ ସଞ୍ଜରେ ତାଙ୍କୁ ଦେଖାକରି ସକାଳ ବସ୍‌ରେ ଯିବି।

ମୁଁ ସଞ୍ଜରେ ଙ୍ଗଲୀଅପା ଘରେ ପହଞ୍ଚିଲି। ଘରେ କେହି ନ ଥିଲେ। ତାଙ୍କ ସ୍ୱାମୀ ଟୁର୍‌ରେ, ପିଲା ଦି'ଟା ତାଙ୍କ ଶାଶୁଙ୍କୁ ନେଇ ଓଡ଼ିଆ ସିନେମା ଦେଖିବାକୁ ଯାଇଥିଲେ। ସବୁ ଘର ଅନ୍ଧକାର। ତାଙ୍କ ଶୋଇବା ଘର ବି। କିନ୍ତୁ ସବୁ ଘର ଖୋଲା। ଙ୍ଗଲୀଅପାର ଶୋଇବା ଘରକୁ ବି ମୋର ଅବାଧ ପ୍ରବେଶ। ମୁଁ ଗୋଟିଏ ଗୋଟିଏ ଘରର ଆଲୁଅ ଜଳାଇ ତାଙ୍କ ଶୋଇବା ଘରର ଆଲୁଅ ଜାଳିଦେଲି। ଙ୍ଗଲୀଅପା କେବଳ ଶାଢ଼ି ଦେହରେ ପକାଇ ଶୋଇଥିଲେ। ଆଣ୍ଠୁ ଉପର, ପେଟ, ଛାତି ସବୁ ପରିଷ୍କାର ଦେଖାଯାଉଥିଲା। ମୁଁ ଜୀବନରେ କେବେ ତାଙ୍କୁ ଏମିତି ଅବସ୍ଥାରେ ଦେଖି ନାହିଁ। ମୁଁ ମୋ ପାଦ ଫେରାଇ ଚାଲି ଆସୁଥିଲି। ସେ ଡାକିଲେ– ଆ, ଭିତରକୁ ଆ, ବସ୍। ମୋ ମୁଣ୍ଡଟା ବିନ୍ଧୁଛି ସେଥିପାଇଁ ଶୋଇପଡ଼ିଥିଲି। ତାଙ୍କ ଡାକ କେବେ ଏଡ଼ିଦେଇ ନାହିଁ। ପାଖରେ ଯାଇ ବସିଲି। ସେ କହିଲେ ମୋ ମୁଣ୍ଡଟା ଟିକିଏ ଚିପିଧର, ଆଲୁଅଟା ଆଖିରେ ପଡୁଛି, ଲିଭାଇଦେ। ମୁଁ ଲିଭାଇ ଦେଲି।

× × × × ×

ଲୋକଟା ସାରା ପୃଥିବୀକୁ ଆଲୁଅ କରି ଚାଲିଛି ଯେମିତି। ଉଜ୍ଜ୍ୱଳ ଖରା, ଲୋକଟା ଜଙ୍ଗଲ ଭିତରେ ପଶିଲା, ଜଙ୍ଗଲ ପାରି ହେଲେ ତା'ର ଗାଁ। ଗାଁରେ ଛୋଟ ଗୋଟିଏ ଚାଳଘର, ଚାଳଘର ପାଖରେ ଗୋଟିଏ ପାହାଡ଼ି ଝରଣା। ସେ ଚାଲି ଚାଲି କ୍ଲାନ୍ତ ହୋଇ ଫେରିଲେ ଝରଣାରେ ତା'ର କ୍ଳାନ୍ତି ଧୋଇଦିଏ। ତା'ପରେ ବିଶ୍ରାମ ନିଏ। ଜଙ୍ଗଲଟା ପାରି ହେବାକୁ ତାକୁ ବେଶ୍ କିଛି ସମୟ ଲାଗିବ। ସୂର୍ଯ୍ୟ ଢଳିଗଲେଣି ପଶ୍ଚିମ ଆଡ଼କୁ। ବେଳ ଥାଉଁ ଥାଉଁ ଜଙ୍ଗଲ ପାରି ହେବାକୁ ପଡ଼ିବ। ନହେଲେ ପାଖ ପାହାଡ଼ଆଡୁ ଗଡ଼ିଆସିବେ ବଣୁଆ ହାତୀ, ବାଘ ଭାଲୁ, ଚିତା। ଚାରିଆଡ଼େ ଝମ୍ ଝମ୍ ଭାବ। ଲୋକଟି ଜଙ୍ଗଲ ଭିତରେ ସରୁ ପାଦଚଲା ରାସ୍ତାରେ ଆଗେଇଲା। ଦୁଇପଟରେ ବୁଦୁବୁଦୁକିଆ କଣ୍ଟାଳିଆ ଜଙ୍ଗଲ। ଦୂରରେ ଦୂରରେ ଘେରି ରହିଛି ମୋଟା ମୋଟା ଗଛର ଗଣ୍ଡି। ଗଛର ପତ୍ରଟିଏ ଚହଲି ଚହଲି ଭୂଇଁରେ ପଡ଼ିଲେ ବି ସ୍ପଷ୍ଟ ଶୁଣାଯାଉଛି। ଭିତର ପଟୁ କିଚିରିମିଚିରି ଚଢ଼େଇ କେଉଁଠୁ ଫୁଡ଼ଫାଡ଼ ହେଉଛି। ହଠାତ୍ ତାକୁ ମନେହେଲା, ତା ପଛେ ପଛେ କିଏ ଯେମିତି ମଚ ମଚ ଶବ୍ଦ କରି ଆଗେ ଆସୁଛି। ସେ ନିଜ ପାଦ ଶବ୍ଦ ବନ୍ଦ କରି କାନ ଡେରିଲା। କେବଳ ଛାତି ଭିତରର ଧପ୍ ଧପ୍ ଶବ୍ଦ। ପୁଣି ଆଗେଇଲା ଲୋକଟି। ବେଳ ରତ ରତ। ଜଙ୍ଗଲଟି ପାରି ହୋଇ ଯିବାକୁ ହେବ। ସବୁ ଦିନର ଅଭ୍ୟାସ ଏଇଟା। ଜଙ୍ଗଲ ପାରି ହେଲେ ବୁଦୁବୁଦୁକିଆ ପଡ଼ିଆ। ପଡ଼ିଆ ସେପଟେ ଗାଁ ଭିତରେ ଦେଖାଯାଏ କୁହୁଡ଼ି ଭଳି ଧୂଆଁର ରେଖା। କିଛି ସମୟ ପରେ ତା ଘରେ ଜଳି ଉଠିବ ଦିକି ଦିକି ଲଣ୍ଠନ। ଡେରି ହେଇଗଲେ ବି ସେହି ଆଲୁଅରେ ରାସ୍ତା ଚିହ୍ନି ଘରେ ପହଞ୍ଚି ଯାଇ ପାରିବ ସେ। ପୁଣି ହଠାତ୍ ମନେହେଲା ପଛରୁ ସତରେ ଯେମିତି କିଏ ଆସୁଛି। ସେ ଥମ୍ କରି ଛିଡ଼ାହେଲା, ପଛରୁ ପାଦ ଶବ୍ଦ ବନ୍ଦ। ପଛକୁ ହଠାତ୍ ଚାହିଁବାକୁ ଭୟ ଲାଗିଲା ତାକୁ। ଆସ୍ତେ ଆସ୍ତେ ଚାହିଁଲା, କେହି ଜଣେ ନାହାନ୍ତି। ତା' ମୁଣ୍ଡ ଉପରେ କିଚ୍ କିଚ୍ ନାମ-ନ-ଜଣା ଚଢ଼େଇ। ପାଦ ପାଖରୁ ସର୍ କରି ଘୁଞ୍ଚିଗଲା କେଉଁ ଏକ ସରୀସୃପ। ସେ ଆଗେଇଲା। ଛାତି ହାଲୁକା, ଭିତରେ ଭୟ ଆଉ ସଂଶୟ। ପୁଣି ଛିଡ଼ା ହୋଇପଡ଼ିଲା ସେ। କେମିତି ଏକ ପ୍ରକାର ବାସ୍ନା ତା ନାକରେ ଲାଗିଲା। ଖୁବ୍ ତୀବ୍ର ମିଠା ବାସ୍ନା। ସେ ବାସ୍ନାକୁ ଠେଲି ଆଗକୁ ଯିବା ମୁସ୍କିଲ। ପାଦଚଲା ରାସ୍ତା ଛାଡ଼ି ପାଦ ଘୋଷାରି ଗଲା କଡ଼କୁ। ଅମଡ଼ା ବାଟରେ ବୁଦା କଣ୍ଟା ଝୋପ ଆଡ଼େଇ ସେ ଆଗେଇବାକୁ ଲାଗିଲା। ଲୋକଟା ଜାଣେ ଏପଟେ ଆଗେଇବା ତାର ଏକାନ୍ତ ଅନୁଚିତ।

କିନ୍ତୁ ସେ ପାରୁ ନାହିଁ। ବାସ୍ନାର ସ୍ରୋତ ଆସୁଛି ଆଗରୁ। ସ୍ରୋତର ପ୍ରତିକୂଳରେ କେରାଣ୍ଡି ମାଛ ସର୍ ସର୍ ଆଗେଇଲା ଭଳି ସେ ଆଗେଇ ଚାଲିଛି। ପାଦ ପଡୁଛି ଉଠୁଛି ପଡୁଛି ଉଠୁଛି। ପାଦତଳେ କେବଳ ମଚ ମଚ ଶୁଖିଲା ପତ୍ର। ସୁଁ କରି ଘୁଞ୍ଚିଯାଉଥିବା ସାପ, କଣ୍ଟାରେ ରକ୍ତାକ୍ତ ଦେହ। ତଥାପି ସେ ବାସ୍ନାର ଉତ୍ସ ଆଡ଼କୁ ମୁହଁକରି ସେ ଆଗେଇଲା। କ୍ରମେ ଜଙ୍ଗଲର ପତଳା ଆଲୁଅ ଘନ ହୋଇ ଆସିଲା। ଖୁବ୍ ବେଶୀ ଶୀତ

କରିବାକୁ ଆରମ୍ଭ କଲା। ତା' ଅଜାଣତରେ ପାହାଡ଼ ଅରପଟକୁ ଢଳିଗଲା ସୂର୍ଯ୍ୟ। ଦୂର ଗାଁରେ କୁହୁଡ଼ି ରେଖା ଅସ୍ପଷ୍ଟ ହୋଇ ଆସିଲା। ତାକୁ ରାସ୍ତା ଦେଖାଇବା ପାଇଁ ଦିକି ଦିକି ଲଣ୍ଠନ ଜଳି ଉଠିଲା। କିନ୍ତୁ ଆଗକୁ ବଢ଼ିଚାଲିଛି ପାଦ, ବାସ୍ନା କ୍ରମେ ଉତ୍କଟରୁ ଉତ୍କଟତର। ଚାରିଆଡ଼େ ଗଛର ଗଣ୍ଡିଗୁଡ଼ିକ ଫିକା ଅନ୍ଧକାରରେ ପରିତ୍ୟକ୍ତ ମହଲର ଖମ୍ବ ଭଳି ଭୌତିକ। ଗୋଟିଏ ନୁଆଁଣିଆ ଗଛକୁ ଆଉଜି ଛିଡ଼ାହୋଇ ପଡ଼ିଲା। ଟିକିଏ ଦମ୍ ନେଲା। ଭାବିଲା କେମିତି ଏଥିରୁ ରକ୍ଷା ପାଇବ। ଏ ଜଙ୍ଗଲରୁ ନିଷ୍କ୍ରମଣର ପଥ କାହିଁ। ଚାରିଆଡ଼େ ବହଳ ଅନ୍ଧକାର। ଏଠି ଛିଡ଼ା ହୋଇ ସେ ବାସ୍ନାଟା କଥା ମନେକଲା। ବାସ୍ନାଟା ଏଇଠି ସେତେ ଉତ୍କଟ ନୁହେଁ। ଉପରକୁ ଚାହିଁଲା। ସେ ନୁଆଁଣିଆ ଗଛରେ ଝୁମ୍ପା ଝୁମ୍ପା ଫୁଲ। ହାତପାହାନ୍ତରୁ ଗୋଟିଏ ଫୁଲକୁ ସେ ଛିଣ୍ଡାଇ ଆଣିଲା। ଅଠାଳିଆ ଫୁଲ। ହାତରେ ଲାଖିଯାଏ, ଛାଡ଼େ ନାହିଁ। ସେ ହାତରେ ଗୋଟିଏ ଦଳିଦେଲା। କି ତୀବ୍ର ମିଠା ବାସ୍ନା। ଯେମିତି ମୁଣ୍ଡ ବୁଲାଇ ଦେଲା। ଚେତା ଲୋପ ପାଇଗଲା ଭଳି ଲାଗିଲା। ସେ ବୁଝିଲା ଏଇ ଫୁଲହିଁ ବାସ୍ନାର ଉତ୍ସ। ଏ ଫୁଲ ବାସ୍ନାରେ ଦୂରରୁ ନିଶାଗ୍ରସ୍ତ କରାଇ ଟାଣି ଆଣେ। ହଠାତ୍ ପାଖରେ ଗୋଟିଏ ମଚ ମଚ ଶବ୍ଦ ଶୁଣି ସେ ଚାହିଁ ଦେଖିଲା ଗୋଟିଏ ଅନ୍ଧକାରର ପେଣ୍ଡୁଳା ତା ଆଡ଼େ ମାଡ଼ି ଆସୁଛି। ସେ ଦ୍ରୁତ ଗତିରେ ସେଇ ନୁଆଁଣିଆ ଗଛ ଉପରକୁ ଚଢ଼ିଗଲା। ଝୁମ୍ପା ଝୁମ୍ପା ଫୁଲ ଭିତରେ ବସି ରହିଲା। ଜନ୍ତୁଟି ଆସି ତଳେ ଶୁଙ୍ଘିଲା। ତା'ପରେ ଧୀରେ ଧୀରେ ଗଛ ଉପରକୁ ଚଢ଼ିବାକୁ ଆରମ୍ଭ କଲା। ହଠାତ୍ ଅନ୍ଧକାରର ଜନ୍ତୁଟି ଲୋକଟାକୁ ଦେଖି ମୁହୂର୍ତ୍ତେ ସ୍ଥିର ହୋଇଗଲା। ତା'ପରେ ଆଗକୁ ଗୋଟିଏ ପାଦ ପକାଇଲା। ଲୋକଟି ଆଉ ପାଦେ ଉପରକୁ ଉଠିଲା, ଜନ୍ତୁଟି ଆଉ ପାଦେ ଉପରକୁ ଲୋକଟି ଆଉ ପାଦେ ଉପରକୁ, ଜନ୍ତୁଟି ଆଉ ପାଦେ ଲୋକଟି ଆଉ ପାଦେ, ଜନ୍ତୁଟି ଆଉ ପାଦେ ଲୋକଟି ଆଉ ପାଦେ, ଜନ୍ତୁଟି ଲୋକଟି, ଜନ୍ତୁଟି ଲୋକଟି–। ଶେଷରେ ଲୋକଟି ଜାଣିଲା ଆଉ ଉପରକୁ ସ୍ଥାନ ନାହିଁ। ତା'ପରେ ଖୋଲା ଆକାଶ। ଆଉ ପାଦେ ଆଗେଇଲେ ଡାଳ ଭାଙ୍ଗିଯିବ। ତଥାପି ଆଉ ଟିକିଏ ଘୁଞ୍ଚିଗଲା। ବିଲେଇ ଭଳି ଗଛ ଡାଳରେ ନଖ ପଶେଇଲା। ଲୋକଟି ଚରମ ମୁହୂର୍ତ୍ତ ପାଇଁ ପ୍ରସ୍ତୁତ ହେଲା। ଆଉ ଦୁଇ ଇଞ୍ଚ ଜାଗା ପାଇଥିଲେ ଆଉ ଦୁଇ ସେକେଣ୍ଡ ସେ ବଞ୍ଚି ରହନ୍ତା। ଏଥର ଜନ୍ତୁଟି ଆଗେଇଲା। ପାଦେ ଆଗକୁ, ପାଦେ ଆଗକୁ ପୁଣି ପାଦେ ପୁଣି ପାଦେ ପୁଣି–।

ମୁଁ ଜଙ୍ଗଲ ଭିତରେ ସେ ନୁଆଁଣିଆ ଗଛ ଉପରୁ ତଳକୁ ଖସି ପଡ଼ିଲି। ଙ୍ଗଲୀଅପା ମୋ ଉପରେ ବସି ତା ଦାନ୍ତ ନଖରେ ମୋ ଛାତି ଚିରିବାକୁ ଲାଗିଲା।

('ଆସନ୍ତାକାଲି', ଅଗଷ୍ଟ, ୧୯୭୫)



# କରଫ୍ୟୁ

କାନ୍ଥର ଫିକା ଧଳାରଙ୍ଗ, ଦେହର କୁଣ୍ଡିଆ ଦାଗ ଭଳି ଯେଉଁଠି ବେଶି ଧଳା ହୋଇଯାଇଛି ସେଇଠି ପିମ୍ପୁଡ଼ିଟା ଅଟକିଲା। ବୋଧହୁଏ ସ୍ଥାନଟିକୁ ପ୍ରଥମେ ନିରୀକ୍ଷଣ କଲା, ତାପରେ ଆସ୍ତେ ଆସ୍ତେ ଶୁଣ୍ଢ ଲଗାଇଲା। କିଛି ସମୟ ପରେ ଶୁଣ୍ଢଟା ଉପରକୁ ଉଠାଇ ଶୂନ୍ୟକୁ ଚାହିଁଲା। ତା'ପରେ ପାଦ ଚଳାଇଲା। ଉପରକୁ ଟିକେ ତେରେଛା ହୋଇ ଯାଇ ଡାହାଣକୁ ବାଙ୍କିଲା। ସାମ୍ନାରେ ଗୋଟିଏ ଛୋଟ ବାଲିଗରଡ଼ା ଫିକା ପଲସ୍ତରା ଭିତରୁ ମୁଣ୍ଡ ଟେକି ସାମାନ୍ୟ ଉପରକୁ ଉଠିଥିଲା। ସେ ତା'ର ଆଗ ଗୋଡ଼ ଦୁଇଟିକୁ ତା' ଉପରେ ରଖିଲା। କାନ୍ଥର ଟିକିଏ ଉପରକୁ ଗଭୀର କ୍ଷତ। ଆଗରୁ ସେଠାରେ ଗୋଟିଏ କଣ୍ଟା ପୋତା ହୋଇଥିଲା ନିଶ୍ଚୟ। କଣ୍ଟାରେ ଗୋଟିଏ ବର୍ଷ ଛବି ଓ ସଂଖ୍ୟା ହୋଇ ଦିନେ ଝୁଲୁଥିଲା। ଆଜି କଣ୍ଟା ନାହିଁ, କେବଳ ଧଳା କ୍ଷତ। ତା'ର କିଛି ତଳକୁ କାନ୍ଥରେ କାଳିଲଗା ଆଙ୍ଗୁଠି ପୋଛିବାର ଚିହ୍ନ। ଇତିର ବିଶିଆଙ୍ଗୁଠି ନିଶ୍ଚୟ, କାରଣ ଇତି ରାତିରେ ଏଇ ଖଟରେ ବସି ପଢ଼େ। ଯାହାହେଉ ପିମ୍ପୁଡ଼ିଟା ସେଇ କାଳିଦାଗ ପାଖରେ ଏକ ଅଦ୍ଭୁତ ଭଙ୍ଗୀରେ ଥମିଗଲା। ତା'ପରେ ସାମାନ୍ୟ ତଳକୁ ତା'ପରେ ବାମକୁ ତା'ପରେ ତଳକୁ, ତା' ପରେ ସାମାନ୍ୟ ଡାହାଣକୁ, ତା'ପରେ ଉପରକୁ ତା'ପରେ ବାମକୁ, ତାପରେ ଉପରକୁ ଏବଂ ତା'ପରେ ଉପରକୁ।

ଇତି ଏଇ ଖଟରେ ବସେ, ପଢ଼େ ଓ ଶୁଏ। ଖଟ ଉପରେ ଧଳା ବିଛଣା ଚାଦର। ଦକ୍ଷିଣ ଆଡ଼କୁ ଝର୍କାଟା ଅନେକଦିନୁ ବନ୍ଦ। ଝର୍କା ଥାକରେ ବହିଖାତା। ଇତିର ବିଛଣାରେ ସେଇ ଗନ୍ଧ, ସେଇ ଗନ୍ଧଟା ମୁଁ ପାଏ ଇତିର କାନ୍ଧରେ ମୁହଁ ରଖିଲେ। ଅନେକ ଶୋଇବା ଜାଗା ଥାଉଁ ଥାଉଁ ମୁଁ ତେଣୁ ଏଇ ବିଛଣାରେ ଶୁଏ। ଏଣୁ ତେଣୁ କ୍ଲାନ୍ତ ହୋଇ ଆସି ମୁଁ ଯେକୌଣସି ମୁହୂର୍ତ୍ତରେ ଏଇ ଖଟରେ ଶୋଇପଡ଼େ। ଗନ୍ଧ ପାଇଁ। କାନ୍ଥ ଆଡ଼କୁ ମୁହଁ କରି ଅନେକ ପିମ୍ପୁଡ଼ିଙ୍କ ଶବ୍ଦହୀନ ଶୋଭାଯାତ୍ରା ଲକ୍ଷ୍ୟ କରେ। ଇତି ଘରକୁ ପଶିଆସେ। ଖଟ ସାମ୍ନାରେ ଥିବା ଚେୟାରରେ ନ ବସି ଟେବୁଲରେ ବସେ। ଚେୟାରରେ ପାଦ ରଖେ। ଇତି ଚେୟାରରେ ବସିଲେ ଖଟରେ ନିଜକୁ ବିଛଣାଚଦର ପରି ବିଛାଇ ଦେଇଥିବା ମୁଁ ହଠାତ୍ ବିଶୃଙ୍ଖଳ ହୋଇଉଠେ। ହାତପାହାନ୍ତା ଇତିର ଏଣେ ତେଣେ ହାତ ଛୁଇଁଯାଏ।

ତେଣୁ ଇତି ଝରକା ପାଖ ଟେବୁଲରେ ବସେ। ରାସ୍ତାରେ ଯାଉଥିବା ଲୋକଙ୍କୁ ଓ ଘରର କବାଟର ଆଡ଼େ ସେ ଲକ୍ଷ୍ୟ କରେ ଏବଂ ସନ୍ତର୍ପଣରେ ମୋ ସହ ସେଇ ସବୁ ଗପ କରେ। କାନ୍ଥରେ ଟ୍ରାଫିକ ପୋଲିସର ହାତପରି ହାତ ଦିଟା ମୁହୂର୍ତ୍ତର ଯାନବାହନମାନଙ୍କୁ ଏଣେ ତେଣେ ଛାଡ଼ିଦିଏ। ମୁଁ ସଚେତନ ହୁଏ। ଉଠେ। ଇତିକୁ ସେ ଘରର ଅନେକ ଭାଇ ଭଉଣୀର ଜଙ୍ଗଲରେ ଛାଡ଼ି ଏକ ରାସ୍ତା ଉପରେ ଅଚିହ୍ନା ମଣିଷର ଜଙ୍ଗଲକୁ ବାହାରି ଆସେ।

ଆଜି ଏ ସହରରେ କର୍ଫ୍ୟୁ ଜାରୀ ହୋଇଛି। ରାସ୍ତାରେ ଭାରି ବୁଟର ଆୱାଜ, ଆଉ ଘନ ଘନ ହୁଇସଲ୍। ପ୍ରାଦେଶିକ ତିକ୍ତତା। କିଛି ସମୟ ପୂର୍ବରୁ କୋଳାହଳ ଥିଲା, ହସ ଥିଲା, ଆଗକୁ ବଢ଼ିଯିବାର ଇଚ୍ଛା ଥିଲା, କିନ୍ତୁ ତରଳି ଯାଇଛି ସଂପାଦକୀୟ ଅକ୍ଷରଗୁଡ଼ା। କ୍ରମେ ସେମାନେ ମଣିଷ ହୋଇଯାଇଛନ୍ତି। ସେ ମଣିଷଙ୍କ ହାତରେ ଟେକାପଥର। ଫିଙ୍ଗିବାକୁ ଆରମ୍ଭ କଲେ ସେମାନେ। ଦୋକାନର ସ୍କାଇଲାଇଟ୍ ଝମ୍‌ଝମ୍ ହୋଇ ଭାଙ୍ଗିଯାଇଛି। କାହାର ମୁଥା ବାଜି ଦୋକାନୀ ନାକରେ ଟିଉବ୍‌ୱେଲରୁ ପାଣି ବହିବା ପରି ଭକ୍ କରି ରକ୍ତ ଉଚ୍ଛୁଳି ଆସୁଛି। ଟିଅରଗ୍ୟାସ୍। ଚାରିଆଡ଼େ ଧୂଆଁ ଆଉ ଧୂଆଁ। ଫାୟାରିଂ। ଏଣେ ତେଣେ ଧାଁ ଦଉଡ଼ ଆରମ୍ଭ ହୋଇଛି। ସେ ଗଳି ମୁଣ୍ଡରେ ସ୍ତ୍ରୀ ଲୋକଟା ତା'ର ଲଙ୍ଗଳା ଛୁଆକୁ ଫାଳେ ଅଣ୍ଟାରେ ଜାକି ଆତଙ୍କରେ ଦଉଡୁଛି। ବର୍ଷା ଆସୁଛି ବୋଧହୁଏ। କେମିତି ଏକ ଭିନ୍ନ ପ୍ରକାର ପବନ। ଧୂଳି ଉଡୁଛି। ଧୂଳି ଭିତରେ ଏଣେ ତେଣେ ଧାଁ ଦଉଡ଼ା। ମୁଁ ସାଇକେଲ ନେଇ ରାସ୍ତା କଡ଼ର ନର୍ଦ୍ଦମା ପାଖକୁ ଘୁଞ୍ଚିଯାଉଛି। ନର୍ଦ୍ଦମାର ଦୁଇପଟରେ ଦୁଇଟି ଗୋଡ଼ ରଖି ସାଇକେଲଟାକୁ ଅଣ୍ଟାରେ ଜାକି ଆତଙ୍କରେ ଛିଡ଼ା ହୋଇଛି। ମୁଁ ସାଇକେଲ ଚଢ଼ିପାରୁନାହିଁ କିମ୍ବା ସାଇକେଲ ଧରି ଆଗକୁ ଦୌଡ଼ି ପାରୁନାହିଁ। ଧୂଳିରେ ରାସ୍ତାକଡ଼ର ଆଲୁଅ ଭୋରର କୁହୁଡ଼ିଭିଜା ଲାଇଟ୍‌ପୋଷ୍ଟ ଭଳି ଫିକା ଦେଖାଯାଉଛି। ସାତଟାରେ କରଫ୍ୟୁ ଜାରି ହେବ। ସାତଟା ବାଜିବାକୁ ଆଉ ସାଢ଼େ ତିନିମିନିଟ୍ ବାକୀ। ସାଢ଼େ ତିନିମିନିଟ ପରେ ରାସ୍ତାଘାଟ, ଦୋକାନବଜାର ସବୁ ନିଶୂନ ହୋଇଯିବ। ମୁଁ ଦେଖୁଛି ଜଣେ ଖୁବ୍ କଳା ପୋଲିସ ମୋ ଆଡ଼କୁ ଲାଠି ଉଞ୍ଚେଇ ଧାଇଁ ଆସୁଛି। ମୁଁ ଘୁଞ୍ଚି ପାରୁନି। ମୋ ଅଣ୍ଟା ଉପରେ ସାଇକେଲ। ମୋର ଦୁଇପାଦ ତଳେ ନର୍ଦ୍ଦମାର କଳାପାଣି। ସେଥିରେ ପାଖ ଜଳଖିଆ ଦୋକାନରୁ ଠେଲି ହୋଇ ଆସିଥିବା କେତେଟା କଞ୍ଚା ଶାଳପତ୍ରର ଦନା। ବାୟୁମଣ୍ଡଳରେ ଅନେକ ରୋଗ ଜୀବାଣୁ ଧୂଳିକଣା ସହ ମୋ ଫୁସ୍ ଫୁସ୍ ଭିତରକୁ ଚାଲିଯାଉଛନ୍ତି। ଖୁବ୍ ଶୀଘ୍ର ମୋର ହୁଏତ ଏକ ଦୁରାରୋଗ୍ୟ ବ୍ୟାଧି ଆରମ୍ଭ ହୋଇଯିବ। ତେଣେ ଔଷଧ ଦୋକାନର ତାଲାରେ ଶୀଘ୍ର ଚାବି ଘୂରିଯାଉଛି। ହଠାତ୍ ଚାବିଟା ତାଲାର ଅନ୍ଧକାର ଗର୍ଭରୁ ବାହାରି ଆସିପାରୁନି । କିଛିଦୂର ପୁଣି ଓଲଟାପଟେ ଘୂରୁଛି ଚାବିଟା। ତା'ପରେ ତାଲାର ଅନ୍ଧକାର ଗର୍ଭରୁ ନିଜକୁ ମୁକୁଳାଇ ଆଣୁଛି। ଗୋଟିଏ ବାଁ ହାତ

ଚାବିଟାକୁ ଧରି ଡାହାଣ ହାତଟା ତାଲାଟା ଟାଣି ପରୀକ୍ଷା କରି ନେଉଛି ବନ୍ଦ ହେଲା କି ନା ଜାଣିବାକୁ। ସାମ୍ନାର କଳ ପୋଲିସ ବାଡ଼ି ଉଞ୍ଚେଇ ମୋ ଆଡ଼କୁ ଧାଇଁ ଆସୁଛି। କୁକୁରଟା ତା'ର ଦି'ଟା ଆଗ ଗୋଡ଼ ନର୍ଦ୍ଦମା ଭିତରକୁ ପୂରେଇ ଓଲଟି ପଡ଼ିଥିବା କଞ୍ଚା ଦନାଗୁଡ଼ିକୁ ତା'ର ଗୋଳିଆ ମୁହଁ ନାକରେ ଓଲଟାଇ ପରୀକ୍ଷା କରି ନେଉଛି କିଭଳେ ଲାଗିଲା ଭଳି କିଛି ରହିଯାଇଛି କି ନା। ମୁଁ କୁକୁରଟିକୁ ଦେଖୁଛି, ଚାହୁଁଛି, ନିରୀକ୍ଷଣ କରୁଛି ଏବଂ ହଠାତ୍ ସଚେତନ ହୋଇ ସାଇକେଲ ନେଇ ଇତି ଘରମୁହଁ ହେଉଛି। ମୁଁ ହୁଏତ ଜାଣିପାରିଛି ସେଇଟା ନିରାପଦ ସ୍ଥାନ। ହଠାତ୍ ସାତ ବାଜିଗଲା। ସମସ୍ତେ ପୁଣି ସ୍ଥିର ନିର୍ବାକ୍ ହୋଇଗଲେ। ସଂପାଦକୀୟର ସେଇ କେତେଟା କଳା କଳା ଅକ୍ଷର ବନିଗଲେ। କିଛି ସମୟ ପୂର୍ବରୁ ସବୁ ଥିଲା, କୋଳାହଳ ଥିଲା। ସାତଟାରେ କରଫ୍ୟୁ ଜାରୀ ହୋଇଛି। ଘନ ଘନ ହୁଇସିଲ ଆଉ ଭାରି ବୁଟ୍‌ର ଶବ୍ଦ। ଯାହା ସେଇ କୁକୁରଟା ନର୍ଦ୍ଦମାରୁ ବାହାରି ଏକା ଏକା ସହର ପରିକ୍ରମା କରୁଛି।

ଯେପରି ବିଲ ମଝିରେ ଛିଡ଼ା ହୋଇଥିବା ମୂଲିଆ କାମ ବନ୍ଦକରି କପାଳରେ ହାତ ଦେଇ ଦୂର ଦିଗ୍‌ବଳୟ ତଳକୁ ଚାହେଁ, ତା'ପାଇଁ ଛ'ଘଡ଼ି ବେଳର ଭୁଜା ଆଉ ଆମ୍ବୁଲଚଟଣୀ ଆସୁଛି କି ନାହିଁ ସେହିପରି ପିମ୍ପୁଡ଼ିଟା କ୍ଷତି ପାଖରେ ଅଟକିଗଲା ଏବଂ ତା'ର ଆରପାରିକୁ ଚାହିଁଲା। ତା'ପରେ ସେଇ କ୍ଷତର ପରିଧି ମାପିଲା ତା' ଚାରିପଟରେ ଘୂରି ଘୂରି। ଦଣ୍ଡେ ଛିଡ଼ାହୋଇ ବୋଧହୁଏ ଚିନ୍ତା କଲା। ତା'ପରେ ତଳକୁ, ତା' ପରେ ସାମାନ୍ୟ ବାମକୁ, ତା'ପରେ ତଳକୁ ତା'ପରେ ଡାହାଣକୁ, ତା' ପରେ ସାମାନ୍ୟ ଉପରଆଡ଼କୁ।

କାଲି ପୂର୍ଣ୍ଣିମା। ଆକାଶରେ ଆଜି ମେଘ ଘୋଟି ଯାଇଥିଲା। ଏ ବର୍ଷର ପ୍ରଥମ ବର୍ଷା ଅସରାଏ ହୋଇଗଲା। ବର୍ଷା ବିନ୍ଦୁର ଏଇ ସାମାନ୍ୟ ଆଘାତ ବି ସହ୍ୟ କରି ନପାରି ଅନେକ ପାଚିଲା ନିମପତ୍ର ଖସ୍ ଖସ୍ ହୋଇ ଅଗଣାରେ ଖସି ପଡ଼ିଲେ। ବର୍ଷା କେତେ ଜୋରରେ ପଡୁଛି ବାହାରକୁ ହାତ ବଢ଼େଇ ମୁଁ ଦେଖୁଥିଲି। ହାତରେ ତିନି ଚାରିଟୋପା ଧୂଳିଆ ବର୍ଷାପାଣିସହ ପାଖ ନିମ୍ବଗଛରୁ ଗୋଟାଏ ପତ୍ର ଉଡ଼ିଆସି ପଡ଼ିଲା। ଇତି ମୋ ପାଖରେ ଛିଡ଼ା ହୋଇଥିଲା। ମୁଁ ଇତିକୁ ନିମ୍ବପତ୍ରଟା ଦେଇ ଦେଇଥିଲି। ଇତିବୋଉ ମୋତେ ଚାହିଁଲେ। ଏକ ଭିନ୍ନ ଧରଣର ଚାହାଣି। ବାହାରେ ଏ ବର୍ଷର ପ୍ରଥମ ବର୍ଷାବିନ୍ଦୁ କେତେ ଆଦରରେ ମାଟି ଛୁଉଁଚି ଅଥଚ ଇତିବୋଉଙ୍କ ଚାହାଣି ମୋ ଭିତରେ ଇଞ୍ଜେକସନ୍ ଭଳି ପୋଡ଼ି ହୋଇଯାଉଛି। ଇତିବୋଉ ମୋତେ ଖୁବ ଭଲପାଉଥିଲେ, ମୁଁ ଜାଣେ। ମୋର ପେଟ ରୋଗ ଅଛି ବୋଲି ସେ ନିଜେ ହୋଟେଲରେ ଖାଇବାକୁ ମନା କରିଥିଲେ। ତେଣୁ ପ୍ରତି ମାସରେ ଇତିବୋଉଙ୍କୁ ଖାଇବା ଖର୍ଚ୍ଚ ପାଇଁ କିଛି ଟଙ୍କା ଦେଇ ତାଙ୍କ ହାତ-ରନ୍ଧା ଖାଉଥିଲି। ତା'ଦ୍ୱାରା ମୋ ପେଟ ରୋଗର ନିରାକରଣ ହୁଏ ଏବଂ ପୃଥିବୀରେ ଯେ

ମୋ ପାଇଁ କେହି ଅଛନ୍ତି– ଏ ଧରଣର ଗୋଟିଏ ମିଛ ଧାଡ଼ି ତିଆରି କରି କୌଣସିମତେ ବଞ୍ଚିଯାଏ। ମୁଁ ଜାଣେ ଖାଇବାକୁ ଦେଲାବେଳେ ଇତିବୋଉଙ୍କ ଆଖିରେ ନିମଜ୍ଜନତା ଆଉ ପରିତୃପ୍ତି ଦେଖିଲେ ଖାଇବା ଛାଡ଼ି ତାଙ୍କ ପାଦ ଛୁଇଁ ପ୍ରଣାମ କରିବାକୁ ଇଚ୍ଛା ହୁଏ। ମୁଁ ଦେଖିଛି ସେ ଯେଉଁ ହାତରେ ହଳଦୀ ବାଟନ୍ତି, ପରିବା କାଟନ୍ତି, ଥାଳି ଧରି ମୋତେ ଖାଇବାକୁ ଦିଅନ୍ତି, ସେଇ ହାତରେ ତାଙ୍କ ସାନପୁଅକୁ ଶୌଚ କରାଇ ମାଟିରେ ହାତ ଘଷନ୍ତି। ତଥାପି ମୁଁ ଏକ ଅସମ୍ଭବ ପରିତୃପ୍ତି ନେଇ ଖାଏ। କାରଣ ଏ ସହରରେ ମୁଁ ଏକା ଏକା ଖରା, ବର୍ଷା, ଶୀତ, କାକରରେ ଘୂରିବୁଲେ ଗୋଟିଏ ମାତୃମୂର୍ତ୍ତି ପାଇଁ ଏବଂ ଅନେକ ସମୟରେ ଇତି କୋଳରେ ମୁହଁ ରଖି ଦେଖେ ଯେ ଅନେକ ନୀରବ ସଂଳାପ ମୋ ଭିତରେ ଖଇ ଭଳି ଫୁଟିଯାଉଛି, କିନ୍ତୁ ଆଜି ଯାହା ଘଟିଗଲା ସେଥିପାଇଁ ଇତିବୋଉ ଆଗଭଳି ଭଲ ପାଉନାହାନ୍ତି।

ସେ କୁକୁରଟା ସହରର ଠିକ୍ ସିନେମା ଛକରେ ଛିଡ଼ାହୋଇ ଏଣେ ତେଣେ ଦେଖିଲା ଓ ଆଶ୍ଚର୍ଯ୍ୟାନ୍ୱିତ ହେଲା। ଯେତେବେଳେ ଲୋକମାନେ ଏଣେ ତେଣେ ଧାଁ ଦଉଡ଼ କରୁଥିଲେ ସେତେବେଳେ ସେ ନର୍ଦ୍ଦମାରେ ଅଧେ ପଶିଯାଇ ସବୁ ଦନାକୁ ଓଲଟାଇ ଶୁଙ୍ଘୁଥିଲା, ଚାଟୁଥିଲା, କିନ୍ତୁ ତା' ପାଇଁ ଏବେ ସାରା ସହରର ଅନେକ ଦନା ଏଣେ ତେଣେ ପଡ଼ିଛି, ସେ କିନ୍ତୁ ସେପଟେ ଆଦୌ ଚାହୁଁନି। କାହିଁକି କେଜାଣି ସେ ଅନୁଭବ କଲା ଯେ, ତା' ଦେହରେ ଗୋଟିଏ ଅଜବ ନିଃସଙ୍ଗତା ଧୂଳିପରି ଲାଗିଯାଇଛି। ସେ ଆଗଗୋଡ଼ ଦୁଇଟିକୁ ଆଗକୁ ନେଲା। ଦଣ୍ଡ ମାରିବା ଭଙ୍ଗୀରେ ଦେହଟା ଲମ୍ବେଇ ନେଇ ଥରେ ଝାଡ଼ି ହେଲା। ତା'ପରେ ତା'ର ସ୍ୱଭାବସୁଲଭ ଭଙ୍ଗୀରେ କିଛିଦୂର ଦୌଡ଼ିଗଲା। ହଠାତ୍ ବସିପଡ଼ି ବାଙ୍କିଯାଇ ଲାଞ୍ଜ ପାଖର ବାଳକୁ ଦାନ୍ତରେ କର୍‌ର କର୍‌ର କରି କାମୁଡ଼ିବା ଭଙ୍ଗୀରେ କୁଣ୍ଡାଇ ହେଲା। ଗୋଟିଏ ଜାଗାରେ ଅଟକି ଯାଇ ସିନେମା ପୋଷ୍ଟର ଦେଖିଲା। ସେ ବୋଧହୁଏ ଭାବିଲା, ଏ ସହରର ସମସ୍ତେ ଛବି ହୋଇଗଲେ। ପାଖ ଘର ଉପର ମହଲାର ଗୋଟିଏ କୋଣରେ ଟୁକ୍ କରି ଆଲୁଅ ଜଳି ଉଠିଲା। ତା'ପରେ ଉପର ପାଇପ୍‌ରୁ କିଛି ପାଣି ତଳ ନର୍ଦ୍ଦମା କଡ଼ରେ ଥିବା ସିମେଣ୍ଟ ବନ୍ଧ ଉପରେ ପଡ଼ି ଏକ ଚଡ଼୍ ଚଡ଼୍ ଶବ୍ଦ ତରଙ୍ଗ ସୃଷ୍ଟି କଲା। କୁକୁରଟା ସେଇ ଉଦ୍ଦେଶ୍ୟରେ ଦୁଇଚାରିପଦ ଆଗେଇଯାଇ ଦେଖିଲା ଉପର ମହଲାର ସେଇ କୋଣର ଆଲୁଅ ଟୁକ କରି ଲିଭିଗଲା। ସେ ବୋଧହୁଏ ଠିକ୍ ଠିକ୍ ବୁଝିନେଲା ସେଇଟା ରୋଷେଇ ଘର ନୁହେଁ, ପରିସ୍ରାଗାର। ରାସ୍ତାରେ ହୁ କରି ପୋଲିସ ଗାଡ଼ିଟା ଆଗକୁ ମାଡ଼ିଗଲାବେଳେ ରାସ୍ତାକଡ଼କୁ ଘୁଞ୍ଚିଗଲା ସେ।

ଇତି ବର୍ତ୍ତମାନ ରୋଷେଇ ଘରେ ବୋଉ ପାଖରେ ବସି ରୁଟି ବେଲି ଦେଉ ଦେଉ ରେଡ଼ିଓରୁ ସମ୍ବାଦ ଶୁଣୁଛି। ଚାରିଆଡ଼େ ସେଇ କରଫ୍ୟୁର ସମ୍ବାଦ। ବର୍ଷା ପରେ

ବାହାରେ କିନ୍ତୁ ଭୀଷଣ ଜହ୍ନ ପଡ଼ିଥିବ। ଅପା ନିଶ୍ଚୟ ରେଡ଼ିଓରୁ ଶୁଣି ସାରିଥିବ ସହରରେ ସାନ୍ଧ୍ୟଆଇନ ଜାରୀ, ପୋଲିସର ଲାଠିଚାଳନା। ଲୁହବୁହା ଗ୍ୟାସ। ସେ ନିଶ୍ଚୟ ଅନ୍ଧକାର ବାରନ୍ଦାରେ ଗୁମ୍ ହୋଇ ଏଇ ସହରଆଡ଼େ ମୁହଁକରି ବସିଥିବ। ପିଣ୍ଡା ତଳେ ସେଇ ନାଲି ବୁଢ଼ା କୁକୁରଟା ଶୋଇଥିବ। ଚାଳ ଉପରେ ନାଉ ଗଛର ପତ୍ରସବୁ ପବନରେ ଫଡ଼ଫଡ଼ ଶବ୍ଦ କରୁଥିବେ। ବର୍ଷାଟା ବୋଧହୁଏ ସେଠି ବି ଛାଡ଼ିଯାଇଥିବ। ଭିଜା ପବନଟା ଦେହରେ ବାଜି କେମିତି ଶୀତ ଶୀତ ଲାଗୁଥିବ । ସାନ ଭଉଣୀଟା ଚୂଲି ପାଖରେ ବସି ଚଟୁରେ ଭାତହାଣ୍ଡିରୁ ଗୋଟେ ଯୋଡ଼େ ଭାତ କାଢ଼ି ଚିପି ଦେଖୁଥିବ। ଫୁଟିଲା ଭାତର ଗନ୍ଧରେ ପେଟର ଭୋକଟା କେମିତି ସୁନ୍ଦର ଜମିଆସେ ସେ କଥା ଅପା ବୋଧହୁଏ ବୁଝିପାରୁ ନଥିବ। ମୋ' ପେଟରେ କିନ୍ତୁ ଭୋକଟା ଭୀଷଣ ଜମି ଆସୁଛି। କିନ୍ତୁ ବାହାରେ ଜହ୍ନ, ଜହ୍ନ ଭିତରେ ହୁଇସିଲ ଆଉ ପୋଲିସ ଗାଡ଼ିର ଶବ୍ଦ। ଇତିର ରେଡ଼ିଓରୁ କେମିତି ଏକ ପ୍ରକାର କରୁଣ ସଙ୍ଗୀତ ଆରମ୍ଭ ହୋଇଛି। ଏଇ ସ୍ୱରଟା ଖୁବ୍ ଦୂରରୁ ଶୁଣିଲେ ଭୀଷଣ କାନ୍ଦ ଲାଗେ।

କାନ୍ଥରେ ସେ କ୍ଷତ ଚିହ୍ନଟା ଭୀଷଣ ବୀଭତ୍ସ। ଗର୍ତ୍ତଟାର ଭିତର ଭୀଷଣ ଅନ୍ଧକାର। ପିମ୍ପୁଡ଼ିଟା କୁଆଡ଼େ ଗଲା କେଜାଣି। ସେହି ଅନ୍ଧକାର ଗହ୍ୱରରେ ପଶିଗଲା କି! କ'ଣ ଖୋଜୁଛି ସେ? ଇତସ୍ତତଃ ହୋଇ କେବଳ ଅନ୍ୱେଷଣ। ଖାଦ୍ୟ ତ ଖୋଜୁନାହିଁ ନିଶ୍ଚୟ। ସେ ବୋଧହୁଏ ଜାଣିଛି କାନ୍ଥର ଏ ସ୍ଥାନରେ ଅନ୍ୟ ସବୁ କିଛି ମିଳିପାରେ, କିନ୍ତୁ ଖାଦ୍ୟ ମିଳିବ ନାହିଁ। କାନ୍ଥର ଏଇଠି ଦିନେ ସମୟକୁ ଫାଶିଦେଲା ପରି ସମୟକୁ ଟଙ୍ଗେଇ ଦିଆଯାଇଥିଲା। ସେ ସମୟ ଅନେକ ଦିନରୁ ମରିଶୁଖି ପୁରୁଣା ହୋଇଗଲାଣି। ସେଇ ପୁରୁଣା ଛବିଟା ଇତିର ଇତିହାସ ବହିର ମଲାଟ ହୋଇ ସାରିଛି। କାନ୍ଥରେ କାଳିଦାଗ। ଇତି କ'ଣ ଏଇ ବିଛଣାରେ ବସି ମୋ ପାଖକୁ ଚିଠି ଲେଖୁଥିଲା? ଆଉ ଅନ୍ୟମନସ୍କ ହୋଇ କାନ୍ଥରେ ତା'ର ଆଙ୍ଗୁଠି ପୋଛି ଦେଇଛି? ରୋଷେଇଘରେ ହସୁଛି । ହସ ତା'ର ପରିଷ୍କାର ଶୁଣାଯାଉଛି। ରୁଟି ଗୋଲ୍ କରୁ କରୁ ଇତି ତା' ବୋଉର ଆମ ପ୍ରତି ହୋଇଥିବା ସନ୍ଦେହକୁ ଗୋଲ କରି ଦେବାର ଚେଷ୍ଟା କରୁଛି। ମୁଁ ଦିନେ ଚୂଲି ପାଖରେ ଆଖି ବନ୍ଦକରି ବସି ହୁତ ହୁତ୍ କରି ଚୂଲି ଜଳିବାର ଶବ୍ଦ ସ୍ପଷ୍ଟ ଶୁଣିପାରିଥିଲି। ବର୍ତ୍ତମାନ କାନ ଡେରି ଶୁଣୁଛି ମୋର ଖୁବ୍ ସେଇ ଶବ୍ଦଟା ଅବିକଳ ଉଠି ଆସୁଛି, କିନ୍ତୁ ପିମ୍ପୁଡ଼ିଟା କୁଆଡ଼େ ଗଲା?

ମୁଁ ଅନେକ ଦିନରୁ ଗାଁକୁ ଯାଇନି। ଅପା ଜାଣେ ମୋତେ ସମୟ ହୋଇନି କିମ୍ବା ଅଫିସରୁ ଛୁଟି ମିଳିନି। ମୁଁ ସେଇ ପ୍ରକାର ଲେଖି ଦ୍ୱିପ୍ରହରରେ ରାସ୍ତାକଡ଼ ନିଃସଙ୍ଗ ନାଲି ଡାକବାକ୍ସରେ ଚିଠିଟା ପକାଇ ଦେଇ ହଠାତ୍ ଅନ୍ୟମନସ୍କ ହୋଇ କିଛି ସମୟ ଛିଡ଼ା ହୋଇପଡ଼ିଥିଲି। ସେହି ଦ୍ୱିପ୍ରହରରେ ସବୁ ହଠାତ୍ ଅନ୍ଧକାର ହୋଇ ମୋ ଭିତରେ ବିଜୁଳି

ମାରିଲା ପରି ସେଇ କଥାଟା ଚମକି ଉଠିଥିଲା ମୁହୂର୍ତ୍ତକ ପାଇଁ। ସେଇ ଝଲକରେ ଦେଖିଥିଲି, ଅପା ମୋ ଉପରେ ବିରକ୍ତ ହୋଇ ଉଠୁଛି ଟଙ୍କା ପାଇଁ। ମୁଁ ସେତେବେଳେ ଅବଶ୍ୟ ଚାକିରି ପାଇ ନଥିଲି। ମୁଁ ଅବଶ୍ୟ ଯେତେଦିନ ଚାକିରି ପାଇ ନଥିଲି ସେତେଦିନ ପର୍ଯ୍ୟନ୍ତ ଘରକୁ ଯିବାକୁ ଅପା ଲେଖୁ ନଥିଲା। କେବେ କେମିତି ଯାଇ ପହଞ୍ଚିଗଲେ ଅପା ମୋ ଉପରେ ଭୀଷଣ ରାଗୁଥିଲା ଏବଂ ତୋ ଭଳି ପିଲା 'ବଞ୍ଚି କେତେ ମରି କେତେ' ଧରଣର ଅନେକ ମନେ ରଖିଲା ଭଳି କଥା ମୋତେ କହୁଥିଲା। ମୁଁ ଜାଣେ, ଅପା ବି ଆଉ କ'ଣ କରନ୍ତା ! ବିଧବା ହୋଇଗଲା ପରେ ସେ ଆମ ଘରେ ଅଛି। ସାନ ଭଉଣୀଟାର ଯତ୍ନ ନିଏ ଆଉ ଜମିର ଧାନ ଭାଗ ନେଇ ଚଳିଯାଏ– ବାପା ମା' ମଲା ପରେ ସେହି ଘରଟା ସମ୍ଭାଳୁଛି ଆଉ ମୁଁ ପୃଥିବୀର ଅନେକ ଅଚିହ୍ନା ସ୍ତ୍ରୀ ଲୋକଙ୍କୁ ମା, ବୋଉ, ମାଉସୀ ଇତ୍ୟାଦି କହି ଏଣେ ତେଣେ ବୁଲୁଛି। ଯାହାହେଉ ଚାକିରି କରି ପ୍ରଥମ ମାସ ତିନି ଅଙ୍କର ଟଙ୍କାଟା ପଠାଇଲା ପରେ ଅପାଠୁଁ ଅନେକ ଚିଠି ପାଇଲି ଘରକୁ ଯିବା ପାଇଁ।

କିନ୍ତୁ ମୋର ଆଉ ଯିବାକୁ ମନ ହୋଇନାହିଁ। ନିହାତି ଦର୍କାର ଆସିଲେ ହୁଏତ ଯାଏ। କେବଳ ଟଙ୍କା ପଠାଇ ଦେଲେ ବେଶ୍ ଚଳିଯାଏ। ମୁଁ ଥରେ ଥରେ ଭାବେ ମା' ବାପା ବଞ୍ଚିଥିଲେ ମୋ ଜୀବନ ହୁଏତ ଭିନ୍ନପ୍ରକାର ହୋଇଥାନ୍ତା। ମୁଁ ଏତେ ଯନ୍ତ୍ରଣା ପାଆନ୍ତି ନାହିଁ କିମ୍ବା ଇତି ଓ ଇତିବୋଉଙ୍କ ଉପରେ ଆଜି ମୋ ବଞ୍ଚିବା ଦାୟିତ୍ୱ ନ୍ୟସ୍ତ କରନ୍ତି ନାହିଁ। ତେଣୁ କେବେ ଗଲେ କାମର ଆଳକରି ଶୀଘ୍ର ଶୀଘ୍ର ବାହାରେ। ଘରର ସେଇ ବୁଢ଼ା କୁକୁର ଅପା ପଛେ ପଛେ ମୋ ସହ ନଈକୂଳ ପର୍ଯ୍ୟନ୍ତ ଆସେ। ନଈ କୂଳରେ ମୁଁ ଡଙ୍ଗା ଚଢ଼େ। ଅପାର ଧଳା ମୂର୍ତ୍ତି ବାର୍ନିସ୍ ଭଳି ଚିକ୍ ଚିକ୍ କରେ। କ୍ରମେ କ୍ରମେ ଦୂରକୁ ଘୁଞ୍ଚିଯାଏ। ବୁଢ଼ା କୁକୁରଟା କ୍ରମେ ଅଦୃଶ୍ୟ ହୋଇଯାଏ। ମୁଁ ଜାଣେ, ବର୍ତ୍ତମାନ ଜହ୍ନ ଆଲୁଅକୁ ଚାହିଁ ଅପା ମୋ କଥା ଚିନ୍ତା କରୁଥିବ, ଆଉ କୁକୁରଟା ପିଣ୍ଡା ତଳେ ଶୋଇ ଏଣେ ତେଣେ ଖୁସ୍‌ଖାସ୍ ଶବ୍ଦକୁ କାନ ଡେରୁଥିବ।

ଆଜି ଇତି କୋଳରୁ ମୁହଁ ଉଠାଇ ନେଲା ବେଳେ ଇତିବୋଉ ଘର ଭିତରକୁ ପଶି ଆସିଥିଲେ। ତା'ପରେ ହଠାତ୍ ଦୁଇପାଦ ପଛକୁ ଯାଇ ଘରୁ ନିଷ୍କ୍ରାନ୍ତ ହୋଇଗଲେ। ମୁଁ ଇତି ଘରକୁ ଆସେ ଇତି କୋଳରେ ମୁଣ୍ଡ ରଖିବା ପାଇଁ, ଆଉ ଇତିବୋଉଙ୍କ ହାତପରଶା ଖାଇବା ପାଇଁ। ଦୂର ଗାଁର ଭାତର ଗନ୍ଧ, ନାଉ ଗଛରେ ପବନର ଶବ୍ଦ, ଟଗର ଫୁଲପରି ଜହ୍ନ, ଖାଇବା ପାଖରେ ବସି ଅପାର କେବଳ ଟଙ୍କା ପଇସା କଥା ଶୁଣିବା ଛାଡ଼ି ଏ ନିଃସଙ୍ଗ ସହରରେ ଇତି ଓ ଇତିବୋଉର ସ୍ନେହରେ କିଛିଟା ବଞ୍ଚି ଯାଉଥିଲି। ଆଜି କିନ୍ତୁ ବୋଧହୁଏ ସବୁ ଶେଷ ହୋଇଗଲା। ମୁଁ ପୁଣି ଖରା, ବର୍ଷା, ଶୀତରେ ବୁଲିବି। ଯେଉଁଠି ଯାହା ପାଇବି ଖାଇବି। ମୋ ପେଟର ରୋଗ ବଢ଼ାଇବି। ପୁଣି ସେଇ ପୁରୁଣା ଧାଡ଼ି 'ମୋ ପାଇଁ ପୃଥିବୀରେ କେହି ନାହିଁ' ତିଆରି କରିବି। ଇତି କିନ୍ତୁ ଚାହେଁ ଯେ ମୁଁ ଯେପରି ଦୀର୍ଘଦିନ

ସୁସ୍ଥ ଦେହରେ ବଞ୍ଚି ରହେ। ତେଣୁ ଇତିବୋଉ ଭୀଷଣ ବିରକ୍ତ ହେଉଛନ୍ତି ଏବଂ ଇତି ଭୀଷଣ ଜୋରରେ ହସୁଛି ବୋଉକୁ ଭୁଲାଇବା ପାଇଁ। ଇତିର ହସ ଏ ଘରକୁ ପରିଷ୍କାର ଶୁଣାଯାଉଛି। ମୁଁ କିନ୍ତୁ ଆଉ ଏକ ପ୍ରକାର ଶବ୍ଦ ଶୁଣିପାରୁଛି। ଚୁଲିରେ କଞ୍ଚାକାଠ ଜାଳିଲେ କେମିତି ଏକ ପ୍ରକାର ସୁଁ ସୁଁ ହୋଇ ପାଣି ବାହାରେ, ସେହି ପାଣି ବାହାରିବାର ଶବ୍ଦ।

କୁକୁରଟା ଘଡ଼ି ଦୋକାନ ପାଖରେ ଠିଆହୋଇ ଶୁଣିଲା ଅନେକ ଘଡ଼ିର ଢଂ ଢଂ ଶବ୍ଦ। ଏଇ ସମୟରେ ସିନେମା ଭାଙ୍ଗେ। ଅନେକ ଯୋଡ଼ା ଯୋଡ଼ା ଦଳ ନାରୀ ପୁରୁଷ, ବାଳକ ବାଳିକା ସିନେମା ଗପ କରି ହସି ହସି ଏଇ ରାସ୍ତାରେ ଆଗେଇ ଯାଆନ୍ତି। ରାସ୍ତାକଡ଼ରେ ଛିଡ଼ା ହୋଇ ମୁଁ ସେସବୁ ଲକ୍ଷ୍ୟ କରେ। କେବେ ଘଡ଼ି ଦୋକାନରୁ ଅନେକ ଘଡ଼ିର ଏକକାଳୀନ ଢଂ ଢଂ ଶବ୍ଦ ସେ ଶୁଣିପାରିନାହିଁ। ସହରର ସ୍ରୋତକୁ ଆଇନ ବଳରେ ଅଟକାଇ ଦିଆଗଲା, କିନ୍ତୁ ସମୟର ସ୍ରୋତଟା ବହିଗଲା। କୁକୁରଟି ଚାହିଁ ଦେଖିଲା, ତା' ଆଡ଼କୁ ସେଇ ପାଗଳଟା ଟଳି ଟଳି ଆସୁଛି। ଯିଏ ରାସ୍ତା କଡ଼ରେ ବସି ଖାଇଲା ବେଳେ ତା'ଆଡ଼େ ଖଣ୍ଡିଏ ହଳଦିଆ ଆଳୁ ଓ ଖଣ୍ଡେ ରୁଟି ଫୋପାଡ଼ିଦିଏ। ପାଗଳଟା ପାଖେଇ ଆସିଲା ଓ କୁକୁରଟାକୁ ଚାହିଁଲା। ପୋଲିସ ଛଡ଼ା ରାସ୍ତାରେ ଆଜି ସେ ହିଁ ତା'ର ପ୍ରତିଦ୍ୱନ୍ଦ୍ୱୀ। ସେ ଭଙ୍ଗା ଇଟା ଖଣ୍ଡେ ଉଠାଇଲା ଓ କୁକୁରଟି ଆଡ଼େ ଫିଙ୍ଗିଲା। କୁକୁରଟି ଆଳୁ ବା ରୁଟି ଭାବି ଦୌଡ଼ିଯାଇ ତାକୁ ଶୁଙ୍ଘିଲା। କିନ୍ତୁ ପାଗଳଟି ରାସ୍ତା ଉପରୁ ଆଉ ଗୋଟିଏ ପଥର ଉଠାଇବା ମାତ୍ରେ ସେ ଦୌଡ଼ିଲା। ପାଗଳ ବି ଛୁଟିଲା। ତାକୁ ସେ ଆଜି ଗୋଡ଼େଇ ଗୋଡ଼େଇ ମାରିବ। ଆଗରେ କୁକୁର, ପଛରେ ପାଗଳ। କୁକୁର ଗଳି ଭିତରେ ପଶିଲା, ପାଗଳ ବି। କରଫ୍ୟୁର ରାସ୍ତା ଉପରୁ ଏକମାତ୍ର କୁକୁରଟା ପାଗଳଟାକୁ କୁଆଡ଼େ ତଡ଼ି ନେଇଗଲା। ରାସ୍ତା ଉପରେ କେବଳ ନିଃସଙ୍ଗ ଧୂଳି, ସିଗାରେଟ୍ ଖୋଳ ଓ କେତେଟା ଶାଳପତ୍ର ଆଉ ଗୋବର।

ଇତି ଘର ଭିତରକୁ ପଶିଆସିଲା। ମୁଁ ପିମ୍ପୁଡ଼ିଟାକୁ ଲକ୍ଷ୍ୟ କରୁଥିଲି। କାଳିଦାଗ ପାଖରେ ରହି ସେଇ କ୍ଷତଚିହ୍ନ ଆଡ଼େ ଚାହିଁଛି। ତା' ପରିବାରର, ତା' ଗୋଷ୍ଠୀର, ଅନ୍ୟମାନେ ନାହାନ୍ତି? ଇତି କହିଲା–"ହେଲା ନାହିଁ। ବୋଉକୁ ଆଉ ପାରିଲି ନାହିଁ। ସିଧା କହିଦେଲା ତାକୁ କହ କାଲିଠାରୁ ସେ ବାହାରେ ଖାଉ। ମୁଁ ଆଉ ପାରିବି ନାହିଁ। ମୁଁ ବୋଉକୁ ବୁଝାଇଲି– ହୋଟେଲରେ ଖାଇଲେ ଯେ ତା'ର ପେଟ ରୋଗ ବାହାରିବ। ବୋଉ କହିଲା – ତା' କଥା ସେ ବୁଝିବ, ତୁ ଚୁପ୍‌କର। ମୋ ରାଣ, ତୁମେ କିଛି ଭାବ ନାହିଁ। ହାତରେ ରାନ୍ଧି ଖାଅ। ଚାକିରି ତ କରୁଛ, ଚିନ୍ତା କାହିଁକି? ବଞ୍ଚିବାକୁ ତ ହେବ।" ମୁଁ ଦେଖିଲି ପିମ୍ପୁଡ଼ିଟା ସେଇ ବୀଭତ୍ସ କ୍ଷତ ଆଡ଼କୁ ମୁହଁ କରି ଯେପରି ନୀରବରେ ଚିତ୍କାର କରୁଛି। ଇତି କାନ୍ଥରେ କାଳି ପୋଛିଲା ପରି ମୁଁ ବି ଆଙ୍ଗୁଠିରେ ପିମ୍ପୁଡ଼ିଟାକୁ କାନ୍ଥରେ ଲେସିଦେଲି। ଗୋଟିଏ କଳାଟିଆ ନାଲି ସରଳରେଖା ଟାଣି ହୋଇଗଲା। ମୁଁ ଇତିକୁ କହିଲି, କାଲି ସକାଳ ହେଲେ ମୁଁ ଏ ବିଛଣାରୁ ଉଠି ଚାଲିଯିବି। ଆଜି ଯେ କରଫ୍ୟୁ।

କୁକୁରଟା ଦୌଡ଼ି ଦୌଡ଼ି ଏଇ ଝର୍କା ପର୍ଯ୍ୟନ୍ତ ଆସିଥିଲା। ବୋଧହୁଏ ଏଟା ନିରାପଦ ସ୍ଥାନ ଭାବି। କିନ୍ତୁ କୁକୁରଟା ଆଡ଼େ ପାଗଳ ସେଇ ପଥରଟା ଫିଙ୍ଗିଦେଲା। କୁକୁରଟା ଏଇ ଝର୍କା ସେପଟେ କେଁ କରି ଶବ୍ଦ କଲା, କୁକୁରଟା ଜଖମ ହୋଇଗଲା। ଅପାର କୁକୁରଟା ବୁଢ଼ା ହୋଇଯାଇଛି। ମୋ ଭିତରେ ସହରଟା ନିଃସଙ୍ଗ ହୋଇ ଆସୁଛି। କାଲିଠୁଁ ମୋ ସହରରେ କରଫ୍ୟୁ। ସେ ସହରରେ ମୁଁ ଉଠି ଦୌଡ଼ିବା ଆରମ୍ଭ କରିଛି। ମୋ ଦେହରେ ଚିରା କୋତରା କାମିଜ– ମୋ ଗାଲ ଉପରେ ଯେଉଁଠି ଲୁହସବୁ ଅଠାଭଳି ବସି ଯାଇଥିଲା ସେଠି ଏବେ ଲମ୍ବା ଲମ୍ବା ଦାଢ଼ି। ମୋ ହାତରେ ଇଟା। ମୁଁ ଗୋଟିଏ କୁକୁରକୁ ତଡ଼ୁଛି ସହରର ଏ ଗଳି ସେ ଗଳି। ମୁଁ କ୍ରମେ ଅନୁଭବ କରୁଛି ମୋ ଦାନ୍ତ, ପାଟି ଲମ୍ବାଳିଆ ହୋଇଯାଉଛି। ନାକଟା ଗୋଜିଆ ହୋଇ ଆଗକୁ ବାହାରି ଯାଉଛି। ଆଶ୍ଚର୍ଯ୍ୟ, ମୋ ପଛରେ ଗୋଟିଏ ବଙ୍କା ଲାଞ୍ଜ ହଲୁଛି। ମୋ ପଛରେ ପାଗଳ, ହାତରେ ପଥର। ମୁଁ ଦୌଡ଼ୁଛି ଆଲୁଅରୁ ଅନ୍ଧାରକୁ। ତଥାପି ପାଗଳ ସେଇଟା ଫିଙ୍ଗିଦେଲା ମୋ ଉପରକୁ। ମୁଁ ନୀରବରେ ଚିତ୍କାର କଲି। ଇତିବୋଉ ଇତିକୁ ଡାକିଲେ। ଇତି ଚାଲିଗଲା।

ଠିକ୍ ସମୟରେ କରଫ୍ୟୁ ଜାରୀ ହୋଇଛି। ଆଜି କରଫ୍ୟୁ ଜାରୀ ହୋଇନଥିଲେ ଏଇ ସହରଟା ହୁଏତ ଧ୍ୱଂସ ପାଆନ୍ତା ନାହିଁ, କିନ୍ତୁ ମୋ ଭିତର ସହରଟା ଯେ ସଂପୂର୍ଣ୍ଣ ଧ୍ୱଂସ ପାଇଯାନ୍ତା। କାଲି ସକାଳ ହେଲେ ମୁଁ ଏ ବିଛଣା ଏ ତକିଆର ଗନ୍ଧ ଛାଡ଼ି କୁକୁର ଓ ପାଗଳ ଭଳି ରାସ୍ତାକୁ ଓହ୍ଲାଇଯିବି। ଅସମ୍ଭବ ଭାବରେ ମୁକ୍ତ ହୋଇ ଏ ସହରର ସୌଖୀନ ସିନେମା ପୋଷ୍ଟର ଦେଖିବି। ଦେଖିବି ମଣିଷମାନଙ୍କୁ କିପରି ବିଜ୍ଞାପନ କରି କାନ୍ଥରେ ଟଙ୍ଗେଇ ଦିଆଯାଇଛି। ଆଜି ରାତିଟା କିନ୍ତୁ ଆରାମରେ ଶୋଇଯିବାକୁ ହେବ। ଏହି ବିଛଣାର ଗନ୍ଧରେ ବୁଡ଼ି ମୁଁ ସ୍ୱପ୍ନ ଦେଖିବି। ଇତି ଧୀରେ ଧୀରେ କବାଟ ଖୋଲି ଘର ଭିତରକୁ ଆସୁଛି। ହାତରେ ତା'ର ନଡ଼ିଆ ଫାଳ। ମୋ ପାଟିରେ ଦେଇ ଆରାମରେ ଏଇ ବିଛଣାରେ ବସି ମୋ ମୁଣ୍ଡକୁ ତା' କୋଳକୁ ଉଠାଇ ନେଉଛି। ବାହାରେ ଅନେକ ଲୋକଙ୍କ ଯିବାଆସିବା, କୋଳାହଳ। ଅନେକ କୁକୁର ନର୍ଦ୍ଦମା କଡ଼ରେ ହାମୁଡ଼େଇ ପଡ଼ିଛନ୍ତି ଓ ଆନନ୍ଦରେ ଚିତ୍କାର କରୁଛନ୍ତି। ମୋ ଭିତରେ ପାଗଳଟା କୁକୁରମାନଙ୍କୁ ନ ତଡ଼ି ଇତି ପାଦ ଛୁଇଁ ପ୍ରଣାମ କରିବା କଥା ଭାବୁଛି। ଇତି କିନ୍ତୁ ତା' ନିଜ ହାତରେ ମୋତେ ରାନ୍ଧି ଖୁଆଇବା ପାଇଁ ସଜ ହେଉଛି।

କରଫ୍ୟୁ ରାତିରେ ଭଲ ନିଦ ହୁଏ, ବାହାରେ କୋଳାହଳ ନଥାଏ ବୋଲି। ସେ ଘରେ ଇତି, ଇତିବୋଉ ସମସ୍ତେ ଶୋଇପଡ଼ିଲେଣି। ଯେତିକି ସମୟ ଅଛି ସେତିକି ସମୟ ଆରାମରେ ବଞ୍ଚିବା ଉଚିତ। ଇତି ମତରେ ବଞ୍ଚିବାକୁ ତ ହେବ।

ମୁଁ ଆଖି ବନ୍ଦ କରିବା ପୂର୍ବରୁ ଆଉଥରେ ପିମ୍ପୁଡ଼ିଟାର ମୃତ ଦେହର ରେଖାକୁ ଦେଖିନେଲି।

●

# ଗୋଟିଏ ଘରପୋଡ଼ିର ଦୃଶ୍ୟ

## (କ)

-୧-

ରାସ୍ତା କଡ଼ରେ ମୁକ୍ତ ଆକାଶ ତଳେ ଶୋଇଥିବା ପୁରୁଷ ନାରୀ କ'ଣ ରାତିରେ ଖୁବ୍ ନିରୋଳା ହୋଇଗଲେ ମୈଥୁନ କରନ୍ତି? ଅବଶ୍ୟ ଖୁବ୍ ବେଶୀ ରାତି ହୋଇଗଲେ ସ୍କାଇସ୍କ୍ରେପାର ଭିତରେ ହେଉ, କି ଫୁଟ୍‌ପାଥ ଉପରେ ହେଉ, ନାରୀ ଦେହ ଭିତରେ ପୁରୁଷ ଆଶ୍ରୟ ନିଏ। ସେଥିପାଇଁ କେହି କାହାର ଅନୁମତି ଲୋଡ଼େ ନାହିଁ, କିନ୍ତୁ ଅନୁମତି ଲୋଡ଼ିବା ଉଚିତ। ଥରେ ଜଣେ ସାଧୁ କହିଲେ, ରମଣ କରିବା ପୂର୍ବରୁ ପୁରୁଷ ନାରୀର ନାଭିରେ ହାତ ରଖି କହିବ– ପ୍ରସୀଦ ଜଗଜ୍ଜନନି! ଅର୍ଥାତ୍ ହେ ଜଗଜ୍ଜନନୀ ପ୍ରସନ୍ନ ହୁଅ ଏବଂ ମୋତେ ତୁମ ଭିତରେ ଗ୍ରହଣ କରିବାର ଅନୁମତି ଦିଅ। ଏକଥା ଭାବି ମୁଁ ଅନେକ ସମୟରେ ରୋମାଞ୍ଚିତ ହୋଇ ଉଠିଛି। କି ପବିତ୍ର ପୁରୁଷ ନାରୀର ସଂପର୍କ। ପୁରୁଷର ଏକମାତ୍ର ଆଶ୍ରୟ ନାରୀ। ମୋର ଅବିବାହିତ ଜୀବନରେ ତ କମ୍ ନାରୀ ସଂସ୍ପର୍ଶରେ ଆସିନାହିଁ! ପ୍ରତିଥର କୌଣସି ନାରୀ ସହ ମିଳିତ ହେବା ପୂର୍ବରୁ ଭାବିଛି ଖୁବ୍ ପବିତ୍ର ହୋଇ ନାରୀର ନାଭିରେ ହାତ ପାପୁଲି ରଖିଦେବି ଓ ମନ୍ତ୍ର ଉଚ୍ଚାରଣ କରିବି– ପ୍ରସୀଦ ଜଗଜ୍ଜନନି! ଦେଖିବି, ସେତେବେଳେ ମୋର ଅନୁଭବ କ'ଣ, ଆଉ ନାରୀ ନିଜକୁ ଜଗଜ୍ଜନନୀ ଭଳି ଉପଲବ୍ଧି କରେ କି ନା। କିନ୍ତୁ ଆଶ୍ଚର୍ଯ୍ୟ ମୁଁ ଅନେକ ଦିନ ଏକଥା କରିପାରିନି। ହୁଏତ ସେ ମୁହୂର୍ତ୍ତରେ ମୋର ଏକଥା କହିବା ପାଇଁ ମନେ ପଡ଼ିନି। ନ ହେଲେ ଭାବିଛି ଏସବୁ ବାଜେ କଥାରୁ କ'ଣ ମିଳିବ କିମ୍ବା କେତେବେଳେ ଖୁବ୍ ଘୃଣାରେ ଭାବିଛି ଏଇ ଝିଅଟାକୁ ଜଗଜ୍ଜନନୀ କହିବି! କିନ୍ତୁ ଅନେକ ଦିନ ପରେ ପ୍ରସ୍ତୁତ ହୋଇ ପ୍ରତିମାକୁ ଏକଥା କହି ଦେଇଥିଲି। ପ୍ରତିମାର ଆଖି ସେତେବେଳେ ଅର୍ଦ୍ଧନିମୀଳିତ ଥିଲା, ଦ୍ରୁତ ନିଃଶ୍ୱାସ ଚାଲୁଥିଲା, ମୁଁ ତା' ନାଭିମଣ୍ଡଳରେ ହାତ ରଖି କହିଲି- ପ୍ରସୀଦ ଜଗଜ୍ଜନନି! ସେ ମୋତେ ଚାହିଁଲା। ପ୍ରସନ୍ନ ହସି ଯେମିତି ସମ୍ମତି ଦେଲା। ମୁଁ ଜାଣେ ନାହିଁ, ସେ ମୁହୂର୍ତ୍ତରେ ସେ ଜଗଜ୍ଜନନୀ ହୋଇଗଲା କି ନା। ମୁଁ କିନ୍ତୁ ଅନୁଭବ କଲି ମୁଁ ଗୋଟିଏ ସାନ ଶିଶୁ ହୋଇଯାଇଛି। ପ୍ରତିମା ଯେପରି ସାରା ପୃଥିବୀରେ ମାଡ଼ି ଯାଇଛି।

ସେଇ ମୁହୂର୍ତ୍ତରେ ବୁଝିପାରିଲି ପ୍ରତିମା ମୋର ଏକମାତ୍ର ଆଶ୍ରୟ। ପରେ ଭାବିଛି ପ୍ରତିମା ଏ କଥାର ଅର୍ଥ ବୁଝିଲା କେମିତି! ସେ କ'ଣ ପ୍ରକୃତରେ ଜଗଜ୍ଜନନୀ ହୋଇଗଲା! ତା'ପରେ ମୁଁ ଓ ପ୍ରତିମା ଅନେକଥର ମିଳିତ ହୋଇଛୁ। ମୁଁ ସେଇ ମନ୍ତ୍ର ଉଚ୍ଚାରଣ କରିଛି ଏବଂ ସେ ମୁହୂର୍ତ୍ତ ପାଇଁ ମୁଁ ପ୍ରତିମା ଦେହରେ ନିର୍ଭୟ ଆଶ୍ରୟ ପାଇଛି।

କିନ୍ତୁ କୌଣସି ଏକ ଜୁନ୍ ପଚିଶ ତାରିଖରେ ପ୍ରତିମା ଅନ୍ୟ ଏକ ପୁରୁଷକୁ ବେଦୀରେ ମନ୍ତ୍ର ଉଚ୍ଚାରଣ କରି ବାହା ହୋଇଗଲା। ମୋ ମନ୍ତ୍ରକୁ ଉପେକ୍ଷା କରି। ମୋତେ ଅସହାୟ କରି ଆଉ କାହାର ଆଶ୍ରୟ ପାଇଁ ସେ ଚାଲିଗଲା। ମୁଁ ସ୍ଥିର କରିନେଲି କୌଣସି ନାରୀର ଆଶ୍ରୟ ମୁଁ କେବେ ଦରକାର କରିବିନି କିମ୍ୱା ନାଭିରେ ହାତ ରଖି ମୁଁ ଏକଥା କହିବି ନାହିଁ।

-୨-

ସ୍ୱପ୍ନରେ ଗୋଟିଏ ଦୃଶ୍ୟ ଯେ ବାରମ୍ୱାର କାହିଁକି ମୋ ପାଖକୁ ଫେରିଆସେ, ମୁଁ ଜାଣେ ନାହିଁ। ପିଲାଦିନର ଗାଁର ସେଇ ଛୋଟ ଚାଳଘର। ପଛପଟେ ଝଙ୍କାଳିଆ ଆମ୍ବଗଛ ଏବଂ ମାଛ ପାକୁ ପାକୁ କରୁଥିବା ଗଡ଼ିଆ। ଘର ଭିତରେ ଅର୍ଜ୍ଜୁନ ଗଛର ଖୁଣ୍ଟ। ଖୁଣ୍ଟର ଗୋଟିଏ କଣ୍ଟାରେ ଟଙ୍ଗା ହୋଇଥାଏ ବାପାଙ୍କ ପୁରୁଣା କଳା କୋଟ୍। ମୁଁ ପିଲାଦିନର ଅନେକ ଝାଞ୍ଜି ଖରା, ବରକୋଳିଆ ବର୍ଷା ଟୋପା, ଥପ୍ ଥପ୍ କାକର ସେଇ ଘରେ ଅତିକ୍ରମ କରିଛି। କୋଟ୍‌ଟା ଥିଲା ମୋ ପାଇଁ ଖୁବ୍ ପ୍ରିୟ କାରଣ ସେଇ କୋଟ୍‌ର ଏକ ନିଭୃତ ପକେଟରେ ମୁଁ ସେତେବେଳେ ରଖୁଥିଲି ଖଡ଼ି, କାଚଗୁଲି, ନଟୁ ଓ ଖୁଚୁରା ପଇସା। ବାପା ମରିଗଲା ପରେ ବି କୋଟ୍‌ଟା ସେମିତି ସେଇଠି ଟଙ୍ଗା ହୋଇ ରହିଥିଲା। ଦିନେ ଖରାବେଳେ ଡାହାଣ ହାତ ବୁଢ଼ା ଆଙ୍ଗୁଠି ଓ ବିଶି ଆଙ୍ଗୁଠିରେ ଚିପି ଚିପି ଗାଲ ବ୍ରଣରୁ ଚାଉଳିଆ ମଞ୍ଜି ବାହାର କରୁଥିଲା ବେଳେ କୋଟ୍ ପକେଟରେ ହାତ ଗଳାଇ ଆଶ୍ଚର୍ଯ୍ୟ ହୋଇଗଲି, ପକେଟରେ କିଛି ନାହିଁ। ପକେଟଟା କଣା, ମୂଷା କାଟିଦେଇଛି।

ଏବେ ସ୍ୱପ୍ନରେ ସେଇ ଘର ଏବଂ କଳା କୋଟ୍‌ଟା ବାରମ୍ୱାର ଦେଖେ। କିନ୍ତୁ ସବୁବେଳେ ଦେଖେ ସେଇ ଘରଟା ପୋଡ଼ିଯାଉଛି। ଚଡ଼୍ ଚଡ଼୍ ଶବ୍ଦରେ ଫୁଟୁଛି ବାଉଁଶର ଗଣ୍ଠି, ହାବୁକା ହାବୁକା ନିଆଁ ବତାସରେ ଉଡ଼ିଯାଉଛି ଆକାଶକୁ। ଲୋକଙ୍କର କିନ୍ତୁ ସେଥିପ୍ରତି ଆଦୌ ଭ୍ରୂକ୍ଷେପ ନାହିଁ। ଯେ ଯା' କାମରେ ବ୍ୟସ୍ତ। ମୁଁ କେବଳ ଛଟପଟ ହୋଇ ଏଣେ ତେଣେ ଦୌଡୁଛି। କିନ୍ତୁ ଘରଟା ନିଷ୍ଫଳ ହୋଇ ପୋଡ଼ି ପାଉଁଶ ହୋଇଯାଉଛି। କେତେବେଳେ ଦେଖେ କଳାକୋଟରେ ନିଆଁ ଚରିଯାଇଛି। ପକେଟଟା ଜଳିଯାଉଛି, ଆଉ ତା' ସାଥିରେ ଜଳିଯାଉଛି ପକେଟ ଭିତରେ ଲୁଚାଇ ରଖିଥିବା ସବୁ ପଦାର୍ଥ।

ଅବଶ୍ୟ ସେ ଘର ଆଉ ଏବେ ନାହିଁ। ବାପାଙ୍କ ମୃତ୍ୟୁର କିଛିଦିନ ପରେ ସେ ଘର, ଗଡ଼ିଆ, ଆମ୍ବଗଛ ସବୁ ବିକ୍ରି ହୋଇଗଲା, କାରଣ ଦିନେ ଗୋଟିଏ ଜ୍ୟୋତିଷ

ଗଣନା କରି କହିଲେ ସେ ଘର ତଳେ କେଉଁ ଏକ ପୂର୍ବପୁରୁଷର କଙ୍କାଳ ଅଛି। ସେ ଘରେ ରହିଲେ କଣକ ପରେ ଜଣକର ମୃତ୍ୟୁ ନିଶ୍ଚିତ, ଘର ଗଡ଼ିଆ ଡିହ ସବୁ ବିକ୍ରିକରି ବାପା କରିଯାଇଥିବା ଋଣ ତେଣୁ ଶୁଝିବାକୁ ପଡ଼ିଲା ଏବଂ ତା'ପରେ ମା, ଭାଇ ଭଉଣୀ ସବୁ ମାମୁ ଘରେ ଆଶ୍ରୟ ନେଲେ। ପୁଣି କିଛିଦିନ ପରେ ଭଉଣୀ ବାହାହେବା ପରେ ଭଉଣୀ ଘରେ ଆଶ୍ରୟ ନେଇଛନ୍ତି। ପୃଥିବୀ ଉପରେ ନିଜ ସ୍ଥାନ କହିଲେ ମୋର ଇଞ୍ଚେ ବି ଭୂଇଁ ପାଦ ରଖି ନିଃଶ୍ୱାସ ନେବା ପାଇଁ।

-୩-

କୁଞ୍ଜଭାଇ ଆଜି କହିଦେଲେ– ଘର ଛାଡ଼ିବାକୁ ହେବ। କେବେ ଦିନେ ନା ଦିନେ ଯେ ମୋତେ ଏ କ୍ୱାର୍ଟର ଛାଡ଼ିବାକୁ ହେବ, ତା' ଜାଣିଥିଲି। କିନ୍ତୁ ଏତେ ଶୀଘ୍ର ଏଥିପାଇଁ ପ୍ରସ୍ତୁତ ନଥିଲି। କୁଞ୍ଜଭାଇ ଏଇଠି ଏକା ରହେ। ଗାଁରେ ସ୍ତ୍ରୀ ପିଲାପିଲି ଆଉ ମା', ତେଣୁ ଗାଁରେ ଏକ-ତୃତୀୟାଂଶ କଟେ। ଦୁଇ-ତୃତୀୟାଂଶ ଦିନରୁ ଅଧିକାଂଶ ଦିନ କଟିଯାଏ ନାଟକ ରିହର୍ସଲରେ। ତେଣୁ ମୁଁ ବେଶ୍ ଆରାମରେ କେତେଦିନ ରହିଯାଇଥିଲି। କିନ୍ତୁ ଆଜି କୁଞ୍ଜଭାଇ କହିଦେଲେ ଘର ଛାଡ଼ିବାକୁ ହେବ। ଏ ସହରରେ ଖଣ୍ଡେ ଘର ମିଳିବା ଏକ ଭୀଷଣ ସମସ୍ୟା। ମୁଁ ସରକାରୀ ଚାକିରି କରେ ଏବଂ ଏ ସହର ସରକାରୀ କ୍ୱାର୍ଟରରେ ପରିପୂର୍ଣ୍ଣ। ମୁଁ କିନ୍ତୁ ସରକାରୀ କ୍ୱାର୍ଟର ପାଇନାହିଁ, ମୋର ବୟସ ହୋଇନାହିଁ। ତେଣୁ ଏଠି ଚାକିରି କଲା ଦିନଠାରୁ କୁଞ୍ଜଭାଇ କ୍ୱାର୍ଟରରେ ଖଣ୍ଡିଏ ଖଟ ପକାଇ ଦେଇଥିଲେ ଏବଂ ଦିନରାତି ତାରି ଉପରେ ଶୋଇ ମୋର ସବୁ ସ୍ୱପ୍ନ ଦୁଃସ୍ୱପ୍ନର ହିସାବ ନିକାଶ କରୁଥିଲି। ମୁଁ ସକାଳ ଦଶଟାରେ ଅଫିସ୍ ଯାଏ। ଅଫିସ୍‌ରେ ଦେଖେ ମୋ ଚଉକି ଟାଣିନେଇ ଅନ୍ୟମାନେ ଖୁସି ଗପରେ ମାତି ଯାଇଛନ୍ତି। ମୁଁ ଅନ୍ୟର ଚଉକିରେ ଯାଇ ବସେ। ସଞ୍ଜ ହେଲେ ରାସ୍ତା ଉପରକୁ ବାହାରିଯାଏ। କୌଣସି ଏକ ରାସ୍ତାକଡ଼ ତେଲ ଚିକିଟା ଟେବୁଲରେ ବରା ସିଙ୍ଗଡ଼ା ଖାଇ ରାସ୍ତାକୁ ବାହାରି ପଡ଼େ। ରାସ୍ତା ଉପରେ ରାତିର ଅଧେ ସମୟ କଟିଯାଏ। ଏଠି ସେଠି ଫୁଟ୍‌ପାଥରେ ଆଡ୍‌ଡ଼ା ଦିଏ। କେତେବେଳେ ବସ୍ ଷ୍ଟାଣ୍ଡରେ ଛାରପୋକ ସହ କାଠ ଚଉକିରେ ବସି ଯିବାଆସିବା କରୁଥିବା ଲୋକଙ୍କ ବ୍ୟସ୍ତତା ଦେଖେ; କେତେବେଳେ ଷ୍ଟେସନରେ ଥଣ୍ଡା ସିମେଣ୍ଟ ବେଞ୍ଚରେ ବସି ଦେଖେ ଟ୍ରେନକୁ ଅପେକ୍ଷା କରିଥିବା ଲୋକଙ୍କ କ୍ଲାନ୍ତି। ରାତି ବେଶୀ ହେଲେ ଯେକୌଣସି ହୋଟେଲରେ ଖାଇ ଫେରିଆସେ କୁଞ୍ଜଭାଇର କ୍ୱାର୍ଟରକୁ। ସେଇଠି ମୋର ଖଟ ଉପରେ ହାମୁଡ଼େଇପଡ଼ି ଶୋଇ ସାରାଦିନର ସ୍ୱପ୍ନ ଦୁଃସ୍ୱପ୍ନର ଥଳିକୁ ଫିଟାଇଦିଏ। ଆପାତତଃ କିଛିଦିନ ମୋ ପାଇଁ ଆଶ୍ରୟ ଚିନ୍ତା ନାହିଁ ବୋଲି ଧରିନେଇଥିଲି। ଭଉଣୀ ଘରେ ଆଶ୍ରିତ ମା ଭାଇ ଭଉଣୀ। ତେଣୁ ଭଉଣୀକୁ ଘରଭଡ଼ା ବାବଦରେ ତାଙ୍କ ପରିବାରକୁ ଭରଣ ପୋଷଣ ଖର୍ଚ୍ଚ ଦେବାକୁ ପଡ଼େ। ଆପାତତଃ ଚଳିଯାଉଥିଲା। ଅଥଚ ଆଜି କୁଞ୍ଜଭାଇ

ନୋଟିସ ଦେଇ ଦେଲେ କ୍ୱାଟର ଛାଡ଼ିବାକୁ ହେବ, ସେ ତାଙ୍କ ସ୍ତ୍ରୀ, ପିଲାପିଲି ଓ ମା'ଙ୍କୁ ଗାଁରୁ ଆଣିବେ।

## (ଖ)

ମୁଁ ଖୁବ୍ ନିଃସଙ୍ଗ ହେଲେ ସିଗାରେଟ ଟାଣେ। ଆଜି ସକାଳେ ନିଦ ଭାଙ୍ଗିଗଲା ପରେ ମନେହେଲା ମୁଁ ପୃଥିବୀରେ ଭୀଷଣ ଅସହାୟ ଆଉ ନିଃସଙ୍ଗ। ସେ ଘରେ କୁଞ୍ଜଭାଇଙ୍କ ନିଦ ଏ ପର୍ଯ୍ୟନ୍ତ ଭାଙ୍ଗି ନାହିଁ। ବାହାରେ କ୍ୱାର୍ଟରମାଳିନୀ ସହର ଏପର୍ଯ୍ୟନ୍ତ ଜାଗି ଉଠିନାହିଁ, କାରଣ ଆଜି ରବିବାର। କେବଳ ଖୁବ୍ ଦୂରରେ କାହା ରେଡ଼ିଓରୁ ଉଦାସ ସ୍ୱର ଗୋଟିଏ ଝଙ୍କା ଦେଇ ପଶିଆସୁଛି। ଉପରେ ସମାନ ଗତିରେ ଫ୍ୟାନ୍ ଘୂରୁଛି। ଗରମ ପବନ। ଖରାଦିନେ ପାହାଡ଼ରେ ନିଆଁ ଲାଗିଗଲେ ଯେମିତି ହାବୁକା ହାବୁକା ଗରମ ପବନ ବହେ ଠିକ୍ ସେମିତି। ଆଜି ବୋଧହୁଏ ବର୍ଷା ହେବ। ବାଥ୍‌ରୁମ୍‌ରେ ଝର୍ ଝର୍ ପାଣି ବହିଯାଉଛି। ତଳେ ବୋଧହୁଏ ବାଲଟି ବସିନାହିଁ। ନିରାଶ୍ରୟ ପାଣି ବହିଯାଉଛି ପୃଥିବୀ ଅଭ୍ୟନ୍ତରର ଅନ୍ଧକାରମୟ ମ୍ୟାନହୋଲ ଭିତରକୁ। ମୁଁ ଉଠି ଗାଧୋଇବା କଥା ଚିନ୍ତା କଲି। ତା'ପରେ ଚିତ୍‌ହୋଇ ଶୋଇ ଗୋଟିଏ ସିଗାରେଟ ଲଗାଇଲି। ପାଦଆଡ଼େ, କାନ୍ଥରେ ଝୁଲୁଥିବା କ୍ୟାଲେଣ୍ଡରରେ ପ୍ରତିମା ଭଳି ହସୁଥିବା ଝିଅଟାକୁ ଚାହିଁଲି, ମନେ ମନେ କହିଲି– ପ୍ରସୀଦ ଜଗଜ୍ଜନନି! ତା'ପରେ ଏପଟ କାନ୍ଥରେ ଜଗନ୍ନାଥର ଚକା ଆଖିକୁ ଏକଲୟରେ ଚାହିଁ ତା' ଆଖିରେ ଲୁହ ଅଣେଇବାକୁ ଚେଷ୍ଟା କଲି। ଜଗା କାନ୍ଦିଲା ନାହିଁ, ମୋ ଆଖିରେ ଲୁହ ଆସିଗଲା। ସିଗାରେଟଟା ଆଉ ଗୋଟିଏ ଦମ୍ ଟାଣିନେଲା ପରେ ମୋ ଛାତିରେ ପାଉଁଶ ମେଞ୍ଚାଏ ଝରି ପଡ଼ିଲା। ମୁଁ ଚଟାପଟ ଫୁଙ୍କି ଉଡ଼ାଇଦେଲି। କିନ୍ତୁ ଛାତି ଲୋମ ଭିତରକୁ କିଛି ନିଆଁ ଝୁଲ ପଶିଗଲା। ଛାତିଟା ଫୋଟକା ହୋଇଗଲା ଭଳି ଲାଗିଲା। ମୁଁ ଅଧାଜଳା ସିଗାରେଟଟା ବିରକ୍ତିରେ ଘର କୋଣକୁ ଫିଙ୍ଗିଦେଲି। ତା'ପରେ କଡ଼ ଲେଉଟାଇ ଶୋଇଲି। କିଛି ସମୟ ପରେ ମନେହେଲା, ମୁଁ କେଉଁଠି ଯେମିତି ମେଘ ଭିତରେ ପଶିଯାଉଛି। ଚାରିଆଡ଼େ ଧୂଆଁ ଆଉ ଧୂଆଁ। ମୁଁ ଅଣନିଃଶ୍ୱାସୀ ହୋଇ ଉଠିଲି। ମୁଁ ଜାଣିପାରିଲି ଘରର କୌଣସି ଜାଗାରେ ନିଆଁ ଲାଗିଯାଇଛି। ସେଇ ପତଳା ଧୂଆଁ ଭିତର ଦେଇ ଦେଖିଲି, ବାହାରେ ଝଙ୍କାଳିଆ ଆମ୍ବଗଛ ଆଉ ମାଛ ପାକୁ ପାକୁ କରୁଥିବା ଗଡ଼ିଆ। ମୁଁ ବାହାରିବାର ଚେଷ୍ଟା କଲି। ବାହାରପଟୁ କବାଟ ବନ୍ଦ। ଖୁଣ୍ଟରେ ଟଙ୍ଗା ହୋଇଥିବା କୋଟ୍‌ଟା ଓହ୍ଲାଇଆଣି ପିନ୍ଧି ପକାଇଲି। କୋଟ୍‌ଟାର କୋଣରେ ନିଆଁ ଲାଗିଗଲା, କୋଟର ହାତରେ ନିଆଁ, ଛାତିରେ ନିଆଁ। ଗୋଟିଏ ପାଖରୁ ଜଳିଯାଉଛି କୋଟ୍, ଅଥଚ କୋଟ୍‌ଟାକୁ ମୁଁ ଦେହରୁ ଓହ୍ଲାଇ ରଖିପାରୁନାହିଁ, କୋଟ୍‌ର ନିଆଁ ମୋ ଛାତିରେ ଚରିଯାଉଛି। ଜଳିଯାଉଛି ଛାତି ଲୋମ, ଜଳି ଉଠୁଛି ମୋର ହାତଗୋଡ଼ ମୁଣ୍ଡ ପେଟ ଆଖି କାନ ନାକ। ମୁଁ ଦୌଡ଼ିବାକୁ ଆରମ୍ଭ କଲି। ଝର୍କା ବାହାରେ

ଦେଖିଲି ପ୍ରତିମା ମୋତେ ଡାକୁଛି ବାହାରକୁ। ମୁଁ ଚିତ୍କାର କରି କହୁଛି କବାଟ ଖୋଲିଦେବା ପାଇଁ, ସେ ବୁଝିପାରୁନାହିଁ। ଚିତ୍କାର କରୁଛି, ପ୍ରାଣପଣେ ଚିତ୍କାର କରୁଛି କେବଳ, କିନ୍ତୁ ହଠାତ୍ ସବୁ ଦୃଶ୍ୟର ପରିବର୍ତ୍ତନ। ଆଖି ଖୋଲି ଦେଖିଲି କୁଞ୍ଜଭାଇ ପାଖରେ ଛିଡ଼ା ହୋଇଛନ୍ତି। ଘରସାରା ଧୂଆଁ ଆଉ ଧୂଆଁ। କିଛି ବୁଝିପାରିଲି ନାହିଁ। କୁଞ୍ଜଭାଇ ଘର କୋଣକୁ ଦେଖାଇ ଦେଲେ, ମୋ ହାତରୁ ପଡ଼ିଥିବା ଅଧାଜଳା ସିଗାରେଟରେ ଘର କୋଣରେ ଥିବା ଖବରକାଗଜ ଗଦାରେ ନିଆଁ ଲାଗିଥିଲା। କୁଞ୍ଜଭାଇ ଲିଭାଇ ଦେଇଛନ୍ତି। ମୁଁ ଆଉଥରେ ଆଖି ବନ୍ଦ କଲି। ଖୁବ୍ କ୍ଳାନ୍ତ ଲାଗୁଛି। ଆଖି ବନ୍ଦ କରି ଅନୁଭବ କଲି ମୋ ଉପରେ ଗୋଟିଏ କ'ଣ ଜଳୁଛି ଦିନରାତି ରାବଣର ଚିତା ଭଳି। ଛାତି ଉପରେ ସବୁବେଳେ ଯେଉଁ କିରାସିନିର ଡିବିରିଟା ନିଭୃତରେ ଦିକି ଦିକି ହୋଇ ଜଳୁଥିଲା, ସେଇଟା ଯେମିତି ଓଲଟି ପଡ଼ିଛି। ଛାତିରେ ଚାରିଆଡ଼େ ଚରିଯାଇଛି କିରାସିନି, ଚରିଯାଇଛି ଡିବିରିର ନିଆଁ।

କୁଞ୍ଜଭାଇ ଆରଘରୁ କହିଲେ– ଘର କୌଣସି ଆଡ଼େ ମିଳିଲା ? ମୁଁ ତ ଏପର୍ଯ୍ୟନ୍ତ ଖୋଜି ନାହିଁ, ଉତ୍ତର ଦେଲି ନାହିଁ, କେବଳ ମନେ ମନେ କହିଲି– ଘରଟା ଯେ ବାରମ୍ବାର ପୋଡ଼ିଯାଉଛି, ତାକୁ ରକ୍ଷା କରି ପାରୁନାହିଁ।

ମୁଁ ଉଠିଲି। ମୁହଁ ହାତ ଧୋଇଲି। ଦାନ୍ତ ଘଷିଲି। ପାଇଖାନା ଗଲି। ଗାଧୁଆ ଘରେ ଦେହରେ ପାଣି ଢାଳିଲା ବେଳେ ବୁଝିଲି ତାତିଲା ଲୁହାରେ ପାଣି ଢାଳିରେ ଯେମିତି ଶବ୍ଦ ବାହାରେ, ସେମିତି ଶବ୍ଦ ଉଠି ଆସୁଛି ମୋ ଛାତି ଭିତରୁ। ଆଜି ଘର ଖଣ୍ଡେ ଖୋଜିବାକୁ ପଡ଼ିବ। ଫାୟାର ଷ୍ଟେସନ ପାଖରେ ଘଟଟିଏ ହେଲେ ଅପାତତଃ ନିର୍ଭୟରେ ବଞ୍ଚିହେବ। ଏ ଧରଣର ବାକ୍ୟ ଗୋଟିଏ ତିଆରି କଲି। କିନ୍ତୁ ଦମକଳ ମୋର ବା କ'ଣ କରିବ ! ମୋ ଭିତରେ ଦାବାଗ୍ନି ଆଉ ବାଡ଼ବଗ୍ନି ଦେଖି ଦମକଳ ବାହିନୀ ଘଣ୍ଟି ବଜାଇ ବଜାଇ ଛୁଟି ପଳାଇବେ। ମୁଁ କେବଳ ତାଙ୍କ ପଛେ ପଛେ ଧାଇଁବି। ଘରୁ ବାହାରିଲା ବେଳେ କୁଞ୍ଜଭାଇ କ୍ୱାର୍ଟରର ଗୋଟିଏ କୋଣରେ ପଡ଼ିଥିବା ମୋର ଖଟ ଓ ଖଟ ଉପରେ ମେଲା ହୋଇଥିବା ଲୋଚାକୋଚା ମଇଳା ବିଛଣାଚଦରକୁ ଚାହିଁଲି ଓ ମନେ ମନେ କହିଲି– ଗୁଡ୍ ବାୟ। ଥାକରେ ବହି ଓ ମୋର ଅସମ୍ପୂର୍ଣ୍ଣ ଗପରେ ଛଟପଟ ହେଉଥିବା ଶବ୍ଦମାନଙ୍କୁ କହିଲ– ଗୁଡ୍‌ବାୟ। କାନ୍ଥରେ ନିଜ ଗାତ ହଜାଇ ଘୂରି ବୁଲୁଥିବା ନିଃସଙ୍ଗ ପିମ୍ପୁଡ଼ିକୁ କହିଲି– ଗୁଡ଼ବାୟ। ମୋ ବିଛଣାର ମୋ ରକ୍ତ ସଂପର୍କର ଚାରପୋକ ଓ ଦିନର ଆଲୁଅରେ ଆତ୍ମଗୋପନ କରିଥିବା ମଶାମାନଙ୍କୁ କହିଲି– ଗୁଡ୍‌ବାୟ। କାନ୍ଥର କ୍ୟାଲେଣ୍ଡରର ପ୍ରତିମା ଭଳି ହସକୁରି ଝିଅଟାକୁ ଫ୍ଲାଇଂ କିସ୍ ଦେଇ କହିଲି– ଗୁଡ୍‌ବାୟ। ଘର କୋଣର ପୋଡ଼ା ଖବରକାଗଜମାନଙ୍କୁ ଫିଙ୍ଗଦେଇ କହିଲି– ଗୁଡ୍‌ବାୟ। ମୁଣ୍ଡ ଉପରେ ଘୂରୁଥିବା ଫ୍ୟାନ୍ ବନ୍ଦ କରିଦେଇ କହିଲି– ମୋ ଭିତରର ନିଆଁକୁ ତୁ ଫୁଙ୍କି

ନିଭାଇ ପାରିବୁନିରେ ବାପା, ଘୂରି ଘୂରି ଦିନେ ଏମିତି ବନ୍ଦ ହୋଇଯିବୁ। ଏପଟ କାନ୍ଥରେ ଥିବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାକୁ କହିଲି– ହେ ମୋର ବାପା, ବଡ଼ବାପା ଓ ପିଉସୀ, ତୁମେମାନେ ସତରେ କ'ଣ ମୋର ଆତ୍ମୀୟ ! ତୁମେ ସବୁ ମୋର ଥାଉଁ ଥାଉଁ ମୋ ଘର ବାରମ୍ୱାର ପୋଡ଼ିଯାଉଛି ! ତୁମେ ସବୁ ମୋର ଗୁରୁଜନ ଥାଉଁ ଥାଉଁ ଦୁନିଆରେ ଖଣ୍ଡେ ଭଡ଼ାଘର ଖୋଜି ପାଉନାହିଁ! ତୁମେ ସବୁ ମୋର ରିଲେଟିଭ ଥାଉଁ ଥାଉଁ ପୃଥିବୀ ଉପରେ ପାଦ ରଖିବା ପାଇଁ ମୋର ନିଜସ୍ୱ ଇଞ୍ଚେ ବି ଜାଗା ନାହିଁ! ତେଣୁ ତୁମେମାନେ ମୋ ପାଇଁ ବଞ୍ଚି କେତେ ମରି କେତେ !

ମୁଁ ଘରୁ ବାହାରିପଡ଼ିଲି। ଦୁଇ ପାଦ ଗଲାପରେ ବୁଝିପାରିଲି ମୋର ଚଟି ଜୋତା ବି ମୋର ପାଦକୁ ଆଶ୍ରୟ ଦେବାପାଇଁ ଚାହେଁ ନାହିଁ। ମୋ ଡାହାଣ ଚଟିରେ କଣ୍ଟା ଉଠିଛି। ପାଦତଳେ କଣା ହୋଇଗଲା ପରି ଲାଗୁଛି। ମୁଁ ଅଟକିଗଲି। ପାଦରୁ ଚଟିଟା ବାହାର କଲି। ରାସ୍ତା କଡୁ ଇଟା ଖଣ୍ଡେ ଉଠାଇ ଆଣି ପିଟି ପିଟି କଣ୍ଟାଟା ତଳକୁ ଦବେଇ ଦେଲି। ତା'ପରେ ଚାଲିଲି। ଆଜି ପବନ ନାହିଁ। ମେଘଟା କେଉଁଠୁ ଯେମିତି ଘୋଟି ଆସୁଛି। ହୁଏତ ଅଳ୍ପ ସମୟ ମଧ୍ୟରେ ଲଣ୍ଡଭଣ୍ଡ କରି ବର୍ଷା ଆରମ୍ଭ ହେବ। ଏଇ ସମୟରେ ବର୍ଷାଟା ନିହାତି ଦରକାର। ତା'ହେଲେ ଆପାତତଃ ମୁଁ ବଞ୍ଚିଯାଇ ପାରିବି। ଆଉଥରେ ଅନୁଭବ କଲି, ଡିବିରିର ନିଆଁଟା ଖେଳି ବୁଲୁଛି ମୋର ଅଙ୍ଗପ୍ରତ୍ୟଙ୍ଗରେ। ହଠାତ୍ ଅନ୍ୟମନସ୍କ ହୋଇ ଛିଡ଼ା ହୋଇପଡ଼ିଲି ରାସ୍ତାକଡ଼ରେ ରିଫ୍ୟୁଜିମାନଙ୍କୁ ଦେଖି। ମୁକ୍ତ ଆକାଶ ତଳେ ତିନି ଚାରୋଟି କଳା ହାଣ୍ଡି, ତିନୋଟି ଇଟାରେ ତିଆରି ଚୁଲି, ଛିଣ୍ଡା କନାର ସତରଞ୍ଜି କେତେଟା ଜୀବନପସରା ମେଲି ରହିଛି। ତାରି ଭିତରେ ବି ଗୋଟିଏ ସ୍ତ୍ରୀଲୋକ ଆଣ୍ଠୁରେ ପିଲାଟାକୁ ଜାକି ସେପଟ ସ୍ତ୍ରୀ ଲୋକର ଚୌଦ ପୁରୁଷ ଉଦ୍ଧାର କରିଯାଉଛି । ପିଲାଟି କାମୁଡ଼ି ଧରିଛି ସ୍ତ୍ରୀ ଲୋକଟାର ଲୋଳିତ ସ୍ତନ। ମୁଁ ହସିଲି। ଏଠାରୁ ଧୂଆଁ, ଧୂଆଁବାଣ। ଭିତରେ ପୋଡ଼ିଯାଉଥିବା ଘରୁ ଉଠୁଥିବା ଧୂଆଁ କେବଳ। ଘର ପୋଡ଼ିଯାଉଛି। ଦାଉ ଦାଉ ଜଳିଯାଉଛି। ହଠାତ୍ ବର୍ଷା ଆସିଲା। ବରକୋଳିଆ ଟୋପା। ଦୋକାନ ବଜାର ରାସ୍ତାଘାଟ ଉପର ଦେଇ ମାଡ଼ି ଆସୁଛି ଧୀର ମନ୍ଥର ବର୍ଷା, ବୁଢ଼ା ବାଡ଼ି ଠକ ଠକ କରି ଆସିଲା ପରି। ସ୍ତ୍ରୀ ଲୋକ ଦୁଇଟି ସତରଞ୍ଜି ଗୁଡ଼ାଇ ପିଲାକୁ ଅଣ୍ଟାରେ ଜାବୁଡ଼ି ଦୌଡ଼ିଲେ ବାଟା ଜୋତା ଦୋକାନ ପିଣ୍ଡାକୁ। ମୁଁ ବି ଦୌଡ଼ିଲି। ସେମାନଙ୍କ ପାଖରେ ଛିଡ଼ା ହୋଇ ସେମାନଙ୍କ ଦେହର ଗନ୍ଧ ଶୁଙ୍ଘିଲି। ଶୁଙ୍ଘିଲି ମାଟି ଉପରେ ପଡୁଥିବା ସକାଳୁଆ ବର୍ଷାର ଗନ୍ଧ। ମୋତେ ସବୁ ଗନ୍ଧ ଏକ ପ୍ରକାର ମନେ ହେଲା। ମୁଁ ମୋ ବାହୁଶୁଙ୍ଘି ଦେଖିଲି, ମୋ ଦେହରେ ସେଇ ଏକ ପ୍ରକାର ଗନ୍ଧ। ମୁଁ ଦେଖିଲି ସାମ୍ନା ହୋଟେଲର ହଳଦିଆ କାନ୍ଥରେ ବର୍ଷା ଟୋପା ତେରେଛା ପଡ଼ି ମିଳେଇ ଯାଉଛି। ବଢ଼ିଚାଲିଛି ବର୍ଷର ଗତି। ମୋ ଜୋତା, ଆଣ୍ଠୁ ପର୍ଯ୍ୟନ୍ତ ପ୍ୟାଣ୍ଟ ଭିଜିଗଲା। ସେ ସ୍ତ୍ରୀ

ଲୋକର ଫାଳେ ଭିଜିଗଲାଣି, ଏଇ କେତେ ମୁହୂର୍ତ୍ତ ପୂର୍ବରୁ ଯିଏ ଆଉ ଜଣକର ଚୌଦ ପୁରୁଷ ଉଦ୍ଧାର କରୁଥିଲା, ସେ ଏବେ ତା' ସହ ଖୁସି ଗପ ଆରମ୍ଭ କରିଦେଲାଣି। ଆଶ୍ଚର୍ଯ୍ୟ ହେଲି ସେମାନଙ୍କ ପୋଡ଼ିଯାଉଥିବା ଘରର ନିଆଁ ଏତେ ଶୀଘ୍ର ଲିଭିଗଲା ! ମୁଁ ଜାଣେ ଭିତରେ ସେମାନେ କେବେ ବଡ଼ ଘର ତୋଳି ନାହାନ୍ତି। ସାନ ସାନ ଘର ସେମାନଙ୍କର। କେବେ ନିଆଁ ଲାଗିଲେ ବି ସେମାନେ ଫୁଙ୍କି ଲିଭାଇ ଦିଅନ୍ତି, ନ ହେଲେ ଏମିତି ତ ବର୍ଷା ଆସିଲେ ଆପେ ଆପେ ଲିଭିଯାଏ। ମୁଁ କିନ୍ତୁ ପିଲାଦିନରୁ ଦିନରାତି ଲାଗି କେତେ ମହଲ ଗଢ଼ିଛି, କେତେ ନଅର ଉଆସ ତୋଳାଇଛି। ତେଣୁ ନିଆଁ ଲାଗିଲେ ତାକୁ ଲିଭାଇବା ଯେ ଭୀଷଣ କଷ୍ଟ ! ଯେତେ ବର୍ଷା ହେଲେ ବି ସେ ନିଆଁ ଲିଭିବା ମୁସ୍କିଲ।

ବର୍ଷ ଟିକିଏ କମ୍ ହେଲା ପରେ ମୁଁ ଆଗେଇଗଲି। ଆଜି କୌଣସି ଉପାୟରେ ଗୋଟିଏ ନୂଆଘର ଖୋଜି ବାହାର କରିବାକୁ ପଡ଼ିବ। ସେଇ ଘରେ ବସି ମୋର ଘରପୋଡ଼ିର ଦୃଶ୍ୟ ଦେଖିବି। ନିଜ ଖୁସିରେ ହସିବି, ନିଜ ଦୁଃଖରେ କାନ୍ଦିବି। ସ୍ୱାଧୀନ ଭାବରେ ସ୍ୱପ୍ନ ଦେଖି ଚିତ୍କାର କରିପାରିବି। କିନ୍ତୁ ଏ ସହରରେ ଏତେ ହୋଟେଲ ଆଉ ହୋଟେଲର ବିଜ୍ଞାପନ କାହିଁକି ? ମୋରି ପାଇଁ କ'ଣ ଏ ସବୁର ବ୍ୟବସ୍ଥା । ମୋ ଭିତରେ ମଡ଼ ମଡ଼ ଶବ୍ଦ କରି ପୋଡ଼ିଯାଉଥିବା ବାଉଁଶ, ବତାସରେ ହୁହୁ ଉଡୁଥିବା ନିଆଁ କଥା ସ୍ମରଣ କରି ସାଇନବୋର୍ଡ଼ରେ ବରୋଲିନ, ବମ୍ବେ ଡାଇଂ, ସୁପର ସାତସାତସାତ ଅତିକ୍ରମ କରିଗଲି। ମୋତେ କୌଣସି ପ୍ରକାରେ ଦମକଳ ପାଖକୁ ଦୌଡ଼ିଯିବାକୁ ପଡ଼ିବ। ନ ହେଲେ ଆଉ ଉପାୟ ନାହିଁ। ଏଥର ମୋର ଶେଷ ଅବସ୍ଥା। ହଠାତ୍ ମୋ ସାମ୍ନାରେ ଦେଖିଲି ନାଲି ଶାଢ଼ି ପିନ୍ଧା ଝିଅ। ଝିଅଟା ମୋ ପାଖ ଦେଇ ଅତିକ୍ରମ କରି ଗଲାବେଳେ ମୁଁ ଝିଅଟାର ମୁହଁ ଦେଖି ଚମକିଗଲି। ପ୍ରତିମା ସହ ଯା'ର ଅନେକ ସାମଞ୍ଜସ୍ୟ ଅଛି। ମୋତେ ଦେଖି ଝିଅଟା ସମାନ୍ୟ ହସିଦେଲା। ମନେ କରିବାର ଚେଷ୍ଟା କଲି, କେଉଁ ଜନ୍ମ ଜନ୍ମାନ୍ତରରୁ ଏ ହସ ସହ ମୁଁ ତ ପରିଚିତ ! ମୁଁ ଜାଣେ, ଏମିତି ଝିଅ ଗୋଟିଏ ହସରେ ଲକ୍ଷ ଲକ୍ଷ ବରଫ ଲଦା ଛାତିରେ ବି ନିଆଁ ଲଗାଇ ପାରନ୍ତି। ମୁଁ ବୁଲିଲି। ଝିଅଟାକୁ ଅନୁସରଣ କଲି। ପାଣି ଛପ୍ ଛପ୍ ରାସ୍ତା। ଓଦା ପରିବା ଚୋପା, ସିଗାରେଟ ଖୋଳ। ଝିଅଟା ପିନ୍ଧିଥିଲା ନାଲି ରଙ୍ଗର ଶାଢ଼ି। ମୋତେ ଜଣାଗଲା, ମେ ସାମ୍ନାରେ ଫାୟାର ଷ୍ଟେସନର ନାଲି ଗାଡ଼ିଟା ଚାଲିଯାଉଛି। ମୁଁ ସ୍ପୀଡ୍ ବଢ଼ାଇଦେଲି। ନାଲି ଶାଢ଼ିର ବି ସ୍ପୀଡ଼ ବଢ଼ିଗଲା। ମୋ ସାମ୍ନାରେ ଦମକଳର ଘଣ୍ଟି ବଜାଇ ଛୁଟିଲା ଝିଅଟି। ମୁଁ ବି ଛୁଟିଲି। ତା'ର ଘଣ୍ଟି ଶୁଣି ବ୍ୟସ୍ତ ଟ୍ରାଫିକ ଆଡ଼େଇ ଗଲେ। ବଜାରର ଜନାରଣ୍ୟ ଅଞ୍ଚଳରେ ବି ଯାନବାହନ, ମଣିଷ, କୁକୁର, ଷଣ୍ଢ ଘୁଞ୍ଚାଇ ତା' ପାଇଁ ସୁଡ଼ଙ୍ଗ ତିଆରି କରିଦେଲେ। ମୋର ଖୁବ୍ ଇଚ୍ଛା ହେଲା ରାସ୍ତାର ହଜାର ହଜାର ଲୋକ ମଝିରେ ବି ଦମକଳଟାକୁ ଧରିପକାଇ ତା' ନାଭିରେ ହାତ ରଖି କହନ୍ତି, ମୋତେ ବଞ୍ଚାଅ। ମୋତେ ତୁମ ଭିତରେ

ନୂଆ ଚେହେରାରେ ଆଶ୍ରୟ ଦିଅ। କିନ୍ତୁ ମୁଁ ଜାଣେ, ଏ ଦମ୍‌କଳଟାକୁ ଧରି ବନ୍ଦ କରିଦେଲେ ମଣିଷମାନେ ସବୁ ଷ୍ଟିଲ୍ ଫଟୋଗ୍ରାଫ୍ ହୋଇଯିବେ। କିନ୍ତୁ ପ୍ରକୃତି ସିଂହନାଦ କରି ମୋ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବସିବ। ଗଛଲତା ପାହାଡ଼ ପର୍ବତ ଧାଇଁ ଆସିବେ ଚେରମୂଳ ଧରି, ସମୁଦ୍ର ଉଛୁଳି ଆସିବ ତା'ର ଲହରୀର ସୈନ୍ୟ ସାମନ୍ତ ନେଇ, ପତଙ୍ଗ ଭଳି ସେମାନଙ୍କ ଦଳବଳ ନେଇ ଉଡ଼ିଆସିବେ ଚନ୍ଦ୍ର ସୂର୍ଯ୍ୟ ନକ୍ଷତ୍ର। ଅବଶ୍ୟ ସେମାନଙ୍କୁ ମୁଁ ଶେଷଥର ପାଇଁ ଆଙ୍ଗୁଠି ଦେଖାଇ ଅଟକାଇ ଦେବି। ତା'ପରେ ତା'ର ନାଲି ଲୁଗାର ପାଚେରି ଟପି ତା' ଦେହର ପାହାଚରେ ତଳକୁ ତଳକୁ ଏକ ବୀଭତ୍ସ ଗୋପନୀୟ ଅନ୍ଧାର ରାଜ୍ୟକୁ ଓହ୍ଲାଇଯିବି। ସେ ଅନ୍ଧକାର ରାଜ୍ୟ ଭିତରେ ପକେଟରୁ ଦିଆସିଲି କାଢ଼ି ଜାଳିବି। ଦିଆସିଲ କାଠିର ଆଲୋକରେ ଦେଖିବି, ସେ ରାଜ୍ୟରେ ମୋର ସେଇ ପିଲାଦିନର ଘରଟା ଅଛି କି ନାହିଁ । ବାପାଙ୍କ କୋଟ ପକେଟ, ଝଙ୍କାଳିଆ ଆମ୍ବ ଗଛ, ମାଛ ପାକୁ ପାକୁ ଗଡ଼ିଆ। ଖୋଜିବି ତା' ଭିତରେ କୁଞ୍ଜାଭାଇଙ୍କ କ୍ୱାର୍ଟର ଏବଂ କ୍ୱାର୍ଟର ଭିତରେ ଗୋଟିଏ କୋଣକୁ ମଇଳା ବିଛଣା ଚଦର ବିଛା ହୋଇଥିବା ମୋ ଖଟ। ଶେଷରେ ଖୋଜିବି ପ୍ରତିମାକୁ। ପ୍ରତିମାର ଅର୍ଦ୍ଧ ନିମୀଳିତ ଆଖିକୁ ଚାହିଁ ତା' ନାଭିମଣ୍ଡଳରେ ହାତ ରଖି କହିବି– ପ୍ରସୀଦ ଜଗଜ୍ଜନନି! ହୁଏତ ଏସବୁ ତା' ଭିତରେ ମିଳିବ ନାହିଁ। ମୁଁ ପୁଣି ପାହାଚରେ ଚଢ଼ି ଚଢ଼ି ଉଠିଆସିବି ମୋର ଅନ୍ୱେଷଣର ଚିହ୍ନ ରଖିଦେଇ। ସେତେବେଳେ ଖୋଲା ପୃଥିବୀ ମୁକ୍ତ ଆକାଶ ତଳେ ଛିଡ଼ାହୋଇ ନିରାଶ୍ରୟ ମୁଁ ଗଛଲତା, ପାହାଡ଼ ପର୍ବତ, ସମୁଦ୍ର ଆକାଶ ବତାସ, ଚନ୍ଦ୍ର ସୂର୍ଯ୍ୟ ନକ୍ଷତ୍ର ସମସ୍ତଙ୍କୁ ମୁକ୍ତି ଦେଇଦେବି ଏବଂ ସେମାନଙ୍କ ସହ ନିଜକୁ ସାମିଲ କରିନେବି ପରମ ଆନନ୍ଦରେ। ମୁଁ ନିଜକୁ ନିଜେ ଚିତ୍କାର କରି କହିବି– ଯା, ତୁ ଗଛ ହୋଇଯା, ଲତା ହୋଇଯା, ପାହାଡ଼ ପର୍ବତ ଅରଣ୍ୟ ମରୁଭୂମି ହୋଇଯା, ସମୁଦ୍ର ଆକାଶ ବତାସ ସୂର୍ଯ୍ୟ ଚନ୍ଦ୍ର ନକ୍ଷତ୍ର ସବୁ ହୋଇଯା। ତୋର ଆଶ୍ରୟର ଦରକାର କ'ଣ ? ତୁ ତ ନିଜେ ଅନ୍ୟ ପାଇଁ ଆଶ୍ରୟ ଏବଂ ତୁ ନିଜେ ତୋର ଆଶ୍ରୟ ଏବଂ ତୋର ଆଶ୍ରୟ ତୁ ନିଜେ, କେବଳ ତୁ ନିଜେ, ଆଉ କେହି ନୁହେଁ।

('ଗଳ୍ପ' – ଷୋଡ଼ଶ ଶାରଦୀୟ ସଂକଳନ, ଅକ୍ଟୋବର-ଡିସେମ୍ବର ୧୯୭୫)



# ଧୃତରାଷ୍ଟ୍ରର ଆଖି

ନଈ କୂଳରେ ବାସକରୁଥିବା ଲୋକମାନେ ସକାଳେ ବିଛଣାରୁ ଉଠି ଦେଖିଲେ ନଈର ପାଣିର ରଙ୍ଗ ବଦଳି ଯାଇଛି। ଖଇରିଆ ରଙ୍ଗର ପାଣି, ମେଞ୍ଚା ମେଞ୍ଚା ଫେଣ। ଖପୁରିବାଲା ପଣ୍ଡିତ, ଦେଶସେବୀ, ରାଜନୀତିଜ୍ଞ, ସାହିତ୍ୟିକ, ସମସ୍ତେ ଆସି ନଈ କୂଳରେ ଠୁଳ ହେଲେ, ପର୍ଯ୍ୟବେକ୍ଷଣ ଆରମ୍ଭ କଲେ। ସମସ୍ତେ ଏକା ସାଙ୍ଗରେ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହୋଇ ମତ ପ୍ରକାଶ କଲେ ଯେ ନଈ ପାଣିରେ କୌଣସି ମୃତ ଦେହର ରକ୍ତ ମିଶିଯାଇଛି, ତେଣୁ ରଙ୍ଗଟା ଏମିତି କଳାଚିଆ ନାଲି ଦେଖାଯାଉଛି। କିନ୍ତୁ ନଈ କୂଳରେ କେଉଁଠି ଶବଟା ପଡ଼ିଛି ଖୋଜି ବାହାର କରିବାକୁ ପଡ଼ିବ। ଗଣତାନ୍ତ୍ରିକ କାର୍ଯ୍ୟକ୍ରମ ଆରମ୍ଭ ହେଲା। ସମସ୍ତେ ମିଶି ଜଣେ ଲେଖକକୁ ନିର୍ବାଚନ କଲେ। କାରଣ ଲେଖକ ଜଣକ କୌଣସି ଦଳଗତ ରାଜନୀତିର ଦଲାଲ ନୁହନ୍ତି। ତାଙ୍କ ଆଖିରେ ପାୱାରଫୁଲ ଲେନ୍ସ। ସେ ଅତୀତ ବର୍ତ୍ତମାନ ଭବିଷ୍ୟତ ସବୁ ଦେଖି ପାରନ୍ତି। ସେ ସବୁ ଦୃଶ୍ୟ ଘଟଣା ଚରିତ୍ରର ନିର୍ଭୁଲ ଚିତ୍ର ଦେଇପାରନ୍ତି। ତେଣୁ ଲୋକମାନେ ତାଙ୍କୁହିଁ ବାଛିଲେ। ଶେଷରେ ଲେଖକ ଜଣକ ଚୁଡ଼ା ଚାଉଳ ବାନ୍ଧି, ଖାତାକଲମ ଧରି ବାହାରିଲେ। ରକ୍ତର ଉତ୍ସଟା ଖୋଜି ବାହାର କରିବାକୁ ପଡ଼ିବ। ନଈ କୂଳରେ ଉତ୍ସ ଆଡ଼େ ଚାଲିଲେ ଲେଖକ, ଅନେକ ପାହାଡ଼, ପର୍ବତ, ବଣ ଜଙ୍ଗଲ ଅତିକ୍ରମ କରି। ଦିନ ପରେ ଦିନ ବିତିଗଲା, ଲେଖକ ଚାଲିଛନ୍ତି ଚାଲିଛନ୍ତି ଆଉ ଚାଲିଛନ୍ତି।

ଚାଲିଛି ଧୁତୁରା, ସାମ୍ନାରେ ଚୁଟିଆ। ସବୁଦିନେ ସକାଳେ ସେମାନେ ଏମିତି ଯାଆନ୍ତି। ଧୁତୁରାର ହାତ ଚୁଟିଆର କାନ୍ଧରେ ଧୁତୁରା ଅନ୍ଧ। ତା'ର ଭଲ ନାମ ଧୃତରାଷ୍ଟ୍ର। ଅନ୍ଧ ବୋଲି ତା'ର ବାପା ମା ବୋଧହୁଏ ଏମିତି ତା' ନାଁ ବାଛିଥିଲେ। କିଏ ତା'ର ବାପା ମା, କେଉଁଠି ତା'ର ଉତ୍ପତ୍ତି ସ୍ଥଳ କେହି ଜାଣନ୍ତି ନାହିଁ। ସମସ୍ତେ ଦେଖନ୍ତି ଧୃତରାଷ୍ଟ ସକାଳ ହେଲେ ରାଜଧାନୀକୁ ବାହାରିଯାଏ, ଫେରେ ରାତିରେ। ଭିକ ମାଗେ ଧୃତରାଷ୍ଟ। ଧୃତରାଷ୍ଟ କାଳକ୍ରମେ ଲୋକଙ୍କ ଜିଭର ପାହାଚରେ ଓହ୍ଲାଇ ଓହ୍ଲାଇ ଧୁତୁରା ପାଖରେ ଲଟକି ଯାଇଛି। ଧୁତୁରା ଅନ୍ଧ ବୋଲି ତା' ମନରେ ଟିକିଏ ବି ଦୁଃଖ ନାହିଁ। ସେ ଜାଣେ ଆଖି ଥିବା ମଣିଷ ସବୁ ଅନ୍ଧ, ଶାସନ ଅନ୍ଧ ଶାସକ ଅନ୍ଧ, ସଂସ୍କୃତି ଅନ୍ଧ। କେବଳ

ସେସବୁ ଅନୁଭବ କରେ। ଖୁବ ବେଶୀ ଖୁସି ହେଲେ ନିଷ୍କଳଙ୍କ ଆଖି ଦୁଇଟା ଥରି ଉଠେ। ଦୁଃଖ ପାଇଲେ ଆଖିପତା ମିଞ୍ଜିମିଞ୍ଜି କରେ।

ସେଇ ଧୃତୁରା ଚାଲିଛ ରାଜଧାନୀ। ତା' ଗାଲରେ କଞ୍ଚା ପାଚିଲା ଦାଢ଼ି, ମୁଣ୍ଡରେ ଆଲପିନ ଭଳି କଣ୍ଟାଳିଆ ବାଳ। ଛୁଟିଆ ଦେହରେ କଲରାପତରିଆ ଛିଣ୍ଡା ଜାମା। କେଉଁ ଦୟାଳୁ ଭଦ୍ରଲୋକର ଉପଢୌକନ ନିଶ୍ଚୟ। ଚୁଟିଆ ଭୀଷଣ ଚାଲାକ। ତା' ଆଖି ମିଟ୍ ମିଟ୍ କରୁଥାଏ ସବୁବେଳେ। ସବୁବେଳେ ସୁଯୋଗକୁ ଅପେକ୍ଷା କରେ। ଚୁଟିଆର ଆଗକୁ ଝାମ୍ପି ଆସି ଆଖି ଉପରେ ପଡ଼ିଛି ମୁଣ୍ଡବାଳ। ମୁଣ୍ଡର ଟୁଇ ଉପରେ କେରାଏ ବାଳ ନଡ଼ା ଭଳି ଖାଡ଼ା ହୋଇ ରହିଛି। ଧୃତୁରା ଚୁଟିଆର କାନ୍ଧରେ ହାତ ରଖି ଚାଲିଛି। ଚୁଟିଆର ହାତରେ ଗୋଟିଏ କଲେଇକରା ଟାଟିଆ, ଯେଉଁ ଟାଟିଆକୁ ଓହ୍ଲାଇ ଆସିବ ଦାନୀମାନଙ୍କ ହାତରୁ ଅକୃପଣ ଦାନ। ରାସ୍ତା କଡ଼ରେ ବିପରୀତ ଦିଗକୁ ଗଡ଼ିଯାଉଚି ମଣିଷଭର୍ତ୍ତି ଟ୍ରାନ୍‌ସପୋର୍ଟ ବସ, ମାଲ ବୋଝେଇ ଲରୀ। ରାସ୍ତା କଡ଼କୁ ଥପ୍ ଥପ୍ ପାଦ ରଖି ଘୁଞ୍ଚି ଯାଉଛି ଧୃତୁରା ଚୁଟିଆର କାନ୍ଧରେ ହାତ ରଖି। ଆଉ କେତେଦୂର ଆସେମ୍ଲି ଘର। ଆସେମ୍ଲି ସାମ୍ନା ବରଗଛ ମୂଳରେ ଛିଡ଼ା ହୁଏ ଧୃତୁରା। ଅନେକ ଲୋକଙ୍କ ଗହଣରେ ଆଗେଇ ଯାଉଥିବା ନେତା ଦୟାର ଅବତାର ବୋଲି ଜଣାଇଦେବା ପାଇଁ କଲେଇକରା ଟାଟିଆରେ ଖସାଇ ଦିଅନ୍ତି ପଚାଶ ପଇସି ପଚିଶ ପଇସି। କେତେବେଳେ ସାକୁଲେଇ ଧୃତୁରା ପିଠିରେ ହାତ ମାରି ଭଲମନ୍ଦ ପଚାରନ୍ତି। ଧୃତୁରା ସବୁ ବୁଝେ। ଦୂର ଗାଁ ଗଣ୍ଡାରୁ ଆସେ ଦରିଦ୍ର ପ୍ରଜା ନେତାଙ୍କ ପାଖରେ ହାରିଗୁହାରି ଜଣାଇବା ପାଇଁ। କେତେବେଳେ ରିଲିଫ ବ୍ୟବସ୍ଥା, କେତେବେଳେ ସ୍କୁଲ, ଲାଇବ୍ରେରୀ ପାଇଁ ଟଙ୍କା, କେତେବେଳେ ମରୁଡ଼ି ବାତ୍ୟା ବନ୍ୟା ସାହାଯ୍ୟ ପାଇଁ। ନେତାଙ୍କ ପଛେ ଗୁହାରି ଶୁଣାଇ ଚାଲିଲାବେଳେ ଲମ୍ବିଆସେ ଧୃତୁରାର କଲେଇକରା ଟାଟିଆ। ନେତାଙ୍କ ଆଗରେ ଦୟାଳୁ ପରୋପକାରୀ ବୋଲି ଜଣାଇବା ପାଇଁ ଖୁବ୍ ଉଞ୍ଚାକରି ଖସାନ୍ତି ପାଞ୍ଚପଇସି କିମ୍ବା ବଡ଼ ଦଶପଇସି। ବେଶ୍ ଠକ୍ କରି ଶବ୍ଦ ହୁଏ। ଟାଟିଆରେ ପଇସା ପଡ଼ିବା ଶବ୍ଦ ଶୁଣି ଧୃତୁରା କହିଦେଇ ପରେ କେତେ ପଇସା ପଡ଼ିଲା। ଚୁଟିଆ ତା'ଠୁ ବି ଆହୁରି ଚାଲାକ୍। ସେ ଯେତେବେଳେ ସୁବିଧା ପାଏ ନିଜ ହାତ ପତାଇ ମାଗିନିଏ। ପଇସା ଟାଟିଆରେ ପକାଇବାକୁ ଦିଏ ନାହିଁ। ସେଇଟା ଚୁଟିଆର ଉପୁରି ରୋଜଗାର। ସେଇଟା ଧୃତୁରାର ଅଜାଣତରେ ଚୁଟିଆର ପେଣ୍ଟ ପକେଟକୁ ଚାଲିଯାଏ। ତା'ପରେ ଚୁଟିଆ ସେଇ ପଇସାରେ କିଣି ଖାଏ ଆଇସ୍‌କ୍ରିମ୍। ଧୃତୁରା ବୁଝେ ସବୁ, କିନ୍ତୁ ଧରିପାରେ ନାହିଁ।

ସବୁଦିନ ଭଳି ଧୃତୁରା ଚୁଟିଆ ଆସି ଛିଡ଼ାହୋଇ ପଡ଼ିଲେ ଆସେମ୍ଲି ସାମ୍ନାରେ। ଆସେମ୍ଲି ଅଧିବେଶନ ଆରମ୍ଭ ହେବ। ଜଣେ ବ୍ୟସ୍ତ ମନ୍ତ୍ରୀ ଗଳି ଯାଉଥିଲେ ଭିତରକୁ। ସାମ୍ନାରେ ଚୁଟିଆର କଲେଇକରା ଟାଟିଆ ଲମ୍ବି ଆସିଲା। ସେ ଛିଡ଼ାହୋଇ ପଡ଼ିଲେ। ଖୁବ୍ ବିରକ୍ତିରେ ତା' ଆଡ଼କୁ ଚାହିଁଲେ। ଯେତେ ସାହାଯ୍ୟ ଦେଲେ ବି ଏ ଦେଶରୁ ଭିକାରି

ସଂଖ୍ୟା କମିବେ ନାହିଁ– ଏ ଧରଣର ମନ୍ତବ୍ୟ କରି ଗୋଟିଏ ନାଲି ଟୋପି ପୋଲିସକୁ ଡାକି କ'ଣ ସବୁ କହିଲେ। ପୋଲିସ ଆଗେଇ ଆସିଲା। ଚୁଟିଆକୁ କହିଲା– ହଟୋ ହଟୋ। ଧୁତୁରା ଜାଣେ ଏ ପୋଲିସରାଜ ସବୁଦିନେ ଚଳିବ ନାହିଁ। ସେ ଅନୁମାନରେ ମନ୍ତ୍ରୀ ଛିଡ଼ା ସ୍ଥାନ ଆଡ଼କୁ ମୁହଁ କରି କହିଲା– ବାବୁ ଅନ୍ଧ ଭିକାରିକୁ ପଇସା ମିଳୁ। ପଇସା ଦେବାକୁ ତାଙ୍କର କୁଣ୍ଠା ନାହିଁ, କିନ୍ତୁ ଆସେମ୍ବ୍ଲି ସାମ୍ନାରେ ଭିକମଗା ନିଷିଦ୍ଧ ହେବା ଉଚିତ। ମୁଖ୍ୟମନ୍ତ୍ରୀ ଦେଖିଲେ ତାଙ୍କ ଧାରଣା କ'ଣ ହେବ! ମନ୍ତ୍ରୀ ପଛଆଡ଼କୁ ଚାହିଁଲେ! ତାଙ୍କ ପଛରେ ଦେଶର ସହୃଦୟ ଜନତା। ପକେଟରେ ହାତ ପୂରାଇଲେ। ପଚାଶ ପଇସି ହାତରେ ବାଜିଲା, ସେଇଟାକୁ ଗୋଟିଏ କୋଣକୁ ଆଉଜେଇ ଦେଇ ଆହୁରି ଅଣ୍ଡାଳିଲେ। ସେଇ ପଚାଶ ପଇସି। ତା' ଛଡ଼ା ଆଉ କିଛି ନାହିଁ। ପଛରେ ତାଙ୍କର ଏ ଦେଶର ଦାନଶୀଳ ଜନତାର ପଟୁଆର। ମୁହଁରେ ହସ ଖେଳାଇ ପଚାଶ ପଇସିଟା ବାହାର କରି ତାଟିଆରେ ପକାଇ ଦେଲେ। ତା'ପରେ ମନ୍ତ୍ରୀଙ୍କ ପାଦ ଚାଲିଲା। ତା'ପରେ ଅନେକ ଗୋଡ଼ାଣିଆ ପାଦ। ତାଟିଆରେ ମନ୍ତ୍ରୀଙ୍କୁ ଅନୁସରଣ କରି ପଡ଼ିଲା ଦଶ ପଇସି, ପାଞ୍ଚ ପଇସି, ଦଶ ପଇସି, ତିନି ପଇସି, ଦୋ ପଇସି, ପାଞ୍ଚ ପଇସି– ପାଞ୍ଚ ପଇସି। ଚୁଟିଆ ମନେ ମନେ ଗାଳିଦେଲା ଦୁଇ ତିନି ବାଲାଙ୍କୁ। ଧୁତୁରା ଆଉ ହିସାବ ରଖିପାରିଲା ନାହିଁ, ଗୋଳମାଳ ହୋଇଗଲା। ଏ ମୁହୂର୍ତ୍ତ ସବୁ ଚୁଟିଆ ବୁଝେ। ଉଠାଇ ନେଲା ତିନୋଟି ଦଶ ପଇସି ଏବଂ ତା' ଚୋରା ପକେଟକୁ ଚାଲାଣ କରିଦେଲା। ତା'ପରେ ଧୁତୁରାକୁ ଶୁଣେଇ ଶୁଣେଇ ଦୁଇ ପଇସି ତିନି ପଇସି ବାଲାଙ୍କୁ ଗାଳିଦେଲା– ଏତେ କାଙ୍ଗାଳ କାହିଁକି ? ଆସୁନ ଗୋଟିଏ ତାଟିଆ ଧରି ଏଇଠି ଛିଡ଼ାହେବ। ଆମ ସହ ଖରା ବର୍ଷାରେ ଏଇଠି ମେହେନତ୍ କରିବ। ଚୁଟିଆ ଦେଖିଲା ଧୁତୁରାର ଆଖିଟା ଖୁବ୍ ଭିତରେ ଘୂରୁଛି। ତା' ସାମ୍ନା ଦେଇ ଗୋଟିଏ ବୀଭତ୍ସ କୁଷ୍ଠରୋଗୀ ଚାଲିଗଲା। ଚୁଟିଆ ତାକୁ ଇସାରା କରି ଡାକିଲା। ଆଉ ଥରେ ଧୁତୁରାର ମିଞ୍ଜିମିଞ୍ଜି ଆଖିକୁ ଚାହିଁଲା ଏବଂ ଖୁବ୍ ସନ୍ତପଣରେ ତାଟିଆରୁ ପାଞ୍ଚ ପଇସି ଗୋଟିଏ ଉଠାଇ ନେଇ ଫିଙ୍ଗିଦେଲା କୁଷ୍ଠରୋଗୀ ଆଡ଼େ। କୁଷ୍ଠରୋଗୀଟା ତଳୁ ପଇସା ଗୋଟାଇ ନେଇ ମୁରୁକି ହସିଲା। ଚୁଟିଆ ମନେ ମନେ ଭାବିଲା ସେ ମୁଖ୍ୟମନ୍ତ୍ରୀ ହୋଇଯାଇଛି। ମାଗି ଆଣିବା ପଇସା ଦାନ କରିବା ଏତେ ମଜା।

ହଠାତ୍ ଦୂରରେ ଗୋଟିଏ କୋଳାହଳ ଶୁଣାଗଲା। ଧୁତୁରା ଉତ୍କର୍ଣ୍ଣ ହୋଇ ଶୁଣିଲା। ଚୁଟିଆକୁ ପଚାରିଲା– କ'ଣ କିରେ ଏ ଗୋଳମାଳ। ସବ୍‌ଜାନ୍ତା ଚୁଟିଆ ବରଗଛ ମୂଳର ଉଞ୍ଚ ଜାଗାକୁ ଚଢ଼ିଯାଇ ଆଖି ଉପରେ ହାତ ଦେଇ ଦେଖିଲା। କହିଲା– ଲୋକେସବୁ ପତାକା ଧରି ଆସୁଛନ୍ତି ଏ ଆସେମ୍ବ୍ଲି ଘର ଆଡ଼େ। କୋଳାହଳ କ୍ରମେ ଦ୍ରୁତତର ହେଲା। ଧୁତୁରା ପଇସାଗୁଡ଼ାକୁ ଗାମୁଛା କାନିରେ ଢାଳି ବାନ୍ଧିଲା, ତା'ପରେ ଅଣ୍ଟାରେ ଗୁଡ଼ାଇ ଦେଇ କହିଲା– ଚାଲ ଏଠୁ ପଳାଇବା, ସେମାନେ ମାଡ଼ ଆସୁଛନ୍ତି।

ମାଡ଼ି ଆସୁଛନ୍ତି ଦେଶର ହଜାର ହଜାର ଭୋକିଲା ଜନତା । ହାତରେ ସେମାନଙ୍କର ପତାକା ଆଉ ପ୍ଲାକାର୍ଡ଼ । ସାମ୍ନାରେ ବଡ଼ ପତାକା ଧରି ଚାଲିଛି ଯିଏ ସିଏ ଏକ ନମ୍ବର ବିପ୍ଳବୀ । ଶୋଭାଯାତ୍ରାର ନେତା । ମୋଟା ହାତଟା ଉଠି ଯାଉଛି ଆକାଶକୁ । ପୁଣି ବଜ୍ର ଭଳି ନଇଁ ଆସୁଛି । ସବୁ ଆଇନ-କାନୁନ, ଶାସନ ଖସଡ଼ା ଭାଙ୍ଗିଦେବାର ମୁଦ୍ରା ତା' ଗୋଡ଼ ହାତ ଆଖିରେ । ତା'ର ଦୁଇ ତିନିଜଣ ପଛରେ ଗୋଟିଏ ଅଳ୍ପ ବୟସରେ ତରୁଣ । ଏଇ ବୟସରେ କଲେଜରେ ଏମାନେ ନେତା ହୁଅନ୍ତି । ତା ମୁହଁଟା ଝାଉଁଳି ପଡ଼ିଛି । ଯେତେ ପୋଲିସ ଭେନ୍‌ଟା ପାଖେଇ ଆସୁଛି ସେତେ ତା' ନାକ ମୁହଁରୁ ଗରମ ହାୱା ବାହାରୁଛି । ମଝିରେ ମଝିରେ ଡର ଲାଗୁଛି ବେଚାରାକୁ । ସେ ଏଇ ଲାଇନ୍‌ରେ ପ୍ରଥମ କି ନା ।

ଶୋଭାଯାତ୍ରାର ଲୋକମାନେ ଝାଉଁଳି ପଡ଼ିଲେଣି ଖରାରେ । ସବୁ ଶୋଭାଯାତ୍ରାରେ ଏଇ ଗୋଟିଏ ଚେହେରାର ଲୋକ । ହୁଏତ ଏମାନଙ୍କର କିଛି କାମଦାମ ନାହିଁ । ବିପ୍ଳବ କରିବା ଏମାନଙ୍କ ବ୍ୟବସାୟ । ଏମାନଙ୍କ ପାଦରେ ରବର ଜୋତା, କାନ୍ଧରେ ଥଳି । ଥଳି ଭିତରେ ଥାଏ ଖୋର୍ଦ୍ଧା ଗାମୁଛା, ଚୁଡ଼ା କିମ୍ବା ଭୁଜା । ଗୋଟିଏ ଶାଳପତ୍ରରେ ମେଞ୍ଚାଏ ଗୁଡ଼ାଖୁ । ବିପ୍ଳବ ଆଗେଇ ଯାଉଛି । ମଣିଷର ସ୍ରୋତ ଉପରେ ନାଚୁଛି ପତାକା । ରିକ୍‌ସା ଉପରେ ମାଇକ୍ ବାନ୍ଧି ପତଳା ଲୋକଟା ତଣ୍ଟି ଫଟାଇ ଚିତ୍କାର କରୁଛି, ଅନ୍ୟମାନେ ପାଳି ଧରୁଛନ୍ତି । ଦଳେ ଲୋକ ରାସ୍ତା କଡ଼ର ଲୋକବାକ, ଅଫିସ, ଦୋକାନ, ବଜାର ଦେଖି ଦେଖି ଧାଡ଼ିରେ ମହା ଆରାମରେ ଚାଲିଛନ୍ତି । ବିପ୍ଳବ ଆଗେଇ ଚାଲିଛି ।

କ୍ରମେ ଶୋଭାଯାତ୍ରା ପୋଲିସ ଘେରରେ ଥିବା ସଚିବାଳୟ, ଆସେମ୍ବ୍ଲି ହଲର ନିଷିଦ୍ଧାଞ୍ଚଳର ସାମ୍ନା ହେଲା, ପୋଲିସ ଲାଠି ଦେଇ ଶୋଭାଯାତ୍ରା ଅଟକାଇ ଦେଲା । ଶୋଭାଯାତ୍ରାର ଚିତ୍କାର ବଢ଼ିଗଲା । ବ୍ରେକ ଦେଇ ସବୁ ଡବା ଛିଡ଼ା ହୋଇପଡ଼ିଲା । ସାମ୍ନାର ନେତା ଟିକିଏ ଫୁଟାଣି ଦେଖାଇ ଆଗକୁ ବଢ଼ିଯିବାକୁ ଚାହିଁଲେ । ପୋଲିସ ନେତାଙ୍କ ପେଟରେ ଲାଠି ଦେଇ ପଛକୁ ଠେଲିଦେଲା । ଠେଲି ହୋଇଗଲେ ନେତାଙ୍କ ପଛରେ ଥିବା ଦୁଇ ତିନିଜଣ ବିପ୍ଳବୀ । ହଠାତ୍ ତାରକା ଗୋରୁ ପରି ଲାଙ୍ଗୁଡ଼ ଟେକି ଡ଼ିଆଁ ମାରିଲା ସେଇ ଅଳ୍ପ ବୟସୀ ତରୁଣ । ହଠାତ୍ ଆତଙ୍କଗ୍ରସ୍ତ ଶୋଭାଯାତ୍ରାର ଚାରିଆଡ଼େ ହୁଲୁସ୍ଥୁଲ ପଡ଼ିଗଲା । କ୍ରୋଧାନ୍ୱିତ କେତେଜଣ ବିସ୍ଫାରିତ ହୋଇଗଲେ । ରାସ୍ତା କଡ଼ରୁ ଉଠାଇ ଆଣିଲେ ଟେକା ପଥର । ପୋଲିସ ଜୁଲୁମ ବନ୍ଦ କର, ପୋଲିସରାଜ ଚଳିବ ନାହିଁ ଚିତ୍କାର କରି କରି ପୋଲିସ ଉପରେ ପଥର ବର୍ଷା ଆରମ୍ଭ କଲେ ।

ଆରମ୍ଭ କରିଥିଲେ ଦୌଡ଼ିବା ପାଇଁ ଧୁତୁରା ଆଉ ଚୁଟିଆ । କିନ୍ତୁ ଚୁଟିଆ କହିଲା– ଆମ ଚାରିପଟେ ପୋଲିସ ଘେରି ଗଲେଣି । ବାହାରିବାର ଉପାୟ ନାହିଁ । ତୁମେ ଏଇଠି ଛିଡ଼ା ହୁଅ, ମୁଁ ବରଂ ରାସ୍ତା ଖୋଜେ । ଛିଡ଼ାହୋଇ ରହିଲା ଧୁତୁରା ପୋଲିସ ଘେରରେ ଚୁଟିଆକୁ ଅପେକ୍ଷା କରି । କେତେବେଳେ ଚୁଟିଆ ଆସିବ ତା' ହାତ ଧରି ତାକୁ ମୁକୁଳେଇ ନେବ । କାନ ଡେରି ଶୁଣିଲା ଧୁତୁରା, ଗୋଳମାଳ କ୍ରମେ ବଢୁଛି । ତା' ପାଖ

ଦେଇ ଭାରି ବୁଟ୍‌ର ଧାଁ ଦଉଡ଼। ଗୋଟାଏ ପୋଲିସ ତା' ଦେହରେ ଧକ୍‌କା ଦେଲା ବୋଧହୁଏ, ପଡ଼ି ଯାଉଁ ଯାଉଁ ସମ୍ଭାଳି ନେଲା ନିଜକୁ। ସେ କ୍ରମେ ବୁଝିପାରିଲା ତାକୁ ସମସ୍ତେ ଘେରି ଗଲେଣି। ତାକୁଇ ଘେରି ବିପ୍ଳବୀ ଓ ପୋଲିସର ଖଣ୍ଡଯୁଦ୍ଧ ଆରମ୍ଭ ହୋଇ ଗଲାଣି। ହଠାତ୍ ତା' ମୁଣ୍ଡ ଛତୁ ହୋଇଗଲା ଭଳି ଲାଗିଲା। ନିଆଁ ଦଲକାଏ ବାହାରି ଗଲା। ମୁଣ୍ଡର ତାତିଲା ରକ୍ତରେ ହାତ ଦେଇ ବୁଝିଲା ତା' ମୁଣ୍ଡରେ ପଥର ବାଜିଛି। ସେ ଏଣେତେଣେ ପାଦ ପକାଇବାକୁ ଲାଗିଲା ହାଓ୍ବାରେ ହାତ ବୁଲାଇ ବୁଲାଇ। ତା' ମୁଣ୍ଡ ବୁଲାଇ ଗଲା ଭଳି ଲାଗିଲା। ସେ ତଳେ ପଡ଼ି ଯାଉ ଯାଉ ଅନୁଭବ କଲା ତା' ପିଠିରେ ଗୋଟିଏ ଲାଠି ପାହାର ବାଜିଲା। ସେ ତଳେ ପଡ଼ି ଛଟପଟ ହେବାକୁ ଲାଗିଲା। ଜଣେ ଦୁଇଜଣ ତା' ହାତ ଆଉ ପିଠିରେ ପାଦ ପକାଇ ମାଡ଼ି ଚାଲିଗଲେ। ତା'ର ଚେତା ଏକା ଥରେ ଲୋପ ପାଇବା ପୂର୍ବରୁ ସେ ଶୁଣିଲା ଖୁବ୍ ଦୂରରେ କେଉଁଠି ଯେମିତି ଅନେକ ଗୁଳି ଫୁଟୁଛି, ଚାରିଆଡ଼େ ବାରୁଦ ଗନ୍ଧ, ଯେମିତି ସମୁଦ୍ରର ଲହରୀ ହୁହୁ ହୋଇ ତା' ଉପରେ ଦେଇ ମାଡ଼ିଯାଉଛି। ଆକାଶଟା ମଶାରି ଭଳି ତା' ଚାରିପଟେ ଘେରିଗଲାଣି। ସମୁଦ୍ରର ଢେଉ ପରେ ଢେଉ ତା' ଉପର ହୁସ୍ ହୁସ୍ ବହିଗଲା, ଶେଷଥର ପାଇଁ ଗୋଟିଏ ବିରାଟ ଢେଉ ତା' ଉପର ଦେଇ ଯେ ଡେଇଁ ପଡ଼ିଲା ଆଉ ଓହ୍ଲାଇଲା ନାହିଁ। ସବୁ ଦିନ ପାଇଁ ସ୍ଥିର ହୋଇ ରହିଗଲା।

କ୍ରମେ ସବୁ ସ୍ଥିର ହୋଇଗଲା, ଯେତେବେଳେ ଆକାଶରୁ ଓହ୍ଲାଇ ଆସିଲା ବରକୋଳିଆ ଟୋପା ବର୍ଷା। ବିପ୍ଳବୀମାନେ ଛତ୍ରଭଙ୍ଗ ଦେଇ ପଳାଇଲେ। କେତୋଟି ଶବ ଆଉ କେତୋଟି ଜଖମ ବିପ୍ଳବୀ ପୋଲିସ ଭେନ୍‌ରେ ଚଢ଼ିଗଲେ। କେବଳ ଆସେମ୍ବ୍ଲି ସାମ୍ନାରେ ପଡ଼ି ରହିଲା ଧୃତରାଷ୍ଟ୍ରର ଶବ। ଧୃତରାଷ୍ଟ୍ରର ଆଖିରୁ ବହିଗଲା ରକ୍ତସ୍ରୋତ ରାସ୍ତାକଡ଼ ନର୍ଦ୍ଦମାକୁ। କ୍ରମେ ନର୍ଦ୍ଦମାର ପାଣି ସହରର ସବୁ ଗଳିକନ୍ଦି ଅତିକ୍ରମ କରି ରାଜଧାନୀ ଉପକଣ୍ଠ ସାନ ନଦୀରେ ମିଶିଲା, ଶେଷରେ ବହିଗଲା ବଡ଼ ନଦୀରେ ଧୃତରାଷ୍ଟ୍ରର ଆଖି ରକ୍ତର ଖଇରିଆ ପାଣି।

ନଈକୂଳର ଲେଖକ ସ୍ରୋତର ପ୍ରତିକୂଳରେ ଚାଲି ଚାଲି ଆସି ଉତ୍ସ ଖୋଜି ପାଇଲେ ଆସେମ୍ବ୍ଲି ସାମ୍ନାରେ। ସେ ତାଙ୍କ ଖାତାରେ ଟିପି ନେଲେ– ଆସେମ୍ବ୍ଲି ସାମ୍ନାରେ ମୁହଁ ମାଡ଼ି ପଡ଼ିଛି ଅନ୍ଧ ଧୃତରାଷ୍ଟ୍ରର ଶବ। ତା' ଆଖିରୁ ରକ୍ତର ସ୍ରୋତ ବାହାରି ସାରା ଦେଶରେ ମାଡ଼ିଯାଉଛି।

ଲେଖକ ଯାହା ଦେଖିଲେ ସବୁ ଲିପିବଦ୍ଧ କଲେ। ସବୁ କାହାଣୀ ସଂଗ୍ରହ କଲେ। ସେ ଚାଲିଲେ ଦେଶର ଏ ସମ୍ବାଦ ଲୋକଙ୍କ ପାଖରେ ପହଞ୍ଚାଇ ଦେବାପାଇଁ।

**('ନବରବି' – ଅଗଷ୍ଟ, ୧୯୭୫)**



# ଆହତ ସ୍ୱପ୍ନ

## (କ)

ମୁଁ ଜାଣେନି ଉପନ୍ୟାସ କିପରି ଆରମ୍ଭ କରିବାକୁ ହୁଏ। କାରଣ ମୁଁ କେବେ ଉପନ୍ୟାସ ଲେଖିନି। ଗଳ୍ପ କବିତା ଲେଖିଛି। ଉପନ୍ୟାସ ଲେଖିବି ବୋଲି ଅନେକ ଥର ଅନେକ ପ୍ରକାର ଚିନ୍ତାକରି ଅଟକି ଯାଇଛି। ଭାବିଛି ଗଳ୍ପ ଲେଖିଦେଲି ବୋଲି ଉପନ୍ୟାସ ବି ଲେଖି ପକାଇବି ? ମୋର ମନେହୁଏ ଗଳ୍ପ ଯଦି କୁଟୀର ଶିଳ୍ପ, ଉପନ୍ୟାସ ଏକ ବିରାଟ କାରଖାନା। ମୁଁ ଯଦିବା ଖୁବ୍ ଦୁର୍ବଳ ନୁହେଁ ତଥାପି ଅନେକ କାର୍ଯ୍ୟ କରିବାର ଇଚ୍ଛା ଥିଲେ ମଧ୍ୟ ପାରେନି। ଭୟ ଲାଗେ ଶେଷ କରିପାରିବି କି ନା। କାର୍ଯ୍ୟ ତୁଲାଇବାର ଭୟ ମୋ ଭିତରେ ସବୁବେଳେ। କଲେଜରେ ପଢୁଥିବା ବେଳେ ସେକ୍ରେଟାରୀ ହେବ ପାଇଁ ମୋତେ ପିଲାମାନେ ଅନେକ ଜିଦ୍ କଲେ। ମୋ ପଛେ ପଛେ କେତେ ଦିନ ବିଭିନ୍ନ ରାଜନୀତିର ପିଲାମାନେ ବୁଲାବୁଲି କଲେ। ଲାଞ୍ଚ ଦେଖାଇଲେ। ଜଣେ ଦି'ଜଣ ମାଡ଼ର ବି ଧମକ ଦେଲେ ତାଙ୍କ ଦଳରେ ପ୍ରାର୍ଥୀ ହେବି ନାହିଁ ବୋଲି ମନା କରିବାରୁ। ଅବଶ୍ୟ ଶେଷରେ ସମସ୍ତଙ୍କ ମନ ରକ୍ଷା କରିବା ପାଇଁ ନିର୍ଦ୍ଦଳୀୟ ହୋଇ ପ୍ରତିଯୋଗିତା କରିଥିଲି, ଯଦିବା ଜାଣେ 'ନିର୍ଦ୍ଦଳୀୟ' ବି ଗୋଟିଏ ରାଜନୀତିକ ଦଳ।

କେତେଟା ଦିନ କଲେଜରେ ଭୀଷଣ ଉତ୍ତେଜନା, ରାତି ଉଜାଗର ହୋଇ ଆଲକାତରାରେ ନାମଲେଖା ପର୍ବ ଆରମ୍ଭ ହୋଇଗଲା। କଲେଜ ପାଚେରି, ରାସ୍ତାଘାଟ ଚାରିଆଡ଼େ ମୋର ନାମ। ଛପା ଅକ୍ଷରରେ ମୋ ନାମରେ ରୁଟିନ୍ ବଣ୍ଟାହେଲା। ମୋତେ ମାଇକ ଆଗରେ ଲମ୍ବା ଲମ୍ବା ଗରମ ଗରମ ଭାଷଣ ଦେବାକୁ ହେଲା। ମୁଁ ଅନୁଭବ କଲି ମୁଁ କ୍ରମେ ସେଇ ପରିସ୍ଥିତି ମଧ୍ୟରେ ଉତ୍ତେଜିତ ହୋଇ ପଡୁଛି। ଯେତେବେଳେ ଭୋଟ ଦିନ ଚାରିଆଡ଼େ ନୀରବ ନିସ୍ତବ୍ଧ, କେବଳ ଏଣେ ତେଣେ ଫୁସ୍‌ଫାସ, ଇସାରା, ସେତେବେଳେ ମୁଁ ଭୀଷଣ ଦୁର୍ବଳ ହୋଇପଡ଼ିଲି। ମୋତେ ମନେ ହେଲା ଯେପରି କେବଳ ନାମ କମାଇବା ପାଇଁ ଆଉ ଅନ୍ୟମାନଙ୍କ ପ୍ରରୋଚନାରେ ପଡ଼ି ସିନା ପ୍ରାର୍ଥୀ ହେଲି କିନ୍ତୁ କିଛି କାର୍ଯ୍ୟ ମୋ ଦ୍ୱାରା ହୋଇପାରିବ ନାହିଁ। ମୁଁ ଅନୁଭବ କଲି ହୁଏତ

କଲେଜର ବାର୍ଷିକ ଉତ୍ସବ ବେଳେ ମୁଁ ଚେୟାରରୁ ଖସି ପଡ଼ିବି। ସେଦିନ ମୁଁ ମୋର ଭୋଟ ଦେଇସାରି ଧାଇଁଥିଲି ମନ୍ଦିରକୁ ଏବଂ ଭଗବାନଙ୍କୁ ପ୍ରାର୍ଥନା କରୁଥିଲି ଯେପରି ମୁଁ ରକ୍ଷାପାଏ।

ରକ୍ଷା ପାଇଗଲି। ସାତଟି ଭୋଟରେ ମୁଁ ହାରିଯାଇ ସାଙ୍ଗସାଥୀମାନଙ୍କୁ ମନଭରି ଖୁଆଇଲି ଏବଂ ନିଜେ ଡେଣା ଲଗାଇ କଲେଜ ବାରଣ୍ଡାରେ ଉଡ଼ି ବୁଲଲି।

ଅବଶ୍ୟ ସେକ୍ରେଟାରୀ ହେବା ଆଉ ଉପନ୍ୟାସ ଲେଖିବା ଭିନ୍ନ କଥା। ତଥାପି ମୋତେ ମନେହୁଏ ମୋ ଦ୍ୱାରା କେବଳ କ୍ଷୁଦ୍ର କାର୍ଯ୍ୟଗୁଡ଼ା ସମ୍ଭବ। ଦାୟିତ୍ୱପୂର୍ଣ୍ଣ ଏବଂ ବଡ଼ ଧରଣର କାର୍ଯ୍ୟ ତୁଲାଇବା ମୋ ଦ୍ୱାରା ଅସମ୍ଭବ। ତେଣୁ ଅନେକ ଥର ଉପନ୍ୟାସ ଲେଖିବାକୁ ଉତ୍ତେଜିତ ହୋଇ ମଧ ବୀରତ୍ୱ ସହ ପଛଘୁଞ୍ଚା ଦେଇଛି ଏବଂ ଅନେକ ସାହିତ୍ୟିକ ବନ୍ଧୁଙ୍କ ନିକଟରେ ବାହାସ୍ଫୋଟ ମାରିଛି– ଫକୀରମୋହନଙ୍କ ପରି ପରିଣତ ବୟସରେ ଉପନ୍ୟାସ ଲେଖି ଏକାଥରେ ପୃଥିବୀର ଲୋକଙ୍କୁ ଚମକାଇ ଦେବି।

ତଥାପି ଅନେକ ସମୟରେ ଅନେକ ସମସ୍ୟା, ଯନ୍ତ୍ରଣା ଆସି ମୋ ଚାରିପଟେ ଘେରି ବସନ୍ତି। ମୋତେ ଅନେକ କିଛି ଲେଖି ପକାଇବାକୁ ହୁଏ। କିଛି ଦୂର ଲେଖି ସାରିଲା ପରେ ଭାବେ ଏଇଟା ଉପନ୍ୟାସ କରି ପକାଇଲେ ଭଲ ହୋଇଥାନ୍ତା। ଭିତରେ ଯଶ ଲାଭ ଆଉ ସାର୍ଥକ ଔପନ୍ୟାସିକ ଉପାଧିର ଅଦେଖା ମାଛ ଲାଞ୍ଜ ହଲାଇ ଖେଳି ବୁଲେ। କିନ୍ତୁ କିଛି ଦୂର ଗଲାପରେ ବେଶ୍ ବୁଝିପାରେ ମୋ ଦ୍ୱାରା ଏ କାର୍ଯ୍ୟ ଅସମ୍ଭବ। କିଏ କାଳେ ଦେଖିବ ବୋଲି ସେ କାଗଜଗୁଡ଼ାକୁ ପୁରୁଣା ପତ୍ରିକା ସନ୍ଧିକୁ ଚାଲାଣ କରିଦିଏ।

ମୁଁ ଅନୁଭବ କରୁଛି ମୋ ଭିତରେ ଗୋଟିଏ କାରଖାନାରୁ ସବୁବେଳେ ଯନ୍ତ୍ରଣା ଉତ୍ପାଦନ ହେଉଛି। ଯନ୍ତ୍ରଣା ଦୂର ପାଇଁ ମୁଁ ସାଧାରଣତଃ ଦୁଇଟି କାର୍ଯ୍ୟକରେ। ପ୍ରଥମତଃ ଖୁବ୍ ନିର୍ଜନ ସ୍ଥାନକୁ ଯାଇ ବଡ଼ପାଟିରେ କାନ୍ଦେ ଆଉ ଅନେକ କିଛି ଲେଖି ପକାଏଁ। ତା'ପରେ ମନ ଟିକିଏ ପ୍ରଫୁଲ୍ଲ ହୁଏ। ଆଜି ମୋ ଭିତରେ ଅନେକ ଯନ୍ତ୍ରଣା, କାରଣ ଆଜି ଅଗଷ୍ଟ ପଚିଶ। ତେଣୁ ମୋତେ କିଛି ଏଣୁ ତେଣୁ ଲେଖି ପକାଇବାକୁ ହେବ। ମନେକର ଉପନ୍ୟାସ କିମ୍ୱା ସେମିତି କିଛି ଗୋଟେ ଲେଖିବା ଆରମ୍ଭ କଲି। ବର୍ତ୍ତମାନ ରାତି ବାରଟା ପାଖାପାଖି। କ୍ରମେ ପୃଥିବୀର ସବୁ ଶବ୍ଦ ଧୀର ହୋଇ ଆସିଲାଣି। ଯେଉଁମାନେ ରାସ୍ତାଘାଟରେ ପାଟିତୁଣ୍ଡ କରୁଥିଲେ ଆଉ ସଭା ସମିତିରେ ଭାଷଣ ଇତ୍ୟାଦି ଦେଉଥିଲେ ସେମାନେ ବିଛଣାରେ ଶୋଇ ନିଜ ଲୋକ ସହିତ, ନିଜ ନିଜର ସ୍ୱପ୍ନ ସହ ଫୁସ୍‌ଫୁସ କଥା ହେବାକୁ ଆରମ୍ଭ କଲେଣି। ଦୂର ନଦୀ ପୋଲ ଉପରେ ବୋଝେଇ ମାଲଗାଡ଼ିର ଗଡ଼ିଯିବାର ଶବ୍ଦ। ଆଉ କିଛି ସମୟର ପରେ ଆଜି ଦିନ, ଆଜି ତାରିଖଟି ପୁରୁଣା ହୋଇଯିବ।

ଆଜି ଅଗଷ୍ଟ ପଚିଶ। ଜୁନ ପଚିଶରେ ମୋର ଜନ୍ମ। କିନ୍ତୁ ଏପରି କାହିଁକି ହୁଏ ମୁଁ କହିପାରିବି ନାହିଁ। ମୁଁ ଅନେକ ଜଟିଳ କଥା ବୁଝିପାରେ ପୁଣି ଅନେକ ସରଳ କଥା ବୁଝିପାରେ ନାହିଁ। ମୁଁ ବୁଝିପାରେ ନାହିଁ କାହିଁକି ଅଧିକାଂଶ ଦୁର୍ଘଟଣା କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ତାରିଖରେ ନିର୍ଦ୍ଦିଷ୍ଟ ବାରରେ ବାରମ୍ବାର ଘଟେ। ସେ ତାରିଖମାନଙ୍କ ମଧ୍ୟରେ ପଚିଶ ତାରିଖ ଗୋଟିଏ, ଅଠର ତାରିଖ ଆଉ ଗୋଟିଏ। ମୋର ଜନ୍ମ ଶୁକ୍ରବାର। ଅନେକ ଦୁର୍ଘଟଣା ଶୁକ୍ରବାର ଆଉ ରବିବାର ଦିନ ଘଟେ। ପୁଣି ଯେଉଁ ମାସ ପଚିଶ ତାରିଖ ଶୁକ୍ରବାର ହୁଏ ସେ ମାସକଯାକ ମୁଁ ଭୀଷଣ ବିପଦରେ ପଡ଼େ, ନ ହେଲେ ବାରମ୍ବାର ଅପମାନିତ ହୁଏ। ମୁଁ ଥରେ ଶୁଭେନ୍ଦୁବାବୁଙ୍କୁ ଏହାର କାରଣ ପଚାରିଥିଲି। ସେ କହିଥିଲେ ଏ ତାରିଖ ଆଉ ବାରଗୁଡ଼ାକ କୁଆଡ଼େ ମୋ ପାଇଁ ଘାତ ଦିନ।

ଜୁନ ୨୫ ଶୁକ୍ରବାର ମୋ ପାଇଁ ବଡ଼ ବିପଜ୍ଜନକ ଦିନ। ଆଜି କିନ୍ତୁ ପଚିଶ ଅଗଷ୍ଟ ଶୁକ୍ରବାର। ପଚିଶ ତାରିଖର ସ୍ମୃତିକୁ ଉଖୁରେଇ ରକ୍ତାକ୍ତ ହେବାପାଇଁ ଅନେକ ଦିନ ପରେ ଦେବୀକୁ ଦେଖିବା ପାଇଁ ଇଚ୍ଛା ହେଉଥିଲା। ଯଦି ଦେବୀ ପାଖରେ ଥାନ୍ତା ! କେତେ ମାଇଲ ଦୂରରେ ସେ, ମୁଁ ଏ ଜଙ୍ଗଲ ଭିତରେ ତା'ର ହିସାବ ରଖିନି। ତଥାପି ଶେଷଥର ଯେଉଁଦିନ ଦେବୀ ଘର ଆଡ଼େ ଯାଇଥିଲି, ସେଦିନ ? ଆଜି ଦେବୀକୁ ନ ଦେଖି ମୁଁ ସ୍ୱପ୍ନ ଦେଖୁଛି, ସେଦିନ ଦେବୀକୁ ଦେଖି ମଧ୍ୟ ମୁଁ ସ୍ୱପ୍ନ ଦେଖିଥିଲି।

ଦେବୀ ହୁଏତ ଜାଣିଥିଲା ଉପରଓଳି ମୁଁ ନିଶ୍ଚୟ ତା' ଘର ଆଡ଼େ ଯିବି। ସେ ଉପର ବାଲକୋନିରେ ଛିଡ଼ା ହୋଇଥିଲା। ସେ ସବୁବେଳେ ଖୁବ୍ ଉପରେ ରହନ୍ତା କି ! କେହି ତାକୁ ଦେଖି ପାରନ୍ତେ ନାହିଁ, କାହାରି ନିଃଶ୍ୱାସର ବତାସ ତା' ଦେହରେ ବାଜନ୍ତା ନାହିଁ। ସେ ସବୁବେଳେ ଉପରେ ଥାଇ ପ୍ରକୃତିର ଖୋଲା ପବନରେ ବଞ୍ଚନ୍ତା, ଆକାଶ ଭର୍ତ୍ତି ନକ୍ଷତ୍ର ଦେଖନ୍ତା, ଦୂରର ସବୁଜ ଗଛଲତା ଦେଖନ୍ତା, ପୃଥିବୀର ବୀଭତ୍ସ ଚିତ୍ର, ଅନ୍ୟାୟର ଛକ, ଇର୍ଷା ଦ୍ୱେଷ ସନ୍ଦେହର ମୂର୍ତ୍ତି ସବୁ ଦେଖିପାରନ୍ତା ନାହିଁ। ମୁଁ ଚାହେଁନା ଦେବୀ ସେଇ ରାସ୍ତା ଉପରକୁ ଓହ୍ଲାଇ ଆସୁ ଯେଉଁଠି ଅନେକ ଦୁର୍ବୃତ୍ତର ପାଦଧୂଳି ଆଉ ଛେପ ଖଙ୍କାର ପଡ଼େ। ଦେବୀର ପାଦ ଦିଟା କି ସୁନ୍ଦର !

ଦେବୀ ଛିଡ଼ା ହୋଇଥିଲା। ବତାସରେ ଉଡୁଥିବା ଚୂନା ଚୂନା ବାଳ କେତେଟାକୁ କାନ ଉପର ଦେଇ ସାଉଁଳେଇ ନେଇ ମୋତେ ଚାହିଁଥିଲା। ତା'ର ସ୍ୱାସ୍ଥ୍ୟ ଏତେ ଖରାପ ଦେଖାଯାଉଥିଲା କାହିଁକି ? ସେ ଅନେକ ସମୟ ସ୍ଥିର ଆଖିରେ ମୋତେ ଚାହିଁ ରହିଥିଲା। ମୁଁ ଶୁଣିଥିଲି ସେ ନୀରବରେ ପରିଷ୍କାର ତାରି ସ୍ୱରରେ କହିଥିଲା—ତୁମେ ମୋ ହାତ ଧରି ଉପରକୁ ଉଠିଆସ। ପଗଡ଼ି ଖସେଇ ପକେଇ ଏଭଳି ଭାବେ ଚାହଁନାହିଁ।

ମୁଁ କ'ଣ କରିଥାନ୍ତି ? ମୁଁ ଧସ୍ କରି ସାଇକେଲରେ ବ୍ରେକ ମାରନ୍ତି। ନର୍ଦ୍ଦମା କଡ଼କୁ ସେଇଟା ଫିଙ୍ଗି ଦିଅନ୍ତି। ତା'ପରେ ଭିତରକୁ।

ସିଡ଼ି ମୁହଁରେ ଦେବୀର ବାପା ଆର୍ମଚେୟାରରେ। ସାମ୍ନାରେ ଛୋଟ ଟେବୁଲ। ଟେବୁଲ ଉପରେ ଚା କପ୍‌ର ଗୋଲ ଦାଗ। ମୁଁ ନମସ୍କାର କରନ୍ତି।

–କ'ଣ ଭଲ ଅଛ?

–ଆଜ୍ଞା ହଁ।

–ଚାକିରି ମିଳିଲା?

–ନାଇଁ ଆଜ୍ଞା।

–ବସ। ଆଉ ସବୁ ଖବର କ'ଣ?

–ଦେବୀ?

–ସେ ବୋଧହୁଏ ଉପରେ। ଯାଅ।

ତା'ପରେ ତିନୋଟି ଲେଖାଏଁ ପାହାଚକୁ ଗୋଟିଏ ଗୋଟିଏ ଡିଆଁରେ ପାରି ହୋଇ ସିଧା ଉପରେ। ବାଲକୋନିରେ ଦେବୀ ନାହିଁ, ତା'ର ମା ପିଠିରୁ ଲୁଗା ଖୋଲି ହାୱା ଖାଉଥିଲେ। ମୋତେ ଦେଖି ଇଡ଼ସଡ଼ ହୋଇଗଲେ। କିଛିକୁ ମୋର ଖିଆଲ ନାହିଁ। ସିଧା ଆଉ କେତେଟା ପାହାଚ ଡେଇଁ ଉପରକୁ। ଉପରେ ବି କେହି ନାହିଁ। କେବଳ ଗୋଟିଏ ମସିଣା ଏବଂ ତକିଆ ତା' ଉପରେ ମୁହଁ ମାଡ଼ି ପଡ଼ିଛି ଗୋଟିଏ ପତ୍ରିକା। ମୋ ଭିତରୁ ଭୀଷଣ ଭାବେ ଜୟଧ୍ୱନି ଉଠି ଆସୁଥିଲା। ସାହିତ୍ୟ ଜିନ୍ଦାବାଦ, ପ୍ରେମ ଜିନ୍ଦାବାଦ, ଦେବୀ ଜିନ୍ଦାବାଦ ପ୍ରଭୃତି ଅସଂଖ୍ୟ ଜିନ୍ଦାବାଦର ଲାଇନ୍ ମୋ ଭିତର ଉପଗଳି ଭିତରୁ କ୍ରମାଗତ ଉଠି ଆସୁଥିଲା। କାରଣ ସେ ପତ୍ରିକାର ସୂଚୀପତ୍ରରେ ମୋର ଛପା ନାମ ତଳେ ନାଲି କଲମରେ ମୋଟା ଦାଗ ଦିଆଯାଇଥିଲା। ମୁଁ ଜାଣେ ଦେବୀର ଅନେକ ପ୍ରିୟ ଲେଖକ ଅଛନ୍ତି। ଏବଂ ସେମାନଙ୍କ ମଧ୍ୟରୁ ଜଣେ ଦି ଜଣଙ୍କ ଲେଖା ବି ସେଥିରେ ବାହାରିଛି। ତଥାପି କେବଳ ମୋ ନାମ ତଳେ ନାଲି କାଳିରେ ଅଣ୍ଡରଲାଇନ ହେବାକୁ କେଉଁ ପୁରୁଷ ନଚାହେଁ?

ସିଡ଼ି ପାଖରୁ ଖିଲିଖିଲି ହସ ଶୁଣି ଚାହିଁ ଦେଖିଲି ଦେବୀ। ଦେବୀ ହସିଲେ ମନଖୋଲା ହସେ, କାନ୍ଦିଲେ ମନଖୋଲା କାନ୍ଦେ, ଭଲ ପାଇଲେ ମନଖୋଲା ଭଲପାଏ ଏବଂ ଘୃଣା କଲେ ମନଖୋଲା ଘୃଣାକରେ।

ଦେବୀ ହସିଲା। ଦେବୀ ହସିଲେ କେବଳ ତା'ର ଓଠ ବିସ୍ତାରିତ ହୁଏନି। ଆଖି ବେକ ଛାତି ପେଟ ହାତ ଗୋଡ଼ ସମସ୍ତ ହସନ୍ତି।

ମୁଁ ପ୍ରାୟ ହିନ୍ଦୀ ସିନେମା ଦେଖେ। ବମ୍ବେର ସବୁ ତାରକା ମୋର ମୁଖସ୍ଥ। କିନ୍ତୁ ମୁଁ ସବୁଠୁଁ ଭଲପାଏ ଶର୍ମିଳା ଟାଗୋରକୁ। ମୋତେ ତାକୁ ଭଲଲାଗେ କାରଣ ସେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ରକ୍ତ ସମ୍ପର୍କୀୟା ବୋଲି ନୁହେଁ କିମ୍ବା ଜଣେ ପୃଥିବୀ ବିଖ୍ୟାତ କ୍ରିକେଟ ଖେଳାଳିକୁ ସେ ଜୀବନ ସାଥୀ କରି ପକାଇଛି ବୋଲି ନୁହେଁ, କେବଳ ଏଇଥି-

ଯେ ସେ ହସିଲେ ତା' ଗାଲରେ ଭଉଁରୀ ହୋଇଯାଏ ଏବଂ ଦେବୀ ହସିଲେ ଠିକ୍ ସେହିପରି ଭଉଁରୀ ହୁଏ। ଦେବୀ ହସିଲା, ଗାଲରେ ଭଉଁରୀ ହୋଇଗଲା। ମୋ ଭିତରର ଅନେକ ଭଉଁରୀ ବି ପୂର୍ଣ୍ଣ ହୋଇ ଉଠିଲା।

ମୋ ହାତରେ ପତ୍ରିକା। ଦେବୀ ମୋ ହାତରୁ ପତ୍ରିକାଟା ଛଡ଼େଇ ନେଇ କହିଲା– ମୋତେ ଦେଖା ଦେଉନଥିଲ କାହିଁକି ? କ'ଣ ମୁଁ ମରିଯାଇଛି ବୋଲି ଧରି ନେଇଥିଲ ?

–ନାଇଁ ସେ କଥା ନୁହେଁ, ତେବେ......। ମୁଁ ଅନେକ କଥା ଚାପିଗଲି।

– କ'ଣ ତେବେ ?

–ମୁଁ ଚାହେଁ ତୁ ମୋ କଥା ଭାବି ନିଜକୁ କଷ୍ଟ ଦେଏନା। ତୋର ଏ ପ୍ରକାର ଚେହେରା ମୁଁ ଦେଖିବାକୁ ଚାହେଁନି।

–ଆହାହା, ଭାବୁଛ କି ମୁଁ ତୁମକୁ ପ୍ରେମ କରୁଛି ବୋଲି, ଆଉ ତୁମ କଥା ଭାବି ଶୁଖିଯାଉଛି ବୋଲି ?

ମୁଁ କେବଳ ତା' ଆଖିକୁ ଚାହିଁଲି। ଭ୍ରୂ କୁଞ୍ଚିତ ଆଖିରେ ବିଷଣ୍ଣତା।

ମୁଁ କହିଲି– ଦେବୀ, ମୋ କଥା କ'ଣ ତୋର ଆଦୌ ମନେପଡ଼େନି ? ଯଦିବା ଭୀଷଣ ଅବାନ୍ତର ମୋର ପ୍ରଶ୍ନ।

–ମୁଁ ଜାଣେନି। ଆହୁରି ଅବାନ୍ତର ତା'ର ଉତ୍ତର।

ତା' ପରେ କ'ଣ ହେବ ମୁଁ ଜାଣେ। ମେଘ ନଧରି ବି ବର୍ଷା ହେବ। ଠିକ୍ ତା' ପୂର୍ବରୁ ମୁଁ ତା'ର ଦୁଇ ହାତକୁ ମୋର ହାତ ପାପୁଲିରେ ଚାପି ଧରିଲି ଏବଂ ଟିକେ ମୋ ଆଡ଼କୁ ଟାଣି ଆଣିଲି। ସେ ଚାରିଆଡ଼କୁ ଚାହିଁଲା। ପାଖ କୋଠାର ଏରିଏଲ ବାଉଁଶ ଉପରେ ଗୋଟିଏ କାଉ ଦେଖିଲା। ଗୋଟିଏ ବାୟା ଚଢ଼େଇ ଫୁରକିନା ପାଖଦେଇ ଉଡ଼ିଗଲା। ନଡ଼ିଆ ଗଛରେ ଗୋଟିଏ ପୁରୁଣା ଘୁଡ଼ି ଲାଗିରହି ବିବର୍ଣ୍ଣ ହୋଇ ବି ଫଡ଼ଫଡ଼ ହୋଇ ଉଡୁଥିଲା। ସେ ଟିକେ ଇତସ୍ତତଃ ହେଲା। ମୁଁ ଚାରିଆଡ଼କୁ ଚାହିଁଲି। ସବୁ କୋଠା ଉପର ଶୂନ୍ୟ। କେବଳ ତା' କୋଠାର ଫୁଲଦାନିରେ କେତେଟା ଗଛ ଆଉ ନାମ-ନ-ଜଣା ଲାଲ ଫୁଲ। ମୁଁ ଆଉ ଥରେ ତାକୁ ମୋ ଆଡ଼କୁ ଟାଣିଆଣିଲି। ସେ ଲାଗି ଆସିଲା। ମୋ କାନ୍ଧ ଉପରେ ମୁହଁ ରଖିଲା। ମୋ ଗାଲରେ ତା'ର ନରମ ଗାଲ ଘଷି ହେଲା। ମୋ ପିଠିରେ ତା'ର ହାତ ଘୂରି ବୁଲିଲା। ମୋର ଆଖି କ୍ରମେ ବନ୍ଦ ହୋଇ ଆସିଲା। ଅନେକ ଦିନରୁ ହଜିଯାଇଥିବା ପୁରୁଣା ବାସ୍ନାକୁ ପୁଣି ମନଭରି ଘ୍ରାଣ କଲି।

–କ'ଣ ଚାନ୍ଦାଟା ଦେବନି ?

ମୁଁ ପ୍ରକୃତିସ୍ଥ ହେଲି। ଉପରେ ଦେବୀକୁ ଦେଖି ଏସବୁ ଭାବି ଯାଇଥିଲି। ଏମିତି ଭାବିବା ମୋର ଅଭ୍ୟାସ। ଏଇ ଭାବନା ଆଉ ଏଇ ଅବାସ୍ତବ ସ୍ୱପ୍ନ ନେଇ ମୁଁ ବଞ୍ଚେ। ମୁଁ ଜାଣେ ପୃଥିବୀରେ କାହାରି ତାକତ୍ ନାହିଁ ମୋର ଏ ସ୍ୱପ୍ନ ଛଡ଼ାଇ ନେବାକୁ। ଦେବୀର

ବାପା ମା, ତା'ର ସାଇ ପିଲା, କାହାରି ସାଧ ନାହିଁ ମୋର କଳ୍ପନା ଜଗତକୁ ମୋ'ଠୁଁ କାଢ଼ିନେବେ।

ଦେବୀର ସାଇ ପିଲାମାନେ ଚାନ୍ଦା ମାଗୁଛନ୍ତି। ମୁଁ ସେମାନଙ୍କ ସାଇର ସବୁଠୁଁ ସୁନ୍ଦରୀକୁ ପ୍ରେମକରେ ଏବଂ ସେମାନେ ଭୀଷଣ ଭାବେ ଚାହିଁ ମଧ୍ୟ ତା' ସହ ସାମାନ୍ୟ କଥାବାର୍ତ୍ତା କରି ପାରିନାହାନ୍ତି ବୋଲି ମୋ ଉପରେ ଭୀଷଣ ରାଗ ସାଇତି ରଖିଛନ୍ତି। ସେ ରାଗର ପରିତୃପ୍ତି ପାଇଁ ସେମାନେ ଅନେକ ମନ୍ତବ୍ୟ-ସାହିତ୍ୟ ମୋତେ ଶୁଣାଇଛନ୍ତି, ଅନେକ ଧମକ-ସାହିତ୍ୟ ମୋତେ ପଢ଼ାଇଛନ୍ତି। ଶେଷରେ ମୋତେ ଆଜି ଚାନ୍ଦା ଦେବାକୁ ହେବ ଦଶଟଙ୍କା। ସେମାନେ ଜାଣନ୍ତି ମୁଁ ଭୀଷଣ ଭାବେ ଧନବାନ। ତେଣୁ ପ୍ରଥମେ କିଛି କଥା ନ କହି ଜଣେ କହିଲା– ଟିକେ ଶୁଣନ୍ତୁ।

ବାଧ୍ୟ ଛାତ୍ର ପରି ମୁଁ ଆଗେଇ ଗଲି।

–"ଆବେ ଚେକ୍ କାଟ, ଦଶଟଙ୍କା।' ମୁଁ କେବଳ ସ୍ମାର୍ଟ ବୋକାଙ୍କ ଭଳି ଅନେଇ ରହିଥିଲି। କିନ୍ତୁ ସେ ଦିନ ଟଙ୍କା ନଦେଇ ପରେ ଦେବି ବୋଲି କହି ସେମାନଙ୍କୁ ଭୁଲାଇ ଦେଇଥିଲି। କାରଣ ମୁଁ ଜାଣେ ସେଇ ରାତିରେ ମୁଁ ସେ ସହରକୁ ଗୁଡ୍‌ବାଇ କହିଦେବି।

–ଆଜି ଚାନ୍ଦାଟା ଦିଅନ୍ତୁ।

–କାଲି ଠିକ୍ ଏଇ ସମୟରେ ଦେଇଯିବି।

–ମେଳା ଯେ ଆରମ୍ଭ ହୋଇଗଲା, କାଲି ନିଶ୍ଚୟ ଆଣିବେ।

–ନିଶ୍ଚୟ ଆଣିବି। ମନେ ମନେ ଉଚ୍ଚାରଣ କଲି ଏବଂ ଶେଷ ଥର ପାଇଁ ଦେବୀର ବାଲ୍‌କୋନିକୁ ଚାହିଁଲି।

ବାଲ୍‌କୋନିରେ ଦେବୀ ନାହିଁ। ବୋଧହୁଏ ମୋତେହିଁ ଅପେକ୍ଷା କରିଥିଲା। ନୀରବରେ କହି ଦେଇଗଲା– ମୁଁ ତୁମକୁ ଅପେକ୍ଷା କରିଥିଲି। ପାଇଗଲି। ଆଉ ବାଲ୍‌କୋନିରେ ଛିଡ଼ାହେବା ଦର୍କାର ନାହିଁ। ମୁଁ ସଙ୍କୁଚିତ ହୋଇ ନିଜର କୋଠରି ଭିତରକୁ ଚାଲିଯାଉଛି।

କିନ୍ତୁ ଦେବୀ ଜାଣେନି ଯା'ପରେ ଯେତେ ବାଲ୍‌କୋନିରେ ଛିଡ଼ାହୋଇ ଭଗବାନଙ୍କୁ ଡାକିଲେ ବି ମୁଁ ଏ ଗଳିକୁ ଆସିବି ନାହିଁ, କେଉଁ ଏକ ଜଙ୍ଗଲରେ ବସି ମୋର ସ୍ୱପ୍ନମାନଙ୍କୁ ଗୋଟାଇ ନୀରାଜନା କରିବି। – ଦେଖନ୍ତୁ କାଲି ଯେପରି ଚାନ୍ଦା ଆଣିବାକୁ ଭୁଲ ନ ହୁଏ।

ମୁଁ ଅନ୍ୟମନସ୍କ ହୋଇ ଦେବୀର ବାଲ୍‌କୋନିକୁ ଚାହିଁଥିଲି ବୋଲି ଦ୍ୱିତୀୟ ଥର ପରୋକ୍ଷଭାବରେ ମୋତେ ତାଗିଦ୍ କରିଦିଆଗଲା।

କିନ୍ତୁ ଦଶଟଙ୍କା ପାଇଁ ଦଶ ଲକ୍ଷାଧିକ ଟଙ୍କାର ସ୍ୱପ୍ନ ଏବଂ ଏ ସହରର ସ୍ୱପ୍ନକୁ ଯେ ନଷ୍ଟ କରି ଦିଆଗଲା।

(ଖ)

ଦେବୀ, ତୁ ଶେଷ ଚିଠିରେ ଲେଖିଛୁ ତୁ ମୋତେ ଭୁଲିଯାଇ ପାରିବୁ। କିନ୍ତୁ ମୋ ଭଲପାଇବାଟା ଅନ୍ୟମାନଙ୍କଠାରୁ ଭିନ୍ନ ଯେ। ମୁଁ ଜାଣେ ମୁଁ ପବିତ୍ରଭାବେ ତୋତେ ଭଲପାଏ ଯଦିବା ପବିତ୍ର ଅପବିତ୍ରର ସଂଜ୍ଞା ମୋ ନିକଟରେ ଅର୍ଥହୀନ। ମୁଁ ପବିତ୍ର ଅପବିତ୍ର ବୁଝେନା କିନ୍ତୁ ଭଗବାନଙ୍କୁ ବିଶ୍ୱାସ କରେ। ମୁଁ କେବଳ ଏତିକି କହିପାରିବି ଯେ ମୋର ଭଲପାଇବା ଯଦି ମେଞ୍ଚାଏ କାଦୁଅ ହୁଅନ୍ତା, ତା'ହେଲେ ସେଥିରେ କେବଳ ଭଗବାନଙ୍କ ମୂର୍ତ୍ତି ତିଆରି ହୁଅନ୍ତା। କାରଣ ମୁଁ ତୋ କଥା ଚିନ୍ତାକରି କେବଳ ରକ୍ତ ପ୍ରବାହ ଦ୍ରୁତ କରିନାହିଁ, ମୋର ଆଖି ଭିତରୁ ଗଦ୍‌ଗଦ ଲୁହ ଢକେଇ ଆସିଛି। ଅନ୍ତତଃ ତୁ ତ ଜାଣୁ ମୁଁ ଏଇ ତିନି ବର୍ଷ ଧରି ସମୟର ଇଟା ବସାଇ ସେଥିରେ ମୁହୂର୍ତ୍ତ ମୁହୂର୍ତ୍ତର ଭାବପ୍ରବଣତା, ଚିନ୍ତା, ଆଦର, ଚୁମ୍ବନ, ଆଲିଙ୍ଗନ, ମାନ, ଅଭିମାନ, ପ୍ରଶଂସା, ଶୁଭେଚ୍ଛା, ଭକ୍ତି, ଲଜ୍ଜା, ଲୁହ, କୋହ, ହସ, ସଂଳାପ, ବିଳାପ, ପ୍ରଳାପ, ଅପ୍ରଳାପ, ଆକର୍ଷଣ, ବିକର୍ଷଣ ଇତ୍ୟାଦି ଇତ୍ୟାଦି ଅନେକ ଅନେକ ଆହୁରି ଅନେକ ଚୂନ ବାଲି ସିମେଣ୍ଟ, ସୁରକି ଇତ୍ୟାଦି ମିଶାଇ ଗୋଟିଏ ବିରାଟ ମନ୍ଦିର ତିଆରି କରିଥିଲି। ସେ ମନ୍ଦିରରେ ବିଗ୍ରହ ଥିଲା ଯୌଥ ଭଲପାଇବା। ସେ ବିଗ୍ରହ ପୂଜିତ ହେଉଥିଲା ଯୌଥ ବୁଝାମଣାରେ। ତୁ କ'ଣ ଭାବୁଛୁ ତୁ ସେ ମନ୍ଦିରକୁ କେତୋଟି ଆଟମିକ୍ ଲାଇନ୍ ଲେଖି ଉଡ଼ାଇ ଦେଇ ପାରିବୁ ?

କିନ୍ତୁ ଏମିତି ବାଜେ ଉପନ୍ୟାସ ଆରମ୍ଭ କରାଯାଏ କି ? ଏଇଟା ବରଂ ଦେବୀର ଚିଠିର ଉତ୍ତର ହୋଇଯାଉଛି। ଦେବୀ ଦିନେ ଚିଠି ଲେଖିଥିଲା– ସେ ମୋତେ ଭୁଲିଯାଇ ପାରିବ କାରଣ ସେ ମୋତେ ଏ ପର୍ଯ୍ୟନ୍ତ ଭଲ ପାଇପାରି ନାହିଁ। ଭଲପାଇଲେ ସିନା ଭୁଲିବା ଅସମ୍ଭବ ହୁଏ। କିନ୍ତୁ...

ଦେବୀ ମୋତେ କ'ଣ ଦୟା କରୁଥିଲା ? ଦିନ ସେ ମୋ ବସାକୁ ଆସିଥିଲା। ସେତେବେଳେ ସେ ସ୍କୁଲ ଛାତ୍ରୀ। ମାଟ୍ରିକ୍ ପରୀକ୍ଷା କେତେଦିନ ବାକୀ ଥାଏ। ସ୍କୁଲ ଛୁଟି। କିନ୍ତୁ ଦେବୀ ପ୍ରତ୍ୟେକ ଦିନ ନଅଟାରେ ଗାଧୁଏ, ଦର୍ପଣ ସାମ୍ନାରେ ଛାଡ଼ାହୁଏ। ବେଣୀରେ ଆଙ୍ଗୁଠି ଚଳାଏ। ବେଣୀ ଆଗରେ ରିବନ୍ ଘୂରାଇ ଗଣ୍ଠି ପକାଏ। ଦୁଇ ହାତ ପାପୁଲିରେ ଚାପି ଚାପି ଦୀର୍ଘ ବେଣୀକୁ ଚଉଡ଼ା ଦେଖାଯିବା ଭଳି ଚେଷ୍ଟା କରେ। ତାରି ବିଶେଷ ଭଙ୍ଗୀରେ ମୁଣ୍ଡ ହଲାଇ ବେଣୀଟାକୁ ପିଠି ଉପରକୁ ଫିଙ୍ଗିଦିଏ । ଶୀଘ୍ର ଖାଇବାକୁ ମାଗେ। ମା ପଚାରନ୍ତି– ସ୍କୁଲପରା ଛୁଟି ?

–କାଞ୍ଚନ ଘରକୁ ଯିବି। ସେଇଠି ତା' ସାଙ୍ଗରେ ପଢ଼ିବି।

ଚଟାପଟ ଖାଇଦିଏ। କବାଟ ଦରଆଉଜା କରେ। ଘରେ ସାନ ଭାଇମାନେ ତ ଅଛନ୍ତି। ଦେହର ପିନ୍ଧା ଲୁଗା କାଢ଼ି ଫିଙ୍ଗିଦିଏ। ଆଉ ଗୋଟିଏ ଶାଢ଼ି ଟାଣି ପିନ୍ଧେ। ଅଧା

ପିନ୍ଧା ସାରିଲା ପରେ ପୁଣି ସେଇଟାକୁ କାଢ଼ି ପକାଏ। ସିଲ୍‌କ୍ ଶାଢ଼ି ପିନ୍ଧେ। ସେ ଜାଣେ ଫେରିବା ବେଳକୁ ସେ ଶାଢ଼ି ଲୋଚାକୋଚା ହୋଇଯିବ। ମା'ଙ୍କର ଆଖିରେ ଅନେକ ପ୍ରଶ୍ନ ଚିହ୍ନ ଲାଇନ ଦେବେ। ତା' ଅପେକ୍ଷା ସିଲ୍‌କ୍ ଶାଢ଼ି ଭଲ। ଲୋଚାକୋଚା ହୁଏନାହିଁ। ପୁଣି ସେ କହନ୍ତି କୁଆଡ଼େ ସିଲ୍‌କ୍ ଶାଢ଼ି ପିନ୍ଧିଲେ ଦେହଟା ବେଶୀ ନରମ ଦେଖାଯାଏ ଆଉ ସରସ୍ୱତୀ ପୂଜା ଦିନର ପବିତ୍ରତା ଆସେ।

ହାତରେ ଦୁଇଖଣ୍ଡ ବହି ଜାକି ସେ ଘରୁ ବାହାରି ଆସେ। କାଞ୍ଚନ ଘର ରାସ୍ତା ବାଁ ଆଡ଼େ ରହିଯାଏ। ସେ ଅନ୍ୟ ରାସ୍ତା ଧରି ସିଧା ତା'ର ଗନ୍ତବ୍ୟ ଆଡ଼େ ମୁହାଁଏ। ଏଣେ ଆଉ ଗୋଟିଏ ପିଲା ଶୀଘ୍ର ଶୀଘ୍ର ଅଧା ଖାଇ ରାସ୍ତାକୁ ଅପେକ୍ଷା କରେ। ବାରମ୍ବାର ଘଡ଼ିକୁ ଚାହେଁ। ସାଢ଼େ ଦଶ ବାଜେ। ତା' ସଙ୍ଗେ ସାଙ୍ଗେ ତା'ର ହୃତ୍‌ପିଣ୍ଡର ଶବ୍ଦ ତା' କାନରେ ଶୁଣାଯିବାକୁ ଆରମ୍ଭ କରେ। ସେ ଆସେ। ତାକୁ ପାଛୋଟି ନେଇ ତା'ର ନିଜ ରୁମ୍‌କୁ ନେଇଯାଏ। ବସାଏ। ଦିନେ ନୁହେଁ ଅନେକ ଦିନ ଏ ଘଟଣା ଚାଲେ। ପ୍ରାୟ ପ୍ରତ୍ୟେକ ଦିନ ଏଭଳି ଦୃଶ୍ୟ ଅନେକଙ୍କ ଦ୍ୱାରା ପରିଲକ୍ଷିତ ହୁଏ।

ସେଦିନ ବି ଠିକ୍ ସାଢ଼େ ଦଶଟାରେ ଦେବୀ ଆସିଲା। ମୁଁ ତାକୁ ପାଛୋଟି ନେଇ ଆସିଲି। ଉଠୁ ଉଠୁ ସନ୍ତର୍ପଣରେ ତା'ର ଦେହ ଛୁଇଁଲି। ତା' ପିଠିରେ ହାତ ରଖିଲି।

ମୁଁ ରହେ ତିନି ମହଲାରେ। କୋଠରି ନିର୍ଜନ। ସେଠାରେ ଅନ୍ୟ ମଣିଷର ପାଦ କ୍ୱଚିତ୍ ପଡ଼େ। ଦେବୀ ତିନି ମହଲାରେ ବସେ ଖଟ ଉପରେ ଝର୍କାକୁ ଡେରି। ମୁଁ ତଳ ଝର୍କା ଲଗାଇ ଦିଏ। ଦେବୀ ହାତରୁ ବହି କାଢ଼ି ଝର୍କା ଉପରକୁ ଫିଙ୍ଗିଦିଏ। ହଠାତ୍ କ'ଣ କରିବି କିଛି ବୁଝିପାରେନା। ସେ ପ୍ରଥମେ ଆରମ୍ଭ କରେ–

–ଆଜି ଶୀଘ୍ର ଚାଲିଯିବି। ବାପା ଆସିଯିବେ।

–ନଆସୁଣୁ ଯିବା କଥା। ବରଂ ତୁ ନ ଆ।

–କାହିଁକି ?

–ତୋର ଯିବା ମୁଁ ସହ୍ୟକରି ପାରେନାହିଁ।

–ଆସିବାଟା ଉପଭୋଗ କର ଆଉ ଯିବାଟା ଅସହ୍ୟ ହୁଏ।

ମୁଁ କିଛି କହେ ନାହିଁ। ଧୀରେ ଧୀରେ ଏକ ଅସହାୟ ଶିଶୁ ହୋଇଯାଏ। ତା' ହାତ ପାପୁଲିକୁ ଆଣି ମୋ ଗାଲରେ ଘଷେ। ଚୁମା ଖାଏ, ତା' କାନ୍ଧରେ ମୁଣ୍ଡ ରଖେ। ପ୍ରଥମେ ସେ ଅସ୍ୱସ୍ତି ଅନୁଭବ କରେ। କ୍ରମେ ଅଭ୍ୟସ୍ତ ହୋଇଯାଏ। ମୁଁ ତା' ଛାତିରେ ମୁଣ୍ଡରଖେ। ତା' କୋଳରେ ମୁହଁ ଜାକି ଏକ ଅସହାୟ ଶିଶୁଭଳି କାନ୍ଦିବାର ପ୍ରବୃତ୍ତିକୁ ଡାକିଆଣେ।

ଦିନେ ସେ କହିଲା– ତୁମକୁ ଦେଖିଲେ ମୋତେ ଭୟ ହୁଏ।

ମୁଁ ଆଶ୍ଚର୍ଯ୍ୟ ହେଲି– ଭୟ ?

—ଏସବୁର ପରିଣତି କଥା ଭାବିଲେ ମୁଁ କେମିତି ଗୋଟେ ହୋଇଯାଏ।

—କାହିଁକି ?

—ମୁଁ ଯେତେବେଳେ ବାପା ମା'ଙ୍କ ନିର୍ବାଚିତ ପୁରୁଷକୁ ବାହାହୋଇ ତା' ସହ ଚାଲିଯିବି। ସେ ଦିନ ?

—ତୁ ବନ୍ଦ କର। ସେଦିନ କ'ଣ ହେବ ମୁଁ ଜାଣେନି। ଯଦି ଆଜିପରି ରହେ ତା'ହେଲେ ସେ ଦିନ ଗୋଟିଏ ଫୁଙ୍କରେ ମୁଁ ଆକାଶର ସମସ୍ତ ନକ୍ଷତ୍ର ଲିଭାଇ ଦେବି। ଚନ୍ଦ୍ର ସୂର୍ଯ୍ୟଙ୍କୁ ଧରିଆଣି ଏଇ ହାତରେ ଭାଙ୍ଗି ଖଣ୍ଡ ଖଣ୍ଡ କରି ପକାଇବି। ନହେଲେ କଲମ ନିବ୍‌ରେ ମୋ ଆଖି ଯୋଡ଼ିକ ଫୁଟାଇ ଦେଇ ମୁଁ ଚିତ୍କାର କରିବି। ନହେଲେ ମାରାତ୍ମକ ପାଗଳ ହୋଇ କିଛି ଲୋକଙ୍କୁ— ଅନ୍ତତଃ ତୋ ବାପା ମା'ଙ୍କୁ ଖୁନ୍ କରି ପକାଇବି। ସେ ମୋ' ପାଟି ଚାପି ଧରେ। ମା' ପରି ମୋ ମୁହଁକୁ ତା' କାନ୍ଧ ଉପରେ ପକାଇ ଆଶ୍ୱାସନା ଦେବାକୁ ଆରମ୍ଭ କରେ। ଏପରି ଇମୋସନାଲ ହେବା ଭଲ ନୁହେଁ। ସେଥିପାଇଁ କହୁଥିଲି ଏ ସବୁର ପରିଣତ କ'ଣ ହେବ— ମୁଁ ଯେମିତି କହୁଛି ଆପଣ ସେମିତି କରନ୍ତୁ।

ମୁଁ ଚିତ୍କାର କରେ— ମୁଁ ପାରିବି ନାହିଁ, ମୁଁ ପାରିବି ନାହିଁ। ସମାଜକୁ ଡରି ତୋ ବାପା ମା'ଙ୍କୁ ଡରି ଏଇ ଖୁଚୁରା ମଣିଷଙ୍କୁ ଡରି ମୁଁ ତୋତେ ହାତଛଡ଼ା କରି ପାରିବି ନାହିଁ। ତୁ ହାତଛଡ଼ା ହୋଇଯିବା ପୂର୍ବରୁ ତୋତେ ଖୁନ୍ କରି ମୁଁ ଆତ୍ମହତ୍ୟା କରିବି।

ସେ ମୋତେ ହାଲୁକା କରି ଦେବାପାଇଁ ହସି ଉଠେ।

ମୁଁ ଭୀଷଣ ଭାବେ ଗମ୍ଭୀର ହୋଇଯାଏ।

ତାହେଲେ ସେ ମୋତେ ଭଲପାଏ ନାହିଁ ବୋଲି ଲେଖିଥିଲା। ମୋତେ ଭୁଲାଇବା ପାଇଁ ଅଥବା ମୋତେ ଦୟା କରୁଥିଲା ?

ତାହେଲେ ଦେବୀ ମୋତେ ଦୟାକରେ ?

ନା, ସେ ମୋତେ ଭଲପାଏ। ସେ ମୋତେ ଭୀଷଣ ଭାବେ ଭଲପାଏ। ତଥାପି ଏ ଛଳନା କାହିଁକି ? କାହିଁକି ସେ ସବୁଦିନେ ମୋର ହେବାକୁ ଚାହେଁନି ?

ମୋର ଅନେକ ବ୍ୟକ୍ତିଗତ ଯନ୍ତ୍ରଣା ଅଛି। କିନ୍ତୁ ଏଇଟା ସବୁଠାରୁ ବଡ଼ ଯନ୍ତ୍ରଣା। ମୁଁ ପାଇ ବି ପାଇପାରୁନି। ଏଇ ଯନ୍ତ୍ରଣାକୁ ନେଇ କିପରି ଉପନ୍ୟାସ ଲେଖାଯାଇପାରେ ? ଉପନ୍ୟାସ ଲେଖିବାକୁ ବସିଲା ମାତ୍ରେ ଏଇ ସବୁ କଥା ପେଲାପେଲି ହୋଇ ବାହାରି ଆସୁଛନ୍ତି।

ଏ ପର୍ଯ୍ୟନ୍ତ ଅନେକ ଗଳ୍ପ ଲେଖିଲି। କିନ୍ତୁ ଗୋଟିଏ ସବୁ ମୁଁ ର କଥା, ସବୁ ସମସ୍ୟା, ସବୁ ଯନ୍ତ୍ରଣା କହି ଶେଷ କରି ପାରିଲି ନାହିଁ କାହିଁକି ? ସମୟ ଆଗେଇ ଯାଏ। ତା' ସହିତ ମୋର ନୂତନ ଅନୁଭୂତି, ନୂତନ ଯନ୍ତ୍ରଣା ବଢ଼ି ବଢ଼ି ଚାଲେ। ଯେଉଁମାନେ

ସବୁ ଅନୁଭବ କରନ୍ତି ଅଥଚ ଲେଖନ୍ତି ନାହିଁ, କାହାରି ଆଗରେ ପ୍ରକାଶ କରନ୍ତି ନାହିଁ ସେମାନେ ବଞ୍ଚିରହନ୍ତି କିପରି ? ଆଶ୍ଚର୍ଯ୍ୟ ଲାଗେ। ମୁଁ ଯଦି ଏଣୁ ତେଣୁ କିଛି ଲେଖୁନଥାନ୍ତି ଏବଂ କାହାରି ପାଖରେ ଯଦି କିଛି କହୁନଥାନ୍ତି ତା'ହେଲେ ନିଶ୍ଚୟ ଏବେ ରାଞ୍ଚିର ପାଗଳା ଗାରଦରେ ବସି ଛବି ଆଙ୍କୁଥାନ୍ତି।

ମୁଁ ତ ଲେଖେ। ମୋ ବିଷୟରେ ଅନେକ କଥା ଏଣେ ତେଣେ କହେ। ତଥାପି ଦେବୀ ମୋତେ ଅନେକ ଥର ପାଗଳ ବୋଲି କହୁଥିଲା କାହିଁକି ? ମୁଁ କ'ଣ ସତରେ ପାଗଳ ? ଦିନେ ମୁଁ ତାକୁ କହିଥିଲି–

–ମୁଁ ଗୋଟିଏ ନାଟକ ଲେଖିବି।

–ଲେଖୁନ !

–ତୁ ଆଉ ମୁଁ ସେଥିରେ ଅଭିନୟ କରିବା।

–ମୁଁ ହିରୋଇନ୍ ହୋଇପାରିବି ନାହିଁ।

–ତୁ ଗୋଟିଏ ମା'ର ଭୂମିକାରେ ଅଭିନୟ କରିବୁ।

–ଆଉ ତୁମେ ?

–ମୁଁ ଶିଶୁ ପୁତ୍ରର ଭୂମିକାରେ।

ଅନେକ ସମୟ ସେ ନୀରବ ରହିଲା। ତା'ପରେ କହିଲା–

–ଦେଖ, ମୁଁ ଗୋଟେ ସତ କଥା କହିବି ?

–କହ।

–ତୁମେ ନା, ତୁମେ ନା ଗୋଟେ...

–କ'ଣ କହ।

–ତୁମେ ଗୋଟେ ପାଗଳ।

ତା'ପରେ ହସିଲା। ହସି ହସି ତା'ର ଗାଲରେ ଦାଗ ଧରିଗଲା। ଆଖିରେ ପାଣି ଜମି ଆସିଲା। ଅନେକ ସମୟ ହସି ମୋର ଗମ୍ଭୀର ମୁହଁକୁ ଚାହିଁ ଟିକେ ଭଲ୍ୟୁମ୍ କମେଇଲା ଏବଂ କହିଲା–

–କ'ଣ ରାଗିଲ ?

–ନାଇଁତ।

–ସତରେ କହୁଛି ତୁମେ ଗୋଟେ ପାଗଳ।

ମୋତେ ହଠାତ୍ କାନ୍ଦିବାକୁ ଇଚ୍ଛା ହେଉଥିଲା– କାହିଁକି ଦେବୀ ମୋତେ ବୁଝିପାରି ନଥିଲା। ସେ ଯଦି ମୋତେ ସାମାନ୍ୟ ବୁଝିପାରିଥାନ୍ତା !

ତଥାପି ମୁଁ ଗୋଟେ ଉପନ୍ୟାସ ଲେଖିବି। ଦେବୀ ମୋତେ ଥରେ କହିଥିଲା ଉପନ୍ୟାସ ଲେଖିବା ପାଇଁ। ମୁଁ ଉପନ୍ୟାସଟା ଯଦି ଏହିପରି ଆରମ୍ଭ କରେ–

ମୁଁ ଦିନ ରାତି କାନଡ଼େରି ଶୁଣେ କେଉଁଠୁ ଗୋଟଏ ଶବ୍ଦ ଆସୁଛି। ଯେତେବେଳେ ବିଛଣାରେ ଶୋଇ ଆଲୁଅଟା ଲିଭାଇ ଦିଏ ସେ ଶବ୍ଦ ଦ୍ରୁତତର ହୁଏ। ମୋର ଜଣେ କମ୍ପୋଜିଟର ସାଙ୍ଗ ଅଛି। ତା'ର ନାମ ଗଦାଧର। ଦିନେ ସେ ଯେତେବେଳେ ଚଞ୍ଚଳ ହାତରେ ଅକ୍ଷର ପରେ ଅକ୍ଷର ଖଞ୍ଜି ଚାଲିଥିଲା ସେତେବେଳେ ମୁଁ ତା' ପଛରେ ଯାଇ ଛିଡ଼ାହେଲି ଏବଂ ସେଦିନ ନାଇଟ୍ ଶୋ' ଯିବାର ଯୋଜନା ସ୍ଥିର ହେଲା। ମୁଁ ପୂର୍ବରୁ ଅନେକ ଥର ତା' ପାଖକୁ ଯାଇଛି। ଅକ୍ଷର ଖଞ୍ଜା ଦେଖିଛି। ଘଣ୍ଟା ଘଣ୍ଟା ଛପା ଯନ୍ତ୍ରର ଆୱାଜ ଶୁଣିଛି। କିନ୍ତୁ ସେଦିନ ସେ ଘଟାଂ ଘଟାଂ ଶବ୍ଦଟା ପରିଚିତ ମନେହେଲା। ହଠାତ୍ ମୁଁ ବୁଝିପାରିଲି ଏଇ ଶବ୍ଦଟା ମୁଁ ଦିନ ରାତି କାନଡ଼େରି ଶୁଣିଛି। ମୁଁ ଗଦାଧରକୁ କହିଲି– ହେ, ମୋ ଭିତରେ ଗୋଟିଏ ବିରାଟ ଛାପାଖାନା ଅଛି। ସେ ଶୁଣିଲା, ମୁରୁକି ହସିଲା, କହିଲା– କ'ଣ ଆଜି ନାଇଟ୍ ଶୋ' ଯିବା ବନ୍ଦ? ସେ ଜାଣେ ମୋର ପାଗଳାମି ବାହାରିଲେ ମୁଁ ଇଣ୍ଟରଭାଲରୁ ଉଠି ପଳେଇ ଆସେ। ମୁଁ କହିଲି– ଆଜି ଥାଉ କାଲି ଦେଖାଯିବ। କିନ୍ତୁ ତା' ପରେ ଆସି ବିଛଣାରେ ଶୋଇ ଆଖି ବନ୍ଦକରି ଦେଖିଲି ଅନେକ ଅବ୍ୟକ୍ତ ଅକ୍ଷର ଦିନ ରାତି ଖଞ୍ଜା ଚାଲିଛି ମୋର ଭିତର ପ୍ରେସରେ। ଦିନ ରାତି ଯେଉଁ ଘଟାଂ ଘଟାଂ ଶବ୍ଦ ଶୁଣେ ସେ ଶବ୍ଦଟା ହେଉଛି ମୋର ଭିତରର ଛାପା ଯନ୍ତ୍ର। ମୁଁ ଅନୁଭବ କଲି ଦିନରାତି ମାଇଲ ମାଇଲ କାଗଜରେ ଛପା ହେଉଛି ଦେବୀର ପ୍ରଶସ୍ତି ଆଉ ମୋର ଆତ୍ମପ୍ରକାଶନୀ।

କିନ୍ତୁ ଉପନ୍ୟାସଟା ଏହିପରି ଆରମ୍ଭ କରି ଭାବେ, କିପରି ଆଗେଇବି?

## (ଗ)

ମୁଁ କେବେ କାହାରିକୁ ବିଦାୟ ଦେବାକୁ ଷ୍ଟେସନ କିମ୍ବା ବସ୍‌ଷ୍ଟାଣ୍ଡ ଯାଏନାହିଁ। କିନ୍ତୁ ମୋତେ ବିଦାୟ ଦେବାକୁ ଅନେକ ଲୋକ ଯାଆନ୍ତି। ମୁଁ ଯାଏନାହିଁ କାରଣ ହଠାତ୍ ଯେତେବେଳେ ଟ୍ରେନ୍ ଛାଡ଼ିବାର ଘଣ୍ଟା ବାଜେ ଏବଂ ନୀଳ ଆଲୁଅ କିମ୍ବା ପତାକା ଦେଖାଇ ଅଥବା ବସ୍ ଦେହରେ ଦୁଇଥର ହାତ ପିଟି, ନହେଲେ ହୁଇସିଲ ମାରି ଯେତେବେଳେ କ୍ଲିନର ଟୋକା ଦୌଡ଼ି ଦୌଡ଼ି ଯାଇ ବସ୍‌ରେ ଚଢ଼ିଯାଏ ସେତେବେଳେ ମୋ ଭିତରୁ ଭୀଷଣ ହାହାକାର ଉଠିଆସେ। ମନେହୁଏ ଗୋଟିଏ ସାଙ୍ଗ ବା ଆତ୍ମୀୟ କେହି ମୋତେ ଛାଡ଼ି କେବଳ ଗଲାନାହିଁ, ପୃଥିବୀରେ ମୁଁ ଯେ ଭୀଷଣ ଏକାକୀ ଏଇଆ ପ୍ରମାଣ କରିଦେଇ ଗଲା। ପୁଣି ମୁଁ ଯେତେବେଳେ ବିଦାୟ ନିଏ ସେତେବେଳେ ମୋତେ ସେତେ ଦୁଃଖ ଲାଗେ ନାହିଁ। ତଥାପି ଯେଉଁଦିନ ଷ୍ଟେସନରେ ବସନ୍ତ ଗଦାଧର ଇତ୍ୟାଦିଙ୍କୁ ଛାଡ଼ି ଆସିଲି ସେଦିନ ଟ୍ରେନ ଛାଡ଼ିବା ମାତ୍ରେ ଲାଭାଟରୀ କବାଟ ଖୋଲି ଭିତରକୁ ପଶିଲି। ଦର୍ପଣ ସାମ୍ନାରେ ଛିଡ଼ାହୋଇ ଅନେକ ସମୟ କାନ୍ଦିଲି ଏବଂ ମୁହଁ ଧୋଇ ଆଖି

ନାଲି କରି ଆସି ସିଟ୍‌ରେ ବସି ହାଓ୍ୱା ଖାଇଲି। ମୁଁ ଯେବେ ସହରରୁ ଗାଁକୁ ଯାଏ ସେତେବେଳେ କିଛି ଲାଗେନି। କେବଳ ଯିବାବେଳେ ଟିକିଏ ଦେବୀ କଥା ମନେକରେ। ମନେ ମନେ ଭାବେ ତିନି ଚାରି ଦିନରୁ ଡେରି ହୋଇଗଲେ ଦେବୀ କୁଆଡ଼େ କାନ୍ଦିବ ପରା ! ମୁଁ ବି ଦିନେ ଦେବୀକୁ ନେଇ ଏମିତି ଏକ ଟ୍ରେନରେ ଗାଁକୁ ଯିବି। ଦେବୀ ଝର୍କା ପାଖରେ ବସି ବାହାର ସୌନ୍ଦର୍ଯ୍ୟ ଦେଖିବ। ପଚାରିବ, ତୁମ ଗାଁଟା ଆଉ କେତେ ବାଟ। ମୁଁ ସାନ ପିଲାଙ୍କୁ ଭୁଲାଇ ଦେଲା ଭଙ୍ଗୀରେ କହିବି–ଏଇ ଆଗରେ ଆଉ କେତେଟା ବଣବୁଦା ଆଉ ତାଳଗଛ ପାରି ହୋଇଗଲା ପରେ ଆମ ଗାଁ। ଦେବୀ ଚିନ୍ତା ଛଡ଼ା ମନରେ ଆସେ–ଗାଁ ପ୍ରତି ମୋର ଆକର୍ଷଣ ନାହିଁ, ଯଦିବା କେବଳ ରକ୍ତର ସମ୍ପର୍କ ଗାଁରେ ଅଛନ୍ତି ଏବଂ ଯଦିବା ସେମାନେ ମୋ ଗ୍ରନ୍ଥିର ଏକ ଅଂଶ ତଥାପି କିଛି ଚୁମ୍ବକତ୍ୱ ମୁଁ ଅନୁଭବ କରେନାହିଁ। ଅବଶ୍ୟ ତା'ର କାରଣ ବି ଅନେକ।

କିନ୍ତୁ ଯେବେ ଗାଁରୁ ଫେରେ ସେଇ ଗୋଟିଏ କରୁଣ ଦୃଶ୍ୟ ସବୁବେଳେ ଦେଖେ। ମୁଁ ଯେତେବେଳେ ଘରୁ ହାତରେ ବ୍ୟାଗ ଧରି ବାହାରିଆସେ ମୋ ପଛେ ପଛେ ଅନେକ ସାନ ବଡ଼ ପିଲା ଆଉ ଭାଇ ଭଉଣୀ ସମେତ ମା ବାହାରି ଆସନ୍ତି। କ୍ରମେ ମୁଁ ଯେତେ ବାଉଁଶ ଗଛ ଗଳି ଭିତର ଦେଇ ଆଗେଇ ବସ୍‌ଷ୍ଟାଣ୍ଡ ଆଡ଼କୁ ଯାଏ, କ୍ରମେ କ୍ରମେ ରାସ୍ତାରେ ସମସ୍ତେ ରହିଯାଆନ୍ତି। ରାସ୍ତାଟା ଗାଁ ମୁଣ୍ଡରେ ଯେଉଁଠି ଶେଷ ହୋଇଛି ତା'ପରେ ଗୋଟିଏ ବଙ୍କା ଏବଂ ବଡ଼ ରାସ୍ତା। ସେଇ ମୋଡ଼ ବୁଲିବା ପୂର୍ବରୁ ଶେଷ ଥର ପାଇଁ ପଛକୁ ନଚାହିଁ ମୁଁ ରହିପାରେନି। ପ୍ରତ୍ୟେକ ଥର ଆଗରୁ ଶପଥ କରେ ଆଉ ପଛକୁ ଚାହିଁ ସେ ଦୃଶ୍ୟ ଦେଖିବି ନାହିଁ। କିନ୍ତୁ ନିଜ ପାଖରେ ହାରିଯାଏ। ପଛକୁ ଚାହେଁ। ଦେଖେ ଗୋଟିଏ ଭଙ୍ଗୀରେ ଛିଡ଼ା ହୋଇଥିବା ଏକ ଅସହାୟ ବିଧବା ମୂର୍ତ୍ତି। ଯେପରି ସମସ୍ତ ନିଃସ୍ୱତା ସେ ପୃଥିବୀରେ ବିକିରଣ କରି ହୋଇଛି। ସେ ବିଧବା ନାରୀ ମୂର୍ତ୍ତିଟି ମୋର ମା। ମୁଁ ଜନ୍ମ ହୋଇ ଯାହାକୁ ପ୍ରଥମେ ଦେଖିଥିଲି ସେଇ ନାରୀଠାରୁ ବର୍ତ୍ତମାନର ଦେବୀ ପର୍ଯ୍ୟନ୍ତ ଅନେକ ନାରୀର ହାତ ପାପୁଲି ମୋ ଦେହରେ ବାଜିଛି। ଅନେକଙ୍କ ଭୀଷଣ ଭରସା ମୋ ଉପରେ ରହିଛି। କେତେକଙ୍କୁ ଆଦୌ ଦୁଃଖ ଦେବି ବୋଲି ଶପଥ କରିଛି। କିନ୍ତୁ ମୋ ସହ ଯେଉଁମାନେ କଥା କହି ପକାଇଛନ୍ତି ସେମାନେ ବି ଦୁଃଖ ପାଇଛନ୍ତି। ମୁଁ ତେଣୁ ବିପରୀତ ଆତ୍ମା ଦେଖିଲେ ହଠାତ୍ ଦୂରେଇଯାଏ। ମନେ ହୁଏ ମୋ ନିଃଶ୍ୱାସରେ ବତାସରେ ସେମାନଙ୍କ ସୁଖ ଆନନ୍ଦ କୁଆଡ଼େ ଉଡ଼ିଯିବ। କିନ୍ତୁ ସେମାନେ ଏ କଥା ଭାବନ୍ତି ନାହିଁ। ସେମାନେ ବୁଝିପାରନ୍ତି ନାହିଁ ଯେ ମୁଁ ସବୁଜ ଘାସରେ ଗୋଡ଼ ଦେଲେ ମଧ୍ୟ ଘାସ ପୋଡ଼ି ସେଇଟା ପୋଡ଼ା ଭୂଇଁ ହୋଇଯାଏ।

ଜୀବନରେ ଯାହାର ସୁନ୍ଦର ସବୁଜ ଘାସରେ ମୋର ସ୍ନେହର ପେଟ୍ରୋଲ ପକାଇ ଜଳେଇ ଦେଇଥିଲି ସେ କୁନିଅପା। ସ୍କୁଲରେ ଦଶମ ଶ୍ରେଣୀରେ ପଢୁଥିବା ବେଳେ

ମୋର ବହି ନଥାଏ। ନବମ ଶ୍ରେଣୀର ଦୁଇ ତିନିଟା ମାଗିଆଣିଥିବା ବହି ଆଉ କେତେଟା ଗୋପିନାଥ ମହାନ୍ତି, ବିଭୂତି ପଟ୍ଟନାୟକର ଉପନ୍ୟାସ ଧରି ମୋର ପାଠପଢ଼ା ଚାଲିଥାଏ। ଦିନେ ହଠାତ୍ ଗୋଟିଏ ନୂଆ ପିଲାର ଚେହେରା ଦେଖାଗଲା କ୍ଲାସରେ। ନାମ ପଚାରି ଜାଣିଲି ପ୍ରଭାତ। ତା'ର ବାପା କୁଆଡ଼େ ସରକାରୀ ଚାକିରିଆ। ବଦଳି ହୋଇ ସେ ସହରକୁ ଆସିଥିଲେ। ନୂଆ ପିଲାଙ୍କ ସହ ମିଶିବାରେ ମୋର ଝୁଙ୍କ ବେଶ୍। ମିଶିଗଲି। ଏଣୁ ତେଣୁ ଦୁଇ ଚାରୋଟି ପୁଡ଼ି ଝାଡ଼ିଦେଲା ପରେ ଭୀଷଣ ଦୋସ୍ତୀ ତା ସହ। ଦିନେ ତା' ଘରକୁ ଯାଇ ଆବିଷ୍କାର କଲି କୁନିଅପାଙ୍କୁ। କୁନିଅପା ପ୍ରଭାତର କୁନିଅପା। ପ୍ରଭାତର କ୍ରମେ ମୋ ପ୍ରତି ଆକର୍ଷଣ ବଢ଼ିଗଲା ବୋଧହୁଏ। କିଛି ଭୂମିକା ନକରି ଦିନେ ତା' ଘରକୁ ଡାକିଦେଲା ପାଠ ପଢ଼ିବା ପାଇଁ। ମୁଁ ସଂଧ୍ୟାରେ ଖଣ୍ଡିଏ ଖାତା ଆଉ କଲମ ଧରି କଲେଜ ପିଲାଙ୍କ ଭଳି ତା' ଘରେ ହଜାର। କ୍ରମେ ସେ ଜାଣିଗଲା ଯେ ମୋର ବହି ନାହିଁ ଏବଂ ତା'ର ସୁବିଧା ପାଇ ଦୁଇଓଳି ତା'ର ବହି ତାରି ପଢ଼ାଘରେ ସଦୁପଯୋଗ କରିବାକୁ ଅନୁମତି ଦେଇଦେଲା। ତା'ପରେ ଦିନର ଦୁଇ-ତୃତୀୟାଂଶ ଏବଂ କ୍ରମେ ସ୍କୁଲ ଛଡ଼ା ଅନ୍ୟ ସମୟ ପ୍ରଭାତ ଘରେ ହିଁ କଟାଇଲି। ସ୍ନେହ କାଙ୍ଗାଳ ମୁଁ ସେଇଠି ମାଉସୀ ମଉସା ପ୍ରଭାତ ଓ କୁନିଅପା ନେଇ ନୂଆ ଦୁନିଆ ଗଢ଼ି ବସିଲି।

ପାଠ ପଢ଼ିବି ବୋଲି ଗାଁ ଛାଡ଼ି ସହରରେ ମାମୁଙ୍କ ପାଖରେ ରହି ସ୍କୁଲରେ ଭର୍ତ୍ତି ହୋଇଯାଇଥିଲି। କିନ୍ତୁ ବନ୍ଦର ଛାଡ଼ିଲା ପରେ ଯିଏ ମୋତେ ସମୁଦ୍ରରେ ଘୂର୍ଣ୍ଣିବାତ୍ୟା ମଧରେ ବଞ୍ଚାଇଲା ଏବଂ ଦିଗ ଦେଖାଇଲା ସେମାନେ ପ୍ରଭାତ ଓ କୁନିଅପା।

ମୁଁ ଭାବିଥିଲି କୁନିଅପାକୁ ନେଇ ଉପନ୍ୟାସ ଆରମ୍ଭ କରିବି ବୋଲି। ଦଶବାର ପୃଷ୍ଠା ଲେଖି ବୁଝିପାରିଥିଲି କୁନିଅପାକୁ ନେଇ ଉପନ୍ୟାସ ଲେଖିବା ଭୀଷଣ କଷ୍ଟ। କାରଣ କୁନିଅପାର ଗୋଟିଏ ଗୋଟିଏ ଶବ୍ଦ ମୋ ଜୀବନର ଗତି ବଦଳାଇ ଦେଇଥିଲା। କୁନିଅପାର ଗୋଟିଏ ଚିଠିର ଗୋଟିଏ ଗୋଟିଏ ଧାଡ଼ିର ପ୍ରଭାବ ମୋର ସମଗ୍ର ଜୀବନରେ ମାଡ଼ି ଯାଇଛି। ଗୋଟିଏ ଧାଡ଼ି ହେଲା– 'କହ୍ନେଇ, ତୁମେ ଯଦି ପ୍ରକୃତରେ ମୋତେ ଭଲପାଅ ତାହେଲେ ଲେଖ; କାରଣ ମୁଁ ଚାହେଁ ତୁମେ ଜଣେ ପ୍ରତିଷ୍ଠିତ ଲେଖକ ହୁଅ।' ଯେତେବେଳେ ଅନେକ ଦିନ ସାହିତ୍ୟର ଭୂତକୁ ନାନାପ୍ରକାର କାମର ଆଳରେ ମୋ ବେକରୁ ଓହ୍ଲାଇ ପକାଏ କୁନିଅପାର ସେଇ ଧାଡ଼ିଟା ଖୁବ୍ ଭିତରେ ଗୁଣୁଗୁଣୁ କରି ଉଠେ। ରାତିରେ ଶୋଇପାରେନି। ଅବ୍ୟକ୍ତ ଯନ୍ତ୍ରଣା ଆସି ଦେହ ମନ ଆଚ୍ଛନ୍ନ କରିପକାଏ। କିଛି ଏଣୁ ତେଣୁ ଲେଖି ପକାଇଲା ପରେ କ୍ରମେ ଯନ୍ତ୍ରଣା କମିଯାଏ। ସେଇ କୁନିଅପାକୁ ନେଇ ଗଳ୍ପ ଲେଖାଯାଇ ପାରେନା। ଉପନ୍ୟାସ ଲେଖିବା ଭୀଷଣ କଷ୍ଟ। କାରଣ କୁନିଅପା ନାମ ଧରିଲେ ଯେଉଁ ମମତାମୟୀ ଚେହେରା ମୋ ଆଖି ଆଗରେ ଭାସିଉଠେ, ସେ ଚେହେରା ଆଉ ସେ ମମତାର ଚିତ୍ର କେବେ ମୁଁ ଦେଇ ପାରିବି ନାହିଁ।

ମୁଁ ଯଦି କୁନିଅପାକୁ ନେଇ ଏହିପରି ଉପନ୍ୟାସ ଆରମ୍ଭ କରେ–"କୁନିଅପା, ମୁଁ ଜାଣେନି ତୁମେ ଏବେ କେଉଁଠି। ମୁଁ ଏବେ ସେ ଦିନର ଆଉ ହାଫ୍‌ପ୍ୟାଣ୍ଟ ପିନ୍ଧା ଦୁଷ୍ଟ ପିଲା କହ୍ନେଇ ନୁହେଁ। ଏବେ ମୁଁ କହ୍ନେଇ, କହ୍ନେଇ ବାବୁ ଏବଂ ଦାସ ବାବୁ। ତଥାପି ସବୁ କାମର ଫାଙ୍କେଫାଙ୍କେ ତୁମକୁ ମନେପଡ଼େ କାହିଁକି ? ତୁମେ କ'ଣ ମୋତେ ମନେ ରଖିଛ ? ତୁମ କଥା ମାନି ଏ ପୃଥିବୀର କୋଟି କୋଟି ମଣିଷର ଜଙ୍ଗଲ ମଧ୍ୟରେ ହଜିଯାଇନି। ନିଜର ସତ୍ତାକୁ ଅସାଧାରଣ କରିବା ପାଇଁ ଚେଷ୍ଟ କରୁଛି। ସେ ଦିନର କଥା ମନେ ଅଛି ତୁମର ? ମୁଁ ଜାଣେ ଘରର ଚାରିକାନ୍ଥ ଭିତରେ ତୁମର ପୁଅ ଝିଅ ଶାଶୁ ଶ୍ୱଶୁର ସ୍ୱାମୀ ଦିଅର ସମସ୍ତଙ୍କୁ ନେଇ ଭୀଷଣ ବ୍ୟସ୍ତ ଥିବ। ଯଦି କେବେଳ ଝର୍କା ଦେଇ ଦୂର ଦିଗନ୍ତକୁ ଚାହଁ, ତା'ହେଲେ ଦେଖିବ ଅନେକ ଅନାବନା ଗଛର ସିଲହଟ୍ ଯେଉଁଠି ଆକାଶ ଆଉ ପୃଥିବୀର ସୀମାରେଖା ନିର୍ଣ୍ଣୟ କରୁଛି ସେଇଠି ସମସ୍ତଙ୍କୁ ଟପିଯାଇ ଗୋଟିଏ ନିଃସଙ୍ଗ ତାଳଗଛ ଛିଡ଼ା ହୋଇଛି। ଦିନେ ସେଇ ଦିଗନ୍ତର ନାମ ନ ଜଣା ଗଛଲତା ତଳେତଳେ ଠିକ୍ ତୁମ ନିଜ ଛାତକୁ ଆସିଲା ବେଳେ ଟିକେ ଛିଡ଼ା ହୋଇ ନୂଆ ବଢ଼ି ଉଠୁଥିବା ତାଳ ଗଛକୁ ଲକ୍ଷ୍ୟ କରିଥିଲ ଏବଂ ସେ ଦିଗନ୍ତ ଛାଡ଼ି ଆସିଲା ବେଳେ ବାରମ୍ବାର ପଛକୁ ଚାହିଁ ସେ ଅସହାୟ ତାଳ ଗଛକୁ ଆଶ୍ୱାସନା ଦେଇଥିଲ। ଜାଣ କୁନିଅପା, ମୁଁ ଏବେ ତୁମ ଝର୍କା ଦେଇ ଦିଶୁଥିବା ସେଇ ଧୂସର ଦିଗନ୍ତର ଅସ୍ପଷ୍ଟ ନିଃସଙ୍ଗ ତାଳଗଛ।"

ମୁଁ ଏହିପରି ଭାବରେ ଉପନ୍ୟାସ ଆରମ୍ଭ କରିବାକୁ ଚେଷ୍ଟା କଲେ କେବଳ ନିଜର ଭାବପ୍ରବଣତା ଦେଖାଇବି। କିନ୍ତୁ ସେଇ ନିଃସ୍ୱାର୍ଥପର ସ୍ନେହ, ସ୍ୱଚ୍ଛ ସୁନ୍ଦର ଭଲ ପାଇବାର କଥା ମୁଁ କହିପାରିବି ନାହିଁ। ମୁଁ କେଉଁଠୁ ଆରମ୍ଭ କରିବି ? ସବୁ ଘଟଣା ତ ସ୍ମରଣୀୟ। ଅନେକ ସ୍ମରଣୀୟ ଘଟଣାକୁ ଅତୀତ କରି ଦେଇ ଯେଉଁଦିନ କୁନିଅପା ମୋଠୁଁ ଦୂରେଇଗଲା, ସ୍ପଷ୍ଟ ମନେଅଛି ସେଦିନ ମୁଁ ଦେଖିଲି କୁନିଅପା ଆଖିରେ ଲୁହ। କୁନିଅପା ସବୁବେଳେ ହସୁଥିଲା। ତା' ଆଖିରେ ଲୁହ ଆସିଲେ କେମିତି ଦେଖାଯିବ ଏକଥା ଭାବିବାକୁ ବି ନିଜକୁ ପାପୀ ବୋଲି ମନେ ହେଉଥିଲା। କିନ୍ତୁ ଯେଉଁଦିନ ତାଙ୍କ ବାପା ବଦଳି ହୋଇ ଅନ୍ୟ ସହରକୁ ଚାଲିଯିବେ ବୋଲି ଘରର ଜିନିଷପତ୍ର ସଜାଡୁଥିଲେ ସେଇଦିନ କାନ୍ଥରୁ ଫଟୋ କାଢୁ କାଢୁ କୁନିଅପା କହିଥିଲା– କହ୍ନେଇ, ମୋତେ ଏଇ ଫଟୋ ଭଳି ତୁମ କାନ୍ଥରୁ ଓହ୍ଲାଇ ପକାଅ। ସେତେବେଳେ ମୁଁ ମାଟ୍ରିକ ପାସ୍ କରିଥାଏ, ଏବେ ହେଲେ କହିଥାନ୍ତି– ଦେଖୁଛ କୁନିଅପା କାନ୍ଥଟା ମଇଳା ପଡ଼ିଗଲାଣି କିନ୍ତୁ ଯେଉଁଠି ଫଟୋ ଥିଲା ସେଇ କାନ୍ଥଟା କେତେ ଧଳା ଅଛି। ଠିକ୍ ସେମିତି ତୁମେ ମୋର କାନ୍ଥର ଏକ ଧଳା ପବିତ୍ର ଦାଗ। ତାକୁ ମହାକାଳ ଲିଭେଇ ପାରିବନି।

ମୁଁ କହି ନଥିଲି। ସେଦିନ ମୋ ପାଟିରେ ଭାଷା ନଥିଲା। ପ୍ରଭାତର ଆନନ୍ଦ, ନୂଆ ଜାଗାକୁ ଯିବ ବୋଲି। ଘରେ ବି ମାଉସୀ ମଉସା ସମସ୍ତେ ଖୁସି ସେ କଦର୍ଯ୍ୟ ସହରରୁ ବିଦାୟ ନେଉଥିଲେ ବୋଲି। ମୁଁ ସେମାନଙ୍କର ମିଳିତ ଖୁସି ଦେଖି କେମିତି ଏକପ୍ରକାର ହୋଇଯାଇଥିଲି। ବୋଧହୁଏ କୁନିଅପା ମୋ ମୁହଁରୁ ଦୁଷ୍ପ୍ରାପ୍ୟ ଲିପି ଉଦ୍ଧାର କଲା ଭଳି ସେତକ ପଢ଼ିପାରିଥିଲା। ହଠାତ୍ କହିଲା– କହ୍ନେଇ, ଆମେ ତୁମକୁ ଛାଡ଼ି ଚାଲିଯାଉଛୁ ବୋଲି ତୁମେ ଦୁଃଖ କରୁନାହିଁ ତ ? ପାଚି ଯାଇଥିବା କୋଳି ଗଛରେ ବାଡ଼ି ଲାଗିଲା ମାତ୍ରେ ଯେପରି ସବୁ କୋଳି ହଠାତ୍ ଗଦ୍‌ଗଦ ହୋଇ ଖସି ପଡ଼ନ୍ତି ସେହିପରି ମୋର ଅବରୁଦ୍ଧ କୋଠରିରେ ବିସ୍ଫୋରଣ ଘଟିଲା। କୁନିଅପା ବି ସ୍ଥାନକାଳପାତ୍ର ସବୁ ଭୁଲିଯାଇ ଭୀଷଣ ଆବେଗରେ ମୋତେ କୁଣ୍ଢାଇ ପକାଇଲା।

ମୁଁ ଏଥିପାଇଁ ପ୍ରସ୍ତୁତ ନଥିଲି। ହଠାତ୍ କୁନିଅପାର ଆଲିଙ୍ଗନ ଭିତରେ ନିଜକୁ ଅନୁଭବ କରି ପ୍ରକୃତିସ୍ଥ ହେଲି ଏବଂ ତା' ବାହୁ ବନ୍ଧନରୁ ନିଜକୁ ଖସାଇ ନେଇ ଯେଉଁ ପ୍ରଥମ ଦୃଶ୍ୟ ଦେଖିଥିଲି ସେ ଦୃଶ୍ୟ ମଲାବେଳେ ମଧ ଆଖି ବନ୍ଦ କଲେ ମୋତେ ଦେଖାଯିବ, କୁନିଅପାର ଆଖି ଦି'ଟା ରକ୍ତମନ୍ଦାର ପରି ହୋଇଯାଇଥିଲା ଆଉ ଅଳରା କେଶ ମୁହଁର ଝଳା ଓ ଲୁହ ବଢ଼ିଯାଇ କେମିତି ଏକପ୍ରକାର କରି ଦେଇଥିଲା। ଆଜି କୁନିଅପାକୁ ମନେ ପଡ଼ିଲେ ସେଇ ମୁହଁଟାହିଁ ମନେପଡ଼େ।

ସେଦିନ ସଂଧ୍ୟାରେ ପ୍ରଭାତ, କୁନିଅପା ଏବଂ ତାଙ୍କ ଘରର ସମସ୍ତେ ଗୋଟିଏ ଟାକ୍‌ସିରେ ବସି ଗୋଟିଏ ଟ୍ରକରେ ଜିନିଷ ଲଦି ଚାଲିଗଲେ। ଯିବାବେଳେ କୁନିଅପା ଗୋଟିଏ ଗେଣ୍ଡୁ ଫୁଲ ଦେଇ ଯାଇଥିଲା ଏବଂ ଯିବାବେଳେ ମଧ ସମସ୍ତଙ୍କ ଆଗରେ ଆଉଥରେ କାନ୍ଦିଥିଲା। ମୁଁ ଗେଣ୍ଡୁ ଫୁଲ ଧରି ପଥର ଭଳି ଛିଡ଼ା ହୋଇଥିଲି। ଟାକ୍‌ସିର ଚକ ବୁଲିଲା।

ତା'ପରେ ସପ୍ତାହରେ ପ୍ରାୟ ଦୁଇଟି ଲେଖାଏଁ ଚିଠି ପାଇଛି କୁନିଅପା ଠାରୁ। ସବୁଥରେ ଚରୈବତି ଚରୈବତିର ଧ୍ୱନି। ଜଣକ ଘରେ ରହି ପିଲାଙ୍କୁ ପାଠ ପଢ଼ାଇ ଅନ୍ନ ସଂସ୍ଥାନ କରି ଦେଇଛି ତା'ପରେ। କିନ୍ତୁ ମୋ ଭିତରେ ଗୋଟିଏ ଅସମ୍ଭବ ଚିତ୍ର ରହି ଯାଇଛି ଯେ ଯିଏ ଜୀବନରେ କେବେ କାନ୍ଦି ନଥିଲା, ତାକୁ ମୁଁ ଏକାଧିକ ଥର କନ୍ଦାଇ ଅସୁଖୀ କରି ଦେଇଥିଲି। ସେ ଯେଉଁଦିନ ମୋତେ ଛାଡ଼ି ଚାଲିଗଲା ସେଦିନ ଥିଲା ନଭେମ୍ବର ପଚିଶ ରବିବାର ଏବଂ ଦେବୀ ଓ ମୋର ଦୁହିଁଙ୍କର ଅବିସ୍ମରଣୀୟ ଦିନ ଜୁନ ପଚିଶ ଶୁକ୍ରବାର।

କୁନିଅପାକୁ ସୁଖ ଦେଇନି, ଦେବୀକୁ ନୁହେଁ, ଆହୁରି ଯେଉଁମାନେ ମୋ ଜୀବନ ପରିଧି ଭିତରକୁ ପଶି ଆସିଛନ୍ତି ବା ପଶି ଆସିଥିଲେ ସେମାନଙ୍କୁ ବି ନୁହେଁ। ଆଉ ସେ ଅସହାୟ ବିଧବା ନାରୀ ମୂର୍ତ୍ତିଟିକୁ କିପରି ବା ସୁଖ ଦେଇଥାନ୍ତି ? ସୁଖ ଦେବାର ଚେଷ୍ଟାକଲେ ବା ପାରିବି କୁଆଡୁ ? ସେ ତ ମୋର ଜନ୍ମର କାରଣ।

ମୁଁ ସହରରେ ପହଞ୍ଚିଲି ଯେତେବେଳେ ସେତେବେଳେ ଗୋଟିଏ ଗୋଟିଏ ଆଲୁଅ ଜଳିବାକୁ ଆରମ୍ଭ କଲେଣି। ବସାରେ ବ୍ୟାଗ୍‌ଟା ଥୋଇ ଦେଇ ସିଧା ସାଇକେଲ ନେଇ ଗଲି ଦେବୀ ଘର ଆଡ଼େ। ଦେବୀ ଅନ୍ଧକାରରେ ତା' ଘରର ବାଲ୍‌କୋନିରେ ଛିଡ଼ା ହୋଇଥିଲା। ସେ କ'ଣ ଜାଣିଥିଲା ମୁଁ ଆଜି ଗାଁରୁ ଫେରିବି ଏବଂ ତାକୁ ଦେଖିବାକୁ ଯିବି ?

ଦେବୀ ଏକ ଧଳାଶାଢ଼ି ପିନ୍ଧି ବାଳ ଖୋଲା କରି ଅସହାୟ ଭାବେ ଛିଡ଼ା ହୋଇଥିଲା। ମୁଁ ଯେତେବେଳେ ତା' ଘର ପାଖ ଦେଇ ଅତିକ୍ରମ କରି ଗଳି ମୁଣ୍ଡରେ ବାଙ୍କ ନେବା ପୂର୍ବରୁ ପଛକୁ ଫେରି ଚାହିଁଲି ମୋତେ ମନେ ହେଲା ସେ ଯେପରି ଦେବୀ ନୁହେଁ। ଗାଁ ରାସ୍ତାରେ ଅସହାୟ ଭଙ୍ଗୀରେ ଛିଡ଼ା ହୋଇଥିବା ମୋର ବିଧବା ମା' ସେ।

## (ଘ)

ଘରୁ ଫେରିଲା ପରେ ଅନେକ ଦିନ ଅନୁଭବ କରେ ଯେପରି କେଉଁଠି ଗୋଟିଏ ନଡ଼ା ଗଦାରେ ନିଆଁ ଲାଗିଯାଇଛି। ସମସ୍ତେ ଜାଣିପାରିଛନ୍ତି ମୁଁ ଜାଣି ଜାଣି ସଉକରେ ସିଗାରେଟଟା ସେଇଠି ପକାଇ ଦେଇ ଆସିଥିଲି ବୋଲି। କିମ୍ବା ମୋତେ ମନେହୁଏ ମୋ ଅଲକ୍ଷ୍ୟରେ କେଉଁଠି କିଏ ମୋତେ ଦେଖିବାକୁ ଚାହିଁ ମଧ୍ୟ ଦେଖିପାରୁନାହିଁ। ଯିଏ ମୋତେ ଦେଖିବାକୁ ଚାହୁଁଛି ତା' ଚାରିପଟେ ଅନେକ ଲୋକ, ଔଷଧ, ପାଣି। ତା'ରି ଭିତରେ ସେ ଯେପରି ମୋର ନାମ ଉଚ୍ଚାରଣ କରି ଚାଲିଛି। ମୁଁ ଏଣେ ଗୋଟଏ ଗ୍ୟାସ୍ ବେଲୁନ୍ ତଳେ ନିଜକୁ ଝୁଲାଇ ଦେଇ ଅନେକ ଉଚ୍ଚ ଉଚ୍ଚ ପର୍ବତ ଉପର ଦେଇ ଉଡ଼ିବୁଲୁଛି। ଏଇସବୁ ଅବାନ୍ତର ଭୟ ଯେତେବେଳେ ମୋ ଭିତରକୁ ମାଡ଼ିଆସେ ମୁଁ ଅଥର୍ବ ହୋଇଉଠେ। ଖୁବ୍ ଭିତରେ ଅନେକ ଟାଇପ୍ ମେସିନ୍ ଏକା ସାଙ୍ଗରେ ଅନେକ ଯନ୍ତ୍ରଣାର ଅବ୍ୟକ୍ତ ଅକ୍ଷର ଟାଇପ୍ କରି ଚାଲନ୍ତି। ମୁଁ ଲେଖି ବସେ। ଭାବେ ଏଇ ଯନ୍ତ୍ରଣା ମଧ୍ୟରେ ନିଶ୍ଚୟ ଉପନ୍ୟାସ ଲେଖି ହେବ। ଆରମ୍ଭ କରେ– ମୁଁ ଯନ୍ତ୍ରଣା ଚାହେଁ ମୁଁ ଜୀବନ ଚାହେଁ। ମୁଁ ଯନ୍ତ୍ରଣା ଭିତରେ ଜୀବନ ଚାହେଁ। ଏଇ ଧାଡ଼ିଟା ଲେଖିସାରି ଭାବେ ଏଇଟା କ'ଣ ଆତ୍ମପ୍ରବଞ୍ଚନା ନୁହେଁ ? ମୋତେ ଯନ୍ତ୍ରଣା ଅନ୍ୟ ଏକ ପ୍ରକାର ଅନୁଭବ ଆଣିଦିଏ ସତ୍ୟ କିନ୍ତୁ କେବେ ମନ ଖୋଲି ଯନ୍ତ୍ରଣା ଆସୁ ବୋଲି ଚାହିଁଛି କି ? ନା, ଉପନ୍ୟାସ ମୋ ଦ୍ୱାରା ଅସମ୍ଭବ।

ବରଂ ଅନେକ ଦିନ ହେଲା ଦେବୀକୁ ଚିଠି ଲେଖାଯାଇ ନାହିଁ। ଚିଠିହିଁ ଲେଖାଯାଉ। ଚିଠିରେ ଯଦି ଲେଖାଯାଏ ଦେବୀ ଦେବୀ ଦେବୀ ମୋର, ଅନେକ ଦିନ ମୁଁ ତୋତେ ପାଖରେ ପାଇନାହିଁ ସତ୍ୟ କିନ୍ତୁ ତୋତେ ଅନେକ ଥର ଦେଖିଛି। ମୁଁ ଜାଣେ ରାତି ଆସିଲେ ଅନ୍ଧକାର ଆସେ, ଅନ୍ଧକାର ଆସିଲେ ନିଦ ଆସେ, ନିଦ ଆସିଲେ ସ୍ୱପ୍ନ ଆସେ, ସ୍ୱପ୍ନ ଆସିଲେ ତୁ ଆସୁ। ସ୍ୱପ୍ନ କେତେ ସୁନ୍ଦର। ତାଠୁ ସୁନ୍ଦର ସ୍ୱପ୍ନରେ ତୋର ସମ୍ପୂର୍ଣ୍ଣ

ଅବୟବ। ପୃଥିବୀରେ ଯାହା ସୁନ୍ଦର ତାହାହିଁ କାମ୍ୟ। ପୁଣି କାମ୍ୟ ବସ୍ତୁ ନ ମିଳିଲେ ତା'ର ସୌନ୍ଦର୍ଯ୍ୟ ବୃଦ୍ଧି ପ୍ରାପ୍ତ ହୁଏ। ତୁ ଏ ପୃଥିବୀରେ ମୋ ପାଇଁ ଏକମାତ୍ର କାମ୍ୟ ବସ୍ତୁ। ତୁ ଅନ୍ଧକାରରେ ବିଧବା ଭଳି ଛିଡ଼ା ହୋଇଥିଲୁ। ଅନ୍ଧକାରରେ ତୋ ଓଠରେ ହସ ବି ଦେଖି ପାରିଲି ନାହିଁ। ମନେ ହେଉଛି ତୋତେ ପରିଷ୍କାର ଭାବରେ ଦେଖିଥିଲେ ତୁ ଏତେ ସୁନ୍ଦର ଦେଖାଯାଇ ନଥାନ୍ତୁ। ତୋତେ ଦେଖି ବି ଦେଖିପାରିଲି ନାହିଁ ବୋଲି ମନେ ହେଉଛି ତୁ ପୃଥିବୀରେ ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟର କେନ୍ଦ୍ରବିନ୍ଦୁ।

ଚିଠି ବନ୍ଦ କରେ। ତା'ପରେ ମନେ ମନେ ଶବ୍ଦର ପଟୁଆର ତିଆରି କରେ। ଅସଂଖ୍ୟ ବିକ୍ଷିପ୍ତ ଧାଡ଼ି ଗୋଟିକ ପରେ ଗୋଟିଏ ଭିତରୁ ବାହାରି ଆସେ– ମୁଁ ରାତିରେ ଖୋଲା ପଡ଼ିଆରେ ଛିଡ଼ା ହୋଇ ଆକାଶକୁ ଦେଖେ। ଦିଗନ୍ତକୁ ଚାହେଁ। ପୂର୍ବ ପଶ୍ଚିମ। ଦକ୍ଷିଣକୁ ଚାହିଁବାକୁ ଭୟ ଲଗେ ମୃତ୍ୟୁର ଦିଗ ବୋଲି। କାହିଁକି କେଜାଣି ଦକ୍ଷିଣ ଦିଗଟା ଖୁବ୍ ଅନ୍ଧକାର ହେଲା ଭଳି ମନେହୁଏ। ଉତ୍ତରକୁ ଚାହେଁ ଧ୍ରୁବତାରକୁ ଦେଖିବି ବୋଲି। ଧ୍ରୁବତାରା ଦେଖାଯାଏନା। ଧ୍ରୁବତାରା ତା' ସ୍ଥାନରେ ଠିକ୍ ଥାଏ, ମୁଁ ବୋଧହୁଏ ଖୋଜି ପାଏନା। ସପ୍ତର୍ଷି ମଣ୍ଡଳରେ ପ୍ରଶ୍ନବାଚୀ ଦେଖେ। ଅନେକ ପ୍ରଶ୍ନ ପଚାରେ। ପୁଲହ ଓ କ୍ରତୁକୁ ଯୋଗ କରି ସରଳରେଖା ଟାଣେ। ଧ୍ରୁବତାରା ପାଇଯାଏ। ସତ୍ୟ ଆବିଷ୍କୃତ ହୁଏ। ପୁଣି ସେଇ ରାସ୍ତାରେ ଫେରିଆସେ ସପ୍ତର୍ଷି ମଣ୍ଡଳ ପାଖକୁ। ଦେବୀ, ସତ୍ୟର ଅନୁଭବ କ୍ଷଣିକ। କିନ୍ତୁ ସତ୍ୟର ସନ୍ଧାନ ପାଇଁ ପ୍ରସ୍ତୁତି ହିଁ ସବୁକିଛି। ସତ୍ୟର ସନ୍ଧାନ ପାଇଁ କ୍ରମେ କ୍ରତୁ ପୁଲହ ପୁଲସ୍ତ୍ୟ ଅତ୍ରି ଅଙ୍ଗିରା ବଶିଷ୍ଠ ମରିଚୀ ସମସ୍ତଙ୍କ ଉପରେ ଥରେ ଥରେ ଘୂରିଆସେ। ମରିଚୀଠାରୁ ପୁଣି ବଶିଷ୍ଠକୁ ଲକ୍ଷ୍ୟ କରେ। ତା'ପରେ ଅରୁନ୍ଧତୀକୁ ମନେ ମନେ ଉଚ୍ଚାରଣ କରେ– 'ଅରୁନ୍ଧତୀ ସର୍ବସ୍ୱ ଆମାର ହାଁ କରେ। ଆଲୋକର ଚୁମ୍ବ ଖାଅ, ଶବ୍ଦ ହୋକ ବ୍ରହ୍ମାଣ୍ଡ ପାପୟେ।' ଅରୁନ୍ଧତୀ ଉପରେ ଦୃଷ୍ଟି ନିବଦ୍ଧ କରିବା ପର୍ବରୁ ତିନି ଚାରିଥର ଆଖି ମଳିନିଏ। ପବିତ୍ର ଓ ପରିଷ୍କାର ଆଖିରେ କେବଳ ଅରୁନ୍ଧତୀକୁ ଦେଖିହୁଏ।

ଦେବୀ, ଶୁଭେନ୍ଦୁ ବାବୁ ଥରେ କହିଥିଲେ– ଅରୁନ୍ଧତୀ ଯଦି ଖାଲି ଆଖିରେ ଦେଖାଯାଏ ତା'ହେଲେ ମୃତ୍ୟୁଭୟ ନାହିଁ। ଅରୁନ୍ଧତୀ ଯଦି ନିର୍ମଳ ଆକାଶରେ ଖାଲି ଆଖିରେ ଦେଖା ନଯାଏ ତା'ହେଲେ ମୃତ୍ୟୁ ସୁନିଶ୍ଚିତ। ମୁଁ ସେଦିନ ଅନୁମାନ କରିଥିଲି ଯେ ଅରୁନ୍ଧତୀ ଖୁବ୍ ଛୋଟ ଓ ଅସ୍ପଷ୍ଟ। ଖାଲି ଆଖିରେ ଦେଖାନଯିବା ଅର୍ଥ ଲୋକଟିର ଦୃଷ୍ଟିଶକ୍ତି କ୍ଷୀଣ ହୋଇଯାଇଛି ଅର୍ଥାତ୍ ବାର୍ଦ୍ଧକ୍ୟରେ ଉପନୀତ ଅର୍ଥାତ୍ ମୃତ୍ୟୁର ଆଉ ବିଳମ୍ବ ନାହିଁ। କିନ୍ତୁ ଆଜି ବୁଝିଛି ପ୍ରକୃତ ଅରୁନ୍ଧତୀର ଅଦର୍ଶନରେ ମୃତ୍ୟୁ ଅବଶ୍ୟମ୍ଭାବୀ, କାରଣ ତୁ ମୋର ଅରୁନ୍ଧତୀ ଏବଂ ପୁଣି ଉଚ୍ଚାରଣ କରେ "ଦେବୀ ସର୍ବସ୍ୱ ଆମାର......"

ଅରୁନ୍ଧତୀରୁ ପୁଣି ସମଗ୍ର ସପ୍ତର୍ଷିମଣ୍ଡଳ ଉପରେ ମୋର ଦୃଷ୍ଟି ବିଛାଇ ଦିଏ। ମନେ ମନେ ଭାବେ ସପ୍ତର୍ଷିମଣ୍ଡଳର ଆକାର ଭାଲୁପରି ନୁହେଁ। ଏକ ପରିଷ୍କାର ପରିଚ୍ଛନ୍ନ

ପ୍ରଶ୍ନ ଚିହ୍ନ କେବଳ ଧ୍ରୁବର ଆବିଷ୍କାର ପାଇଁ। ମୋ ଭିତରୁ ବି ଅସଂଖ୍ୟ ପ୍ରଶ୍ନ ଧାଡ଼ି କରି ବାହାରି ଆସନ୍ତି– ତୋ ପରି କ'ଣ ଆଉ କେହି ପୃଥିବୀରେ ନାହାନ୍ତି? ତୋର ହାତ ଗୋଡ଼ ଆଖି ନା କାନ ବେକ ଓଠ ଛାତି ପେଟପରି ବା ତାଠୁ ସୁନ୍ଦର କ'ଣ ଜଗତରେ ଅଭାବ? ତୁ ତ ଜାଣୁ, କେତେ ଝିଅ ନୁହେଁ ସୁନ୍ଦରୀ ଝିଅ ସହ ମୋର ପରିଚୟ ରହିଛି। ତଥାପି କାହିଁକି ମୁଁ ଏକ ପ୍ରକାର ଭୂତଗ୍ରସ୍ତ, ମୋହାଚ୍ଛନ୍ନ ହୋଇ କେବଳ ତୋତେ ହିଁ ଅପେକ୍ଷା କରୁଛି? ମୁଁ ଜାଣେ ନାହିଁ କାହିଁକି ସେଇ ଗୋଟିଏ ନିର୍ଦ୍ଦିଷ୍ଟ ରଙ୍ଗ ମୋତେ ଭଲ ଲାଗେ। ମନେକର ମୁଁ ପ୍ରେମର ଥିଓରି ବୁଝେନା, ଭଲପାଇବାର ସଂଜ୍ଞା ଜାଣେନା, ସ୍ନେହର ସତ୍ତା ଉପଲବ୍ଧି କରେନା, ତଥାପି ଏଇଟା ସତ୍ୟ ଯେ ମୁଁ ଅନେକ କିଛି ବୁଝେ, ମୁଁ ଗୋଟିଏ ଅସମ୍ଭବ ଅନୁଭବକୁ ଅନୁଭବ କରେ। ଯେପରି ପବନ ବହୁଛି କି ନା ଜାଣିବା ପାଇଁ ଥିଓରି ମୁଖସ୍ଥ କରିବା ଦର୍କାର ପଡ଼େ ନାହିଁ, କେବଳ ଅନୁଭବରେ ଜାଣିହୁଏ ସେହିପରି ମୁଁ ଭୀଷଣ ଭାବେ ଅନୁଭବ କରେ ଯେ ତୋ ପାଇଁ ବ୍ୟାକୁଳତା ଭଳି ଏକ ପ୍ରକାର ଯନ୍ତ୍ରଣା ମୋର ସମଗ୍ର ସତ୍ତାରେ ବହିଚାଲିଛି। ପୁଣି ମନେହୁଏ ଏଇ ଅନୁଭବ ବିନା ଜୀବନଧାରଣର କିଛି ମାନେ ହୁଏନା।

ମୁଁ ଯଦି ଉପନ୍ୟାସ ଲେଖେ ଏଇସବୁ ଅନୁଭବକୁ କିପରି ଲେଖିବି? ଦେବୀ କଥା ଥରେ ଆରମ୍ଭ କଲେ କ'ଣ ନାହିଁ କ'ଣ ସବୁ ଲେଖି ପକାଇବାକୁ ଇଚ୍ଛା ହେବ। ବରଂ ଦେବୀ ପାଇଁ ବସି ବସି ନୀରବରେ ସ୍ୱପ୍ନ ଦେଖାଯାଇ ପାରେ–

–ଦେବୀ, ଏତେ ଦୂରରେ ବସିଛୁ କାହିଁକି?

–କାହିଁକି ବସିଲି ତ କ'ଣ ହେଲା?

–ମୋଠୁ ଦୂରରେ ରହିବୁ?

–ହଁ।

–ମୋଠୁ ଦୂରରେ ରହିବୁ?

–ହଁଅ, କାହିଁକି?

–ମୁଁ ଗମ୍ଭୀର ହେଲି।

–ଏଇ ହେଲା ତ? ମୁଁ ଏଥର ତୁମ ପାଖରେ।

– ମୁଁ କ'ଣ କରିବି?

–କାହିଁକି? ମୋତେ ପରା ପାଖକୁ ଆସିବାକୁ କହୁଥିଲ।

–ମୁଁ ଜାଣେନି।

–କ'ଣ? ତୁମେ ପୁଣି ଜାଣିନ? ବୋପାରେ!

ମୁଁ ଦେବୀକୁ ମୋ ଉପରକୁ ଟାଣି ଆଣିଲି।

–ପୁଣି ସେଇଆ?

—କ'ଣ ହେଲା ?

—ଓଃ କି କଣ୍ଟାଭଳି ଦାଢ଼ି !

—ଠିକ ଅଛି, କଣ୍ଟା ବାହାର କରି ଦେଉଛି।

—ନା ଥାଉ। ମୋର କଣ୍ଟା ଫୋଡ଼ିହୋଇ ଥାଉ, ବାହାର କରିଦେବାକୁ ହେବନି।

—ଦେବୀ, ଆଖି ବନ୍ଦକଲୁ !

—ନାଇଁ, ତୁମେ ପୁଣି ବଦମାସି ବାହାର କରିବ।

—ନାଇଁ, ମୁଁ ତୋତେ ଗୋଟିଏ ଜିନିଷ ଦେବି।

—କ'ଣ ଆଗ କୁହ।

—ମୁଁ କହୁଛି ଆଖି ବନ୍ଦକର।

—ହେଲା ?

—ଏଇ, ମିଞ୍ଜିମିଞ୍ଜି ଦେଖା ଯାଉଛି। ଭଲକରି ବନ୍ଦକର।

—ନା, ମୁଁ ବନ୍ଦ କରିବି ନାହିଁ। କ'ଣ ଆଗ କୁହ।

—ବନ୍ଦ ନ କଲେ ଦେଖାଇବି ନାହିଁ।

—ନ ଦେଲେ ନାହିଁ, ମୁଁ ବନ୍ଦ କରିବି ନାହିଁ।

—ତୁ ଆଖି ବନ୍ଦ କରିବୁ ନାହିଁ ?

—ନା।

—ତୁ ଆଖି ବନ୍ଦ କରିବୁ ନାହିଁ ? ?

—ଓହୋ, ଏଥର ହେଲା ?

—ହାତ ପତାଇବା ଦର୍କାର ନାହିଁ, ସିଧା ବସ।

—ଏହେ, ପୁଣି ସେଇ ବଦମାସି !

—ଏଇଟା ବଦମାସି ?

—ତୁମ ପାଟିଟା କେତେ ଗନ୍ଧଉଛି।

—ମୁଁ ପ୍ରତିଦିନ କୋଲଗେଟ୍ ଡେଣ୍ଟାଲ କ୍ରିମ ଦେଇ ଦାନ୍ତ ସଫା କରେ। ଦୁର୍ଗନ୍ଧ ଦୂର କରେ କୋଲଗେଟ୍।

—କୋଲଗେଟ୍ କୋମ୍ପାନୀ ମାସରେ ତୁମକୁ କେତେ ଟଙ୍କା ଦିଏ ?

—ଏଇ ମାତ୍ର.....

—ହେତ୍, ପୁଣି ସେଇଆ, ମୁଁ ଏଥର ଯିବି। ଛାଡ଼ !

—ନା, ମୁଁ ମରିଗଲେ ବି ଛାଡ଼ିବିନି।

—କ'ଣ ଭୂତ ହୋଇ ଡରେଇବ ?

—ନା ଭୂତ ହେବନି। କିନ୍ତୁ....

—କ'ଣ କିନ୍ତୁ ?

—ତୋର ଗର୍ଭାଶୟରେ ଘର କରିବି ।

—ଏଥର ବାହାରିଲା ତ ପାଗଳାମି ! ତା'ପରେ କହୁନ, ତୁ ମୋର ମା ହବୁ, ମୁଁ ତୋ ପାଦରେ ଚୁମା ଦେବି, ହେତ୍ !

—ସତରେ ମୁଁ ତୋ ପାଦରେ ଚୁମା ଦେବି ।

—ନା ।

—ଦେବୀ, ଅନେକ କଥା କହିବାକୁ ଇଚ୍ଛା ହେଉଛି ?

—କ'ଣ ଲୋକ ଡାକିବି ?

—କାହିଁକି ?

—ତୁମେ ଭାଷଣ ଦେବ ।

—ମୁଁ ଭାଷଣ ଦେବି କେବଳ ତୁ ଶୁଣିବୁ ।

—ଆରମ୍ଭ କର ।

—ମୁଁ ଭାଷଣ ଦେବି ସେହି ବିଷୟରେ ଯେଉଁ ବିଷୟରେ ମୁଁ କେବଳ ଦିନ ରାତି ଭୀଷଣ ଯନ୍ତ୍ରଣା ପାଉଛି । ତୁ ଦିନେ କହିଥିଲୁ ନା ମୋ ବ୍ୟତୀତ ଆଉ କାହାରିକୁ ସେତେ ଭଲ ଲାଗେ ନାହିଁ । ମୁଁ ଜାଣେ ତୋ ପାଖରେ ସେଇ ମୁହୂର୍ତ୍ତ ସବୁଠାରୁ ଶ୍ରେଷ୍ଠ ମୁହୂର୍ତ୍ତ ଥିଲା । ତୁ ଅନୁଭବ କରୁଥିଲୁ ତୁ କ'ଣ ଚାହୁଁ । ମଣିଷ ଜୀବନରେ ଏମିତି ଏକ ସମୟ ପହଞ୍ଚେ ସେତେବେଳେ ପୃଥିବୀର ସବୁ ସ୍ୱର ବେସୁରା ଲାଗେ । ସବୁ ବର୍ଣ୍ଣ ବିବର୍ଣ୍ଣ ହୋଇଯାଏ, କେବଳ ଗୋଟିଏ ସ୍ୱର ଗୋଟିଏ ବର୍ଣ୍ଣ ସମସ୍ତ ପ୍ରାଣ ମନକୁ ଆଚ୍ଛନ୍ନ କରି ପକାଏ । ସେତେବେଳେ ସେ ବାପା ମା' ଭୁଲେ, ଖେଳ ସାଥୀ ଭୁଲେ, ସମାଜ ଭୁଲେ । ମୁଁ ଜାଣେ ଆଉ ତୁ ବି ଜାଣୁ ମୋର ବାପା ମା' କଥା, ଖେଳ ସାଥୀ କଥା । ସମାଜକୁ କେତେ ଘୃଣା କରେ ମୁଁ । ମଣିଷର ତିଆରି ସମାଜକୁ ଉପେକ୍ଷା କରିବାର ଲୋଭ ମୋ ଠାରେ ସବୁଠାରୁ ପ୍ରବଳ । ଯଦିବା ଏ ସମାଜର ବତାସ ମୋ ନାସାରନ୍ଧ୍ରରେ ଯିବାଆସିବା କରୁଛି ତଥାପି ମୁଁ ଚାହେଁ ଏକ ଭିନ୍ନ ସମାଜ । ସେଇଠି ତୋତେ ଏକ ପ୍ରଦର୍ଶନୀରେ ଚୁମ୍ବନ କରିବାକୁ ଚାହେଁ । କିମ୍ବା ମୁଁ ଚାହେଁ ମଣିଷ ସମାଜର ଖୁବ୍ ଦୂରରେ ଏକ ଅଜଣା ସମୁଦ୍ର ମଝିରେ ଗୋଟିଏ ଦ୍ୱୀପ । ଯେଉଁଠି ଗଛରେ ଅସଂଖ୍ୟ ଫଳ ଫୁଲ । ଆମେ ନିର୍ବାକାର ଚିତ୍ତରେ ଉଲଗ୍ନ ହେବା । କଥା କହିବା ବନ୍ଦକରି ଇସାରାରେ ଭାବ ପ୍ରକାଶ କରିବା । ଦିନେ ହୁଏତ ତୋ କୋଳ ପୂର୍ଣ୍ଣ କରି ନୂତନ ମଣିଷ ସୃଷ୍ଟି ହେବ । ପୁଣି ସେଇଠି ବି ମଣିଷ ସମାଜର ସୂତ୍ରପାତ ହେବ । ତେଣୁ ମୁଁ କ'ଣ କରିବି ଜାଣୁ ?

—କ'ଣ ?

—ମୁଁ ସେ ମଣିଷ ଶିଶୁର ତଣ୍ଟି ଚିପି ସମୁଦ୍ରକୁ ଫିଙ୍ଗିଦେବି ।

—ଦେବୀ ତାଳି ମାରିଲା। ଯେପରିକି ମୁଁ ଏକ ବଡ଼ ସଭାରେ ଭାଷଣ ଦେଉଥିଲି। ମୁଁ କ୍ଳାନ୍ତ ହୋଇ ତା' କୋଳରେ ମୁଣ୍ଡ ରଖି ଶୋଇଗଲି। ସେ ମୋର ମୁଣ୍ଡ ବାଳ ଭିତରେ ଆଙ୍ଗୁଠି ବୁଲାଉ ବୁଲାଉ କହିଲା—

—ମୋତେ ତୁମେ ପାଗଳାମି ଦେଖାଇଲେ ଡର ଲାଗେ।

—କ'ଣ ମୁଁ ପାଗଳ ?

—ପାଗଳ ନୁହେଁ ତ ଆଉ କ'ଣ ?

—ତୁମକୁ ରାଞ୍ଚି ପାଇଁ ଟିକେଟ ଗୋଟିଏ କାଟିଦେବା ଉଚିତ।

—ତା'ହେଲେ ଦୁଇଟିଯାକ ଟିକେଟ କାଟିବା।

—କାହିଁକି ? ମୁଁ କ'ଣ ପାଗଳ ?

—ମୋତେ ଯିଏ ପାଗଳ ଭାବୁଛି ତା'ର ମସ୍ତିଷ୍କ କ'ଣ ସୁସ୍ଥ ଅଛି ?

ଛାଡ଼, ଏଠି ଦେବୀ ନାହିଁ, ମୋ ଆଗରେ କାଗଜ କଲମ। ଉପନ୍ୟାସ ଲେଖିବି। ଦେବୀ ବର୍ତ୍ତମାନ ଶୋଇଯାଇଥିବ। ମୁହଁ ଉପରେ ଅଲରା କେଶ କେତେଟା ଛଟପଟ ହେଉଥିବେ। ମଶାରି ବାହାରେ ମଶା ଘୁରି ବୁଲୁଥିବେ ଠିକ ତା' ସାଇ ଟୋକାଙ୍କ ଭଳି ତା'ର ସୁନ୍ଦର ଦେହ ଟିକେ ଛୁଇଁବା ପାଇଁ।

ମୁଁ ଭାବୁଛି ଦେବୀକୁ ନେଇ କିପରି ଉପନ୍ୟାସ ଆରମ୍ଭ କରିବି ?

## (ଡ)

—ତୁମର ରାଶି ?

—ତୁଳା।

—ଜନ୍ମବାର ?

—ଶୁକ୍ରବାର।

—ନକ୍ଷତ୍ର ?

—ମୁଁ ଜାଣେ ନାହିଁ।

—ତୁମର ଜନ୍ମ ତାରିଖ ?

— ୨୫ ଜୁନ।

—କୌଣସି ନାରୀ ତୁମକୁ ସ୍ୱର୍ଗ ନେଇଯିବେ ପୁଣି କୌଣସି ନାରୀ ତୁମକୁ ନର୍କର ରାସ୍ତା ଦେଖାଇ ଦେବେ।

ମୁଁ ଶୁଭେନ୍ଦୁବାବୁଙ୍କ ମୁହଁକୁ ଚାହିଁଲି। ତାଙ୍କ ନିର୍ବାକାର ମୁଖମଣ୍ଡଳ। ମୁଁ ଏସବୁରେ ବିଶ୍ୱାସ କରେ ନାହିଁ। କିନ୍ତୁ ଶୁଭେନ୍ଦୁ ବାବୁ ଦିନେ ଅବଶ୍ୟ ସାଙ୍ଘାତିକ ବିଶ୍ୱାସ କରୁଥିଲେ। ପଞ୍ଜିକାରେ ମାହେନ୍ଦ୍ରବେଳା ଦେଖି ବାହାରକୁ ଯାଉଥିଲେ। ହାତରେ କବଚ ବାନ୍ଧୁଥିଲେ।

ନିୟମିତ ଦେବୀ ପୂଜା କରୁଥିଲେ। ନକ୍ଷତ୍ରକୁ ଚାହିଁ ଆଖିର ଦୃଷ୍ଟିଶକ୍ତି ବଢ଼ାଉଥିଲେ। କିନ୍ତୁ ଯେବେ ଅନେକ ପରିଶ୍ରମ କରି, ଅନେକ ମାହେନ୍ଦ୍ରବେଳାକୁ ଆଶୟ କରି ମଧ୍ୟ ଏମ. ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀ ମିଳିଲା ନାହିଁ, ସେ ହଠାତ୍ ଭାଗ୍ୟବାଦୀ ହୋଇ ପଡ଼ିଲେ। ତାଙ୍କ ଧାରଣା ହେଲା ଏସବୁ ମିଛ, କେବଳ ଆତ୍ମପ୍ରତାରଣା ମାତ୍ର। ସବୁ କର୍ମର ନିୟନ୍ତ୍ରକ ହେଲା ସମୟ।

ତଥାପି ପୁରୁଣା ଅଭ୍ୟାସବଶତଃ ଥରେ ଥରେ ସେ ହାତର ମାନଚିତ୍ର ଦେଖନ୍ତି। ମଣିଷର ଚେହେରାରୁ ତା'ର ଗତି ପ୍ରକୃତି ନିର୍ଣ୍ଣୟ କରିବାର ବାଟ ଦେଖାଇ ଦିଅନ୍ତି। ମୁଁ ବିଶ୍ୱାସ କରେନାହିଁ କିନ୍ତୁ ମୁଣ୍ଡ ହଲାଏ।

ଅବଶ୍ୟ ମୁଁ ଏ ସବୁକୁ ସଂପୂର୍ଣ୍ଣ ଅବିଶ୍ୱାସ କରେ ଏକଥା ନୁହେଁ। ଆଗରୁ ପୂରାପୂରି ଅବିଶ୍ୱାସ କରୁଥିଲି, ଏପରିକି ଦିନେ ଯେତେବେଳେ ଶୁଭେନ୍ଦୁ ବାବୁ ମୋ ହାତ ଦେଖି କହିଥିଲେ– 'କହ୍ନେଇ, ତୁମର ଜୀବନ ଖୁବ୍ ନିଃସଙ୍ଗ ହେବ' ସେଦିନ ମୁଁ ହସି ଉଡ଼େଇ ଦେଇ କହିଲି, ସାର୍, ଆପଣ ତ ମୋ କଥା ସବୁ ଜାଣିଛନ୍ତି। ମୋର ବାହୁବେଷ୍ଟନୀ ମଧ୍ୟରେ ଅନେକ ସୁନ୍ଦରୀଙ୍କ ଦେହ, ମୋ ଓଠ ପାଖରେ ଅନେକ ଗୋଲାପି ଓଠ, ମୋ ବିଛଣାରେ ଛାରପୋକ କାମୁଡ଼ା ଭଳି ଅନେକ ନାରୀର ଦଂଶନ, ମୋର ମଶାରି ଚାରିପଟରେ ମଶା ଭଳି ଅନେକ ନାରୀର କଳଗୁଞ୍ଜନ। ମୁଁ କ'ଣ ନିଃସଙ୍ଗ ?

ମୋ ହସକୁ ଚାପି ଦେଇ ସେ କହିଥିଲେ, କିନ୍ତୁ ତୁମେ ତ କହୁଥିଲ– ପୁରୀର ରଥଯାତ୍ରାରେ ଭୀଷଣ ନିଃସଙ୍ଗ ଆଉ ଏକୁଟିଆ ଲାଗେ। ନିଃସଙ୍ଗତାଟା ସଂପୂର୍ଣ୍ଣ ମାନସିକ। ଅସମ୍ଭବ ସୁଖଶାନ୍ତି ମଧ୍ୟରେ ବି ଲୋକ କେଉଁ ଦୁଃଖରେ ଆତ୍ମହତ୍ୟା କରନ୍ତି ?

ମୁଁ ନୀରବ ହୋଇଯାଇଥିଲି ସେଦିନ, କାରଣ ଶୁଭେନ୍ଦୁ ବାବୁଙ୍କୁ ମୁଁ ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଖଦ୍ୟୋତୟା ମନେ କରେ ଏବଂ ଏତେ ଲୋକ ମଧ୍ୟରେ ନିଃସଙ୍ଗ ହୋଇପଡ଼ିବାକୁ ମୁଁ ଭୀଷଣ ଭାବେ ଅନୁଭବ କରେ।

ଅବଶ୍ୟ ମୋ ଜୀବନରେ ଏଇ ସଂକ୍ରାନ୍ତରେ ଏଇ କେତେ ଦିନ ତଳେ ଗୋଟିଏ ଘଟଣା ଘଟିଥିଲା।

ଥରେ ବସନ୍ତ ମୋତେ ପଚାରିଲା– କହ୍ନେଇ, କହିଲ କେମିତି ଭାବେ ମୁଁ ଥରେ ନିରୁପମା ସହ କଥା କହିବି ?

ମୁଁ ତାକୁ କହିଥିଲି– କିହୋ, ସେ ପରା ଅନୁର ସାଙ୍ଗ, ଅନୁ ସାଥିରେ ଘରକୁ ଆସେ ନାହିଁକି ?

–ସେ ଆସେ ଯେ, କିନ୍ତୁ ଅନୁ ସବୁବେଳେ ପାଖେ ପାଖେ ରହେ।

–ଅନୁ ରହିଲେ କ'ଣ ହେଲା ତାକୁ ପଚାରୁନ– ତୁମକୁ କେଉଁଠି ଦେଖିଲା ଭଳି ମନେ ପଡୁଛି।

–ହେତ୍, ମୁଁ କ'ଣ ଏଇମିତ କଥା କହିବାକୁ ଚାହୁଁଛି କି ?

–ଆଉ ?

–ସେଇ କଥା ।

–କେଉଁ କଥା ?

–ସେଇ କଥା ମ, ସେଇ କଥା ।

–ବସନ୍ତ, ସେ କଥା ପାହାଡ଼ ଉପରେ ଚଢ଼ି ମୁକ୍ତ କଣ୍ଠରେ ଖୁବ ବଡ଼ପାଟିରେ ନିଃସଙ୍କୋଚରେ କହିବାକୁ ହୁଏ ।

–ଥଟ୍ଟା କରୁଛ ?

–ନାଇଁ, ତୁମେ ଦିନେ ଅନୁକୁ କୁହ ତା'ର ସାଙ୍ଗମାନଙ୍କୁ ନେଇ ଚଣ୍ଡୀଖୋଲ ବୁଲିଯିବ । ତୁମ ଜିପରେ ସେମାନଙ୍କୁ ନେଇଯିବ ଆଉ ନେଇ ଆସିବ । ସେଠି ପିକ୍‌ନିକ୍ ଏବଂ ପାହାଡ଼ ଉପରେ ଝରଣା କୂଳରେ ଛିଡ଼ା ହୋଇ ଚିତ୍କାର କରି କହିବ–ନିରୁ, ମୁଁ ତୁମକୁ ଭଲପାଏ । ବାସ୍ ।

ଦିନେ ଗୋଟିଏ ରବିବାରରେ ଅବଶ୍ୟ ଅନୁ ତା'ର ପ୍ରୋଗ୍ରାମ ଅନୁଯାୟୀ ଜିପ୍‌ରେ ବସି ନିରୁପମା, ଅସୀମା, ପ୍ରୀତି, ସ୍ୱାତୀ, ସମସ୍ତଙ୍କୁ ଜିପ୍‌ରେ ବସାଇ ଦେଲା । ବସନ୍ତ ସେଦିନ ଗୋଟିଏ ହାଲୁକା ହଳଦିଆ ରଙ୍ଗର ପେଣ୍ଟ ପିନ୍ଧି, ନୂଆ ବ୍ଲେଡ଼ରେ ଖିଅର ହୋଇ, ମୁଣ୍ଡର ବାଳକୁ ଭଲରୂପେ କୁଣ୍ଡାଇ ଜିପ୍‌ର ଷ୍ଟିଅରିଂ ଧରି ବସିଲା । ମୁଁ, ଅନୁ, ନିରୁପମା, ପ୍ରୀତି, ସ୍ୱାତୀ, ସମସ୍ତେ ଚଢ଼ିଗଲା । ବାକୀ ଅସୀମାକୁ ଯିବାବେଳେ ତା' ଘରୁ ନେଇ ଆସିବାକୁ ହେବ ।

ଅସୀମାକୁ ମୁଁ ଦିନେ ଟିଉସନ କରୁଥିଲି । ଅସୀମା ମୋତେ ରାକ୍ଷୀ ପିନ୍ଧାଇ ଭାଇ କରିଥିଲା । ମୁଁ ତାକୁ ଅନେକ ସ୍ନେହ କରି ପକାଇଥିଲି । ତେଣୁ ତା'ର ବାପା ମା'ଙ୍କ ସନ୍ଦେହ ମୋ ପାଇଁ ବେଶି । ଅସୀମା ଘରେ ପହଞ୍ଚିବାର କିଛି ଦୂରରୁ ମୁଁ ଓହ୍ଲେଇ ପଡ଼ିଲି । କାରଣ ଏ ପିକ୍‌ନିକ୍ ପାର୍ଟିରେ ତା' ମା' ମୋତେ ଦେଖିଲେ ଅସୀମାର ଆସିବା ବନ୍ଦ ହୋଇଯିବ । ସେମାନେ ଅସୀମାକୁ ନେଇ ଆସିଲେ ମୋତେ ରାସ୍ତାରୁ ଉଠାଇ ନେଇ ଯିବେ ।

ମୁଁ ରାସ୍ତାରେ ଛିଡ଼ାହୋଇ ରହିଲି । ଡେରି ହେବାରୁ ଏଣେ ତେଣେ ଚାହିଁଲି । ଅସୀମାର ଲୁଗା ପିନ୍ଧିବାରେ ଡେରି ହୋଇଯାଉଥିବ । କଜ୍ଜଳ ଟାଣିବାରେ ବିଳମ୍ବ ହେଉଥିବ । ମୁଣ୍ଡର ଟୋପାକୁ ବଙ୍କା ହୋଇଯାଉଛି ବୋଲି ପୋଛି ଦେଉଥିବ ।

ମୁଁ ରାସ୍ତା କଡ଼କୁ ଚାହିଁ ଦେଖିଲି ଜଣେ କାପାଳିକ ପରି ଲୋକ । ତା' ଆଗରେ କେତେଟା ସାମୁଦ୍ରିକ ଆଉ ଭଙ୍ଗା ସ୍ଲେଟ । ମୁଁ ତା' ଆଡ଼େ ଆଗେଇ ଗଲି ଓ ତା'ର ଚିରା

ସାମୁଦ୍ରିକ ଉପରକୁ ଦଶପଇସି ଗୋଟିଏ ପକାଇ ହାତ ବଢ଼ାଇଦେଲି। ସେ ଅନେକ ସମୟ ହାତ ଦେଖିଲା। କପାଳକୁ ଚାହିଁଲା, ଶେଷରେ କହିଲା–

–ଗୋଟିଏ ଫୁଲର ନାମ କୁହ।

–ରଜନୀଗନ୍ଧା।

ଦେବୀ ସେଇ ଫୁଲଟା ଭଲପାଏ ବୋଲି ସେଇ ଫୁଲର ନାମହିଁ କହିଲା।

–ଗୋଟିଏ ଫଳର ନାମ ?

–କଦଳୀ।

–ଗୋଟିଏ ବାରର ନାମ ?

–ମଙ୍ଗଳବାର। ଯଦି କୁଆଡ଼େ ମଙ୍ଗଳ ହୁଏ ?

–ଗୋଟିଏ ସଂଖ୍ୟା ?

–ଶୂନ୍‌।

–ସେ ମୋ ମୁହଁକୁ ଚାହିଁଲା, ତା'ପରେ କହିଲା ତୁମର ଆଜି ଯାତ୍ରା ଯୋଗ ଅଛି।

ମୁଁ ଆଶ୍ଚର୍ଯ୍ୟ ହେଲି, କିନ୍ତୁ ମୋ କାନ୍ଧରେ ଝୁଲୁଥିବା ଚା' ଫ୍ଲାସ୍କକୁ ଲକ୍ଷ୍ୟ କରି ମନେ ମନେ ଲୋକଟାର ବୁଦ୍ଧିର ତାରିଫ୍‌ କଲି। ପଚାରିଲି– ଯାତ୍ରା ଶୁଭ ତ।

ସେ ଆଖି ବନ୍ଦ କଲା। ମନେ ମନେ ସଂଖ୍ୟା କେତେ ଗଣିଲା। ସ୍ଲେଟରେ ଦୁର୍ବୋଧ ଗଣିତ ସବୁ କଷିଲା। ଶେଷରେ ଉଚ୍ଚାରଣ କଲା–

–ଯୋଗିନୀ ? କାହିଁ ? ମାନେ ?

–ମାନେ ଯାତ୍ରା ଅଶୁଭ।

–ମୁଁ ପିକ୍‌ନିକ୍‌ ଯାଉଛି। କୌଣସି ଇଣ୍ଟରଭିୟୁ କିମ୍ୱା ମକଦ୍ଦମା ପାଇଁ ଯାଉନାହିଁ, ଅଶୁଭ କ'ଣ ?

–ରାସ୍ତାରେ କିଛି ପ୍ରକାର ଦୁର୍ଘଟଣା ଘଟିପାରେ।

–ଦୁର୍ଘଟଣା ? ଫୁ। ଆର୍ମଷ୍ଟ୍ରଙ୍ଗକୁ ଚିହ୍ନିଛ ?

–କିଏ ?

–କିଛି ନାହିଁ।

ପଛରୁ ଜିପ୍‌ର ହର୍ଣ୍ଣ ଶୁଣି ଦୌଡ଼ିଲି। ବସନ୍ତର ଅନ୍ୟ ପଟରେ ବାହାରକୁ ଅଧେ ଗୋଡ଼ କାଢ଼ି ବସିଗଲି।

ବସନ୍ତର ସେ ପଟରେ ଅନୁ, ଅନୁ ସେପଟେ ନିରୁପମା। ପଛରେ ଅସୀମା, ପ୍ରୀତି ଏବଂ ସ୍ୱାତୀ ଇତ୍ୟାଦି।

ଆମ ସହରକୁ ଛାଡ଼ି କ୍ରମେ ଆଗେଇ ଚାଲିଛି ଜିପ୍‌। ମୋତେ ଆନନ୍ଦରେ ହୁଇସିଲ ମାରିବାକୁ ଇଚ୍ଛା ହେଉଥିଲା। ସେତେବେଳେ ବୋଧହୁଏ ଶରତ କାଳ। ଦୂର

ଦିଗ୍‌ବଳୟ ପର୍ଯ୍ୟନ୍ତ ସବୁଜ ଶସ୍ୟ କ୍ଷେତ୍ର। କିଆରୀ ହିଡ଼ ଉପରେ ଧଳା ଧଳା ଘାସ ଫୁଲ। ସଡ଼କର କେତେ କେତେ କେଉଁଠି ଗାଈପଲା। କେଉଁଠି ଅବାକ୍ ବିସ୍ମୟରେ ଆମ ଜିପ୍‌କୁ ଚାହୁଁଥିବା ଗାଈଆଳ ଟୋକା।

ବସନ୍ତର ପାଦର ଚାପ ଏକ୍‌ସିଲଟର ଉପରେ କ୍ରମେ ବଢ଼ିଚାଲିଛି। ମୁଁ ଜାଣେ କୌଣସି ଝିଅକୁ ଦେଖିଲେ ଅନେକ ନୂଆ ସାଇକେଲ ଚଢୁଥିବା ଗଜା ଟୋକା ସାଇକେଲର ଗତି ବଢ଼ାଇ ଦିଅନ୍ତି ଆଉ ଥରେ ଥରେ ହାଣ୍ଡେଲ ଛାଡ଼ି ସର୍କସ ଦେଖାନ୍ତି। ବସନ୍ତର ପାଦ ସ୍ପର୍ଶ ପାଇ କ୍ରମେ କ୍ରମେ ଜିପ୍‌ର ସ୍ପିଡ଼ୋମିଟର କଣ୍ଟାଟି ଲକ୍ ଲକ୍ କରି ସତୁରି ଆଉ ଅଶୀ ମଧ୍ୟରେ ପହଞ୍ଚିଲାଣି। ଯେତେବେଳେ ବାଙ୍କ ଆସେ କିମ୍ବା ଅତିକାୟ ଲରୀ ସବୁ ରାସ୍ତା କମ୍ପାଇ କଡ଼ ଦେଇ ଚାଲିଯାଆନ୍ତି ସେତେବେଳେ ସାମାନ୍ୟ ମାତ୍ର ଖସି ଆସେ କିନ୍ତୁ ପରମୁହୂର୍ତ୍ତରେ ସେଇ ଲକ୍‌ଲକ୍ ନୀଳ ଜିଭ ସତୁରି ଅଶୀ ଉପରକୁ ଚାଲିଯାଏ। ମୋ ଭିତରୁ ଅନେକ ଚିତ୍ର କେମିତି ଉଠିଆସେ।

ସିମଳାରେ ଗୁରୁତର ବସ୍ ଦୁର୍ଘଟଣା, ଟ୍ରକ ଚକ ତଳେ ବିଧବାର ମୃତ୍ୟୁ, ଜିପ୍ ଦୁର୍ଘଟଣାରେ ବି.ଡ଼ି.ଓ. ଗୁରୁତର ଆହତ ଇତ୍ୟାଦି ସମ୍ବାଦପତ୍ରର ଅନେକ ପରିଚିତ ଚିରା ପୃଷ୍ଠା ଜିପ୍ ସାମ୍ନାରେ ରାସ୍ତା ଉପରେ ମେଲା ହୋଇଥିବାର ମୁଁ ଦେଖେ।

ମୁଁ ବସନ୍ତର କାନେ କାନେ କହେ– ଭାଇ, ନିରୁପମାକୁ ତୋର ଦକ୍ଷତା ଦେଖାଇ ମୋ ପୈତୃକ ପ୍ରାଣଟା ଅସମୟରେ ନଷ୍ଟ କରିବାକୁ ଦେ'ନା।

ବସନ୍ତ ହସେ। ତା' ହାତରେ ଷ୍ଟିଅରିଂ ଥର ଥର କରି କମ୍ପିଉଠେ। ମୁଁ ଏକ ଲୟରେ ରାସ୍ତାକୁ ଚାହେଁ। ସରୁ ରିବନ ପରି ଦିଗ୍‌ବଳୟ ପର୍ଯ୍ୟନ୍ତ ରାସ୍ତା ଲମ୍ବିଯାଏ। ମୁଁ ମୁଗ୍ଧ ଶଙ୍କିତ ହୋଇ ବସିରହେ।

ପଛରୁ ଅସୀମା ମନ୍ତବ୍ୟ କରେ– ସାର୍, ଯଦି ଜିପଟା ଆକ୍‌ସିଡେଣ୍ଟ ହୋଇଯାଏ ତା'ହେଲେ ?

ମୁଁ ପଚାରେ– କ'ଣ ତାହେଲେ ?

–ଦେବୀ କ'ଣ କରିବ ? ବିଚରା କାନ୍ଦିବ।

ଦେବୀର ଦୁଃଖ କଥା ସ୍ମରଣ କଲାମାତ୍ରେ ମୋ ଭିତରେ ଅନେକ ଭଙ୍ଗା କାଚର ଶବ୍ଦ ଉଠିଆସେ।

ଅସୀମା, ମୁଁ ଅନେକ ଦିନ ଏ ପୃଥିବୀରେ ବଞ୍ଚିବାକୁ ଚାହେଁ ଦେବୀ ପାଇଁ। ପୃଥିବୀରେ ସବୁଠାରୁ ସୁନ୍ଦର ଦେବୀର ସେଇ ହାତ ପାପୁଲିର ସ୍ପର୍ଶ। ତା'ର ସେଇ କଥା– 'ହେଇ ତୁମେ ପୁଣି ଗୋଟେ କେମିତି ହୋଇଯାଉଛ।' ନା, ମୁଁ କେବେ ମରିପାରିବି ନାହିଁ।

ମୁଁ ଥରେ ଆତ୍ମହତ୍ୟା କରିବି ବୋଲି ଭାବିଥିଲି। ଅନେକ ଥର ଅବଶ୍ୟ ଭାବିଛି। କିନ୍ତୁ କେବେ ଘଟଣା ସ୍ଥଳକୁ ଯାଇନି। ମୁଁ ଭାବିଛି ବନ୍ଦ କୋଠରି ମଧ୍ୟରେ ବେକରେ ଦଉଡ଼ି ଲଗାଇ ବା ଫଲିଡ଼ଲ ପିଇ ଆତ୍ମହତ୍ୟା କରିବା ଏକ ଘୃଣ୍ୟ କାର୍ଯ୍ୟ। ତା' ଅପେକ୍ଷା ବରଂ ସେଇ ସ୍ଥାନରେ ଆତ୍ମହତ୍ୟା କରିବା ଭଲ, ଯେଉଁ ସ୍ଥାନରୁ ଦୂର ସିଗ୍‌ନ୍ୟାଲର ରକ୍ତ ସଙ୍କେତ ସବୁଜ ହୋଇ ଆସୁଥିବ। ପୃଥିବୀ ଭର୍ତ୍ତି ଖୋଲା ପବନ ଫୁସ୍‌ଫୁସ୍ ଭିତରକୁ ପଶି ଜୀବନର ସତ୍ତା ସଂପୂର୍ଣ୍ଣ ଉପଭୋଗ କରିବାକୁ ଛାଡ଼ି ଦେଉଥିବ। ବାସ୍, ସେ ମୃତ୍ୟୁରେ ଗୌରବ ଅଛି। ଦିନେ ଏମିତି ରାତି ଦଶଟାରେ ରେଳ ଲାଇନ୍ କଡ଼େ କଡ଼େ ବୁଲୁବୁଲୁ କାହିଁକି କେଜାଣି ଭୀଷଣ ନିଃସଙ୍ଗ ଲାଗିଲା। ମନେ ହେଲା– ମୋର ପୃଥିବୀରେ କିଏ ଅଛନ୍ତି! କେବଳ ଜଣେ ସବୁବେଳେ ମୋର ନିଜର। ସେ ଯନ୍ତ୍ରଣା। ଦରିଦ୍ର ପରିବାରର ଦୁର୍ଦ୍ଦଶା ମୋରି ପାଇଁ। ମୁଁ ଏଠି ଆରାମରେ ଖାଇପିଇ ସ୍ୱପ୍ନ ଦେଖିବି, ଦେବୀକୁ ନେଇ ଆକାଶରେ ବିଲଡ଼ିଂ ତୋଳିବି ଆଉ ତେଣେ ଗୋଟିଏ ପରିବାରର ବିଧବା ନାରୀ ଆଉ ଅନାଥ ପିଲାପିଲି କେତେଟା ହାଓ୍ୱା ଖାଇ ବଞ୍ଚିବେ ଏବଂ ସ୍ୱପ୍ନ ଦେଖିବେ– ସେମାନଙ୍କ କହ୍ନେଇ ଓ କହ୍ନେଇ ଭାଇ ଗୋଟିଏ ବଡ଼ ଅଫିସର ହୋଇ ଯାଇଛି ଏବଂ ପ୍ରଚୁର ଟଙ୍କା ଆଣି ସେମାନଙ୍କ ପାଇଁ ଏକ ସ୍ୱପ୍ନର ଦୁନିଆ ତିଆରି କରିଦେଇ ଏତେ ଦିନର ଦୈନ୍ୟତାର ତଣ୍ଟି ଚିପି ଦେଲାଣି। ନା, ମୁଁ ପାରିବି ନାହିଁ। ମୋରି ପାଇଁ ଗୋଟିଏ ପରିବାରର ଏତେ ଦୁର୍ଦ୍ଦଶା ପୁଣି ଗୋଟିଏ ଝିଅର ସାମାଜିକ ବଦନାମ। ମୁଁ ଶେଷଥର ପାଇଁ ବିଭୁ ସ୍ମରଣ କରି ରେଳ ଲାଇନ ଉପରେ ଶୋଇଗଲି। ସିଗ୍‌ନ୍ୟାଲର ନାଲି ଆଲୁଅ ସବୁଜ ହେଲା। କାନରେ ଯନ୍ତ୍ର ଦାନବର ଘଡ଼ ଘଡ଼ ଶବ୍ଦ ସ୍ପଷ୍ଟରୁ ସ୍ପଷ୍ଟତର ହେବାକୁ ଲାଗିଲା। ଆଉ ଦଶ ସେକେଣ୍ଡ ପରେ ଯେତେବେଳେ ମୋର ମୁଣ୍ଡ ଦେହରୁ ଅଲଗା ହୋଇଯିବ ଯେତେବେଳେ ଦେବୀ କ'ଣ କରିବ? ଦେବୀ କାଲି ସକାଳ ଦଶଟାରେ ସ୍କୁଲ ଯିବା ରାସ୍ତାରେ ସେଇ ତେନ୍ତୁଳି ଗଛ ମୂଳରେ ଦେଖା କରିବାକୁ କହିଥିଲା। ନା, ନା ଆଜି ମରି ଲାଭ ନାହିଁ। ବରଂ ଦେବୀକୁ କାଲି ମନଭରି ଦେଖିବି ଏବଂ ଶେଷ ଇଚ୍ଛାଟା ପୂରଣ କରିସାରିବା ପରେ ଆତ୍ମହତ୍ୟା କରିବି।

ଏସବୁ କଥା ଅସୀମାକୁ କହି ଦେବାକୁ ଇଚ୍ଛା ହେଉଥିଲା କିନ୍ତୁ ନୀରବରେ ସ୍ୱଗତ ସଂଳାପ ଉଚ୍ଚାରଣ କଲି କେବଳ। ଅନୁ ସେପଟରୁ ପାଟି କଲା– କ'ଣ ଦେବୀ କଥା ଭାବି ନୀରବ ହୋଇଗଲା କି?

ମୁଁ କହିଲି– ହୁଁ।

ଅନୁ ନୀରୁ ସ୍ୱାତୀ ପ୍ରୀତି ସମସ୍ତେ ହସିଲେ। ଅସୀମା ମନ୍ତବ୍ୟ କଲା– ଆମର ଲେଖକ ମହାଶୟ ଗଳ୍ପର ପ୍ଲଟ ତିଆରିରେ ବ୍ୟସ୍ତ।

ବସନ୍ତର ସିଡ଼୍ କିନ୍ତୁ କମୁନାହିଁ। ରାସ୍ତା ଘୁଞ୍ଚିଯାଉଛି ଦୂରକୁ ଦୂରକୁ।

ପୁଣି ମନ ଭିତରେ କେଉଁଠି ଯେପରି ଖଚଖଚ କରି କଣ୍ଟା ଫୋଡ଼ିଲା ପରି ଲାଗିଲା– ସାମ୍ନାରେ ଯୋଗିନୀ ଅଛନ୍ତି। ରାସ୍ତାରେ କିଛି ଦୁର୍ଘଟଣା ଘଟିପାରେ।

ରାସ୍ତା କଡ଼ରେ ଗତି ନିୟନ୍ତ୍ରଣ କରିବାର ବିଭିନ୍ନ ପୋଷ୍ଟର। ସବୁ ଇଂରାଜୀରେ ଲେଖା। କିନ୍ତୁ ନୟନ୍ତ୍ରିତ ହୁଏନି। ସର୍ଦ୍ଦାରଜୀ ଇଂରାଜୀ ପଢ଼ି ପାରନ୍ତି ନାହିଁ। ତେଣୁ ବୋଧହୁଏ ତାଙ୍କ ମାଲ ବୋଝେଇ ଟ୍ରକ ଖୁବ୍ ସ୍ପିଡ଼ ନିଏ ଆଉ ଅନେକ ଦୁର୍ଘଟଣା ବି ଘଟେ।

ସତରେ ଯଦି ଜିପ୍‌ଟା ଏକସିଡେଣ୍ଟ ହୋଇଯାଏ। ଯଦି ଦେବୀ ଆମ ସାଥିରେ ଥା'ନ୍ତା। ତା'ହେଲେ ମୁଁ ମରିବାକୁ ପ୍ରସ୍ତୁତ ଥିଲି। ଅନ୍ତତଃ ମୋର ମଲାବେଳେ ଦେବୀ ତ ପାଖରେ ରହନ୍ତା। ନ ହେଲେ ଦେବୀ ତ ସ୍ୱାର୍ଥପର ହୋଇ ପୃଥିବୀର ଅନ୍ୟ ପୁରୁଷ ପାଇଁ ବଞ୍ଚି ରହନ୍ତା ନାହିଁ, ମୋରି ହାତ ଧରି ଯମପୁରୀ ଦର୍ଶନ କରନ୍ତା ଏବଂ ଶେଷରେ ଦୁହେଁ ହାତ ଧରାଧରି ହୋଇ ସ୍ୱର୍ଗ ଯାଆନ୍ତେ। ଦେବୀ ବିନା ମୋର ମୃତ୍ୟୁ ଅସମ୍ଭବ।

କିନ୍ତୁ ବସନ୍ତର ସ୍ପିଡ୍ ବଢ଼ିଚାଲିଛି, ନିରୁ ତା' ସହିତ କଥା ହେଉନି ବୋଲି। ନିରୁକୁ ତା' ପାଖରେ ନ ବସାଇ ଅନୁ ତା' ପାଖରେ ବସିଗଲା ବୋଲି।

ମୁଁ ଅନୁକୁ କହିଲି– ଅନୁ, ତୁମ ଭ୍ରାତୃଦେବଙ୍କୁ କୁହ ଏତେଗୁଡ଼ା ମହତ୍ ଜୀବନକୁ ଦୁର୍ଘଟଣାରେ ପକାଇବାର ରିସ୍କ ନ ନେଉ।

ପଛରୁ ଅସୀମା ଥଟ୍ଟା କଲା– ଦେଖ୍ ଅନୁ, ତୋ ଭାଇଙ୍କୁ କହ ସ୍ପିଡ୍ କମେଇବା ପାଇଁ। ଓଡ଼ିଶା ଗୋଟିଏ ବିରାଟ ସାହିତ୍ୟିକଙ୍କୁ ହରାଇବ, ଭାରତବର୍ଷ ଗୋଟିଏ ମହାତ୍ମାକୁ ହରାଇବ ଏବଂ ପୃଥିବୀ ଜଣେ ବିରାଟ ପ୍ରେମିକ ହରାଇବ।

ବସନ୍ତ ହସିଲା, ଗମ୍ଭୀର ହସ। ସ୍ପିଡ଼ୋମିଟରେ କଣ୍ଟା ଆହୁରି ଦୁଇ ତିନୋଟି ଗାର ପାରି ହୋଇଗଲା।

କିନ୍ତୁ ମୋତେ ବଞ୍ଚିବାକୁ ହେବ। ମୁଁ ସାମ୍ନାରେ ସବା ବାଁ କଡ଼କୁ ବସିଛି। ଦୁର୍ଘଟଣା ଘଟିଲେ ଆଗ ମୁଁ ମରିବି। ସତରେ ବୋଧହୁଏ ସାମ୍ନାରେ ଯୋଗିନୀ ଅଛନ୍ତି।

କିଛି ସମୟ ପରେ ମୋତେ ମନେ ହେଲା– ଯେପରି ନିଶ୍ଚୟ ଦୁର୍ଘଟଣା ଘଟିବ।

ରାସ୍ତାଟା ସାମନାରେ ବାଁ ଆଡ଼କୁ ବାଙ୍କି ଯାଇଛି। ତଥାପି ଜିପ୍‌ର ସ୍ପିଡ୍ କମୁନାହିଁ।

ଜିପ୍‌ଟା ବାଙ୍କ ନେଲା ମାତ୍ରେ ଏକଥରେ ସାମ୍ନାରେ ଗୋଟିଏ ଅତିକାୟ ଟ୍ରକ। ହଠାତ୍ ବ୍ରେକ ଦେଲା ବସନ୍ତ। କିନ୍ତୁ ମନେହେଲା ଟ୍ରକଟା ଯେପରି ଆମ ସମସ୍ତଙ୍କୁ ମାଡ଼ି ଚକଟି ଚାଲିଯିବ। ମୁଁ ନିଃଶ୍ୱାସ ବନ୍ଦ କରି ବାହାରକୁ ଡେଇଁ ପଡ଼ିଲି।

ଯେତେବେଳେ ଆଖି ଖୋଲିଲି, ଦେଖିଲି ମୁଁ ଡାକ୍ତରଖାନାରେ। ମୋ ମୁଣ୍ଡ ପାଖରେ ଅସୀମା ବସି ତା' ହାତର ଛୁଆଁ ମୋ କପାଳରେ ବାଣ୍ଟି ଦେଉଛି। ଏପଟରେ ଅନୁ ସ୍ୱାତୀ ପ୍ରୀତି। ଗୋଟିଏ ଚେୟାରରେ ବସନ୍ତ।

ବସନ୍ତ କହିଲା, ତୁମର ଏତେ ଡର। ତୁମ ଭଳି ଲୋକକୁ ସାଥିରେ ଆଣି ଏ ଦୁର୍ଘଟଣା।

ମୁଁ ଅବାକ୍ ହେଲି– ଆଉ କାହାରି କିଛି କ୍ଷତି ହୋଇନାହିଁ ? ଜିପ୍ ଓଲଟି ପଡ଼ିଲା କି ?

ବସନ୍ତ କହିଲା– ଜିପ୍ କାହିଁକି ଓଲଟି ପଡ଼ିବ, ତୁମେଇ ତ ଓଲଟି ପଡ଼ିଲ ଡରରେ।

ମୁଁ ଭାବିଲି ଏଥିପାଇଁ ଦାୟୀ କିଏ, ମୋର ଦୁର୍ବଳ ମନ ନା ସେଇ କାପାଳିକ ନା ମୋ ସାମ୍ନାର ଯୋଗିନୀ।

ସେଇଦିନରୁ ମୁଁ ଏଇ ସାମୁଦ୍ରିକ ଫାମୁଦ୍ରିକ ନକ୍ଷତ୍ର ରାଶିଫଳକୁ ଅବିଶ୍ୱାସ କରେ, କିନ୍ତୁ ପତ୍ରିକାର ଶେଷ ପୃଷ୍ଠା ଦେଖେ, ଶୁଭେନ୍ଦୁ ବାବୁଙ୍କ କଥା ବି ବିଶ୍ୱାସ କରେ। ଉପାୟ ନାହିଁ।

ଅବଶ୍ୟ ଶୁଭେନ୍ଦୁ ବାବୁଙ୍କ କଥା– 'କୌଣସି ନାରୀ ତୁମକୁ ସ୍ୱର୍ଗ ନେଇଯିବେ ଏବଂ ନର୍କକୁ ବି ନେଇଯିବେ'– କଥାଟା ସତ୍ୟ ନୁହେଁ କି ?

ଦେବୀ ମୋତେ ସ୍ୱର୍ଗ ନେଇଯାଇଛି। ଦେବୀ ପାଇଁ ସ୍ୱର୍ଗ କ'ଣ ମୁଁ ବୁଝିଯାଇଛି କିନ୍ତୁ ଦେବୀ କ'ଣ ମୋତେ ନର୍କ ନେଇ ଯାଇ ପାରିବ ?

କିନ୍ତୁ ମୋର ଯେ ଉପନ୍ୟାସ ଆରମ୍ଭ କରିବାର ଥିଲା !

## (ଚ)

ବସନ୍ତ ଜିପ୍ ନେଇ ଆସି ହଣ୍ଡ ଦେଲା।

ମୁଁ ଭାବୁଥିଲି ଉପନ୍ୟାସଟା କିପରି ଆରମ୍ଭ କରିବି। ଖାତା ଖୋଲି ପ୍ରଥମ ଧାଡ଼ି ଲେଖି ପକାଇଥିଲି– "ମୋତେ ଯଦି କେହି ବିନା ଅପରାଧରେ କଲର ଧରି ପିଟନ୍ତା କିମ୍ୱା ମୋ ମା' ବାପ ଭାଇ ଭଉଣୀ ସମେତ ନିକଟ ଆତ୍ମୀୟ ମଧ୍ୟରୁ କେହି ହଠାତ୍ କୋକେଇରେ ଚଢ଼ି ଯାଆନ୍ତେ କିମ୍ୱା କେତେକ ଅଳସ ମଧ୍ୟାହ୍ନରେ ମୋ ପାଖ ପଡ଼ୋଶିନୀର ଖୋଲା ଝର୍କାକୁ ଚାହିଁ ବସିଥିବା ଅପରାଧରେ ତା'ର ଅବିବାହିତ ଜୀବନର ପ୍ରଥମ ସନ୍ତାନର ପିତୃତ୍ୱ ମୋ ଉପରେ ଲଦି ଦିଅନ୍ତା ତା'ହେଲେ ମୁଁ କାନ୍ଦନ୍ତି ନାହିଁ। କିନ୍ତୁ ମୁଁ କାନ୍ଦେ। କାରଣ ନଥାଇ ବି କାନ୍ଦେ।"

ମୁଁ ଉପରୁ ଚିତ୍କାର କଲି– କଥା କ'ଣ ?

ଆରେ ବୁଲିଯିବା, ଏତେ ବଢ଼ିଆ ଚାକିରି ପାଇ ଖୁଆଇବାକୁ ହେବ ବୋଲି ଘରେ ଲୁଚୁଛ।

–କିଏ କହିଲା ?

–କାହିଁକି, ଗଦାଧର ?

ମୁଁ ଅବଶ୍ୟ ପନ୍ଦର ତାରିଖ ମଧ୍ୟରେ ଚାକିରିରେ ଯୋଗ ଦେବା ପାଇଁ ଖଣ୍ଡିଏ ଚିଠି ପାଇଛି। ବର୍ଦ୍ଧମାନରେ ପ୍ରଥମେ, ତା'ପରେ ଆନ୍ଦାମାନ ପଠାଯିବ।

ମୁଁ ସ୍ଥିର କରିପାରୁନାହିଁ ଏ ଚାକିରିଟା ନେବି କି ନା, ଯଦିବା ଆଠ ଦଶଟା ଇଣ୍ଟରଭିୟୁ ଏଥିମଧ୍ୟରେ ଦେଇ ସାରିଛି।

ଅବଶ୍ୟ ଯା ପୂର୍ବରୁ ଆଉ ଗୋଟିଏ ଚାକିରି ପାଇଥିଲି। କିନ୍ତୁ ଦିନେ କାମ କରି ଦେଖିଲି ମୋ ଉପରେ ଅନେକ ଅନେକ ଦାୟିତ୍ୱ। ଭୟ ହେଲା ମୁଁ ହୁଏତ ଏତେ ବଡ଼ ଦାୟିତ୍ୱ ତୁଲାଇ ପାରିବି ନାହିଁ। ବାସ୍, ତା' ପରଦିନ ଅଫିସ୍ ଦରୱାଜା ଦେଖି ନାହିଁ। ପୁଣି ଏ ଚାକିରି !

ମୁଁ ଯେତେବେଳେ ଇଣ୍ଟରଭିୟୁ ଦିଏ ମୋ ସାଙ୍ଗମାନଙ୍କ ବ୍ୟାକୁଳତା ଦେଖି ମନେ ମନେ ଭଗବାନଙ୍କୁ ପ୍ରାର୍ଥନା କରେ ଏଇ ଚାକିରିଟା ହୋଇ ଯାଆନ୍ତା କି ! ମୁଁ ଏମାନଙ୍କ ଆଗରେ ଫୁଟାଣି ଦେଖାଇ ପାରନ୍ତି। ଆଜି ବି ବର୍ଦ୍ଧମାନର ଚାକିରି ପାଇଁ ନିଯୋଗ ପତ୍ର ପାଇଗଲି। ଏଇଟା ନ ହୋଇଥାନ୍ତା କି !

—ଚାଲ ଗଦାଧର ପାଖକୁ ଯିବା, ତାକୁ ନେଇ ସେପଟେ ବୁଲି ଯିବା। ଆଜି ତୁମେ ଖୁଆଇବ ଆଉ ସିନେମା।

—ମୁଁ ?

—ଏତେ ବଡ଼ ଚାକିରି...ଆଉ ମୁଁ ?

—ଭାବୁଛି, ଏ ଚାକିରିଟା କରିବି ନା ନାହିଁ !

—ଭାବୁଛ କରିବ ନା ନାହିଁ, ଆଶ୍ଚର୍ଯ୍ୟ !

ଗଦାଧର ଶୋଇଥିଲା, ନିଦ ମଳମଳ ଆଖିରେ ଲୁଙ୍ଗିକୁ ଟାଇଟ କରି ଉଠି ଆସିଲା, କହିଲା— କିହୋ, ବର୍ଦ୍ଧମାନ ଯାତ୍ରାରମ୍ଭ କେବେ ?

—ମୁଁ ଯିବି କି ନାହିଁ ଭାବିନି।

—ତାଙ୍କ ଦେବୀଙ୍କ ଅନୁମତି ମିଳୁ। ତା'ପରେ ଯାହା ହେବ—ବସନ୍ତ ରିମାର୍କ ଛାଡ଼ିଲା।

—ଦେବୀ ୟାଙ୍କୁ ସ୍ୱର୍ଗ ନେଇଯିବେ ! ଗଦାଧରର ଉକ୍ତି।

ମୁଁ ସତକୁ ସତ ଚିଠି ଲେଖିଲି ଦେବୀଙ୍କୁ, ଚାକିରିଟା କରିବି କି ନା, ଅବଶ୍ୟ ଚିଠିରେ ସେ ଚାକିରିର କେବଳ ଖରାପ ଦିଗଟା ହିଁ ଦର୍ଶାଇଥିଲି।

ଦେବୀ ଉତ୍ତର ଦେଇଥିଲା ଯେ ଘରର ପରିସ୍ଥିତି ଦୃଷ୍ଟିରୁ ଚାକିରି ନିହାତି କାମ୍ୟ। ଏ ଚାକିରି ହାତଛଡ଼ା କରିବା ଉଚିତ ନୁହେଁ।

ତା'ପରେ ମୁଁ ଏକ ଦୀର୍ଘ ପତ୍ର ଦେଇ ଦେବୀକୁ ଜଣାଇ ଦେଇଥିଲି ଯେ ମୁଁ ଏ ଚାକିରି ଗ୍ରହଣ କରୁନାହିଁ। କାରଣ ବି.ଏ. ପରୀକ୍ଷା ଆଉ ଗୋଟିଏ ମାସ। ପରୀକ୍ଷା ଦେଇ

ଦେଲେ ତାକୁ ପାଇବାର ଯୋଗ୍ୟତା ଆସିବ ଆଉ ଜୀବନର ଲକ୍ଷ୍ୟ ଅନେକ ପରିମାଣରେ ସାଧିତ ହେବ।

ମୁଁ ଜାଣେ ଏସବୁ ବାଜେ କଥା। ଦେବୀକୁ ଛାଡ଼ି ମୁଁ ଯେ ଚାକିରି କରିବାକୁ ଯାଉନାହିଁ ଏଇଟା ହିଁ ଏକମାତ୍ର ସତ୍ୟ ନୁହେଁ। ଆହୁରି ବି ଗୋଟିଏ କାରଣ ଅଛି।

ସତକୁ ସତ ପନ୍ଦର ତାରିଖ ବିତିଗଲା। ଗଦାଧର ବସନ୍ତ ମୋତେ ଏଣୁତେଣୁ ଯାଚ୍ଛାତା କହିଲେ। ମୁଁ କେବଳ ନୀରବରେ ସହିଲି ଏବଂ ବି.ଏ.ପରୀକ୍ଷା ପାଇଁ ରାତି ଦିନ ଏକାକାର କରି ଲାଗିଗଲି।

ମୋର ଫିଲୋସଫି ନଥିଲା କିମ୍ବା ମୁଁ କେବେ ଦର୍ଶନ ପଢ଼ିନି। ମୁଁ ଗୂଢ଼ତତ୍ତ୍ୱ ବିଷୟରେ କେବେ ଭାବେନା। ମୋ ପାଖରେ ଅନୁଭବ ହିଁ ସବୁ କିଛି।

ମୁଁ ଫୁଟବଲ ପଡ଼ିଆକୁ ଯାଏ, ଗୋଓଲ ବୋଲି ଚିତ୍କାର କରେ। ସିନେମା ହଲରେ ପଶେ। ଗୀତ ଓ ନାଚ ସହ ଜୋତା ଠକ୍ ଠକ୍ କରେ। ସାଙ୍ଗମାନଙ୍କ ସାଙ୍ଗରେ ସାଇକେଲରେ ସହର ପରିକ୍ରମା କରେ। ପରିଚିତ ଅପରିଚିତ ଝିଅଙ୍କୁ ଦେଖିଲେ ଉତ୍‌ଫୁଲ୍ଲ ହୁଏ। ଦେବୀକୁ ସ୍ୱପ୍ନ ଦେଖେ। ତାରୁଣ୍ୟ ମୋତେ ଆକର୍ଷଣ କରେ, ସୌନ୍ଦର୍ଯ୍ୟ ମୁଗ୍ଧ କରେ।

କିନ୍ତୁ ଦିନେ ସବୁ ସାଧାରଣତ୍ୱକୁ ଡେଇଁ ମୋ ଭିତରେ ଏକ ଅସାଧାରଣତ୍ୱର ପ୍ରତିଷ୍ଠା ହେଲା। ମୋ ଭିତରେ ଅନୁଭବ କଲି କାହାର ସଚକିତ ଉପସ୍ଥିତି। ମୋତେ ମନେହେଲା ଦିନରାତି କାହାର କଳା ଛାଇ ଯେପରି ମୋ ପଛେ ପଛେ ଘୂରିବୁଲୁଛି। ମୁଁ ବୁଝିପାରିଲି କୌଣସି ଏକ ଦୂର ସ୍ଥାନକୁ ପଳାଇ ନ ଗଲେ ଯେପରି ମୋର ରକ୍ଷା ନାହିଁ। କିନ୍ତୁ ଦେବୀର ବଳୟ ପାରିହେବା ଯେ ଭୀଷଣ ମୁସ୍କିଲ। ତଥାପି ମୁଁ ସେକ୍ରେଟାରୀ ପାଇଁ ଭୋଟ ନ ପାଇ ନିଶ୍ଚିନ୍ତ ହେଲି। ଏକାଦିକ୍ରମେ ଦୁଇଟି ଚାକିରି ଛାଡ଼ି ଯେପରି ବଞ୍ଚିଲି। ମୋତେ ମନେହେଲା କ୍ରମେ ମୋତେ ସବୁ ଛାଡ଼ିବାକୁ ହେବ।

ବି. ଏ. ପରୀକ୍ଷା ଆସିଗଲା। ପ୍ରସ୍ତୁତ ହେବାକୁ ଲାଗିଲି। ପରିବାରର ଦୁର୍ଦ୍ଦଶା କଥା ବେଶୀ ମନେ ପଡ଼ିଲା। ଦୁଇଟି ଚାକିରି ଛାଡ଼ିବାର ଗ୍ଲାନି ନେଇ ପରୀକ୍ଷା ହଲରେ ବସିଲି।

ପରୀକ୍ଷା ହଲରେ ସବୁ ପରିଚିତ ବନ୍ଧୁ ଓ ପରିଚିତ ଅଧ୍ୟାପକ। ମୋ ହାତରେ ଆଗରୁ ସବୁ ଅନୁମାନ କରିବାର ଓ ଉତ୍ତର ଜାଣିଥିବା ପ୍ରଶ୍ନ କାଗଜ। ଫ୍ୟାନ୍‌ର ମୃଦୁ ଗୁଞ୍ଜନ। ଅଧ୍ୟାପକମାନଙ୍କ ଜୋତାର ମଚ୍ ମଚ୍ ଶବ୍ଦ ଆଉ ଖାତାର ଏକ ପ୍ରକାର ଫଡ଼୍ ଫଡ଼୍ ଆଓ୍ୱାଜ। ମୁଁ କେମିତି ତନ୍ଦ୍ରାଚ୍ଛନ୍ନ ହୋଇଗଲି। ମୋର କଲମ ବନ୍ଦ ହୋଇଗଲା। କିପରି ଏକ ଜଡ଼ତା ମୁଁ ଖୁବ୍ ଭିତରୁ ଅନୁଭବ କଲି। ବେଶ୍ ଅନେକ ସମୟ ପାଇଁ ସ୍ଥାଣୁ ହୋଇଗଲି। ମୋ ଭିତରୁ ଏକାଦିକ୍ରମେ ସେଇ ଏକ ପ୍ରକାର ପ୍ରଶ୍ନ ଉଠି ଆସିଲା– ଏ ସବୁର ମାନେ କ'ଣ? ମୁଁ କ'ଣ ଏମାନଙ୍କ ମଧ୍ୟରୁ ଜଣେ? ମୋର କ'ଣ ନିଜସ୍ୱ

କିଛି ବିଶେଷ ସତ୍ତା ନାହିଁ? ମୁଁ କ'ଣ ସମସ୍ତଙ୍କ ପରି ସେଇ ବହିରୁ ମୁଖସ୍ଥ ଏକପ୍ରକାର ଶବ୍ଦଗୁଡ଼ା ଲେଖିଯିବି? ମୋର କ'ଣ କିଛି ସ୍ୱାଧୀନ ବୋଧ ନାହିଁ।

ଅନେକ ମୁହୂର୍ତ୍ତର ଶୂନ୍ୟସ୍ଥାନ ପାରି ହୋଇ ଶେଷରେ ଧଳା ଖାତାଟା ଅଧ୍ୟାପକଙ୍କଠାରେ ଜମା ହୋଇ ମୁକ୍ତ ବାୟୁମଣ୍ଡଳକୁ ବାହାରି ଆସିଲି। ବାହାରେ ଆସି ଅନୁଭବ କଲି ଗୋଟିଏ ମୁହୂର୍ତ୍ତର ଖେୟାଲରେ ଯେପରି ନରହତ୍ୟା କରି ପକାଇଛି। ହୁଏତ ସେଥିପାଇଁ ମୋତେ କେହି ବି ହତ୍ୟା କରିପାରେ, ଭୀଷଣ ଶାସ୍ତି ଦେଇପାରେ। ଦେବୀ ଆଗରେ କିପରି ଯାଇ ମୁହଁ ଦେଖାଇବି।

ଦେବୀ ଆଗରେ ଅପରାଧୀ ପରି ଛିଡ଼ାହେଲି। ସେଦିନ ଦେବୀ ଆସିଥିଲା ମୋ ପାଖକୁ। ପଚାରିଲା–

–କ'ଣ ହେଲା?

–ନା, ଭଲ ହୋଇଛି।

–ତୁମ ମୁହଁ ଦେଖି ଜମା ଜଣାଯାଉନାହିଁ।

ତା'ପରେ ମୁଁ ମୋର ସବୁ ଅନୁଭୂତି ତା' ପାଖରେ ବର୍ଣ୍ଣନା କରିଥିଲି। ସେ ମୋତେ ଆଶ୍ୱାସ ଦେଇଥିଲା– ଭୟ କର ନାହିଁ, ଆଉ ଥରେ ପରୀକ୍ଷା ଦିଅ।

ମୁଁ କହିଲି– ଦେବୀ, ମୁଁ ଜାଣେନି କେମିତି ଏକ ଖେୟାଲରେ ଚାକିରି ସବୁ ପାଇ ଛାଡୁଛି। ମୋତେ ଭୟ ହେଉଛି କେବେ ତୋତେ ଛାଡ଼ିଦେବି ନାହିଁ ତ?

ଦେବୀ ହସିଲା– ତାହେଲେ ମୁଁ ବଞ୍ଚିଯାଆନ୍ତି।

–ତୁ ବଞ୍ଚିଯାଆନ୍ତୁ?

–ହଁ, ନୂଆ କରି ଜୀବନ ଆରମ୍ଭ କରନ୍ତି।

–ମୋତେ ଭୁଲି ପାରିବୁ?

–କାହିଁକି? ମୁଁ କ'ଣ ସତରେ ପ୍ରେମ କରୁଛି ବୋଲି ଭାବିଗଲଣି କି?

–ମୁଁ ନୀରବ ହେଲି।

ଅନେକ ସମୟ ପରେ କହିଲି– ଦେବୀ, ମୋତେ କାହିଁକି କେଜାଣି ଖୁବ୍ ଭୟ ଲାଗୁଛି। ମୁଁ ବଡ଼ କ୍ଳାନ୍ତ। ମୋର ଆଶ୍ରୟ ଦରକାର। ତୁ ତ ଜାଣୁ ମୁଁ କେତେ ଅନିୟମିତ ଥିଲି। କେବଳ ତୋରି ପାଇଁ ମୁଁ ନିୟମିତ ହେବା ଅଭ୍ୟାସ କରୁଛି। ତୁ ତ ଜାଣୁ, ମୋତେ କେହି ଭଲ ପାଆନ୍ତି ନାହିଁ। ସମସ୍ତେ ଗୋଇଠା ମାରନ୍ତି।

ବିକ୍ଷିପ୍ତ ଭାବରେ ଏଇ କେତୋଟି ଧାଡ଼ି ଉଚ୍ଚାରଣ କରି ଆଖି ବନ୍ଦକଲି। ଆଖିରେ ମୋର ପାଣି ଭର୍ତ୍ତି ହୋଇଗଲା।

ଦେବୀ ମୋ ଆଖିରୁ ପାଣି ପୋଛିଦେଲା। ତା' ଶାଢ଼ି କାନିରେ ମୋ ମୁହଁ ପୋଛିଦେଲା।

ମୋତେ ମନେହେଲା ଯେପରି ମୋର ଦୁର୍ଦ୍ଦଶାକୁ ପୋଛି ନେଇଗଲା ସେ।

କିଛି ସମୟ ପରେ କହିଲା–

–ଦେଖ, ତୁମେ କାହିଁକି ଏମିତି ହେଉଛ। ମୁଁ ଯେ ଅଛି। ମୋ ଉପରେ କ'ଣ ତୁମର ଆଦୌ ଭରସା ନାହିଁ। ତୁମ ପାଇଁ ମୋର ଅନେକ ସ୍ୱପ୍ନ। ତୁମେ ବଡ଼ ହୁଅ। ବଡ଼ ଲେଖକ ହୁଅ। ସମସ୍ତେ ତୁମର ପ୍ରଶଂସା କରନ୍ତୁ। ସେତେବେଳେ ମୁଁ କେତେ ଆନନ୍ଦ ପାଇବି ଜାଣ? ତୁମେ ଭାଙ୍ଗିପଡ଼ ନାହିଁ। କେହି ତୁମକୁ ଭଲ ନ ପାଇଲେ ବି ମୁଁ ପାଇବି। ସମସ୍ତେ ତୁମକୁ ଗୋଇଠା ମାରିଲେ ବି ମୁଁ ପ୍ରଣାମ କରିବି।

ମୁଁ ଦେବୀର ସେଇ ଦିନର ସେଇ କେତେଟା ମିଠା କଥାକୁ ପୃଥିବୀର ଶ୍ରେଷ୍ଠ ସମ୍ପଦ ମନେକରି ଖୁବ୍ ଗୋପନରେ ସାଇତି ରଖିଛି। ସେଇ କେତେଟା ଶବ୍ଦ ପୃଥିବୀରେ ମୋଠୁ କେହି ଛଡ଼ାଇ ନେଇ ପାରିବ ନାହିଁ। ତା'ପରେ ଦେବୀ ଅବଶ୍ୟ ଅନେକ ଦରଦମିଶା ଶବ୍ଦ ମୋ ପାଖକୁ ପଠାଇଛି। କିନ୍ତୁ ସେଦିନ ସେଇ ମୁହୂର୍ତ୍ତର କେତୋଟି ଆନ୍ତରିକତାପୂର୍ଣ୍ଣ ଶବ୍ଦ ମୋ ଜୀବନକୁ ନିୟନ୍ତ୍ରିତ କରି ଦେଇଥିଲା। ମୁଁ ପୁଣି ଭୁଲିଗଲି ପରିବାରର ଦୁର୍ଦ୍ଦଶା। ଘରୁ ଆସିଲା ବେଳେ ସବୁଥର ଗୋଟିଏ ଭଙ୍ଗୀରେ ଛିଡ଼ା ହୋଇଥିବା ସ୍ପନ୍ଦନହୀନ ଧଳା ମାତୃମୂର୍ତ୍ତି। ମୋର ପରୀକ୍ଷାରେ ଅକୃତକାର୍ଯ୍ୟତା। ନିଜକୁ ପୁଣି ଦେବୀ ପାଇଁ, ଦେବୀର ଯୋଗ୍ୟ କରି ଗଢ଼ିବା ପାଇଁ ଲାଗିଗଲି। ଖୁବ୍ ନିୟମିତ ହେଲି। ମନ ଭିତରେ ସାହସ ସଞ୍ଚୟ କରିବାକୁ ଲାଗିଲି। ଜୀବନ ଯୁଦ୍ଧରେ ମୋତେ ବଞ୍ଚି ରହିବାକୁ ପଡ଼ିବ। ଆଉ କିଛି ନଥାଉ, ଦେବୀର ଶୁଭେଚ୍ଛା ତ ଅଛି।

କିନ୍ତୁ ଏଇସବୁ ଘଟଣାକୁ ନେଇ ଉପନ୍ୟାସ ଲେଖିଥିଲେ ଚମତ୍‌କାର ହୁଅନ୍ତା। ମୋ ଦ୍ୱାରା ବୋଧହୁଏ ଉପନ୍ୟାସ ଲେଖା ହୋଇ ପାରିବ ନାହିଁ। କାରଣ ଉପନ୍ୟାସରେ ବୋଧହୁଏ କିଛି ନାଟକୀୟ ଘଟଣା ଓ ନାଟକୀୟ ଚରିତ୍ର ଦେବାକୁ ହୁଏ। ଯଦିବା ମୋର ଘଟଣା ଖୁବ୍ ନାଟକୀୟ ତଥାପି ସତ୍ୟ ଘଟଣାକୁ ନେଇ ଉପନ୍ୟାସ ଲେଖିବାକୁ କେମିତି ଏକ ପ୍ରକାର ଲାଗୁଛି। ଦେବୀ କ'ଣ ଭାବିବ?

ନା, ଉପନ୍ୟାସ ଅନ୍ୟ କୌଣସି ପ୍ରକାରେ ଆରମ୍ଭ କରିବି।

## (ଛ)

ଜୁନ୍ ୨୫ ଶୁକ୍ରବାର।

ଏଇ ଦିନଟା ମୋ ଜୀବନରେ ନ ଆସନ୍ତା କି! ମୁଁ ବଞ୍ଚିଯାଆନ୍ତି। ଦେବୀ ମୋତେ ଭୀଷଣ ଭଲ ପାଉଥିଲା ମୁଁ ଜାଣେ। କିନ୍ତୁ ସେଇ ଦିନରୁ ସେ ଅସମ୍ଭବ ବଦଳିଗଲା। ମୋତେ କ୍ରମେ ଦୂରକୁ ଘୁଞ୍ଚାଇ ଦେଲା। ଦେବୀ ଅଶୋକବନର ସୀତା ହୋଇଗଲା। ମୁଁ ଏବେ ଘରେ ବସି ଦେବୀକୁ ସ୍ୱପ୍ନ ଦେଖେ ଚିଠି ଲେଖେ ସ୍ୱପ୍ନ ଦେଖେ ଚିଠି ଲେଖେ। ଥରେ ଥରେ ଦେଖିବାକୁ ଯାଏ। କଳ୍ପନା କରେ ଦେବୀ ଯେପରି କହୁଛି– ଏପରି ପଗଡ଼ି

ଖସେଇ ପକାଇ ଚାହଁନାହିଁ। ମୁଁ ଏଇଠି ତୁମରି ଅପେକ୍ଷାରେ ଅଛି। ମୁଁ ଏଇ ହାତ ବଢ଼ାଇଲି। ତୁମେ ମୋ ହାତ ଧରି ଉପରକୁ ଉଠିଆସ। ମୁଁ ଉଠି ପାରେନା କି ସେ ସତରେ ହାତ ବଢ଼ାଏନା। ମୋତେ ଦେଖି ଲୁଚିଯାଏ, ମୁହଁରେ ଏପରି ଭାବ ପ୍ରକାଶ କରେ ଯେପରି ସେ ମୋତେ ଚିହ୍ନେ ନାହିଁ। ମୁଁ ଜାଣେ ପୃଥିବୀରେ ଜଣେ ମାତ୍ର ମୋତେ ଚିହ୍ନିଥିଲା, ସେ ଦେବୀ। ଅଥଚ ମୁଁ ବି ତାକୁ ଚିହ୍ନିପାରେନା।

ଏବେ ମୁଁ ଏଇ କଥାକୁ ନେଇ ଦିନରାତି ଭାବେ କିପରି ଉପନ୍ୟାସ ଲେଖିବି। ଉପନ୍ୟାସ ତ ଲେଖି ପାରେନା। ମୋର ଚାରିପଟରୁ ମାଡ଼ିଆସେ ଅସଂଖ୍ୟ ସ୍ୱପ୍ନ ଏବଂ ସ୍ୱପ୍ନ। ଲକ୍ଷ ଲକ୍ଷ ଦେବୀ ମୋତେ ଚାରିପଟରୁ ଘେରି ଆସନ୍ତି। ମୁଁ ଚିତ୍କାର କରେ। କ୍ଷଣିକ ପାଇଁ ହିତାହିତ ଭୁଲି ପାଗଳ ହୋଇଯାଏ। କିନ୍ତୁ ଜୁନ୍ ୨୫ର ସ୍ମୃତି ଲିଭାଇ ପାରେନା।

ସେଇ ଜୁନ୍ ୨୫ ଶୁକ୍ରବାର। ମୁଁ ଦେବୀ ଘରକୁ ମଝିରେ ମଝିରେ ଯାଉଥିଲି। ସେଦିନ ନ ଯାଇଥିଲେ ମୋ ଜୀବନରେ ଏ ପ୍ରକାର ପରିବର୍ତ୍ତନ ଆସନ୍ତା ନାହିଁ।

ସବୁଦିନ ପରି ଦେବୀ ଆସି ଛିଡ଼ାହେଲା। ହସିଲା। ତା'ର ଗାଲ ଦେଖି ଶର୍ମିଳା ଟାଗୋର କଥା କହିଲି। ଆହୁରି ହସିଲା। ଦେବୀ ଖୁସି ହେଲେ ତା'ର ବେଣୀଟାକୁ ସାମ୍ନା ଆଡ଼କୁ ଆଣି ଖୋଲେ ପୁଣି ବାନ୍ଧେ। ସେ ବେଣୀ ଖୋଲିଲା ଓ ବାନ୍ଧିଲା। ମୁଁ ତାକୁ ଅପଲକ ଆଖିରେ ଚାହିଁ ରହିଲି। ମୁଁ ଯଦି ସବୁବେଳେ ଏମିତି ଦେଖୁଥାନ୍ତି।

ମୁଁ କହିଲି– ଦେବୀ, ତୁ ମୋର ସବୁବେଳେ ଦର୍କାର। ତୋତେ ନ ପାଇଲେ ମୁଁ ମରିଯିବି।

–ଜାଣିଛ ମୋ ଅପାକୁ ?

–ହଁ।

–ସେ ନା ତା' ଟିଉସନ ମାଷ୍ଟରକୁ ଭଲପାଉଥିଲା।

–ଆଚ୍ଛା !

–ତା' ସାଥିରେ ପଳେଇ ଯିବ ବୋଲି ବସିଥିଲା।

–ପଳେଇ ଗଲାନାହିଁ କାହିଁକି ?

–ତା' ଚିଠି ବାପା ଦେଖି ପକାଇଲେ।

–ତା'ପରେ।

–ତା' ପରେ ବହୁତ ମାଡ଼ ଖାଇଲା। ବାପା ତାକୁ ମାରି ମାରି ବେହୋସ କରି ପକାଇଲେ।

–ତୋତେ ଭୟ ଲାଗେନି ?

–ମୋତେ ସତରେ ବହୁତ ଭୟ ଲାଗେ। କିନ୍ତୁ ମୁଁ ଜାଣେ ମୁଁ ତ ତୁମକୁ ପ୍ରେମ କରେନାହିଁ।

—ତା'ହେଲେ ?

—ଏମିତି ଭଲ ଲଗେ।

—ଦେବୀ, ତୋ କାନେ କାନେ ଗୋଟିଏ କଥା କହିବି।

—କ'ଣ ?

—ତୁ ମୁଁ ବାହାହେବା।

—ଭାତ ରାନ୍ଧିବା।

—ଭାତ ଖାଇବା।

—ଶୋଇବା।

—ତା' ପରେ ?

—ହେତ୍ ପୁଣି ସେଇ ବଦମାସି।

ମୁଁ କିନ୍ତୁ ଛାଡ଼ିଲି ନାହିଁ। ମନଭରି ଚୁମା ଖାଇଲି। ତା'ର ବେକ ତଳେ ମୁଣ୍ଡ ରଖିଲି। ଛାତିରେ ମୁଣ୍ଡ ରଖିଲି।

—କ'ଣ ହେଉଛି ଏ ସବୁ ?

ମୁଁ ଚମକିପଡ଼ି ପଛକୁ ଚାହିଁ ଦେଖିଲି ଦେବୀର ବୋଉ। ତା'ପରେ ସିଧା ପଶିଆସି ଦେବୀକୁ ଘୋଷାରି ନେଇଗଲେ ବାହାରକୁ। ମୁଁ ନିର୍ବାକ୍ ମଲା ମଣିଷ ପାଲଟି ଯାଇଥାଏଁ ସେତେବେଳେ।

ଦୁଇ ମିନିଟ ପରେ ପାଖ ଘରୁ ଦେବୀର ବାପା ମୋତେ ଡାକିଲେ। ମୁଁ ଅଧୋବଦନରେ ଚୋର ପରି ତାଙ୍କ ଆଗରେ ଯାଇ ଛିଡ଼ା ହେଲି।

ସେ କହିଲେ– ତୁମକୁ ଲଜ୍ଜା ଲାଗୁନାହିଁ।

—ମୁଁ ଦେବୀକୁ ବାହା ହେବାକୁ ଚାହେଁ।

—ବାହାହେବାକୁ ଚାହଁ ?

—ହଁ ଆଜ୍ଞା, ଦେବୀ ମୋତେ ଭଲପାଏ।

—ଆଉ ତୁମେ ?

—ମୁଁ ବି ଦେବୀକୁ ଭଲପାଏ।

—ଚୁପ୍‌କର। ଦେବୀ ତୁମକୁ କେବେ ଭଲପାଏ ନାହିଁ।

—ଆପଣ ବିଶ୍ୱାସ କରନ୍ତୁ, ଦେବୀ ମୋତେ ବହୁତ ଭଲପାଏ।

—ତୁମର କେତେ ବ୍ୟାଙ୍କ ବାଲାନ୍‌ସ ଅଛି ?

—ମୁଁ ମୁହଁ ତଳକୁ ପୋତିଲି।

—ତୁମର କେତେ ଏକର ଜମି ଅଛି ?

—ଚୁପ୍ ରହିଲି।

–ଯିଏ ନିଜେ ଗଣ୍ଡେ ଖାଇବାକୁ ପାଏ ନାହିଁ ସେ ପୁଣି ଭଲପାଇ ଅନ୍ୟକୁ ବାହାହେବ।

–ମୁଁ ଦେବୀକୁ ଭଲପାଏ– ମୁଁ ଅପେକ୍ଷାକୃତ ଜୋର ଦେଇ କହିଲି।

–ତୁମର ଗୋଟେ ଭିକାରିକୁ ଭଲ ପାଇବା ଉଚିତ ଥିଲା।

–ଆପଣ ଶାଳୀନତା ରକ୍ଷା କରି କଥା କୁହନ୍ତୁ।

–ଗୋଟିଏ ଭିକାରି ସହ କିପରି କଥା କହିବାକୁ ହେବ ମୁଁ ଜାଣେ।

–ତା'ପରେ ମୋର ମୁଣ୍ଡକୁ ଧୀରେ ଧୀରେ ରକ୍ତ ଚଢ଼ିବାକୁ ଆରମ୍ଭ କଲା। ମୁଁ ଖୁବ୍ ଜୋର ଦେଇ ପ୍ରାଣପଣେ ଚିତ୍କାର କରି କହିଲି–

–ଆପଣ ମୋ ସାମ୍ନାରେ ଦେବୀକୁ ପଚାରନ୍ତୁ, ସେ ମୋତେ ଭଲପାଏ କି ନା।

ତା'ର ବାପା କିଛି ସମୟ ନୀରବ ରହିଲେ। ତା'ପରେ ଦେବୀ ଆଡ଼େ ଚାହିଁ ଭୀଷଣ ନରମ ଗଳାରେ ଆରମ୍ଭ କଲେ– କହ ମା', ତୁ ଏ ଘରେ ଜନ୍ମିଛୁ, ବଡ଼ ହୋଇଛୁ। ମୋରି କୋଳରେ କେତେଥର ହଗିଛୁ। ତୋ ମା' ତୋତେ ବଢ଼େଇଛି, କେତେ ଦୁଃଖ ସହିଛି। ଦୀର୍ଘ ଅଠର ଉଣେଇଶ ବର୍ଷର ବାପା ମା' ଭାଇ ଭଉଣୀର ସ୍ନେହ କ'ଣ ତୋ ପାଇଁ ତୁଚ୍ଛ? ମୁଁ ତୋତେ ଭଲକରି ଚିହ୍ନେ ମା! ତୁ କହ କହ୍ନେଇକୁ ତୁ ଆମ ଅନିଚ୍ଛାସତ୍ତ୍ୱେ ବାହାହେବାକୁ ଚାହୁଁ?

ମୁଁ ଛାତି ଭିତରର ସ୍ପନ୍ଦନ ଗଣି ଚାଲିଥିଲି। ଏଇଟା ଚରମ ପରୀକ୍ଷା। ଏଇଠି ତୋ ଭାଗ୍ୟ ନିର୍ଣ୍ଣୟ ହୋଇଯିବ। ମୁଁ ଦେବୀକୁ ଚାହିଁଲି। ଦେବୀ ନୀରବ ରହିଲା। ଆଉଥରେ ତା' ବାପା ସାଉଁଳେଇ ପଚାରିଲେ– କହ ମା, ତୁ ଆମ ଇଚ୍ଛା ବିରୁଦ୍ଧରେ ବାହାହେବାକୁ ଚାହୁଁ?

ଦେବୀ ପୂର୍ବପରି ନୀରବ ରହିଲା।

ମୁଁ ଅନୁଭବ କଲି ମୋ ମୁଣ୍ଡ ଭିତରେ ଅନେକ ରେଳ ଇଞ୍ଜିନର ବାଷ୍ପ ଜମା ହୋଇ ସାରିଲାଣି। ମୁଁ ପାରିଲି ନାହିଁ। ସ୍ଥାନ-କାଳ-ପାତ୍ର ଭୁଲି ଦେବୀର ସେଇ ନରମ ଗାଲରେ ଠାସ୍‌କରି ଚଟକଣା ଗୋଟିଏ ମାରିଛି ଏବଂ କେହି କିଛି କହିବା ପୂର୍ବରୁ ନିଷ୍କ୍ରାନ୍ତ ହୋଇଗଲି।

ତା'ପରେ ରାସ୍ତାରେ ମନେ ମନେ ଉଚ୍ଚାରଣ କଲି– ଦେବୀ, ତୋ ସହ ମୋର ଜନ୍ମଜନ୍ମାନ୍ତର ପାଇଁ ବିଚ୍ଛେଦ ହୋଇଗଲା।

ମୁଁ ଯଦି ଉପନ୍ୟାସ ଜୁନ ୨୫ ତାରିଖ ଠାରୁ ଆରମ୍ଭ କରନ୍ତି ତା'ହେଲେ ପୃଥିବୀର ଶ୍ରେଷ୍ଠ ଔପନ୍ୟାସିକ ହୋଇସାରନ୍ତିଣି। ଏବେ ଆଉ ସେ କଥା ଲେଖି ଯନ୍ତ୍ରଣା ପାଇ ଲାଭ କ'ଣ?

## (ଙ)

ଦେବୀକୁ ଶେଷ ଚିଠି ଲେଖିଲି-

ଦେବୀ ମୋର, ମୁଁ ଜାଣେ ତୋତେ ଦିନେ ନ ଦେଖିଲେ ମୋର ସକାଳ ସଞ୍ଜ ଦିନ ରାତିର ହିସାବ ଗୋଳମାଳ ହୋଇଯାଏ, କାରଣ ମୁଁ ତୋତେ ସାଙ୍ଘାତିକ ଭଲ ପାଇଥିଲି। ପୃଥିବୀରେ ଅନେକ ପ୍ରେମିକ ଅଛନ୍ତି କିନ୍ତୁ ମୋ ଭଳି ପ୍ରେମିକ ନଥିବେ। କିନ୍ତୁ ହେଲା କ'ଣ ? ତୋର ଗୋଟିଏ ହଁ'ରେ ମୋ ପୃଥିବୀର ଗତି ନିୟନ୍ତ୍ରିତ ହୋଇଯାଇଥାନ୍ତା ଅଥଚ ତୁ ନୀରବ ରହିଲୁ। ମୁଁ ଆଜିଠାରୁ ଶପଥ କରୁଛି ତୋ ପାଇଁ ଭାବପ୍ରବଣ ହେବି ନାହିଁ। ତୋ ପାଇଁ ସ୍ୱର୍ଗରେ ଘର ତିଆରି କରିବି ନାହିଁ। ତୋ ପାଇଁ ପାରିଜାତ ଫୁଲ ଆଣିବାକୁ ଜୀବନକୁ ନେଇ ଖେଳିବି ନାହିଁ। ତୋ ପାଇଁ ସବୁ ସକାଳ ସଞ୍ଜ ମଧ୍ୟାହ୍ନ ମଧ୍ୟରାତ୍ରରେ ଅପେକ୍ଷା କରିବି ନାହିଁ। ତୋ ପାଇଁ ଆତ୍ମହତ୍ୟା ଚିନ୍ତା କରିବି ନାହିଁ। ତୋ ପାଇଁ ନକ୍ଷତ୍ରକୁ ଚାହିଁ କାନ୍ଦିବି ନାହିଁ। ତୋତେ ମୋ ଦିନ ରାତିର ଅସଂଖ୍ୟ ମୁହୂର୍ତ୍ତ ନଷ୍ଟ କରି ଚିଠି ଲେଖିବି ନାହିଁ। ତୋ ବେକରେ ମୁହଁ ରଖି ମୋ ଆଖି ନାଲି କରିବି ନାହିଁ। ତୋ ଓଠରେ ଚୁମା ଖାଇ ପରୀ ରାଜ୍ୟକୁ ଉଡ଼ିଯିବି ନାହିଁ। ତୋ ଛାତିରେ ହାତ ରଖି ସମୟର ଶବ୍ଦ ଶୁଣିବି ନାହିଁ। ତୋତେ ଗୋଟିଏ ଲାଜମିଶା ଚୁମା ଦେବାକୁ ଅନୁରୋଧ କରିବି ନାହିଁ। ତୋ ଆଖିର ଲୁଣିଆ ଲୁହକୁ ପାଟିରେ ଶୋଷି ନେବି ନାହିଁ। ଝଡ଼ ହେଲେ ଝର୍କା ଖୋଲି ତୋତେ ମୋ ଛାତିରେ ଜାକି ଧରି ବାହାରକୁ ଚାହିଁବି ନାହିଁ। ତୋର ଚୁଡ଼ିଭରା ନରମ ହାତକୁ ନେଇ ମୁଁ ପାଗଳ ହୋଇ ଉଠିବି ନାହିଁ। ତୋ କୋଳରେ ମୁଣ୍ଡ ରଖି ଶୋଇ ମୁଁ ତୋର ଗର୍ଭାଶୟରେ ଜନ୍ମ ନେବା କଥା ଭାବିବି ନାହିଁ। ତୋ ଛାତିରେ ମୁଣ୍ଡ ରଖି ମୁଁ ଆଉ ପୃଥିବୀକୁ ଭୁଲିଯିବାର ଚେଷ୍ଟା କରିବି ନାହିଁ।

ତୁ ଏକ ଅମାବାସ୍ୟା ରାତିରେ ମୋ ପାଖକୁ ଆସିଥିଲୁ। ମୋର ଅନିୟମିତ ଅନ୍ଧକାର ଦୁନିଆକୁ ବିଜୁଳି ଆଲୋକରେ ଉଦ୍‌ଭାସିତ କରି ମେଘର ଗର୍ଜନ ମୋ ପାଇଁ ଛାଡ଼ି ତୁ ହଜିଗଲୁ। ଦେବୀ, ମୋ ପାଇଁ ତୋର ଆବଶ୍ୟକତା ମେଣ୍ଟି ଯାଇଛି।

ଏ ଚିଠିଟା ଲେଖିଲି ତୋ ସହ ମୋର ଜନ୍ମ ଜନ୍ମାନ୍ତର ବିଚ୍ଛେଦ ପାଇଁ।

ଆହୁରି ଅନେକ କ'ଣ ସବୁ ଲେଖିଥିଲି ମୋର ମନେ ନାହିଁ ଏବଂ ସେଇ ଚିଠି ପରେ ଦେବୀର ମଧ୍ୟ ଗୋଟିଏ ଚିଠି ପାଇଲି। ଦେବୀ ଚିଠିର ଶେଷ ଧାଡ଼ିରେ ଲେଖିଥିଲା ଯେ ସେ ଚାହିଁଲେ ମୋତେ ଭୁଲିଯାଇ ପାରିବ।

ଚିଠିଟା ପଢ଼ିଲି। ଥରେ ନୁହେଁ ଅନେକ ଥର। ମୋ ଆଖି ଆଗରେ ସବୁ ପରିଷ୍କାର ହୋଇଗଲା। ମୋତେ ମନେହେଲା ଜୀବନର ଅନ୍ୟ ନାମ ଶୂନ୍ୟତା। ମୁଁ କାହିଁକି

ଭଲ ମଣିଷ ହେବି ? ମୁଁ କାହିଁକି ନାରୀ ଭିତରେ ଦେବୀତ୍ୱ ଆରୋପ କରିବି ! ମୁଁ ଆଉ କିଛି ନୁହେଁ, କେବଳ ଗୋଟିଏ ଯନ୍ତ୍ରଣାର ପିଣ୍ଡ।

ମୁଁ ଭୀଷଣ ଅନିୟମିତ ହେଲି। ରାତି ଅଧରେ ଏଣେ ତେଣେ ଘୂରି ବୁଲିଲି। ଭାଙ୍ଗ ଗଞ୍ଜେଇ ଟାବଲେଟ ମଦ ବିଡ଼ି ସବୁ ପିଇଲି। ବର୍ଷା ଦିନେ ଯେପରି ବର୍ଷା ଜଳ ପାଇ ଶୁଷ୍କ ପଡ଼ିଆରେ ଘାସ କଅଁଳେ ମୋର ଆଖିର ଜଳରେ ମୋର ଶୁଷ୍କ ଗାଲରେ ଜଙ୍ଗଲ ବଢ଼ିଗଲା। ମୁଁ ପରିଷ୍କାର କଲି ନାହିଁ। ବସନ୍ତ ଗଦାଧର ମୋତେ ଅନେକ ଉପଦେଶ ଦେଲେ। ଦେବୀକୁ ଭୁଲିଯିବା ପାଇଁ ପ୍ରବର୍ତ୍ତାଇଲେ।

ଶୁଭେନ୍ଦୁ ବାବୁ ଦିନେ ମୋତେ ଏକ ନିରୋଳା ସ୍ଥାନକୁ ନେଇ ଯାଇ ଆରମ୍ଭ କଲେ– ତୁମେ ଜାଣ କନ୍ହେଇ, ମୁଁ ଗୋଟିଏ ଝିଅକୁ ଭଲପାଉଥିଲି।

–ଜାଣେ।

–ଝିଅଟି ଶେଷରେ ମୋତେ କ'ଣ କହିଲା ଜାଣ ?

–କ'ଣ ?

–ମୁଁ ତୁମକୁ ଭାଇ ପରି ଭଲପାଏ। ମୁଁ ଯେତେବେଳେ ମୋର ଆତ୍ମାର କେତେଟା ଅକୁହା ଲାଇନ୍ କହି ପକାଇଲି ସେ କ'ଣ କହିଲା ଜାଣ ? କହିଲା– ଆପଣ ମନେ ମନେ ରାଷ୍ଟ୍ରପତି ହୋଇଗଲେଣି।

ମୋର ଆଉ ଧୈର୍ଯ୍ୟ ନଥିଲା। ସେଦିନ ତା'ର ବେକ ନ ଚିପି କ୍ଷମା କରି ଦେଇଥିଲି। କିନ୍ତୁ ପରେ ସେଇ ଗୋଟିଏ ଧାଡ଼ି ମୋର ରକ୍ତରେ ବିଷ ଚହଟେଇ ଦେଲା। ଦିନେ ଏକ ଦାଢୁଆ ଛୁରୀ ଧରି ଏକ ଅନ୍ଧକାର ରାସ୍ତାରେ ତାକୁହିଁ ଅପେକ୍ଷା କରିଥିଲି। ଥାଙ୍କ୍ ଗଡ୍, ସେଦିନ ସେ ସେ- ରାସ୍ତାରେ ଆସିନଥିଲା।

ତା'ପରେ ତୁମେ ଜାଣ, ମୁଁ ଆଉ କୌଣସି ନାରୀକୁ ବିବାହ କରିବି ନାହିଁ, ପ୍ରମିଜ୍ କରିଛି। ଯେଉଁ ନାରୀ ମୋତେ ଅବମାନନା କରିପାରେ ସେ ନାରୀକୁ ବେଦୀରେ ବସି ବିବାହ କରିବା ଅବାନ୍ତର। ନାରୀ କେବଳ ପ୍ରଜନନର ଯନ୍ତ୍ର ଆଉ ନାରୀ ଦ୍ୱାରା କେବଳ ଜୈବ ତୃପ୍ତି ଘଟେ।

–କିନ୍ତୁ ମୁଁ ଦେବୀକୁ ମଣିଷ ରୂପରେ ଦେଖୁ ନଥିଲି।

–ସେଇଠି ତୁମେ ବିରାଟ ଭୁଲ କରିଛ କନ୍ହେଇ। ମୁଁ ବି ସେଇ ଝିଅଟିକୁ ନେଇ ପୂଜା କରୁଥିଲି। ସ୍ତବ କରୁଥିଲ। କିନ୍ତୁ ଆଜି ମୋ ପାଇଁ ଖୁବ୍ ଶସ୍ତା ବେଶ୍ୟା ବରଂ ଗ୍ରହଣୀୟ, କିନ୍ତୁ ସେ ନୁହେଁ।

ମୁଁ କେମିତି ବୁଝାଇଥାନ୍ତି ଯେ ଅନ୍ୟମାନଙ୍କ ପାଇଁ ଅନ୍ୟମାନଙ୍କ ପ୍ରେମିକା ଯେମିତି, ମୋ ପାଇଁ ଆଦୌ ସେମିତି ନୁହେଁ। ମୁଁ କିଛି ଦିନ ଏଇଠି ରହିଲେ ଲୋକେ ବ୍ୟର୍ଥ

ପ୍ରେମିକ କହିବା ଆରମ୍ଭ କରିଦେବେ। ନହେଲେ ବି କିପରି ଉପଦେଶ ଦେଇ ଦେଇ ପାଗଳ କରିଦେବେ। ମୋର ମନେହେଲା ପଳାଇ ଗଲେ ମୋ ଭିତରେ ଭୟାତୁର ସତ୍ତାର ମୃତ୍ୟୁ ହୋଇଯିବ।

ଦିନେ ଖୁବ୍ ରାତିରୁ ଉଠିଲି। ପକେଟରେ ଦଶଟଙ୍କିଆ ନୋଟ ଖଣ୍ଡେ। ଷ୍ଟେସନ ଗଲି। କାଉଣ୍ଟରରେ ଭିଡ଼ ଦେଖି ଟିକେଟ କାଟିଲି ନାହିଁ। ସିଧା ଯାଇ ଟ୍ରେନରେ ଚଢ଼ିଗଲି। ଉପରେ ଜଣେ କିଏ ଶୋଇଥିଲା। ଉଠିଗଲା ଭୋର ହୋଇଯାଇଛି ବୋଲି। ମୁଁ ତା ଜାଗାରେ ଶୋଇଗଲି। ପୁଣି ଯେତେବେଳେ ସଞ୍ଜ ହେଲା ମୁଁ ଅନ୍ୟ ଏକ ପ୍ରଦେଶରେ। ଗୋଟିଏ ଷ୍ଟେସନ ଆସିଲା। ନାଁଟା ଜଣାଶୁଣା ମନେ ହେଲା। ଓହ୍ଲାଇ ପଡ଼ିଲି। ସିମେଣ୍ଟ ବେଞ୍ଚରେ ବସିଲି। ମୋ ଚାରିପଟେ ଅନ୍ୟ ଭାଷାଭାଷୀ ଲୋକ। କ୍ରମେ ଟ୍ରେନଟା ବି ମୋତେ ଛାଡ଼ି ଚାଲିଗଲା। ମନେ ହେଲା ଏ ପୃଥିବୀରେ ସାଙ୍ଘାତିକ ନିଃସଙ୍ଗ ମୁଁ। ଟିକଟ କଲେକ୍ଟରର ଗେଟ୍‌ରୁ ଘୁଞ୍ଚିଯିବା ପରେ ସହର ଭିତରକୁ ଗଲି। ଖଣ୍ଡେ ପାଉଁରୁଟି ଆଉ ମାଟି ପାତ୍ରରେ ଚା ପିଇ ଷ୍ଟେସନକୁ ଫେରି ଆସିଲି। ଇଂରାଜୀ ଖବରକାଗଜ ଖଣ୍ଡେ କିଣିଲି। ସିମେଣ୍ଟ ବେଞ୍ଚ ଉପରେ ମେଲାଇ ଚିତ୍ ହୋଇ ଶୋଇପଡ଼ିଲି। ଯଦି ଦେବୀ ଜାଣନ୍ତା ତାରି ପାଇଁ ମୁଁ ଏଠାକୁ, ଏକ ଅନ୍ୟ ପ୍ରଦେଶର ଅପରିଚିତ ସହରକୁ ପଳେଇ ଆଣିଛି ତାହେଲେ ସେ କ'ଣ କରନ୍ତା ?

—ତୁମେ ସତରେ ମୋ ଉପରେ ରାଗି ଚାଲି ଆସିଲ ?

—ନ ଆସିବା ଛଡ଼ା ଆଉ ଉପାୟ ନଥିଲା।

—ତୁମେ ରାଗିଛ।

—ହଁ।

—ଗୋଟିଏ କଥା କହିବି ?

—ମୁଁ ଶୁଣିବି ନାହିଁ।

—ଥରେ ଶୁଣ ?

—ନା, ତୋ ସହ କଥା କହିବାକୁ ଚାହେଁନା।

—ମୁଁ ଥରେ କହିଥିଲି ନା ତୁମେ ରାଗିଗଲେ ମୁଁ ଭୁଲାଇଦେବି।

—ମୁଁ ଜାଣେନି।

—ମୁଁ ଗୋଟିଏ କଥା କହିବି ?

—କହିଲି ନା, ମୁଁ ଶୁଣିବି ନାହିଁ।

—ତୁମେ ଟିକେ ମୋତେ ସେଦିନ ପରି ଆଦର କଲ।

—କେଉଁ ଦିନ ?

—ଯେଉଁଦିନ ମୁଁ ତୁମ କଥା ଶୁଣି କାନ୍ଦି ପକାଇଥିଲି।

—ମୁଁ ସବୁ ଭୁଲିଯାଇଛି।

—ତୁମେ କହୁଥିଲ ପରା ତୁମେ ଶୋଇବ ଆଉ ମୁଁ ତୁମ ପିଠିରେ ହାତ ବୁଲାଇ ଦେବି।

ତା'ପରେ ମୋ ଆଖି ଆଗରେ ସବୁ ଦୃଶ୍ୟ ଲୁହରେ ଝାପ୍‌ସା ହୋଇଯାଇଥିଲା।

ଘରେ ମା' କ'ଣ ଜାଣିଛି ମୁଁ ଗୋଟିଏ ମୁହୂର୍ତ୍ତର ଖେୟାଲରେ ଏଠାକୁ ପଳାଇ ଆସିଛି ବୋଲି। ଯଦି ସେ ଆସି ଦେଖନ୍ତା ତା'ର ଏକମାତ୍ର ଆଶା ଭରସା ନୟନର ପିତୁଳା ଗୋଟିଏ ଝିଅ ଉପରେ ଅଭିମାନ କରି ଏଇଠି ଏଇ ଅପରିଚିତ ସ୍ଥାନରେ ଶୋଇଛି, ତା'ହେଲେ ?

—ତୁ ଯଦି ଏମିତି ହେଉ ଘର ସଂସାର ଚଳିବ କେମିତି ?

—ମୁଁ ଜାଣେ ନାହିଁ।

—ତୁ ଏସବୁ ପାଗଳାମି ଛାଡ଼। ଦେଖ୍, ଘରେ ତୋରି ମୁହଁକୁ ଚାହିଁ କେତେଟା ପ୍ରାଣୀ ଭୋକ ଉପାସରେ ଦିନ ଗଣୁଛନ୍ତି।

—ମନେକର ମୁଁ ମରିଯାଇଛି।

—ନା ନା, ତୋର ଘର ସଂସାର ଚଳାଇବା ଦର୍କାର ନାହିଁ। ସୁଖରେ ବଞ୍ଚିରହ।

ମୋର କୋହ ଦ୍ୱିଗୁଣ ବଢ଼ିଗଲା। ଚିତ୍କାର କରି କାନ୍ଦିବାକୁ ଇଚ୍ଛା ହେଉଥିଲା। ଅନ୍ଧକାର ଆଡ଼େ ମୁହଁ କଲି। କେବଳ ବିଛା ହୋଇଥିବା ଖବରକାଗଜ ଉପରେ ଠପ୍ ଠପ୍ ଶବ୍ଦ ହେବାକୁ ଲାଗିଲା।

ସକାଳେ ଉଠିଲି। ସହରକୁ ଚାହିଁଲି। ଅପେକ୍ଷାକୃତ ଛୋଟ ସହର। ଧୀରେ ଧୀରେ ସହର ଭିତରକୁ ଆଗେଇଲି। ଏଇଠି ସମସ୍ତେ ଅପରିଚିତ। କେହି ଦେଖା ହେଲା ମାତ୍ରେ ହ୍ୟାଲୋ, କେବେ, ନମସ୍କାର ଇତ୍ୟାଦି କହୁନାହାନ୍ତି। ମନେ ପଡ଼େ ମୁଁ ଦିନେ ଗୋଟିଏ ସ୍ୱପ୍ନ ଦେଖିଥିଲି। ଧୀରେ ଧୀରେ ମୁଁ କ୍ରମେ ଗୋଟିଏ ବେଙ୍ଗ ଭଳି ଏକ ପରିତ୍ୟକ୍ତ କୂଅରେ ମରିଯାଇଛି। ହଠାତ୍ ସ୍ୱପ୍ନଟା ସେତେବେଳେ ସତ୍ୟ ବୋଲି ମନେ ହେଲା। ମୁଁ ଯଦି ଏଇଠି ଗୋଟିଏ ଲରୀ ଧକ୍‌କାରେ ମରିଯାଏ ତା'ହେଲେ ଏ ପ୍ରଦେଶରେ ଖବରକାଗଜରେ ସମ୍ବାଦ ବି ବାହାରିବ ନାହିଁ। ଏଠାରୁ ଅନେକ ଦୂର କେଉଁ ଏକ ସହରର ବାଲକୋନିରେ ମୁହଁ ଶୁଖେଇ ବସିଥିବା ଝିଅଟି କ'ଣ ଜାଣିବ କେବଳ ତାରି ପାଇଁ ଜଣେ ଇଚ୍ଛାକରି ଖୁବ୍ ଦୂରରେ ଲରୀର ଚକ ତଳେ ଆଶ୍ରୟ ନେଇଛି। ମୁଁ ଜାଣେ ଭଗବାନ ବି ବିଦଗ୍ଧ ବିସ୍ମୟରେ ଚାହିଁ ରହିବେ ମୋତେ।

—ଆପଣ ଏଠି ?

ମୁଁ ପରିଚିତ ଓଡ଼ିଆ ଭାଷା ଶୁଣି ଚାହିଁଲି ଭଦ୍ରଲୋକଙ୍କୁ।

–ମୋ ନାଁ ଗିରୀଶ ମିଶ୍ର। ମୁଁ ଆପଣଙ୍କୁ ଚିହ୍ନେ।

–ମୋତେ ?

–ଆପଣଙ୍କ ନାଁ କହ୍ନେଇ ନା ?

–ମୋତେ କିପରି ଚିହ୍ନିଲେ ?

–କଟକ ସାହିତ୍ୟ ସଭାରେ ଆପଣଙ୍କୁ ଦେଖିଥିଲି।

–ଆପଣଙ୍କ ଘର ?

–କଟକ। ଆପଣ କ'ଣ ଏଠାରେ ଚାକିରି କରନ୍ତି ?

–ନା, ମାନେ ଏଇ ବୁଲିବାକୁ ଆସିଛି।

–କେଉଁଠି ଅଛନ୍ତି ?

ତା'ପରେ ଧୀରେ ଧୀରେ କଥା ପ୍ରସଙ୍ଗରେ ସତ ଓ ମିଛ ମିଶାଇ ଗିରୀଶ ମିଶ୍ରଙ୍କୁ ସବୁ କଥା କହି ଦେଇଥିଲି। ସେଦିନ ଠାରୁ ତାଙ୍କ ବସାରେ ମୋତେ ସ୍ଥାନ ମିଳିଗଲା। କ୍ୱାଟର୍ସ। ଭଦ୍ରଲୋକ କେନ୍ଦ୍ର ସରକାରଙ୍କ ପଦସ୍ଥ କର୍ମଚାରୀ।

ଦୁଇଦିନ ପରେ ଗଦାଧରକୁ ଚିଠି ଲେଖିଲି, ମୋର ସେଠାକାର ଠିକଣା ଦେଇ। ସବୁ କଥା ଅଳ୍ପ ବହୁତ ଲେଖିଲି। ଲେଖିଦେଲି ସପ୍ତାହେ ମଧ୍ୟରେ ଏଠାରୁ ଅନ୍ୟ ଏକ ସ୍ଥାନକୁ ଚାଲିଯିବି।

ହଠାତ୍ ଷଷ୍ଠ ଦିନ ସକାଳୁ କବାଟରେ ଖଡ଼ଖଡ଼ ଶୁଣି କବାଟ ଫିଟାଇ ଦେଇ ଦେଖିଲି ଗଦାଧର। ରେଳଯାତ୍ରାର କ୍ଳାନ୍ତି ମୁହଁରେ ଆଖିରେ। ମୁଣ୍ଡରେ ଅସମ୍ଭବ କୋଇଲା ଗୁଣ୍ଡ। ରାତି ଅନିଦ୍ରା ରହି ଝର୍କା ଦେଇ ବାହାରର ସୌନ୍ଦର୍ଯ୍ୟ ଦେଖୁଥିଲା ବୋଧହୁଏ।

–କିହୋ, ତୁମେ ବି ମୋ ପରି ସନ୍ନ୍ୟାସୀ ହୋଇଗଲ କି ? ଠିକ୍ ଅଛି, ଏକାକୀ ନିରୁଦ୍ଦେଶ ହେବାକୁ ଭଲ ଲାଗୁନଥିଲା। ଚାଲ ଆଜି ଯାତ୍ରାରମ୍ଭ ହେବ।

ଗଦାଧର ଅନେକ ସମୟ ନୀରବ ରହିଲା। କିଛି କହି ପାରିଲା ନାହିଁ। ତା'ପରେ ଯାହା କହିଲା ମୁଁ ପ୍ରଥମେ ବିଶ୍ୱାସ କରି ପାରିଲି ନାହିଁ।

କିନ୍ତୁ କିଛି ସମୟ ପରେ ସିଧା ଷ୍ଟେସନ। ଗିରୀଶଙ୍କୁ ମାମୁଲି ଧନ୍ୟବାଦ ଓ ଶୁଭେଚ୍ଛା ଜଣାଇ ଗଦାଧରକୁ ନେଇ ଟ୍ରେନରେ ବସିଗଲି।

ତା'ପରେ ଗଦାଧରର ଦୀର୍ଘ ଭାଷଣ:

କହ୍ନେଇ, ମୁଁ ତୁମକୁ ଚିହ୍ନେ, ଭଲକରି ବୁଝେ। ତୁମେ ଯଦି ମୋ ଉପରେ ରାଗ ତା'ହେଲେ ମୋର କିଛି କ୍ଷତି ହେବନି। ତୁମକୁ ଏତିକି କଥା କହିବି– ଏସବୁ ପାଇଁ ଦାୟୀ ତୁମେ। ମୁଁ ଜାଣେ ପୃଥିବୀରେ ଅନେକ ଲେଖକ ଅଛନ୍ତି। ଅନେକ ଭାବପ୍ରବଣ

ମଣିଷ ଜନ୍ମ ହୋଇଥାନ୍ତି। କିନ୍ତୁ କେହି ଭାବପ୍ରବଣତା ଦେଖାଇ ନିଜର ଜୀବନ ସଙ୍ଗେ ସଙ୍ଗେ ଅନ୍ୟର ଜୀବନକୁ ନଷ୍ଟକରି ପକାନ୍ତି। ପୃଥିବୀରେ ଅନେକ ପ୍ରେମିକ ଅଛନ୍ତି। ପ୍ରେମ ପାଇଁ ଆତ୍ମତ୍ୟାଗ ଶବ୍ଦଟା ଠିକ୍ ମଳତ୍ୟାଗ ଶବ୍ଦ ଭଳି ମନେହୁଏ– ଏକଥା ତୁମ ପରି କେହି ଜଣେ ଲେଖକ କହିଥିଲେ। ଏ ଭାବପ୍ରବଣତା ତୁମକୁ ଶେଷ କରିଦେବ। ତା' ଅପେକ୍ଷା ବରଂ ପୃଥିବୀକୁ ଚାହଁ। ତୁମେ ସମାଜ ଭିତରେ ଅଛ। ଏତେ ଅସାମାଜିକ ହେଲେ ଚଳିବା କେମିତି ? ମୋର କ'ଣ ଅସାମାଜିକ ହେବାକୁ ଲୋଭ ନାହିଁ ? ମୁଁ କ'ଣ ଚାହେଁନି କୌଣସି ସୁନ୍ଦରୀ ଝିଅକୁ ରାସ୍ତା ଉପରେ କୁଣ୍ଢେଇ ପକାଇବାକୁ। ସମସ୍ତଙ୍କ ଅନ୍ତଃସ୍ଥଳରେ ଅସାମାଜିକ ହେବାର ଦୁର୍ନିବାର ଲୋଭ ରହିଛି। ତଥାପି ସମସ୍ତେ ସମ୍ମତ ମଣିଷ ପରି ବଞ୍ଚୁଛନ୍ତି। ଗୋଟିଏ ସାଧାରଣ ଝିଅ ପାଇଁ କେହି ନିଜକୁ ନିଜର ଦୁର୍ଦ୍ଦଶାଗ୍ରସ୍ତ ପରିବାକୁ ଉତ୍ସର୍ଗ କରିନାହାନ୍ତି। ତୁମେଇ କୁହ ତୁମ ଉପରେ ନିର୍ଭର କରୁଥିବା ଗୋଟିଏ ଦରିଦ୍ର ପରିବାର କ'ଣ କ୍ଷତି କଲା ? ସେ ପରିବାରର ସୁଖ ଶାନ୍ତି ତୁମର ଅଜବ ଭାବପ୍ରବଣତା ପାଇଁ ନଷ୍ଟ କରିବାର ଅଧିକାର ତୁମର ନାହିଁ। ମୁଁ ଜାଣେ ଦେବୀ ଅନ୍ୟକୁ ବାହାହେଲେ ଶାନ୍ତିରେ ରହିବ। ମାସେ ଦି ମାସ ତୁମକୁ ମନେ ରଖିପାରେ। ତୁମେ ପରା ଲେଖକ। ତୁମେ ସବୁ ବୁଝ। ନାରୀ ସମ୍ଭୋଗ ଚାହେଁ, ନାରୀ କେବଳ ପ୍ରାଚୁର୍ଯ୍ୟ ଚାହେଁ, ସୁଖ ଚାହେଁ। ସୂକ୍ଷ୍ମ ଭାବପ୍ରବଣତା କେବଳ ସୁଖ ପାଇଁ ସେମାନେ ଦେଖନ୍ତି। ତୁମେ ଆଜି ତାରି ପାଇଁ ନିରୁଦ୍ଦେଶ ହୋଇଯାଇଛ। ସେ ଆଉ ଗୋଟିଏ ସପ୍ତାହ ପରେ ଅନ୍ୟର ଜୀବନ ସାଥୀ ହୋଇ ଆରାମରେ କାର୍‌ରେ ଘୂରି ବୁଲିବ। ତୁମର କ'ଣ ଲାଭ ହେବ ? ତୁମେ ସବୁବେଳେ ତୁମର ଶାନ୍ତି କଥା ଭାବିଛ, ତୁମର ସୁଖ କଥା ଭାବିଛ। ଦେବୀକୁ ଦିନ ରାତି କାମନା କରିଛ। ତାରି ପାଇଁ ଦୁର୍ଦ୍ଦଶାଗ୍ରସ୍ତ ଦରିଦ୍ର ପରିବାରର ସାମାଜିକ ଦାୟିତ୍ୱ ଥିବା ସତ୍ତ୍ୱେ ଚାକିରି ପାଇ ବି ଛାଡ଼ିଦେଇଛ। ଆଜି ଯାହା ପରିସ୍ଥିତି ଆସି ପହଞ୍ଚିଛି କେବଳ ତୁମ ପାଇଁ।

–ଗଦାଧର, ତୁମେ ମୋତେ ବୁଝିବାକୁ ଚେଷ୍ଟା କର। ମୁଁ ଦେବୀ ପାଇଁ ଚାକିରି ଛାଡ଼ି ନାହିଁ, ମୁଁ ଦେବୀ ପାଇଁ ବି.ଏ. ପରୀକ୍ଷାରେ ବ୍ଲାଙ୍କ ପେପର ଦେଇ ନାହିଁ, ମୁଁ ଦେବୀ ପାଇଁ ନିରୁଦ୍ଦେଶ ହୋଇଯିବି ବୋଲି ମନସ୍ଥ କରିନାହିଁ। ଆହୁରି କିଛି ଅନ୍ୟ କାରଣ ଅଛି। ମୁଁ ବୁଝାଇ ପାରିବି ନାହିଁ। ମୁଁ କିଛି କହି ପାରିବି ନାହିଁ। ଦୟାକରି ଚୁପ୍ କର।

–ତୁମେ ଜାଣିଛ ଯେଉଁଦିନ ତୁମ ମା'ଙ୍କ ଅବସ୍ଥା ସାଙ୍ଘାତିକ ବୋଲି ଘରୁ ଟେଲିଗ୍ରାମ ଆସିଥିଲା, ସେଦିନ ଶୁଣିଲି ଦେବୀର ବାହାଘର ଠିକ୍ ହୋଇଯାଇଛି। ସେତେବେଳେ କହି ନଥିଲି। ଆଜି କହୁଛି– ଦେବୀର ବାହାଘର ସେଇ ଇଞ୍ଜିନିୟର ସଙ୍ଗେ ପଚିଶ ତାରିଖରେ ହେବ।

—ପୁଣି ସେଇ ପଚିଶ। ମୁଁ ପାଗଳ ହୋଇଯିବି ଗଦାଧର। ଦେବୀ ବାହା ହେଉ, ମୁଁ ମନା କରିବି ନାହିଁ, କିନ୍ତୁ ସେ ଯେପରି ପଚିଶ ତାରିଖରେ ବାହା ନ ହେଉ। ଆଚ୍ଛା, ଦେବୀ ରାଜି ଅଛି।

—ମୁଁ ଜାଣେନି।

—ଗଦାଧର, ମା' ଭଲ ହୋଇଯିବ ତ?

—ତୁମେ ସିଧା ଘରକୁ ଯାଅ। ଆଗ ମା'ଙ୍କ ଦେହ ଭଲ ହେଉ, ଆଜି ତ ଦଶ ତାରିଖ। ପଚିଶ ତାରିଖ ଡେରି ଅଛି। ପରେ ବିଚାର କରାଯିବ।

ମୁଁ ଯାଇ ପକା ଗାଁରେ ପହଞ୍ଚିଲି। ମୋତେ ଅପରାଧୀ ଭଳି ମନେ ହେଉଥିଲା। ଦ୍ୱିପ୍ରହର। ରାସ୍ତା ଉପରେ ଗୋଟିଏ କୁକୁର ଶୋଇ ଶୋଇ ଧକେଇ ହେଉଥିଲା। ମୋତେ ଦେଖି ନିର୍ଭୟରେ ପାଖକୁ ଆସି ଶୁଙ୍ଘିଲା। ଗୋରୁ ଗୋଟିଏ ରାସ୍ତା ଉପରେ ବନ୍ଧା ହୋଇଥିଲା। ରାସ୍ତା ଉପର ଦେଇ ଦଉଡ଼ିଟା ପଡ଼ିଥିଲା। ମୁଁ ଡେଇଁଗଲି। ଗାଁ ମୁଣ୍ଡରେ ଚଶମା ପିନ୍ଧା ବୁଢ଼ା ଡାକ୍ତରକୁ ଦେଖିଲି। ମୋ ଭିତରଟା କେମିତି ଚିତ୍କାର କରି ଉଠିଲା। ଟେଲିଗ୍ରାମ ଇତ୍ୟାଦି ମିଛ ହୋଇଥାନ୍ତ କି! ମୁଁ ଆହୁରି ଅନେକ ଦିନ ସୁଖରେ ବଞ୍ଚିଥାନ୍ତି। ମୁଁ ଯିବାମାତ୍ରେ ମା' ଘରୁ ବାହାରି ଆସି କହନ୍ତା–

—କିରେ, ଘର କଥା ମନେପଡୁନଥିଲା, ଟେଲିଗ୍ରାମ ଯାଇ ନଥିଲେ କ'ଣ ଆସି ନଥାନ୍ତୁ।

ମୁଁ କହନ୍ତି– ତୁମେ ବୁଝିବନି, ମୋର କେତେ କାମ। ପରୀକ୍ଷା ଆଣିଗଲାଣି। କେତେ ବ୍ୟସ୍ତତା ପଢ଼ାପଢ଼ି ପାଇଁ।

—ତୋର ପଢ଼ାପଢ଼ି କେବେ ସରିବ ଆଉ ତୁ ଏ ବଂଶ ପୋଷିବୁ।

—ଚାକିରି ମିଳିଲେ ସିନା। ଆଜିକାଲି ଚାକିରି ମିଳିବା ତ ସହଜ ନୁହେଁ– ମୋ ପାଟିରୁ ନିର୍ଘାତ ମିଛ ଝରନ୍ତା।

—ଏଥର ଖଣ୍ଡେ ଚାକିରି କର। ଦିନକାଳ ତ ଦେଖୁଛୁ। ତୋ ବାପା ମଲା ପରେ ମୋର ତ ସାତ ଅବସ୍ଥା ହେଲାଣି। ଋଣ କେତେ ହେଲାଣି ତା'ର ଖବର ରଖିଛୁ।

—ମୁଁ ଖବର ରଖିଲେ ବି କ'ଣ କରିବି। ମୁଁ ଆଉ ନିଶ୍ଚେୟ ହୋଇ ବସିନାହିଁ।

—ଏପରି ଫାଙ୍କି ମାରି ଚଳିଲେ ହେବନି। ଚାକିରି କର। ଘର ସଂସାରରେ ମନ ଦେ। ତୋର ହାତକୁ ଦି' ହାତ ହେବା ଦେଖିଲେ ସିନା ଶାନ୍ତିରେ ମରି ପାରିବି।

ଏସବୁ ମୁଁ ରାସ୍ତାରେ ଚାଲୁଚାଲୁ ସ୍ୱପ୍ନରେ ଦେଖିଥିଲି। ଘରେ ପହଞ୍ଚି ଦେଖିଲି ଭିନ୍ନ ପ୍ରକାର। ସେଇ ବାପାଙ୍କ ମଲା ବେଳର ସବୁ ଦୃଶ୍ୟ। ମୁଣ୍ଡ ପାଖ ଝର୍କାରେ ପାଣିଗ୍ଲାସ, ରଙ୍ଗିନ ଔଷଧ। ଖଟରେ ଧଳା ଚାଦର ତଳେ ଶୀର୍ଣ୍ଣ ଦେହ।

ମୁଁ ନିଷ୍ପଳକ ଆଖିରେ ଦେଖିଲି। ମୋର ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ସବୁ ଗୋଳମାଳ ହୋଇଗଲା। ମୁଁ କେବଳ କହିଲି– ମା, ମୁଁ ଆସିଛି।

ଟିକିଏ ଆଖିପତା ଖୋଲିଲା। ଓଠରେ ହସ ଚହଟିଲା ବୋଧହୁଏ, ତା'ପରେ ପୁଣି ଆଖିପତା ବନ୍ଦ ହୋଇଗଲା।

ମୁଁ ଡାକ୍ତର ପାଖକୁ ଛୁଟିଲି। ଗଦାଧର ଦେଇଥିବା ପଚାଶ ଟଙ୍କା ଡାକ୍ତରକୁ ଧରେଇ ଦେଇ ତାଙ୍କୁ ସଙ୍ଗରେ ନେଇ ଆସିଲି। ଡାକ୍ତର ଷ୍ଟେଥିସ୍ କୋପ ପକାଇ କ'ଣ କହିଲେ ପ୍ରଥମେ ବୁଝିପାରିଲି ନାହିଁ। କିନ୍ତୁ କେବଳ ଏତିକି ବୁଝିଲି କୁଆଡ଼େ ଶ୍ୱାସନଳୀରେ ବି ଶ୍ଲେଷ୍ମା ଜମିଗଲାଣି। ଅବଶ୍ୟ ମୋତେ ଡାକି ନେଇ ଡାକ୍ତର ଏକାନ୍ତ ଗୋପନରେ ଆଶ୍ୱାସନା ଦେଇ କହିଲେ, ଚିନ୍ତା କର ନାହିଁ। ଆଜି ରାତି ବାରଟା ପାରି ହୋଇଗଲେ ଭୟ କରିବାର କିଛି ନାହିଁ। ତଥାପି ଭଗବାନଙ୍କୁ ଡାକ।

ମୁଁ ମନ୍ଦିର ଗଲି। ମନ୍ଦିରରେ ଭଗବାନଙ୍କୁ କ'ଣ ପ୍ରାର୍ଥନା କରିଥିଲି ମନେ ନାହିଁ। କେବଳ ଫେରିଲା ବେଳେ ଶପଥ କରିଥିଲି ଯଦି ମା' ନ ବଞ୍ଚେ ତାହେଲେ ନିଶ୍ଚୟ ଦେବୀକୁ ଖୁନ୍ କରିବି। ମୁଁ ଜାଣେନି ଏ ଶପଥ ଭିତରେ କେଉଁଠି ଅଦୃଶ୍ୟ କାରଣ ବିଦ୍ୟମାନ ଥିଲା।

ସଂଜ ଆସିଲା। କେମିତି ସମଗ୍ର ଜଗତକୁ ଅନ୍ଧକାର କରି ମୋ ପାଇଁ ଭୀଷଣ ରାତି ମାଡ଼ି ଆସିଲା। ସମସ୍ତଙ୍କ ଆଖି ସେଇ ଅଧାନିଭା ଆଖି ଉପରେ ? ମୁଁ ଜାଣେ ମା'ର ଏ ଦୁର୍ଦ୍ଦଶା କେବଳ ମୋ ପାଇଁ ଏବଂ ସେଥିପାଇଁ ସେଠାରେ ସମସ୍ତେ ମୋତେ ହିଁ ଅଭିଶାପ ଦେବାରେ ବ୍ୟସ୍ତ ଥିଲେ।

ରାତି କ୍ରମେ ଗାଢ଼ ହେଲା। ମୋର ସ୍ୱପ୍ନ ଦୁଃସ୍ୱପ୍ନ ସବୁ ବଢ଼ିଚାଲିଲା। ତାରି ଭିତରେ ସ୍ୱପ୍ନ ଦେଖିଲି, ମା ଭଲ ହୋଇଯାଇଛି। ମୁଁ ଦେବୀକୁ ନେଇ ଆସି ମା'କୁ ପ୍ରଣାମ କରୁଛି। ମା କହୁଛି ତୁ ଏ ସୁନାନାକୀ ବୋହୂଟି କେଉଁଠୁ ଖୋଜି ପାଇଲୁରେ।

ମୁଁ ଦୁଃସ୍ୱପ୍ନ ଦେଖିବାରେ ଲାଗିଲି– ମୁଁ ଚିତ୍କାର କରି ଉଠୁଛି। ମା'ର ଅସାଡ଼ ଦେହଟାକୁ କୋକେଇରେ ବାନ୍ଧିନେଇ ଅନେକଙ୍କ ସହ ଶ୍ମଶାନ ଯାଉଛି। ସବୁଦିନ ପାଇଁ ଶ୍ମଶାନରେ ଜଳେଇ ଦେବା ଆଗରୁ କହୁଛି– ମା, ମୋତେ କ୍ଷମା କର। ମୁଁ ପାପ କରିଛି। ମାତୃତ୍ୱ ତୁମ ପାଖରୁ ନ ଖୋଜି ଗୋଟିଏ ଅବୋଧ କିଶୋରୀ ପାଖରେ ଖୋଜି ମୁଁ ଭୁଲ କରିଛି। ମୁଁ ଆଜିଠୁଁ ସବୁ ନିୟମ ଭାଙ୍ଗିବି। ପୃଥିବୀରେ କିଛି ଲୋକଙ୍କୁ ଖୁନ୍ କରି ଆତ୍ମହତ୍ୟା କରିବି। ତା'ପରେ ସିଧା ଯାଇ ଦେବୀ ଘର ସାମ୍ନାରେ ଏକ ଭୟଙ୍କର ଚେହେରାରେ ଶୁଭେନ୍ଦୁବାବୁଙ୍କ ପରି ହାତରେ ଦାଉଆ ଛୁରୀ ଧରି ଛିଡ଼ା ହୋଇଯାଇଛି।

ବାରଟା ପାରି ହୋଇଗଲା। ମା'ର ଚେତା ଫେରିଲା ନାହିଁ। ମୁଁ ପଥର ପରି ହୋଇଯାଇଥିଲି। ମୁଁ ଜାଣେ ଅସଂଖ୍ୟ ମଶା ମୋତେ କାମୁଡ଼ି ଚାଲିଥିଲେ, ମୁଁ ଅନୁଭବ କରୁଥିଲି, କିନ୍ତୁ ମୋ ଠାରେ କିଛି ପ୍ରତିକ୍ରିୟା ନଥିଲା। କେବଳ ଗଦାଧରର ଉକ୍ତିଗୁଡ଼ା ମୋ ଭିତରେ ଧକ୍‌କା ଖାଉଥିଲା।

କୌଣସି ଏକ ଅସ୍ଫୁଟ ଶବ୍ଦରେ ଚାହିଁ ଦେଖିଲି ମା ଆଖି ଖୋଲି ଏଣେ ତେଣେ ଚାହୁଁଛି। ମୁଁ ମୁହଁ ଉପରକୁ ଝୁଙ୍କିପଡ଼ି କହିଲି– ମା' କ'ଣ ଟିକେ ଭଲ ଲାଗୁଛି। ଏଇ ଔଷଧଟା ଖାଇଦିଅ। ମା ଔଷଧ ଖାଇଥିଲା ଏବଂ ପୁଣି ଅଚେତ ନୁହେଁ ନିଦ୍ରା ଯାଇଥିଲା।

ସେଇଦିନ ରାତି ତିନିଟା ପରେ ମୁଁ ମନେ ମନେ ଶପଥ କରିଥିଲି ମୁଁ ନିଜକୁ ନିଜେ ଗଢ଼ିବି। ଆଠଦିନ ପରେ ଯେତେବେଳେ ମା ଆଂଶିକ ସୁସ୍ଥ ହୋଇଗଲା ମୁଁ ବାହାରିଲି। ଘରୁ ଆସିଲା ବେଳେ କେବେ ମା'ଙ୍କୁ ପ୍ରଣାମ ହୁଏ ନାହିଁ, ସେଦିନ ପ୍ରଥମ ଥର ପାଇଁ ପ୍ରଣାମ କଲି। ଗାଁ ମୁଣ୍ଡରେ ରାସ୍ତା ବାଙ୍କ ନେଲାବେଳେ ପଛକୁ ଫେରି ଚାହିଁଲି, ସେଇ ଗୋଟିଏ ଭଙ୍ଗୀରେ ଛିଡ଼ାହୋଇଥିଲା ଅପେକ୍ଷାକୃତ ଶୀର୍ଣ୍ଣ ମାତୃମୂର୍ତ୍ତି।

ଏଇସବୁ ଘଟଣା ଏବେ ବେଶ୍ ମନେ ପଡ଼େ। ଏ ନିରୋଳା ଜାଗାରେ ବସି ଉପନ୍ୟାସ ଲେଖିବାକୁ ମନ କଲାବେଳେ କିଛି ନୂତନ ଚରିତ୍ର, କିଛି ନୂତନ ଘଟଣା ମନେ ପଡ଼େ ନାହିଁ। କେବଳ ଏଇସବୁ ଦୁର୍ଘଟଣା କଥା, ମୋର ଦୁର୍ଦ୍ଦଶା କଥା ମନେପଡ଼େ।

ଏଇଗୁଡ଼ାକୁ ନେଇ ଯଦି ଉପନ୍ୟାସ ଲେଖି ହୁଅନ୍ତା!

## (୯)

ମୁଁ ସବୁଥର ଗାଁରୁ ଫେରିଲା ବେଳେ ଯେଉଁ ମନ ନେଇ ବସ୍‌ରେ ଚଢ଼େ ସେଦିନ ଆଉ ସେ ମନ ନଥିଲା। ମୋତେ ମନେ ହେଉଥିଲା ମୋର ଯେପରି ରଙ୍ଗିନ ଖୋଳପା କେଉଁଠି ଛାଡ଼ି ଆସିଛି।

ପ୍ରତିଥର ଭାବେ– ଦେବୀ ନିଶ୍ଚୟ ମୋତେ ଅପେକ୍ଷା କରିଥିବ। ମୋର ଘରୁ ଫେରିବାର ଡେରି ହେଲେ ସେ ଶଙ୍କିତ ହୋଇଯାଏ। ମୁଁ ହଠାତ୍ ଯାଇ ରାଜେଶ ଖାନ୍ନା ଭଳି ଏକା ନିଃଶ୍ୱାସରେ ବକିଯିବି– ପାରିଲି ନାହିଁ ଦେବୀ, ତୋ ପାଇଁ ସବୁ ସ୍ୱପ୍ନର ତଣ୍ଟି ଚିପି ବେଦୀରେ ବସିଗଲି। ତୋ ପାଇଁ ସବୁ କାମନାକୁ ସେଇଠି ଆହୁତି ଦେଇ ଅନ୍ୟ ଏକ ଅଜଣା ତରୁଣୀକୁ ନିଜର କରିନେଲି। ଦେବୀ ଠିକ୍ ତାରି ଭଙ୍ଗୀରେ ଦୁଇ ଓଠରେ ଫୁର୍‌ର୍ କରି କହିବ– ପାରିବ ମୋ ବିନା ଆଉ କାହାରିକୁ ବାହାହୋଇ? ମୁଁ ତାକୁ ଟାଣି ଆଣିବି ମୋ ଉପରକୁ ଆଉ ଅନେକ ଦିନର ବାକୀ ରହିଯାଇଥିବା ଜିନିଷ ସବୁ ଚଟାପଟ ଆଦାୟ କରିନେବି।

କିନ୍ତୁ ସେଦିନ ବସ୍‌ରେ ବସି ଭିନ୍ନ ଦୃଶ୍ୟ ଦେଖିଲି– ଦେଖିଲି ଦେବୀର ନାଲି ଶାଢ଼ିରେ ମୋ ନିଃସଙ୍ଗ ଆକାଶର ତାରାଗୁଡ଼ା ଭୀଷଣ ଭାବେ ଝକ୍‌ଝକ୍ ହେଉଛନ୍ତି । ତା'ର ମନରେ ଫୁଟିଥିବା ଫୁଲର ଚିତ୍ର ହାତର ମେହେନ୍ଦୀରେ ଲେଖା ହୋଇଛି । ମୋ ଛାତିର ରକ୍ତ ନେଇ ତା' ମୁଣ୍ଡରେ ସିନ୍ଦୂର କରି ବୋଳା ହୋଇଛି । ଦେବୀ ମୋତେ ଦେଖୁଛି ମନେକରିପାରୁନାହିଁ କେବେ କେଉଁଠି ଦେଖିଛି ବୋଲି ।

ମୁଁ ବସ୍‌ରୁ ସିଧା ଓହ୍ଲାଇ ଗଦାଧର ଘରେ ବସନ୍ତକୁ ବି ଏକ ସଙ୍ଗରେ ଭେଟିଲି । ଦେବୀ ଖବର ଶୁଣି ଖୁସି ହୋଇ ପାରିଲି ନାହିଁ । ତା'ର ବାପାଙ୍କୁ ସେ ରୋକ୍‌ଠୋକ୍ ମନା କରି ଦେଇଛି ସେ ବରକୁ ବାହା ହେବ ନାହିଁ ବୋଲି । ତା' ମା'ଙ୍କୁ କୁଆଡ଼େ କହିଛି– ମା' ରେଡ଼ିମେଡ୍ ଜିନିଷ ଚକ୍ ଚକ୍ କଲେ ମଧ ବେଶୀ ଦିନ ଲାଷ୍ଟିଂ କରେ ନାହିଁ, ତାଠୁଁ ଖରାପ କନା ଆଣି ନିଜ ମେସିନରେ ମନଇଚ୍ଛା ତିଆରି କରିନେଲେ ବେଶ୍ ଭଲ ହୁଏ ।

ଏ କଥା ସହରର ସମସ୍ତଙ୍କ ମୁହଁରେ । ମୋତେ ଅଜସ୍ର ଶୁଭେଚ୍ଛା । ସମ୍ଭାଷଣ । ଦେବୀକୁ ମୁଁ ଠିକ ପ୍ରେମ କରୁଥିଲି । ଦେବୀ ମୋତେ ଜିତାଇ ଦେଇଛି । ମୁଁ ସଚ୍ଚା ପ୍ରେମିକ ।

କିନ୍ତୁ ଏସବୁ ଶୁଣିବାକୁ ଆଉ ବେଳ ନଥିଲା ।

ହଠାତ୍ ତା'ର ଦୁଇ ଦିନ ପରେ ଏମ୍ପ୍ଲୟମେଣ୍ଟ ଏକ୍‌ସଚେଞ୍ଜରେ ଡିଫେନ୍‌ସ ଚାକିରି ପାଇଁ କାର୍ଡ଼ ପାଇଗଲି । ଇଣ୍ଟରଭିୟୁକୁ ଯିବା ପୂର୍ବରୁ ଯା ତା ପାଖକୁ ଦୁଇ ଚାରିଥର ଗଲି ।

ତା'ପରେ ଏଇ ଦୂର ସ୍ଥାନରେ । ଅବଶ୍ୟ ଏଠାକୁ ଆସିଲା ଆଗ ଦିନ ଦେବୀକୁ ଦେଖିଥିଲି ଉପର ବାଲକୋନିରେ । ସ୍ୱପ୍ନ ଦେଖିଥିଲି ସେଇ ସବୁ ଅସାଧରଣ ସ୍ୱପ୍ନ । ସାଇ ପିଲାଙ୍କ ଚାନ୍ଦା ତାଗିଦରେ ମୋର ସେ ସ୍ୱପ୍ନ ବି ଆହତ ହୋଇଯାଇଥିଲା । ଦେବୀର ସହର, ଦେବୀର ପ୍ରଦେଶ ଛାଡ଼ି ଖୁବ୍ ଦୂରରେ ପାହାଡ଼ଘେରା ନିଘଞ୍ଚ ଜଙ୍ଗଲ ମଧରେ ସାପ ଓ ସରୀସୃପ ମଧରେ ଖୁବ୍ ଇଚ୍ଛା ହୁଏ ଉପନ୍ୟାସ ଲେଖିବି । ପ୍ରପେଲାରର ଗର୍ଜ୍ଜନ, ବନ୍ଧୁକର ଆୱାଜ, ମିଲିଟାରୀ ଗାଡ଼ି ଆଉ ଭାରୀ ବୁଟ୍‌ର ଶବ୍ଦ ମଧରେ ଖୁବ୍ ଇଚ୍ଛା ହୁଏ ମୁଁ ସାହିତ୍ୟିକ ହୋଇ ବଞ୍ଚି ରହିବି । ଖାତା ଖୋଲେ, କଲମ ଧରେ । ଉପନ୍ୟାସ ଲେଖିବା କଥା ଭାବେ । ଗୋଟିଏ ଧାଡ଼ି ବି ଲେଖିପାରେନି । ମୋର ଦିଗବିଦିଗ ଏକାକାର କରି ଓହ୍ଲାଇ ଆସେ ସଂଖ୍ୟାତୀତ ସ୍ୱପ୍ନ ଦୁଃସ୍ୱପ୍ନ । ଗୋଟିଏ ଧାଡ଼ି ବି ଲେଖି ପାରେନି । କେବଳ ଦେବୀକୁ ସ୍ୱପ୍ନ ଦେଖେ ଆଉ ସ୍ୱପ୍ନ ଦେଖେ ଉପନ୍ୟାସ ଲେଖିବାର ।

(ଛ)

ଏଠାରେ ସୂର୍ଯ୍ୟ ଉଦୟ ହୁଏ ନୀଳ ପାହାଡ଼ ସେପଟୁ ମୋର ଅନେକ ଦୁଃସ୍ୱପ୍ନ ଉତାରି ନେଇ। ତା'ପରେ କାମ ଆଉ କାମ। ଅନ୍ୟ ପ୍ରଦେଶର ବିଭିନ୍ନ ଲୋକଙ୍କ ସହ କ୍ରମେ ଆତ୍ମା ମିଶାଇ ନେବାର ଚେଷ୍ଟା କରେ ମୁଁ। ସେମାନଙ୍କ ସହ ଖୁବ୍ ବଡ଼ପାଟିରେ ହସେ। ଇଂରାଜୀ ହିନ୍ଦୀ ବଙ୍ଗଳା ପଞ୍ଜାବୀ କହେ। ସେମାନେ ଭାବନ୍ତି ପୃଥିବୀର ସବୁଠାରୁ ସୁଖୀ ମଣିଷ ଯେ। ସେମାନେ ଅଫିସ ଦରମା ପେନାଲଟି ଯୁଦ୍ଧ ବଛା ବିବି ନେଇ ଭାବନ୍ତି, ମୋ ପାଖରେ ପ୍ରକାଶ କରନ୍ତି। କେହି ସୁଖରେ ଅଛି ବୋଲି ମନେହୁଏ ନାହିଁ। ମନେହୁଏ ସାରା ପୃଥିବୀ ଭୀଷଣ ଅସୁସ୍ଥ ହୋଇପଡ଼ିଛି। ସମସ୍ତଙ୍କ ଦେହରେ ଜ୍ୱର। ମୁଁ ବି ଅସୁସ୍ଥ। ମୋ ଦେହରେ ଉତ୍ତାପ ନାହିଁ କିମ୍ୱା ମୁଣ୍ଡ ବିନ୍ଧେ ନାହିଁ। କିନ୍ତୁ ମୁଁ ଜାଣେ ମୋର ମୃତ୍ୟୁ ଆଉ କେତେ ଦିନ ପରେ। ମୋତେ ଯେ କ୍ୟାନ୍‌ସର। ଚେଇଁ ଚେଇଁ ମୁଁ ମୃତ୍ୟୁର ପଦଧ୍ୱନି ଶୁଣେ। ଶଙ୍କିତ ବି ହୁଏ, ଉଲ୍ଲସିତ ବି ହୁଏ।

କ୍ରମେ ସୂର୍ଯ୍ୟ ଅସ୍ତ ହୁଏ। ପୃଥିବୀ ଉପରୁ ସୂର୍ଯ୍ୟର ଶେଷ ଚୁମା ଉଭେଇ ଗଲା ପରେ ପୂର୍ବ ଆକାଶରେ ଖୁବ୍ ସଂଗୋପନରେ ଗୋଟିଏ ନକ୍ଷତ୍ର ଜଳୁଥିବାରୁ ମୁଁ ଦେଖେ। ଅପଲକ ଆଖିରେ ଚାହିଁରହେ ମୁଁ। ତା' ସହ ମୋ ଜୀବନର ସାମଞ୍ଜସ୍ୟ ଅନୁଭବ କରି ତାକୁ ଗେଲ କରିବାକୁ ମନେହୁଏ। ପୁଣି ରାତି ଆସେ। ବିଛଣାରେ ପଡ଼ିରହି ଆଲୁଅ ଲିଭାଇ ମୁଁ ମୋ ଠାରୁ ମୋର ଇଚ୍ଛାର ଦୂରତ୍ୱ ମାପେ। ଚାରିଆଡ଼େ ନିଶୂନ ହୋଇଯାଏ। କେବଳ ମିଲିଟାରୀ ଗାର୍ଡ଼ର ଭାରୀ ବୁଟ୍ ଶବ୍ଦ ମୋତେ ସଚେତନ କରିଦିଏ ସବୁ ସୁଷୁପ୍ତିର ସେପାରେ ପ୍ରତି ମୁହୂର୍ତ୍ତରେ ମହାକାଳ ମାର୍ଚ୍ଚିଂ କରୁଛି ବୋଲି। ତାକୁ ଅତିକ୍ରମ କରିବା ଅସାଧ୍। ସାହିତ୍ୟ ଚିନ୍ତା ମନରେ ଆସେ। ଖୁବ୍ ଦୂରର ଓଡ଼ିଶା, ସେ ଓଡ଼ିଶାର ପ୍ରତ୍ୟେକ ହୃଦୟ ଛୁଆଁ ସହର ଗ୍ରାମ ଅତିଥିପରାୟଣ ମଣିଷ କଥା ମନେ ପଡ଼େ। ଯଦି ସେଇ ସହରକୁ କେବେ ଫେରିଯାଇ ପାରନ୍ତି। ଶୁଭେନ୍ଦୁ ବାବୁଙ୍କ ସହ ସାହିତ୍ୟ ଚର୍ଚ୍ଚା, ବସନ୍ତ ସହ ସାଇକେଲ ପରିକ୍ରମା, ଗଦାଧର ସହ ନାଇଟ୍ ଶୋ' ସିନେମା, ଅନୁ ସହ ମନସ୍ତତ୍ତ୍ୱ ଆଲୋଚନା, ଅସୀମାକୁ ଦୁଇ ଚାରି ବିଧା ଆଉ ଗୋଇଠା, ଆଉ ତଳୁ ରହି ବାଲକୋନିରେ ଛିଡ଼ାହୋଇଥିବା ଦେବୀକୁ ଦେଖି ଅସଂଖ୍ୟ ସ୍ୱପ୍ନ ଆଉ ସ୍ୱପ୍ନ। ସେଇ ମୋର ସ୍ୱପ୍ନର ସହର। ଯେଉଁଠି ସଂବାଳୁଆ ହୋଇ ରାସ୍ତାରେ ରାସ୍ତାରେ ଗୁରୁଣ୍ଡି ବୁଲିଛି, ପ୍ରଜାପତି ହୋଇ ଏ କୁଞ୍ଜରୁ ସେ କୁଞ୍ଜ ଉଡ଼ି ବୁଲିଛି।

ହଠାତ୍ ସମସ୍ତେ ଉଠିବା ପୂର୍ବରୁ ବିଛଣା ଛାଡ଼ି ଉଠିପଡ଼େ। ଶରତ ଆସି ଗଲାଣି ବୋଲି ମନେହୁଏ। ଘାସର ମୁଣ୍ଡରେ ମୁଣ୍ଡରେ ଧଳା ଟୋପି ଉପରେ ଜମି ରହିଥିବା

ଶିଶିର ବିନ୍ଦୁ। କେମିତି ଶୀତ ଶୀତ ଲାଗେ। ଏ ପ୍ରାତଃକାଳ ପୃଥିବୀର ପବିତ୍ରତମ ସମୟ ବୋଲି ମହେହୁଏ। ମନେହୁଏ ଯେପରି ମୁଁ ଭୀଷଣ ପବିତ୍ର ହୋଇଯାଇଛି। ପୃଥିବୀରେ କେହି ବିଛଣା ଛାଡ଼ି ଉଠିବା ପୂର୍ବରୁ ଗୋଟିଏ ନାମ-ନ-ଜଣା ପକ୍ଷୀ ଡେଣା ଫଡ଼୍ ଫଡ଼୍ କରି ଦକ୍ଷିଣ ଦିଗକୁ ଉଡ଼ିଯାଏ। ଦକ୍ଷିଣ ଦିଗ ମୃତ୍ୟୁର ଦିଗ। ହଠାତ୍ ମନେପଡ଼େ କୁନିଅପା କହିଥିଲା– କହ୍ନେଇ, ମୁଁ ଚାହେଁ ତୁମେ ଗୋଟିଏ ବଡ଼ ସାହିତ୍ୟିକ ହୁଅ। ଦେବୀ କହିଥିଲା– ତୁମେ ଯେତେବେଳେ ସବୁଠାରୁ ବଡ଼ ଔପନ୍ୟାସିକ ଗାଳ୍ପିକ ହେବ ସେତେବେଳେ ଯାଇ ମୁଁ ସମ୍ପୂର୍ଣ୍ଣ ରୂପେ ତୁମର ହୋଇଯିବି। ସେତେବେଳେ ମୋତେ ଗୋପୀନାଥ ମହାନ୍ତି ସୁରେନ୍ଦ୍ର ମହାନ୍ତିଙ୍କ ବୟସ କଥା ମନେପଡ଼େ।

ଦୂର କଲେନି ଉପରୁ ଧୂଆଁ ଉଠେ। ପବିତ୍ର ପ୍ରାତଃକାଳକୁ ବିଷଣ୍ଣ କରି ବାୟୁମଣ୍ଡଳରେ ସେ ଧୂଆଁ ସଂଚରିଯାଏ। ଗୃହିଣୀ ହୁଏତ ସ୍ୱାମୀ ବାହୁବନ୍ଧନରୁ ମୁକ୍ତ ହୋଇଛି। ଚୁଲୀରେ କୋଇଲା ଦେଇଛି। ସ୍ୱାମୀକୁ ଖୁଆଇ ସାରି ହାତରେ ଗୋଟିଏ ପଡ଼ିଆ ଧରାଇ ଦେଇ ଦ୍ୱାର ପାଖରେ ଛିଡ଼ାହେବ ତା'ର ପତି ଦେବତା ଅଦୃଶ୍ୟ ହୋଇଗଲା ପର୍ଯ୍ୟନ୍ତ। ପୁଣି ସଞ୍ଜ ହେଲେ ଫେରିବ ଶ୍ରାନ୍ତକ୍ଳାନ୍ତ ହୋଇ। ଦିନ ଶେଷରେ କ୍ଳାନ୍ତ ପକ୍ଷୀ ବସାରେ ବସି ଘୁମୁରି ହେଲାପରି ପୁଣି ସ୍ତ୍ରୀ ସୋହାଗରେ ତା'ର ସାରାଦିନର କ୍ଳାନ୍ତ ପୋଛି ହୋଇଯିବ।

ମୁଁ ପୁଣି ସ୍ୱପ୍ନର ଖସଡ଼ା ଭିତରୁ ବାହାରି ଆସେ–

–ଆଜି ଏତେ ଡେରି ହେଲା କାହିଁକି ?

–ତୁ ବୁଝିବୁନି ମୋର କେତେ କାମ।

–ତୁମେ ଏକା ହିଁ କାମ କର, ଆଉ କେହି କାମ କରନ୍ତି ନାହିଁ।

–କ'ଣ ଖାଇବାକୁ ଅଛି ଆଣିଲୁ।

–ଆଗ ଡ୍ରେସଟା ଉତାର। ଗୋଡ଼ ହାତ ଧୁଅ। ଏତେ ଅସନା!

–ନା, ମୁଁ ଏବେ ଖାଇବି ନାହିଁ। ମୋତେ ବଡ଼ ଶୋଷ।

–ପାଣି ପିଇବ? ସରବତ୍ କରିଦେବି ?

–ଉହୁଁ।

–ତାହେଲେ ?

–ହେଇ୍ ପୁଣି ସେଇଆ। ତୁମର ଏଇଟା ବେମାରି ହୋଇଗଲାଣି।

–ମୋର କ'ଣ ଦୋଷ? ଦୋଷ ତ ସବୁ ୟାର।

ଦେବୀକୁ ନେଇ ସ୍ୱପ୍ନ ଦେଖି ମୁଁ ନର୍କକୁ ଯାଇଛି। ଗୋଟିଏ ପରିବାରକୁ ଦିନ ପରେ ଦିନ ଭୋକରେ ମାରିଛି। ଆଉ ନୁହେଁ।

ଦୂରରେ ସୂର୍ଯୋଦୟ ହୁଏ। ଦୂର ଷ୍ଟେସନର ଉପର ଆକାଶ ରେଳ ଇଞ୍ଜିନ ଧୂଆଁରେ କଳା ହୋଇ ଉଠେ। ତା' ପରେ ଟ୍ରେନର ହୁଇସିଲ ଶୁଭେ। ଛୁକ୍ ଛକ୍ କରି ପୁଣି ଷ୍ଟେସନ ଛାଡ଼ି ଚାଲିଯାଏ। ସେଇ ସହରର କେହି ଖୁବ୍ ପରିଚିତ ମୋ ଆତ୍ମାର ପ୍ରତିବେଶୀ ଏଇ ଟ୍ରେନରେ ଆସିଥାନ୍ତା, କିଏ ମୁଁ ଚିହ୍ନିପାରନ୍ତି ନାହିଁ। ହିନ୍ଦୀରେ କହନ୍ତି ଆପଣ କ'ଣ କହୁଛନ୍ତି ବୁଝିପାରୁନାହିଁ। ଏଠାରେ କେହି ଦାସ ନାହାନ୍ତି। ଆପଣ ଫେରି ଯାଇ ପାରନ୍ତି। ମନେ ମନେ କହନ୍ତି ଶ୍ରୀଯୁକ୍ତ ଦାସଙ୍କର ଅନେକ ଦିନରୁ ମୃତ୍ୟୁ ହୋଇଯାଇଛି।

ଦୂର ଆକାଶ ତଳେ ଗୋଟିଏ ରିକ୍‌ସା ଦେଖାଯାଏ। ରିକ୍‌ସାରେ ଗୋଟିଏ ତରୁଣୀ। ମୋ ଭିତର ଧକ୍ ଧକ୍ କରି ଉଠେ। ଏ ଜଙ୍ଗଲକୁ ଶୁଙ୍ଘି ଶୁଙ୍ଘି ଦେବୀ ଚାଲିଆସିଲା ନାହିଁ ତ। ରିକ୍‌ସା କ୍ରମେ ଆଗେଇ ଆସେ।

—ଦେବୀ ତୁ?

ଦେବୀ ରିକ୍‌ସାରୁ ଓହ୍ଲାଇ ସିଧା ମୋ ପାଦ ଛୁଇଁ ପ୍ରଣାମ କରେ। ମୁଁ ତା' ଚେହେରା ଦେଖି ଆଶ୍ଚର୍ଯ୍ୟ ହୋଇଯାଏ। ଦେହରେ ନାଲି ଶାଢ଼ି ଆଉ ନକ୍ଷତ୍ର ତା' ଉପରେ ଚକ୍‌ଚକ୍ କରେ। ମୁଣ୍ଡରେ ଓଢ଼ଣା ଆଉ ଛୋଟ ଗୋଟିଏ ସିନ୍ଦୂର ଟୋପା।

—ମୋତେ ଏ ଚେହେରା ଦେଖାଇବାକୁ ଚାଲିଆସିଲୁ କାହିଁକି?

—ମୋତେ କ୍ଷମାକର।

—କେବେ ତୋ ବାହାଘର ହେଲା?

—ଶୁକ୍ରବାର ଦିନ।

—ଆଜି ତ ରବିବାର। କେମିତି ଚାଲି ଆସିଲୁ? ମୋର ଆଶୀର୍ବାଦ ନେବା ପାଇଁ?

—ମୋତେ ଅପମାନିତ କର ନାହିଁ।

—କାହା ସହ ହେଲା?

—ସେଇ ଇଞ୍ଜିନିୟର ସହ। ମୋତେ ଜୋର୍ କରି ବାହା କରାଇ ଦିଆଗଲା।

—ଠିକ୍ ଅଛି। ସାଦୀ ମୁବାରକ୍ ହୋ।

—ମୋତେ ବାରମ୍ବାର ଅପମାନିତ କର ନାହିଁ। ମୁଁ କେବଳ ତୁମ ପାଇଁ ପଳେଇ ଆସିଛି।

—ମୋ ପାଇଁ?

—ହଁ, ତୁମେଇ ମୋର ସବୁ କିଛି। ତୁମେ ଯଦି ମୋତେ ଗ୍ରହଣ ନ କରିବ ବୋଲି କହିଦେବ ତାହେଲେ ମୁଁ ଆଉ ଫେରିଯିବି ନାହିଁ।

—ମୋତେ ଆତ୍ମହତ୍ୟାର ଭୟ ଦେଖାଉଛୁ?

–ତୁମେ ବି ତ ଦିନେ ମୋତେ ଭୀଷଣ ଚାହୁଁଥିଲ, ଆତ୍ମହତ୍ୟାର ଭୟ ଦେଖାଉଥିଲ !

–ଦେବୀ ସେଦିନ କ'ଣ ଥିଲା ମୁଁ ଆଜି ଭୁଲିଯାଇଛି। ମୁଁ କେବଳ ଜାଣେ ମୁଁ ମୋ ପାଇଁ ବଞ୍ଚିଛି। ମୋର ଦରିଦ୍ର ପରିବାରର ବିଧବା ମା, ଟିକି ଟିକି ଭାଇ ଭଉଣୀ ପାଇଁ ବଞ୍ଚିଛି। ଆଉ କାହାରି ପାଇଁ ନୁହେଁ।

–ତୁମେ ଭୁଲିଯାଇ ପାରିଛ ସେଦିନର କଥାଗୁଡ଼ା ? ତୁମେ ଦିନେ କହିଥିଲ– ମୁଁ ତୋତେ ସାରା ଜୀବନ ଅପେକ୍ଷା କରିବି। କେବେ ଯଦି ତୁ କାହାରି ଅବୈଧ ସନ୍ତାନକୁ ଦେହରେ ଧରି ମୋର ଦ୍ୱାରସ୍ଥ ହେଉ ସେଦିନ ତୋର ସବୁ ପାପ ପୋଛି ତୋଳି ନେବି। ତୁ ଯଦି ବିଧବା ହୋଇ ଶୂନ୍ୟ ହାତରେ ଛିଡ଼ା ହେଉ ତୋର ସବୁ ଅସହାୟତା ପୋଛି ନିଜର କରିନେବି। ତୁମେଇ ଦିନେ କହିଥିଲ– ତୁ ଯେଉଁଠି ଯେତେବେଳେ ଯେଉଁ ଅବସ୍ଥାରେ ଥିଲେ ମଧ୍ୟ ସବୁଦିନେ ମୋର। କେହି ତୋତେ ମୋ'ଠାରୁ ଛଡ଼େଇ ନେଇ ପାରିବେ ନାହିଁ। ତୁମେଇ ଦିନେ କହିଥିଲ ପୃଥିବୀରେ କାହାରି ତାକତ ନାହିଁ ତୋତେ ମୋଠୁ ଛଡ଼େଇ ନେବ।

–ଚୁପ୍‌କର। ମୁଁ ଜାଣେ ନାହିଁ। ମୁଁ ଭୁଲିଯାଇଛି ପୃଥିବୀରେ ଦେବୀ ବୋଲି କୌଣସି ମଣିଷକୁ ଚିହ୍ନେ। ମୁଁ କେବେ କାହାରି ପାଇଁ ସ୍ୱପ୍ନ ଦେଖିନି, କେବେ କାହାକୁ ପ୍ରତିଶ୍ରୁତି ଦେଇନି। ଦୟାକରି ମୋତେ ବଞ୍ଚା। ଏଠାରୁ ଚାଲିଯା।

–ଦେଖ, ମୁଁ ତୁମରି ପାଇଁ ସେଠାରେ ସବୁ ଛାଡ଼ି ପଳେଇ ଆସିଛି। ମୁଁ ବୁଝିପାରୁଛି ତୁମ ବିନା ପୃଥିବୀରେ ମୋର ପ୍ରତିଷ୍ଠା ଅସମ୍ଭବ। ତୁମେ ତ କହିଥିଲ– ତୋ ବିନା ଏ ପୃଥିବୀର ସର୍ବତ୍ର ନିଘଞ୍ଚ ବନ। ତୁ ଆସିଲେ ମୋର ସେ ବନ ଉପବନ ହୋଇ ଉଠିବ। ମୁଁ ସତରେ ଆସିଛି। ତୁମ ପାଇଁ ସୁନ୍ଦର ଉପବନ ତିଆରି କରିଦେବି। ସେ ଉପବନରେ ଆମେ ଗୋଟିଏ ଛୋଟ ଘର କରିବା। ସେ ଘର ସଜାହେବ ଆମର ସ୍ନେହ ମମତାର କାଗଜ ଫୁଲରେ। ସେଇ ଘରେ ମୁଁ ଏତେଦିନ ସଞ୍ଚୟ କରି ରଖିଥିବା, ତୁମକୁ ଅନେକ ଥର ଖାଲି ହାତରେ ଫେରାଇ ଦେଇଥିବାର ଗୌରବକୁ ଏକାଠି କରି ସେଇ ନାରୀତ୍ୱକୁ ଅର୍ପଣ କରିବି। ତୁମରି ସ୍ପର୍ଶରେ ମୋ ଦେହ-ମନର ପ୍ରତ୍ୟେକ ଦଳ ଶତଦଳ ହୋଇ ଉଠିବ। ମୋରି ସୁବାସରେ ତୁମର ଘର ପୂରି ଉଠିବ। ମୋରି କୋଳ ପୂର୍ଣ୍ଣକରି ତୁମର ବଂଶଧରମାନେ କେଉଁ ଏକ ଅଜଣା ଦିଗନ୍ତରୁ ଓହ୍ଲାଇ ଆସିବେ।

–ବନ୍ଦକର, ମୁଁ ଉପନ୍ୟାସର ଭାଷା, ସିନେମାର ଡାୟଲଗ୍ ଶୁଣିବାକୁ ଚାହେଁନି। ତୁ ତ ମୋତେ ଭଲପାଉଥିଲୁ। ମୋର ସ୍ୱପ୍ନକୁ ତୁ ଅନେକ ଥର ତୋର ଜିଦ୍, ତୋର ଅହମିକା, ତୋର ଆତ୍ମାଭିମାନ ଏବଂ ତୋର ଭୟର ତରବାରିରେ ଆହତ କରିଛୁ। ତୁ ଆଉ ସେମାନଙ୍କୁ ନିହତ କରନା ! ତୁ ମୋର ହୋଇଗଲେ ମୋର ସେ ମିଠା ମିଠା

ସ୍ୱପ୍ନମାନେ ପଳାଇବେ। ନିହତ ହୋଇଯିବେ। ମୁଁ ସତ୍ୟ ଚାହେଁନି। ବାସ୍ତବତାକୁ ମୁଁ ଘୃଣା କରେ। ତୁ ଭାବି ଦେଖ, ଠିକ୍ ଯାହା ଯେଉଁ ସମୟରେ ଯେଉଁ ରୂପରେ ଚାହିଁଲେ ସତ୍ୟ ଓ ବାସ୍ତବ ବସ୍ତୁ ମିଳିପାରେନା। କିନ୍ତୁ ଯେକୌଣସି ସ୍ଥାନରେ ଯେକୌଣସି ମୁହୂର୍ତ୍ତରେ ଯେକୌଣସି ଅବସ୍ଥାରେ ଖୁବ୍ ଆରାମରେ ସ୍ୱପ୍ନ ବସ୍ତୁ ମିଳିପାରେ। ଦେବୀ, ସ୍ୱପ୍ନ ସୁନ୍ଦର। ତୁ ଯଦି ଦିନେ ପ୍ରକୃତରେ ମୋତେ ଭଲପାଉଥିଲୁ, ସେଇ ଭଲପାଇବା ଖାତିରରେ କହୁଛି ମୋର ସ୍ୱପ୍ନମାନଙ୍କର ତଣ୍ଟି ଚିପି ହତ୍ୟା କରନା। ଏ ଦୂର ଜଙ୍ଗଲରେ ସେମାନେ ମୋ ପାଇଁ ଜାୟା ଜନନୀ ଭଗିନୀ ବନ୍ଧୁ ପ୍ରେମିକା ଉପଦେଷ୍ଟା ଶୁଭାକାଙ୍‌କ୍ଷୀ ସବୁ କିଛି। ମୋର କେବଳ ଗୋଟିଏ ଇଚ୍ଛା ଅଛି। ସେତକ ପୂରଣ ହୋଇଗଲେ ମୁଁ ସବୁଠାରୁ ସୁଖୀ ହୋଇଯିବି। ଥରେ ତୋ ପାଦରେ ଚୁମା ଦେବି।

ତା'ପରେ ଦେବୀର ପାଦ ଚୁମ୍ବନ କଲି। ସେ ମୋତେ ପ୍ରଣାମ କଲା। ସବୁଦିନ ପାଇଁ ବିଦାୟ ନେଇ ସେ ରିକ୍‌ସାରେ ବସିଲା। ପୂର୍ବ ଦିଗ୍‌ବଳୟ ତଳେ ତା'ର ନାଲି ଶାଢ଼ି ସୂର୍ଯ୍ୟୋଦୟର ରଙ୍ଗିନ ମହୋତ୍ସବ ଭିତରେ ବିଲୀନ ହୋଇଗଲା।

ଠିକ୍ ଏଇ ସ୍ୱପ୍ନକୁ ନେଇ ଉପନ୍ୟାସ ଲେଖି ହୁଅନ୍ତା। ମୁଁ ଜଙ୍ଗଲ ଭିତରେ ରହି ସ୍ୱପ୍ନ ଦେଖେ। ସ୍ୱପ୍ନ ଦେଖେ ଦେବୀର ସ୍ୱପ୍ନ। ସ୍ୱପ୍ନ ଦେଖେ ଉପନ୍ୟାସ ଲେଖିବାର।

ଦେବୀକୁ ମିଳିବା ଏ ଜନ୍ମରେ ଅସମ୍ଭବ ଜାଣେ କିନ୍ତୁ ଖୁବ୍ ଶୀଘ୍ର ମୁଁ ଏସବୁ ଘଟଣାକୁ ନେଇ ଉପନ୍ୟାସ ଲେଖିବି।

('ଅନିଶା', ପୂଜା ଏବଂ ଦୀପାବଳି ସଂଖ୍ୟା, ୧୯୮୫। ସୌଜନ୍ୟ : ପ୍ରହରାଜ ସତ୍ୟନାରାୟଣ ନନ୍ଦ।)



# ଦୁର୍ଘଟଣା

କାହିଁକି ଜାଣେ ନାହିଁ, ତଥାପି ମୁଁ ଆଗେଇ ଚାଲିଥିଲି।

କେହି ଜଣେ ଛିଡ଼ା ହୋଇଥିଲେ। ମୁଁ ଦେଖିଲି। ସହରର କୋଠାଗୁଡ଼ା ସେଇଠି ଶେଷ। ପାଖରେ ସହରର ଶେଷ ଆଲୋକ ସ୍ତମ୍ଭ। ତା'ପରେ ବୁଦୁବୁଦୁକିଆ ଜଙ୍ଗଲ ଓ ବିଲ। ମୁଁ କେବଳ ଉଚିତ ମନେ କରି ତାଙ୍କୁ ନମସ୍କାର କଲି ଏବଂ ଛିଡ଼ା ନ ହୋଇ ଆଗକୁ ଆଗେଇଲି। ସେ ମୋ ନାଁ ଧରି ପଛରୁ ଡାକିଲେ। ମୁଁ ଜାଣେ ପଛରୁ ନାଁ ଧରି ଡାକୁଥିବା ଲୋକମାନେ ଅର୍ଥହୀନ ପ୍ରଶ୍ନଗୁଡ଼ା ପଚାରନ୍ତି। –ଏବେ କେଉଁଠି?– କ'ଣ କରୁଛ? –ଭଲ ଅଛ ତ? ମୋତେ ବି ସେଇ ଧରଣର ଉତ୍ତର ଦେବାକୁ ଇଚ୍ଛା ହୁଏ। –ଏବେ ଏଇଠି। –ଏଇ ଆପଣଙ୍କ ପ୍ରଶ୍ନର ଉତ୍ତର ଦେଉଛି। –ହଁ ହଁ, ମୁଁ ବେଶ୍ ଭଲ ଅଛି। ଠିକ୍ ଏଇଥିପାଇଁ ମୁଁ ତାଙ୍କୁ ଏଡ଼େଇଗଲି। ମୁଁ ଠିକ୍ ବୁଝିପାରୁଛି ମୋ ଭିତରେ କେଉଁ ଏକ ସନ୍ଧିରେ ମାଇକ ଲଗା ହୋଇଛି। ସେଇ ମାଇକରୁ ନିର୍ଦ୍ଦେଶ ଆସୁଛି– ଆଗେଇ ଯା, ଆହୁରି ଆଗେଇ ଯା। ସହର ମୁଣ୍ଡର ସେଇ ସୁନ୍ଦର ପୋଷାକ ପିନ୍ଧା ସୁସଭ୍ୟ ଲୋକଟା ପୁଣି ଆଦରରେ ଡାକୁଛି ବୋଲି ମୋତେ ମନେ ହେଲା। ଗୋଟିଏ ମୁହୂର୍ତ୍ତ ପାଇଁ ପାଦ ସ୍ଥିର। ଆକାଶ ମେଘାଚ୍ଛନ୍ନ ହୋଇ ଉଠିଲା। ଦ୍ୱିଧା ଦ୍ୱନ୍ଦ୍ୱ ଯୁକ୍ତି ମୁଣ୍ଡ ଉପରେ ଘୂରି ବୁଲିଲେ। କିନ୍ତୁ ପୁଣି ଆକାଶ ପରିଷ୍କାର ହୋଇଗଲା। ମୁଁ ଆଗକୁ ଚାଲିଲି। କିଛିଦୂର ଗଲାପରେ ଆମ୍ବତୋଟା ଆଉ ତା' ସେପଟେ କେତେଗୁଡ଼ିଏ ଚାଳଘର। ଚାଳଘର ପିଣ୍ଡାରେ ପିଠଉ ପାଣିର ଝୋଟି। ତୁଳସୀ ଚଉରା ମୂଳରେ ଗତ ସଞ୍ଜରୁ ଝରି ପଡ଼ିଥିବା ଅଧା ଜଳା ସଳିତା, ଟୁବିଗଡ଼ିଆ ଘାଟରେ ଚାଉଳ ଧୋଉଥିବା ଗୃହବଧୂ, ପିଢ଼ାର ସବୁଜ ଲାଉ ପତ୍ର ଭିତରୁ ଉପୁଚି ଉଠୁଥିବା ଧୂଆଁ ସବୁ ଗୋଟେ ଗୋଟେ ଅତିକ୍ରମ କରିଯାଏ। ଗୋଟିଏ ମୁହୂର୍ତ୍ତ ପାଇଁ ପଚା ପଙ୍କ ଓ ଗୋବର ଗନ୍ଧ, ତରକାରି ଛୁଙ୍କର ବାସ୍ନା ନାକରେ ଲାଗେ। କିଛି ସମୟ ପାଇଁ ପାଦ ଅଟକିଯାଏ। ମୁଁ ଦେଖେ ଗୁଡୁ ଗୁଡୁ କରି ହୁକା ଟାଣୁଥିବା ଜଣେ ଗାମୁଛା ପିନ୍ଧ ବୁଢ଼ା ବାହାରି ଆସୁଛି ଏବଂ ମୋତେ ଡାକୁଛି। ମୁଁ ଅଳ୍ପ ସମୟ ପାଇଁ ସଚେତନ ହୋଇ ଉଠୁଛି ଏବଂ ତା' ପରେ ତାଙ୍କୁ ପଛରେ ରଖି ଆଗେଇ ଯାଉଛି। ଅନେକ ଦୂର ଯାଇ କାନ ଡେରିଲି। ବୁଢ଼ାର ସ୍ୱର ଆଉ ଶୁଣାଯାଉନାହିଁ। ମୁଁ ଅନେକ

ତୋଟା ବିଲ ନଇ ପାରିହେଲି। ତା'ପରେ ସାମ୍ନାରେ ଘାଟି। ଚଢ଼ିଲି କ୍ରମେ ବିସ୍ତୃତ ପାହାଡ଼ ଓ ଜଙ୍ଗଲ। ମୋତେ ମନେହେଲା କୌଣସି ଜଙ୍ଗଲ ଭିତରେ କେହି ଯେମିତି ମୋତେ ଅପେକ୍ଷା କରି ରହିଛି। କେଉଁଠି ଯେପରି କିଛି ଘଟଣା ମୋତେ ଅନିଷା କରି ବସିଛି। ସେମାନଙ୍କୁ ମୁକାବିଲା କରିବାକୁ ହେବ। ମୁଁ ଆଗେଇଗଲି। ଜଙ୍ଗଲ ଭିତରଟା ଖୁବ୍ ଅନ୍ଧକାର ମନେ ହେଲା। କେମିତି ଶୀତ ଶୀତ ଲାଗିଲା। କେହି କୌଣସି ଆଡ଼େ ନାହିଁ, କେବଳ ଏକ ପ୍ରକାର ବିରକ୍ତିକର ଶବ୍ଦରେ କାନ ଝାଁ ଝାଁ କରୁଥିଲା। ଚାରିଆଡ଼େ କେମିତି ଓଦାଳିଆ ଭାବ। ଏକ ପ୍ରକାର ଆଚ୍ଛନ୍ନତା ଚାରିଆଡୁ ଘୋଟି ଆସୁଥିଲା। ମନେହେଲା ମୁଁ କ୍ରମେ ଅନୁଭୂତିହୀନ ହୋଇ ଆସୁଛି। କ୍ରମେ ସମୟଟା ଘଟଣାହୀନ ହୋଇଯାଉଛି। ମୋର କଥା କହିବା ଶକ୍ତି ଲୋପ ପାଇ ଆସୁଛି। ମୁଁ କିଛି ଉପାୟ ନ ପାଇ ମୋ ନାଁ ଧରି ଖୁବ୍ ଜୋରରେ ଚିତ୍କାର କଲି। ପାହାଡ଼ ପର୍ବତ ଆକାଶ ବତାସ ଚାରିଆଡ଼େ ବ୍ୟାପିଗଲା ସେ ଶବ୍ଦ ଏବଂ ଆଖି ପିଛୁଳାକେ କେଉଁ ସବୁ ଗଛଲତାର ପାଚେରୀରେ ଧକ୍‌କା ଖାଇ କେଉଁ ଏକ ଅନ୍ଧାରୁଆ ପର୍ବତ କନ୍ଦରରେ ବାଧା ପାଇ ଫେରିଆସିଲା ମୋ ପାଖକୁ। ମୁଁ ତନ୍ମୟ ହୋଇ ଶୁଣିଲି ଓ ଆଉଥରେ ଚିତ୍କାର କଲି ଓ ପୁଣି ଆଉଥରେ ଏବଂ ପୁଣି ଆଉ ଥରେ। ଦୂରରେ ନାମ ନ ଜଣା ଲୋମଶ ବନ୍ୟ ପଶୁ ଶୁଖିଲା ପତ୍ର ମଚ ମଚ କରି ଚାଲିଗଲେ। ମୁଁ ଦେଖିଲି ସେମାନେ ଆଶ୍ଚର୍ଯ୍ୟ ହୋଇ ମୋତେ ଦେଖିଲେ। ମୋର ପୋଷାକ ପରିଚ୍ଛଦ ଦେଖି ତରକିଗଲେ ବୋଧହୁଏ। ମୁଁ ବୁଝିପାରିଲି ସେମାନଙ୍କ ସହ ମିଶିବାକୁ ହେଲେ ମୋତେ ଏ ପୋଷାକ ଛାଡ଼ିବାକୁ ହେବ। ମୁଁ ସବୁ ଲୁଗାପଟା ଖୋଲି ପକାଇଲି। ପ୍ରଥମେ ଟିକିଏ ସଂକୋଚ ଲାଗିଲା। କିନ୍ତୁ ଭଲଭାବେ ସଚେତନ ହେଲି ଯେ ମୋ ବ୍ୟତୀତ ଆଉ କେହି ମଣିଷ ସେଠାରେ ନାହାନ୍ତି ଏବଂ ମୋର ଲଜ୍ଜା ଓ ସଂକୋଚ ଉଭେଇଗଲା। ତା'ପରେ ଆଗେଇଲି। ମୋ ପାଖ ଦେଇ ଅନେକ ଅନ୍ୟମନସ୍କ ହରିଣ ତରତର କରି ଚାଲିଗଲେ। ମୁଁ ସେମାନଙ୍କୁ ଅନୁସରଣ କରି କିଛି ବାଟ ଗଲା ପରେ ଝରଣାର ଶବ୍ଦ ଶୁଣିଲି। କୁଳୁକୁଳୁ ହୋଇ ଜଙ୍ଗଲର କେଉଁସବୁ ଅଜଣା ଗଛପତ୍ର ତଳ ଦେଇ ବହିଚାଲିଛି ଝରଣା କେଉଁ ଏକ ଆଦିମ କାଳରୁ। ମୋତେ ଶୋଷ ଲାଗିଲା। ମୁଁ ଗଛପତ୍ର ଲତାଗୁଳ୍ମ ଆଡ଼େଇ ଆଡ଼େଇ ଆଗେଇଲି। କିନ୍ତୁ ଝରଣା କାହିଁ? ଚାରିଆଡ଼େ କେବଳ ଝରଣାର ଶବ୍ଦ। ଶୋଷଟା ବେଶୀ ବଢ଼ିଗଲା। ଆହୁରି ଜୋରରେ ଆଗେଇଲି। ଚାରିଆଡ଼େ କେବଳ ଝର ଝର ଶବ୍ଦ। ଯେମିତି ମୋର ଚାରିଆଡ଼େ ଘେରିଥିବା ପାହାଡ଼ମାନଙ୍କରୁ ଡେଇଁ ପଡୁଛି ଲକ୍ଷ୍ୟ ଲକ୍ଷ ଝରଣା। ଶୋଷ, ଭୀଷଣ ଶୋଷ ସେତେବେଳେ। ଟୋପାଏ ପାଣି ଦରକାର। ଝରଣାର ଶବ୍ଦଟା କ୍ରମେ ମୋ ଚାରିପଟେ ଘେରି ଯାଉଛି। ମୁଁ ଦୌଡ଼ିବା ଆରମ୍ଭ କଲି। ବୁଝିପାରିଲି ମୋର ଆଉ ନିସ୍ତାର ନାହିଁ। ଅଗ୍ନାଅଗ୍ନି ବନସ୍ତରେ ଚାରିଆଡ଼େ ଝରଣା ଘେରା ଉପତ୍ୟକା ମଝିରେ ଟୋପାଏ ପାଣି

ବିନା ମୁଁ ମରିଯିବି। କେହି ଜାଣିବେ ନାହିଁ, କେହି ବୁଝିବେ ନାହିଁ। ବିସ୍ତୀର୍ଣ୍ଣ ପଡ଼ିଆ ଭିତରେ ଗୋଟିଏ ପିମ୍ପୁଡ଼ିର ଶବ ଅଜଣା ଅଦେଖାଭାବେ ମାଟିରେ ମିଶିଗଲା ପରି ମୁଁ ଏଇଠି ଶେଷ ହୋଇଯିବି। ମୋର ବଞ୍ଚିବା ଦରକାର। ଆହୁରି ଜୋରରେ ଦୌଡ଼ିଲି। ଓଠ ପାଖରୁ କ୍ରମେ ଶ୍ୱାସନଳୀ କଣ୍ଠନଳୀ ଓ ସମସ୍ତ ଶିରାପ୍ରଶିରା ଧମନୀ ଜାଲକ ଶୁଖି ଆସୁଛି। ଝରଣାର ଶବ୍ଦ ଆହୁରି ଦ୍ରୁତତର ହେଉଛି। ମୁଁ ଆହୁରି ଜୋରରେ ଦୌଡୁଛି। ହଠାତ୍ ଗୋଟିଏ କେଉଁଠି ଧକ୍‌କା ଖାଇଲି। ଛିଟିକି ପଡ଼ିଲି। ଝରଣାର ତୀବ୍ର ଶବ୍ଦଟା କ୍ରମେ କମି ଆସିଲା।

ମୁଁ ଧୀରେ ଧୀରେ ନିଜକୁ ଅନୁଭବ କଲି। ଝରଣାର ଝର୍ଝର ଶବ୍ଦ ଏବେ ବି ପରିଷ୍କାର ଶୁଣାଯାଉଛି। ଧୀରେ ଧୀରେ ଆଖି ଖୋଲିଲି। ଏଇଟା ଜଙ୍ଗଲ ନୁହେଁ। ମୋ ଘର। ମୁଁ ଆସିଛି। ବୁଝିପାରିଲି ଦୃଶ୍ୟପଟର ପରିବର୍ତ୍ତନ ହୋଇଯାଇଛି। ବାହାରେ ଖରାର ରଙ୍ଗ ହଳଦିଆ, ପୋଲିସ ବେଲ୍‌ଟର ପାଲିସଦିଆ ପିତ୍ତଳ ରଙ୍ଗପରି। ସେ ଖରାରୁ ଖିଅ ଗୋଟେ ଝର୍କା ଦେଇ ପଶିଆସୁଛି ଘର ଭିତରକୁ। ସେଇ ଖରାର ସ୍ରୋତରେ ଦେଖାଯାଏ ଅନେକ ଧୂଳିକଣା ଉଡ଼ି ବୁଲୁଛନ୍ତି। ମୁଁ କିନ୍ତୁ ଉଲଗ୍ନ ହୋଇ ଦୌଡୁଥିଲି ଜଙ୍ଗଲରେ ଝରଣା ଆଡ଼େ। ବୁଝିପାରିଲି ଲୁଙ୍ଗିଟା ଖୋଲି ଦୂରରେ ପଡ଼ିଛି। ଲୁଙ୍ଗିଟା ଓଟାରି ଆଣି ଅଣ୍ଟାରେ ଗୁଡ଼ାଇ ନେଲି ଓ ଉଠି ବସିଲି।

ଖୁବ୍ କ୍ଲାନ୍ତ ଲାଗୁଛି। ଟେପ୍‌ର ଝରଝର ଶବ୍ଦଟା ଠିକ୍ ସେଇ ଝରଣାର ବୀଭତ୍ସ ଶବ୍ଦ ପରି। ଝରଣାର ଝରଝର ଶବ୍ଦ ସ୍ୱପ୍ନରେ ତିଆରି କରିବା ପାଇଁ ଏଇ ଶବ୍ଦଟାର ଅବଦାନ କଥା ମୁଁ ଚିନ୍ତା କଲି। ଶବ୍ଦଗୁଡ଼ା ସବୁ ଏକାକାର ହୋଇଯାଇଥିଲା। ଖୁବ୍ ଜୋରରେ ଧକ୍‌କା ଖାଇଥିଲି ମୋର ମନେ ଅଛି। ତା'ପରେ ନିଦଟା ଭାଙ୍ଗିଗଲା। ଅବଶ୍ୟ ଅନେକ ଦିନ ସକାଳେ ଟେପ୍‌ର ଝରଝର ଶବ୍ଦରେ ମୋର ନିଦ ଭାଙ୍ଗେ। ତେଣୁ ରାତିରେ ଯେଉଁଦିନ ମନେ ପଡ଼େ ଟେପ୍‌ର ଚାବି ଘୂରାଇ ଶୁଏ। କାଲି ରାତିରେ ଭୁଲିଯାଇଥିଲି। ଘରକୁ ଫେରିବାକୁ ଅନେକ ରାତି ହୋଇଥିଲା। ପାଣି ଝରୁଛି ଝରୁ। ସେଇ ଅଦୃଶ୍ୟ ଝରଣା ଭଳି ଏଇ ପାଣି ବାଥରୁମ ଛିଦ୍ରପଥ ଦେଇ ବାହାରକୁ ବାହାରିଯିବ। କେଉଁସବୁ ଧାତବ ନଳୀ ଭିତର ଦେଇ ଅଦୃଶ୍ୟରେ ବହିଯିବ ଦୂରକୁ। ଅବଶ୍ୟ ଶବ୍ଦଟା ବିରକ୍ତିକର ହେଲେ ବି କେମିତି ଏକ ଓଦାଳିଆ ଭାବ ଆସେ ଏଇ ଶବ୍ଦ ଭିତରୁ। ତେଣୁ ଝରୁଥାଉ। ଉଜ୍ଜ୍ୱଳ ହଳଦିଆ ସୂର୍ଯ୍ୟ କିରଣରେ ପ୍ରାଣପ୍ରଚୁର୍ଯ୍ୟ ଅଛି ମୁଁ ଜାଣେ, ତଥାପି ପର୍ଦ୍ଦାଟା ପକାଇ ଦେଲି। କାଲି ରାତିରେ ଝର୍କାର ପର୍ଦ୍ଦା ଉଠାଇ ଦେଇଥିଲି ରାତିର ଆକାଶ ଦେଖିବି ବୋଲି। ଘର ଭିତରର ଆଲୁଅ ଲିଭାଇ ଦେଇ ରାତିର ଆକାଶ ଦେଖିବାକୁ ମୋତେ ଖୁବ୍ ଭଲ ଲାଗେ। ଆକାଶର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନର ଗୋଟିଏ ନିର୍ଦ୍ଦିଷ୍ଟ ନକ୍ଷତ୍ରକୁ କିଛି ସମୟ ଚାହିଁରହିଲା ପରେ ମନେହୁଏ ନକ୍ଷତ୍ରଟା ଗତି କରିବା ଆରମ୍ଭ କରିଛି। ତା' ସହ, ଉପର

ତଳ, ତଳ ଉପର, ଡାହାଣ ବାମ, ବାମ ଡାହାଣ ହେଲା ପରେ ଆଖି କ୍ଳାନ୍ତ ହୋଇପଡ଼େ। ତା'ପରେ ଠିକ୍ ବୁଝିହୁଏ ନାହିଁ। ସବୁ ରଙ୍ଗକୁ ଫେଣ୍ଟାଫେଣ୍ଟି କରି, ସବୁ ଅନୁଭବ ଉପଲବ୍ଧିକୁ ଏକାକାର କରି ନିଦ ମାଡ଼ିଆସେ। ହୁଏତ ମୋ ନିଦୁରା ଦେହକୁ ସାରାରାତି ଆକାଶର ନକ୍ଷତ୍ରମାନେ ଦେଖନ୍ତି। କେମିତି ଦେହଟା ଅବଶ ଲାଗୁଛି। ଆଉ ଥରେ ଶୋଇପଡ଼ିଲି। ଫ୍ୟାନ୍‌ଟା ଖୁବ କ୍ଳାନ୍ତ ହୋଇ ବୁଲୁଥିବାର ମନେହୁଏ। କାନ ଡେରି ଶୁଣେ ବାଥରୁମ୍‌ର ଝର୍ଝର ଶବ୍ଦକୁ ଅତିକ୍ରମ କରି ପାଖରେ କାହାର ଶୋଇବା ଘର ରେଡ଼ିଓରୁ ପୁରୁଣା ଗୀତର ଧ୍ୱନି ଭାସିଆସୁଛି। ଭିତରଟା ଉତ୍‌ଫୁଲ୍ଲ ହେବାକୁ ଆରମ୍ଭ କରେ। ଆଜି ରବିବାର କିଛି କାମ ନାହିଁ। ସବୁଦିନ ଭଳି ସକାଳେ ନିତ୍ୟକର୍ମ ହୋଟେଲ ଅଫିସ ଇତ୍ୟାଦିର ତଲବ ନାହିଁ। ଆଜି ମନଇଚ୍ଛା ବୁଲାଯାଇପାରେ। ଆଜି ମନଇଚ୍ଛା ଶୁଆଯାଇପାରେ। ପୁଣି ସ୍ୱପ୍ନଟା ମନେପଡ଼ିଗଲା। ସହର ଛାଡ଼ି ଜଙ୍ଗଲ, ପୁଣି ଜଙ୍ଗଲରେ ଉଲଗ୍ନ ହୋଇ ଝରଣା ଖୋଜିବାର ଦୃଶ୍ୟ ତଥା ଭୟଙ୍କର ଶୋଷ ଖୁବ୍ ଅର୍ଥପୂର୍ଣ୍ଣ ମନେ ହୁଏ। ମୋତେ ଜଣାପଡ଼େ ଯେମିତି ଆଜି କେଉଁଠି ବିପଦ କିମ୍ବା ଦୁର୍ଘଟଣା ମୋତେ ଅପେକ୍ଷା କରି ବସିଛି।

ଏଇ ଧରଣର ସ୍ୱପ୍ନ ମୁଁ ଅନେକଥର ଦେଖିଛି। ଆଉ ବିପଦରେ ପଡ଼ିଛି ମଧ୍ୟ। ମୁଁ ଜାଣେନାହିଁ କାହିଁକି ଏମିତି ହୁଏ ? ମୁଁ କିଛି ଦୁର୍ଘଟଣାର ସମ୍ମୁଖୀନ ହେବା ପୂର୍ବରୁ କେଜାଣି କେମିତି ବୁଝିପାରେ। ମୁଁ ପ୍ରାୟ ଅଧିକାଂଶ ସମୟରେ ଏଇ ଧରଣର ସ୍ୱପ୍ନ ଦେଖେ। ଯାତ୍ରା, ଅନିର୍ଦ୍ଦିଷ୍ଟ ଯାତ୍ରା। ଅନେକ ଗ୍ରାମ ନଗର ଜନପଦ ପାରି ହୋଇ ଯାଉଛି ଆଗକୁ। କିନ୍ତୁ କୁଆଡ଼େ ? କିଛି ଲକ୍ଷ୍ୟ ନାହିଁ। ବୋଧହୁଏ ଲକ୍ଷ୍ୟହୀନତା ମୋତେ ଭଲ ଲାଗେ ବୋଲି ମୁଁ ଏମିତି ସ୍ୱପ୍ନ ଦେଖେ। ଅବଶ୍ୟ ମୁଁ କୌଣସି ନିର୍ଦ୍ଦିଷ୍ଟ କାମରେ ବେଶୀ ସମୟ ମନ ଲଗାଇ ରହିପାରେନି। ଘଟଣାହୀନ ହୋଇ ମୁହୂର୍ତ୍ତ ଗୋଟିଏ ବି ମୁଁ ନିଜକୁ ସ୍ଥିର ରଖି ପାରେନି। ଘଟଣା ଖୋଜିବା ପାଇଁ ବାହାରିପଡ଼େ। ହୁଏତ ମୁଁ ସେଥିପାଇଁ ଏଇ ଧରଣର ସ୍ୱପ୍ନ ଦେଖେ। ଅବଶ୍ୟ ତା'ପରେ କୌଣସି ଘଟଣା ବା ଦୁର୍ଘଟଣା ଘଟେ ଯାହା ଅନେକ ଦିନ ମନେ ରଖି ହୁଏ, ଯାହାକୁ ନେଇ ଅନେକ ଘଟଣାହୀନ ମୁହୂର୍ତ୍ତରେ ବଞ୍ଚି ହୁଏ।

ଅନେକ ଦିନ କିଛି ଘଟଣା ଘଟିନାହିଁ ମୋ ପାଇଁ। କିଛି ପାପ କରିପାରିନାହିଁ। ପାପ କରିବା ପାଇଁ ଚେଷ୍ଟା କରିଛି ସବୁବେଳେ, କିନ୍ତୁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇ ପାରିନି କିମ୍ବା ଠିକ୍ ସୁଯୋଗ ଆସି ନାହିଁ। କିନ୍ତୁ ଆଜି ମୁଁ ଜାଣେ କିଛି ଗୋଟିଏ ଘଟିବ କିମ୍ୱା ମୁଁ କୌଣସି ଏକ ଦୁର୍ଘଟଣା ଘଟାଇ ବସିବି।

ଆଖି ବନ୍ଦ କରି ଦେଖେ ରାସ୍ତାରେ ନିରବଚ୍ଛିନ୍ନ ଟ୍ରାଫିକ। ତା'ରି ଭିତରେ ମୋର ସାଇକେଲ ଦ୍ରୁତ ଗତିରେ ଆଗେଇ ଚାଲିଛି। ସାମ୍ନାରେ ମାଲ ବୋଝେଇ ଲରୀ। ତା'ପରେ ସ୍ୱପ୍ନରେ ଧକ୍‌କା ଖାଇ ଛିଟିକି ଗଲାପରି ଅନୁଭବ। ମନେ ମନେ ଛାତିର ଯନ୍ତ୍ରଣାଟା ଅନୁଭବ କଲି। ତା'ପରେ ଆଉ ଏକ ଦୁର୍ଘଟଣାର ଚିତ୍ର। ଖରାବେଳେ ନିଶୂନ ପାର୍କରେ

ଝିଅଟିର ମୁହଁ ବନ୍ଦ କରିଦେଲି ମୁଁ। ତା'ପରେ ତା' ଦେହରୁ ଗୋଟିଏ ଗୋଟିଏ ଲୁଗା ଅଲଗା କରିଦେଲି, ସ୍ୱପ୍ନରେ ମୁଁ ଜଙ୍ଗଲ ଭିତରେ ଉଲଗ୍ନ ହେବା ପରି। ତା'ପରେ ଝିଅଟି ଛୁଟିଲା ଜଙ୍ଗଲରୁ ଲୋକାଳୟକୁ। ଲୋକମାନେ ମୋତେ ଘେରିଗଲେ। ମୋ ନାକରୁ ଭକ ଭକ ରକ୍ତ ଉଛୁଳି ଆସିଲା। ଚେତା ଲୋପ ପାଇଗଲା।

ମୁଁ କଡ଼ ଲେଉଟାଇଲି।

ସକାଳେ ଏମିତି ଶୋଇରହି ଅର୍ଦ୍ଧଚେତନ ଅବସ୍ଥାରେ ଚାରିଆଡ଼େ ଜାଗି ଉଠୁଥିବା ଶବ୍ଦ ଶୁଣିବାକୁ ଭଲ ଲାଗେ। ବୁଝିହୁଏ ଏଇଟା ପୃଥିବୀର ଶବ୍ଦ। ପୃଥିବୀର ଜାଗି ଉଠିବାର ଶବ୍ଦ। କ୍ରମେ ସମସ୍ତେ ଜାଗ୍ରତ ହୋଇଗଲେ ପୃଥିବୀର ମୌଳିକ ଶବ୍ଦ ଚାପା ପଡ଼ିଯାଏ। ଘୋ ଘା ଭିତରେ ହଜିଯାଏ ସୁନ୍ଦର ଶବ୍ଦ-ଧ୍ୱନି-ସ୍ୱର। ଠିକ ଏଇ ଜାଗି ଉଠିବା ମୁହୂର୍ତ୍ତରେ ମନେହୁଏ ପୃଥିବୀଟା ଖୁବ୍ ସୁନ୍ଦର ଓ ପବିତ୍ର ହୋଇଯାଇଛି। ପୃଥିବୀର ଯେଉଁସବୁ ଜାଗା ଏବେବି ଅନାବାଦୀ ରହିଛି, ସେଇ ସବୁ ଜାଗାରେ ସରକାର ଫୁଲ ଚାଷ କରନ୍ତେ କି। ମୁଁ ସେ ଫୁଲର ଜଙ୍ଗଲ ଭିତରେ ଅନେକ ରଙ୍ଗିନ ପ୍ରଜାପତି ଛାଡ଼ି ଦିଅନ୍ତି ଏବଂ ତା'ପରେ ମୁଁ ଓ ନମୁନା–

ମୋର ସବୁ ଖ୍ୱାବ ତୁଟିଯାଏ। ହଠାତ୍ ଆଖି ମେଲା କରି ଉଠି ବସେ। ତକିଆତଳୁ ଗୋଟିଏ ଲୋଚାକୋଚା ଚିଠି ବାହାରକରି ଆଣେ। ଚିଠିର ଅକ୍ଷର ପଢ଼ିବା ପୂର୍ବରୁ ଦେଖେ ତକିଆ ଖୋଳାଟା ଅନେକ ମଇଳା ହୋଇଯାଇଛି। ବିଛଣା ଚାଦରଟା ଖୁବ୍ ଲୋଚାକୋଚା। ଧଳା କାନ୍ଥରେ ମୋ ମୁଣ୍ଡ ପାଖରେ କିଏ ଯେମିତି କଲମରୁ କାଳି ଝାଡ଼ି ଦେଇଛି। ମୋର ଇଚ୍ଛା ହୁଏ ହଠାତ୍ ଉଠିଯାଇ ଟେବୁଲ ଉପରୁ କାଳିଦୁଆତଟା ଆଣି ସାରା ଧଳା କାନ୍ଥରେ ସ୍ପ୍ରେ, କରିଦେବି। ବୀଭତ୍ସ କରିଦେବି। ବୀଭତ୍ସ କରିଦେବି କାନ୍ଥର ଚେହେରା। ଝର୍କାର ପର୍ଦ୍ଦାରେ ଥିବା ରଙ୍ଗିନ ଫୁଲକୁ ଛିଡ଼ାଇ ନର୍ଦ୍ଦମା ଆଡ଼େ ବାଟ ବଳେଇ ଦେବି। ଅବଶ୍ୟ ଦିନେ ମୁଁ ଉଚ୍ଚାରଣ କରିଥିଲି– ନମୁନା, ତୁମେ ଫୁଲପରି ସୁନ୍ଦର ଓ ପବିତ୍ର। କିନ୍ତୁ ମୁଁ ଏବେ ଗୋଟିଏ ଚାପୁଡ଼ାରେ ତା'ର ସବୁ ସୁନ୍ଦରତା, ସବୁ ପବିତ୍ରତା ନଷ୍ଟ କରିଦେବି।

ମୋର ଖୁବ୍ ଇଚ୍ଛା ହେଉଛି, ପୃଥିବୀର ସବୁ କୁମାରୀ କନ୍ୟାଙ୍କୁ ଏଇ ମୁହୂର୍ତ୍ତରେ ଧର୍ଷଣ କରିବି।

ମୁଁ ଚିଠିଟାକୁ ତକିଆ ତଳେ ରଖି ଉଠିପଡ଼ିଲି। ବାଥରୁମ୍‌ର ଝରଝର ପାଣି ତଳେ ହାତ ପତାଇଲି। ପାଣି ଖୁବ୍ ଜୋର୍‌ରେ ଝରୁଥିଲା। ମୋ ହାତପାପୁଲିରେ ରହିଲା ନାହିଁ। ତଳକୁ ଡେଇଁ ପଡ଼ିଲା। ଦୁଇ ହାତରେ ଧରିଲି। ଫେଣମିଶା କିଛି ପାଣି ରହିଲା। ମୋ ହାତ ଦେଇ ଏମିତି ଅନେକ ସୁଯୋଗ, ଅନେକ ଘଟଣା ତୀବ୍ର ବେଗରେ ଡେଇଁ ପଳାଇ ଯାଇଛନ୍ତି। ମୁଁ ଚାହି ମଧ୍ୟ ସେମାନଙ୍କୁ ଧରି ରଖିପାରିନାହିଁ। କେବଳ କିଛି ସ୍ମୃତି ଦେଇ ଯନ୍ତ୍ରଣା ପାଉଛି ମୁଁ। ଟେପ୍‌ର ଛବି ଘୂରାଇ ପାଣିର ସ୍ପିଡ଼ କମାଇଦେଲି। ଆଖି ଓ

କପାଳରେ ପାଣି ଛାଟିଲି। ଦୁଇଢୋକ ପାଣି ଗିଳିଦେଲି। କପାଳର କେରାଏ ବାଳ ଓଦା ହୋଇଗଲା। ତା'ପରେ ପରିସ୍ରା କଲି। ତଳିପେଟ ବେଶ୍ ହାଲୁକା ହୋଇଗଲା। ମୁଁ ଫେରିଆସି ବିଛଣାରେ ବସିଲି। ତକିଆଟା କୋଳକୁ ଉଠାଇ ନେଲି। ଲଫାଫାଟା ଓଲଟାଇ ଦେଖିଲି। ଉପରେ ଗୋଲ୍ ଗୋଲ୍ ଓଡ଼ିଆ ଅକ୍ଷରରେ ଠିକଣା ଲେଖିଛି ନମୁନା। ତା'ର ଅକ୍ଷର ବେଶ୍ ଚମତ୍କାର। ଆଗରୁ ଯେବେ ଚିଠି ଲେଖୁଥିଲା ପ୍ରେରକ ସ୍ଥାନରେ କିଛି ଲେଖୁ ନ ଥିଲା। ଅଥଚ ଆଜି ଏଇ ଚିଠିରେ ପ୍ରେରକ ସ୍ଥାନରେ ତା'ର ନାମ ସୁନ୍ଦର ଅକ୍ଷରରେ ଲେଖିଛି ସେ। ତା'ର ନାଁର ଅକ୍ଷରଗୁଡ଼ା ଖୁବ୍ ମୋଟା ଦେଖାଯାଉଛି। ଥରେ ଲେଖି ତା' ଉପରେ ଦୋହରେଇଛି ସେ। ଯେମିତି ସେ ତା' ନାଁଟା ଜାହିର କରିବାକୁ ଚାହିଁଛି। ସେ ଯେମିତି ବଳିଷ୍ଠ ଓ ସତ୍ୟ ଆଉ ତା'ଛଡ଼ା ଅନ୍ୟମାନେ ନଥିଲେ ତା'ର ବା ପୃଥିବୀର କିଛି ଯାଏଆସେ ନାହିଁ।

କିନ୍ତୁ ନମୁନାଟା ଦି' ଗଡ଼ ହୋଇଯାଇଛି। କାଲି ଅଫିସରେ ଏଇ ଚିଠିଟା ପାଇଲା ପରେ ଖୁବ୍ ତରତରରେ ଚିରୁ ଚିରୁ ନମୁନା ଦି'ଗଡ଼ ହୋଇଗଲା। ନାଁଟା ସେପଟେ ଆଉ ନମୁନାଟା ମୋର ନାଁ ଆଡ଼କୁ ରହିଯାଇଛି। ମୁଁ ନିଜ ହାତରେ ନମୁନାକୁ ଦି'ଗଡ଼ କରିଦେଇଛି। ଅବଶ୍ୟ ନମୁନା ଥରେ ମୋତେ ଚିଠିରେ ଲେଖିଥିଲା– ତାକୁ "ଯଦି ଦି' ଭାଗ କରି ଦିଆଯାଏ ତାହେଲେ ଗୋଟିଏ ଭାଗ ମୋର, ଆଉ ଅନ୍ୟ ଭାଗଟି ତା' ବାପା ବୋଉ ଭାଇ ଭଉଣୀ ଆତ୍ମୀୟସ୍ୱଜନ ବନ୍ଧୁବାନ୍ଧବ ସମାଜ ଇତ୍ୟାଦିଙ୍କ ଉଦ୍ଦେଶ୍ୟରେ"। ନ'ଟା ତା'ହେଲେ କ'ଣ ଅନ୍ୟମାନଙ୍କ ପାଇଁ ଆଉ ମୁନା'ଟା ମୋ ପାଇଁ। ତଥାପି ବି ମୋ ଭାଗରେ ବେଶୀ ଅଂଶ।

ମୁଁ ଯିନା ନମୁନାକୁ ଦୁଇଗଡ଼ କରିଦେଲି। କିନ୍ତୁ ନମୁନା ବି ମୋତେ ରକ୍ଷା କରିପାରିଲା ନାହିଁ। ମୋ ନାଁ ଉପରେ ପୋଷ୍ଟ ଅଫିସର ତାରିଖ ଷ୍ଟାମ୍ପ ଚଢ଼ିଗଲା। କେଉଁ ଏକ ପୋଷ୍ଟ ଅଫିସର ଖାକି ପୋଷାକ ପିନ୍ଧା ଅନ୍ୟମନସ୍କ କିମ୍ବା ଦାୟିତ୍ୱହୀନ କିମ୍ବା କର୍ମବ୍ୟସ୍ତ କର୍ମଚାରୀ ଡାକଟିକଟ ଉପରେ ସିଲ ମାରୁ ମାରୁ ମୋରି ଉପରେ ସମୟର ଚିହ୍ନ ରଖିଦେଲା। ବଞ୍ଚାଇପାରିଲା ନାହିଁ ନମୁନା ମୋତେ ପୃଥିବୀର ଈର୍ଷାପରାୟଣ କିମ୍ବା ଅନ୍ୟମନସ୍କ କିମ୍ବା ଦାୟିତ୍ୱହୀନ ଲୋକଙ୍କ ହାତରୁ!

ମୁଁ ଚିଠିଟା ଖୋଳରୁ ବାହାର କରି ପଢ଼ିଲି। କାଲିଠୁ ଚିଠି ପାଇଲା ପରେ ଏଥରକୁ ମିଶାଇ ମୋଟରେ ସାତଥର ପଢ଼ିଲିଣି। କିନ୍ତୁ ଥରେ ଥରେ ବିଶ୍ୱାସ କରିହୁଏ ନାହିଁ ଏ ଚିଠିଟା ନମୁନାର ବୋଲି। ନମୁନା ସତରେ ଏମିତି ଲେଖିପାରେ! ଥରେ ଥରେ ମନେ ହେଉଛି ନମୁନାର ଏଇ ଚିଠିଟା ସ୍ୱପ୍ନରେ ଉଲଗ୍ନ ହୋଇ ଝରଣା ଖୋଜିବାର ଦୃଶ୍ୟ ଭଳି ଅଳୀକ। ଅନେକ ସ୍ୱପ୍ନ ସକାଳେ ମନେ ରହେ ନାହିଁ। କିନ୍ତୁ ଏଇ ସକାଳେ ଦେଖିଥିବା ସ୍ୱପ୍ନଟା ଅବିକଳ ମନେଅଛି। ଆଉ ଅନେକଦିନ ମନେ ରହିବ ମଧ୍ୟ। ଥରେ

ଗୋଟିଏ ସ୍ୱପ୍ନ ଦେଖିଥିଲି, ସେଇଟା ଏତେ ଜୀବନ୍ତ ହୋଇ ରହିଛି ଯେ ଥରେ ଥରେ ବିଶ୍ୱାସ ହୁଏ ନାହିଁ ସେଇଟା ଗୋଟିଏ ସ୍ୱପ୍ନ ଥିଲା ବୋଲି। ଯେମିତି ମୋ ଜୀବନରେ ଗୋଟିଏ ଘଟଣା, ଗୋଟିଏ ମନେ ଥିବା ଭଳି ଦୁର୍ଘଟଣା। ସେଦିନ ମୁଁ ଧୀରେ ଧୀରେ ମରି ଆସୁଛି। ମୋ ଚରିପଟେ ଅନେକ ଚିହ୍ନା ଅଚିହ୍ନା ମୁହଁ। ମୁଁ କ'ଣ ଗୋଟେ କହିବାକୁ ଚାହୁଁଛି, କିନ୍ତୁ ଭାଷା ପଇଟୁ ନାହିଁ। ମୁଁ ହୁଏତ କହିବାକୁ ଚାହୁଁଥିଲି– ମୋର କିଛି କ୍ଷୋଭ ନାହିଁ। ମୁଁ ଯାହା ଜାଣିଥିଲି, ଦେଖିଥିଲି, ବୁଝିଥିଲି, ଅନୁଭବ କରିଥିଲି, ସବୁ କହିଦେଇ ଆସିଛି, ଲେଖି ଦେଇ ଆସିଛି। କିନ୍ତୁ ମୁଁ ଏସବୁ କିଛି କହିପାରିଲି ନାହିଁ। ସମସ୍ତଙ୍କ ଘେର ଭିତରେ ବି ମୋ ପ୍ରାଣବାୟୁ ଧୀରେ ଧୀରେ ବାହାରି ଉଡ଼ିଗଲା। ମୁଁ ବୁଝିପାରିଲି ନିଦ ଆସିଲେ ଯେମିତି ସବୁ ଧୀରେ ଧୀରେ ଅସ୍ପଷ୍ଟ ହୋଇ ଆସେ ଏବଂ ଶେଷରେ ସବୁ ମିଳେଇଯାଏ ସେହିପରି ସବୁ ଦୃଶ୍ୟ ମିଳେଇଗଲା। ତା'ପରେ ଅନେକ ଅନ୍ଧକାର। ଭୀଷଣ ଅନ୍ଧକାର। ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ଘୂରି ବୁଲିଲି। ହଠାତ୍ କୌଣସି ଏକ କୋଣରେ ସୁନ୍ଦର ଧ୍ୱନି ଶୁଣିଲି। ଅଣ୍ଡାଳି ଅଣ୍ଡାଳି ସେଇଆଡ଼େ ଆଗେଇଗଲି। ମନେହେଲା ମୋ ସାମ୍ନାରେ ଗୋଟିଏ ଭାରୀ କଳା ପର୍ଦ୍ଦା। ପର୍ଦ୍ଦାଟାକୁ ଉଠାଇବାକୁ ଚେଷ୍ଟା କଲି। ଉଠିଲା ନାହିଁ। ଯେତେ ଉଠାଇଲେ ବି ତଳକୁ ସେତେ ଝୁଲି ରହୁଥିଲା। ଅନ୍ଧକାରରେ ପର୍ଦ୍ଦା ଧରି ଧରି ଗୋଟିଏ କୋଣକୁ ଆସିଲି, ପର୍ଦ୍ଦାର କୋଣ ଧରି ଘୁଞ୍ଚାଇ ଦେଲି। ଆଖି ଅନ୍ଧ କଲାଭଳି ଉଜ୍ଜ୍ୱଳ ନୀଳ ଆଲୋକ। ମୋ ଆଖି ବନ୍ଦ ହୋଇଗଲା ଏବଂ ତା'ପରେ ଆଉ ଥରେ ଆଖି ଫିଟିଗଲା। ଦେଖିଲି ଉଜ୍ଜ୍ୱଳ ଖରା ଝର୍କା ଦେଇ ମୋ ଆଖିରେ ପଡୁଛି। ହଠାତ୍ ବୁଝିପାରିଲି ନାହିଁ ମୁଁ ବଞ୍ଚିଛି କି ମରିଯାଇଛି। ନିଜକୁ ଅନୁଭବ କରିବାର ଚେଷ୍ଟା କଲି। ମନେହେଲା ମୋର ହାତଗୋଡ଼ ଯେଝା ସ୍ଥାନରେ ନାହାନ୍ତି। ମୋ ଦେହରେ ସ୍ନାୟୁଗ୍ରନ୍ଥି ନାହିଁ। ଗୋଟିଏ ଶବ ଭିତରେ ଦୁଇଟି ଜୀବନ୍ତ ଆଖି ଯେମିତି କିଏ ରଖିଦେଇ ଯାଇଛି। ସେଇ ଆଖି ଘରର ସବୁ ଜିନିଷ ଓ ସକାଳର ଖରା ସବୁ ଦେଖିପାରୁଛି। ଏମିତି ଅନେକ ସମୟ ଯିବା ପରେ ମୋର ଅନୁଭବ ଶକ୍ତି ବଢ଼ିଲା ଏବଂ ବୁଝିପାରିଲି ସେଇଟା ଗୋଟିଏ ସ୍ୱପ୍ନ ଥିଲା।

ସେଦିନ ଦିନସାରା ଥରେ ଥରେ ମନେ ହୋଇଛି ମୁଁ ବଞ୍ଚି ନାହିଁ ବୋଲି। ସେଇ ରାତିରେ ଅନେକ ସମୟ ପର୍ଯ୍ୟନ୍ତ ନିଦ ଆସିଲା ନାହିଁ। ଭୟ ହେଲା ସେଇ ମୃତ୍ୟୁ ସ୍ୱପ୍ନ ଯଦି ଫେରିଆସେ। ସେଦିନ ମୃତ୍ୟୁ ସ୍ୱପ୍ନଟା ମୋତେ ମୃତ ଭଳି କରି ଦେଇଥିଲା, ସ୍ୱପ୍ନଟା ବାସ୍ତବତା ଅପେକ୍ଷା ବେଶୀ ଶକ୍ତିଶାଳୀ ଥିଲା ବୋଲି। କିନ୍ତୁ ଆଜି ସତ୍ୟଟା ଏତେ ଶକ୍ତିଶାଳୀ ଯେ ମୁଁ ବିଶ୍ୱାସ କରିପାରୁନି କେଉଁଟା ପ୍ରକୃତରେ ସତ୍ୟ। ମୁଁ କ'ଣ ସେଇ ମୃତ୍ୟୁ ସ୍ୱପ୍ନ ଭଳି ନମୁନାଠୁ ଏମିତି ଚିଠି ପାଇବାର ସ୍ୱପ୍ନ ଦେଖିଲି? ଚିଠି ପାଇବା ପରେ ପୁଣି ସ୍ୱପ୍ନ। ଝରଣାର ସନ୍ଧାନରେ ଜଣେ ଅସହାୟ ବଣବୁଦା ଚିରି ଛୁଟିଛି ଆଗକୁ।

ବର୍ତ୍ତମାନ ସମୟ କେତେ ହେବ ଜାଣେନି, କିନ୍ତୁ ସକାଳ ଓ ଦିନଟା ରବିବାର। ସେଲ୍‌ଫରେ କାନ୍ଥଘଣ୍ଟାଟା ବସିଛି। କିନ୍ତୁ ଅନେକ ଦିନରୁ ବନ୍ଦ ହୋଇଯାଇଛି ସେଇଟା। ଘଣ୍ଟା କଣ୍ଟାର ବାର ପାଖରେ ଅଟକି ଯାଇଛି। ଟେପ୍‌ରୁ ପାଣି ଝରିବାର ବିରକ୍ତିକର ଶବ୍ଦ ମୁଁ ନିଜ ହାତରେ ବନ୍ଦ କରି ଦେଇଛି। ମୁଣ୍ଡ ଉପରେ ମଇଳା ସିଲିଂ ଫ୍ୟାନ୍ ସମାନ ଗତିରେ ଘୂରି ଚାଲିଛି। ମୁଁ ମଇଳା ବିଛଣା ଚଦର ଉପରେ ବସିଛି। ମୋର ହାତଗୋଡ଼ ଆଖି କାନ ନାକ ବେକ ପେଟ ଛାତି ଯୌନାଙ୍ଗ ସବୁ ଯେଝା ସ୍ଥାନରେ ଅଛନ୍ତି। କିନ୍ତୁ ସବୁ ଠିକ୍ ଠିକ୍ ଚାଲିଥିଲା ବେଳେ ନମୁନା କାହିଁକି ଏପରି ଚିଠି ଲେଖିଲା।

ନମୁନାର ଅକ୍ଷର ବେଶ୍ ଚମତ୍କାର। ସେ ଯାହା ଲେଖିଛି ସେସବୁ କ'ଣ ସତ? ସତ କଥା– ସବୁ ଭାବପ୍ରବଣ ହୋଇ ଲେଖିଥିଲେ ଏତେ ସୁନ୍ଦର ଅକ୍ଷରରେ ଲେଖିପାରନ୍ତା ନାହିଁ। ଗୋଟିଏ ଚିଠି ଦେଖିଥିଲି ଦଶମ ଶ୍ରେଣୀରେ ପଢ଼ିଲାବେଳେ। ଭାବପ୍ରବଣ ଚିଠି। ମୁଁ ସେତେବେଳେ ହଷ୍ଟେଲରେ ରହୁଥିଲି। ଏମିତି ଏକ ସକାଳେ। ହଠାତ୍ ପିଲାମାନେ ଆସି ମୋତେ ଉଠାଇ ଦେଲେ।

–ସୁପରିଣ୍ଟେଡେଣ୍ଟ ଝୁଲୁଛନ୍ତି!

–ଝୁଲୁଛନ୍ତି?

ବିଛଣା ଚଦର ଗୋଡ଼ତଳେ ଫିଙ୍ଗି ଦୌଡ଼ିଲି। ସୁପରିଣ୍ଟେଣ୍ଡେଣ୍ଟଙ୍କ କବାଟ ଭିତରପଟୁ ବନ୍ଦ। ଝରକା ଦେଇ ଯେଉଁ ଦୃଶ୍ୟ ଦେଖିଲି ତା ଜୀବନରେ ଭୁଲିବାର ନୁହେଁ। ସୁପରିଣ୍ଟେଡେଣ୍ଟ ଓରଫ ଆମ ସାହିତ୍ୟ ସାର୍ ଓରଫ ଭାଗୀରଥି ବେହେରା ଝୁଲୁଥିଲେ କଡ଼ି କାଠରୁ। କଡ଼ି କାଠରୁ ତାଙ୍କ ବେକ ସହ ଯୋଗାଯୋଗ ରଖିଥିଲା କୁଅର ପାଣିଟଣା ରଶି। ତାଙ୍କ ହାତ ଦି'ଟା ଅସହାୟ ଭାବେ ଝୁଲି ରହିଥିଲା। ଜିଭଟା ଅଧେ ପଦାକୁ ବାହାରି ଆସିଥିଲା। ଆଖି ଦୁଇଟା ବିସ୍ଫାରିତ। ସମସ୍ତେ ଯେତେବେଳେ କବାଟ ଭାଙ୍ଗିବାରେ ବ୍ୟସ୍ତ, ମୁଁ ଅନ୍ୟ କର୍ମରେ ବ୍ୟସ୍ତ ଥିଲି। ମୁଁ ଦେଖୁଥିଲି– ଭାଗୀରଥିବାବୁ ଟେବୁଲଟାକୁ ଘର କୋଣରୁ ଘୋଷାରି ଆଣି ମଝି ଘରେ ରଖିଲେ। ତା'ଉପରେ ଛିଡ଼ାହେଲେ। କୁଅ ରଶିଟାକୁ କଡ଼ି କାଠରେ ବାନ୍ଧିଲେ। ଥରେ ଦୁଇଥର ଟାଣି ପରୀକ୍ଷା କରିନେଲେ ଗଣ୍ଠି ଖୋଲିଯିବ କି ନାହିଁ। ତା'ପରେ ସେ ଘରର ଜିନିଷପତ୍ରକୁ ଥରେ ଚାହିଁଲେ। ଝରକା କବାଟ ବନ୍ଦ କଲେ। ଖଣ୍ଡିଏ କାଗଜରେ ଚରଚର କରି କ'ଣ ସବୁ ଲେଖିଲେ। ସେଇଟା କଲମରେ ମାରି ଖଟରେ ତକିଆ ପାଖରେ ରଖିଦେଲେ। ତା'ପରେ ଯନ୍ତ୍ରବତ୍ ଟେବୁଲ ଉପରକୁ ଉଠି ରଶିରେ ଫାଶି ତିଆରି କଲେ। ସେଥିରେ ନିଜ ବେକ ଗଳାଇ ଦେଲେ ଏବଂ ଆଖି ବନ୍ଦ କରି କୌଣସି ପ୍ରିୟଜନ ବା ଈଶ୍ୱରଙ୍କୁ ସ୍ମରଣ କଲେ। ତା'ପରେ ନିଃଶ୍ୱାସ ବନ୍ଦ କରି ଦାନ୍ତପାଟି ଶକ୍ତ କରି ତଳକୁ ଡେଇଁ ପଡ଼ିଲେ। ସେଇ ସମୟରେ ଗୋଇଠା ମାରି ଟେବୁଲଟାକୁ ଓଲଟାଇ ଦେଲେ। ରଶିଟା ତାଙ୍କ କଣ୍ଠନଳୀରେ ଶକ୍ତ

ହୋଇ ବସିଗଲା । ଆଖିରୁ ଲକ୍ଷ ଲକ୍ଷ ଜୁଲୁଜୁଳିଆ ପୋକ ଉଡ଼ିଗଲା । ଧୀରେ ଧୀରେ ଘର ବିଛଣା ଚଉକି ଟେବୁଲ ଏକାକାର ହୋଇ ଲକ୍ଷ ଲକ୍ଷ କୋଟି କୋଟି ଜୁଲୁଜୁଳିଆ ପୋକ ସାରା ପୃଥିବୀରେ ମାଡ଼ିଗଲା ଏବଂ ତା'ପରେ ଲମ୍ବା ଏକ ପୂର୍ଣ୍ଣଚ୍ଛେଦ । ପୂର୍ଣ୍ଣଚ୍ଛେଦ ଆରପଟେ ଭାରୀ କଳାପର୍ଦ୍ଦା ଭଳି ଟାଣୁଆ ଅନ୍ଧକାର ।

କବାଟ ଭଙ୍ଗ ହେଲା । ଭାଗୀରଥି ବାବୁଙ୍କ ଦେହ କାଠ ହୋଇଯାଇଥିଲା । ସେ ସେମିତି ଝୁଲି ରହିଥିଲେ । ପୋଲିସ ଶବ ତଳକୁ ଓହ୍ଲାଇଲା । ଖଟ ଉପରୁ ଚିଠି ମିଳିଲା । ମୁଁ ଏକ ଝଲକରେ ଚିଠିଟା ଦେଖିଲି । କି ସୁନ୍ଦର ଅକ୍ଷର ଭାଗୀରଥି ବାବୁଙ୍କର । ସେ ଚିତ୍ର ମଧ୍ୟ ଆଙ୍କି ପାରନ୍ତି । ଅଥଚ ସେ ଚିଠିର ଅକ୍ଷର କି କଦର୍ଯ୍ୟ ! ହଠାତ୍ ମନେହେଲା ନାହିଁ ସେ ଚିଠିଟା ସେ ଲେଖିଛନ୍ତି ବୋଲି । ଚିଠିରେ ଭାବପ୍ରବଣ କଥା କେତୋଟି ଶେଷରେ ସବୁ ଆତ୍ମହତ୍ୟାକାରୀ ଭାଷାରେ– ସେ ଆତ୍ମହତ୍ୟା ପାଇଁ କେହି ଦାୟୀ ନୁହନ୍ତି, ମୁଁ ନିଜ ଇଚ୍ଛାନୁସାରେ... । ପୋଲିସ ତାଙ୍କ ସେଇ ଅକ୍ଷର ସହ ତାଙ୍କ ପୁରୁଣା ଅକ୍ଷର ମିଳାଇ ଦେଖିଲା, ମିଳିଲା ନାହିଁ । ଖାକି ପୋଷାକ ଆଉ ଟୋପି ଭିତରୁ ବଜ୍ରଗମ୍ଭୀର ସ୍ୱରରେ ବାହାରି ଆସିଲା ଏଇଟା ଆତ୍ମହତ୍ୟା ନୁହେଁ ହତ୍ୟା । ତା' ପରେ ତାଙ୍କ ବିଷୟରେ ଜଣ ଜଣ କରି ପଚରାଗଲା । ପୋଷ୍ଟମର୍ଟମ ପାଇଁ ଶବ ଚାଲିଗଲା ।

ମୁଁ କିନ୍ତୁ ସେଇ ଚିଠିରୁ ତାଙ୍କ ଅକ୍ଷର ପରିଷ୍କାର ଚିହ୍ନିପାରିଲି । ତାଙ୍କର ନ, ମା, ର, ଲ, ସ ଇତ୍ୟାଦି ଅକ୍ଷର ଆଉ କାହାସହ ମିଶିବ ନାହିଁ । ଅବଶ୍ୟ ପୋଷ୍ଟମର୍ଟମ ପରେ ପୋଲିସ ସେଇଟା ଆତ୍ମହତ୍ୟା ବୋଲି ମାନି ନେଇଥିଲା । ମୁଁ ଜାଣେ ତରତରରେ ଭାବପ୍ରବଣ ହୋଇ ଲେଖିଲେ ସୁନ୍ଦର ଅକ୍ଷର ଲେଖିହୁଏ ନାହିଁ । ଅଥଚ ନମୁନା ଏମିତି ଭାବପ୍ରବଣ କଥାକୁ ଏତେ ସୁନ୍ଦର ଅକ୍ଷରରେ ଲେଖିପାରିଲା କେମିତି !

ଅବଶ୍ୟ ମୁଁ ଜାଣେ ନମୁନା ଖୁବ୍ ଭାବପ୍ରବଣ । ଦିନେ କଥାପ୍ରସଙ୍ଗରେ ମୁଁ କହିଥିଲି, ଦିନେ ଦେଖିବ ତୁମେ ଯେତେ ଭଲ ପାଉଥିଲେ ବି ହଠାତ୍ ମୁଁ ତୁମକୁ ଘୃଣା କରିବା ଆରମ୍ଭ କରିଦେବି । ସେଦିନ ଏକଥା କହିବା ବେଳେ ମୁଁ କ'ଣ କହିଲି ଏବଂ ତା'ର ପ୍ରତିକ୍ରିୟା କ'ଣ ସବୁ ହେବ ଭାବି ଦେଖିନଥିଲି । ନମୁନା ବି ହଠାତ୍ କିଛି କହିଲା ନାହିଁ । ସେଦିନ ସଞ୍ଜରେ ମୁଁ ଯେତେବେଳେ ତାଙ୍କ ଘରକୁ ଗଲି ସେ ମୋ ସହ କଥା କହିଲା ନାହିଁ । ମୁଁ ମୋର ପୁରୁଣା ଅଭ୍ୟାସ ନେଇ ତା' ବହିରେ ବୀଭତ୍ସ ନାରୀ ଚିତ୍ର ଆଙ୍କିଲି ଏବଂ ତା' ତଳେ ନମୁନା ବୋଲି ଲେଖିଦେଲି । ତା'ର ଖାତାରେ ଦୁଇ ଚାରିଟା କାର୍ଟୁନ କରି ଉଠିଲା ବେଳେ ସେ ମୋତେ ଚିଠି ଦେଲା ଆଉ ମୋରି ହାତରେ । ଖୁବ୍ ଓଜନିଆ ଚିଠି । ସେଇଟାକୁ ଧରି ଘରକୁ ଆସିଲି । ପଢ଼ିଲି, ପୁଣି ପଢ଼ିଲି । କି ସୁନ୍ଦର ଚିଠି ଲେଖିଛି ନମୁନା । ତା' ଭିତରେ ଏତେ ଚମତ୍କାର ଭାଷା ! କିନ୍ତୁ ଅକ୍ଷର ଭୀଷଣ କଦର୍ଯ୍ୟ, ସେଇ ଭାଗୀରଥି ବେହେରାର ଚିଠି ଭଳି । ଚିଠିରେ ଠାଏଁ ଠାଏଁ ଲୁହ ପଡ଼ି ବତୁରି ଯାଇଥିଲା । ଅକ୍ଷର ବି ଅସ୍ପଷ୍ଟ । ହଠାତ୍ ମୋର ସବୁ ଗୋଳମାଳ ହୋଇଗଲା । ମୋର ଇଚ୍ଛା ହେଲା

ଧାଇଁଯାଇ ନମୁନାର ଗାଲରେ ଠାସ୍ କରି ଚାପୁଡ଼ା ଗୋଟିଏ ମାରିବି। ଚିତ୍କାର କରି କହିବି– ତୁମକୁ ଏ ଧରଣର ଚିଠି ଲେଖିବାକୁ ଶିଖାଇଲା କିଏ ? ତୁମେ କ'ଣ ଭାବୁଛ ମୁଁ ବୋକା ? ମୁଁ କ'ଣ ତୁମ ଅଭିନୟ ବୁଝିପାରୁନି ? ଏମିତି ଭାବପ୍ରବଣତା ଦେଖାଇ ମୋତେ ଭାବପ୍ରବଣ କରିଦେବ ଆଉ ଶେଷରେ ଚମତ୍କାର ପ୍ରତିଶୋଧ ନେବ ! ମୋ ଦେହରୁ ଅନେକ ରାଗର ବକ୍ରରେଖା ବାହାରି ନମୁନାର ଚିତ୍ରସାରା ଜାଲ ଭଳି ହୋଇଗଲା ଏବଂ ଆଶ୍ଚର୍ଯ୍ୟ ସେଇ ଜାଲ ଭିତରେ ଦେଖିଲି ନମୁନା ନିରୀହ କାନ୍ଦୁରା ମୁହଁରେ ମୋତେ ବଲ ବଲ ଚାହିଁଛି। କେମିତି ଖୁବ୍ ଦୟା ଲାଗିଲା ମୋତେ। ତା' ଛବି ଉପରୁ ବକ୍ରରେଖା ସବୁ ଉଭେଇଗଲା। ମୁଁ ତାକୁ ଚିଠି ଲେଖିଲି, ଖୁବ ଭାବପ୍ରବଣ ଓ ଓଜନିଆ ଚିଠି। ସକାଳେ ତାକୁ ସେ ଚିଠି ଦେଲି ପୁଣି ତା'ରି ହାତରେ। ସେ ଇତସ୍ତତଃ ହେଲା କିନ୍ତୁ ବହୁତ କଷ୍ଟରେ ନେଲା, ନେବା ଆଗରୁ କୁହାଇ ନେଲା, ଯେମିତି ସେଇଟା ତା' ପାଖକୁ ମୋର ଶେଷ ଚିଠି ହୁଏ। ପୁଣି ସେଇଦିନ ସଞ୍ଜରେ ଆଉ ଗୋଟେ ଓଜନିଆ ଚିଠି ମୋତେ ଦେଲା ଏବଂ କହିଲା ସେଇଟା ବି ତା'ର ମୋ ପାଖକୁ ଶେଷ ଚିଠି ଏବଂ ତା' ପରେ ମୁଁ ଦେଲି ସେଇଆ କହିଲି ଏବଂ ସେ ଦେଲା ସେଇଆ କହିଲା। ତା' ପରେ ଅନେକ ଶେଷ ଚିଠି ସେ ମୋତେ ଦେଇଛି ଓ ମୁଁ ତାକୁ ଦେଇଛି।

ନମୁନାର ଅନେକ ଭାବପ୍ରବଣ ଚିଠି ମୁଁ ପଢ଼ିଛି, କିନ୍ତୁ ଏମିତି ଚିଠି ସେ କେବେ ଲେଖି ନଥିଲା। ଏମିତି ଗୋଲ ଗୋଲ ଅକ୍ଷରରେ ଭାବପ୍ରବଣ ଚିଠି ସେ ଲେଖିପାରି ନଥିଲା। ହସ୍ତାକ୍ଷର ଲେଖିଲା ଭଳି ଧୀରେ ଧୀରେ ଗୋଲ ଗୋଲ କରି ଲେଖିଛି ଚିଠିଟା।

କିନ୍ତୁ ଚିଠିର କାଗଜ ଏତେ ମଇଳା କାହିଁକି ? ପରିଷ୍କାର କାଗଜରେ ଚିଠି ଲେଖି ପାରିଥାନ୍ତା ! ଅନେକ ଦିନ ବ୍ୟବହାର କରିଥିବା ଖାତାର ପଛପଟ ଯେମିତି ମଇଳା ହୋଇଯାଏ କିମ୍ବା ପୁରୁଣା ନୋଟ ବା ପୁରୁଣା ଦଲିଲ ଯେମିତି ଦେଖାଯାଏ, ଠିକ ସେମିତି ଦେଖାଯାଉଛି ଚିଠିଟା। ନମୁନାର ମଇଳା କାଗଜ କ'ଣ ମୋ ପାଇଁ ଉଦ୍ଦିଷ୍ଟ ! ତା'ର ଅଦରକାରୀ ଜିନିଷଗୁଡ଼ା ସେ କ'ଣ ମୋ ପାଇଁ ପଠାଇବ ବୋଲି ଶପଥ କରିଛି ? ନ ହେଲେ ଏମିତି ମଇଳା କାଗଜରେ କାହିଁକି ଲେଖନ୍ତା ସେ। ମୁଁ ଜାଣେ ଏଇ ଚିଠି ପରେ ମୁଁ ତା' ପାଖରେ ମଇଳା ନୋଟ ଭଳି ଅଚଳ ହୋଇପଡ଼ିଲି। ଅବଶ୍ୟ ମୁଁ ଅନେକ ସମୟରେ ଅପରିଷ୍କାର ଅପରିଚ୍ଛନ୍ନ ରହେ। ମୋର ଲୁଙ୍ଗି ଗେଞ୍ଜି ମଇଳା, ବିଛଣା ଚଦର ମଇଳା, ତକିଆ ଖୋଳ ମଇଳା, ଟ୍ରଙ୍କର ପର୍ଦ୍ଦା ମଇଳା, ଏପରିକି ମୋ ଅଣ୍ଡରଓୟାର ମୁଁ ପେଣ୍ଟ ଭିତରେ ମୋଡ଼ିମାଡ଼ି ରଖି ଦଉଡ଼ିରେ ଝୁଲାଇ ଦିଏ। ଅବଶ୍ୟ ମୋର ଏଇ ମଇଳା ରହିବାର ସମ୍ବାଦ ନମୁନା ଜାଣେ। ତେଣୁ ସେ ମଇଳା କାଗଜରେ ଚିଠି ଲେଖିଥିଲା ? ମୋ ମଇଳା ମୋତେ ସୁହାଏ, କିନ୍ତୁ ଅନ୍ୟର ମଇଳା ମୁଁ ବରଦାସ୍ତ କରିବି କାହିଁକି ?

ମୋ ସେଲ୍‌ଫରେ ଥିବା ଟେବୁଲ ଘଣ୍ଟା ଡାଏଲଟା ବି ତ ମଇଳା।

ସମୟ କେତେ ହେବ କେଜାଣି, ବାହାରେ ଖରା ବେଶ୍ ଉଜ୍ଜ୍ୱଳ ହୋଇ ଉଠିଲାଣି। ଆଜି ରବିବାର। ଅଫିସ ନାହିଁ। କିନ୍ତୁ ନିର୍ଦ୍ଦିଷ୍ଟ କାମ ନାହିଁ। ତଥାପି ଆଜି କିଛି ଗୋଟିଏ ଘଟିବ। କିଛି ଦୁର୍ଘଟଣା ଘଟିବ। ସେଇ ସ୍ୱପ୍ନ। ଜଙ୍ଗଲରେ ଉଲଗ୍ନ ହୋଇ ଦୌଡୁଛି ମୁଁ ଝରଣା ସନ୍ଧାନରେ। ଚାରିଆଡ଼େ ଝରଣାର ଶବ୍ଦ। ଅନ୍ତତଃ ସେଇ ସ୍ୱପ୍ନ ପରେ ମୁଁ ଜାଣେ ନିଶ୍ଚୟ ଦୁର୍ଘଟଣା ଘଟିବ। ଏମିତି ଏକ ସ୍ୱପ୍ନ ଦେଖିଥିଲି। ଟ୍ରେନ ଲାଇନ କଡ଼େ କଡ଼େ ଦୌଡୁଛି ଟ୍ରେନ ଧରିବି ବୋଲି। ଅନେକ ରାସ୍ତା ଦୌଡ଼ିଲା ପରେ ହଠାତ୍ ସିଗ୍ନାଲ ତାର ଉପରେ ଝୁଣ୍ଟି ପଡ଼ିଲି ଏବଂ ମୋ କଡ଼ ଦେଇ ସେଇ ମୁହୂର୍ତ୍ତରେ ହୁସ୍‌ହୁସ କରି ଟ୍ରେନଟା ବାହାରିଗଲା। ମୁଁ ଧରିପାରିଲି ନାହିଁ। କିନ୍ତୁ ପର ମୁହୂର୍ତ୍ତରେ ଅନୁଭବ କଲି ମୁଁ ତ ଟ୍ରେନରେ ବସିଛି ଗୋଟିଏ ନିଛାଟିଆ କମ୍ପାର୍ଟମେଣ୍ଟରେ। ସେ କମ୍ପାର୍ଟମେଣ୍ଟ ଖୁବ୍ ଅପରିଷ୍କାର। ବାଦାମ ଚୋପା, କଦଳୀ ଚୋପା, ଖଣ୍ଡିଆ ବିଡ଼ି, ସିଗାରେଟ ଖୋଳ, ଘୁଗୁନି ଖିଆ ଶାଳପତ୍ରରେ ଭର୍ତ୍ତି। ସେ ଟ୍ରେନଟା କୌଣସି ଷ୍ଟେସନରେ ଛିଡ଼ା ହେଉ ନ ଥିଲା। ମୁଁ ମଧ୍ୟ ଜାଣେ ନାହିଁ ମୋତେ କୁଆଡ଼େ ଯିବାକୁ ହେବ। ହଠାତ୍ ଗୋଟିଏ ମାଛିର ଭଁ ଭଁ ଭଳି ସେଇ କମ୍ପାର୍ଟମେଣ୍ଟର ଶବ୍ଦ ହେଲା। କ୍ରମେ ଶବ୍ଦଟା ଦ୍ରୁତତର ହେଲା। ମନେ ହେଲା ସେଇ ଟ୍ରେନ କଡ଼େ କଡ଼େ ଗୋଟିଏ ସ୍କୁଟର ବି ମାଡ଼ି ଚାଲିଛି। କ୍ରମେ ସେଇ ଶବ୍ଦ ଖୁବ୍ ଭୀଷଣ ହୋଇଉଠିଲା। ଏରୋପ୍ଲେନ ପ୍ରପେଲାରର ଶବ୍ଦ ଭଳି ସେଇ ଶବ୍ଦଟା ପୃଥିବୀସାରା ମାଡ଼ିଗଲା। ମୁଁ ଭୟରେ ଚିତ୍କାର କଲି।

ସେଦିନ ଏଇ ସ୍ୱପ୍ନ ଦେଖିଲା ପରେ ମୋତେ କାହିଁକି କେଜାଣି ମନେ ହେଲା ମୁଁ ହୁଏତ ଆଉ ବଞ୍ଚିବି ନାହିଁ। ଦିନସାରା ମୃତ ଭଳି କଟାଇଲି ଏବଂ ରାତିରେ ଟିଉସନ ଯାଇ ଦୁର୍ଯୋଗ ସୀମା ଘରେ।

ମୁଁ ଅନେକ ଥର ଅନେକ ଝିଅଙ୍କୁ ଚୁମା ଖାଇଛି, କିନ୍ତୁ ସୀମାକୁ ଚୁମା ଖାଇଛି ବେଶୀ। କିନ୍ତୁ କେବେ କିଛି ଦୁର୍ଘଟଣା ଘଟି ନାହିଁ। ସେଦିନ ରାତିରେ ତା' ବେକରେ ମୁହଁ ରହିଥିଲା ବେଳେ ତା' ମାଆ ଘର ଭିତରକୁ ପଶିଆସିଲେ ଏବଂ କଥା ସଙ୍ଗେ ସଙ୍ଗେ ତା' ବାପାଙ୍କୁ ରିଲେ କରିଦେଲେ। ତା ବାପା ଆମ ଦୁଇଜଣଙ୍କୁ ଡାକିଲେ। ମୋ ସାମ୍ନାରେ ସୀମାର ନୋଳା ଫାଟିଲା। ମୁଁ କଦର୍ଯ୍ୟ ଭାଷାରେ ତିରସ୍କୃତ ହେଲି। ସେଦିନ ରାତିରେ ଆତ୍ମହତ୍ୟା କରିବା କଥା ଚିନ୍ତା କରୁ କରୁ ଶ୍ମଶାନରେ ବସି ଢୁଳେଇ ପଡ଼ିଥିଲି।

ମୁଁ ଜାଣେ ଆଜି ସେଇ ଧରଣର କିଛି ଦୁର୍ଯୋଗ ଘଟିବ, ନ ହେଲେ ଏମିତି ସ୍ୱପ୍ନ ଦେଖନ୍ତି କାହିଁକି ? ବରଂ ଏ ସ୍ୱପ୍ନ ଦେଖିଲା ପରେ ଯଦି ନମ୍ରତାଠୁଁ ଚିଠିଟା ପାଇଥାନ୍ତି ତା'ହେଲେ ଆଶ୍ଚର୍ଯ୍ୟ ହେବାର ନଥିଲା।

କିନ୍ତୁ ଶେଷରେ ନମ୍ରତାର ପରିଣତି ଏଇଆ ହେଲା!

ନମ୍ରତା ପାଇଁ ସଙ୍କୁଚିତ କରି ନେଇଥିଲି ନିଜକୁ। ପୃଥିବୀର ସବୁ ନାରୀଙ୍କ ପାଇଁ ମୋ ଘର ସାମ୍ନାରେ 'ପ୍ରବେଶ ନିଷେଧ' ଟାଙ୍ଗି ଦେଇଥିଲି। ମୁଁ ଜାଣେ ମୋ ଚାରିପଟେ

ଅନେକ ନାରୀର ଦେହ ଆଉ ଅନେକଙ୍କ ଭିତରେ ମୋ ପାଇଁ ଶ୍ରଦ୍ଧା ଓ ଭଲ ପାଇବା ଖୁନ୍ଦି ହୋଇ ରହିଛି। ତଥାପି ନମୁନା ପାଇଁ ମୁଁ ସମସ୍ତଙ୍କ ଛାଇ ପାଖରୁ ଦୂରରେ ରହୁଥିଲି। କିନ୍ତୁ ଆଜିଠୁଁ ମୁଁ ପୁଣି 'ପ୍ରବେଶ ନିଷେଧ' ଓଲଟାଇ ତା' ଉପରେ 'ସ୍ୱାଗତମ' ଲେଖିଦେବି। ନିଜର ଦୁଇହାତ ପ୍ରସାରିତ କରି ସମସ୍ତ ନାରୀଙ୍କୁ ଆଲିଙ୍ଗନ କରିବି, ସମସ୍ତଙ୍କୁ ଚୁମ୍ବନ କରିବି। ସମସ୍ତଙ୍କୁ ମୋ ବିଛଣାର ରାସ୍ତା ଦେଖାଇ ଦେବି।

କିନ୍ତୁ ମୁଁ କ'ଣ ଏସବୁ ପାରିବି? ମୁଁ ହୁଏତ ଧର୍ଷଣ କରିବି। ଗୋଟିଏ ମୁହୂର୍ତ୍ତରେ ଭାବିନେବି ଆଖିରେ ଯାହା ଦେଖାଯାଏ, କାନରେ ଯାହା ଶୁଣାଯାଏ, ତା' କେବେହେଲେ ସତ୍ୟ ନୁହେଁ।

ମୁଁ ଆଜି ମେନକା ଘରକୁ ଯିବି। ତା' ପାଖରୁ କ୍ଷମା ମାଗିନେବି। ଗୋଟିଏ ବର୍ଷ ତା'ଉପରେ ବହୁତ ଅତ୍ୟାଚାର କରିଛି ଖାସ୍ ନମୁନା ପାଇଁ। କିନ୍ତୁ ଆଜି ଆଉ ନୁହେଁ।

ପ୍ରତି ଶନିବାର ଅଫିସ ଛୁଟି ହେଲା ବେଳେ ମେନକା କହେ– କାଲି ରବିବାର ଅଛି, ଆମ ଘରକୁ ଆସୁନ। ବୋଉ ତୁମ କଥା ପଚାରୁଥିଲା।

ମୁଁ କହେଁ – କାଲି ଅନେକ କାମ ଅଛି, ଆଉ ଦିନେ କେବେ ଯିବି। ଥରେ ଦିଥର ମେନକା ଘରକୁ ଯାଇଛି ମୁଁ। ବେଶ୍ ପରିଷ୍କାର ପରିଚ୍ଛନ୍ନ ସୁନ୍ଦର ଘର। ଘରେ ବିଧବା ମା' ଆଉ ସାନଭାଇ। ଏଇଟା ମେନକାର ପରିବାର। ଚାକିରି କରେ ମେନକା, ଆରାମରେ ଚଳିଯାନ୍ତି ତିନି ପ୍ରାଣୀ।

ମୁଁ ଅଫିସରେ ଯେଉଁଦିନ ପ୍ରଥମେ ଆସି ଗୋଟିଏ ଚଉକି ଦଖଲ କଲି, ସେଦିନ ତା' ରଙ୍ଗର ଫାଇଲ ସବୁ ଦେଖିଲି। ଦେଖିଲି ଲୋକମାନେ ସରକାରୀ କବାଟର ଛିଦ୍ର ପଥ ଦେଇ ନିଜ ନିଜ ଭିତରେ ଗଛ ଗୁଳ୍ମବରେ ମାତି ଯାଇଛନ୍ତି। ତା'ରି ଭିତରେ ଆଖି ପଡ଼ିଲା ମେନକା ଉପରେ। ଧଳା ଶାଢ଼ି ପିନ୍ଧି ବସିଥିଲା ସେ। ଓଠଟା ଖୁବ୍ ସଫା, ତା' ଉପରେ ଗୋଟିଏ ପରିଷ୍କାର ଫ୍ୟାନ୍ ଖୁବ୍ ସ୍ପିଡ଼ରେ ବୁଲୁଥିଲା। ଅଥଚ ମୋତେ ମନେ ହେଉଥିଲା ସେ ଫ୍ୟାନ୍‌ରୁ ଆଉ କେହି ପବନ ପାଉ ନ ଥିଲେ, ଯେମିତି ଏକା ମେନକା ସବୁ ପବନ ଟାଣି ନେଉଥିଲା। ମୁଁ ବସି ବସି ଫ୍ୟାନ୍ ଘୂରୁଥିବା ଲକ୍ଷ୍ୟ କଲି। ମେନକାକୁ ଚାହିଁଲି। ଲୋକମାନଙ୍କ କଥାବାର୍ତ୍ତା ଶୁଣିଲି। ମେନକାକୁ ଚାହିଁଲି। ଫାଇଲ କୋଣ ପବନରେ ଥରୁଥିବାର ଦେଖିଲି। ମେନକାକୁ ଚାହିଁଲି। ଅଥଚ ପ୍ରଥମ ଦିନମାନଙ୍କରେ ମେନକା ଥରେ ବୋଲି ମୋତେ ମୁହଁ ଟେକି ଚାହୁଁନଥିଲା। ସେଥିପାଇଁ ମୁଁ ହୁଏତ ତା' ପାଇଁ ପ୍ରଥମେ ପ୍ରଥମେ ଟିକିଏ ଆକୃଷ୍ଟ ହୋଇପଡ଼ିଲି।

ଦିନେ ଦେଖିଲି ବସ୍ ଷ୍ଟାଣ୍ଡରେର ମେନକା ଏକା ଗୋଟିଏ ବସ୍‌ରେ ଚଢ଼ିଗଲା। ବସ୍‌ରେ ଅନେକ ଲୋକ ଖୁନ୍ଦି ହୋଇ ରହିଥିଲେ। ମୁଁ ସେଦିନ ତାଠୁ କେତେ ହାତ ମାତ୍ର ଦୂରରେ ରହି ଖୁବ୍ ନୀରବରେ କହୁଥିଲି– ମେନକା ଏ ବସ୍‌ଟା ତୁମ ପାଇଁ ନୁହେଁ। ବସ୍‌ରେ ଯେଉଁ ନିଶୁଆ ଲୋକଙ୍କୁ ଦେଖୁଛ ସେମାନଙ୍କ କଳା ହାତ ବାଛି ତୁମର ଧଳା

ଶାଢ଼ି ନଷ୍ଟ ହୋଇଯିବ। ତୁମ ଅଜାଣତରେ ତୁମ ଛାତି ବେକ ପିଠି ନିତମ୍ବ ଜଙ୍ଘରେ ସେ ନିଶୁଆ କଳା ଲୋକଙ୍କ ଚିହ୍ନ ରହିଯିବ। କିନ୍ତୁ ବସ୍‌ଟା ବୋଧହୁଏ ମେନକାକୁ ଅପେକ୍ଷା କରିଥିଲା। ମେନକା ପାହାଚରେ ପାଦ ଦେବା କ୍ଷଣି ଖାକି ହାପ୍‌ପେଣ୍ଟ ପିନ୍ଧା ଲୋକଟା କବାଟ ଅଧା ବନ୍ଦ କରି ହୁଇସିଲ ବଜାଇ ଦେଲା। ବସ୍‌ର ଚକ ଗଡ଼ିଗଲା। ସେଦିନରୁ କେମିତି ତା ଉପରେ ମୋର ଧାରଣା ସବୁ ଖରାପ ହୋଇଥିଲା।

ଆଉ ଦିନେ ଶୁଣିଲି ସେ କୁଆଡ଼େ ଗୋପାଳପୁର ଯାଇଛି ତା' ଭାଇର ସାଙ୍ଗ ସହ। କଥାଟା ସତ୍ୟ କି ମିଥ୍ୟା ପରୀକ୍ଷା କରିବା ପୂର୍ବରୁ ଦିନେ ଯେତେବେଳେ ମୋ ସହିତ ସେ କଥା ଆରମ୍ଭ କରି ଦୀର୍ଘ ଦେଢ଼ଘଣ୍ଟା ସେ କ'ଣ ଚାହେଁ କି ନ ଚାହେଁ ଗପିଗଲା, ଠିକ୍ ସେତେବେଳେ ମୋର ମନେ ହେଉଥିଲା ବସ୍, ଟ୍ରେନ, ରିକ୍ସାରେ ଚଢ଼ି ଯାଉଥିବା ଲକ୍ଷ ଲକ୍ଷ ଝିଅ ଭଳି ମେନକା ବି ଗୋଟିଏ ସାଧାରଣ ଝିଅ।

ମୋ ଚରିତ୍ରର ଗୋଟିଏ ବଡ଼ ଦିଗ ହେଲା ମୋ ସହ ଯଦି ଜଣେ ଝିଅ କିଛି ସମୟ କଥା କହିବ ତାହେଲେ ହୁଏତ ମୋତେ ଶ୍ରଦ୍ଧା କରି ବସିବ ନ ହେଲେ ପ୍ରେମରେ ପଡ଼ିବ। ମୁଁ ଜାଣେ ନାହିଁ ତା'ପରେ ମେନକା ମୋ ପ୍ରେମରେ ପଡ଼ିଲା କି ମୋତେ ଶ୍ରଦ୍ଧା କରିବା ଆରମ୍ଭ କଲା। ନମୁନାର ଚିଠିର ଭିତରେ ମୁଁ କ୍ରମେ ହଜିଯିବାକୁ ଲାଗିଲି। କ୍ରମେ ନମୁନାର ଚୁମ୍ବନ ଆଲିଙ୍ଗନର ପ୍ରଭାବରେ ଦୁନିଆର ସବୁ ନାରୀଠାରୁ ସମ୍ପର୍କ ତୁଟାଇ ଦେଲି। ନମୁନାର ମିଠା କଥାରେ ପୃଥିବୀର ଅନେକ କିଛି ଭୁଲିଗଲି। ମେନକା କ୍ରମେ ଅଫିସରେ ଗୋଟିଏ ସହକର୍ମୀ ହୋଇଗଲା। ଥରେ ଥରେ ମନ ଖୁସି ଥିବାବେଳେ ମୁଁ ତାକୁ ଚାହେଁ। ଆଖିରେ ଆଖି ମିଶିଗଲେ ସେ ହସିଦିଏ। ଥରେ ଥରେ ଭଲ ଲାଗେ ସେ ମନ ଖରାପ କରି ବସିଥିଲା ବେଳେ। ସେତେବେଳେ ଯାଇ ତା' ସହ ଏଣୁ ତେଣୁ ଗପେ।

ମେନକାକୁ ଥରେ ଥରେ ମୁଁ ଖୁବ୍ ଡରେ। ମନେହୁଏ ସୁବିଧା ପାଇଲେ ଯେମିତି ସେଇ କଥାଟା ସେ ମୋତେ କହି ପକାଇବ। କିମ୍ବା ନିଛାଟିଆ ରାସ୍ତାରେ ଦେଖା ହେଲେ ସେ ମୋତେ ଜାବୁଡ଼ି ଧରି କହିବ–ଜାଣ, ଦୁନିଆରେ ଯାହା କିଛି ପ୍ରସ୍ତୁତି ମୋର ସବୁ ତୁମରି ପାଇଁ।

ମେନକା କାଲି ଅଫିସରେ ମୋତେ କହିନାହିଁ ଯିବା ପାଇଁ। ତେଣୁ ଆଜି ଯିବି। ଆଜି ଅଚାନକ ତା' ଘରେ ପହଞ୍ଚି ତାକୁ ଓ ତା' ଘରର ସମସ୍ତଙ୍କୁ ଚମକାଇ ଦେବି।

ମୁଁ ବାହାରକୁ ଚାହିଁଲି। ଆଜି ଆକାଶରେ ମେଘ ନାହିଁ। ସ୍ୱାମ୍ପା ପଡ଼ିଆରେ ଅନେକ ଧଳା ହଳଦିଆ ଫୁଲ ଫୁଟି ଯାଇଛନ୍ତି। ତା' ଉପରେ ସାନ ସାନ ପ୍ରଜାପତି। ଗୋଟିଏ ସାନ ପିଲା ସାଇକେଲ ତଳ ପଟେ ଗୋଡ଼ ଚଳାଇ ହାପ୍ ପେଡ଼ାଲ କରି ଗଡ଼ିଗଲା। ମୁଁ ଉଚ୍ଚାରଣ କଲି– ଆଗେଇ ଯା।

ମୁଁ କେମିତି ଗୋଟିଏ ପ୍ରକାର ଉତ୍‌ଫୁଲ୍ଲ ହୋଇ ଉଠିଲି।

ଦର୍ପଣ ଆଗରେ ଛିଡ଼ା ହେଲି। ମୁହଁ ସାରା ବଢ଼ିଲା ଦାଢ଼ି। ଖୁବ୍ କରୁଣ ମନେ ହେଲା।

ମୁଁ ପ୍ରକୃତରେ ଲୋକମାନଙ୍କୁ ଭଲପାଏଁ ସେମାନଙ୍କୁ କରୁଣ ଦେଖାଗଲେ। ସେମାନଙ୍କୁ ଭଲ ଲାଗେ ସେମାନଙ୍କ ଦୁର୍ଦ୍ଦଶାଗ୍ରସ୍ତ ମୁହୂର୍ତ୍ତରେ। ତେଣୁ ମୁଁ ବୋଧହୁଏ ମଇଳା ଲୁଗା ପିନ୍ଧେ। ଦାଢ଼ି ବଢ଼ାଇ ରଖେ। ଦର୍ପଣରେ ଯେତେବେଳେ କରୁଣ ମୁହଁ ଦେଖେ ସେତେବେଳେ ମୋ ପ୍ରତି ମୋର ମମତା ବଢ଼ିଯାଏ। ନିଜକୁ ଭଲ ପାଇବାକୁ ଆରମ୍ଭ କରେ।

ମୋର ମନେ ଅଛି ମୁଁ କେତୋଟି ଦିନ ବାପାଙ୍କୁ ଖୁବ୍ ଭଲ ପାଇଥିଲି। ସେତେବେଳେ ମୁଁ ପିଲା। ଖରାଦିନେ ସକାଳୁଆ ସ୍କୁଲରୁ ଫେରି ଗାଧୋଇବାକୁ ଯାଏ। ଗାଧୋଇବାକୁ ଯାଇ ପ୍ରଥମେ ଚଢ଼େ ପଡ଼ିଆ ପାଖ ଆମ୍ବ ଗଛରେ। ଗଛରେ ବସି ଆମ୍ବ ଖାଏ। ତଳେ ଭିକାରି ଭଳି କେତେଟା ସାଇ ଟୋକା ଛିଡ଼ାହୋଇ ଆମ୍ବକୁ ଓ ମୋତେ ଅନାଇ ରହନ୍ତି। ସେମାନଙ୍କୁ ସେତେବେଳେ ବିକଳ ଅବସ୍ଥାରେ ଦେଖିବାକୁ ମୋତେ ଭଲ ଲାଗେ। ଗଛରେ ବସି ଆମ୍ବ ଛଡ଼ାଏ। ଯେଉଁ ଆମ୍ବ ପ୍ରଥମ କାମୁଡ଼ାରେ ଖଟା ଲାଗେ ସେଇଗୁଡ଼ିକ ଫିଙ୍ଗିଦିଏ ତଳେ ଛିଡ଼ା ହୋଇଥିବା ବିକଳ ପିଲାଙ୍କ ଆଡ଼େ। ସେମାନେ ମୁଖ ବିକୃତ କରନ୍ତି ଏବଂ ଉପାୟ ନ ପାଇ ଖାଆନ୍ତି। ମୁଁ ଦେଖେ। ଆମ୍ବ ଗଛରେ ବସି ଆମ୍ବ ଖାଇ ତା' ଟାକୁଆ ପାଣିକୁ ପକାଏ। ପାଣିରେ ଚବ୍ କରି ଶବ୍ଦ ହେଲେ ସେଇ ପିଲାମାନେ ତାହା ଆମ୍ବ ବୋଲି ଭାବି ହୁସ୍ ହୁସ୍ କରି ପାଣିକୁ ପଶିଯାଆନ୍ତି ଏବଂ ଅଣ୍ଡାଳି ଅଣ୍ଡାଳି ଟାକୁଆ ଉଠାନ୍ତି। ପାଣି ଲାଗି ଟାକୁଆ ଲାଳୁଆ ହୋଇଯାଇଥାଏ। ଘୃଣାରେ ସେଇଟାକୁ ପୁଣି ପାଣିରେ ଛାଡ଼ି ଦିଅନ୍ତି। ପାଣି ଚହଲି ଚହଲି ଟାକୁଆ ପାଣି ଭିତରକୁ ଗଲା ବେଳେ ସେମାନେ ମୋ ଉଦ୍ଦେଶ୍ୟରେ ପାଟି କରନ୍ତି। ମୁଁ ଗଛରେ ଥାଇ ମଜା ଦେଖେ।

ଏମିତି ଦିନେ ଖରାବେଳେ ମୁଁ ଗଛରେ ବସି ମଜା ଦେଖୁଥିଲି। ହଠାତ୍ କ'ଣ ହେଲା ବୁଝିପାରିଲି ନାହିଁ। ଗାଁର ଚାରି ପାଞ୍ଚଟି ଲୋକ ହୁସ୍ ହୁସ୍ କରି ପାଣି ଭିତରକୁ ପଶିଗଲେ। ଚାରିଆଡ଼େ କେମିତି ଗୋଟାଏ ଚହଲ ପଡ଼ିଗଲା। ସେମାନେ ଆମ୍ବ ଅଣ୍ଡାଳିଲା ଭଳି ପାଣି ଭିତରେ କ'ଣ ସବୁ ଅଣ୍ଡାଳିବାକୁ ଆରମ୍ଭ କଲେ। କ୍ରମେ ଅନେକ ଲୋକ ଜମା ହେଲେ। ମୁଁ ଗଛରୁ ତଳକୁ ଓହ୍ଲାଇ ଆସିଲି। ଦେଖିଲି ବାପା ନିଷ୍ପଲକ ଆଖିରେ କୁଆଡ଼େ ଚାହିଁଛନ୍ତି ଆଉ ମା ଚିତ୍କାର କରୁଛନ୍ତି। ତା' ପରେ ଗୋଟିଏ ବଡ଼ ଜାଲ ଟଣା ହେଲା। ଜାଲରେ ମାଛ ଉଠିଲା ନାହିଁ। ଉଠିଲା ଗୋଟିଏ ଝିଅ। ଝିଅଟି ମୋ ସାନ ଭଉଣୀ ଲୁସି। ତା' ପେଟରେ ଚାପ ଦିଆଗଲା। ତା' ପାଦ ଧରି ତାକୁ ଘୂରାଇ ଦିଆଗଲା। ପାଟି ବାଟେ କିଛି ଭକ୍ ଭକ୍ ପାଣି ବାହାରିଗଲା। କିନ୍ତୁ ସବୁ ବୃଥା। ଲୁଗା ଗୁଡ଼ାଇ ମଶାଣି ଆଡ଼େ ନେଇଗଲେ ତାକୁ। ସେଇଦିନ ପରେ ବାପାଙ୍କୁ ମୁଁ ନୀରବ ହୋଇଯିବାର ଦେଖିଛି।

ସେ କାହାରି ସହ କିଛି କଥା କହୁ ନ ଥିଲେ, କେବଳ ନିଶ୍ଚଳକ ହୋଇ ଦାଣ୍ଡ ଗଡ଼ିଆର ଆମ୍ବଗଛ ମୂଳେ ବସି ରହୁଥିଲେ। ସେମିତି ଅନେକ ଦିନ ଗଲା। ବାପାଙ୍କ ଗାଲରେ ଦାଢ଼ି ବଢ଼ିଲା। ସେ କେମିତି ଖୁବ୍ କରୁଣ ଦେଖାଗଲେ। ସେଇ କେତେ ଦିନ ମୁଁ ବାପାଙ୍କ ପାଖେ ପାଖେ ପ୍ରାୟ ସବୁବେଳେ ରହିଛି। ବାପାଙ୍କ ଖାଇବା ପର୍ଯ୍ୟନ୍ତ ନ ଖାଇ ଅପେକ୍ଷା କରି ରହିଛି। ମୁଁ ଆତଙ୍କରେ ବାପାଙ୍କ ସହ କଥା କହୁ ନଥିଲି ସେଇ କେତେଦିନ, କିନ୍ତୁ ମୋତେ ଇଚ୍ଛା ହେଉଥିଲା ତାଙ୍କ ପାଦ ଆଉଁଶି ଦେବି, ତାଙ୍କ ପିଠିରେ ହାତ ବୁଲାଇ ଦେବି। ମୁଁ ଆଜି ବୁଝୁଛି ସେଇ ଦିନମାନଙ୍କରେ ବାପାଙ୍କୁ ଯେତେ ଭଲ ପାଉଥିଲି କେବେ ଆଉ ସେତେ ଭଲ ପାଇପାରିବି ନାହିଁ।

ପ୍ରକୃତରେ ଲୋକମାନଙ୍କୁ ମୋତେ ଭଲ ଲାଗେ ସେମାନଙ୍କ ଅସହାୟ ଅବସ୍ଥାରେ।

ଆଜି ମେନକା ଘରକୁ ଯିବାକୁ ହେବ। ଆଜି ନମୁନାକୁ ଭୁଲି ପଡ଼ିବାକୁ ପଡ଼ିବ। ଆଜି କିଛି ଦୁର୍ଘଟଣାର ସମ୍ମୁଖୀନ ହେବାକୁ ପଡ଼ିବ। ତେଣୁ ଭଲଭାବେ ଖିଅର ହେବା ଦର୍କାର।

ଦୁର୍ଘଟଣା କଥା ମନେ ପଡ଼ିଲେ ଗୋଟିଏ ସାନ ଦୃଶ୍ୟ ମନେପଡ଼େ। ଥରେ ରାଜମହଲ ଛକରେ ଗୋଟିଏ ହାଟରୁ ଫେରୁଥିବା ଦରବୁଢ଼ାକୁ ଜିପ୍ ଗୋଟିଏ ଧକ୍କା ଦେଇ ପଳାଇଗଲା। ମୁଁ ଓ ମିଟୁ ଇତ୍ୟାଦି ପାଖରେ ବସି ଗପୁଥିଲୁ। ଉଠି ଦୌଡ଼ିଲୁ। ଲୋକମାନେ ଚାରିଆଡୁ ଦୌଡ଼ି ଆସିଲେ। ଲୋକଟାର ମୁଣ୍ଡରୁ ଗାମୁଛା ଖସିଯାଇ ଦୂରରେ ପଡ଼ିଥିଲା। ଆଳୁ କେତେଟା ଥଳିରୁ ବାହାରି ଗଡ଼ି ଗଡ଼ି ଯାଇ ଦୂରରେ ଥମି ଯାଇଥିଲା। ବାଇଗଣ, ବିଲାତି, ସଜନାଛୁଇଁ ଏପଟ ସେପଟ ହୋଇଯାଇଥିଲେ। ଲୋକଟା ରକ୍ତାକ୍ତ ହୋଇ ପଡ଼ି ଧକଉଥିଲା। ସମସ୍ତେ ଦୃଶ୍ୟ ଦେଖୁଥିଲେ କେବଳ। କିନ୍ତୁ ହସ୍‌ପିଟାଲକୁ ନେବା କଥା କାହାରି ମନକୁ ଆସୁ ନଥିଲା। ଶେଷରେ ଜଣେ କିଏ ଭିଡ଼ ଭିତରୁ ପ୍ରସ୍ତାବ କଲା। କେତେଜଣ ସଚେତନ ହୋଇ ଉଠିଲେ। କିନ୍ତୁ କୌଣସି ରିକ୍ସା ସେ ଲୋକକୁ ନେଇ ଯିବାକୁ ରାଜି ନୁହେଁ ପଇସା ମିଳିବ ନାହିଁ ବୋଲି। ଶେଷରେ ଗୋଟିଏ ଜିପ୍‌କୁ ଅଟକାଇ ସେଥିରେ ରକ୍ତାକ୍ତ ଲୋକଟାକୁ ପଠାଗଲା। ଦୁର୍ଘଟଣା କଥା ମନେ ପଡ଼ିଲେ ସେଇ ଲୋକଟାର କଥା ମନେପଡ଼େ। ମୁଁ ମନେ କରେ ରକ୍ତାକ୍ତ ଅବସ୍ଥାରେ ମୋର ବଢ଼ିଲା ଦାଢ଼ି, ଶୁଖିଲା ମୁହଁ କେମିତି ଦେଖାଯିବ। ସେତେବେଳେ ତ ଅନେକ ଲୋକ ଘେରି ଯାଇ ମୋତେ ଦେଖିବେ। ତେଣୁ ପରିଷ୍କାର ଖିଅର ହୋଇଥିବା ଦର୍କାର।

ମୁଁ ମଗରେ ପାଣି, ସେଫ୍‌ଟିରେଜରରେ ବ୍ଲେଡ଼, ବ୍ରସରେ କ୍ରିମ ସବୁ ସଜେଇ ରଖିଲି। ଦର୍ପଣରେ ମୋ ମୁହଁକୁ କହିଲି– ଆରେ, ପୃଥିବୀରେ ଏମିତି ଆଉ କିଛି ସମୟ ଚଳେଇ ନେ।

ଦୁଇ ଚାରିବୁନ୍ଦା ଡେଟଲେ ପାଣିରେ ପକାଇ ଦେଲି। ପାଣିର ରଙ୍ଗ ଧଳା ହୋଇଗଲା। ସବୁଦିନେ ଡେଟଲ ବାସ୍ନାଟାକୁ ମୁଁ ହସ୍‌ପିଟାଲ ବାସ୍ନା ବୋଲି ମନେ କରେ। ଜୀବନରେ

ଥରେ ଦି'ଥର ମୁଁ ହସ୍‌ପିଟାଲର ଧଳା ବିଛଣାରେ ଶୋଇଛି । କିନ୍ତୁ ହସ୍‌ପିଟାଲର ଗୋଟିଏ ନିର୍ଦ୍ଦିଷ୍ଟ ଗନ୍ଧ ଅଛି ବୋଲି କେବେ ଜାଣି ନ ଥିଲି । ଦିନେ ମୁଁ କଲେଜରୁ ଘରକୁ ଫେରୁଥିଲି ସାଙ୍ଗମାନଙ୍କ ଗହଣରେ । ସାମ୍ନାରେ ଆମରି କ୍ଲାସର ଚାରୋଟି ଝିଅ ଫଲ୍‌ସ ବେଣୀ ଦୋଳାଇ ଦୋଳାଇ ଚାଲିଥିଲେ । ଶରତ ଋତୁର ଅପରାହ୍ନ । ସେଇ ଅପରାହ୍ନରେ ମୃତ୍ୟୁ କିମ୍ବା ଦୁର୍ଘଟଣା କଥା ପ୍ରାୟ ମନେ ପଡ଼େ ନାହିଁ । ସେଇ ଅପରାହ୍ନରେ କୌଣସି ଏକ ନିର୍ବୋଧ କିଶୋରୀକୁ ନଈପଠାର କାଶ ଫୁଲର ଜଙ୍ଗଲକୁ ଭୁଲାଇ ନେଇ ଚୁମା ଖାଇବାକୁ ଇଚ୍ଛା ହୁଏ । ସେଇ ଅପରାହ୍ନରେ ନିଜକୁ ରାସ୍ତା କଡ଼ରେ ଥିବା ବୁଦୁବୁଦୁକିଆ ଜଙ୍ଗଲର ଧଳା ଫୁଲ ଓ ପତ୍ ପତ୍ ପ୍ରଜାପତିମାନଙ୍କ ଭିତରେ ବୁଣି ବୁଣି ଯେତେବେଳେ ଦାୟିତ୍ୱହୀନ ଭାବେ ଆଗେଇ ଚାଲିଥିଲି ହଠାତ୍ ସେତେବେଳେ ସଚକିତ ମୃତ୍ୟୁର ଥଣ୍ଡା ଖବର ଆସି କାନରେ ବାଜିଲା ।

ଆତ୍ମହତ୍ୟାର ଚେଷ୍ଟା ? ଆତ୍ମହତ୍ୟାରେ ବିଫଳ ? ଡାକ୍ତରଖାନା ଦୌଡ଼ିଲି । ଗୋଟିଏ ଖଟ ଚାରିପାଖେ ଅସମ୍ଭବ ଭିଡ଼ । ମଝିରେ ଶୋଇଛି ମୋରି ଭଳି ପେଣ୍ଟ ସାର୍ଟ ପିନ୍ଧା ଜଣେ ତରୁଣ । ଦର୍ଶକ ଭିତରେ ଦୁଇ ଚାରିଜଣ ଆତ୍ମୀୟସ୍ୱଜନ ଓ ବନ୍ଧୁବାନ୍ଧବ । ଗମ୍ଭୀର ମୁହଁରେ ଚଷମାଲଗା ଡାକ୍ତର ଓ ଟାଇଟ୍ କରି ଏପ୍ରନ୍ ବାନ୍ଧିଥିବା ନର୍ସ । ଶୁଣିଲି ତରୁଣଟି ଟ୍ରେନ୍ ଆସୁଥିବା ବେଳେ ତା' ଆଗକୁ ଡିଆଁ ମାରି ଦେଇଥିଲା । କିନ୍ତୁ ହିସାବରେ ଗୋଳମାଳ ହୋଇଯାଇଥିଲା । ସାମ୍ନା ଇଞ୍ଜିନ ତା' ଦେହଟାକୁ ପାଦରେ ଦଳି ନ ଦେଇ ରେଳଲାଇନ କଡ଼ ଅମରୀ ବଣକୁ ଫିଙ୍ଗି ଦେଇଥିଲା ।

ମୁଁ ଦେଖିଲି ଅସମ୍ଭବ ଯନ୍ତଣାରେ ତା' ଦେହ କୁଞ୍ଚିତ ହୋଇ ଉଠୁଛି । ଆଖି ଉପରେ ରକ୍ତ ଜମିଯାଇଚି । ଧଳା ଚଦର ଭିତରେ ଦେହଟା ଖୁବ୍ ଜୋରରେ ଥରି ଉଠିଲା । ତା' ପରେ ହଠାତ୍ ଲାଇନ ଚାଲିଗଲା ଭଳି ଦେହଟା ନିଶ୍ଚଳ ହୋଇଗଲା । ମୁଁ କେମିତି ଗୋଟିଏ ଡେଟଲ ଗନ୍ଧ ପାଇଲି । ବାହାରକୁ ଚାହିଁଲି ସଞ୍ଜ ହୋଇ ଆସୁଛି ।

ରାସ୍ତା ଉପରେ ଜୀଅନ୍ତା ମଣିଷ, ସାଇକେଲ, ରିକ୍‌ସା, ସ୍କୁଟର ଗଡ଼ି ଯାଉଛି । ଜଗତର ଲକ୍ଷ ଲକ୍ଷ ଚଳମାନ ସ୍ରୋତ ଭିତରେ ଗୋଟିଏ ସ୍ରୋତ ବନ୍ଦ ହୋଇଗଲା । ସଞ୍ଜ ଆକାଶରେ ମିଶିଗଲା ସେ । ତା'ର ସ୍ଥିର ମୁହଁ ଉପରକୁ ଧଳା ଚଦର ଟାଣି ଦିଆଗଲା । ଆତ୍ମୀୟସ୍ୱଜନମାନେ ଭୋ ଭୋ ହୋଇ ଉଠିଲେ । ମୁଁ ଆଉ ଥରେ ଉତ୍କଟ ଡେଟଲର ଗନ୍ଧ ଅନୁଭବ କଲି । ସେଇଟା ଠିକ୍ ଡେଟଲର ଗନ୍ଧ ନୁହେଁ । ପଚାଶବ ଉପରେ ଡେଟଲ ଢ଼ାଳି ଦେଲେ ଯେଉଁ ଗନ୍ଧ ହୁଏ ସେଇ ଗନ୍ଧ । ହୁଏତ ସେଇଟା ମୃତ୍ୟୁର ଗନ୍ଧ । ସେଇଟା ହସ୍‌ପିଟାଲର ଗନ୍ଧ ।

ମୋ ସାମ୍ନା ମଗରେ ଧଳା ଡେଟଲ ମିଶା ପାଣିର ଗନ୍ଧ, ମୃତ୍ୟୁର ଗନ୍ଧ ଭଳି, ହସ୍‌ପିଟାଲ ଗନ୍ଧ ଭଳି ମୋର ସ୍ନାୟୁରେ ମାଡ଼ିଗଲା । ବ୍ରସ ଘୂରାଇ ଗାଲ ସାରା ଫେଣ କଲି । ସେଫ୍‌ଟିରେଜରରେ ଧୀରେ ଧୀରେ ଚାଞ୍ଛିନେଲି ଗାଲ ଉପରୁ ଫେଣମିଶା ଲୋମମୂଳ ।

ବେଙ୍କରେ ସେଫଟିରେଜର ଚାଲୁଥିଲା ବେଳେ ଗୋଟିଏ ମୁହୂର୍ତ୍ତ ପାଇଁ କ୍ଷୀଣ ଇଚ୍ଛା ହେଲା ବ୍ଲେଡ୍‌ଟା କାଢ଼ି ଏପଟେ ଲଗାଇ ଟାଣି ଦେଲେ କେମିତି ହୁଅନ୍ତା ! ସବୁ ଫେଣ କ୍ରମେ ପରିଷ୍କାର ହୋଇଗଲା, ଦର୍ପଣ ଭିତରେ ଗୋଟିଏ ସାଧାରଣ ଚେହେରାର ଲୋକ ଆତ୍ମପ୍ରକାଶ କଲା । ଟିକିଏ ଲମ୍ବା ନାକ, ବଡ଼ ଆଖି, ଚଉଡ଼ା ଓଠ । ଦେଖିଲି ଓଠ ତଳେ ଗୋଟିଏ ରକ୍ତରେଖା, ବ୍ଲେଡ୍‌ଟା ବସିଯାଇଛି । ରକ୍ତ ଦେଖି ଧଡ଼୍ କରି ନମୁନା କଥା ମନେ ପଡ଼ିଗଲା ।

ଅନେକ ସମୟ ତା' କଥା ମନେପଡ଼ି ନଥିଲା । ଡେଟଲ ପାଣି ମଇଳା ହୋଇ ଉଠିଲାଣି, ସେଥିରେ ଭାସୁଛି ଫେଣ ଆଉ ଲୋମମୂଳ । ନମୁନା ମଇଳା କାଗଜରେ ଚିଠି ଲେଖିଛି ।

ଓଠ ତଳେ ରକ୍ତରେଖା କ୍ରମେ ମୋଟା ହୋଇ ଉଠୁଛି । ଥରେ ପେନ୍‌ସିଲ କାଟୁ କାଟୁ ହାତରେ ବସିଗଲା ବ୍ଲେଡ୍‌ଟା । ଫିନ୍ ଫିନ୍ ହୋଇ ରକ୍ତ ମାଡ଼ି ଆସିଲା । ମୁଁ ନମୁନାକୁ ଦେଖାଇବା ପାଇଁ ଖୁବ୍ ଜୋରରେ ଆଙ୍ଗୁଠିଟା ଚିପି ଧରିଲି ଯେପରିକି ବେଶି ରକ୍ତ ବାହାରିବ । ମୁହଁରେ ଭୀଷଣ ଯନ୍ତ୍ରଣାର ଅଭିବ୍ୟକ୍ତି ଆଣିଲି । ତଥାପି ନମୁନା ଚାହିଁଲା ନାହିଁ । ସେ ଗୋଟିଏ ପତ୍ରିକା ଭିତରେ ପୂରାପୂରି ବୁଡ଼ି ରହିଥିଲା । ଶେଷରେ ଗୋଟିଏ ଯନ୍ତ୍ରଣାସୂଚକ ଶବ୍ଦ କଲି । ନମୁନା ମୋତେ ଚାହିଁଲା । ମୋ ମୁଖମଣ୍ଡଳ ଆହୁରି ଯନ୍ତ୍ରଣାରେ କୁଞ୍ଚିତ ହୋଇଗଲା । ସେ ଉଠି ମୋ ପାଖକୁ ଧାଇଁ ଆସିଲା । ଏମିତି ବ୍ୟସ୍ତ ହୋଇ ଉଠିଲା ଯେପରିକି ତା' ଶାଢ଼ି କିମ୍ବା ବ୍ଲାଉଜ ଚିରି ମୋ ଆଙ୍ଗୁଠିରେ ପଟି ବାନ୍ଧିଦେଲେ ବି ଶାନ୍ତ ହୋଇ ରହିପାରିବ ନାହିଁ । ସେ ମୋ ହାତରେ ଆୟୋଡ଼ିନ ଲଗାଇଦେଲା । ମୁଁ ତା'ପରେ ଯାଇ ପ୍ରକୃତ ଯନ୍ତ୍ରଣାଟା ଅନୁଭବ କଲି । ତା' ମୁହଁକୁ ଲକ୍ଷ୍ୟ କରି ଦେଖିଲି ସେ ଏମିତି ମୁହଁ କୁଞ୍ଚିତ କରୁଛି ଯେପରିକି ଯନ୍ତ୍ରଣାଟା ମୋର ନୁହେଁ ତା'ର । ମୁଁ ବୁଝିନେଲି ମୋଠୁଁ ବଳିଗଲା ନମୁନା । ସେତେବେଳେ ମୋର ଅନୁମାନ କରିନେବା ଉଚିତ ଥିଲା ଦିନେ ନା ଦିନେ ସେ ମୋତେ ଏମିତି ଚିଠି ଲେଖିବ ।

ମୁଁ ମୁହଁ ହାତ ଧୋଇଲି । ଦାନ୍ତ ଘଷିଲି । ପାଣି ବନ୍ଦ ହୋଇଗଲାଣି । ଏବେ ଆଉ ଗାଧୋଇ ଲାଭ ନାହିଁ । ବରଂ ଫେରିଆସି ଗାଧୋଇବି । ଜମା ପେଣ୍ଟ ପିନ୍ଧିଲି । ତକିଆ ତଳୁ ଦଶଟଙ୍କିଆ ନୋଟଟା ବାହାର କଲି । ଏ ମାସ ଏଇଟା ସମ୍ବଳ । ପକେଟରେ ରଖିଲି । ନମୁନାର ଚିଠିଟା ମୋଡ଼ି ମୋଡ଼ି ପଛ ପକେଟରେ ରଖିଲି । ସାଇକେଲଟାର ଚକ ଚିପି ଦେଖିଲି ହାଓ୍ବା କମିଗଲାଣି । ସବୁଦିନେ ସକାଳେ ଏମିତି । ହାଓ୍ବା କମିଯାଇଥାଏ । ଫଳରେ ହାଓ୍ବା ଭର୍ତ୍ତି କରି ଟାଇଟ କରିଦିଏ । ସକାଳକୁ ନରମିଯାଏ ସେଇଟା । ଏବେ ପମ୍ପ ଦେବାକୁ ପଡ଼ିବ । ସାଇକେଲଟା ବାହାରକୁ ବାହାର କଲି । କବାଟ ବନ୍ଦ କରି ତାଲାରେ ଚାବି ଘୂରାଇ ଚାବିଟା ବାହାର କରିନେଲି । ତାଲାଟା ଟାଣି ପରୀକ୍ଷା କରିନେଲି ଠିକ ବନ୍ଦ ହୋଇଛି କି ନାହିଁ । ମୁଁ ସବୁଦିନେ ଏମିତି ଟିକିଏ ବେଶି ସାବଧାନ । କୌଣସି ସ୍ଥାନରେ ବସିଥିଲେ ଉଠିବା ବେଳେ ଠିକ ମନେ କରିନିଏ ମୋ ହାତରେ ବହି ଗଗଲସ ଇତ୍ୟାଦି

ଥିଲା କି ନାହିଁ। ତଥାପି ବି ଅନେକ ଜିନିଷ ମୁଁ ଏଣେ ତେଣେ ଛାଡ଼ିଯାଏଁ, ଛାଡ଼ିଯିବାକୁ ହୁଏ। ମୁଁ ମୋର ସାବଧାନତାରେ ଏତେ ବିଶ୍ୱାସୀ ଥିଲି ଯେ କେବେସୁଦ୍ଧା ସ୍ୱପ୍ନରେ ଭାବି ନଥିଲି ନମୁନା ମୋତେ ଏମିତି ଚିଠି ଲେଖିବ। କିନ୍ତୁ ମୁଁ ଏବେ ଜାଣୁଛି ଆଉ ଟିକେ ବେଶି ସାବଧାନ ହୋଇଥିଲେ ନମୁନାର ଚେହେରାଟା ଆହୁରି ଆଗରୁ ଦେଖିପାରିଥାନ୍ତି।

କିନ୍ତୁ ଗୋଟିଏ ଘଟଣା ପରେ ମୁଁ ତା' ଉପରେ ଖୁବ୍ ଆସ୍ଥାବାନ ହୋଇ ଉଠିଥିଲି। ସେଇ ଘଟଣା। ନମୁନା ତା' ବୋଉ ଓ ଭାଇ ସହ ତା' ମାମୁ ଘରକୁ ଯାଉଥିଲା। ବ୍ରହ୍ମପୁରରୁ ବେଶ୍ କିଛି ବାଟ ଯିବାକୁ ହୁଏ। ମୁଁ ବାହାରିଲି ସେମାନଙ୍କ ସାଙ୍ଗରେ। ତା' ବୋଉଙ୍କୁ କହିଲି, ବ୍ରହ୍ମପୁରରେ କାମ ଅଛି। ଅବଶ୍ୟ ବ୍ରହ୍ମପୁରରେ କାମ ଅଛି ବୋଲି କହି ସାଥିରେ ଯିବା ପାଇଁ ନମୁନା ହିଁ ମୋତେ ଅନୁରୋଧ କରିଥିଲା।

ଶେଷରେ ଆମେ ପାସେଞ୍ଜର ଟ୍ରେନରେ ଚଢ଼ିଲୁ, ଯଦିବା ମୋର ଓ ନମୁନା ବ୍ୟତୀତ ଅନ୍ୟମାନଙ୍କ ଇଚ୍ଛା ଥିଲା ଏକ୍‌ସପ୍ରେସରେ ଯିବା ପାଇଁ। ମୁଁ ଯୁକ୍ତି ବାଢ଼ିଥିଲି ଏକ୍‌ସପ୍ରେସରେ ଜାଗା ମିଳିବା ମୁସ୍କିଲ। ତେଣୁ ପାସେଞ୍ଜରରେ ଶୋଇବସି ଆରାମରେ ଯିବା ଭଲ। ଅବଶ୍ୟ ପାସେଞ୍ଜରରେ ଯିବା ଆମ ଦୁଇଜଣଙ୍କର ପ୍ଲାନ ଥିଲା, କାରଣ ପାସେଞ୍ଜରରେ ବେଶୀ ସମୟ ଲାଗିବ ଏବଂ ତା' ଫଳରେ ଆମେ ବେଶୀ ସମୟ ପାଖାପାଖି ବସିପାରିବୁ। ଟ୍ରେନରେ ଚଢ଼ିଲୁ। ରାତି। ପର ଷ୍ଟେସନରେ କେତେଜଣ ଫୁଟବଲ ଖେଳାଳି ସେଇ ଡବାରେ ଝର୍କା ପାଖରେ ନମୁନାର ସୁନ୍ଦର ମୁହଁ ଦେଖି ଉଠିଲେ। ସେଇଟା ବେଶୀ ସ୍ୱାଭାବିକ। ଷ୍ଟେସନରେ ଗାଡ଼ି ଯେତେବେଳେ ଧୀରେ ଧୀରେ ପଶୁଥିଲା ମୁଁ ସେମାନଙ୍କୁ ଛିଡ଼ା ହୋଇଥିବାର ଦେଖିଲି। ଭାବିଲି ଯଦି ସେମାନେ ଆମ ଡବାକୁ ନ ଆସନ୍ତି ତା'ହେଲେ ବୁଝିବି ସେମାନଙ୍କ ପୌରୁଷ ନାହିଁ, ନ ହେଲେ ନମୁନା ସେମାନଙ୍କ ପାଇଁ ସୁନ୍ଦରୀ ନୁହେଁ। କିନ୍ତୁ କିଛି ସମୟ ପରେ ଠିକ୍ ଟ୍ରେନ ଛାଡ଼ିବା ମୁହୂର୍ତ୍ତରେ ସେମାନଙ୍କ ପୌରୁଷ ଜାହିର କରିବା ପାଇଁ ଓ ନମୁନା ସୁନ୍ଦରୀ ବୋଲି ପ୍ରମାଣ କରିବା ପାଇଁ ଦୌଡ଼ିଦୌଡ଼ି ଆସି ସେଇ ଡବାରେ ପଶିଲେ। ନମୁନାକୁ ଚାହିଁ ସେମାନଙ୍କ ସାଙ୍କେତିକ ଭାଷାରେ କିଛି ମନ୍ତବ୍ୟ ପାସ୍ ଦେବା ଆରମ୍ଭ କରିଦେଲେ। ମୁଁ ନମୁନାକୁ ଚାହିଁଲି।

ସେ ଖୁବ୍ ଉତ୍‌ଫୁଲ୍ଲ ଥିଲା। ସେଇଟା ବେଶୀ ସ୍ୱାଭାବିକ ନମୁନା ପକ୍ଷରେ।

ସେମାନଙ୍କ ମନ୍ତବ୍ୟଗୁଡ଼ା ନମୁନା ଓ ମୋ ମଝିରେ ପଶିବା ଆଗରୁ ମୁଁ ସେମାନଙ୍କ ସହ କଥାବାର୍ତ୍ତା ଆରମ୍ଭ କରିଦେଲି। ବୁଝିଲି ସେମାନେ ଆଗ ଷ୍ଟେସନରେ ଓହ୍ଲାଇଯିବେ। ନମୁନା ଏକଥା ଶୁଣି କେମିତି ବିମର୍ଷ ହୋଇଉଠିଲା। ମୋ ଭିତରେ କେମିତି ଏକପ୍ରକାର କଳା ଧୂଆଁ ମାଡ଼ିଗଲା। କ୍ରମେ ଫୁଟବଲ ଖେଳାଳିମାନେ ସେମାନଙ୍କ ଷ୍ଟେସନରେ ଓହ୍ଲାଇ ଯେ ଯା'ର ଘରମୁହାଁ ହେଲେ। ରାତି ଗାଢ଼ ହୋଇ ଆସିଲା। ଦୂର ଗାଁ ଗଣ୍ଡାର ଆଲୁଅ ଲିଭି ଲିଭି ଆସିଲା। ଷ୍ଟେସନମାନଙ୍କରେ ଲୋକଙ୍କ ଉଠିବା ଓହ୍ଲାଇବା କମିଆସିଲା।

ନମୁନାର ବୋଉ ଗୋଟିଏ ବେଞ୍ଚରେ ଶୋଇଗଲେ। ତା' ଭାଇ ଉପରକୁ ଉଠିଯାଇ ଗୋଟିଏ ଗପ ବହି ତା' ଆଖି ଆଗରେ ମେଲି ଧରିଲା। ମୁଁ ନମୁନାକୁ ଚାହିଁଲି। ନମୁନାର ଅଲରା ବାଳ ଓ ଗାଲକୁ ଛୁଇଁ ଆସି ପବନ ମୋ ଦେହରେ ବାଜୁଥିଲା। ନମୁନା ଆଖି ମିଞ୍ଜି ମିଞ୍ଜି କରି ଝର୍କା ବାହାରର ଅନ୍ଧକାରକୁ ଚାହିଁଥିଲା। ଗାଲରେ ଗୋଟିଏ ହାତ। ମୁଁ ତା' ପାଖରୁ କ୍ରମେ ଦୂରେଇ ଆସିଲି। ସେ ବାହାରୁ ମୁହଁ ଫେରାଇ ଆଣି ଡବାର ସମସ୍ତଙ୍କୁ ଦେଖାଇ ଦେଲା। ସମସ୍ତେ ଢୁଳେଇବାକୁ ଆରମ୍ଭ କଲେଣି। ତା' ଭାଇ ମୁହଁ ଉପରେ ଗପ ବହି ରଖି ଆଲୁଅ ଉହାଡ଼ କରି ଅନ୍ଧକାର ରାଜ୍ୟକୁ ଉଡ଼ିଗଲାଣି। ନମୁନା ମୋ ପାଖକୁ ଲାଗିଆସିଲା। ମୁଁ ତା'ର ଓଠ ଗାଲ ବେକ ଛାତି ପେଟ ଚାରିଆଡ଼େ ମୁହଁ ବୁଲାଇନେଲି। କିଛି ସମୟ ପରେ ବୁଝିପାରିଲି ନମୁନାର ରକ୍ତରେ ଅଶ୍ୱମେଧ ଘୋଡ଼ା ଟଗ୍‌ବଗ୍ ଦୌଡ଼ିବାକୁ ଆରମ୍ଭ କଲାଣି। ତା'ର ଆଖି ନିଦୁରା ହୋଇ ଆସିଛି। ଓଠ ଥରିବାକୁ ଆରମ୍ଭ କଲାଣି। ମୁଁ ଛାଡ଼ିଦେଲି। ଉଠି ପଡ଼ିଲି। ଲାଭାଟରୀ ଯାଇ ମୁହଁ ହାତ ଧୋଇ ଆସି ବସିଲି। ତା'ପରେ କଥାବାର୍ତ୍ତା ଆରମ୍ଭ କରିଦେଲି।

—ନମୁନା, ଚାଲ କୁଆଡ଼େ ପଳାଇଯିବା।

—କେବେ ?

—ମୁଁ ଯଦି ଏବେ କହେ !

—ଚାଲିଯିବି।

—ଚାଲ, ଆଗ ଷ୍ଟେସନରେ ଓହ୍ଲାଇଯିବା।

—ତା'ପରେ ?

—ତା'ପରେ ବିପରୀତ ଆଡ଼େ ଯାଉଥିବା ଟ୍ରେନରେ ଚଢ଼ିଯିବା।

—ତା'ପରେ ?

—ତା'ପରେ ସିଧା କୌଣସି ଅଜଣା ସ୍ଥାନକୁ।

—ତା'ପରେ ?

—ତା'ପରେ ଅନେକ ଲୋକର ଜଙ୍ଗଲରେ ହଜିଯିବା।

—ତା'ପରେ ?

—ତା'ପରେ ମୁକ୍ତ ଜୀବନଯାପନ ଓ ଶେଷରେ ମୃତ୍ୟୁ ପାଇଁ ଅପେକ୍ଷା।

—ମୃତ୍ୟୁ ପାଇଁ ?

—ଦିନେ ତୁମେ କହିଥିଲ ମୋ ସହ ମରିବାକୁ ଚାହେଁ।

—କିଛି ସମୟ ଅଟକିଗଲା ନମୁନା। ତା'ପରେ ଗମ୍ଭୀର ହୋଇ କହିଲା–

—ମୁଁ ପ୍ରସ୍ତୁତ।

ତା' ପରେ ପରେ ଷ୍ଟେସନ ଆସିଗଲା। ମୁଁ ସମସ୍ତଙ୍କ ନିଦୁରା ମୁହଁକୁ ଦେଖିଲି। କିନ୍ତୁ ନମୁନାର ପ୍ରସ୍ତୁତି ପରୀକ୍ଷା କରିବା ପାଇଁ ତାକୁ ଟ୍ରେନରୁ ଓହ୍ଲାଇଲି ନାହିଁ। ଏକା ଓହ୍ଲାଇଯାଇ ସିଗାରେଟ ଧରାଇଲି।

ସେଦିନ ନମୁନା, ତା' ବୋଉ ଓ ଭାଇକୁ ଛାଡ଼ି ଚଳନ୍ତା ଟ୍ରେନରୁ ମୋ ସହ ଓହ୍ଲାଇ ଯିବାକୁ ପ୍ରସ୍ତୁତ ହୋଇଯାଇଥିଲା, ଅଥଚ ଆଜି ସେଇ ନମୁନା ଏମିତି ଲେଖିପାରିଲା ?

ମୋତେ ଖୁବ୍ ଶୀଘ୍ର ତାକୁ ଭୁଲିଯିବାକୁ ପଡ଼ିବ। ତା' ଚିଠିର ଭାଷା ମୋତେ ଭୁଲିଯିବାକୁ ହେବ। ନ ହେଲେ ବଞ୍ଚିବା ମୁସ୍କିଲ। ତା' ବାହାଘର ପରେ ବି ତା'ର ଭୂତ ମୋତେ ଦିନରାତି ହନ୍ତସନ୍ତ କରି ମାରିବ।

ମୁଁ ସାଇକେଲ ଦୋକାନ ଆଡ଼େ ସାଇକେଲ ଗଡ଼ାଇ ଗଡ଼ାଇ ଆଗେଇଗଲି। ସଞ୍ଜରେ ଯେତେ ହାଓ୍ବା ଭର୍ତ୍ତି କରି ଦେଇଥିଲେ ବି ସକାଳେ କେଉଁ ଏକ ଅଦୃଶ୍ୟ ଛିଦ୍ରପଥ ଦେଇ ସବୁ ପବନ ବାହାରିଗଲା। ସାଇକେଲ ଦୋକାନରେ ହୃତ୍‌ପିଣ୍ଡ ଭଳି ନାଲି ଟିଉବ୍ ପାଣିରେ ବୁଡ଼ାଇ ପରୀକ୍ଷା କରିଥିଲା କଳା ହାଫ୍‌ପେଣ୍ଟ ପିନ୍ଧା ପିଲାଟା। କିନ୍ତୁ ଛିଦ୍ରପଥ ବାହାର କରିପାରିଲାନି। କେବଳ ଘୋଷଣା କଲା ଟିଉଟା ବଦଳାଇବା ଦର୍କାର। ଥରେ ଏମିତି ରବିବାର ନମୁନା ମନାକଲା ସିନେମା ଯିବା ପାଇଁ। ମୁଁ ମାନି ନ ଥିଲି, କାରଣ ମୋ ପକେଟରେ ଆଗରୁ କାଟିଥିବା ଟିକଟ୍‌ଟା ଚୁପ୍‌ଚାପ୍ ଆତ୍ମଗୋପନ କରି ରହିଥିଲା। ମୁଁ ଯେତେବେଳେ ଉଠିଲି ଯିବା ପାଇଁ ନମୁନା ଯାଇ ମୋ ସାଇକେଲରୁ ସବୁ ପବନ ବାହାର କରିଦେଲା। ମୁଁ ସବୁଦିନେ ଜିଦ୍‌ଖୋର। ଚାଲିଗଲି, ଯାଇ ସିନେମା ଦେଖିଲି।

ସେଦିନ ନମୁନା ହୃତ୍‌ପିଣ୍ଡ ଭଳି ନାଲି ଟିଉବ୍‌ରୁ ପବନ ବାହାର କରି ଦେଇଥିଲା, ଆଉ ଆଜି ଆପେ ଆପେ ପବନ ବାହାରି ଯାଉଛି। ମୋତେ ପବନ ଭର୍ତ୍ତି କରିଦେବାକୁ ହେବ।

ମୁଁ ପାଣି ଟାଙ୍କିଟା ଅତିକ୍ରମ କରିଗଲି। ସବୁଦିନ ମୁଁ ପାଗଳାଟାକୁ ଦେଖେ ସେଇ ପାଣିଟାଙ୍କି ତଳେ। ସେ ଦିନରାତି ସକାଳ ସଞ୍ଜ ସବୁବେଳେ ସେଇଠି ରହେ। ତା' ଉପର ଦେଇ ଖରା ଯାଏ, ବର୍ଷା ଯାଏ, ଶରତ ଶୀତ ବସନ୍ତ ସବୁ ଆସେ ଯାଏ। ବଢ଼ିଲା ଦାଢ଼ି, ଲମ୍ବା ବାଳ, ଦେହରେ ମିଲିଟାରୀ କୁର୍ତ୍ତା। ଆଣ୍ଠୁ ପାଖରେ ଫଟା ଖାକି ପେଣ୍ଟ। ପାଖରେ ଥାଏ ଦୁଇ ଚାରିଟା ଭଙ୍ଗା ଇଟା। କୁକୁର ଦେଖିଲେ ପାଗଳାଟା ହଠାତ୍ କ୍ଷିପ୍ତ ହୋଇ ଉଠେ। ପାଖରେ ଥିବା ଭଙ୍ଗା ଇଟା ଫୋପାଡ଼େ। ଦିନେ ଦେଖିଥିଲି ଗୋଟିଏ ଲୋମଉଠା ଧେଡ଼ୀ କୁତୀଟା ସେଇବାଟେ ଯାଉଁ ଯାଉଁ ଠିଆହୋଇ ପଡ଼ିଲା। ପାଗଳାଟା ଜମେଇ ରଖିଥିବା ଇଟା ପଥର ସବୁ ଫିଙ୍ଗିଲା। ସେ କୁତୀଟାର ଦେହରେ ବାଜିଲା ନାହିଁ। ଶେଷରେ ଉପାୟ ନ ପାଇ ତା'ର କଳେଇକରା ଥାଳିଟା ଫିଙ୍ଗିଲା। ତଥାପି ବାଜିଲା ନାହିଁ। କୁତୀଟା ବରଂ ଥାଳିଟାକୁ ଯାଇ ଶୁଙ୍ଘିଲା। ପାଗଳଟା କ୍ରମେ କ୍ଷିପ୍ତ ହୋଇ ଉଠୁଥିବାର

ମୁଁ ଦେଖିଲି। ମନେ ହେଲା ସେ ଯେପରି ରାଗରେ ଢୋ କରି ଫାଟିଯିବ। ପାଗଳଟାକୁ ବଞ୍ଚାଇବା ପାଇଁ ମୁଁ କୁତୀଟା ଉଦ୍ଦେଶ୍ୟରେ ପଥରଟାଏ ଫିଙ୍ଗିଲି। କେଁ କରି ଶବ୍ଦ କରି ପଳାଇଲା। ପାଗଳଟା ମୋ ଆଡ଼େ ଚାହିଁ ହସିଲା, କେମିତି ଏକ ଲାଜମିଶା ମୁହଁ ତଳକୁ କଲା।

ପରେ ଶୁଣିଛି ପାଗଳଟାର ନାମ ବିଶ୍ୱଜିତ୍। ଗରିବ ଘରର ପିଲା ଥିଲା। ତାଙ୍କ ଘର ପାଖରେ ଗୋଟିଏ ବଡ଼ ତିନି ମହଲା ଘର। ଲନ୍‌ରେ ଫୁଲ। ତକ୍‌ମା ଲଗା ଦରୱାନ। ଗୋଟିଏ ହାଲୁକା ନୀଳରଙ୍ଗର ଗାଡ଼ି ପେଁ କରି ଗେଟ୍‌ର ପିତ୍ତଳ ନେମପ୍ଲେଟ ଉପରେ ଆଲୁଅ ପକାଇଲେ ଦରୱାନ ଛୁଟିଯାଏ। ଗାଡ଼ିର କବାଟ ଖୋଲି ସାଲ୍ୟୁଟ୍ ଦିଏ। ବିଶ୍ୱଜିତ୍ ତା' ଘର ଝର୍କାରୁ ଏସବୁ ଦେଖେ। ଦେଖେ ତିନି ମହଲା ଘର ଝର୍କାର ପତଳା ପର୍ଦା ସେପଟେ ଗୋଟିଏ ପରୀ ଏପଟ ସେପଟ ହେଉଛି। ଗୋଟିଏ ବଡ଼ ଆକ୍ୱାରିୟମ ଭିତରେ ଯେପରି ମତ୍ସ୍ୟକନ୍ୟା ଖେଳି ବୁଲୁଛି। ବିଶ୍ୱଜିତ୍ ଦେଖେ କେତେବେଳେ ପରୀଟା ଘର ଭିତରେ ହାଲୁକା ନୀଳ ଆଲୁଅ ବୁଣି ଚଉକିରେ ବସିଛି ତ କେତେବେଳେ ଅଧାଲିଭା ଅପରାହ୍ଣର ଆଲୁଅରେ କୋଠା ଉପରେ ଛିଡ଼ା ହୋଇ ମୁଣ୍ଡରେ ପାନିଆ ଚଳାଉଛି।

ରାସ୍ତାଘାଟରେ ସେଇ ପରୀକୁ ଅନେକଥର ଦେଖିଛି ବିଶ୍ୱଜିତ୍। ବିଶ୍ୱଜିତ୍ ସବୁଦିନେ ପ୍ରାୟ ଟିକେ ଲାଜୁରା ଆଉ ନୀରବ ପ୍ରକୃତିର। ତେଣୁ ପୃଥିବୀରେ ଯେ ବିଶ୍ୱଜିତ୍ ବୋଲି କେହି ଅଛି ଏ କଥା ଝିଅଟା ବୁଝିପାରେ ନାହିଁ। ବିଶ୍ୱଜିତ୍ ଦେଶୀ ବିଦେଶୀ ଅନେକ ବହି ପଢ଼େ। ହଠାତ୍ ରହସ୍ୟଜନକ ଭାବେ ଅନ୍ତର୍ହିତ ହୋଇଯାଏ ଥରେ ଥରେ। ଘଣ୍ଟା ଘଣ୍ଟା ନଈ କୂଳରେ କିମ୍ୱା ସହରଠାରୁ ଦୂର କେଉଁ ଏକ ଖୋଲା ପଡ଼ିଆରେ ବସି ବକ୍ ବକ୍ କରେ।

ସେଇ ବିଶ୍ୱଜିତ୍ ମନରେ ହଠାତ୍ ବୋଧହୁଏ ଅଜବ ଖିଆଲ ଚାପିଲା। ତିନିମହଲା କୋଠାରେ ଥରେ ଝିଅଟାକୁ ସାକ୍ଷାତ କରିବ ଓ କହିବ–

–ମୁଁ ତୁମକୁ ଭଲପାଏ।

–ମୁଁ ଜାଣେ ନାହିଁ।

–ମୁଁ ତୁମକୁ ଜଣେଇବାକୁ ଆସିଛି।

–ମୁଁ କିନ୍ତୁ ତୁମକୁ ଜାଣେ ନାହିଁ।

–ଯା'ପରେ ନିଶ୍ଚୟ ଜାଣିପାରିବ– କହି ଝିଅଟାର ଗାଲରେ ଠାସ୍‌କରି ଚାପୁଡ଼ା ଗୋଟିଏ ମାରିବ ଏବଂ ବାହାରି ଆସିବ।

ଏଇ ଧରଣର କେଉଁ ଏକ ଉପନ୍ୟାସର ଘଟଣାଟା ମନେ ମନେ ତିଆରି କରିନେଲା ବିଶ୍ୱଜିତ୍।

ଦିନେ ମଧ୍ୟ ତକମାଲଗା ଦରୱାନ, ପିତ୍ତଳର ଝକ୍ ଝକ୍ ନେମ୍‌ପ୍ଲେଟ୍ ଓ ଲନ୍‌ର ହସକୁଳି ଫୁଲମାନଙ୍କୁ ଅତିକ୍ରମ କରି ସିଧା ଯାଇ ତାଙ୍କ ଡ୍ରଇଂରୁମ୍‌ରେ, ଝିଅଟାର ବାପାଙ୍କ

ସାମ୍ନାରେ। ତାଙ୍କ ପାଖରେ ଶୋଇଥିଲା ଗୋଟିଏ ଭାଲୁ ଆକୃତିର ବିଦେଶୀ କୁକୁର। ତଥାପି ନିର୍ଭୟରେ ବସି କହିଥିଲା– ସେ ପାଖ ଘରେ ରହେ। ନିଜ ନାଁ ଉପରେ ଭୀଷଣ ଆସ୍ଥା ଥିଲା ତାର। ସେଇ ଆସ୍ଥା ଦେଇ ଭାବିଲା ହୁଏତ ତା' ବାପାଙ୍କୁ ହଠାତ୍ କହି ପକାଇବ– ମୁଁ ଚାରିବର୍ଷ ହେଲା ଆପଣଙ୍କ ଝିଅକୁ ଭଲପାଇ ଆସୁଛି। ବିଶ୍ୱଜିତ୍ କୁକୁରଟାକୁ ଚାହିଁଲା। କୁକୁର ବି ଚାହିଁଲା ବିଶ୍ୱଜିତ୍‌କୁ। କିନ୍ତୁ ସବୁ କଥା କହିବା ଆଗରୁ ଦପାଦପ୍ ସେ ଘରେ ଅନେକ ଆଲୋକ ଜଳି ଉଠିଲା। ଝିଅଟି ଗୋଟିଏ ବିଲେଇ ଭଳି କୁକୁରଟାକୁ ଛାତିରେ ଜାକି ନାଚି ନାଚି ବଗିଚା ଆଡ଼େ ଉଭାନ ହୋଇଗଲା। ତା'ପରେ ଉଠି ଆସିଥିଲା ବିଶ୍ୱଜିତ୍। ରାସ୍ତାରେ ଶୋଇଥିବା ଗୋଟିଏ ବୁଲା କୁକୁରକୁ ଗୋଟିଏ ଗୋଇଠା ମାରିଲା।

ତା'ପରେ ଦୃଶ୍ୟପଟର ପରିବର୍ତ୍ତନ। ନୀଳଗେଞ୍ଜି ପିନ୍ଧା ସ୍ୱାସ୍ଥ୍ୟବାନ ତରୁଣ ଗୋଟେ ନୀଳ ସ୍କୁଟରରେ ଦେବଦୂତ ଭଳି ଆସେ। ସ୍କୁଟର ବାହାରେ ରଖି ଭିତରେ କୁକୁରର ଜଙ୍ଗଲରେ ଅଦୃଶ୍ୟ ହୋଇଯାଏ। ଗୋଟିଏ ମୁହୂର୍ତ୍ତ ପରେ କଳ କଳ ହୋଇ ଆସନ୍ତି ସେମାନେ। ଦୁହେଁ ସ୍କୁଟରରେ ରାସ୍ତା ବାଙ୍କରେ ଅଦୃଶ୍ୟ ହୋଇଯାନ୍ତି।

କ୍ରମେ ବିଶ୍ୱଜିତ ଅନୁଭବ କରେ ତା ଭିତରେ କେଉଁଠି ଯେପରି କୁକୁର ଗୋଟିଏ ଭୁକି ଚାଲିଛି। ଭିତରେ କେଉଁଠି ଯେମିତି ନୀଳ ସ୍କୁଟର ଗୋଟିଏ ହାଓ୍ୱା କାଟି କାଟି ଆଗକୁ ଆଗେଇ ଚାଲିଛି। କ୍ରମେ ତା' ଭିତରେ ଯନ୍ତ୍ରପାତି ସବୁ ଖଟ୍‌ଖାଟ ହୋଇ ଖରାପ ହୋଇ ଆସନ୍ତି। ଘରେ ବାହାରେ ସମସ୍ତେ ତାକୁ ପାଗଳା କହିବାକୁ ଆରମ୍ଭ କରନ୍ତି। କେମିତି ଅବସନ୍ନ ହୋଇ ଭାବେ ସେ ତା' ମୁଣ୍ଡ କେବେ ଠିକ୍ ନ ଥିଲା କିମ୍ବା ଏବେ ବି ଠିକ୍ ନାହିଁ। ସେଦିନ ସେ ତିନି ମହଲା ଘରକୁ ଯିବାର କାରଣ ଖୋଜି ପାଏ ନାହିଁ। କାରଣ ଖୋଜି ପାଏ ନାହିଁ ରାସ୍ତାର ବୁଲା କୁକୁରମାନଙ୍କୁ ତଡ଼ି ତଡ଼ି ମାରିବାର। ତା'ପରେ ଦିନେ ଯେତେବେଳେ ସେଇ ତିନି ମହଲା ଘରେ ଆଲୁଅ ସଜା ହୁଏ, ସେହେନାଇ ବାଜେ, ସେ ଦିନ ବାହାରି ପଡ଼େ ବିଶ୍ୱଜିତ୍ ଅନିର୍ଦ୍ଦିଷ୍ଟ ରାସ୍ତାରେ। କେଉଁ ଷ୍ଟେସନରେ ଗୋଟିଏ କଳା କୁକୁର ବିଶ୍ୱଜିତ୍‌ର ଗୋଡ଼ କାମୁଡ଼ିଥିଲା, ଯା'ର ଘା' ଏବେ ବି ଶୁଖି ନାହିଁ। ତା'ପରେ ବିଶ୍ୱଜିତ୍ ଆସି ବସିଯାଇଛି ଏଇ ପାଣିଟାଙ୍କି ତଳେ। କୁକୁରମାନଙ୍କୁ ପଥର ଫିଙ୍ଗେ ଓ ମୁଣ୍ଡ ଉପରର ପାଣିଟାଙ୍କିକୁ ଚାହିଁ ପାଣି ପାଇଁ ଚିତ୍କାର କରେ।

ବିଶ୍ୱଜିତର ଘର ପାଖର କେଉଁ ଏକ ଗପୁଡ଼ି ଲୋକ ପାଟିରୁ କିଞ୍ଚିତ୍ ସତ୍ୟ ଘଟଣା ଆସି ଉପନ୍ୟାସ ସିନେମା ଭଳି ଖୁବ୍ ନାଟକୀୟ, ଖୁବ୍ ରୋମାଣ୍ଟିକ ହୋଇ ଅନ୍ୟ ଲୋକ ପାଖରେ ପହଞ୍ଚିଲା ବେଳକୁ ଅନେକ ଭେଜାଲ ମିଶିଯାଇଥାଏ। ମୁଁ ଜାଣେ ହୁଏତ ଏ ପାଗଳଟା ବିଶ୍ୱଜିତ ନାମକ ପ୍ରେମିକ ମୂଳରୁ ବି ହୋଇଥାଇ ନ ପାରେ। ତଥାପି ବି ମୁଁ ଲକ୍ଷ୍ୟ କରି ଦେଖିଛି ଏ ପାଗଳଟା କୁକୁରମାନଙ୍କୁ ସହିପାରେନି। କେବଳ କୁକୁର

ବିଷୟରେ ସଚେତନ ଆଉ ଅଚେତନ ଦୁନିଆରେ ତା'ର ସକାଳ ସଞ୍ଜ ମଧ୍ୟାହ୍ନ ମଧ୍ୟରାତ୍ରି ବିତିଯାଏ।

ପାଗଳକୁ ପଛରେ ରଖି ସାଇକେଲ ଦୋକାନ ସାମ୍ନାରେ ଛିଡ଼ାହୋଇପଡ଼େ। ତିନି ଚାରୋଟି ପୁରୁଣା ଟାୟାର ଅସହାୟ ଭାବରେ ଖରାରେ ଝୁଲୁଥାଏ। ମୁଁ ନଇଁପଡ଼ି ସାଇକେଲ ଟିଉବ୍‌ରେ ହାଓ୍ବା ଭର୍ତ୍ତିକରି ନିଏ। ତା'ପରେ ଚା' ଦୋକାନ ଭିତରେ ପଶି ତେଲ ଚିକିଟା ଚଉକିରେ ବସିଯାଏ। ତେଲଚକିଟା ମଇଳା ଟେବୁଲରେ ହାତ ରଖିବାକୁ ଘୃଣା ହୁଏ। ଧକ୍ କରି ମନେପଡ଼େ ନମୁନାର ଚିଠିର କାଗଜ ମଇଳା। ମୁଁ ଚିତ୍କାର କରି ବୟକୁ ଡାକେ। ତା' ହାତରେ ପାଣିଗ୍ଲାସ। ତା' ଗାଲରେ ଚାପୁଡ଼ା ମାରିବାକୁ ଇଚ୍ଛା ହୁଏ।

ମଇଳା କନାରେ ଟେବୁଲ ପୋଛି ନେଲା ପରେ ମୋ ଆଗରେ ଗରମ ବରା ଆଣି ଥୁଏ। ବରାରେ ହାତଦେଲା ମାତ୍ରେ ହାତ ପୋଡ଼ିଗଲା ଭଳି ଲାଗେ। ପାଖ ଟେବୁଲରେ ପଡ଼ିଥିବା ଖବରକାଗଜ ଆଣି ସାମ୍ନାରେ ଧରେ। ସେଇ ସମ୍ବାଦ ଚାରିଆଡ଼େ। ମରୁଡ଼ିରେ ଅନାହାର ମୃତ୍ୟୁ, ବନ୍ୟାରେ ଗୋରୁ, ଗାଈ, ମଣିଷ ଭାସିଗଲେ। ଚାଉଳ, ଅଟା ମିଳୁନାହିଁ! ଅନାହାରରେ ବୃଦ୍ଧାର ମୃତ୍ୟୁ। ବରା ଖଣ୍ଡିଏ ପାଟି ଭିତରକୁ ନିଏ। ପାଟି ଭିତର ପୋଡ଼ିଗଲା ଭଳି ଲାଗେ। ସାନ ପିଲା ଭଳି ସେ ଲାଲୁଆ ବରାକୁ ପାଟି ଭିତରୁ କାଢ଼ି ପକାଏ। ବରାଗୁଡ଼ା ଚିରି ଚିରି ଫୁଙ୍କେ। ପୁଣି ସମ୍ବାଦ। ଯୁବତୀର ଆତ୍ମହତ୍ୟା। ପେଟରେ ସନ୍ତାନ। ପୋଲିସର ତଦନ୍ତ। ବଜେଟ ଭାଷଣ। ସାହିତ୍ୟ ସଭା। ଘର ପୋଡ଼ି। ଆଉ ଦୁଇ ଚାରିଥର ଫୁଙ୍କି ସେଇଟା ଖାଇନିଏ। ପାଖ ଟେବୁଲରେ ଜଣେ କହେ– ଇନ୍ଦିରା ଗାନ୍ଧୀ ଶୀଘ୍ର ଆମେରିକା ଯିବ। ଆଉ ଜଣେ କହେ– ମୁଁ ତାକୁ ପାଇ ଥିଲେ... ଆଉ ଜଣେ– ତା'ର ଆଉ କିଛି ନାହିଁ ବେ। ଦ୍ୱିତୀୟ ଜଣ– ଯାହା ଅଛି ଚଳେଇ ନେବି। ଆଉ ଜଣେ –ବିଧବାଟା ହବିଷ କରୁ ନାହିଁ କାହିଁକି ? ଆଉ ଜଣେ – ଚିକେନ ହବିଷ। ମୁଁ ଆଉ ଖଣ୍ଡେ ବରା ଭିତରକୁ ଠେଲି ଦିଏ। ପାଖ ଟେବୁଲର ଆଲୋଚନା କ୍ରମେ ଦିଲ୍ଲୀରୁ ଭୁବନେଶ୍ୱର ଏବଂ ଭୁବନେଶ୍ୱରରୁ ମସ୍କୋ ଓ୍ୱାଶିଂଟନ ବାଟେ ଡିମ୍ପଲ ରାଜେଶ ବାଟେ ଧର୍ମେନ୍ଦ୍ର ପରଭିନ ବାବି ଦେଇ ତାଙ୍କ ସାଇର ତେଲଙ୍ଗା ଝିଅ ପାଖରେ ପହଞ୍ଚିଲା ବେଳକୁ ମୁଁ ଚା' ଶେଷ କରି ପକାଏ। ପୁଣି ଶେଷ ସମ୍ବାଦ ଗୁଡ଼ା ପଢ଼େ– ସୂତା ଲୁଗା ଉପରେ ଅଧିକ ଟିକସ ବସିବ, କାଗଜ ଦର ବଢ଼ିବ। ବୁଝିପାରେ, ସେଥିପାଇଁ ନମୁନା ମଇଳା କାଗଜରେ ଚିଠି ଲେଖିଛି। ମୋତେ ଚିତ୍କାର କରି ଇନ୍ଦିରା ଗାନ୍ଧୀ କି ଜୟ କହିବାକୁ ଇଚ୍ଛା ହୁଏ। ଭାବେ ଏହି ମୁହୂର୍ତ୍ତରେ ନମୁନାକୁ ଚିଠି ଲେଖିବି– ନମୁନା, ସବୁ କଥା ବାଦ୍ ଦେଇ ଏଥର ହବିଷ କର। ସବୁ ଠିକ୍ ହୋଇଯିବ। ଚା' ଦୋକାନରୁ ବାହାରି ଆସିଲା ବେଳେ ନମୁନା ସହ ଇନ୍ଦିରା ଗାନ୍ଧୀର କେଉଁଠି ଗୋଟିଏ ଅଦୃଶ୍ୟ ଯୋଗାଯୋଗ ଅଛି ବୋଲି ମୋର ମନେହୁଏ।

ମୋତେ ଗୋଟିଏ କୌଣସି ଆଡ଼େ ଯିବାକୁ ହେବ। କିଛି ଗୋଟେ କାମ କରି ଭୁଲିଯିବାକୁ ହେବ ନମୁନାକୁ। ନମୁନା ମୋ ପାଇଁ ଗୋଟିଏ ଘଟଣା। ତା'ର ଏ ଚିଠିଟା ଗୋଟିଏ ଦୁର୍ଘଟଣା। ସେ ଦୁର୍ଘଟଣା ମୋର ସବୁ ସ୍ନାୟୁରେ ମାଡ଼ି ଯାଇଛି। ତା'ଠାରୁ ଆଉ ଗୋଟିଏ ବଡ଼ ଦୁର୍ଘଟଣା ଘଟିଲେ ଯାଇ ସେ ଦୁର୍ଘଟଣାର ପ୍ରକ୍ରିୟା ଓ ପ୍ରତିକ୍ରିୟା କମିବ। ଆଜି ସେଇ ସ୍ୱପ୍ନ ଦେଖିଛି। ଦୁର୍ଘଟଣା କିଛି ନିଶ୍ଚୟ ଘଟିବ। ମୁଁ ଦୁର୍ଘଟଣା ଭଲ ପାଏ କିନ୍ତୁ ମୃତ୍ୟୁ ହୋଇଗଲା ଭଳି ଦୁର୍ଘଟଣା ଆଦୌ ଚାହେଁ ନାହିଁ। ମୁଁ ମୋର ଦୁଃଖ ଯନ୍ତ୍ରଣା ଆଉ ଏଇ ସବୁ ଅନୁଭବ ଉପଲବ୍ଧିକୁ ନେଇ ଅନେକ ଦିନ ବଞ୍ଚି ରହିବାକୁ ଚାହେଁ। ଆଜି ରବିବାର। କୁଆଡ଼େ ଯିବି ! ହଠାତ୍ ମେନକା କଥା ମନେ ପଡ଼େ। ଆଜି ହଠାତ୍ ଦ୍ୱିପ୍ରହରରେ ତାଙ୍କ ଘରେ ପହଞ୍ଚିବି। କିନ୍ତୁ ଦ୍ୱିପ୍ରହର ହେବାକୁ ଏବେ ବି ଅନେକ ବାକି। ଯଦିବା ଖରାଟା ଦ୍ୱିପ୍ରହର ବୋଲି ମନେ ହେଲାଣ ତଥାପି ସାଢ଼େ ନ'ଟାରୁ ବେଶୀ ହେବ ନାହିଁ ସମୟଟା।

ମୋ କଡ଼ ଦେଇ ହୁସ୍ ହୁସ୍ କରି ସାଇକେଲ, ମଟର, ସ୍କୁଟର ଅତିକ୍ରମ କରିଯାଏ। ତା'ରି ଭିତରେ ବି ମେନକା ମୁହଁଟା ଦେଖାଯାଏ ଖୁବ୍ ବଡ଼ ହୋଇ। ମେନକାର ଆଖିଟା ଡାହାଣ ପାଖ କୋଠା ଉପରେ ଦେଖେ। ତା' ପାଖ ଚାଳଘରେ ତା'ର କାନ। କାନଟା ଉପରେ ବାଳଗୁଡ଼ା ଉଠାଇ ଦେଇଥାଏ ଏବଂ ଖୁବ୍ ଟାଇଟ୍ କରି ବାଳ ବାନ୍ଧେ ମେନକା। କାନଟା ଯେମିତି ଉଲଗ୍ନ ଦେଖାଯାଏ। କାନଟା ଉଲଗ୍ନ ଦେଖା ନ ଯିବା ପାଇଁ ବୋଧହୁଏ ପୁଅମାନେ ବି କାନ ଉପରେ ବାଳ ପକାଇବା ଆରମ୍ଭ କଲେଣି। ମେନକାର ଖୋଲା କାନ ଦେଖିଲେ ମୋ ଭିତରେ କେମିତି ଶୃଙ୍ଗାରର ଉଦ୍ଦାମତା ଜାତ ହୁଏ। ମେନକାର କାନକୁ ଓଠରେ କାମୁଡ଼ି ଦେବାକୁ ଇଚ୍ଛା ହୁଏ। ସବୁବେଳେ ଧଳା ଶାଢ଼ି ପିନ୍ଧେ ମେନକା। ମୋତେ ମେନକା ନାଁଟା ସବୁବେଳେ ଲିମ୍କା ଭଳି ଲାଗେ। ଧଳା ଶାଢ଼ି ସାଦାସିଧା ଚେହେରା ଖୁବ୍ ଶୋଷିଲା ହେଲେ ଲିମ୍କା ଭଳି ପିଇଯିବାକୁ ଇଚ୍ଛା ହୁଏ।

ମୁଁ ଦିନେ ଅଫିସରେ ତାକୁ କହିଥିଲି– ମେନକା, ଦିନେ ମୁଁ ତୁମକୁ ଗୋଟିଏ କଥା କହିବି। ସେ ଅନେକ ଥର ମୋତେ ପଚାରିଛି– କ'ଣ କହିବେ ବୋଲି କହିଲ ନାହିଁ ତ। ମୁଁ କହିଛି– ଠିକ ସମୟରେ କହିଦେବି।

ସେ ହୁଏତ ବୁଝିନେଲା, ସବୁ ପୁଅ ଝିଅମାନଙ୍କୁ ଖୋଜି ଖୋଜି ବାରମ୍ବାର ଯେଉଁ କଥା ସବୁ କହନ୍ତି ମୁଁ ହୁଏତ ସେଇ କଥା ତାକୁ କହିବି। ମୁଁ ପ୍ରକୃତରେ ସେ ଧରଣର କିଛି କଥା କହିବାକୁ ଚାହୁଁ ନଥିଲି। ଅବଶ୍ୟ ମୁଁ କହିବାକୁ ଚାହିଁଥିଲି– ବାଳ ବାନ୍ଧିବାର ଷ୍ଟାଇଲ ଚେଞ୍ଜ କର, ନ ହେଲେ କେମିତି ଅସୁବିଧା ଲାଗୁଛି। କିନ୍ତୁ ମୁଁ ଏଇଥା ତାକୁ କହିପାରିନି ଏଇ ଭୟରେ ସେ ଯଦି କହେ– ଏଇଟା ଯଦି ତୁମେ କହିଥାନ୍ତ ତା' ପୂର୍ବରୁ

ଆଉ ଗୋଟିଏ କଥା କହିବା ତୁମର ଉଚିତ ଥିଲା। ସେଇ ପୁରୁଣା କଥା ମୁଁ ତୁମକୁ ଭଲ ପାଏ। ପ୍ରଥମେ ଏଇ ବାକ୍ୟ କହି ଯେକୌଣସି ପ୍ରକାର କଦର୍ଯ୍ୟ ଅଶ୍ଳୀଳ ଶବ୍ଦ ନିଃସଂକୋଚରେ କୁହାଯାଇପାରେ। କିନ୍ତୁ ନମୁନା ପରେ ଆଉ କାହାରିକୁ ଏକଥା କୁହାଯାଇ ନ ପାରେ। ଅବଶ୍ୟ ତା' ଆଗରୁ ସୀମାକୁ ଏ କଥା ଅନେକ ଥର କହିଛି।

ମେନକା ଅନେକ ଦିନରୁ ମୋ ପାଟିରୁ ସେଇ କଥା ଶୁଣିବ ବୋଲି ଅପେକ୍ଷା କରି ରହିଛି। ସେ ମୋତେ ସେଇ କଥା କହିବ ବୋଲି ବାରମ୍ବାର ଇତସ୍ତତଃ ହୋଇଛି। କିନ୍ତୁ ମୁଁ ତାକୁ ସାମାନ୍ୟ ସୁଯୋଗ ବି ଦେଇନାହିଁ। ଆଜି ମୁଁ ତାକୁ ଚମକାଇ ଦେଇ ସେଇ କଥା କହିଦେବି। ଆଜି ଦ୍ୱିପ୍ରହରରେ ସେଇ କଥା ନିଶ୍ଚୟ କହିବି। କହିବି– ମେନକା ଏଇ କଥାଟା କହିବା ପାଇଁ ମୁଁ ଅନେକ ଦିନରୁ ପ୍ରସ୍ତୁତ ହେଉଥିଲି। ଆଜି ସେଇ ସମୟ ଆସିଗଲା।

ମୋ ସାଇକେଲ ରାସ୍ତାରେ ଗଡ଼ିଚାଲେ। ଲୋକ, ଅନେକ ଲୋକ, ପାଦରେ ଚାଲିଚାଲି, ଯାନବାହନରେ ଅନେକ ଲୋକ ଆଗେଇ ଚାଲିଛନ୍ତି। ରାସ୍ତାରେ ମଣିଷ ପାଖଦେଇ ଚାଲି ଯାଉଥିବା ମଣିଷକୁ ଦେଖେ। ଗୋଟିଏ ମଣିଷକୁ ଦେଖେ। ତା'ର ନାକ ଆଖି କାନ ଓଠ ଗାଲ ଗୋଟିଏ ମୁହୂର୍ତ୍ତ ପାଇଁ ମୁଖସ୍ଥ ହୋଇଯାଏ। ତା'ପରେ ମଣିଷ। ପ୍ରାୟ ସମାନ ଆକାରର ନାକ ଆଖି କାନ ଓଠ ଗାଲ। ପ୍ରଥମ ମଣିଷ ଭୁଲି ହୋଇଯାଏ। ପୁଣି ଗୋଟିଏ ସେକେଣ୍ଡ ପରେ ଦ୍ୱିତୀୟ ବି ଲିଭେ। ତା'ପରେ ପୁଣି ତା' ପରେ ଏବଂ ପୁଣି ତା' ପରେ। କିନ୍ତୁ ବିକୃତ ମୁହଁ ଥରେ ଦେଖିଲେ ଅନେକ ଦିନ ଯାଏ ମନେ ରହିଯାଏ। ସାଧାରଣ ଘଟଣା ଘଟେ, ଘଟି ଚାଲେ ପ୍ରତି ମୁହୂର୍ତ୍ତରେ ପୁଣି ନୂଆ ଘଟଣା, ପୁଣି ନୂଆ କିନ୍ତୁ ମନେରହେ କେବଳ କେବଳ ଦୁର୍ଘଟଣା। ଜୀବନର ପରାର୍ଦ୍ଧ ପରାର୍ଦ୍ଧ ମୁହୂର୍ତ୍ତ ଏମିତି ବୈଚିତ୍ର୍ୟହୀନ ହୋଇ ଗଡ଼ିଯାଏ, କିନ୍ତୁ ଜୀବନସାରା ମନେରହେ କେବଳ ଗୋଟଏ ଦୁଇଟି ମୁହୂର୍ତ୍ତ। ସେଇ ମୁହୂର୍ତ୍ତ ସାରାଜୀବନ ଜୀବନଯାପନ ପଦ୍ଧତିକୁ ନିୟନ୍ତ୍ରିତ କରେ। ଆଲୁଅରେ ଅନ୍ଧକାର କରେ, ଅନ୍ଧକାରରେ ଆଲୁଅ ଦେଖାଏ। ତେଣୁ ମୁଁ ହୁଏତ କେମିତି ଏକ ପ୍ରକାର ସୂକ୍ଷ୍ମଭାବରେ ଅନୁଭବ କରେ ମୁଁ ହୁଏତ ସମୟ ଗଡ଼ାଇଚାଲେ ଗୋଟିଏ ମାତ୍ର ଦୁର୍ଘଟଣାର ମୁହୂର୍ତ୍ତକୁ ଅପେକ୍ଷା କରି। ମୋର ଯେମିତି ସବୁବେଳେ ପ୍ରସ୍ତୁତି ଚାଲେ ସେଇ ଦୁର୍ଘଟଣାର ମୁହୂର୍ତ୍ତ ପାଇଁ।

ବୋଧହୁଏ ଏମିତି ଏକ ଆକାଂକ୍ଷିତ ଦୁର୍ଘଟଣା ଆଡ଼େ ମୁହଁକରି ମୋ ସାଇକେଲ ଗଡ଼ିଯାଏ। ମଣିଷ ପରେ ମଣିଷ ପାରି ହୁଏ। ଦୃଶ୍ୟ ବଦଳେ, ଅନୁଭୂତି ବଦଳେ, ଚିନ୍ତା ବଦଳେ। ମଣିଷର ବୟସ ବଢ଼େ। ତା' ସହ ତାଳ ଦେଇ ରାସ୍ତାଘାଟ ଗଛଲତା କୀଟପତଙ୍ଗ ପୃଥିବୀ ଚନ୍ଦ୍ର ସୂର୍ଯ୍ୟ ନକ୍ଷତ୍ରର ବୟସ ବଢ଼ିଚାଲେ। ମୋତେ ଥରେ ଥରେ ମନେହୁଏ ଆକାଶଟା ଖୁବ୍ ବଡ଼ ଗୋଟିଏ ଘଣ୍ଟା। ଅଦୃଶ୍ୟ ଅକ୍ଷରରେ ଆକାଶର ଚାରିଆଡ଼େ ସଂଖ୍ୟା

ସବୁ ଲେଖାଯାଇଛି। ଦିନରାତି ଛାତିର ଧକ୍‌ଧକ୍ ସହ ତାଳଦେଇ ଆଗେଇଚାଲେ ସେଇ ଘଣ୍ଟା। ମୁଁ ସମୟର ବ୍ୟାପ୍ତି ଭିତରେ ଖୁବ୍ ସାନ ହୋଇଯିବାର ଅନୁଭବ କରେ। ଦୂରରୁ ମଣିଷଗୁଡ଼ାକର ମୁଣ୍ଡ ପଛପଟେ ଆକାଶଟା ଖୁବ୍ ବିରାଟ ଦେଖାଯାଏ। ଲୋକଗୁଡ଼ା ଜନ୍ଦା ଭଳି ଚାଲି ଚାଲି ଆସନ୍ତି। ସେମାନଙ୍କ ଛାଇ ମାଡ଼ି ମାଡ଼ି ମୋ ସାଇକେଲ ଆଗକୁ ଯାଏ। ମୋ ସାଇକେଲର ଛାଇ ମାଡ଼ି ମାଡ଼ି ଆଗେଇଯାଏ ସ୍କୁଟର ମଟର। ଆକାଶରେ ସମସ୍ତଙ୍କ ଉପର ଦେଇ ଉଡ଼ିଯାଏ। ମୁଁ ଚାହେଁ। ସ୍ରୋତ ଏରୋପ୍ଲେନ୍ ଭିତରେ ନିଜକୁ ଭସେଇଦିଏ।

ଗୋଟିଏ ପାନ ଦୋକାନ ସାମ୍ନାରେ ସାଇକେଲରେ ବ୍ରେକ୍ ଦେଇ ଓହ୍ଲାଇପଡ଼ିଲି। ଅସମତଳ ଦର୍ପଣରେ ମୋ ମୁହଁ ଦେଖିବାକ୍ଷଣି ମନେପଡ଼ିଲା ମେନକା। ରୁମାଲରେ ଗାଲର ଝାଳ ପୋଛିନେଲାମାତ୍ରେ କେମିତି ଜଳିଲା। ମୁହଁରେ ଗୋଟିଏ ସିଗାରେଟ ଗୁଞ୍ଜି ନଡ଼ିଆକତା ରସିରୁ କିଛି ନିଆଁ ଧରାଇନେଲା ପରେ ମନେପଡ଼ିଲା ନମ୍ରତା।

ଉଠାଣି ରାସ୍ତାରେ ସାଇକେଲ ଉଠିଚାଲେ। ରିକ୍‌ସାରେ ତଳ ଆଡ଼େ ମୁହଁ କରି ନମ୍ରତା ପରି ଝିଅ ଗୋଟିଏ ଚାଲିଯାଏ। ଏଇ ମୁହୂର୍ତ୍ତରେ ନମ୍ରତା କ'ଣ କରୁଥିବ? ନମ୍ରତା ତା'ର ସ୍ୱାମୀ ପାଇଁ, ଅଳ୍ପ ଦିନରେ କାର୍ଯ୍ୟଭାର ଗ୍ରହଣ କରିବାକୁ ଯାଉଥିବା ପରିବାର ପାଇଁ ଖସଡ଼ା ତିଆରି କରୁଥିବ। ନମ୍ରତା ମୋତେ ଛାଡ଼ି କାହାକୁ ଅପେକ୍ଷା କରିବ। ନୂଆ ଜୀବନର ଆରମ୍ଭ ହେବ। ପୁଣି ନୂତନ ପୁରୁଷର ଚୁମ୍ବନ ଆଲିଙ୍ଗନକୁ ନୂତନ ଭାବରେ ଗ୍ରହଣ କରିବ। ସନ୍ତାନ ଉତ୍ପାଦନ, ରନ୍ଧନରେ ତା'ର ଜୀବନ ବିତିଯିବ। ଗୋଟିଏ ଦୁଇଟି ଫସଲ ପରେ ସାମାନ୍ୟ ବୟସ୍କା ଦେଖାଯିବ ତାକୁ। କେତେ ଦିନେ ପୁଣି ତା'ର ଝିଅକୁ ବି ବେଦୀରେ ବସାଇ ଦେବ। ପୁଣି ଦିନେ କେବେ ତା' ଆଖିଆଗରେ ଘୋଟି ଆସିବ ଅନ୍ଧକାର। ତା'ର ପୁଅ ଝିଅ ନାତି ନାତୁଣୀମାନେ ତାକୁ କୋକେଇରେ ନେଇ ଶ୍ମଶାନ ଆଡ଼େ ଚାଲିଯିବେ। ସେଇ ମୁହୂର୍ତ୍ତରେ ହୁଏତ କେଉଁ ଏକ ପ୍ରେମିକର କଣ୍ଠ- ସଂଲଗ୍ନା ହୋଇ ପ୍ରେମିକା କହୁଥିବ– ତୁମ ବିନା ମୁଁ ବଞ୍ଚି ପାରିବି ନାହିଁ। ଗୋଟିଏ ସାଇକେଲରେ ବଜାର ଥଳି ଝୁଲାଇ ଲୋକ ଗୋଟିଏ ମୋତେ ଅତିକ୍ରମ କରିଯାଏ। ବଜାର ଥଳି ଭିତରୁ ପୋଇଶାଗ ଓ ଭାକୁଡ଼ ଲାଞ୍ଜ ଦେଖାଯାଏ। ଏ ରବିବାର ଦ୍ୱିପ୍ରହରରେ ସ୍ତ୍ରୀ ତରକାରିରେ ଛୁଙ୍କ ଦେବ। ସୁସ୍ୱାଦୁ ତରକାରି ରାନ୍ଧି ଖାଇବାକୁ ଦେବ। ଲୋକଟି ପାଖରେ ଦୁଇ ତିନୋଟି ପିଲା ବି ଖାଇ ବସିବେ। ଖାଇସାରି ବାବୁ ଖଟରେ ଶୋଇ ସିଗାରେଟ୍ ଧରାଇବେ। ତେଣେ ଗୃହିଣୀର ଖାଇବା ଆରମ୍ଭ ହେବ। ଖବରକାଗଜରୁ ସେ ଦେଖିବେ ବର୍ଷା ବିନା ହାହାକାର, ଚାଉଳର ଦରବୃଦ୍ଧି, ବନ୍ୟାରେ ଶସ୍ୟହାନି। କ୍ରମେ ଲୁଗାକାନିରେ ମୁହଁ ପୋଛୁ ପୋଛୁ ଗୃହୀଣୀ ଘର ଭିତରକୁ ପଶି ଆସିବେ। ନିୟମାନୁଯାୟୀ କବାଟ ବନ୍ଦହେବ। ଝର୍କାର ପର୍ଦ୍ଦା ନିର୍ଭୁଲ ଭାବେ ଟାଣି ଦିଆଯିବ। ତା'ପରେ ସେଇ ପୁରୁଣା କଥା ସାନପିଲା ସ୍ଲେଟରେ ଅ, ଆ ଉପରେ ମଡ଼ାଇଲା ଭଳି ସେମାନେ ସେଇ

ପୁରୁଣା ରାସ୍ତାରେ ମାଡ଼ି ଆସିବେ। କିଛି ବିଶେଷ ଘଟଣା ନାହିଁ ଏମାନଙ୍କ ଜୀବନରେ। ଏମାନେ ଖାଆନ୍ତି ଏମାନଙ୍କ ମୁହଁରେ ପରିତୃପ୍ତି ଫୁଟିଉଠେ। ଏମାନେ ଝାଡ଼ା ଯାଆନ୍ତି, ଏମାନଙ୍କ ମୁହଁରେ ପରିତୃପ୍ତି ଫୁଟି ଉଠେ। ପାନ ଦୋକାନର ଦର୍ପଣପକୁ ଚାହିଁ ଚାର୍ମିନାର ଲଗାଇଲା ବେଳେ ଏମାନଙ୍କ ମୁହଁ ଉଜ୍ଜ୍ୱଳ ଦିଶେ। ରାସ୍ତାକଡ଼ ପାଚେରି ଆଡୁ ପେଣ୍ଟ ବୋତାମ ଲଗାଇ ଏପଟେ ମୁହଁ କଲେ ଏମାନଙ୍କ ମୁହଁରେ ପରିତୃପ୍ତିରେ ହସ ଉକୁଟି ଉଠେ। ରବିବାର ଦ୍ୱିପ୍ରହରରେ ସ୍ତ୍ରୀ ସଂଗମରେ ଏମାନେ – ଅସମ୍ଭବ ପରିତୃପ୍ତ ପାଆନ୍ତି। ଖାଦ୍ୟ ଗ୍ରହଣ, ମୈଥୁନ ଓ ବର୍ଜ୍ୟବସ୍ତୁ ତ୍ୟାଗରେ ଏମାନେ ସୁଖୀ ଏବଂ ତାହାହିଁ ଜୀବନଯାପନ। ମୁଁ ଏଇ ସମୟରେ ସେଇ ପାଣିଟାଙ୍କି ତଳର ପାଗଳ କଥା ମନେକଲି ଯେ ଚେତନାହୀନ ହୋଇ ନିଦାଘର ଶୋଷ ନେଇ ଦିନ ଯାପନ କରି ଚାଲିଛି।

ସାନସାନ ଘଟଣା ବି ବେଶ୍ ଅନେକ ଦିନ ମନେ ରହିଯାଏ। ଏମିତି ଏକ ରବିବାର। ଏମିତି ଉଜ୍ଜ୍ୱଳ ଦ୍ୱିପ୍ରହର। ନମୁନା ଘରେ ପହଞ୍ଚିଲି। ସେ ଶୋଇଥିଲା। ପାଖ ଘରେ ତା' ବୋଉ ମଧ ଶୋଇଯାଇଥିଲେ। ଘରେ ଆଉ କେହି ନଥିଲେ। ମୁଁ ଚାରିଆଡ଼େ ଲକ୍ଷ୍ୟ କରି ଯାଇ ନମୁନା ପାଖରେ ବସିଗଲି। ତାକୁ ଦେଖିଲି। ଆଖିପତା ବନ୍ଦ କରି ଦେଲେ ନମୁନା ଖୁବ୍ ସୁନ୍ଦର ଦେଖାଯାଏ। ମୋତେ ମନେହେଲା ନମୁନା ଯେପରି ନିଦରେ ଶୋଇ ଶୋଇ ହସୁଛି। ଗରମ କ୍ଷୀର ରଖିଦେଲେ ଯେମିତି ଉପରଟା ଶୁଖି ସର ପଡ଼ିଯାଏ, ସେହିପରି ତା' ଓଠଟା ଦେଖାଯାଉଥିଲା। ନାକଟା ତୀକ୍ଷ୍ଣ। ଆଖି ପତା କେମିତି ନୀଳ। ଆଖି ଖୋଲା ଥିଲେ ବୁଝିହୁଏନାହିଁ, କିନ୍ତୁ ବନ୍ଦ ହେଲେ ବେଶ୍ ଜାଣି ହୁଏ। ଚିତ୍ ହୋଇ ଶୋଇଥିଲା ନମୁନା। ଝିଅମାନେ ଚିତ୍ ହୋଇ ଶୋଇଲେ ମୋତେ କେମିତି ଅଶ୍ଳୀଳ ଲାଗେ। ଭାବିଲି ନମୁନାକୁ କଡ଼େଇ ଦେବି। ମୁଁ ତା' ପାଖରେ ଶୋଇ ତା' ହାତଟା ମୋ ଅଣ୍ଟା ଉପରେ ରଖିଦେବି। କିନ୍ତୁ ମୁଁ ସେମିତି କିଛି କଲି ନାହିଁ। ବସି ବସି ତା' ଓଠ ଉପରକୁ ନଇଁ ଆସିଲି। ଓଠ ଉପରେ ଓଠ ରଖିଲେ ନମୁନା ଚମକି ଉଠି ବସିବ। ମିଛରେ ବିରକ୍ତ ହେବ। ମୁହଁ ନାଲି ପଡ଼ିଯିବ। ସେଇ ଚେହେରାରେ ନମୁନାକୁ ଦେଖିବାକୁ ଭଲ ଲାଗେ। ମୁଁ ତା' ଓଠ ଉପରେ ଓଠ ରଖିଲି। ତା' ନୀଳ ଆଖି ପତା, କପାଳ, ନାକ, ଗାଲ ବେକ, ଚାରିଆଡ଼େ ମୁହଁ ଲଗାଇଲି। ସେ ଉଠିଲା ନାହିଁ। ତା'ପରେ ତା' ଛାତିରେ ମୁହଁ ରଖିଲି। ତା'ର ନାଲି ବ୍ଲାଉଜ ଲୋଚାକୋଚା ହୋଇଗଲା। ଗୋଲାପୀ ଶାଢ଼ି ଏପଟ ସେପଟ ହୋଇଗଲା। ତଥାପି ତା'ର ନିଦ ଭାଙ୍ଗିଲା ନାହିଁ। କେବଳ କଡ଼ ଲେଉଟାଇ ଶୋଇଲା। ହଠାତ୍ ମୋର ସେଇ ମୁହୂର୍ତ୍ତରେ ତା' ପ୍ରତି ଭୀଷଣ ଘୃଣା ଆସିଲା। ମନେହେଲା ଏଗୁଡ଼ା ଯେମିତି ତା'ର ଅନେକ ଦିନର ଅଭ୍ୟାସ। ଇଚ୍ଛା ହେଉଥିଲା ତାକୁ ସେଇ ମୁହୂର୍ତ୍ତରେ ଦଳି ମକଚି ନଷ୍ଟ କରିଦେବି। ତା'ର ନୀଳ ଆଖି ପତା କାମୁଡ଼ି ଛିଡ଼ାଇ ଦେବି। କିନ୍ତୁ ମୁଁ ଖୁବ୍ ଶୀଘ୍ର ନରମ ହୋଇଗଲି। ତା'ର ଆଖି କୋଣରେ ଯେମିତି

ଅନେକ ଅସହାୟ ଶବ୍ଦ ଲେଖା ହୋଇଛି ବୋଲି ମୋତେ ମନେ ହେଲା। ମୁଁ ପ୍ରାୟ ଚାପୁଡ଼ା ମାରିବା ଭଙ୍ଗୀରେ ତା' ଜଙ୍ଘରେ ମାଇଲି। ସେ ଆଖି ଖୋଲିଲା ଓ ଲୁଗା ସଜାଡ଼ି ଉଠି ବସିଲା।

—ତୁମେ କେତେବେଳୁ ?

ମୋ ଭିତରେ ସେତେବେଳେ ଗୋଳାବାରୁଦ ଫୁଟୁଥିଲା। ଉତ୍ତର ଦେଲି ନାହିଁ।

—ତୁମକୁ ଅନେକବେଳ ଅପେକ୍ଷା କରି ଶୋଇପଡ଼ିଲି। ମୁଁ ମନେ ମନେ କହିଲି—

—ତୁମେ ମିଥ୍ୟାବାଦୀ। ମୋର ଇଚ୍ଛାହେଉଛି—

—କାଲି ସଞ୍ଜରେ ତୁମେ ଆସିଲ ନାହିଁ କାହିଁକି ?

—ଇଚ୍ଛାହେଉଛି ତୁମ ବେକ ଚିପିଦେବି।

—ବୋଉ କାଲି ପିଠା ରଖି ଅନେକ ସମୟ ଅପେକ୍ଷା କରିଥିଲା।

—ଏସବୁ ତୁମର ଆଗରୁ ଅଭ୍ୟାସ ଥିଲା ବୋଲି ଜାଣିଥିଲେ—

—ତୁମେ କିଛି କହୁନ କାହିଁକି ? ଗମ୍ଭୀର ହୋଇଗଲ ଯେ !

—ଜାଣିଥିଲେ ମୁଁ ତୁମକୁ ଖୁନ୍ କରିଥାଆନ୍ତି।

—ତୁମେ କ'ଣ ଆଜି ମୋ ସହ କଥା କହିବ ନାହିଁ ?

—ମୁଁ ଯଦି ଜାଣିଥାନ୍ତି ତୁମର ଏ ଅଭ୍ୟାସ ଆଗରୁ ଥିଲା—

—ମୁଁ ଶୋଇଗଲି ବୋଲି ରାଗୁଛ ?

—ତା'ହେଲେ ତୁମକୁ ଧର୍ଷଣ କରିଥାନ୍ତି।

—ଆଚ୍ଛା ହେଲା, ଦୋଷ ମୋର। ଆଉ ମୁଁ କେବେ ଶୋଇବି ନାହିଁ।

—ମୁଁ ଆଉ ତୁମକୁ ଭଲପାଇପାରିବି ନାହିଁ।

—ମୁଁ ତୁମକୁ ସବୁଦିନେ ଅପେକ୍ଷା କରି ବସିରହିବି।

—ମିଛ, ସବୁ ମିଛ— ମୁଁ ବଡ଼ପାଟିରେ ଉଚ୍ଚାରଣ କଲି।

ସେ ଚମକିଗଲା। ଅନୁନୟର ମୁହଁ ଉଭେଇଗଲା ପରିଷ୍କାର ପ୍ରଶ୍ନ ଚିହ୍ନ ଆଙ୍କି ନମୁନା ମୋ ସାମ୍ନାରେ ଛିଡ଼ାହୋଇପଡ଼ିଲା।

—କ'ଣ ମିଛ ?

—କିଛି ନୁହେଁ। ମୁଁ କେବଳ ଗୋଟିଏ ନିର୍ଭେଜାଲ ନାରୀଠୁଁ ନିର୍ଭେଜାଲ ପ୍ରେମ ଚାହେଁ। ସେ ଆଶ୍ଚର୍ଯ୍ୟ ହୋଇ ମୋ ମୁହଁକୁ ଚାହିଁଲା।

—ନିର୍ଭେଜାଲ ନାରୀ ? ନିର୍ଭେଜାଲ ପ୍ରେମ ? ଓହୋ ବୁଝିଲି। ଆଜିକାଲି କେଉଁଟା ଆଉ ନିର୍ଭେଜାଲ ଅଛି ଯେ ! ତୁମେ, ମୁଁ, ପ୍ରେମ, ଈଶ୍ୱର ସମସ୍ତେ ତ ଭେଜାଲ।

ନମୁନାର ତତ୍ତ୍ୱଶୁଣି ମୋର ଆଙ୍ଗୁଠିଗୁଡ଼ା ଟାଣ ହୋଇଆସିଲା। ଗଛଚଢ଼ିବା ପୂର୍ବରୁ ବା କାହାରିକୁ ଆକ୍ରମଣ କରିବା ପୂର୍ବରୁ ବିଲେଇର ନଖଗୁଡ଼ା ଯେମିତି ଖୋପ ଭିତରୁ

ବାହାରିଆସେ ସେହିପରି ମୋ ଆଙ୍ଗୁଠି ସନ୍ଧିରୁ ଅଦୃଶ୍ୟ ନଖସବୁ ବାହାରି ଆସୁଥିବାର ମୁଁ ଅନୁଭବ କଲି। କିନ୍ତୁ ନମୁନାର ଅସହାୟତା ମୁଁ ଜାଣେ। ନିଜକୁ ସଂଯତ କରି ସେଦିନ ମୁଁ ଉଠିଆସିଲି ଓ ସିନେମା ଟିକଟ୍ କାଟି କୃତ୍ରିମ ଅନ୍ଧାର ଘୋଟିଥିବା କୋଠରିରେ ବସି ଧଳା ପର୍ଦ୍ଦା ଉପରେ ନମୁନାଠୁ ଅନେକ ସୁନ୍ଦର ଦେଖାଯାଉଥିବା ତରୁଣୀମାନଙ୍କ ଅଧା ଖୋଲା ଦେହ ଦେଖିଲି।

ସାମ୍ନା ଛକରେ ଲାଲ ବତି ଜଳିଉଠିଲାଣି। ମୋତେ ସାଇଁକରି ଟପିଯାଇଥିବା କାର୍‌ଟା ବ୍ରେକ କଷି ଅଟକିଗଲା। କାର୍‌ର ପଛରେ କାଚକୁ ମୁଣ୍ଡ ଲଗାଇ ବସିଥିବା ଖେଳନା କୁକୁରଟା ମୁଣ୍ଡ ହଲାଇଲା। କୁକୁର ସେପଟେ ଗୋଟିଏ କିଶୋରୀ ଓ ଜଣେ ବୟସ୍କା ଭଦ୍ରମହିଳା। କିଶୋରୀଟାର ମୁଣ୍ଡରେ ସାମ୍ପୁଲଗା ସୁନ୍ଦର କେଶ। କେବଳ ଦୁଇଟି ନରମ ଆଖି ନାକ ଓ ଓଠ ଦେଖାଯାଉଛି। ମୁଖମଣ୍ଡଳର ଆଉ ସବୁ ଅଂଶ କେଶର ଓଢ଼ଣା ତଳେ ଲୁଚିଯାଇଛି। ମୋତେ ଲାଗିଲା ମୁଁ ଯେମିତି ସେଇ କିଶୋରୀ ପାଇଁ ଦରିଦ୍ର ହୋଇଉଠୁଛି। ମୁଁ ପିନ୍ଧିଛି ମିଲିଟାରୀ ଜାମା ଓ ଖାକି ପେଣ୍ଟ। ଦାଢ଼ି ଲମ୍ବି ଛାତି ଛୁଉଁଛି। ମୋତେ ଯେମିତି ଶୀଘ୍ର ପାଣିଟାଙ୍କି ତଳକୁ ଫେରିଯିବାକୁ ହେବ। ଆଉ ଥରେ କୁକୁରଟା ଯେମିତି ମୋତେ ଚାହିଁ ମୁଣ୍ଡ ହଲାଇଲା। ମୋ ରାଗଟା ଜମାଟ ବାନ୍ଧି ଆସୁଥିବାର ଅନୁଭବ କଲି। ମୁଁ ଦେଖିଲି ଯେମିତି ମୁଁ ରାସ୍ତା ଉପରୁ ପଥରସବୁ ଗୋଟାଇଆଣିଛି ଏବଂ କ୍ରମାଗତ ପଥର ମାରୁଛି ସେଇ କୁକୁରଟାକୁ। ଆଶ୍ଚର୍ଯ୍ୟ, ତଥାପି କୁକୁରଟା ସେମିତି ମୁଣ୍ଡ ହଲାଇ ଚାଲିଛି। ହଠାତ୍ ନାଲି ଆଲୁଅ ହଳଦିଆ ହେଲା। ତା' ପରେ ସବୁଜ। ମୁଁ ଦେଶାତ୍ମବୋଧକ ସଂଗୀତ ଗୁଣୁଗୁଣେଇଉଠିଲି– ନାଲି ହଳଦିଆ ପୁଣି ସବୁଜ ରଙ୍ଗର। କାର୍‌ଟା କୁକୁରଟାକୁ ମୋଠାରୁ ବଞ୍ଚାଇନେଇ ପଳାଇଲା।

ଡାହାଣକଡ଼େ ତିନିଚାରୋଟି ଗାଡ଼ି ଅଟକିଯାଇଛି। ସବୁଠୁ ପଛ କାର୍‌ରେ ଗୋଟିଏ ସୁନ୍ଦରୀ। ଆଖିଗୁଡ଼ା ନମୁନାର ଆଖି ଭଳି। ପୁଣି ନମୁନା। ନମୁନାର ସର୍ବାଙ୍ଗ ମନେପଡ଼େ। ମନେପଡ଼େ ନମୁନାର ଚିଠିଟା କଦର୍ଯ୍ୟଭାବେ ମୋ ପଛ ପକେଟରେ ଏବେ ବି ଅଛି। କାର୍‌ର ସ୍ପିଡ଼ୋମିଟରେ କଣ୍ଟା ଉପରେ ଗୋଟିଏ କଣ୍ଢେଇକୁ ଫାଶି କରି ଟଙ୍ଗେଇ ଦିଆହୋଇଛି। କଣ୍ଢେଇଟା ଫ୍ରକ ପିନ୍ଧିଛି। ମୁଣ୍ଡରେ ଗୋଛାଏ ବାଳ। ଥରେ ଥରେ ଖରାଦିନେ ଦ୍ୱିପ୍ରହରରେ ନମୁନା ଫ୍ରକ ପିନ୍ଧୁଥିଲା। ସାପର ଜିଭ ପରି ସ୍ପିଡ଼ୋମିଟରେ କଣ୍ଟାଟି ଲକ୍ ଲକ୍ ହୋଇ ଆଗେଇଗଲେ ଝିଅଟି ଝୁଲେ। ରାସ୍ତା ଦେଖେ। ଗାଡ଼ିର ଗତି ଦେଖେ। ଗାଡ଼ିର ଡ୍ରାଇଭର ଆଡ଼େ ବୁଲିପଡ଼ ଚାହେଁ। ତା' ବେକରେ ଫାଶି। କିଛି କହିପାରେ ନାହିଁ, କିଛି କରିପାରେ ନାହିଁ। ଯଦି ମୁଁ ସାମାନ୍ୟ ସୁଯୋଗ ପାଆନ୍ତି ଏଇ ମୁହୂର୍ତ୍ତରେ ନମୁନାକୁ ଫାଶି କରି ସାମ୍ନାରେ ଟଙ୍ଗେଇଦେଇ ପୃଥିବୀଟାକୁ ଗୋଟେ କାର୍ ଭଳି ମନଇଚ୍ଛା ଚଳାନ୍ତି ଏବଂ ଶେଷରେ କେଉଁ ଏକ ଅଜଣା ତେଜସ୍କ୍ରିୟ ଜ୍ୟୋତିଷ୍କ ସହ ତୀବ୍ରବେଗରେ ଧକ୍କା ଦେଇ ସବୁ ଜାଳିଦିଅନ୍ତି।

ମୁଁ ଗୋଟିଏ ପାନଦୋକାନ ସାମ୍ନାରେ ଓହ୍ଲାଇଲି। ପାନ ଦୋକାନୀ ପିଲାଟା ହାପ୍ ପ୍ୟାଣ୍ଟ ପିନ୍ଧି ବସିଥିଲା। ତା' କଳା ପେଣ୍ଟରେ ଅନେକ ଚୂନ ଦାଗ। ତା' ପଛରେ ହେମାମାଳିନୀ। ତା' ପାଖରେ ଆଉ ଗୋଟିଏ କେଉଁ ନାମ-ନ-ଜଣା ନାୟିକାର ଅର୍ଦ୍ଧନଗ୍ନ ଛବି। ଏ କଡ଼କୁ ଦର୍ପଣ। ଦର୍ପଣରେ ମୋ ମୁହଁ ଦେଖିଲି। ଖୁବ୍ ରୋଗା ଦେଖାଗଲା ମୋତେ। ମୁହଁଟା କଳା ପଡ଼ି ଆସିଲାଣି। ଯେମିତି ଖୁବ୍ ଶୀଘ୍ର ରୋଗ ଆରମ୍ଭ ହୋଇଯିବ ବା ରୋଗରୁ ଏଇ ଏବେ ଉଠିଛି। ଖୁବ୍ ଖରା। ଦେହରୁ ଗମ୍ ଗମ୍ ଝାଳ ବୋହିଯାଉଛି। ଜଳି ଜଳି ଯାଉଛି ଗୋଟିଏ ବିସ୍ଫୋରକ ଦ୍ରବ୍ୟ ଆଡ଼େ। ସେଇଟା ଫାଟିବାକୁ ବେଶୀ ଡେରି ନାହିଁ। ମୁଁ ଗୋଟିଏ ସିଗାରେଟ ଲଗାଇଲି। ହୁଏତ ନିଆଁଟା ଲାଗି ଲାଗି ହୃଦୟ ଆଡ଼େ ଯିବ ଏବଂ ଶେଷରେ ଗୋଟିଏ ବଡ଼ ଧରଣର ବିସ୍ଫୋରଣ ଘଟି ବିଶ୍ୱ ଚରାଚର ସ୍ତବ୍ଧ କରି ଦେବ।

ଦାଢ଼ିଟି କେମିତି ଜଳିଲା। କଟି ଯାଇଥିଲା। କିଛି ରକ୍ତ ବି ବହିଯାଇଥିଲା। ଦାଢ଼ି କଟିଗଲେ, ହାତ କଟିଗଲେ ରକ୍ତପାତ ହୁଏ। ପ୍ରସବରେ, ଋତୁସ୍ରାବରେ ବି ରକ୍ତପାତ ହୁଏ। ତା' ସମସ୍ତେ ଦେଖନ୍ତି, କିନ୍ତୁ ନୀରବରେ ଅଦୃଶ୍ୟ ଭାବରେ ଯେଉଁ ରକ୍ତପାତ ହୁଏ, ତା' କ'ଣ ସମସ୍ତେ ଦେଖି ପାରନ୍ତି ? ନମୁନା କିନ୍ତୁ ଦେଖିଥିଲା, ଦେଖି ପାରୁଥିଲା ଏବଂ ଔଷଧ ବି ଲଗାଇ ପାରୁଥିଲା। ସେଇ ନମୁନା କିନ୍ତୁ ଏବେ ଏମିତି ଚିଠି ଲେଖି ପାରିଲା ? ନାଇଁ, ମୋତେ କିଛି ଏହାର ପ୍ରତିକାର କରିବାକୁ ହେବ। ସିଗାରେଟ ଧୂଆଁ ମୋ ସ୍ନାୟୁ ପୁଞ୍ଜରେ ମାଡ଼ିଗଲା। କିଛି ପତଳା ଧୂଆଁ ନାକ ଓ ମୁହଁ ବାଟେ ବାହାରି ଗଲା। ମୁଁ ଚିନ୍ତା କଲି ନମୁନାକୁ ଲେଖିବି ମୁଁ ଏବେ ଖୁବ୍ ସୁସ୍ଥ ଅଛି। ଏ ପର୍ଯ୍ୟନ୍ତ ମୋର କୌଣସି ପାଗଳାମି ଆରମ୍ଭ ହୋଇନି। ମୋ ପାଇଁ ଆକାଶ ଅଛି। ବତାସ ଅଛି। ଫୁଲ ଅଛି, ମଦ ଭାଙ୍ଗ ଗଞ୍ଜେଇ ଅଛି, ସହରତଳିର କ୍ୟାସ୍ ଡାଉନ୍ ବେଶ୍ୟା ଅଛି। ରେଳ ଲାଇନ୍, ସାଇନାଇଡ୍ ଦଉଡ଼ି ଅନେକ କିଛି ଅଛି। ଏମାନଙ୍କ ଭିତରେ ତୁମେ ରହିଲେ ବା ନରହିଲେ ମୋର କିଛି ଯାଏଆସେନା। ଚାଲ ନମୁନା, ମୋ ଭିତରେ ତୁମେ ତୁମର ଯେଉଁସବୁ ଆସବାବପତ୍ର ବିଛାଇ ଦେଇଥିଲ, ସେଗୁଡ଼ା ସଜାଡ଼ି ଟେକି ନିଅ। ଭଲ କରି ଗଣ୍ଠିଲିପତ୍ର ବାନ୍ଧ। ମୁଁ ତୁମକୁ ନେଇ ପାସେଞ୍ଜର ଟ୍ରେନରେ ବସାଇ ଧୂସର ରୁମାଲ ହଲାଇ ଦେବି। ତୁମେ ପୁଣି ନୂତନ ପୁରୁଷର ନୂଆ ଜଙ୍କସନ ଆଡ଼େ ଆଗେଇ ଯିବ। ତୁମର ବହୁତ ପଛରେ ରହିଯିବ କେଉଁ ଏକ ଷ୍ଟେସନରେ ଧୂସର ରୁମାଲ ହଲାଉଥିବା ନିର୍ବୋଧ ପାଗଳ।

ମୁଁ ବୁଝିଛି ଏ ପ୍ରକାର ଚିଠି ଲେଖିଲା ବେଳେ ମୁଁ ହୁଏତ କାନ୍ଦି ପକାଇବି। କିନ୍ତୁ ନମୁନା ଏ ପ୍ରକାର ଚିଠି ଲେଖିଲା ବେଳେ କାନ୍ଦିଲା ନାହିଁ କାହିଁକି ? ସେ ତ ଅନେକ ସମୟରେ ସାମାନ୍ୟ କଥାରେ କାନ୍ଦି ପକାଏ। ଯଦି କାନ୍ଦ ଆସୁନଥିଲା ତା'ହେଲେ ଚିଠିର

ଠାଏଁ ଠାଏଁ ପାଣି ପକାଇ ଦେଲେ ବି ଚଳିଥାନ୍ତା। ମୁଁ ଜାଣେ ନମୁନାର ଖୁବ୍ ଦେଖେଇ ହେବାର ପ୍ରବୃତ୍ତି ଅଛି। ମୋର ବି ଆଦୌ କମ୍ ନାହିଁ। ମୋର ମନେ ଅଛି– ମୁଁ ଯେତେବେଳେ ସୀମାକୁ ଚିଠି ଲେଖୁଥିଲି ସେତେବେଳେ ଏଇଆ କରୁଥିଲି। ସେତେବେଳେ ସେମିତି ବୟସ ଯେତେବେଳେ କୌଣସି ନାରୀର ସାମାନ୍ୟ ଦୟା, ସାମାନ୍ୟ ସହାନୁଭୂତିରେ ପୃଥିବୀର ସବୁ ଦୁଃଖ ଯନ୍ତ୍ରଣା ଭୁଲିଯିବାର ଇଚ୍ଛା। ମୁଁ ଚାହୁଁଥିଲି ସୀମା ମୋତେ ବୁଝୁ, ମୋ ଅସହାୟତାରେ ସମବେଦନା ଜଣାଉ। ଥରେ ଗୋଟିଏ ଦଶହରାରେ ମୁଁ ହୁଇସ୍କି ପିଇ ଦେଇଥିଲି ମଦନ, ରାଜ, ପ୍ରକାଶ ସହ। ସେମାନେ ନିହାତି ବାଧ କଲେ, କହିଲେ ବେଶ୍ ତ ଜମେଇ ପ୍ରେମ କରୁଛୁ, ମଦ ପିଇବାର ଛାତି ଅଛି ? ତା' ପରେ ମଦ ପିଇବା କଥା ଯାଇ କହିପାରିବୁ ସୀମା ଆଗରେ ? ସେତେବେଳେ ସବୁ ଚାଲେଞ୍ଜ ଗ୍ରହଣ କରିବାର ସମୟ। ଜୀବନର ପ୍ରଥମ ମଦ ମୁଁ ଢକ୍ ଢକ୍ କରି ପିଇ ବାହାରି ଆସିଥିଲି। ସେଦିନ ରାତିରେ ନଖାଇ ଶୋଇଗଲି। କିନ୍ତୁ ପୁଣି ସକାଳେ ସେଇ ମଦନ ରାଜ ପ୍ରକାଶ–କିରେ କହିବାର ସତ୍‌ସାହସ ନାହିଁ। ମୁଁ ଗଲି ସୀମା ଘରକୁ। କହିଲି ସବୁ କଥା। କହିଲି ପ୍ରକୃତରେ ମୋର ପିଇବାର ଇଚ୍ଛା ନଥିଲା, କେବଳ ସେମାନଙ୍କ ଚାଲେଞ୍ଜ ପାଇଁ। ସୀମା ଟିକିଏ ପୁରୁଣାକାଳିଆ। ସିଧା କାନ୍ଦି ଗଲା। ମୁଁ କିଛି କାରଣ ବୁଝିପାରିଲି ନାହିଁ। ମଦ ପିଇବା ବେଳେ ଯେଉଁ ପାପବୋଧ ମୋ ଭିତରକୁ ଆସି ନ ଥିଲା, ସୀମାର ଲୁହ ଦେଖି ମନେହେଲା ମୁଁ ଭୀଷଣ ଏକ ପାପ କରି ପକାଇଛି। ମୁଁ ତାକୁ ବୁଝାଇଲି। କିନ୍ତୁ ସବୁ ବୃଥା। ତା'ର ଗୋଟିଏ କଥା– ତୁମ ପାଇଁ ମୁଁ ମରି ଯାଇଛି। ଦୁଇ ତିନିଦିନ ମୁଁ ତାକୁ ଟିଉସନ ପଢ଼ାଇବାକୁ ଯାଇ ଫେରିଆସିଲି। ମୋ ସହ କଥା କହିଲା ନାହିଁ। ମୁଁ ଅନୁତପ୍ତ ବୋଲି ଲେଖି ତା ଟେବୁଲରେ ଚିଠି ରଖି ଆସିଲି। କିନ୍ତୁ ସବୁ ବୃଥା। ଶେଷରେ ଗୋଟିଏ ଭାବପ୍ରବଣ ଚିଠି ଲେଖିଲି। ମୁଁ ଜାଣେ ସୀମା ମୋର ଦୁଃଖ ଦେଖିପାରେ ନାହିଁ କିମ୍ବା ସହିପାରେନି। ତେଣୁ ଚିଠି ଲେଖିସାରି ଯାଇ ବାଲତିରେ ହାତ ବୁଡ଼ାଇ ଦେଲି ଏବଂ ଥପ୍ ଥପ୍ କରି ପାଞ୍ଚ ଛ' ବୁନ୍ଦା ପାଣି ଚିଠିର ଏଣେ ତେଣେ ପକାଇ ଦେଲି। ଯାହା ଭାବିଥିଲି ତାହା ହିଁ ହେଲା। ଚିଠି ପାଇଲା ମାତ୍ରେ ସେ ସଶରୀରେ ଆସି ଉପସ୍ଥିତ। ନ କାନ୍ଦିବା ପାଇଁ ମୋତେ ବୁଝାଇଲା। ଅନେକ ସାନ୍ତ୍ୱନା ଦେଲା। ମୁଁ ବି ଆଉ କେବେ ମଦ ପିଇବି ନାହିଁ ବୋଲି ଶପଥ କଲି। କିନ୍ତୁ ମୋର ଅଭିନୟ ପାଇଁ ମୋର ଯେଉଁ ପାପବୋଧ ସେଦିନ ମୋ ଭିତରେ ପଶିଯାଇଥିଲା ଆଜିଯାଏଁ ତାକୁ ମୁଁ ନିକାଲି ପାରି ନାହିଁ। ତା'ପରେ ଶପଥ ବି ଆଦୌ ରଖି ପାରିନି। ତା' ପରେ ଅନେକଥର ମଦ ପିଇଛି ଏବଂ ପିଉଛି ମଧ୍। ସୀମା ଗଲା ପରେ ଶପଥର ବା ମୂଲ୍ୟ କ'ଣ ?

ସୀମା କଥା ମନେ ପଡ଼ିଲେ ସତରେ ମୋର ଅନେକ କିଛି ଗୋଳମାଳ ହୋଇଯାଏ। ସେ କେଉଁ ଏକ ବର୍ଷଣମୁଖର ଦ୍ୱିପ୍ରହରରେ ମୋ ହାତରେ ରାକ୍ଷୀ ବାନ୍ଧିଥିଲା ଏବଂ ତା' ପରେ ଧୀରେ ଧୀରେ ମୋତେ ଭଲପାଇବାକୁ ଆରମ୍ଭ କରି ଦେଇଥିଲା।

ସେ ସବୁ ଇତିବୃତ୍ତ ମୋର ଏବେ ବି ସ୍ପଷ୍ଟ ମନେ ଅଛି ଏବଂ ସବୁ ଦିନେ ରହିବ ମଧ୍ୟ। ସେ ମୋତେ ଚମତ୍କାର ଚିଠି ସବୁ ଲେଖୁଥିଲା ଆଉ ମୁଁ ବି ଲେଖୁଥିଲି। ମୁଁ ଅନେକ ଥର ଅନେକ ଝିଅ ପାଇଁ ସାମୟିକ ଭାବପ୍ରବଣତା ଦେଖାଇଛି କିନ୍ତୁ ତା' ସହ ଯେତେ ଉଚ୍ଚକୁ ଯାଇପାରିଥିଲି ଆଉ କାହା ସହ ସେତେ ଉପରକୁ ଯାଇପାରିନି। ସବୁଠୁ କମ୍ ଭଲ ପାଇଛି ନମୁନାକୁ ଏବଂ ନମୁନା ମୋତେ ସେଥିପାଇଁ ଭଲ ପାଇଛି ସବୁଠୁ ବେଶୀ। ଯେତେବେଳେ ସୀମା କଥା ମନେପଡ଼େ ସେତେବେଳେ ନମୁନାର ବାହୁବେଷ୍ଟନୀରେ ଥିଲେ ବି ନମୁନା ଫିକା ଜଣାପଡ଼େ। ମୋ ଆଖିଆଗରୁ ସବୁ ମୁହଁ ଉଭେଇ ଯାଇ ଗୋଟିଏ ସୁନ୍ଦର ସ୍ନେହୀ ମୁହଁ ସାରା ପୃଥିବୀରେ ମାଡ଼ିଯାଏ। ସେତେବେଳେ ମୋର ଆଖି ଅଶ୍ରୁଳ ହୋଇ ଉଠେ।

ସୀମା ସହ ପ୍ରାୟ ଦୁଇ ବର୍ଷର ଅନେକ ସ୍ମରଣୀୟ ମୁହୂର୍ତ୍ତ ପାରି ହୋଇଥିଲି। ଅନେକ ସେକେଣ୍ଡ ମିନିଟ ଘଣ୍ଟା ଦିନ ସପ୍ତାହ ମାସ ବର୍ଷର ଇଟା ସିମେଣ୍ଟ ଚୂନରେ ଗୋଟିଏ ସୁନ୍ଦର ମନ୍ଦିର ଗଢ଼ିଥିଲି। ସେ ମନ୍ଦିରର ଅଧିଷ୍ଠାତ୍ରୀ ଦେବୀ ଥିଲା ସୀମା। ମୋ ଭାବପ୍ରବଣତାର ଫୁଲରେ ସେ ବିଗ୍ରହ ପୂଜିତ ହେଉଥିଲା। କିନ୍ତୁ ହଠାତ୍ ପ୍ରଳୟ ହେଲା। ମନ୍ଦିର ଭାଙ୍ଗିଗଲା। ବିଗ୍ରହଟା ଠିକ୍ ଅବିକଳ ସେଇଠି ରହିଗଲା। ମନ୍ଦିରହୀନ ହୋଇଗଲେ ଯେମିତି ବିଗ୍ରହର ପୂଜାର୍ଚ୍ଚନା ବନ୍ଦ ହୋଇଯାଏ ଠିକ୍ ତାହାହିଁ ହେଲା। ହଠାତ୍ କେଉଁ ଏକ ବର୍ଷର ଜୁନ ପଚିଶ ତାରିଖ ଶୁକ୍ରବାର ସେ ମୋତେ ଏଇ ପୃଥିବୀରେ ଛାଡ଼ି ଆରପାରିକୁ ପଳାଇଲା। ମୁଁ ତଥାପି ବଞ୍ଚି ରହିଲି। କେବଳ କିଛିଦିନ ମୋର ସବୁ ସଂଳାପ ବିଳାପ ଓ ପ୍ରଳାପ ହୋଇଗଲା। ସକାଳ ସଞ୍ଜ ମଧ୍ୟାହ୍ନ ମଧ୍ୟରାତ୍ରି ଫେଣ୍ଟାଫେଣ୍ଟି ହୋଇ ଏକାକାର ହୋଇଗଲା। ତା'ପରେ ଧୀରେ ଧୀରେ ମୁଁ ପୁଣି ବଞ୍ଚିବା ଆରମ୍ଭ କଲି। ସବୁ ପ୍ରଳାପ ବିଳାପ ହେଲା ଓ ତା'ପରେ ସାଧାରଣ ସଂଳାପକୁ ଫେରି ଆସିଲା। ମୁଁ କେବଳ ଯନ୍ତ୍ରଣା ପାଇଲି। ସବୁ ଝିଅ ଭିତରେ ସୀମାକୁ ଖୋଜିଲି। ସେ ମୋଠୁ ଦୂରରେ ରହି କେବଳ ଷ୍ଟାଇଲ ଦେଖାଇଲା।

ସୀମା ଥରେ ଥରେ ସ୍ମୃତି ହୋଇ, ନିଃସଙ୍ଗତା ହୋଇ, ଅସହାୟତା ହୋଇ, ମୃତ୍ୟୁ ହୋଇ ମୋତେ ଭୟ ଦେଖାଏ। ସେତେବେଳେ ମୁଁ ମନେ ମନେ ଚିତ୍କାର କରି କହେ– ସୀମା, ମୋଠୁ ଦୂରକୁ ପଳାଇ ଯାଇ ତୁ ଭୁଲ କରିଛୁ। ମୁଁ ତ ଭୀଷଣ ପାପୀ ଲୋକଟିଏ, ତୋ ପାଖରୁ ଟିକିଏ ସ୍ନେହ ପାଇବା ପାଇଁ ଦିନେ ତୋ ପାଖରେ କାନ୍ଦିବାର ଅଭିନୟ କରିଥିଲି, ସେଇ କଥା ସ୍ୱୀକାର କରିବାର ବାକୀ ରହିଗଲା। ଏ ପୃଥିବୀ ତୋ ବାସଯୋଗ୍ୟ ନୁହେଁ। ଏ ପୃଥିବୀରେ ଧର୍ମଯାଜକମାନେ ଅବୈଧ ସଂଗମ କରନ୍ତି। ଏ ପୃଥିବୀରେ ପ୍ରେମିକାମାନେ ନିର୍ଦ୍ଦୟ ହୋଇ ତାଙ୍କ ଈପ୍‌ସିତ ପୁରୁଷକୁ କଦର୍ଯ୍ୟ ଚିଠି ଲେଖିପାରନ୍ତି। ମୁଁ ତୋତେ ଏ ପୃଥିବୀରେ ଚାହେଁନା। ତୁ କେବଳ ମୋ ପାଇଁ ଏକ ବିଶେଷ ଘଟଣା, ଏକ

ଅବଶ୍ୟମ୍ଭାବୀ ଯନ୍ତ୍ରଣା, ଏକ ଦୁଃଖଦ ସ୍ମୃତି ହୋଇ ରହିଯା। ଏମିତି ଏକ କର୍ମହୀନ ରବିବାର ମଧ୍ୟାହ୍ନରେ ରାସ୍ତା ଉପରେ ଖରାରେ ତୋତେ ସ୍ମରଣ କରି ଉଦ୍‌ବେଳିତ ହୁଏ ଏବଂ ଆଉ କାହାର ସାମୟିକ ଓ ଛଳନାପୂର୍ଣ୍ଣ ଭଲ ପାଇବା ଭୁଲିଯାଏ।

ସାଇକେଲ ମୋଡ଼ ବୁଲିଲା ମାତ୍ରେ ହଠାତ୍ ମେନକାକୁ ଦେଖିଲି। ମେନକା ସେଇ ଧୂ ଧୂ ଖରାରେ ନିଃସଙ୍ଗ ପଡ଼ିଆ ପାରି ହୋଇ ଯାଉଛି। ମେନକା ଠିକ୍ ଲିମ୍‌କା ଭଳି ଦେଖାଯାଉଛି। ସେଇ ଧଳା ଶାଢ଼ି। କିନ୍ତୁ ମେନକା କାହିଁକି ଏପଟେ ଯାଇଥିଲା ? ମୁଁ ସାଇକେଲ ଛୁଟାଇଲି। ମେନକା ସାମ୍ନାରେ ଯାଇ ହଠାତ୍ ପଚାରିବି ତୁମେ ବି କ'ଣ ଧଳା ଶାଢ଼ି ପିନ୍ଧି ଏମିତି କାର୍ଯ୍ୟ କରିବାକୁ ଟିକିଏ ସଙ୍କୋଚ କର ନାହିଁ। ଦ୍ୱିପ୍ରହରରେ ସତ କୁହ ସେ ଚନ୍ଦାମୁଣ୍ଡିଆ ଅଫିସର ଘରକୁ ଯାଇଥିଲ କି ନାହିଁ। କିନ୍ତୁ ରୋକିଗଲି। ଏସବୁ ପଚାରିଲେ ମୁଁ ଜାଣେ ସବୁଦିନ ପାଇଁ ତା' ସହ ସମ୍ପର୍କ ଛିନ୍ନ ହୋଇଯିବ। ବରଂ ଆଜି ତା' ଘରକୁ ଯିବି। ତା' ସହ ଅଭିନୟ କରି କହିବି– ପୃଥିବୀରେ ସମସ୍ତଙ୍କୁ ସନ୍ଦେହ କଲେ ବି କେବେ ମୁଁ ତୁମକୁ ସନ୍ଦେହ କରିବି ନାହିଁ। ପୃଥିବୀରେ ଏପର୍ଯ୍ୟନ୍ତ ସତୀତ୍ୱ ଶବ୍ଦ ଅଚଳ ମୁଦ୍ରା ହୋଇଯାଇନାହିଁ। ପ୍ରେମ ନାମକ ଶବ୍ଦକୁ ନେଇ ପୃଥିବୀରେ ଏବେ ନୂଆ ଭାବେ ଗବେଷଣା ଆରମ୍ଭ ହୋଇଯାଇଛି। ନ ହେଲେ ହଠାତ୍ ତା' ଶୋଇବା ଘରକୁ ସିଧା ପଶିଯାଇ କହିବି– ମେନକା, ତୁମ ସ୍ଥାନ ଏଠାରେ ନୁହେଁ, ସ୍ୱର୍ଗରେ। କିମ୍ବା କହିବି– ମେନକା, ମୁଁ ଆଜିକାଲି କେମିତି ପାଗଳ ହେବାକୁ ଆରମ୍ଭ କରିଛି। କିମ୍ବା– ମେନକା, ତୁମେ କାହିଁକି ମୋତେ ଗୋଟିଏ ଲମ୍ବା ଚିଠି ଲେଖୁନ ? କିମ୍ବା– ମେନକା, ଚାଉଳ ଦର ବହୁତ ବଢ଼ିଯାଇଛି। ନ ହେଲେ କହିବି– ସବୁକୁ ଅତିକ୍ରମ କରି ପୃଥିବୀ ଆଡ଼େ ଗୋଟିଏ ବଡ଼ ବିପ୍ଳବ ମାଡ଼ ଆସୁଛି। ତୁମର ମତ କ'ଣ ? ନ ହେଲେ କହିବି– ତୁମ ସହ ଆଜି ଗୋଟିଏ ଜରୁରୀ କଥା ଅଛି, କାରଣ ନମୁନା ନାମକ ଗୋଟିଏ ଝିଅ ଗୋଟିଏ କଦର୍ଯ୍ୟ ଚିଠି ମୋ ପାଖକୁ ଲେଖିଛି।

ମେନକା ଯାଉ ତା' ଘରକୁ। ମୁଁ ଟିକିଏ ବସଷ୍ଟାଣ୍ଡ ହୋଇ ଯିବି। ସାଇକେଲ ବୁଲାଇ ନେଲି। ଖରା ଟାଣ ହୋଇ ଆସିଲାଣି। ଏଗାରଟାଠୁ ବେଶୀ ହେବ। ଲୋକବାକ ରାସ୍ତାରୁ କମି ଗଲେଣି। ଏକା ଏକା ରାସ୍ତାରେ ମାଷ୍ଟ୍ରାଣୀ ଭଳି ଚାଲି ଚାଲି ଆସୁଥିବ ବୟସ୍କା ଭଦ୍ରମହିଳା, ତା'ପରେ ତିନି ଚାରୋଟି ଛିଡ଼ା ହୋଇ ଗପୁଥିବା ଲୋକ। ଆଖିରେ ଗଗଲସ, ପଞ୍ଜାବିପିନ୍ଧା ବଙ୍ଗାଳୀ ଭଦ୍ରଲୋକ। ବିପରୀତ ଦିଗରୁ ରିକ୍‌ସାରେ ଆସୁଥିବା ନୀଳ ଶାଢ଼ି ପିନ୍ଧା ତରୁଣୀ। ସେପଟେ ମୁହଁ କରି ଚାକିରି କରୁଥିବା ଚେହେରାର ଦୁଇଟି ମେଦବତୀ ଭଦ୍ରମହିଳା, ସାମ୍ନାରୁ ଜଙ୍ଘିଆହୀନ ପେଣ୍ଟ ଛାତି ଉପର ପର୍ଯ୍ୟନ୍ତ ଉଠାଇ, ଭଲଭାବେ ସରୁ ନିଶ ଆଙ୍କି ମାର୍ଚ୍ଚିଂ କରି ଆସୁଥିବା ପ୍ରୌଢ଼ ଅଧ୍ୟାପକ ଶ୍ରେଣୀର ଲୋକ ଏବଂ ଆଗପଛ ହୋଇ ଦୌଡ଼ିଯାଉଥିବା ଦୁଇଟି କୁକୁର। ମୁଁ ଡାହାଣକୁ ବୁଲିଗଲି।

ଗୋଟିଏ ଯାତ୍ରୀ ବୋଝେଇ ନୀଳ ବସ୍ ଆସେ। ହୁସ୍ କରି ମୋ କଡ଼ ଦେଇ ବୁଲି ବସ୍‌ଷ୍ଟାଣ୍ଡ ଗେଟରେ ପଶିଯାଏ। ରିକ୍‌ସାବାଲା ସବୁ ସଚେତନ ହୋଇ ଉଠନ୍ତି। ବେଗ୍ ଧରି ବସ୍‌ଷ୍ଟାଣ୍ଡ ଭିତରକୁ ପଶିଯାଉଥିବା ଗୋଟିଏ ଝିଅର ଖୁବ୍ ପାଖ ଦେଇ ମୁଁ ସାଇକେଲ ଚଳାଇନିଏ। ଦେଖେ ଗୋଟିଏ ବସ୍ ପାଖରେ ଅନେକ ଲୋକ ଘେରି ଯାଇଛନ୍ତି। ଠେଲାପେଲା ହେଉଛନ୍ତି। ଉଠିପାରୁ ନାହାନ୍ତି କିମ୍ବା ଓହ୍ଲାଇବାକୁ ଦେଉ ନାହାନ୍ତି। ସେଇ ଠେଲାପେଲା ଭିତରେ ଗୋଟିଏ ସାନ ଝିଅ ପଡ଼ିଯାଇଛି। ଏପଟ କାଠ ବେଞ୍ଚରେ ବୁଢ଼ା ବସିଛି। ମୁଁ ସାଇକେଲଟାକୁ ଛିଡ଼ା କରାଇ ସେଇ ବେଞ୍ଚରେ ବସିଗଲି। ମୋ ପାଖ ବେଞ୍ଚରେ ଗୋଟିଏ ବେଗ୍ ଓ ତା' ପାଖରେ କଲେଜ ପିଲା ଜାତୀୟ ତରୁଣ। ମୁଣ୍ଡରେ ଲମ୍ବା ବାଳ, ଗାଲରେ ସୁନ୍ଦର ଦାଢ଼ି। ସେପଟ ବେଞ୍ଚରେ ଘମାଘୋଟ ରାଜନୀତି ଆଲୋଚନା ଚଳେଇ ଯାଉଛନ୍ତି ଦୁଇଜଣ ଚନ୍ଦାମୁଣ୍ଡିଆ ଖଦଡ଼ପିନ୍ଧା ଟାଉଟର ଶ୍ରେଣୀର ଲୋକ। ସେମାନଙ୍କ ସାମ୍ନା ଦେଇ ହକର ଚିତ୍କାର କରି କରି ଆଗେଇଗଲା। ତା'ପରେ କେରିୟରରେ କିଛି ସିନେମା ପତ୍ରିକା ଓ ମାସିକ ସାହିତ୍ୟ ପତ୍ରିକା ନେଇ ଗଡ଼ିଗଲା ଆଉ ଗୋଟିଏ ପିଲା। ସେପଟ ଗେଟରେ ଆଉ ଗୋଟେ ନାଲି ବସ୍ ପଶିଲା, ଯାହାକୁ ଲକ୍ଷ୍ୟ କରି ଥୋକେ ଦୌଡ଼ିଲେ।

ମୁଁ ଦେଖିଲି ହଠାତ୍ ମୋ ପାଖରେ ମୋରି ବୟସର ଜଣେ ଲୋକ ଆସି ବସିଲା। ଥରେ ତା' ମୁହଁକୁ ଦେଖି ମୁଁ ଚମକିଗଲି। ମୁଁ ଲୋକଟାକୁ ଚିହ୍ନେ। କିନ୍ତୁ ମନେ କରିପାରୁ ନାହିଁ କେବେ କେଉଁଠି କେଉଁ ପ୍ରସଙ୍ଗରେର ଯାଙ୍କୁ ଦେଖିଛି। ମୋ ଗୋଡ଼ ପାଖରେ ଉଇଲସର ଖାଲି ଖୋଳ ପଡ଼ିଥିଲା। ତାକୁ ଗୋଟେ କିକ୍ ମାରିଲି। ତଥାପି ମନେ ପଡ଼ିଲା ନାହିଁ। ସେ ନିର୍ବିକାର ଚିତ୍ତରେ ଗୋଟିଏ ବହି ବାହାର କରି ପଢ଼ିଲେ। ତାଙ୍କ ଆଗରେ ସନ୍‌ଗ୍ଲାସ ଥିଲା। ସେ ବହି ବନ୍ଦ କରି ସିଗାରେଟ ଧରାଇଲେ ଓ ପୁଣି ବହି ଖୋଲିଲେ। ମୁଁ ପଚାରିଲି–

–ଆପଣ କୁଆଡ଼େ ଯିବେ ?

–ବାଲେଶ୍ୱର।

–ବାଲେଶ୍ୱର ?

–ହଁ। କାହିଁକି ?

–ନାଇଁ, ଏମିତି ପଚାରୁଥିଲି।

ମନେ ମନେ କହିଲି– କିନ୍ତୁ ବାଲେଶ୍ୱର କାହିଁକି ?

ମୋତେ ମନେ ହେଲା ବସ୍‌ଷ୍ଟାଣ୍ଡର ସମସ୍ତେ ଯେମିତି ବାଲେଶ୍ୱର ଯିବା ପାଇଁ ଅପେକ୍ଷା କରି ରହିଛନ୍ତି। ସମସ୍ତଙ୍କ ଯାତ୍ରା ଯେପରି କି ନମୁନା ଆଡ଼େ– ବାଲେଶ୍ୱର।

ପୁଣି ଥରେ ତାଙ୍କୁ ପାଚାରିଲି–

—ଆପଣଙ୍କୁ କେଉଁଠି ଯେପରି ଦେଖିଲା ପରି ମନେ ପଡୁଛି।

—କିନ୍ତୁ ମୁଁ ତ ମନେ କରିପାରୁନି।

—ଆପଣ କ'ଣ ବାଲେଶ୍ୱରରେ ରହନ୍ତି ?

—ପୂର୍ବରୁ ରହୁଥିଲି। ଏବେ ଏଇଠି ରହୁଛି।

—ଠିକ ମୋ ଭଳି। – ମନେ ମନେ କହିଲି।

ସେ ରହସ୍ୟଜନକ ଭାବେ ହସିଲେ। ମୁଁ ବି ତାଙ୍କ ସହ ବୋକା ଭଳି ହସିଲି।

ହଠାତ୍ ବାଲେଶ୍ୱର ବସ୍ ଆସିଗଲା। ସେ ଠେଲାପେଲା କରି ଚଢ଼ିଗଲେ। ଯିବାବେଳେ ଉଇଲସ ଖୋଳଟାକୁ ପାଦରେ ଚକଟି ଦେଇ ଗଲେ। ସେ ଝର୍କା ପାଖରେ ଗୋଟିଏ ଜାଗା ପାଇଗଲେ। ବେଗ୍‌ପତ୍ର ସଜାଡ଼ି ରୁମାଲରେ ମୁହଁ ପୋଛି ମୋତେ ଚାହିଁଲେ। ମୁଁ ବି ତାଙ୍କୁ ଚାହିଁ ରହିଲି। ମୁଁ ମନେ କଲି ହୁଏତ ଲୋକଟି କେବେ ମୋତେ ଖୁବ୍ ସ୍ନେହରେ କହିଥିଲେ– ତୁଟା ପାଗଳଟାଏ। ନ ହେଲେ ଆଉ କେବେ ଯେମିତି କହିଥିଲେ– ମୁଁ ତୁମ ଛଡ଼ା ପୃଥିବୀରେ ଆଉ କାହାକୁ ଭଲପାଏନା। ଅଥବା କେବେ ଦିନେ କହିଥିଲେ– ମୁଁ ଆପଣଙ୍କୁ ଏଇ ମୁହୂର୍ତ୍ତରେ ଖୁନ୍ କରିବି। କ୍ଲିନର ଉପରେ ମାଲ ସଜାଡ଼ି ରଖୁଛି। ସାଇକେଲ ଗୋଟିଏ ଚଢ଼ିଗଲାଣି ଉପରେ। କ୍ଲିନର ଓହ୍ଲାଇ ଆସିଲା। ବସଟାର ଦେହରେ ଦୁଇଥର ସାଙ୍କେତିକ ହାତ ବାଡ଼େଇଦେଲା। ଭସ୍ ଭସ୍ କରି କଳା ଧୂଆଁ ବାହାରିଲା ପଛ ଚକ ପାଖରୁ। ଆଉ ଦି'ଥର ହାତ ବାଡ଼େଇବା ମାତ୍ରେ ବସ୍‌ର ଚକ ବୁଲିଲା। ଏଇ ସମୟରେ ଜଣେ କୁଆଡ଼େ ଦୌଡ଼ି ଦୌଡ଼ି ଆସି ସିଧା ଚଢ଼ିଗଲା। କ୍ଲିନର ଗୋଟିଏ ପାଦ ବସ୍‌ରେ ରଖି କବାଟ ଦରଆଉଜା କରି ଚାରିଆଡ଼େ ଚାହିଁଲା। ସେ ଝର୍କା ଭିତରେ ଦେଇ ହାତ ଗଳାଇ ମୋ ଆଡ଼େ ହାତ ହଲାଇ ଦେଲେ। ଶେଷଥର ପାଇଁ ବସ୍‌ଟା ଅଦୃଶ୍ୟ ହୋଇଗଲା।

ମୁଁ ହଠାତ୍ ମନେକଲି ମୁଁ ଖୁବ୍ ନିଃସଙ୍ଗ ହୋଇଗଲି। ମୋର ପୃଥିବୀରେ ଯେମିତି କେହି ନାହିଁ। ରାସ୍ତାରେ ବୁଲୁଥିବା ଭିକାରି ଛୁଆଠାରୁ ବି ମୁଁ ବେଶୀ ଅନାଥ, ଅସହାୟ। ଯନ୍ତ୍ର ପରି ମୋ ଦେହଟାକୁ ଘୋଷାରି ଘୋଷାରି ସିଗାରେଟ ଦୋକାନ ପାଖକୁ ନେଲି। ସିଗାରେଟ ଓଠରେ ଧରି ପକେଟରେ ହାତ ପୂରାଇଲା ମାତ୍ରେ ହାତରେ ପାଇଲି ଗୋଟିଏ ପାଞ୍ଚଟଙ୍କିଆ ନୋଟ ଓ ତିନୋଟି ମଇଳା ଟଙ୍କିକିଆ ନୋଟ। ନୋଟ ବି ମଇଳା। ତା' ପରେ ହାତରେ ପଡ଼ିଲା ଘରର ଚାବି, ବଡ଼ ଗୋଟିଏ ଦଶପଇସି ଓ ଗୋଟିଏ ପୁରୁଣା ଅଧାଚିରା ସିନେମା ଟିକଟ। ଶେଷରେ ପଚିଶ ପଇସାଟା ଦୋକାନୀ ଆଡ଼େ ଫିଙ୍ଗିଦେଲି। ଦୁଇଟା ପାନ ନେଇ ପକେଟରେ ରଖିଲି। ମୁଁ ଜାଣେ ମେନକା ମିଠା ପାନ ଖାଇବାକୁ ଭଲପାଏ। ପଛ ପକେଟରେ ହାତ ନଦେଇ ବି ମନେ କରିପାରିଲି ନମୁନାର ଚିଠିରେ ଠିକ ସେମିତି ଦୁର୍ଘଟଣାର ସମ୍ବାଦ ଲେଖା ହୋଇଛି। ମନେକଲି ସିଗାରେଟରୁ ଆଉ ଧୂଆଁ ବାହାରୁନାହିଁ। ଲିଭିଯାଇଛି।

ହଠାତ୍ ଗୋଟିଏ ଖିଆଲ ମୁଣ୍ଡରେ ଚଢ଼ିଗଲା। ନମୁନାର ଚିଠିଟା ବାହାର କଲି। ଗୋଟିଏ କୋଣ ଛିଣ୍ଡାଇ ନେଲି। ମିଞ୍ଜି ମିଞ୍ଜି କରୁଥିବା ବତିରେ ଦେଖାଇ ଦେଲି। ସେଥିରେ ସିଗାରେଟ ଧରାଇନେଲି ଏବଂ ସେଇ କାଗଜଟା ଜଳିଯିବା ପର୍ଯ୍ୟନ୍ତ ତାକୁ ହାତରେ ଧରି ରହିଲି। କାଗଜଟା ଲିଭିଗଲାଣି। କିନ୍ତୁ ହାତରେ ନିଆଁର ଛୁଆଁ ବାଜିବା ମାତ୍ରେ ଚମକି ଛାଡ଼ିଦେଲି। ସେଇଟା ତଳେ ପଡ଼ି ସାମାନ୍ୟ ଜଳି ଉଠିଲା। ମୁର୍ଦ୍ଦାର ପୋଡ଼ିଲା ବେଳେ ଯେମିତି ବାଙ୍କିଯାଏ ପୋଡ଼ା କାଗଜଟା ସେମିତି ହୋଇଗଲା। ମୁଁ ଦେଖିଲି ଏବଂ ତାକୁ ପାଦରେ ଦଳିଦେଲି।

ଭିତରେ ମାଡ଼ି ଆସୁଥିବା ନିଃସଙ୍ଗତା ହଠାତ୍ କେମିତି ଏକ ପୂର୍ତ୍ତିରେ ପରିଣତ ହୋଇଗଲା। ପକେଟରୁ ପାନିଆ କାଢ଼ି ମୁଣ୍ଡ କୁଣ୍ଡାଇଲି। ରୁମାଲରେ ମୁହଁ ପୋଛିଲି। ହଠାତ୍ ଇଉରେକା କହି ମୋତେ ଚିତ୍କାର କରିବାକୁ ଇଚ୍ଛା ହେଲା। ଆବିଷ୍କାର କଲି ବାଲେଶ୍ୱର ବସ୍‌ରେ ଯାଉଥିବା ଲୋକଙ୍କୁ ମୁଁ ଚିହ୍ନେ। ତାକୁ ତ ସବୁବେଳେ ଦେଖୁଛି। ତା' ସହ ମୋ ମୁହଁର ସଂପୂର୍ଣ୍ଣ ସାମଞ୍ଜସ୍ୟ ଅଛି।

ମୋର ଇଚ୍ଛା ହେଉଥିଲା ସେଇ ଲୋକଟା ମୋ ପାଖରେ ବହେ କାନ୍ଦନ୍ତା କି! ମୁଁ ତା'ର ପିଠି ଆଉଁଶି ଦିଅନ୍ତି, ତା' ଆଖିରୁ ଲୁହ ପୋଛି ଦିଅନ୍ତି। କହନ୍ତି– ଦୁର୍ଘଟଣାକୁ ଭୟ କରି ବସ୍‌ରେ ଚଢ଼ିବା ଉଚିତ ନୁହେଁ। ବଞ୍ଚିବା ତ ଗୋଟିଏ ବଡ଼ ଦୁର୍ଘଟଣା। ଦୁଃସ୍ୱପ୍ନ ଦେଖିଲେ କେବଳ ଦୁର୍ଘଟଣା ଘଟେ ନାହିଁ। ଦୁଃସ୍ୱପ୍ନ ତ ଗୋଟିଏ ଦୁର୍ଘଟଣା। ଦୁର୍ଘଟଣା ନ ଘଟିବାଯାଏ ସମୟକୁ ଜାଣିହୁଏ ନାହିଁ। କେବଳ ସେତେବେଳେ ସମୟ ଜାଣିହୁଏ ଯେତେବେଳେ ଟେବୁଲ ଉପରକୁ ନୂଆ ତାରିଖ ଫେରିଆସେ, ଅଫିସରେ ଦରମା ମିଳେ, ପୁରୁଣା କେଲେଣ୍ଡର ବହିର ମଲାଟି ହୋଇଯାଏ। ସେତେବେଳେ ବୁଝିହଏ ଗଲା, ସମୟ ଚାଲିଗଲା। ଅନୁଭୂତିଶୂନ୍ୟ ହୋଇ ସମୟ ପଳାଇଲା, ଘଟଣାହୀନ ହୋଇ ଦିନ ଗଡ଼ିଗଲା। ତେଣୁ ସମୟ ଓ ଜୀବନ ଜାଣିବା ପାଇଁ ଦୁର୍ଘଟଣାର ସାମ୍ନା ହେବା ଉଚିତ।

ସାଇକେଲରେ ମେନକା ଘର ଆଡ଼େ ଆଗେଇ ଚାଲିଥିବା ବେଳେ ଏମିତି ଅନେକ କଥା ଅନେକ ତତ୍ତ୍ୱ ଭାଷଣ ଆକାରରେ ଉପଦେଶ ଛଳରେ ରବିବାର ଦ୍ୱି ପ୍ରହରରେ ପୃଥିବୀରେ ବୁଣିଦେଲି। ମୁଁ ଜାଣେ ଏସବୁ ନିଶ୍ଚୟ ସିଏ ଶୁଣିପାରିବ ଯିଏ ପ୍ରତି ମୁହୂର୍ତ୍ତରେ ମୋଠାରୁ ଦୂରକୁ ଦୂରକୁ ପଳାଇ ଯାଉଛି।

ମୋ ହାତ ମେନକାର କବାଟ ଖଟ ଖଟ କଲା। ମେନକାର ହାତ କବାଟ ଖୋଲି ଦେଲା। ହଠାତ୍ ବିଶ୍ୱାସ କରି ପାରିଲା ନାହିଁ ସେ।

–ତୁମେ ଆଜି କେମିତି ?

–ଏମିତି ଚାଲି ଆସିଲି।

–ବସ।

—ନା ବସିବି ନାହିଁ।

—ଗାଧୋଇନ, ଖାଇନ ?

—ନା।

—କେଉଁଠି ଖରାରେ ବୁଲୁଥିଲ ? ଏମିତି କଳା ପଡ଼ିଯାଇଛ ?

ମୋ ଭିତରେ ପ୍ରଚଣ୍ଡ ଖରା। ଉତ୍ତର ଦେଲି ନାହିଁ। ଚଉକିରେ ଗୋଡ଼ ଲମ୍ବାଇ ବସିଲି। କାନ୍ଥରେ ଝୁଲୁଥିବା କେଲେଣ୍ଡର ଦେଖିଲି। ମେନକାର ଫ୍ୟାନ୍ ସୁଇଚ୍ ଅନ୍ କରିବାର ଦୃଶ୍ୟ ଦେଖିଲି। ମନେ ହେଲା ପାଣିଟାଙ୍କି ତଳେ ସେଇ ପାଗଳଟା ପାଣି ପାଇଁ ଚିତ୍କାର ଆରମ୍ଭ କରି ଦେଇଛି। କହିଲି– ମେନକା, ପାଣି ଗିଲାସେ।

ଖାଲି ପେଟରେ କାହିଁକି ପାଣି ପିଇବ। ବରଂ କିଛି ଖାଅ।

ମୁଁ ମନେକଲି ଜଙ୍ଗଲରେ ସେଇ ଝରଣାର ଶବ୍ଦ। ମୋ ଭିତରେ ପ୍ରଚଣ୍ଡ ଶୋଷ। ତାଳପତ୍ର ଆଡ଼େଇ ଆଗେଇ ଚାଲିଛି ଆଗକୁ। କିନ୍ତୁ ଝରଣା କାହିଁ ? ଓଠ ପାଖରୁ କ୍ରମେ ଶ୍ୱାସନଳୀ କଣ୍ଠନଳୀ ଓ ସମସ୍ତ ଶିରାପ୍ରଶିରା ଶୁଖି ଆସୁଛି। ଝରଣାର ଶବ୍ଦ ଦ୍ରୁତତର ହେଉଛି। ମୁଁ କହିଲି–

—ମେନକା, ମୋ ମନ ଆଜି ଭଲ ନାହିଁ।

—କାହିଁକି ?

—ମୁଁ ଜାଣେ ନାହିଁ।

—ଖରାରେ ଏତେ ବୁଲୁଛ କାହିଁକି ?

—ମୋତେ ଗୋଟେ କୁଆଡ଼େ ଯିବାକୁ ହେବ।

ମୁଁ ଭାବିନେଲି ବାଲେଶ୍ୱର ବସ୍‌ରେ ବସି ସେଇ ଲୋକଟା ଏବେ ନମୁନା ଆଡ଼େ, ସୀମା ଆଡ଼େ ଆଗେଇ ଯାଉଛି। ପ୍ରତି ମୁହୂର୍ତ୍ତରେ ମୋ ଦେହଠାରୁ ମୋ କ୍ଲାନ୍ତିଠାରୁ ଦୂରକୁ ପଳାଇ ଯାଉଛି ସେ। ବୋଧହୁଏ ଏଇ ଆଶାରେ ନମୁନା ତାକୁ ବଞ୍ଚାଇ ନେବ। ଏଇ ଖରାବେଳେ ଟିକିଏ ଆଶ୍ରୟ ଦେବ। ମୁଁ କହିଲି–

—ମେନକା, ମୋତେ ବହୁତ ଭୋକ।

—ଭାତ ଗଣ୍ଡେ ଖାଇଦିଅ।

—କ'ଣ ତରକାରି ?

—ଆଜି ରବିବାର, ବୁଲୁ ମାଂସ ଆଣିଥିଲା।

ମନେ ମନେ କହିଲି, ଧଳା ଶାଢ଼ି ପିନ୍ଧି ତୁମେ ବି ମାଂସ ଖାଇପାର। ଭଲ ହେଲା। ମୁଁ ଅନେକ ଦିନରୁ ମାଂସ ଖାଇନି। ଅନେକ ଦିନ ତଳେ ନମୁନା ଘରେ ଯାହା ଖାଇଥିଲି।

ମୁଁ ଖୁବ୍ ସୂକ୍ଷ୍ମ ଭାବେ ମାଂସର ଗନ୍ଧଟା ପାଇଲି। ତା' ସହ ମେନକା ଦେହର ବାସ୍ନା ଏକାକାର ହୋଇଗଲା।

ମୁଁ କହିଲି– ନିଶ୍ଚୟ ଖାଇବି କିନ୍ତୁ ତା’ ଆଗରୁ ପାଣି ଗିଲାସେ ଆଣ।

ମେନକା ଭିତରକୁ ଚାଲିଗଲା। ମୁଁ ପଛପଟୁ ତା’ର ଖୋଲା ପିଠିର ବ୍ଲାଉଜ ଦେଖିଲି। ବେକ ତଳର ରେଶମୀ ଲୋମ ଦେଖିଲି। ଧଳା ବ୍ଲାଉଜର ଛ’ଟି ବୋତାମ ଗଣିଲି। ବ୍ରା ପିନ୍ଧି ନାହିଁ ମେନକା। ପିଠି ପଟେ ବ୍ରା ଫିତା ଦେଖାଯାଉନାହିଁ।

ଅନ୍ୟ ଏକ ଖରାଦିନ ସକାଳ। ନମୁନା ବ୍ଲାଉଜ ପିନ୍ଧି ନଥିଲା। ଗାଧୋଇବା ପାଇଁ ପ୍ରସ୍ତୁତ ହେଉଥିଲା। ଆଉ ମୁଁ–

ମେନକା ଫେରି ଆସିଲା। ମୋ ହାତକୁ ବ୍ଲାଉଜ ପିନ୍ଧି ନ ଥିଲା। ଗାଧୋଇବା ପାଇଁ ପ୍ରସ୍ତୁତ ହେଉଥିଲା। ଆଉ ମୁଁ–

ମେନକା ଫେରି ଆସିଲା। ମୋ ହାତକୁ ସରବତ ବଢ଼ାଇଦେଲା। ମୁଁ ଥଟ୍ଟା କଲି– ଏଇଟାକୁ କ’ଣ ଲିମ୍‌କା ମନେ କରି ପିଇଦେବି।

ସେ ହସିଲା। ବେଶ୍ ପରିଷ୍କାର, ମନଖୋଲା ହସ। ମୋତେ ବେଶ୍ ଭଲ ଲାଗିଲା।

ମୁଁ ଏକା ନିଃଶ୍ୱାସରେ ସେଗୁଡ଼ା ପିଇଦେଲି। ସେ କହିଲା–

ତୁମେ ତ ଗାଧୋଇନ। ଏଇଠି ଗାଧୋଇପଡ଼, ଭଲ ହେବ।

ମୁଁ ସାଧାରଣତଃ କୌଣସି ଝିଅ ଆଗରେ ଦେହର ଜାମା ବି ଖୋଲିପାରେ ନାହିଁ। ଛାତିରେ ଥିବା ଲୋମଗୁଡ଼ା ମୋତେ ବେଶ୍ ଅଶ୍ଳୀଳ ଲାଗେ। ମୁଁ କହିଲି–

ଗାଧୋଇବା ଦରକାର ନାହିଁ। ସେମିତି ଖାଇଦେବି। ଘରେ ଗଲେ ଗାଧୋଇବି।

ସେ ପ୍ରତିବାଦ କଲା– ନାଇଁ, ଅଗାଧୁଆ ଖାଇବା ଭଲ ନୁହେଁ। ତା’ ଛଡ଼ା ଲଜ୍ଜା କରିବାର ବା କ’ଣ ଅଛି ? ଘରେ ତ କେହି ନାହାନ୍ତି।

ଘରେ କେହି ନାହାନ୍ତି ? ମୋ ଭିତରେ ବିଜୁଳି ଚମକିଗଲା।

ବୋଉ ଆଜି ଗାଁକୁ ଗଲା। ମୁଁ ତାକୁ ଛାଡ଼ିବା ପାଇଁ ବସ୍‌ଷ୍ଟାଣ୍ଡ ଯାଇଥିଲି।

ମୁଁ ଭାବିନେଲି– ତା’ହେଲେ ବୋଉକୁ ଛାଡ଼ି ଫେରିବା ବେଳେ ତା’ର ନିଃସଙ୍ଗ ପଡ଼ିଆ ପାରି ହେଉଥିବାର ଦୃଶ୍ୟ ଦେଖିଥିଲି। କହିଲି–

–ବୁଲୁ କୁଆଡ଼େ ଗଲା ?

–ବୁଲୁ ଇଂରାଜୀ ଛବି ଦେଖି ଯାଇଛି।

–କେତେବେଳେ ଫେରିବ ?

–ପ୍ରାୟ ତିନିଟା ସାଢ଼େ ତିନିଟା ହେବ।

–ବର୍ତ୍ତମାନ ସମୟ କେତେ ?

–ବାରଟା ବାଜିବାକୁ ଯାଉଛି। କାହିଁକି ?

–ମୋତେ ମନେ ହେଲା– ସେଇ ଲୋକଟାକୁ ନେଇ ବସ୍‌ଟା ପାହାଡ଼ ଜଙ୍ଗଲ ଝରଣା ଆଡ଼େ ଦୁର୍ଘଟଣା ଘଟାଇବା ପାଇଁ ଛୁଟି ଯାଉଛି।

ମୁଁ ପଚାରିଲି– ଏବେ ତୁମେ ଏକା ରହୁଛ ? ଯଦି କିଛି ଦୁର୍ଘଟଣା ଘଟେ ?

–କାହିଁକି, ଏଇ ତ ତୁମେ ଅଛ । ତା'ର ବେଶ୍ ଇଙ୍ଗିତପୂର୍ଣ୍ଣ ଉତ୍ତର ।

ମୁଁ ବୋକା ଭଳି ମୁଣ୍ଡ ହଲାଇଲି । ସେ ତଉଲିଆ ଆଣିବାକୁ ଭିତରକୁ ଚାଲିଗଲା ।

ମୋ ଭିତରେ ଧୀରେ ଧୀରେ ଖଣ୍ଡେ କଳା ମେଘ ଜମି ଆସିଲା । କ୍ରମେ ଥଣ୍ଡା ଫଳରେ ମୋ ଦେହ ଶୀତେଇ ଉଠିଲା । ଲୋମକୂପ ମୂଳରୁ କମ୍ପନ ଉଠି ଆସିଲା । ମୋ ମୁହଁ ବେକ ଝାଳରେ ଜୁଡୁବୁଡୁ ହୋଇଗଲା । ଜାଣିପାରିଲି ଗୋଟିଏ ପ୍ରଚଣ୍ଡ ଝଡ଼ ମୋତେ ଦୋହଲାଇବାକୁ ଆରମ୍ଭ କଲାଣି ।

ମେନକା ମୋ ହାତକୁ ତଉଲିଆ ବଢ଼ାଇଦେଲା ଓ ମୋ ମୁହଁର ରଙ୍ଗ ବଦଳି ଯାଇଥିବା ଦେଖି ବୋଧହୁଏ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା ।

ମୁଁ ସେମିତି ବସି ରହିଲି । ସେ ମୋତେ କ'ଣ କହିଲା । ମୁଁ ଶୁଣିପାରିଲି ନାହିଁ । ମୋତେ ମନେହେଲା ସେଇ ଲୋକଟା ନମୁନାର ସହର ପ୍ରାୟ ପାଇଲାଣି ଏବଂ ପାଣିଟାଙ୍କି ତଳର ପାଗଳଟା ସିଡ଼ିରେ ଉପରକୁ ଚଢ଼ିବା ଆରମ୍ଭ କରି ଦେଇଛି ।

ମେନକା ମୋ ହାତ ଧରି ଉଠାଇ ଦେଲା । ଛାତିର ଗୋଟିଏ ବୋତାମ ଖୋଲିଦେଲା । ମୋ ସାମ୍ନାରୁ ସେଇ ମୁହୂର୍ତ୍ତରେ ମେନକାର ଛବି ଉଭେଇଗଲା । ନମୁନା ମୋ ସାମ୍ନାରେ ଛିଡ଼ାହୋଇ ପଡ଼ିଲା ।

ମୁଁ ତା'ର ହାତ ଧରି ପକାଇଲି ।

ସେ ମୋ ମୁହଁକୁ ଚାହିଁଲା ଓ ତା'ର ମୁହଁଟା କେମିତି କୁଞ୍ଚିତ ହୋଇଗଲା ।

ମୁଁ ତାକୁ ନିଜ ଛାତି ଆଡ଼କୁ ଆକର୍ଷଣ କଲି । ସେ ମୋ ହାତରୁ ତା' ହାତ ଛଡ଼େଇ ନେଇ ରୋଷେଇ ଘର ଆଡ଼େ ଚାଲିଗଲା ।

ମୁଁ ପେଣ୍ଟ ଉପରେ ତଉଲିଆ ଗୁଡ଼େଇ ପେଣ୍ଟ ବାହାର କଲି । ପେଣ୍ଟରୁ କିଛି ନୋଟ, ଘରର ଚାବି ଖସିପଡ଼ିଲା । ତା'ପରେ ଖସିଲା ନମୁନାର ଚିଠି ।

ଚିଠିଟାକୁ ମୁଁ ଉଠାଇ ଆଣିଲି । ଖଣ୍ଡେ ଅଂଶ ଚିରା । ସେଇଟାରେ ସିଗାରେଟ ଟାଣି ଦେଇଛି ମୁଁ ।

ଚିଠିଟାକୁ ପକେଟରେ ପୂରାଇବାକୁ ଗଲାବେଳେ ଆଖି ବୁଲାଇ ନେଲି । ଗୋଟିଏ କୋଣରେ ଲେଖା– ତୁମେ ଗୋଟିଏ ଅଜବ ପାଗଳ । ତୁମକୁ ପ୍ରଥମ ଦିନୁ ଦେଖିଲା ମାତ୍ରେ ତାହାହିଁ ଭାବିଥିଲି । ମନେ କରିବ ନାହିଁ ଯେ ଏତେଦିନ ତୁମକୁ ଭଲପାଉଥିଲି ବୋଲି । ପାଗଳ ସହ ପାଗଳାମି କଲେ ତ ମଜା ମିଳେ, ଆଉ କିଛି ସମୟ ତ ବେଶ୍ କଟିଯାଏ । ତୁମକୁ ନେଇ ପାଗଳାମି କରାଯାଇପାରେ, କିନ୍ତୁ ଘର କରାଯାଇ ପାରେନା । ତେଣୁ ମୁଁ ଖୁବ୍ ଶୀଘ୍ର ତୁମଠୁ ଭଲ ଏକ ପୁରୁଷକୁ ବାହା ହେବି ବୋଲି ବାପା ବୋଉଙ୍କୁ ସମ୍ମତି ଦେଇ ଦେଇଛି । ସେ ଆଗରୁ ଏଇଠି ରହୁଥିଲେ । ଅନେକଥର ଆମ ଘରକୁ ଆସିଛନ୍ତି । ମୁଁ ବି ତାଙ୍କୁ ବହୁତ ଶ୍ରଦ୍ଧା କରୁଥିଲି ।

ମୁଁ ଆଉଥରେ ମନେକଲି ବାଲେଶ୍ୱର ବସ୍‌ଟା ନିଶ୍ଚୟ ରାସ୍ତାରେ ଧକ୍‌କା ହୋଇଯିବ। ଲୋକଟା ଠିକ୍ ନମୁନା ପାଖରେ ପହଞ୍ଚି ପାରିବ ନାହିଁ।

ଏବଂ ପାଣିଟାଙ୍କି ଉପରେ ପହଞ୍ଚିବାକୁ ପାଗଳକୁ ଆଉ ବେଶୀ ଡେରି ନାହିଁ।

ମୁଁ ପେଣ୍ଟଟାକୁ ସେଇଠି ପକାଇ ଦେଇ ମେନକାର ଶୋଇବା ଘରକୁ ପଶିଗଲି। ମେନକା ଦର୍ପଣ ସାମ୍ନାରେ ବସି ବେକରେ ପାଉଡ଼ର ଦେଉଥିଲା। ମୁଁ ତାକୁ ବିଛଣାକୁ ନେଇ ଆସିଲି। ସାୟାର ଫିତା ବନ୍ଧନମୁକ୍ତ ହେଲା। ମୁଁ ଗାଁଗଣ୍ଡା ପାରି ହୋଇଗଲି। ସହର ଅତିକ୍ରମ କରିଗଲି ତା' ପରେ ପାହାଡ଼ ଜଙ୍ଗଲ। ଶେଷ। ଝରଣାର ଅଦୃଶ୍ୟ ଶବ୍ଦ। ଉଲଗ୍ନ ହେଲି। ଦୌଡ଼ିଲି ଦୌଡ଼ିଲି ଦୌଡ଼ିଲି ଏବଂ ଶେଷରେ ଗୋଟିଏ ବଡ଼ ବିସ୍ଫୋରଣ। ସବୁ ଶେଷ।

ମେନକାର ଥାକରେ ଗୋଟିଏ ପରିଷ୍କାର ଟେବୁଲ ଘଣ୍ଟା ବସିଥିଲା। ମୁଁ ଦେଖିଲି ଧୀରେ ଧୀରେ ମିନିଟ କଣ୍ଟା ଘଣ୍ଟା ଉପରୁ ଓହ୍ଲାଇଗଲା। ତା'ପରେ ପୁଣି ସେମାନେ ଏକ ଦୁଇ ତିନିରୁ ଆରମ୍ଭ କରିବେ। ଦ୍ରୁତ ଆଗେଇଯିବେ ପୁଣି କେଉଁ ଏକ ବିନ୍ଦୁରେ ମିଳିତ ହେବା ପାଇଁ।

ପୃଥିବୀରେ ସମୟ ଖୁବ୍ ଅଳ୍ପ। ଏଇ ସମୟ ମଧ୍ୟରେ ଅନେକ କାର୍ଯ୍ୟ କରିଯିବାକୁ ହେବ। ଅନେକ କଥା ଜାଣିଯିବାକୁ ହେବ।

ମୁଁ ମେନକାର ଘଣ୍ଟାକୁ ଚାହିଁଲି ଓ ବୁଝିପାରିଲି– ପ୍ରକୃତରେ ମୁଁ ନିର୍ଦ୍ଦିଷ୍ଟ ଭାବେ କୌଣସି ନାରୀକୁ ଚାହେଁ ନାହିଁ। କେବଳ ଖୋଜେ, ଗାଁ ଗଣ୍ଡା, ସହର ନଗର ଛାଡ଼ି ଜଙ୍ଗଲ ପାହାଡ଼ ପର୍ବତ ଭିତରେ ଅଦୃଶ୍ୟ ଝରଣାର ଅନୁସନ୍ଧାନ। ସୀମା ନମୁନା ମେନକା ସେଇ ଅନୁସନ୍ଧାନର ଗୋଟିଏ ଗୋଟିଏ ଚିହ୍ନ।

ମେନକା ବାଥ୍‌ରୁମରୁ ଆସି ଏକ ଗୃହୀଣୀର ସ୍ୱରରେ କହିଲା–

–ଗାଧୋଇବାକୁ ଯାଅ, ଭାତ ଶୁଖିଯାଉଛି।

ଘଣ୍ଟା କଣ୍ଟା ଆଗକୁ ଏକ, ଦୁଇ, ତିନି। ଗାଧୋଇବା, ଖାଇବା, ଶୋଇବା, ଅଫିସ ଯିବା ସବୁ ସାଧାରଣ, ଏକ ପରେ ଦୁଇ, ଦୁଇ ପରେ ତିନି, ତିନି ପରେ ଚାରି।

ପୁଣି ସାଧାରଣ ଘଟଣା ଆଡ଼େ ମୁହଁ କରି ମୋର ଯାତ୍ରା। ଉପାୟ ନାହିଁ।

ମୁଁ ଉଠି ପଡ଼ିଲି।



['ଆସନ୍ତାକାଲି', ପୂଜାସଂଖ୍ୟା, ୧୯୭୫ରେ (ଲେଖକଙ୍କର ମୃତ୍ୟୁ ପରେ) ପ୍ରକାଶିତ। ଏହା ପ୍ରକାଶ ଅପେକ୍ଷାରେ ଥିବା ବେଳେ ଲେଖକଙ୍କର ପରଲୋକ ହୁଏ। ଏହା ୰ ଶ୍ରୀ ଦାସଙ୍କର ପ୍ରଥମ ତଥା ଶେଷ ପ୍ରକାଶିତ ଉପନ୍ୟାସ।]

# କବିତା

ଭଲରେ ଭଲ, ଭଲରେ ଭଲ
କେବଳ ଭଲ ପାଇବା ଭଲ
ଭଲରେ ଭେଲ, ଭେଲରେ ଭଲ
ଏଇଠି ଭଲ, ସେଇଠି ଭେଲ
ସେଇଠି ଭଲ, ଏଇଠି ଭେଲ
ସବୁଠି ଭଲ, ସବୁଠି ଭେଲ
ସବୁଠୁ ଭଲପାଇବା ଭଲ
ତୋଅର ଭଲ, ମୋଅର ଭଲ
ଯାଉ ତୁଚ୍ଛାକୁ ଭେଲରେ ଭେଲ ।

ଯାହା ଚାହିଁବୁ ପାଇବୁ ନାହିଁ
ଯାହା ପାଇବୁ ଚାହିଁବୁ ନାହିଁ
ମୁଁ ଚାହୁଁଛି ପାଇବା ପାଇଁ
ତୁ ପାଉଛୁ ଚାହିଁବା ପାଇଁ
ପାଇବା ପାଇବା ସବୁ ପାଇବା
ଭଲ ପାଇବା ।
ପାଇବୁ ଭଲ ଚାହାଁରେ ତତେ
ଚାହାଁ ତୁ ମତେ
ତତେ ଚାହିଁଲେ ମତେ ପାଇବୁ
ମୁଁ ଚାହିଁଲେ, ତୁ ଚାହିଁଲେ, ମୁଁ ଚାହିଁଲେ
ପାଇବି ଭଲ ସବୁ ପାଇବି
ଭଲ ପାଇବି; ପାଇବି ଭଲ
ତୋଅର ଭଲ, ମୋଅର ଭଲ ।

ଦୁଇ ଦିନର ଦୁନିଆଁଟାରେ
ମୁଁ ଖୋଲିଛି, ତୁ ଖୋଲିଦେ
ଛାତି ଖୋଲିଦେ ଛାତିକୁ ମିଶା
ଛାତିରେ ମୋର, ଛାତିକୁ ତୋର
ତୋହରି ଛାତି ମୋହରି ଛାତି
ମିଶାଇ ଦେବା ଭଲ ପାଇବା

ପାଇବା ଭଲ ।
ତୋଅର ଭଲ ମୋର ପାଇବା
ମୋଅର ଭଲ ତୋର ପାଇବା
ଭଲ ପାଇବା–ଭଲ ପାଇବା
ଟାକ୍ ଧିନାଧିନ୍ ଭଲ ପାଇବା
ଭଲ ପାଇବା–ଭଲ ପାଇବା
ପାଇଲେ ଭଲ, ସବୁ ପାଇବା
ସବୁ ପାଇବା ସବୁ ପାଇବା ସବୁ ପାଇବା ।

('ଅନାମ, ୧୧', ଏପ୍ରିଲ ୧୯୭୫)



# ମୋ' ଠାରୁ ଦୂରକୁ

ଦୂର ଦିଗ୍‌ବଳୟ ତଳେ ନୀଳ ନୀଳ ପାହାଡ଼ର ଆମନ୍ତ୍ରଣ
କେତେବେଳେ ଧାଇଁ ଆସି ମୋ' ସାମ୍ନାରେ ଛିଡ଼ାହୁଏ
ଗଛଲତା ଧୀରେ ଆସି ପଥ ଓଗାଳନ୍ତି
କେଉଁ ଅଜଣା ରାଜ୍ୟରୁ ଝରଣା ବି ଆସି କୁଳୁକୁଳୁ ଗୀତ ଗାଏ
ଚୁପ୍‌ଚାପ୍ ଧୀରସ୍ଥିର ହୋଇ ମୁଁ ବସି ଅନୁଭବ କରେ ।
ପାଦତଳୁ ସର୍ ସର୍ ଅଙ୍କାବଙ୍କା ଉଠଣି ଗଡ଼ାଣି ରାସ୍ତା
ଘୁଞ୍ଚିଯାଏ ନିର୍ଜନତା ବୁଣି ବୁଣି ଅନେକ ପଛକୁ ।
ବହୁ କୋଳାହଳ ଆଉ ସମ୍ମେଳନରୁ ଫେରୁଥିବା କବି ଲେଖକର
ମୁଣ୍ଡ ଡେଇଁ ଖୁବ୍ ଦୂର ଜଙ୍ଗଲରେ ଦେଖେ
ଜଣେ କିଏ ଚୁପ୍‌ଚାପ୍ ବସିରହେ ପୁଣି
ପାହାଡ଼ରେ ଛିଡ଼ା ହୋଇ ସୂର୍ଯ୍ୟାସ୍ତ ବି ଦେଖେ
ସିଏ ପୁଣି ଝରଣାର କୂଳେ କୂଳେ ଚୁପ୍‌ଚାପ୍
ଚାଲିଯାଏ ଅନେକ ଦୂରକୁ ।
ସମ୍ମେଳନରୁ ଫେରୁଥିବା ଲେଖକର ନିମଗ୍ନତା କୋଳାହଳ ଅତିକ୍ରମି
ଜଣେ କିଏ ଚାଲିଯାଏ ଅନେକ ପାହାଡ଼ ଟପି
ଅନେକ ଝରଣା ଡେଇଁ ଅନେକ ଶୂନ୍ୟତା ନେଇ ଅନେକ ଦୂରକୁ
ହଠାତ୍ ମୁଁ ଅନୁଭବ କରେ ଆଉ ଚମକୃତ ହୁଏ
ମୋ' ଆସନେ ମୁଁ ନାହିଁ, ମୋ' ସ୍ଥାନ ଖାଲି ।

(କନ୍‌ହେଇନାମା, କନ୍‌ହେଇ ସାହିତ୍ୟ ବିଚିତ୍ରା)



# ସୁରକ୍ଷା

ମୋ'ର ବା ଭୟ କାହାକୁ ? ଯଦିବା ବୋଝେଇ ଲରୀ
ମୋ' ନିରୀହ ସାଇକେଲ ଉପରକୁ ମାଡ଼ିଆସେ, ମୋ'
ନାକ ଉପରେ ନଇଁପଡ଼େ କାହାର ମୁଷ୍ଟିବଦ୍ଧ ହାତ,
ବଜାର ଦରର ଟିଣ ତଲୱାର ଲହଲହ ଜିଭ କାଢ଼ି ମୋତେ
ଭୟ ଦେଖାଏ, ଅନେକ ଜୀବାଣୁ ଉଡ଼ି ଉଡ଼ି ମୋ' ଝର୍କାକୁ
ଆସନ୍ତି, ମଇଁଷି ପିଠିରେ କିଏ ଚଢ଼ି ଆସେ ମୋ' ଦୁଆରେ
ଧକ୍‌କା ମାରେ । ତଥାପି ମୋ'ର ବା ଭୟ କାହାକୁ ?
ମୁଁ ଭୀଷଣ ଭାବେ ସୁରକ୍ଷିତ, କାରଣ ମୋର ବାଁରେ ତୁମ
ନୀଳ ଆଖିର ଅଭିଶାପ ଓ ଡାହାଣରେ
ଗୋଲ ଆଖିର ଆଶୀର୍ବାଦ ।

(କନ୍‌ହେଇନାମା, କନ୍‌ହେଇ ସାହିତ୍ୟ ବିଚିତ୍ରା)



# ଆଣ୍ଡାମାନ

କନ୍‌ହେଇଲାଲ, ତୁ କେବେ ଆଣ୍ଡାମାନ ଦେଖିନୁ
ସବୁବେଳେ ଦୁଃଖ ତୋର ଏପ୍ରିଲ ମାସରେ,
ତୋ' ଭାଇ ତ ବାରିପଦାର ରସିକଲାଲ ନୁହେଁ
ମୁଁ ତ ବସିଛି ଏଠି ସମୁଦ୍ର ଏପାରେ
ତୋ' ଦୁଃଖକୁ ପ୍ଲାଷ୍ଟିକ ଥଳିରେ ଭରି
ପଚାମାଛ ଲାଞ୍ଜ ଭଳି ରାସ୍ତାସାରା ଲୋକଙ୍କୁ ତୁ
ଦେଖେଇ ଆସିଲେ ବି–
ଖେଳପଡ଼ିଆକୁ କେବେ ମୁଁ ଧାଇଁ ଯିବିନି–
ଭୁଲ ଯେତେ କହିଲେ ବି ସମୟକୁ ବାଲି ଓ ଘାସକୁ ।
ପୃଥିବୀର ଉତ୍ତରରେ ତୋ' ଘର କନ୍‌ହେଇଲାଲ,
ପୃଥିବୀର ଦକ୍ଷିଣରେ ମୋର ସବୁ ଅସ୍ୱୀକାର ସ୍ଥିର ହୋଇଯାଏ,
ଅରୁନ୍ଧତୀ ଧ୍ରୁବତାରା ଲୁହ ଝରେ ଥପ୍ ଥପ୍ ତୋ ଦେହରେ
ମୁଁ ଶୁଣେ ଚାରିଆଡ଼େ ସମୁଦ୍ର ଚିତ୍କାର ।
ଯେତେ ଘଣ୍ଟା ବାଜିଲେ ବି ଅନ୍ଧାରୁଆ ବର୍ଗବନ୍ଧନୀରେ
ତୁ ସେମିତି ବସିଥିବୁ ନିଶ ମୋଡ଼ି, ଅଣ୍ଟାରୁ କଉଡ଼ି ସାରି,
ଶେଷ ଯାତ୍ରା ପାଇଁ ଖାଲି ଗାମୁଛା ବାନ୍ଧିବୁ ।
ତୋ ପାଇଁ ଆଣ୍ଡାମାନ ଆସିବାକୁ ଟ୍ରାମ ନାହିଁ ବସ୍ ନାହିଁ
ଟ୍ୟାକ୍‌ସି ବି ତ ନାହିଁ
ମୁଁ କେବେ ମୋ' ଇଚ୍ଛାରେ ତୋ ପାଖକୁ ଇଞ୍ଚେ ବୋଲି
ଘୁଞ୍ଚ ପାରିବିନି ।

ତୁ ବରଂ ବସି ବସି ତୋ ସାମ୍ନାର ପଡ଼ିଆରୁ ମାଗିନେ
ଆଣ୍ଡାମାନ ଆସିବାର ରେଳ ଟିକଟ ଅସ୍ତ ଆଉ ଅସ୍ତ ।
ତା' ପରେ ତୁ ଯଦି ତୋ' ଇଚ୍ଛାଶକ୍ତିର ପାଦେ ଆଗକୁ ଆସି
ବିଷୁବରେଖାର ରଶିରେ
ଚାଲିବା ପାଇଁ ଚେଷ୍ଟା କରୁ ତାହେଲେ ତୋ ଇଚ୍ଛାରେ
ମୁଁ ବି ପାଦେ ଆଗକୁ ଯାଇ ତୋ
ଖେଳ ଦେଖି ତାଳି ମାରିବି ।
ତା'ପରେ ଖେଳିବା ଆମ୍ବ ରାଧା ମୁଣ୍ଡ ମାଠିଆକୁ
ଫିଙ୍ଗିଣ ପଥର
ସ୍ୱପ୍ନ ରେଳ ଚଢ଼ି ଆମ୍ଭେ ଖେଳି ଖେଳି ଯିବା ବହୁଦୂର ।



['କୋଣାର୍କ', କବିତା-ଏକାଙ୍କିକା ବିଶେଷାଙ୍କ, ଉନତ୍ରିଂଶ ସଂଖ୍ୟା ୧୯୭୫ରେ କନ୍ହେଇଲାଲ ଦାସଙ୍କର ମୃତ୍ୟୁ ପରେ ପ୍ରକାଶିତ । କବିତାଟି କବି ସୌଭାଗ୍ୟ କୁମାର ମିଶ୍ରଙ୍କୁ ନିବେଦିତ ।]

# ଦୃଶ୍ୟାନ୍ତର

ସେଦିନ ରବୀନବାବୁଙ୍କ ସାମ୍ନାରେ ସାଂଘାତିକ ଭାବେ ଧରା ପଡ଼ିଯାଇଥିଲି । କାରଣ ସେ ଯେତେବେଳେ ତାଙ୍କ ଘର ସାମ୍ନା ରାସ୍ତା ପାରି ହୋଇ ମୋ' କବାଟକୁ ସନ୍ଦେହବଶତଃ ଖଡ଼ ଖଡ଼ କଲେ ମୁଁ ଓ ସିପ୍ରା ବ୍ୟସ୍ତ ଥିଲୁଁ । ଅବଶ୍ୟ ସିପ୍ରା ତାଙ୍କ ଝିଅ । ମୁଁ ତା'ପରେ ଏକ ବିସ୍ଫୋରଣର ମୁହୂର୍ତ୍ତକୁ ଅପେକ୍ଷା କରି ରହିଲି ।

ସେ ମୋତେ ତାଙ୍କ ଘରକୁ ଡାକି ନେଇଗଲେ, ଅନେକ କଥା ଏଣୁତେଣୁ କହିଲେ, ଶେଷରେ ସେଇ ସାଂଘାତିକ କଥାଟି କହିଲେ– "ବୁଝିଲ, ତୁମେ ବିଶ୍ୱବିଦ୍ୟାଳୟର କୃତୀଛାତ୍ର ହୋଇପାର, କିନ୍ତୁ ଚରିତ୍ରବାନ ନ ହେଲେ କେତେ ବଡ଼ମଣିଷ ହୋଇ ପାରିବ ନାହିଁ ।" କାନ ଉପରୁ ଫୁରୁଫୁରୁ ଧଳା ବାଳ ଥିବା ଗମ୍ଭୀର ବ୍ୟକ୍ତିତ୍ୱ ସଂପନ୍ନ ଏବଂ ଓଡ଼ିଶାର ପ୍ରତିଷ୍ଠିତ ସାହିତ୍ୟିକ ଓ ସମାଲୋଚକ ରବୀନବାବୁଙ୍କୁ ଲକ୍ଷ୍ୟକରି ମୁଁ ସେଦିନ ଝାଳେଇ ଉଠିଥିଲି ।

ତା'ପରେ ଅବଶ୍ୟ ସିପ୍ରା ମୋ' ପାଇଁ ତା ମାମୁ ଘରକୁ ଚାଲାଣ ହୋଇଯାଇଥିଲା ।

ଆଜି ମୁଁ ଅନେକ ଦିନ ପରେ ବାଧ ହୋଇ ରବୀନ୍‌ବାବୁଙ୍କ ଘରକୁ ଯାଇଥିଲି; କାରଣ ପ୍ରିୟା ମା'ଙ୍କ ଦେହ ଭୀଷଣ ଅସୁସ୍ଥ । ସିପ୍ରା ମା'ଙ୍କ ସହ ସାକ୍ଷାତ କରି ଯେତେବେଳେ ରବୀନବାବୁଙ୍କ ଲାଇବ୍ରେରୀ ରୁମ୍‌ର ପର୍ଦ୍ଦା ଉଠାଇଦେଲି, ଏକ ଭିନ୍ନ ପ୍ରକାର ଦୃଶ୍ୟ ଦେଖି ମୁଁ ସ୍ତବ୍ଧ ହୋଇଗଲି ।

ସିପ୍ରା ମା'ଙ୍କ ଶୁଶ୍ରୂଷା ପାଇଁ ନିୟୋଜିତ ନର୍ସ ଲୁଗା ସଜାଡ଼ି ମୁଣ୍ଡବାଳ ସାଉଁଳାଇ ପର୍ଦ୍ଦା ଟେକି ବାହାରି ଆସିଲା ।

ସିଧା ବସାକୁ ଫେରି ଗତମାସର 'ସିନ୍ଧୁ' ପତ୍ରିକାରେ ରବୀନବାବୁଙ୍କ ଲେଖା 'ଚରିତ୍ର ଓ ସମାଜ ଜୀବନ' ପ୍ରବନ୍ଧଟି ଓଲଟାଇବାରେ ଲାଗିଲି ।

(କନ୍‌ହେଇନାମା, କନ୍‌ହେଇ ସାହିତ୍ୟ ବିଚିତ୍ରା)



# ନାଁ

ଝିଅଟା ପାଇଁ ପୁରୀରେ ଅନେକ ଦିନ ରହିଯାଇଥିଲି।

ସୁନ୍ଦରୀ। ଦେହର ବକ୍ରରେଖା ଖୁବ୍ ସୁନ୍ଦର। ଅନେକଦିନ ତା ପଛେ ପଛେ ବୁଲିଲା ପରେ ଜାଣିଲି ଝିଅଟି କଲିକତାରୁ ଆସିଛି।

ମୁଁ ଦିନେ ତାକୁ ତା ନାଁ ପଚାରିଲି। ସେ କହିଲା– "ମୋତେ ସମସ୍ତେ ମିସେସ୍ ବାନାର୍ଜୀ ବୋଲି ଡାକନ୍ତି। ତେବେ ମୋର ପ୍ରକୃତ ନାମ ବିସ୍ମିତା। ଅବଶ୍ୟ କେତେକ ମୁହୂର୍ତ୍ତରେ ସମୀର କହେ– ଡାର୍ଲିଂ, ଶକ୍ତିଦା କହେ– ମାଇଁ ଲଭ, ଯୋଶେଫ୍ କହେ– ମାଇଁ ସୁଇଟ୍ ହାର୍ଟ, ଅହୁରି ବି ଆମ ଡ୍ରାଇଭର ବି. ସିଂ କହେ– ମେରେ ହମ୍‌ସଫର୍ ଏବଂ ଚାକର ଟୋକା ରାଖାଲ କହେ– ପ୍ରିୟତମା। ଆପଣ ଏତେ ନାଁ ଭିତରୁ ଗୋଟିଏ ବାଛି ନେଇପାରନ୍ତି।"

ମୁଁ ସେଇଦିନ ଟ୍ରେନ୍‌ରେ ଚଢ଼ିବସିଲି ।

(ନୂତନ, ପ୍ରଥମ ସଂଖ୍ୟା, ଜାନୁଆରୀ ୧, ୧୯୭୪)



# ଏରାଉଣ୍ଡ୍ ଦି' କଲେଜ୍

ବନ୍ଧୁ ହେ, ଏଠାକାର ସବୁ ଦର୍ଶନୀୟ ସ୍ଥାନ ବୁଲି ଦେଖିସାରିଲା ପରେ ଏଇଠି ଟିକିଏ ଅଟକିଯାଅ । ଦେଖୁଛ ଏ ବିରାଟ କୋଠାଟିକୁ ? ଏଇଟା ପରା କଲେଜ । ତୁମ ଆଖିର କନୀନିକାରେ ଏହାର କିଛି ଫଟୋ ନେଇଯାଅ । ଟିପାଖାତା ବି ଖୋଲିପାର ।

କହିପାରିବ ଏ ବିଦ୍ୟାୟତନର ରଙ୍ଗ ? ଏଁ, ହଳଦିଆ ? ହେଃ, ଦେଖିପାରୁନ । ଏହାର ପ୍ରତ୍ୟେକ ପରମାଣୁ ତାରୁଣ୍ୟର ରଙ୍ଗରେ ରଙ୍ଗିନ । ତେଣୁ ଏଇଠି କେତେ ସନେଟ୍ ଗୁଣଗୁଣେଇ ଉଠେ, କେତେ ଏଲିଜି ମଧ୍ୟ ଅସ୍ପଷ୍ଟ ସ୍ୱରରେ ବିଳପିଯାଏ । କେତେ ଅନୁରାଗର ସ୍ୱର ଏଇଠି ଧୀରେ ଧୀରେ ମୁଣ୍ଡ ଟେକେ । କେତେ ବିରହର ଧ୍ୱନି ବି ଏଇଠି ଧୀରେ ଧୀରେ ହଜିଯାଏ । ଏ ମହାବିଦ୍ୟାଳୟର କେତେ ଦରିଦ୍ର ଛାତ୍ର ଗ୍ରାଜୁଏଟ୍ ହେବା ପାଇଁ ବିନା ଅସ୍ତ୍ରରେ ଜୀବନ ଯୁଦ୍ଧକୁ ଲମ୍ଫଦିଏ । ପୁଣି କେତେ ଧନିକ ଛାତ୍ର ବି ଜୀବନ ଯୁଦ୍ଧ ପାଇଁ ଟେରେଲିନ୍ ଟେରିକଟ୍‌ରେ ସଜ୍ଜିତ ହୋଇ ବାହୁସ୍ଫୋଟ ମାରେ ।

ଭିତରଟା ଦେଖ । କଲେଜ ବାରଣ୍ଡାରେ କେତେ ନଳୀପେଣ୍ଟ ଓ ଚିପା ସାଲ୍‌ୱାରର ଭିଡ଼ । ସହଶିକ୍ଷା କି ନା ! ଦେଖିବ ସହଶିକ୍ଷାର ରୋମାନ୍‌ସ ? ଥରେ ଚାହିଁଦିଅ ଶ୍ରେଣୀର ଦ୍ୱାରବନ୍ଧ ଉପରକୁ । ପୃଥିବୀର ବିଗତ ମହାସମରରୁ ଖଣ୍ଡେ ଛିଟିକି ଆସିଛି ଯେପରି, ଆରମ୍ଭ ହୋଇଛି ତୀବ୍ର ସଂଘର୍ଷ ! ଆରେ ବୁଝିପାରୁନ ? ଏଇ ବର୍ତ୍ତମାନ ସଂଘର୍ଷ ପାଇଁ ଷ୍ଟେସନର ଘଣ୍ଟା ପରି ଘଣ୍ଟା ବାଜିଲା ପରା । ଏ ସଂଘର୍ଷଟା ପ୍ରବେଶ ଆଉ ପ୍ରସ୍ଥାନ ମଧ୍ୟରେ । ପ୍ରବେଶ ତାର ବିଜୟ ପ୍ରତିଷ୍ଠା ପାଇଁ ବିଧା ଚିମୁଟା ପେଲାପେଲି ଆରମ୍ଭ କରିଛି; ପ୍ରସ୍ଥାନ ବି ତାର ପ୍ରତିରୋଧ କରି ଧସ୍ତାଧସ୍ତିର ଶରଣ ପଶିଛି । ବେଶ୍ ଅନେକ ସମୟ ପରେ ସନ୍ଧି ସ୍ଥାପିତ । ଫଳରେ କାହାର ଧୋବ ଫର ଫର ଜାମାରୁ ଇସ୍ତି ସସମ୍ମାନେ ପ୍ରସ୍ଥାନ କରିଛି, କାହାର ନୂଆ ଟେରିକଟ୍ ପେଣ୍ଟର ଅବସ୍ଥା ସାଂଘାତିକ; ପୁଣି କାହାରି ବି ପଟେ ଚପଲ ଦ୍ୱାରବନ୍ଧର ଆରପଟେ ଅପେକ୍ଷା କରୁଛି । କାହାରି ମଧ୍ୟ ଖାତାର ଉପର ପୃଷ୍ଠା ହଠାତ୍ ନିରୁଦ୍ଦିଷ୍ଟ । କିନ୍ତୁ କଣ ପାଇଁ ଏ ବୀରତ୍ୱ ପ୍ରଦର୍ଶନ । ଆରେ, ବୁଝି ପାରୁନ ? 'ବୀରଭୋଗ୍ୟା ବସୁନ୍ଧରା' ପରା । ଅର୍ଥାତ୍ ବୀରମାନେ ହିଁ କେବଳ ବସୁନ୍ଧରା ନାମ୍ନୀ ସୁନ୍ଦରୀ ସ୍ତ୍ରୀକୁ ଭୋଗ କରିପାରନ୍ତି । ଏଁ, ତଥାପି ପରିଷ୍କାର ହେଲାନି କଥାଟା ? ତେବେ ଚାହିଁଦିଅ ଏଇ ହଲର ସାମ୍ନା ବେଞ୍ଚରେ ବସିଥିବା ପତଳା ପିଲାଟିକୁ ।

ମନେ ମନେ ଦେବାନନ୍ଦ ଏକ ? ଗୋଟିଏ ମନରେ ବସି ପିଇଯାଉଛି ଅଧ୍ୟାପକଙ୍କ ମୁଖନିଃସୃତ ବାଣୀ ? କିନ୍ତୁ ଯେତେବେଳେ ଅଧ୍ୟାପକଙ୍କ ଆଖିଡ଼ୋଳା ପିପଠିସୁ ଛାତ୍ରର ମୁଖମଣ୍ଡଳ ଉପରୁ ବହିର କଳାକଳା ଅକ୍ଷର ଉପରକୁ ଓହ୍ଲାଇ ଯାଉଛି, ସେତେବେଳେ ତା'ର ଆଖି ବି ଓହ୍ଲାଇ ଯାଉଛି ସାମ୍ନା ବେଞ୍ଚରେ ବସିଥିବା କଜ୍ଜଳଟଣା ଆଖିର ଉପତ୍ୟକାକୁ । ମାତ୍ର ହାୟ ! ଏ ଯେ ଇଂରାଜୀ ଅଧ୍ୟାପକ ! ବେଶ୍ ଭଲକରି ଦି'ପଦ ଶୁଣାଇଦେଲେ ଗୁଡ଼ ଆଉ ଗୁଡ଼ାଖୁ ମିଶାଇ !

ବନ୍ଧୁ ହେ, ଏପଟକୁ ପାଦ ଚଳାଅ । ହଁ ହଁ, ଏଇଟା କଲେଜ କେଣ୍ଟିନ୍ । କେତେ ଭିଡ଼ ଜମିଉଠିଲାଣି ସେଇଠି । କପ୍‌ପ୍ଲେଟ୍‌ର ଟୁଂ ଟାଂ ଜାପାନୀ ମ୍ୟୁଜିକ ସହ ସୁଆଦିଆ ଜଳଖିଆର ବାସ୍ନା– 'ଘ୍ରାଣେନ ଅର୍ଦ୍ଧ ଭୋଜନଂ ହୋଇ ସାରିଲାଣି । ଦଳେ ଛାତ୍ର ଖାଇବା ଟେବୁଲରେ କେଉଁ ଏକ ଗଭୀର ଆଲୋଚନାରେ ବ୍ୟସ୍ତ । ଚା'କପ ଚାରମିନାର ପାଉଁଶରେ ଡଷ୍ଟବିନ ହୋଇସାରିଲାଣି । ତଥାପି ଆଲୋଚନାର ଶେଷ ନାହିଁ । ସେପଟ ଟେବୁଲରୁ 'ପ୍ରେମ ପୂଜାରୀ'ର ପୂଜା ଚାଲିଛି । ଭିତର ପଟୁଁ 'ଏ ଦିଲ୍ ଦିବାନା ହୈ'...ରେ ମସଗୁଲ ଦଳେ । ଅନେକ ଅନୁରୋଧ ପରେ ଗାୟକ ଦୁଇଥର ଗଳା ଖଙ୍କାରି ଆଖିବୁଜି ଧୀରେ ଧୀରେ କେଉଁ ଏକ ଅଦ୍ଭୁତ ରାଗିଣୀରେ ସ୍ୱର ଉତ୍ତୋଳନ କରୁଅଛନ୍ତି । ସେ ବର୍ତ୍ତମାନ ଷୋଳକଳାରେ ରଙ୍ଗି । ଅନ୍ୟ ଅନୁଚରମାନେ ଟେବୁଲ ବାଡ଼େଇ ଏତେ ଜୋରରେ ମୁଣ୍ଡ ହଲାଇବାକୁ ଆରମ୍ଭ କଲେଣି ଯେ ସେମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ମେଡ଼ିକାଲ ଷ୍ଟୋର ନଗଲେ ଚଳିବନି । ଆଉ ଏପଟେ ନୂଆ ନୂଆ କଲେଜକୁ ପଶିଥିବା ପିଲାଟିକୁ ଦେଖ । ଗଧ ପିଠିରେ ବାଘର ପୋଷାକ ! ନଳୀ ପେଣ୍ଟ, ଚଉଡ଼ା ବେଲ୍‌ଟ, ପଏଣ୍ଟେଡ୍ ସୁ, ଡାହାଣ ହାତ ପାପୁଲିର ପିଠି ଉପରେ ରିଷ୍ଟ ୱାଚ୍, ପୁଣି ବିଶେଷ ଭଙ୍ଗୀରେ ଫରକଟା ପାଦରେ ଛିଡ଼ା ହୋଇ ହାତର ସିଗାରେଟକୁ ଦୁଇ ଆଙ୍ଗୁଠି ଭିତରେ ଚାପି ଶୋଷି ନେଉଛି । ଜଣାପଡୁଛି ଅନଭ୍ୟସ୍ତ, ନହେଲେ ଏମିତି ବେଦମ ହୋଇ କାଶନ୍ତା କାହିଁକି ।

ଓହୋ ସେଇଟା ? ସେଇଟା ପରା କମନ୍‌ରୁମ୍ । କର୍ମକ୍ଳାନ୍ତ ଛାତ୍ର, ନୋଟିସବୋର୍ଡ଼, ଅଧାଚିରା ଟଟକା ଖବରକାଗଜ, ମଜାଗପ, ସିନେମା ଖବର ସବୁ ସେଇଠି । ଏଇ ସେ କୋଣରେ ମେଞ୍ଚାଏ ପିଲା ଖବରକାଗଜର ସିନେମା ବିଭାଗ ପୃଷ୍ଠା ଉପରେ ହାମୁଡ଼େଇ ପଡ଼ିଛନ୍ତି । ସେପଟରେ ଦଳେ କେଉଁ ଏକ ବିଷୟରେ ବାଜି ମରାମରି ହେଉଛନ୍ତି । ଲମ୍ବା କଲି ରଖିଥିବା ପିଲା କେତେଜଣ ଟେବୁଲ ଟେନିସ୍ ଭିତରେ ହଜିଗଲେଣି । ଏଠି ଦଳେ ନୋଟିସ୍‌ବୋର୍ଡ଼ରେ ଲଗାଯାଇଥିବା ନୂଆ ନୋଟିସ ଦେଖିବା ପାଇଁ ଧସ୍ତାଧସ୍ତି ଆରମ୍ଭ କଲେଣି । ତେଣେ କେରମ୍ ବୋର୍ଡ଼ ଚାରିପଟେ ପ୍ରବଳ ପାଟିତୁଣ୍ଡ । ଆଉ ଏଠାରେ ଦଳେ ଚେସ୍‌ର ଘୋଡ଼ାହାତୀ ରାଜାମନ୍ତ୍ରୀ ନେଇ ଯୁଦ୍ଧରେ ମାତିଗଲେଣି । ଉଭୟ ପକ୍ଷ ମୁହଁରେ ଚିନ୍ତାର ଗଭୀର ରେଖା । କପାଳ କୁଞ୍ଚିତ, ଭ୍ରୂ ଉତ୍‌ଥିତ, ମୁଖମଣ୍ଡଳର

ଭାରଦଣ୍ଡ ହାତ ପାପୁଲି ଉପରେ ନିବଦ୍ଧ । ଯୁଦ୍ଧରେ ପରାଜିତ ନେପୋଲିଅନ୍ ମୁହଁରେ ବି ଏ ପ୍ରକାର ଚିନ୍ତାର ରେଖା ଅଙ୍କା ହୋଇଥିବ କି ନା ସନ୍ଦେହ ।

ସେପଟ ବ୍ଲକଟି ପରା ବିଜ୍ଞାନ ବିଭାଗ । ଦେଖୁଛ ଲାବୋରେଟରିରେ କେତେ ବୈଜ୍ଞାନିକଙ୍କ ପରୀକ୍ଷା ନିରୀକ୍ଷା; ନିଉଟନ, ଗାଲିଲିଓ, ଜଗଦୀଶ ଏଇମାନେ ହିଁ । ମଲା ବେଙ୍ଗ, ଏସିଡ୍, ଟେଷ୍ଟ ଟିଉବ୍, ଯନ୍ତ୍ରପାତି ଭିତରେ ହଜିଯାଇଛନ୍ତି ସେମାନେ । କଳା ଛାତ୍ର ଯେତେବେଳେ ଏକ ଫୁଲର ବହିଃସୌନ୍ଦର୍ଯ୍ୟରେ ତନ୍ମୟ ହୋଇ ବର୍ଣ୍ଣନାମୂଳକ କବିତା ଲେଖେ, ଏମାନେ ସେତେବେଳେ ସେଇ ଫୁଲକୁ ଖିନ୍‌ଭିନ୍ କରି କାଟି ତାର ଅଙ୍ଗପ୍ରତ୍ୟଙ୍ଗର ବର୍ଣ୍ଣନାର ଚିତ୍ରରେ ସେମାନଙ୍କ ଲମ୍ବା ଲମ୍ବା ଖାତା ଭରିଦିଅନ୍ତି ।

ଆରେ, ତୁମେ ଏତେ କାନ୍ଥ, ବାଡ଼, ପାଚେରି ଆଡ଼େ ଚାହୁଁଛ କାହିଁକି ? ସେଗୁଡ଼ା ପରା ଐତିହାସିକ ନାମ । ସେ ନାମ ମହାକାଳର ଖାତାରେ ଅସ୍ପଷ୍ଟ ହୋଇଗଲେ ବି ଏ ପାଚେରି କାନ୍ଥ ଦେହରେ କାଳଜୟୀ ହୋଇ ରହିବ । କାରଣ ସେମାନେ ଏ କଲେଜ ଇଲେକ୍‌ସନର ଜଣେ ଜଣେ ମହାରଥୀ । ଆଉ ଏ ଝିଅଙ୍କ ନାମ ? ସେମାନେ ଏ କଲେଜର ବିଉଟି କୁଇନ, ହିରୋଇନ୍ ଇତ୍ୟାଦି । ପ୍ରତିବର୍ଷ ପ୍ରତି ମୁହୂର୍ତ୍ତ କାନ୍ଥ ପାଚେରିରେ ଏ ନାମଗୁଡ଼ା ରିନିଉ ହୁଏ । ତୁମେ ଯଦି କେବେ ଶ୍ରେଣୀ ଭିତର କଳାପଟା ଉପରେ ଆଖି ପକାନ୍ତ, ତାହାହେଲେ ଦେଖନ୍ତ କେତେ କିସମର ଛବି, କେତେ ପ୍ରକାର ନାମ, କେତେ ପ୍ରକାରର କବିତା ସେଇଠି ଲେଖା । ସହଶିକ୍ଷାର ରୋମାନ୍‌ସ ଚାରିଆଡ଼େ ।

ବନ୍ଧୁ ହେ, ଏଥର ଫେରିଆସ ଫାଟକ ପାଖକୁ । ସେଠାରୁ ଚାହିଁଦିଅ ବରଗଛ ମୂଳର ପାଚେରି ଉପରକୁ । ସେଇଠି ଗୋଟିଏ ବିଶିଷ୍ଟ ଦଳ ସେମାନଙ୍କ ବିଶେଷ ଆଲୋଚନାରେ ମସ୍‌ଗୁଲ । ଦୁନିଆର କାହାରିକୁ ସେମାନଙ୍କର ଭୟ ନାହିଁ; କାରଣ ସେମାନେ ଏ ଯୁଗର ତରୁଣ । ଛାତ୍ରଛାତ୍ରୀ, ଅଧ୍ୟାପକ, ଅଧ୍ୟାପିକା, ବାଟଏଲା– ସମସ୍ତେ ଏମାନଙ୍କ ମନ୍ତବ୍ୟର ଶିକାର ହୁଅନ୍ତି । ଦେଖୁଛ, ଗୋଟିଏ ଝିଅ ଲମ୍ବା ବେଣୀ ଦୋଳାଇ ଫାଟକ ଭିତରକୁ ପ୍ରବେଶ କରୁଛି । ସେ ଦଳରୁ ଜଣେ ବଡ଼ପାଟି କରି ସାଙ୍କେତିକ ଭାଷାରେ କଣ ପଦେ କହିଦେଲା । ସମସ୍ତେ ହୋ-ହୋ ହସିଉଠିଲେ । ହସ କ୍ରମେ ଶେଷ ହେଲା । କିନ୍ତୁ ଝିଅଟି ସଂପୂର୍ଣ୍ଣ ନୀରବ । ପାହାଡ଼ ଉପରକୁ ଢେଲା ପକାଇଲେ ଢେଲା ସିନା ଭାଙ୍ଗିଯାଏ, ପାହାଡ଼ କିନ୍ତୁ ନିର୍ବିକାର । ଏଇ, ଦଳେ ଝିଅ ସେମାନଙ୍କ ସାମ୍ନାଦେଇ ଚାଲିଯାଉଛନ୍ତି । ତା ଭିତରୁ କେହି ସୁଲେଖା କାଳି ରଙ୍ଗର ମୁହଁ ଉପରେ ଗୋଟେ ଚୂନ କାମ କରିଛି, କେହି ଏଣ୍ଡୁଅ ଆଖି କୋଣରେ କଜ୍ଜଳର ତଲଓ୍ୱାର ଆଙ୍କିଛି, କେହି ମୁଖବ୍ରଣର ଉପତ୍ୟକାରୁ ଅସଜଡ଼ା ଚୂର୍ଣ୍ଣକୁନ୍ତଳ କେତୋଟି ଲମ୍ବାଇ ଦେଇଛି, କିଏ ହଂସୁଲୀ ଚାଲିର ସୁନାମ ଅର୍ଜିବା ପାଇଁ ଅଣ୍ଟାତଳ ଦୋହଲାଇ ଚାଲିବାର ଅଭ୍ୟାସ କରୁଛି, କିଏ ବାରମ୍ବାର ନିଜ ଦେହର ବନ୍ଧୁର ଉପତ୍ୟକା ଉପରକୁ ଏକ ବିହଙ୍ଗମ ଦୃଷ୍ଟି ବୁଲାଇ ନେଉଛି । ସେମାନଙ୍କ ମଧ୍ୟରୁ କେତେକ ମନେମନେ ବିଉଟି କୁଇନ୍, କେତେକ

ମନେମନେ ଦି ମିସ୍ ଇଉନିଭର୍ସ । କିନ୍ତୁ ପାଚେରି ଉପରୁ ସେ ଦଳର ଗୋଟିଏ ପିଲା ପାଟିରେ ଆଙ୍ଗୁଠି ପୂରାଇ ଛାଡ଼ିଲା ଗୋଟେ ଲମ୍ୱା ହୁଇସିଲ । ତ୍ରସ୍ତା ବନହରିଣୀ ଯେପରି ସିଂହର ଗର୍ଜ୍ଜନରେ ପଛକୁ ଟିକେ ଫେରିଚାହେଁ, ସେହିପରି ଟିକେ ଅର୍ଦ୍ଧବୃତ୍ତରେ ଚାହିଁ ଆଗକୁ ଆଗେଇ ଚାଲିଲେ ପରୀର ଦଳ ।

ସେପଟକୁ ଟିକେ ଚାହିଁ । ଦେଖ ସେ କଦଳୀ ବିକୁଥିବା ଲୋକଟାର ଅବସ୍ଥା । ଡଜନେ ଟୋକା ଚାଖୁଚାଖୁ ତାର ଦୁଇ ଡଜନ କଦଳୀ ଆତ୍ମସାତ୍ କରିଦେଲେଣି। ଲୋକଟି କିଛି କହିବାକୁ ପାଟି ମେଲା କରିବା ପୂର୍ବରୁ ଦଳେ ତାକୁ ଇଂରାଜୀ-ହିନ୍ଦୀ-ଓଡ଼ିଆ ଅଭିଧାନରୁ ବଡ଼ ବଡ଼ ଶବ୍ଦ ବାଛି ତା କାନରେ ପୂରେଇ ଦେଲେଣି । ସେ ପଟରେ ଆଉ ଜଣେ, ଚିନାବାଦାମ ଦୋକାନୀ ପାଖରୁ ଦଶ ପଇସାର ଚିନାବାଦାମ ନେଇ ତାକୁ ଦଶଟଙ୍କିଆ ନୋଟ ଦେଖାଇ ଦେଉଛି । ଦୋକାନୀ ପାଖରେ ଖୁଚୁରା ନାହିଁ କହିବାରୁ ପିଲାଟି ଖୁସି ମନରେ ବାଦାମ ଚୋବେଇ ଚାଲିଛି ।

ଏଠୁ ଚାଲିଯିବା ଆଗରୁ ଶେଷଥର ପାଇଁ ଚାହିଁଦିଅ ବଗିଚା ଆରପଟେ ଗାର୍ଲସ କମନରୁମ୍ ଆଡ଼େ । କିଏ କ୍ଲାସର ସୁନ୍ଦରୀ ଝିଅ ସଙ୍ଗେ ବେଶୀ ସମୟ କଥାବାର୍ତ୍ତା ହୋଇ ପାରିବ ସେ କଥା ନେଇ ପ୍ରତିଯୋଗିତା । ତେଣୁ ସେ କମନ୍‌ରୁମ୍ ପାଖରେ ଇସ୍ତିଦିଆ ନଳୀପେଣ୍ଟ, ସୁନ୍ଦର ସୁନ୍ଦର ଚେକ୍ ସାର୍ଟ, ସିନେମା ଷ୍ଟାର ହେୟାର କଟିଂର ହାଟ ଲାଗିଯାଇଛି ।

ବନ୍ଧୁ ହେ, ଏପଟରେ ତାରୁଣ୍ୟର ବାସ୍ନା, ଉଦ୍ଦାମତାର ଆସ୍ଫାଳନ ଡ୍ରେନ୍‌ପାଇପ୍ ପେଣ୍ଟ, ଚଉଡ଼ା ବେଲଟ୍, ପଲି ରେକ୍‌ସ, ସିନେମା, ପଲିଟିକ୍‌ସର ଆଲୋଚନା; ସେପଟେ ଚପଳତାର ଢେଉ, କେଶର ଗନ୍ଧ, ଚିପା ସାଲଓ୍ୱାର୍, ଟପ୍‌ଲେସ୍ ବ୍ଲାଉଜ୍, ଟୟଲେଟ୍ ବାସ୍ନା, ମୁଠା ମୁଠା ସ୍ୱପ୍ନ, ଖିଲିଖିଲି ହସ । ଏ ବିଦ୍ୟାୟତନ ଏକ ଜଙ୍କସନ୍ । ଘଣ୍ଟା ବାଜେ । ବିପରୀତ ଦିଗରୁ ଟ୍ରେନ୍ ଆସେ । ଛିଡ଼ାହୁଏ । ଭାବ ଆଦାନପ୍ରଦାନ ହୁଏ । ଚାଲେ କିଣାବିକା । ହୈହାଲା । ପୁଣି ଶେଷ ଘଣ୍ଟା ବାଜେ । ଜୀବନ ପୁସ୍ତକର ତାରୁଣ୍ୟ ଅଧ୍ୟାୟର କେତୋଟି ଛନ୍ଦଚପଳ ମୁହୂର୍ତ୍ତକୁ ଏଇଠି ଛାଡ଼ି ପୁଣି ନୂଆ ଦିଗନ୍ତ ଆଡ଼କୁ ମୁହଁ କରେ ସେ ।

ଏହାହିଁ କଲେଜର ରଙ୍ଗିନ୍ ଜୀବନ । ଏଠାକାର ପ୍ରତ୍ୟେକ ପାହାଚ ଇନ୍ଦ୍ରଧନୁର ରଙ୍ଗରେ ରଙ୍ଗିନ୍ । ଶୋକ-ବେଦନା-ଯନ୍ତ୍ରଣା ଏଠି ଇଥରୀୟ ଗଳ୍ପ। ଜୀବନ ଝଞ୍ଜାର ସମ୍ମୁଖୀନ ହେବା ପୂର୍ବରୁ ଏହା ଉପଭୋଗ୍ୟ ଶାନ୍ତ ପ୍ରକୃତି। ଧୂସର ଦିଗନ୍ତ ଏଠୁ ଅନେକ ଦୂରରେ।

(କନ୍‌ହେଇନାମା, କନ୍‌ହେଇ ସାହିତ୍ୟ ବିଚିତ୍ରା)



# କନ୍‌ହେଇଲାଲ ଦାସଙ୍କ ଡାଇରିର ସଂପାଦିତ ଅଂଶ

କୌଣସି ଲେଖକର ଦିନଲିପି (Diary) କଣ ତାର ସାହିତ୍ୟର ଜୀବନ ଲିପି ? 'କନ୍‌ହେଇ କଥାଘର'ର ଏଇ ଅଧ୍ୟାୟଟି ପାଠ କଲାବେଳେ କେହି କେହି ପାଠକଙ୍କ ମନରେ ହୁଏତ ସ୍ୱତଃ ଏଇ ପ୍ରଶ୍ନଟି ଉଠିପାରେ । କାରଣ ଏଯାବତ୍ ଓଡ଼ିଆ ସାହିତ୍ୟରେ କୌଣସି ଲେଖକର ବ୍ୟକ୍ତିଗତ ଜୀବନକୁ ତାର ସାହିତ୍ୟ ସହିତ ବିଶେଷ ଭାବେ ତଉଲି ଦେଖାଯାଇନାହିଁ । କାରଣ, ଆମର ଅନେକ ସମାଲୋଚକଙ୍କର ବିଶ୍ୱାସ ଯେ, ଲେଖକ ମୂଳତଃ ଏକ କଳ୍ପନା-ପ୍ରବଣ ଓ ସ୍ୱପ୍ନ-ବିଳାସୀ ମଣିଷ ଏବଂ ତାର ସାମଗ୍ରିକ ଆଚରଣ ଓ କ୍ରିୟା-ପ୍ରତିକ୍ରିୟା ଆମୂଳାନ୍ତ ଏଇ ସ୍ୱପ୍ନ ଓ କଳ୍ପନା ଉପରେ ପର୍ଯ୍ୟବସିତ । ମାତ୍ର ପ୍ରକୃତପକ୍ଷେ ଦେଖିଲେ ଜଣେ ସଚ୍ଚା ଲେଖକର ସୃଷ୍ଟି ତାହା ନୁହେଁ । Edwin Arlington Robinson ନାମକ ଜଣେ ପ୍ରସିଦ୍ଧ ବ୍ୟକ୍ତି ଥରେ କହିଥିଲେ– " I shall have more to say when I am dead." (Span–April-1984) । ତେଣୁ କୌଣସି ସାହିତ୍ୟିକର ଯେଉଁ ସୃଷ୍ଟିକୁ ବା ସୃଷ୍ଟି ସମୂହକୁ ଆମେ ଦେଖୁ, ତାହା ତାର ସମଗ୍ର ଜୀବନ ବା ସମଗ୍ର ଜୀବନର ଭାଷ୍ୟ ବୋଲି କହି ହେବ ନାହିଁ । ମୃତ୍ୟୁବେଳକୁ ମଧ ଅନେକ କଥା ତଥାପି ଅକୁହା ରହିଯାଇଥାଏ । ତେଣୁ କୌଣସି ସାହିତ୍ୟିକର ସୃଷ୍ଟି ତାହାର ସମଗ୍ର ଜୀବନଠାରୁ ଅବିଚ୍ଛେଦ୍ୟ ଓ ତାହା ଏକ ବିରାଟ ବାସ୍ତବତାର ଏକ କ୍ଷୁଦ୍ର ଅଂଶମାତ୍ର । ଏହା ଠିକ୍ ପାଶ୍ଚାତ୍ୟ ଗୀତି କଥାର Inchcapc Rock ପରି – ଯାହାର ଉପରକୁ ଦେଖାଯାଉଥିବା ଅଳ୍ପ କିଛି ଅଂଶ ଯେତିକି ସତ୍ୟ– ତା'ଠାରୁ ଅଧିକ ସତ୍ୟ ଖାଲି ଆଖିକୁ ଦେଖାଯାଉନଥିବା ତାହାର ନିମଜ୍ଜମାନ ବୃହଦଂଶ । ତେଣୁ ଜଣେ ସାହିତ୍ୟିକର ସୃଷ୍ଟିଧାରା ଓ ସୃଷ୍ଟି ପ୍ରକ୍ରିୟାର ସମୀକ୍ଷା କରିବା ସମୟରେ ତାହାର ବାସ୍ତବ ଜୀବନର ବିଭିନ୍ନ କ୍ରିୟା ପ୍ରତିକ୍ରିୟା ସମୀକ୍ଷା ଅତ୍ୟନ୍ତ ଆବଶ୍ୟକ ।

କୁହାଯାଏ, ମଣିଷ ଏକାନ୍ତରେ ଥିବାବେଳେ ନିଜ ସହିତ ଛଳନା କରେ ନାହିଁ । ସେଥିପାଇଁ ମଣିଷ ମେଳରେ ଥିବା ମଣିଷଠାରୁ ନିଭୃତ ସ୍ନାନାଗାର ବା ନିର୍ଜନ ଶୟନ

କକ୍ଷର ମଣିଷ ଭିନ୍ନ । ଏକାନ୍ତତା ଅନ୍ୟାର୍ଥରେ ନିଜ-ମନସ୍କତା ଓ ଅପରାର୍ଥରେ ନିଜ ସଂପର୍କରେ ଅକପଟ ସତ୍ୟ-ଭାଷଣ । ଏଇ ଦୃଷ୍ଟିରୁ କୌଣସି ବ୍ୟକ୍ତିର ବ୍ୟକ୍ତିଗତ (Personal and Private) ଦିନଲିପି (Diary) ରୁ ହିଁ ତା' ନିଜର ନିରାବରଣ ପରିଚୟ ମିଳିଥାଏ । ତା'ର ସାହିତ୍ୟ ତାହାର ଏକ ପ୍ରତିରୂପ ଏବଂ ତାର ସେହି ସାହିତ୍ୟରେ ସେ ସେହି ନିରାବରଣ ନିଜ-ରୂପଟିକୁ ସାହିତ୍ୟିକ ପରିଧାନ ପରିପାଟୀରେ ସଜେଇ ଦେଇଥାଏ କେବଳ ।

ଏଇ ଦୁଇଟି ଦୃଷ୍ଟିକୋଣକୁ ଆଖିଆଗରେ ରଖି, ଆମେ 'କନ୍‌ହେଇ କଥାଘର'ରେ 'କନ୍‌ହେଇ ଦିନଲିପି' ନାମରେ ଏଇ ଅଧ୍ୟାୟଟି ସଂଯୋଜିତ କରିଛୁ। ଏହି ଅଧ୍ୟାୟଟି ସଂପାଦନା କଲାବେଳେ ଆମ ହାତରେ ଅଛି କନ୍‌ହେଇଲାଲ ଦାସଙ୍କର ୩ଟି ଡାଇରି (ଆହା ! ତାଙ୍କର ସବୁଗୁଡ଼ିକ ଡାଇରି ମିଳନ୍ତା କି !) । ବହୁ ଅନୁସନ୍ଧାନ ପରେ ଆମେ ମାତ୍ର ଏହି ୩ଟି ଡାଇରି ପାଇବାକୁ ସମର୍ଥ ହୋଇଛୁ । ସେଥିରୁ ପ୍ରଥମଟି – ଲାଲ ପ୍ଲାଷ୍ଟିକ୍ କଭର ଥିବା ୧୯୭୩ର ଏକ କ୍ରାଉନ୍ ସାଇଜ ଡାଏରି । ଏହା ନିଜେ ନିଜକୁ ଉପହାର ଦେଇଛନ୍ତି କନ୍‌ହେଇଲାଲ । ଅନ୍ୟ ଦୁଇଟି ଡାଏରି ୧୯୭୫ ମସିହାର । ଏ ଉଭୟ ମଧ୍ୟରୁ ପ୍ରଥମଟି –କଳାରଙ୍ଗର କଭର ଥିବା ଜୀବନ-ବୀମାର ଏକ ଡାଇରି, ଯାହା କେହି ଜଣେ 'ଟୁଟୁ' ଜୁନ ୧୧ରେ ଉପହାର ଦେଇଛି କନ୍‌ହେଇଲାଲଙ୍କୁ । ଉତ୍ସର୍ଗ ଲିପିରେ ଉଲେଖ ଅଛି– "ନବବର୍ଷର ଶୁଭେଛା ସହ କନ୍‌ହେଇକୁ ମୋର – ଟୁଟୁ" ଏବଂ ତାର ସ୍ୱୀକୃତିରେ କନ୍‌ହେଇଲାଲ ଲେଖିଛନ୍ତି– " 'ଗୃହୀତ ହେଲା' –କନ୍‌ହେଇ ।" ଡାଇରିର ଅନ୍ୟତ୍ର, ଜୁନ ୧୧, ୧୯୭୫ ବୁଧବାର ଦିନ ଲେଖା ଅଛି– "ଜୁଲିର ଆଖିପତାରେ କଜ୍ଜ୍ୱଳ । ନାଁଟା ତ ସାର୍ଥକ କରିବାକୁ ହେବ । ଡାଇରିଟା ରମେଶ ମହାନ୍ତିର ଉପହାର ଆଜି ।" ଏଥିରୁ ଜଣାଯାଏ, ଏଇ ରମେଶ ମହାନ୍ତି ସମ୍ଭବତଃ ଉତ୍ସର୍ଗ ଲିପିର 'ଟୁଟୁ' । ଏଇ ଡାଇରିର ଜାନୁଆରୀ ୨ ଗୁରୁବାରଠାରୁ ଜାନୁଆରୀ ୨୪ ଶୁକ୍ରବାର ପର୍ଯ୍ୟନ୍ତ ଥିବା ପୃଷ୍ଠାଗୁଡ଼ିକରେ ଅଛି ଏକ ନାମହୀନ ଗଳ୍ପର ପାଣ୍ଡୁଲିପି । (ଗଳ୍ପଟି ସବିଶେଷ ସୂଚନା ସହ ଏଇ ପୁସ୍ତକରେ ଅନ୍ୟତ୍ର ସଂଯୋଜିତ ।) ଏଇ ସମଗ୍ର ଡାଇରିଟିରେ ମାତ୍ର ଗୋଟିଏ ପୃଷ୍ଠାରେ ଜୁନ ୧୧, ୧୯୭୫ ବୁଧବାର ଦିନ ଦିନଲିପି ଲେଖିଛନ୍ତି କନ୍‌ହେଇଲାଲ । ସେଥିରେ ଲେଖାଅଛି– "ମୁଁ ଯଦି ମୁଁ ହୋଇନଥାନ୍ତି, ଯଦି ଆଉ କେହି ହୋଇଥାନ୍ତି ! ମନେକର ମୁଁ ଆଉ ମୁଁ ନୁହେଁ, ମୁଁ ଆଉ କନ୍‌ହେଇଲାଲ ଦାସ ନୁହେଁ, ଆଉ କେହି, ମନେକର....." (ଏହି ଲେଖା ଅସମାପ୍ତ ଅଛି) । ୧୯୭୫ ମସିହାର ୨ୟ ଡାଇରିଟି ଏକ ଛୋଟ କଏଲ ବାଇଣ୍ଡିଂକରା ଚତୁଷ୍କୋଣ ଡାଇରି । ଏହା B.Y. Rajak ନାମକ ଜନୈକ ମୁସଲମାନ ବନ୍ଧୁ ଉପହାର ଦେଇଛନ୍ତି କନ୍‌ହେଇଲାଲଙ୍କୁ । ଉପହାର ଦିବସର ବାର ଓ ତାରିଖ ନାହିଁ । ଏହି ଡାଇରିର ପ୍ରଥମ ପୃଷ୍ଠାଠାରୁ ଫେବୃଆରୀ ୧୯ ପର୍ଯ୍ୟନ୍ତ ପୃଷ୍ଠାଗୁଡ଼ିକରେ କିଛି ଲେଖା ନାହିଁ ଏବଂ ଫେବୃଆରୀ ୨୦ ତାରିଖର ପୃଷ୍ଠାରେ ଅଛି ଏକ

ଅସରନ୍ତି ପଥର ତ୍ରିଛକି ଓ ସେହି ତ୍ରିଛକିର ପୃଷ୍ଠଭୂମିରେ ୨ଟି ମଣିଷ (ସମ୍ଭବତଃ ନାରୀ ଓ ପୁରୁଷ)ର ରେଖାଚିତ୍ର । ତାହାର ବାମଊର୍ଦ୍ଧ୍ୱ ପ୍ରାନ୍ତରେ ଜଗନ୍ନାଥଙ୍କ ଚକ୍ଷୁଗୋଲକ ପରି ଦୁଇଟି ବିସ୍ଫାରିତ ଚକ୍ଷୁ ସେମାନଙ୍କୁ ନିରୀକ୍ଷଣ କରୁଛି । ଡାଇରିର ପ୍ରଥମ ଲେଖାର ତାରିଖ ୨୪ ଫେବୃଆରୀ ସୋମବାର ଓ ଶେଷ ଲେଖାର ତାରିଖ ୩ ମେ’ ୧୯୭୫ ଶନିବାର। ଏହି ଶେଷ ଲେଖାର ମାତ୍ର ମାତ୍ର ୨୩ ଦିନ ପରେ ଅର୍ଥାତ୍ ୨୭ ଜୁଲାଇ ୧୯୭୫ ରବିବାର ଦିନ ଅପରାହ୍ଣ ୩ଟା ୪୫ ମିନିଟ୍‌ରେ ମୃତ୍ୟୁ ହୁଏ କନ୍‌ହେଇଲାଲଙ୍କର ।

ଉପରୋଲ୍ଲିଖିତ ଏଇ ଡାଏରି ତ୍ରୟରେ ଘଟଣା ଦୁର୍ଘଟଣା ଓ କ୍ରିୟା ପ୍ରତିକ୍ରିୟାର ଉଲ୍ଲେଖ ଅଛି, ସେସବୁ ଅପାତତଃ ଏକାନ୍ତ ବ୍ୟକ୍ତିଗତ (Personal and Private) । ମାତ୍ର ଅନେକ ସ୍ଥଳରେ ତାହା ବ୍ୟକ୍ତିଗତ ଜୀବନ-ଦେହଳୀ ଅତିକ୍ରମ କରି ଉତ୍ତରିତ ହୋଇଯାଇଛି ଅନ୍ୟ ଏକ ଜଗତକୁ ଏବଂ ଅନ୍ୟ କେତେକ ସ୍ଥଳରେ ତାହା ବ୍ୟକ୍ତିଗତ ଜୀବନ-ବୃତ୍ତରେ ପରିକ୍ରମାରତ ଥିଲେ ହେଁ ସେଇ ପରିକ୍ରମା ଓ ବ୍ୟକ୍ତି-ମାନସିକତାର ବିଭିନ୍ନ ଆଲୋଡ଼ନ ମଧ୍ୟରୁ ସୃଷ୍ଟି ହୋଇଛି ଅଦ୍ଭୁତ ଏକ ଗଳ୍ପ-ଭୂମି । ଯେଉଁସବୁ ସ୍ଥଳରେ ଏଇ ଉଭୟ ମଧ୍ୟରୁ କୌଣସି ଗୋଟିଏ ଦିଗକୁ ବି ଡାଇରିର ଲେଖା ସ୍ପର୍ଶ କରି ନାହିଁ ବା ତାହା କନ୍‌ହେଇଲାଲଙ୍କ ବ୍ୟକ୍ତିଗତ ଜୀବନ ବା ତାଙ୍କ ସାହିତ୍ୟର ମୂଲ୍ୟାୟନ ପାଇଁ କୌଣସି ଖୋରାକ ଯୋଗାଇବ ବୋଲି ଆମେ ମନେ କରିନାହୁଁ, ସେ ସବୁ ସ୍ଥଳରେ ସେହି ପୃଷ୍ଠାଗୁଡ଼ିକୁ ଆମେ ଉଦ୍ଦେଶ୍ୟମୂଳକ ଭାବେ ବାଦ୍‌ଦେଇ ଦେଇଛୁ । ଆମେ ନିଶ୍ଚିତ ଯେ, ସଂପାଦିତ ହେବା ପରେ ଯେଉଁ ପୃଷ୍ଠା ବା ପୃଷ୍ଠାଂଶଗୁଡ଼ିକ ଆପଣମାନଙ୍କୁ ପରିବେଷିତ ହେଉଛି– ସେ ସବୁରେ ଏପରି ଅନେକ ଚରିତ୍ର ଅଛନ୍ତି ଯେଉଁମାନଙ୍କ ମଧ୍ୟରୁ ଅନେକେ ଏବେ ମଧ୍ୟ ଏହି ପୃଥିବୀରେ ଚଳପ୍ରଚଳ ହେଉଛନ୍ତି । ସେମାନଙ୍କ ମଧ୍ୟରୁ ଅନେକଙ୍କୁ, ବିଶେଷତଃ ନାରୀମାନଙ୍କୁ, ଆମେ କନ୍‌ହେଇଲାଲ ଦାସଙ୍କ ଗଳ୍ପ ଉପନ୍ୟାସରେ ବହୁ ପୂର୍ବରୁ ଦେଖି ସାରିଛୁ । ଆମେ ପୁନର୍ବାର କହୁଛୁ ଯେ, ଲେଖକ ପୂର୍ଣ୍ଣତଃ ଏକ କଳ୍ପନା-ପ୍ରବଣ ଓ ସ୍ୱପ୍ନ-ବିଳାସୀ ମଣିଷ ନୁହେଁ । ତାହାର ପ୍ରତିଟି ସାହିତ୍ୟିକ ସୃଜନ ଅନ୍ତରାଳରେ ତାର ବାସ୍ତବ ଜୀବନର ଅନୁଭୂତି ବା କୌଣସି ନା କୌଣସି ବ୍ୟକ୍ତିଗତ ଘଟଣାର ଭିତ୍ତି ଥାଏ । ଡାଇରିର ଏହି ପୃଷ୍ଠାଗୁଡ଼ିକ ମଧ୍ୟରେ ଆମେ କନ୍‌ହେଇଲାଲ ଦାସଙ୍କ ସାହିତ୍ୟ ସହିତ ତାଙ୍କର ବାସ୍ତବ ଜୀବନର ବ୍ୟକ୍ତିଗତ ଘଟଣାକୁ ସଂଯୋଜିତ କରିବାର ପ୍ରୟାସଟିଏ କରିଛୁ ମାତ୍ର । ଆମର ବିଶ୍ୱାସ, କନ୍‌ହେଇଲାଲ ଦାସଙ୍କ ଜୀବନ ଓ ସୃଜନର ଆଲୋଚନା ନିମନ୍ତେ ସାହିତ୍ୟକୁ ଏଇ ପର୍ଯ୍ୟାୟରେ ଆଲୋଚନା କଲାବେଳେ ‘କନ୍‌ହେଇ ଦିନଲିପି’ର ଉପଯୋଗିତା ସମସ୍ତେ ସ୍ୱୀକାର କରିବେ । ସୁଧୀ ପାଠକେ ଓ ସଂପୃକ୍ତ ଚରିତ୍ରମାନେ ଏଇ ଦୃଷ୍ଟିରୁ ଏହି ଅଧ୍ୟାୟଟିକୁ ବିବେଚନା ବା ବିଶ୍ଳେଷଣ କରିବାକୁ ଅନୁରୋଧ ।

–ସଂପାଦକ

# କନ୍‌ହେଇ ଦିନଲିପି

## ଜାନୁଆରୀ ୧, ୧୯୭୩ ସୋମବାର

୧୯୭୨ ଶେଷ ହୋଇଗଲା । ଓ ମୋର ଅନେକ ଅନୁଭବର ବର୍ଷ । ଯନ୍ତ୍ରଣାର ବର୍ଷ । ଅସୀମାକୁ ହରାଇବାର ବର୍ଷ । ମୋର ଦାରିଦ୍ର୍ୟର ବର୍ଷ । ମୋ ଚାକିରି ହେବାର ବର୍ଷ । ମୋର ବିଦେଶ ଗମନର ବର୍ଷ । ମୋର ଯୁଗ୍ମ ସଂପାଦକ ବର୍ଷ । ମୋର ଗନ୍ଧହୀନତାର ବର୍ଷ ।

ଆସୁଛି ୧୯୭୩ । ମୁଁ ଜାଣେ ଏ ବର୍ଷ ମୁଁ ଗୋପାଳପୁର ଟ୍ରାନ୍‌ସଫର ହୋଇଯିବି । ମୋ ପାଇଁ ଅନେକ ଯନ୍ତ୍ରଣା କେଉଁଠି ଅଜଣାରେ ଅପେକ୍ଷା କରି ବସିଛି । ××× ଏ ବର୍ଷ ମୋ ଜୀବନରେ ଶାନ୍ତି ଦିଅନ୍ତୁ ଭଗବାନ ।

## ଜାନୁଆରୀ ୩, ୧୯୭୩ ବୁଧବାର

ଅନୁ ତା' ଡାଇରିରେ ଲେଖିଛି, ୧ ତାରିଖ ଦିନ ପାଇଁ ଭବିଷ୍ୟତରେ ତାକୁ ଦୁଃଖ ମିଳିପାରେ । ଆଶ୍ଚର୍ଯ୍ୟ, ଝିଅମାନେ ଦୁଃଖପାଇଁ ଏତେ ଡରନ୍ତି କାହିଁକି ? ମୁଁ ଚାହେଁ, ମୁଁ ଯେପରି କାହାରି ପାଇଁ ଜୀବନସାରା ଦୁଃଖ ପାଏଁ । ସେଥିରେ ମୋର ପରିତୃପ୍ତି । ଆଉ ୨ ତାରିଖ ଦିନ ଅନୁ ଲେଖିଛି, "ମୁଁ କିପରି ତା' ହାତରୁ ମୁକ୍ତି ପାଇବି ?" ଅନୁ, ତୁମେ ଏଇକଥା କିମ୍ବା ଏଇ ଧରଣର କଥା ମୋତେ କହିଦେଲେ ତ ଭଲ ହୁଅନ୍ତା ! ମୁଁ ତୁମଠାରୁ ଅନେକ ଦୂରକୁ ପଳାଇଯାଇ ପାରନ୍ତି !

ମୁଁ ଜାଣେ ମୋତେ ସମସ୍ତେ ପ୍ରଥମେ ପ୍ରଥମେ ଖୁବ୍ ଭଲପାଆନ୍ତି, କିନ୍ତୁ ପରେ କାହିଁକି କେଜାଣି, ଅଭିମାନରେ ହେଉ ବା ଯନ୍ତ୍ରଣାରେ ହେଉ, ମୋ'ଠାରୁ ଦୂରେଇ ଯାଆନ୍ତି । ଅସୀମା ସତରେ ମୋ'ଠାରୁ ଦୂରେଇଗଲା । ଅନୁ ଯଦି ମୋ' ପାଇଁ ଚିତ୍କାର କରେ ତା'ହେଲେ ମୁଁ କ'ଣ କରିବି । ମୁଁ ଜାଣେ ବର୍ତ୍ତମାନ ପ୍ରାୟ ଅନୁ ତାର ସ୍ଥାନ ଦଖଲ କରିଗଲାଣି । ଯଦିବା ଜାଣେ, ଅସୀମାର ଭଲପାଇବାର ଭାବ ଭିନ୍ନ, ଅନୁର ଭିନ୍ନ । ତଥାପି ତ ! ଅନୁ, ତୁମେ ମୋତେ ସେମିତି କିଛି କୁହ; କୁହ ଯେ ତୁମେ ମୋ' ଉପରେ ବିତୃଷ୍ଣ । ମୁଁ ତୁମକୁ, ତୁମ ଘର ଛାଡ଼ି ଅନେକ ଦୂରକୁ ଚାଲିଯିବି । ଅସୀମାକୁ ମୁଁ ଦିନେ ଲେଖିଥିଲି, 'ତୁ ମୋ ଉପରେ ରାଗିବା ପୂର୍ବରୁ ମୁଁ ଅନେକ ଦୂରକୁ ପଳେଇ ଯାଇଥିବି ।' ଯା'କୁ ବି କ'ଣ ସେଇଆ କହିବି ?

ଆଜି ଡାଇରି କିଣିଲି । କାଶ ହେଉଛି । ରାଗିଣୀକୁ ଅସୀମା ଉପରେ ଲେଖିଥିବା ଗପ କଥା କହିଲି ।

## ଜାନୁଆରୀ ୪, ୧୯୭୩ ଗୁରୁବାର

୧୯୭୩ ମୋ' ପାଇଁ ଯନ୍ତ୍ରଣା, ରୋଗ, ହତାଶା, ପ୍ରଶଂସା ଓ ପ୍ରକାଶନର ବର୍ଷ। ଅନୁର ସେଇ କାଲିର ଗୋଟିଏ ଧାଡ଼ିର ଯନ୍ତ୍ରଣା ମୋ' ଉପରେ ଆମରଣ ରହିବ, ମୁଁ ଜାଣେ। କେଉଁ ଏକ ଅସହାୟ ମୁହୂର୍ତ୍ତରେ ମୁଁ ନିଶ୍ଚୟ ମନେ କରିବି ଗୋଟିଏ ଝିଅ ମୋ'ଠାରୁ ମୁକ୍ତି ଚାହିଁଥିଲା। ମୁଁ ଏବେବି ଅସୀମାର ସେଇ ଗୋଟିଏ ଧାଡ଼ି ପାଇଁ କାନ୍ଦେ।

ମୁଁ ଜାଣେ, ମୋର ସମସ୍ୟା ଅନେକ । କାଲି ଅନୁକୁ ନେଇ ଜୋତା କିଣିବାକୁ ଯାଇଥିଲି ବୋଲି ଆଜି କବିଠାରୁ ଈର୍ଷାମୂଳକ ବାଣୀ ଶୁଣିଲି । କବି ନିର୍ଦ୍ଦୋଷ, କାରଣ ସେ ପୁରୁଷ, ଏବଂ ଅନୁ ସର୍ବଦା ସମସ୍ତଙ୍କ ସାମ୍ନାରେ ହସେ ।

ଆଜି କ୍ରିକେଟ୍‌ରେ ଭାରତ ଇଂଲଣ୍ଡ ଠାରୁ ଜିତିଲା । ଆଜି ଆସି ହଠାତ୍ ବ୍ରହ୍ମପୁରରୁ ଲକ୍ଷ୍ମଣ ସାହୁ ପହଞ୍ଚିଲା । ତା ପାଇଁ ଆସି ରତନବାବୁଙ୍କୁ କହିଲି । ସେ ଅନେକ କଷ୍ଟରେ ××× ରାଜି ହେଲେ । ତା' ପାଇଁ ଗୋଟିଏ ଘରଭଡ଼ା ଦିଆ କରାଇଲି । ଅନୁବୋଉ ଅନେକ ସାହାଯ୍ୟ କଲେ । ଅନୁବାପା ବି । ଲକ୍ଷ୍ମଣ ସେଠାରେ ରହୁଛି । ଅନୁ ଘରେ ଟିଉସନ କରିବ । ପିଲାଟା ମୋତେ କିପରି ବିଶ୍ୱାସ କରୁଛି କେଜାଣି !

ଆଜି ବ୍ରଜବାବୁଙ୍କ ପ୍ରେସ୍‌କୁ ଯାଇନି । ଅନୁ ସଂଗେ ସଂଜରେ ଗପ କରୁଥିଲି । ରାଗିଣୀ ଘରକୁ ବି ଯାଇନି । ସଂଧ୍ୟାରେ ଅଫିସ୍‌ରେ ବଲ୍ ଖେଳିଲି । ଲକ୍ଷ୍ମୀପାଇଁ ବ୍ରସ୍ ଏକ ଟଙ୍କାରେ ଆଣି ଦେଇ ୮୦ ପଇସା ମାରିନେଲି ଏବଂ ସେଥିରେ ଗୋଟେ କୋଲ୍‌ଗେଟ୍ କିଣି ଆଣିଲି ।

ଅନୁବାପା ମୋତେ ସନ୍ଦେହ କରୁନାହାନ୍ତି ତ ! ରାଣୀବାପା ସଂଗେ ଆଜି ଅନେକ ସମୟ ଗପ କଲି ।

## ଜାନୁଆରୀ ୫, ୧୯୭୩ ଶୁକ୍ରବାର

ଚାହିଁଲେ ମଧ ଗପ ଲେଖି ହୁଏ ନାହିଁ । ଦୁଇ ତିନି ଦିନ ଧରି ମୁଁ ବେଶ୍ ଚେଷ୍ଟା କରୁଛି । କିନ୍ତୁ ପାରୁନି । କିପରି ଏକ ପ୍ରକାର ଫାଙ୍କା ନିଷ୍ଫଳ ଭାବ ଆସୁଛି । ଗପ ଲେଖି ପାରୁନି । ଅନେକଙ୍କ ଭରସା ମୋ' ଉପରେ । ସେମାନଙ୍କର କଣ ହେବ ? ନା, ମୁଁ ଛାଡ଼ିଦେବି ? ଅନେକ ସାହିତ୍ୟ ହେଲା, ତଥାପି ନବରବିରେ ବାହାରିଲା ନାହିଁ । ଅବଶ୍ୟ ସେଥିପାଇଁ ବ୍ରଜବାବୁ ବି ମନ ଦୁଃଖ କରୁଥିଲେ ।

ଆଜି ରାଗିଣୀଠାରୁ ଶୁଣିଲି ଅସୀମା ସେଇ ଓ.ଯୁ.ଲେ.ସ. ରେ ଗପଟା ପଢ଼ିଲାବେଳେ କେମିତି ଏକପ୍ରକାର ଉତ୍ତେଜନାରେ ଥରୁଥିଲା। ଝାଳ ବୋହିଗଲା । ମୁଁ ଚାହେଁନି, କେବେ ଅସୀମା ମୋତେ ଭଲ କହୁ କିମ୍ବା ମୋ' ଦ୍ୱାରା ଦୁଃଖ ପାଉ। ମୋ ଗପ ପଢୁ ବୋଲି ମୁଁ ଚାହିଁଥିଲି। କାରଣ ମୁଁ ତାକୁ ଜଣେଇବାକୁ ଚାହିଁଥିଲି ଯେ ମୁଁ ଏବେବି ତାକୁ

ଭଲପାଏ । ଆଉ ମୋର ସ୍ନେହ ଅବିନାଶୀ । ଏମିତି ଅନେକ ଶୁକ୍ରବାର ମୋ' ଜୀବନରେ ଯାଇଛି । ଅନେକ ବିଚ୍ଛେଦର ଶୁକ୍ରବାର ବି ଯାଇଛି । ×××

## ଜାନୁଆରୀ ୬, ୧୯୭୩ ଶନିବାର

ପରିବାରକୁ ପ୍ରାୟ ଶହେ ଟଙ୍କାର ଲୁଗା କିଣି ଦେଇଥିବାରୁ ମୁଁ ଅପେକ୍ଷାକୃତ ନିଶ୍ଚିନ୍ତ । ଦ୍ୱିପ୍ରହରରେ ଅଫିସରେ ଅନେକ କାମ କଲି । ଖୋକନ ଆସି ବସିଲା । ଅଫିସରେ ଆଜି କାମ କରିବାକୁ ଭଲ ଲାଗିଲା । ଖୋକନକୁ ନେଇ ବଜାର ଆସିଲି । ରବିର ଜୋତା, ମା'ର ବ୍ଲାଉଜ କିଣି ଖୋକନକୁ ତିନି ଟଙ୍କା ଗାଡ଼ିଭଡ଼ା ଦେଲି । ସେ ନେଇ ଗଲା । ମୁଁ ଦାଢ଼ି କାଟି, ଗାଧୋଇ, ଅନୁ ଘରେ ଯାଇ ଖାଇଲି । ଖାଇଲା ବେଳେ ଅନୁ କଲେଜରୁ ଆସିଲା । ଅନୁକୁ କାହିଁକି କେଜାଣି ଖୁବ୍ ସୁନ୍ଦର ଦେଖାଯାଉଛି । ଦ୍ୱିପ୍ରହରରେ ବସି ଏଣୁତେଣୁ ଗପୁଗପୁ ଚୁମା ମଧ ଖାଇଲି । ଜାଣେନି, ଏଗୁଡ଼ା ଅପ୍ରାଧ କି ନା । ତଥାପି ମନ ଯାହା ଚାହେଁ । ଚାଲାକି କରି ତାର ଡାଇରିରେ ମୋ ପାଇଁ ଏକ ପ୍ରକାର ବାଧ୍ୟବାଧକତା ବା ମଜବୁରି ଲକ୍ଷ୍ୟ କଲି । ସେ ଯେ ପଅରିଦିନ ଏତେ କାନ୍ଦିଲା । ଅନେକ କାନ୍ଦିଥିଲା, ମୁଁ ଯେତେବେଳେ ମିଛରେ ଶପଥ କଲି, ଆଉ ତାଙ୍କ ଘରକୁ ଯିବିନି ବୋଲି । ଫଟୋ ନେଲି। ବ୍ରଜବାବୁଙ୍କୁ ଦେଖାଇଲି। କାରାବରଣ ବାବୁଙ୍କ ସଙ୍ଗେ ଚାଲି ଚାଲି ଷ୍ଟେସନ ଗଲି। ଷ୍ଟେସନରୁ ଫେରିବା ରାସ୍ତାରେ ବିଜୟ ଉପାଧ୍ୟାୟ ସଙ୍ଗେ ଦେଖା। ସେ ଅନେକ ଏଣୁ ତେଣୁ ଗପିଲା। ବିଜୟକୁ ଭଲ ଲାଗିଲା। ବ୍ରଜବାବୁ ସଂଗେ ଏଣୁତେଣୁ ଗପି ଘରକୁ, ମାନେ ଅନୁ ଘରକୁ ଫେରିଲି। ରୁଟି ଖାଇ ଆସି ରାଣୀ ପାଖରେ ବସିଲି। ଗପ ଲେଖିବାକୁ ଚେଷ୍ଟା କଲି। ମୋତେ ଏଥର ଗପ ଲେଖିବାକୁ ହେବ। ମୁଁ କ'ଣ କରିବି। ଆଜିକାଲି ଲେଖିପାରୁନି କାହିଁକି ?

ଆଜି ଅନେକ ଦିନ ପରେ ଧରିତ୍ରୀ ଅପା ସହ କଥାବାର୍ତ୍ତା କଲି ରାସ୍ତାରେ।

## ଜାନୁଆରୀ ୭, ୧୯୭୩ ରବିବାର

ଆଜି ଖୁବ୍ ଭଲ ଦିନ । ସକାଳେ ସବୁ ଶେଷକରି ଶାନ୍ତିଅପା ଘରକୁ ଚାଲିଗଲି । ତାହେଲେ ଶାନ୍ତିଅପା ମୋ ଉପରେ ରାଗିନି । ସେ ମୋତେ ବସିବାକୁ କହୁଥିଲେ । ବିନୋଦିନୀ ଆଉ ଗୀତା ମଧ । କିନ୍ତୁ ମୁଁ ଶୀଘ୍ର ଚାଲି ଆସିଲି ବ୍ରଜବାବୁଙ୍କ କଥା କହିଦେଇ । ଅନୁ ଘରକୁ ଗଲି । କବି ବସିଥିବାର ଦେଖିଲି । ଅନୁକୁ ମନା କରିବା ସତ୍ତ୍ୱେ ସେ ଫଟୋଗୁଡ଼ା ଦେଖାଇ ଦେଲା । ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଏ ତ ଅସୀମା ନୁହେଁ ! ଅସୀମା ମୋର, ତୁ କ'ଣ ସତରେ ହଜିଗଲୁ ?

ମୁଁ ଧରିତ୍ରୀ ଅପା ଘରକୁ ଅନେକ ଦିନ ପରେ ଗଲି । ଅପା ସଙ୍ଗେ ଖାଇଲି ତରକାରି ଆଦି । ଅପା ପାଖେ ଏଣୁତେଣୁ ରାଣୀ, ଅସୀମା ଇତ୍ୟାଦି ବିଷୟ ଗଳ୍ପ କଲି ।

ଘରକୁ ଫେରି ଲୁଗାପଟା ସଫାକରି ଅନୁ ଘରକୁ ଖାଇବାକୁ ଗଲି । ପ୍ରାୟ ୨ଟା ବେଳେ ଖାଇଲି । ଅନୁସହ ××× ଚୁମା ଖାଇଲି । ××× ଅନୁ ଯଦି ଅସୀମା ହୋଇଥାଆନ୍ତା ! ଅସୀମାଟା ମୋର ସତରେ ହଜିଗଲା, ମୋତେ ଭୁଲ୍ ବୁଝିଲା । ବୁଝୁ । ଆଜି ବି ମୁଁ ତାକୁ ଭଲପାଏଁ।

ସନ୍ଧ୍ୟାରେ ଶୁଭେନ୍ଦୁବାବୁ ଘରକୁ ଯିବା ରାସ୍ତାରେ ଅଧାପକ ସୁଭାଷ ମହାନ୍ତି ସଙ୍ଗେ ଦେଖା । ତିନିହେଁ କବିତାରେ ମସଗୁଲ ହୋଇ ଷ୍ଟେସନ ଯାଏଁ ଗଲୁ । ×××

××× ରାତିରେ ଅନୁ ଘରେ ଖାଇ ପିଇ ଫେରିଲି ××× ଭଲ ଦିନଟି ଯେ ଚାଲିଗଲା । ଅନୁ ସହ ଆଜି ଏକ ବିଶେଷ ଦିନ ।

## ଜାନୁଆରୀ ୮, ୧୯୭୩ ସୋମବାର

ସବୁଦିନେ ସକାଳ ହେଲେ ମନଟା କାହିଁକି କେଜାଣି ଖୁବ୍ ନରମ ହୋଇଯାଏ । ଦିନସାରା ଅଫିସ୍, ରାତିରେ ବ୍ରଜବାବୁ ପ୍ରେସ୍, ରାଣୀ, ଅନୁ, ବାସ୍ । ଗପ, କବିତା ଲେଖି ହୁଏନି । ବିଛଣା । ନିଦ । ଏମିତି ଆଉ ଭଲ ଲାଗୁନି । କିଛି ଗୋଟାଏ ନୂଆ କରିବାକୁ ହେବ । କିନ୍ତୁ କରିବି କ'ଣ ?

ଆଜି ରବି ପୁହାଣଠାରୁ ଚିଠି ପାଇଲି । ସେ କୁଆଡ଼େ ପଳେଇଯିବ ବୋଲି ଲେଖିଛି । ସେ କିନ୍ତୁ ପଳେଇଯିବ କୁଆଡ଼େ ?

ଆଜି କିନ୍ତୁ ଶୀତ ଦିନ ବୋଲି ମନେ ହେଉନି । ପରିଷ୍କାର ଖରା ଦିନ – ଅବଶ୍ୟ ବସନ୍ତର ହାଓ୍ୱା । ମୋତେ କାହିଁକି କେଜାଣି ଏ ବସନ୍ତ ଭୀଷଣ ଉଦାସ କରୁଛି । ଗଲା ବର୍ଷ ବସନ୍ତ ଆସିଥିଲା କେତେ ଭୀଷଣ ଉତ୍ତେଜନା ନେଇ । ପ୍ରତିଦିନ ଦଶଟାରେ ମୁଁ ଖାଇ ପିଇ ଅପେକ୍ଷା କରୁଥିଲି ଅସୀମାକୁ । ଆଃ, କି ସେ ପ୍ରତୀକ୍ଷା, କି ସେ ଉତ୍ତେଜନା, କି ସେ ଅଭିନବ ମୁହୂର୍ତ୍ତ, କି ସେ ଅନୁଭବ, ଅସୀମା ସଂଗରେ କି ସେ ଅଜବ ଉପଲବ୍ଧି !

ଅସୀମାରେ, ଏ ବର୍ଷ ବସନ୍ତରେ ମୁଁ ତୋ ଲାସ୍‌ର ବି ପତ୍ତା ପାଉନି । ତୁ ଏତେ ଶୀଘ୍ର ବଡ଼ ହୋଇ ପାରିଲୁ ? ଅସୀମା, ଏମିତି ସବୁ ମୌସମରେ ମୋର ବେକ ଚାରିପଟେ ହାତ ଗୁଡ଼ାଇ କହୁଥିଲୁ ନା ମୋତେ ତୁ ଭୁଲିପାରିବୁନି ! ତୁ ସତରେ ଗଲାବର୍ଷ ଠିକ୍ ଏଇ ସମୟରେ ମୋ' ପାଇଁ ପାଗଳ ହୋଇଯାଇଥିଲୁ । ଆଉ ଆଜି ?×××

## ଜାନୁଆରୀ ୯, ୧୯୭୩ ମଙ୍ଗଳବାର

ବାଲେଶ୍ୱରରେ ଖୁବ୍ ମଜାରେ ଦିନଗୁଡ଼ିକ କଟୁଛି । ସକାଳେ ରାଣୀ, ତା'ପରେ ଅନୁ, ଅଫିସରେ ମଜାଦାର ସହକର୍ମୀ । ଦ୍ୱିପ୍ରହରରେ ଅନୁ । ପୁଣି ଅଫିସ୍ । ଭଳି

ଖେଳ । ଶୁଭେନ୍ଦୁବାବୁ, ରାଗିଣୀ, ତା' ପରେ ସାହିତ୍ୟ, ବ୍ରଜବାବୁ ପ୍ରେସ୍, ତା' ପରେ ଅନୁ ଘରେ ଖିଆପିଆ । ତା' ପରେ ରାଣୀ, ତା' ପରେ ନିଦ । ବାଃ, ବାଃ, ବାଃ ।

– ଫାଲତୁ । ଫୁଃ ।

ଜୀବନଟା ଏମିତି ନୁହେଁରେ ବସ୍ସ ।

କ. ଲା. ଦାସ
୨୦. ୧୨. ୭୩

## ଜାନୁଆରୀ ୧୦, ୧୯୭୩ ବୁଧବାର

ସକାଳେ ନିଦ ଭାଙ୍ଗିଲେ ମନଟା କେମିତି ଉଦାସ ହୋଇଯାଏ । ଆଜିକାଲି ଆଉ ଶୀତ ନାହିଁ । ବସନ୍ତ ବି ଯେମିତି ଚାଲିଗଲାଣି । ବସନ୍ତ ସକାଳଟା କେମିତି ଗୋଟିଏ ପ୍ରକାର ଅର୍ଥହୀନ ମନେହୁଏ । ମୋର ତ ଆଗରୁ ଅନେକ ଭାବପ୍ରବଣତା ଥିଲା । ଆଜିକାଲି ଅନୁଭବ କରୁଛି ଆଗପରି ମୋର ଆଉ ଭାବପ୍ରବଣତା ନାହିଁ । ଆଗେ ଯେପରି ଅସୀମା ଆଗରେ ଚଟ୍ କରି କାନ୍ଦି ପକାଉଥିଲି, ଆଜିକାଲି ଆଉ କାନ୍ଦି ପାରୁନି କାହିଁକି ? କାନ୍ଦି ପାରୁଥିଲି ବୋଲି ସେତେବେଳେ ବୋଧେ ଭଲ ଲେଖିପାରୁଥିଲି । ଚାକିରି କଲାଦିନରୁ ମନେ ହେଉଛି, ଲେଖାଲେଖି ଠିକ୍‌ରୂପେ ହୋଇ ପାରୁନି । ରାତି ଟିକେ ଉଜାଗର ହେଲା ବେଳକୁ ପିତ୍ତ ଜମିଯାଉଛି । ରୋଗ ହୋଇଯାଉଛି । ତେଣୁ ରାତି ଉଜାଗର ରହି ପଢ଼ିବାକୁ ବା ଲେଖିବାକୁ ବି ଇଚ୍ଛା ହେଉନି ।

ଆଜି ଦ୍ୱିପ୍ରହରରେ ପୋଷ୍ଟ ଅଫିସରେ ପୋଷ୍ଟକାର୍ଡ଼ କିଣୁଥିବା ବେଳେ ହଠାତ୍ ଦେଖିଲି ଅସୀମା ଆସୁଛି । ପୁଣି ପ୍ରାୟ ଦେଢ଼ ମାସ ପରେ ତାକୁ ଦେଖିଲି । ୧୯୭୩ରେ ଆଜି ତାକୁ ପ୍ରଥମ ଥର ପାଇଁ ଦେଖିଲି । କେମିତି ସିଧାସଳଖ ଚାଲିଯାଉଥିଲା । ତା' ଜୀବନଟା ବି ସେମିତି ସିଧାସଳଖ ଯାଉ ।

ଆଜି ଦ୍ୱିପ୍ରହରରେ ଅନୁ ମୋତେ ଛାଡ଼ି କଲେଜ ଚାଲିଗଲା । ଯେତେ କହିଲେ ବି ଶୁଣିଲା ନାହିଁ । ଆଶ୍ଚର୍ଯ୍ୟ ଝିଅଟି !

ଆଜି ଅଫିସ୍ କାମ ପରେ ଭଲି ଖେଳିଲି । ଗୁରୁ ମହାନ୍ତି ଆସିଥିଲେ । ବ୍ରଜବାବୁ, ଗୁରୁ ମହାନ୍ତି, ଚନ୍ଦ୍ର ମହାନ୍ତି ଆଦିଙ୍କ ସଙ୍ଗେ ଏଣୁତେଣୁ ସାହିତ୍ୟ ବିଷୟରେ ରାତି ଦଶ ପର୍ଯ୍ୟନ୍ତ ଗପିଲି । ତା' ପରେ ଅନୁ ଘରେ ରୁଟି ଖାଇ ଫେରିଲି । ରାଣୀକୁ ନାଲି ଶାଢ଼ିରେ ଆଜି ଖୁବ୍ ଭଲ ଦେଖାଯାଉଛି ।

## ଜାନୁଆରୀ ୧୧, ୧୯୭୩ ଗୁରୁବାର

ସବୁଦିନ ପରି ଆଜି ବି କଟିଗଲା ।

## ଜାନୁଆରୀ ୧୨, ୧୯୭୩ ଶୁକ୍ରବାର

ମୁଁ କ୍ରମେ ଫକୀରମୋହନ ସାହିତ୍ୟ ପରିଷଦ ସହ ସଂପୃକ୍ତ ହୋଇ ଆସୁଛି। ×××

## ଜାନୁଆରୀ ୧୩, ୧୯୭୩ ଶନିବାର

ଆଜି ଗୋଟିଏ ପ୍ରସିଦ୍ଧ ଦିନ । ସକାଳ ଠିକ୍ ଆଗପରି । ଆଜି ଦ୍ୱିପ୍ରହରରେ ଯେତେବେଳେ ରାଣୀ ଘରେ ଗାଧୋଇ ଅନୁ ଘରକୁ ଖାଇବାକୁ ଯାଉଥିଲି ନିମ ଛକରେ ଅସୀମାକୁ ଦେଖିଲି । ବୁବୁ ସଂଗେ ଯାଉଥିଲା । ତାକୁ ଦେଖିଲା ମାତ୍ରେ ମୋ' ଭିତରଟା କେମିତି ଗୋଟେ ହୋଇଗଲା । ମୁଁ ଅନୁ ଘର ସାମ୍ନାରେ ସାଇକେଲ ରଖି ଆସି ଛକରେ ଛିଡ଼ାହୋଇ ଦେଖିଲି । ସେ ଆଉ ମୋତେ ଚାହିଁଲା ନାହିଁ । କେବଳ ପଛକୁ ଛେପ ମେଞ୍ଚାଏ ପକାଇଲା । ମୁଁ ବି ଏଥର ଛେପ ପକାଇବା ବ୍ୟକ୍ତିର ପର୍ଯ୍ୟାୟକୁ ଆସିଗଲି । ସାବାସ୍ । ଆଜି ଅସୀମା, ଯିଏ ଦିନେ ଅନେକ କିଛି ମୋ' ପାଇଁ କରୁଥିଲା, ସେ ମୋ' ପାଇଁ ଛେପ ପକାଇ ପାରିଲା ? କିସ ପୁଣି ଦେଖା ନଯାଏ... । ଅସୀମା କଣ ସତରେ ମୋତେ ଘୃଣା କରେ, ନା ଘୃଣା କରେ ବୋଲି ଦେଖେଇ ହୁଏ ?

ଆଜି ରାତିରେ ନିମାଇଁ ପଟ୍ଟନାୟକ ଆସିଲେ । ତାଙ୍କ ସହ ଗପ କରି ରାତିରେ ବିନୟ ସଙ୍ଗେ ଫେରି ତାଙ୍କ ଘରେ ଖାଇଲି ।

## ଜାନୁଆରୀ ୧୪, ୧୯୭୩ ରବିବାର

ସକାଳେ ଉଠି ××× ଚନ୍ଦ୍ରବାବୁଙ୍କ ଘରକୁ ଗଲି । ତାଙ୍କ ସାଙ୍ଗେ ଜେଲ୍ ଗଲି ଓ ସେଠାରୁ ଫୁଲ ନେଇ ଶାନ୍ତି କାନନ ମାଲ୍ୟାର୍ପଣ ହେଲା । ଫକୀରମୋହନଙ୍କ ଆଖି ଖୋଳି ନେଇଛି କିଏ ? ସାଇ ପିଲାମାନେ ଗୋଳମାଳ କରୁଥିଲେ । ନିମାଇଁବାବୁ ସୁନ୍ଦର ଭାଷଣ ଦେଲେ । ତାଙ୍କ ସହ ଆନ୍ତରିକତା ବଢ଼ିଯାଉଛି । ସକାଳେ ସେଠା ଭାଷଣ ପରେ ନିମାଇଁ ପଟ୍ଟନାୟକଙ୍କୁ ନେଇ 'ମୁନ୍‌ଲାଇଟ୍' ହୋଟେଲକୁ ଗଲି । ସେଠାରେ ଗାଧୋଇ ଯାଯାବରଙ୍କ ସହ ଆସି ପୁରୀ-କଲିକତା ବସ୍‌ରୁ ଗୋଟାଏ ବେଳେ ଅଖିଳମୋହନ ପଟ୍ଟନାୟକଙ୍କୁ recieve କଲି । ସେ ମୋତେ ଚିହ୍ନନ୍ତି ନାହିଁ । ନାଁ ଶୁଣି କହିଲେ, ଖୁବ୍ familiar ନାମ ।

ଅପରାହ୍ନରେ ଆବୃତ୍ତି ପ୍ରତିଯୋଗିତାରେ judge ଥିଲି । ସନ୍ଧ୍ୟାରେ ବହୁତ ଗୋଳମାଳ ହେଲା । ××× ରାତିରେ ପ୍ରଶାନ୍ତବାବୁ, ବ୍ରଜବାବୁ, ଚନ୍ଦ୍ରବାବୁ, ନିମାଇଁବାବୁ, ଅଖିଳବାବୁଙ୍କ ସହ 'ମୁନ୍‌ଲାଇଟ୍'ରେ ××× ଖାଇଲି ଏବଂ ସାହିତ୍ୟ ଆଲୋଚନା କଲି । ××× ରାତିରେ ସେମାନେ ଚାଲିଗଲେ । ଯାହାହେଉ, ଅଖିଳବାବୁ ମୋ' ଗପ ପଢ଼ିବେ ଆଉ ଚିଠି ଦେବେ ବୋଲି କହିଗଲେ । ×××

## ଜାନୁଆରୀ ୧୫, ୧୯୭୩ ସୋମବାର

ଆଜି ଅଫିସ୍‌ରେ ମୁଁ ଏକା । ସମସ୍ତେ ପ୍ରାୟ ଛୁଟିରେ ଯାଇଛନ୍ତି । ଆଜି ଭୀଷଣ ଭାବେ ଅସୀମା କଥା ମନେ ପଡୁଛି । ଆଶ୍ଚର୍ଯ୍ୟ, ୧୯୭୨ରେ ଠିକ୍ ଏମିତି ସମୟରେ ସେ ଦ୍ୱିପ୍ରହରରେ ମୋ' ପାଖକୁ ଆସୁଥିଲା । ଏବର୍ଷ ସେ ମୋତେ ଘୃଣା କରୁଛି । ଅନୁ ବି କେମିତି ହେଉଛି । ମୁଁ କିନ୍ତୁ ରାଣୀ ଛଡ଼ା ଆଉ କାହାରିକୁ ବାହାହୋଇ ପାରିବି ନାହିଁ ।

## ଜାନୁଆରୀ ୧୬, ୧୯୭୩ ମଙ୍ଗଳବାର

ମୁଁ ଜାଣେ ମୁଁ ଦରିଦ୍ର । କିନ୍ତୁ ଦାରିଦ୍ର୍ୟ କଥା ମୁଁ ମନେ କରି ପାରେନି କାହିଁକି ? ବୋଧହୁଏ ସାହିତ୍ୟ ମୋତେ ଦାରିଦ୍ର୍ୟରୁ ଅସମ୍ଭବ ମୁକ୍ତି ଦେଉଛି । ମୁଁ ଜାଣେ, ମୋର ପାର୍ଥିବ ସମ୍ପତ୍ତି ବା ପଦାର୍ଥ କିଛି ନାହିଁ । ମୁଁ ସ୍ୱପ୍ନ-ସମ୍ରାଟ । ମନେ ମନେ ଅସୀମାକୁ, ଅନୁକୁ, ରାଗିଣୀକୁ, ରାଣୀକୁ ନେଇ କେଉଁ ଏକ ସିନେମାରେ ଦେଖା ସୁନ୍ଦର ମହଲରେ ବୁଲାଏଁ ଓ ଖେଳ କରେଁ । କିନ୍ତୁ ମୋ' ପାଦତଳେ, ମାଟି ଉପରେ ମୋର ବୋଲି ଚାଖଣ୍ଡେ ଜମି ନାହିଁ । ଯଦି ମୁଁ ହଠାତ୍ ମରିଯାଏଁ ତା'ହେଲେ ପରିବାରଟାର କ'ଣ ହେବ ? ଭଗବାନ, ମୋତେ ଏ ଭାବପ୍ରବଣ ଜଗତରେ ଆଉ କିଛିଦିନ ବଞ୍ଚାଇ ରଖ।

## ଜାନୁଆରୀ ୧୮, ୧୯୭୩ ଗୁରୁବାର

ଆଜି ରାସ୍ତାରେ ଅସୀମାକୁ ଦେଖିଲି । ସେ ବୋଧହୁଏ ହତବାକ୍ ହେଲା । ଅସୀମା, ସେଇ ଅସୀମା, ଯିଏ ମୋ' କୋଳରେ ମୁହଁ ଗୁଞ୍ଜି ଘଣ୍ଟା ଘଣ୍ଟା ବସୁଥିଲା, ଦଶଟାରୁ ଚାରିଟା ପର୍ଯ୍ୟନ୍ତ ମୁଁ ଯାହାର ଛାତିରେ ମୁହଁ ଗୁଞ୍ଜି ପ୍ରାୟ କାନ୍ଦୁଥିଲି ସେ ମୋତେ ଦେଖି ଛେପ ପକାଇଲା, କଣ ସତରେ ମୁଁ ଦରିଦ୍ର ବୋଲି ? ମୋତେ କଣ ବାହା ହେବାକୁ କେହି ରାଜି ନୁହଁନ୍ତି ? ମୁଁ ତ ଅସୀମାକୁ ଭୀଷଣ ଭାବେ ଚାହିଁଥିଲି । ମୋର ତ ସ୍ୱପ୍ନଭଙ୍ଗ ବାରମ୍ବାର ହୁଏ, ଏଥର ବି ହେଲା । ଏଥିରେ ଆଶ୍ଚର୍ଯ୍ୟ କାହିଁକି ହେବି ?

ଆଜି ଗିରିଆପାଠୁ ସୁନ୍ଦର ଚିଠି ପାଇଲି ।

## ଜାନୁଆରୀ ୧୯, ୧୯୭୩ ଶୁକ୍ରବାର

ଅନୁବୋଉ ଅନୁକୁ ଯାଚ୍ଛାତା ଗାଳି ଦେଇଛନ୍ତି । ଗାଳିଦେବା ଉଚିତ । ଆମେ ଯେଉଁ ପ୍ରକାରେ ଆଗେଇ ଯାଉଥିଲେ ସେଥିରେ ଏ ଧରଣର ବାଧା ସ୍ୱାଗତଯୋଗ୍ୟ । କିନ୍ତୁ ଦୁଃଖ ଲାଗୁଛି, ଅନୁ ଲେଖିଛି ସେ କିପରି ବଞ୍ଚିବ ? ଆଶ୍ଚର୍ଯ୍ୟ ବି ଏଇ ଝିଅଟି । ଅଫିସରେ ତାର ଚିଠି ପାଇଲି । ମୁଁ ଟିକେ ମନ ଖରାପ କରିଥିଲି ମୁନୁ ପାଖକୁ ତାର ଲେଖା ଚିଠିର ଭାଷା ଦେଖି । ସେ ସେଟାକୁ ମୋ' ଠିକଣାରେ ପଠାଇ ଦେଇଛି । ପୁଣି ତା'ଉପରେ ସେ ରାତିରେ ମୋ' ପାଇଁ ବୋଉଠୁ ଗାଳି ଖାଇଛି ।

ମୁଁ ଆଜିଠୁଁ ଅନୁକୁ avoid କରିବି । ×××

## ଜାନୁଆରୀ ୨୦, ୧୯୭୩ ଶନିବାର

ଆଜି ସକାଳ ସବୁଦିନ ପରି ବିତିଗଲା । ଅଫିସରୁ ଆସିଲି...... ଟିକଟ କିଣିବା ପାଇଁ । ରାସ୍ତାରେ ରାଗିଣୀକୁ ଦେଖିଲି । ମହିଳା କଲେଜ ପାଖ ପୋଷ୍ଟ ଅଫିସରେ ××× ଛିଡ଼ା ହୋଇଥିଲି ଅସୀମାକୁ ଅପେକ୍ଷା କରି । ଅସୀମା ଆସିଲା । ମୁଁ ତା' ଉଦ୍ଦେଶ୍ୟରେ ଛେପ ପକାଇଲି । ଯାଚ୍ଛାତା କହିଲି । ସେ ××× କଲେଜ ଗଲା । ମୁଁ ତାର ଖୁବ୍ ପାଖ ଦେଇ ଅତିକ୍ରମ କରିଗଲି । ଅଫିସରେ ଭୀଷଣ ମନ ଖରାପ ହେଲା । ମୁଁ ଶେଷରେ ଅସୀମା ପାଇଁ ଛେପ ପକାଇଲି ! କିନ୍ତୁ ମୁଁ ଜାଣେ, ଅସୀମା ପାଇଁ ମୋର ଭଲପାଇବା କ୍ୟାନସର ଜୀବାଣୁ ପରି । ମୋର ମୃତ୍ୟୁ ହେଲେ ଯାଇ ଅସୀମା ପାଇଁ ମୋର ଭଲପାଇବା ଓ ଭାବପ୍ରବଣତା ଶେଷ ହେବ ।

ଅସୀମା ମୋ'ର, ତୁ ଖୁବ୍ ସୁଖର ସହ ଆନନ୍ଦରେ ବଞ୍ଚି ଉଠ । ଆଲୋକ ପରି ଶୁଭ୍ର ହୋଇଯା' । ଭୋରର ମନ୍ତ୍ର ଉଚ୍ଚାରଣ ପରି ପବିତ୍ର ହୋଇଯା' । ଦେଖ୍, ମୁଁ ଏପର୍ଯ୍ୟନ୍ତ ତୋତେ ଭଲପାଏଁ । ତେଣୁ ତୁ ମୋତେ ଶତ୍ରୁ ବୋଲି ଭାବିଲେ ବି ମୁଁ ତୋର ମଙ୍ଗଳ ସବୁବେଳେ ଚାହେଁ । ତୁ ବରଂ ମୋ' କଥା ଭୁଲିଯା, ମୋତେ ଘୃଣା କର । ମୁଁ ସେଦିନ ବୁବୁ ଆଗରେ କାହିଁକି ମୋତେ ଛେପ ପକାଇ ଦେଇଥିଲୁ କହତ ? ମୁଁ ତ ପ୍ରତିଶୋଧପ୍ରବଣ ।

ଆଜି ଅନୁ କଲେଜ ଯାଉଥିବାବେଳେ ଖୁବ୍ ପବିତ୍ର ଦେଖାଯାଉଥିଲା । ରାଗିଣୀ ସନ୍ଧ୍ୟାରେ ଖୁବ୍ ସୁନ୍ଦର ଦିଶୁଥିଲା । ××× ବ୍ରଜବାବୁଙ୍କ ସହ ବୁଲିଲି । 'ଉଜାଣି' ୯ଙ୍କାରରେ ବାହାରିଛି । ××× ଅନୁର ଲାଲ ହୋଇଗଲା । ତା' ରକ୍ତରେ ଅଶ୍ୱମେଧ ଘୋଡ଼ା ଛୁଟିଲା ବୋଧହୁଏ । ବେଚାରି ।

## ଜାନୁଆରୀ ୨୫, ୧୯୭୩ ଗୁରୁବାର

ଆଜି ପୁଣି ସେଇ ୨୫ ତାରିଖ । କିଛି ଭଲ ଲାଗୁନି । ଅସୀମା.... ସ୍ମୃତି ନେଇ ମୋର ଖୁବ୍ ସାମ୍ନାକୁ ମାଡ଼ି ଆସୁଛି । ତାର ଗତିରୋଧ ମୁଁ କରି ପାରୁନି । ଆଜି ଅନୁ ଉପରେ ବିରକ୍ତ ହେଲି । ରାଣୀ ଉପରେ ବି । ସନ୍ଧ୍ୟାରେ ଅଫିସ୍‌ରେ ଭଲି ଖେଳିଲି । ରାଗିଣୀ ଘରେ କିଏ ଯେପରି ବସିଥିଲା । ଯାଇ ପାରିଲି ନାହିଁ । ସଂଧ୍ୟା ସାଢ଼େ ସାତଟାରେ ୟୁ.ଏ. ରାଗ କରିଥିବା ହେତୁ ଅଫିସ୍ ଗଲି । ବ୍ୟାଡ଼ମିଣ୍ଟନ ଖେଳିଲି । ସଂଧ୍ୟାରେ ଚନ୍ଦ୍ରବାବୁ ସାଙ୍ଗରେ ଶାନ୍ତିଅପା ଘରକୁ ଗଲି । ଶାନ୍ତିଅପା ଘରେ ନିର୍ବିକାର ଭାବରେ ୨ ପ୍ଲେଟ ଚୁଡ଼ାଘଷା ଖାଇ ପଳେଇ ଆସିଲି । ଆଉ ଯାଇନି । ରାତି ସାଢ଼େ ଦଶ ପର୍ଯ୍ୟନ୍ତ ବ୍ରଜବାବୁ ପ୍ରେସରେ ବସି ରେଡ଼ିଓ ଶୁଣିଲି । ନୀଳାଦ୍ରିଭୂଷଣ ହରିଚନ୍ଦନଙ୍କ କବିତା ଅଭିନୟ ଶୁଣିଲି । ରାତିରେ ଅନୁ ଘରକୁ ଫେରିନି । ଅସୀମା ପାଇଁ ଏଣେ ତେଣେ ରାତି ଅଧଯାଏ ଘୂରି ଘରକୁ ଆସି ଶୋଇଲି ଓ କବିତା ଲେଖିଲି ।

## ଜାନୁଆରୀ ୨୬, ୧୯୭୩ ଶୁକ୍ରବାର

ସକାଳେ ବିଛଣାରୁ ଉଠିବା ମାତ୍ରେ ରୁମା ସହ ଦେଖା । ରୁମା ଅସୀମା କଥା କହିଲା । ମୁଁ ଅନୁ ଘର ହୋଇ ପଢ଼ିଆକୁ ଗଲି । ଜନରାଜ୍ୟ ଦିବସ ପାଇଁ । ରାଗିଣୀ ଘରକୁ ଗଲି । ତାକୁ କହିଲି ଯେ ମୁଁ ଆଉ କେବେ ତାଙ୍କ ଘରକୁ ଯିବିନି । ସେଠୁ ପଢ଼ିଆକୁ ଗଲି । ମନେ ମନେ ଅସୀମାକୁ ଖୋଜିଲି । ଅଫିସକୁ ଗଲି । ଭଲି ପ୍ରତିଯୋଗିତାରେ ଭାଗ ନେଲି । ଆମେ ହାରିଗଲୁ । ପୁରସ୍କାର ଇତ୍ୟାଦି ପରେ ୟୁ.ଏ.କୁ ନେଇ ମୋତିଗଞ୍ଜ ସାର୍ଟ କିଣିବାକୁ ଆସିଲି ।

ଅନୁ ଘରେ ଖାଇଲି ଏବଂ ତାକୁ ଅନେକ ଚୁମା ଖାଇଲି । ××× କବିତା ଲେଖିଲି । ତା'ପରେ ସଂଧ୍ୟାରେ ××× କବି ସମ୍ମିଳନୀରେ ବସିଲି । ମନୋଜ ଦାସଙ୍କ କବିତା " ଆମ୍ଭେ କେଉଁମାନେ" ଆବୃତ୍ତି କଲି । ନିଜ କବିତା "ଅନ୍ଧକାରର କବିତା" ଆବୃତ୍ତି କଲି । ଡାଇରି ××× ଲେଖିଲି ।

## ମାର୍ଚ୍ଚ ୨୩, ୧୯୭୩ ଶୁକ୍ରବାର

ମୋ ଆଖିରୁ ଅସୀମା ଲୁହ ପୋଛି ଦେଇଥିଲା । ତା' ପରେ ଆଉ ମଣିଷ ଜନ୍ମ ହୋଇ ନାହାନ୍ତି । ଅନୁଟାକୁ ମୁଁ ଭୀଷଣ ଭଲପାଇ ବସିଲିଣି । ବୁଢ଼ା କିନ୍ତୁ କଥା କହୁନି । ସେ ଜାଣେ ଅନୁସହ ମୋର ଖରାପ ସଂପର୍କ ଅଛି । ମୁଁ ଜାଣେ କେବଳ ଚୁମା ଖାଇବା, ଛାତିରେ, ବେକ ମୂଳରେ ମୁଣ୍ଡ ରଖିବା, ଆଲିଙ୍ଗନ କରିବା ଖରାପ ସଂପର୍କ ନୁହେଁ । ତଥାପି ସମାଜ । ଏ ସମାଜକୁ ଭାଙ୍ଗିବାକୁ ହେବ । ଅନୁଟାର ଭୀଷଣ ଦୁଃଖ । ଅସୀମା କେମିତି ଅଛି କିଏ ଜାଣେ ? ଦୋଳ ଦିନ ତାକୁ ଦେଖିଲି । ××× ଇଚ୍ଛା ହେଉଛି ଅସୀମାଠୁଁ ମୁଁ ଯାହା ପାଇପାରିନାହିଁ ୟାଠୁଁ ତା' ଆଦାୟ କରିନେବି । ଅନୁ, ତୁମେ ଖୁବ୍ ସୁଖରେ ଥାଅ ।

## ମାର୍ଚ୍ଚ ୨୪, ୧୯୭୩ ଶନିବାର

××× ମୁଁ 'ବୀରଭୋଗ୍ୟା ବସୁନ୍ଧରା' ଥିଓରିରେ ବିଶ୍ୱାସ କରେନା । ମୁଁ ଚାହେଁ ଜଣେ ସର୍ବତୋଭାବେ ମୋର ହୋଇ ମୋତେ ତା' ଦେହର ସବୁ ଅଙ୍ଗ ଧରାଇ ଦେବ । ଆଖିରେ, ଓଠରେ ଶବ୍ଦ ନଉଠାଇ ବି କହିବ– 'ଗ୍ରହଣ କର' ।

ମୁଁ ××× ଜବରଦସ୍ତ ଭଲ ପାଏ ନାହିଁ । ଦେହ ସଂଭୋଗ ଭଲ ପାଏଁ ଯୌଥଭାବେ । ×××

## ମାର୍ଚ୍ଚ ୨୫, ୧୯୭୩ ରବିବାର

ମୁଁ ଆଦୌ ଜନ୍ମି ନଥିଲେ ଏ ପୃଥିବୀରେ କ'ଣ ବା କ୍ଷତି ହୋଇଥାନ୍ତା ? ସକାଳେ ଉଠି ସେଇ ଗତାନୁଗତିକ ବନ୍ଦ କବାଟ । ତା' ପରେ ଗଲି ଶାନ୍ତିଅପା ଘରକୁ ।

ସେ ଏକା ଥିଲେ । ଏଣୁତେଣୁ ଗପିଲେ । ତାଙ୍କ ପାଖରେ ବସିବାକୁ ଭୀଷଣ ଅସ୍ୱସ୍ତି ଲାଗେ । ରାସ୍ତା ଉପରୁ କବିର ସାଇକେଲ ଦେଖି ମନଟା ଫିକା ହୋଇଗଲା । ଆଶ୍ଚର୍ଯ୍ୟ, ମୁଁ ଆଜିକାଲି ତାକୁ ସହି ପାରୁନି । ସେ ଖଟରେ ଶୋଇଥିଲା । ଅନୁ ଚଉକିରେ ବସି ଲେଖୁଥିଲା ଆଉ ତାର କଥା ଶୁଣୁଥିଲା । ମୋତେ ସବୁ ଶୂନ୍ୟ ପରି ମନେ ହେଲା । କବିକୁ ଟଙ୍କା ମାଗିଲି । ଦେଲା ନାହିଁ । ସାହିତ୍ୟ ପାଠଚକ୍ର ଗଲି । ଆଜି ଯୋଗେଶ ରାୟ ଆସିଥିଲେ । ତାଙ୍କ ଅନୁଭୂତି ଜର୍ନାଲିଜମ୍ ଉପରେ ଅନେକ କହିଲେ । ମୋତେ ସେ ଚିହ୍ନିଛନ୍ତି ତାଙ୍କ ଝିଅ ପୂରବୀଠାରୁ । ଯାଯାବରବାବୁ ଆଜି ମୋ ସହ ଖାଇଲେ । ଲକ୍ଷ୍ମଣ ରାନ୍ଧିଥିଲା । ଅନୁଘରେ ଗାଧୋଇଲି । କବି ସେତେପର୍ଯ୍ୟନ୍ତ ଥିଲା । ଆଶ୍ଚର୍ଯ୍ୟ । ××× ଅନୁ ଘରେ ଏତେ ସତ୍ତ୍ୱେ ବି ତାକୁ ଏତେ ସ୍ନେହ କରୁଛନ୍ତି ଅଥଚ ମୁଁ ଅଚଳ ମୁଦ୍ରା ହୋଇଯାଇଛି । ମୁଁ, ମୋର ଦୋଷ ବା କଣ ? ମୁଁ ନାରୀର ହୃଦୟ ପ୍ରଥମେ ଚାହେ, ତା' ପରେ ଦେହ । ଅଭଦ୍ର ଏମାନେ । ଅନୁବାପା କବି ପାଖରେ କହିଛନ୍ତି– "କହ୍ନେଇକୁ କେମିତି ଆସିବାକୁ ମନା କରିବା । ବଡ଼ ହଇରାଣ କରୁଛି ସେ ।" ମୁଁ ଏମିତି ଏକ ପଦାର୍ଥ । ଅନୁ ବି ବୋଧେ ଏମିତି କହିଲା କଥାର ସ୍ରୋତରେ ପଡ଼ି । ତାର ବି କବି ପାଇଁ ବେଶ୍ ହୃଦ୍ୟତା ଅଛି । ମୋର କିଛି ଦର୍କାର ନାହିଁ, କେବଳ ଏ ପୃଥିବୀର ଲୋକଙ୍କୁ ପାନେ ଶିକ୍ଷା ଦେବାକୁ ଚାହେଁ । ରାତିରେ ନଖାଇ ଶୋଇପଡ଼ିଲି । ସେଇ କଥା ପାଇଁ କାନ୍ଦିଲି ।

## ମାର୍ଚ୍ଚ ୨୭, ୧୯୭୩ ମଙ୍ଗଳବାର

××× ଅନୁ, ତୁମେ ଝିଅ । ତୁମେ ଦେବୀ ହୋଇ ପାରିବ ନାହିଁ । ତୁମ ଆଖିରେ ଲୁହ ନାହିଁ । ×××

## ଜୁଲାଇ ୨୫, ୧୯୭୩ ବୁଧବାର

### ଭୁବନେଶ୍ୱର

ଆଜିଠୁଁ ମୁଁ ନିୟମିତ ଡାଇରି ଲେଖିବି ବୋଲି ସ୍ଥିର କରିଛି । ଡାଇରି ଲେଖିଲେ ଅନେକ ବିଶେଷ ମୁହୂର୍ତ୍ତର ଭାବକୁ ଧରି ରଖାଯାଇପାରେ । ଆଜିଠୁ ନୂଆ ଜୀବନ– ଭୁବନେଶ୍ୱର । ଅନେକ ଆଗରୁ ଏଇ ଚାକିରିଟା ଚାହିଁଥିଲି । ଆକର୍ଷଣ, ସାହିତ୍ୟ, କୁଞ୍ଜଭାଇ ଆଉ ବାଲେଶ୍ୱରର ଜଟିଳ ପରିସ୍ଥିତିକୁ ଏଡ଼େଇଦେବା । ଜୀବନର ଧାରାଟା ମୋର ଖୁବ୍ ଶୀଘ୍ର ବଦଳି ଯାଉଛି । ଗଲାବର୍ଷ ଏତେବେଳେ ପାନାଗଡ଼, ଏବର୍ଷ ଏତେବେଳେ ଭୁବନେଶ୍ୱର । ଆଶ୍ଚର୍ଯ୍ୟ ମୋର ଜୀବନ । ଏବେ ସବୁଠାରୁ କାହିଁକି କେଜାଣି ତୁମପାଇଁ ମୋର ଅନେକ ଚିନ୍ତା । ମଣିଷର ଅସହାୟତା ମୁଁ ସହିପାରେନି କାହିଁକି ? ତୁମେ କ'ଣ ସତରେ ଏବେ ଖୁବ୍ ଅସହାୟ ହୋଇପଡ଼ିଥିବ ? ମୋର ଅଭାବ ତୁମକୁ ଆଜି କେମିତି ଲାଗୁଥିବ କିଏ ଜାଣେ ? କାଲି ଠିକ୍ ଏତିକିବେଳେ ତୁମ ପାଖରେ

ଥିଲି । ଆଜି ଏଠି ଖୁବ୍ ଏକା । ମୋତେ ଖୁବ୍ ବଡ଼ ପାଟିରେ କାନ୍ଦିବାକୁ ଇଚ୍ଛା ହେଉଛି । ତୁମପାଇଁ କେବଳ । ଏଠାରେ ମୁଁ ଅନେକ ଲୋକ, ଅନେକ କିରାଣି ଭିତରେ ନିଜର ସତ୍ତା ହରାଇ ପକାଇଲି । ତୁମ ସହରଟା ଛୋଟ କିନ୍ତୁ କି ସୁନ୍ଦର ! ଏଥର ତୁମେ ଟିକେ ସାବଧାନରେ ରହିବ, ନାହିଁ ! ବିଚାରୀ ରାଣୀ, ତା' ପାଇଁ ଏବେ ମୋତେ ଖୁବ୍ ଭାବିବାକୁ ପଡୁଛି । ଏଇ କେତେଦିନ ସେ ଯେଭଳି ବ୍ୟବହାର କଲାନା ! ତୁମେ କିନ୍ତୁ ମୋତେ କେବେ କ୍ଷମା ଦେବନି । ତୁମେ ଯଦି କେଉଁ B.Sc. L.L.B. ହୋଇ ଯାଅ ? ରାଉରକେଲା, ତୁମେ ପୁଣି ଯାଅ ଯଦି ! ଏହା ଆଜିର ଶେଷକଥା– ମଣିଷ ମାନେ ସତରେ ଖୁବ୍ ଅସହାୟ । ତୁମେ, ମୁଁ, ରାଣୀ, ମୋ ପରି ସମସ୍ତେ । ଆହା ବିଚରା, ମୁଁ ଯଦି ଟିକେ ବର୍ତ୍ତମାନ କାନ୍ଦି ପାରନ୍ତି !

## ଜୁଲାଇ ୨୬, ୧୯୭୩ ଗୁରୁବାର

ଅନୁ, ତୁମେ ଏବେ କ'ଣ କରୁଥିବ କେଜାଣି ? ଠିକ୍ ମୋ' ଭଳି ମୋର ମନମୁତାବକ ଜଣକୁ ଚାହିଁଲି । ସେମାନେ ନିଜେ କିନ୍ତୁ ସେଭଳି ନୁହଁନ୍ତି । ମୋ'ରି ଭଳି କରି ତୁମକୁ ଗଢ଼ିଲି । ତୁମେ ଯଦି ବଦଳିଯାଅ ! ନିହାତି ମନ୍ଦ ନୁହେଁ । ଅସୀମାଟା ତଥାପି ବୁଝିଲା ନାହିଁ । ××× ରାଣୀ ପାଇଁ ସତରେ ଖୁବ୍ ଦୟା ହୁଏ । ସେ ଯଦି ମୋ' ପାଇଁ ଖୁବ୍ ଦୁଃଖ ପାଏ, ମୁଁ ଆଉବା କ'ଣ କରନ୍ତି । ସେ ଯଦି ଟିକେ ମୋ' ସହ ମୋତେ ସୁହାଇଲା ପରି ବ୍ୟବହାର କରନ୍ତା; ତା'ହେଲେ ଏ ଦୁଃଖ ରହନ୍ତା ନାହିଁ । ପାନାଗଡ଼ରୁ ରାଣୀର ସୁନ୍ଦର ସୁନ୍ଦର ଚିଠିସବୁ ପାଇ ସତରେ ମୁଁ ସ୍ଥିରକରି ନେଇଥିଲି ଯଦି କେବେ ଜୀବନରେ ନାରୀ ଚରିତ୍ର ଦର୍କାର ହୁଏ ତା' ହେଲେ ସିଏ ହିଁ ଆସିବ । ତୁମେ ଆଶ୍ଚର୍ଯ୍ୟଜନକ ଭାବେ ଯା' ଭିତରକୁ ପଶି ଆସିଲ ସତ୍ୟ, ତୁମର ଉଚ୍ଚତା, ତୁମର ସ୍ୱାସ୍ଥ୍ୟ ମୋ' ପାଇଁ ଅନୁକୂଳ ନୁହେଁ । ତଥାପି ××× ତୁମେ ମୋର ସନ୍ତାନର ଜନନୀ ହେବ । ତୁମ ପାଖରେ ଥାଇ ××× ସ୍ୱାଦ୍ କି ପଦାର୍ଥ ଅସ୍ତୁଭବ କରିସାରିଛି । ତୁମେ ବି ମୋତେ ସବୁ ଦେଇଦେଲ କେଉଁ ବିଶ୍ୱାସରେ ! ତୁମେ ପରା କହିଲ– ଜଣକୁ ଦେହ ଓ ମନ ଦେବ । ସେଥିପାଇଁ ନୁହେଁ । ମୁଁ ତୁମର ମନ ଦେଖି ସବୁ ପାଇଛି ଯେତେବେଳେ ତୁମକୁ ହିଁ ଗ୍ରହଣ କରିବି । ସ୍ଥିର କରି ପାରୁନି । ×××

## ଜୁଲାଇ ୨୭, ୧୯୭୩ ଶୁକ୍ରବାର

ଆଜି Section ପାଇଲି । ଜଣା ଜାଗାରେ କେହି ସ୍ଥିର ହୋଇ ରହୁନାହାନ୍ତି । ମୁଁ କଣ ରହିବି ? ଅନୁ, ତୁମର ଖବର କ'ଣ ? ଆଜି ମୋ'ର ଚିଠି ପାଇଯାଇଥିବ, ନୁହେଁ ? ବାପା ଘରେ ଥିବେ । କ'ଣ କିଛି ଭାବୁଥିବେ କି ? ରାଣୀ ବି ଚିଠି ପାଇ ସାରିଥିବ । ବହୁତ ଦୁଃଖ ଦୟା ଲାଗେ ତା' ପାଇଁ । ଯଦି ସାମାନ୍ୟ ସେ ମୋତେ ବୁଝନ୍ତା !

## ଜୁଲାଇ ୨୮, ୧୯୭୩ ଶନିବାର

ଆଜି ଟିକିଏ କାମ କରି ଏଣେତେଣେ ବୁଲାବୁଲି କଲି । ସଞ୍ଜରେ ଟାକ୍ସିରେ କଟକ ପଳାଇଲି । କଟକରେ ଗିରୀଶ ଓ ସୁବୋଧ ଅପେକ୍ଷା କରିଥିଲେ । ××× ଗିରୀଶ ଘରକୁ ଆସି ବର୍ଷା ହେବାରୁ ଅନେକ ସମୟ ବସିଲୁ । ସୁବୋଧ ଆଗ ରିକ୍ସାରେ ପଳାଇଲା । ତା'ପରେ ମୁଁ ଓ ଗିରୀଶ ଯାଇ ତାର ଡ୍ରାମା ପଢ଼ି ଖାଇଲୁ । ତୁମ କଥା ତାକୁ ସବୁ କହିଲି ।

## ଜୁଲାଇ ୨୯, ୧୯୭୩ ଗୁରୁବାର

ଆଜି ସାରାଦିନ କଟକର ରାସ୍ତା ଉପରେ କଟିଛି । ନାଟ୍ୟକାର ରାମଚନ୍ଦ୍ର ମିଶ୍ର (ଗିରୀଶର ନନା)ଙ୍କ ସଙ୍ଗେ ରାସ୍ତାରେ ଦେଖା । ସେ "ଘର ସଂସାର"ର test show ଦେଖି ଯାଇଥିଲେ । ଆମେ ଆଜି ଦିନସାରା ସୌଭାଗ୍ୟବାବୁ, କ୍ଷୀରୋଦ ପାଢ଼ୀ, ଅଶୋକ ମହାନ୍ତି, ମିହିର ଆଚାର୍ଯ୍ୟ, ରାମଚନ୍ଦ୍ର ମିଶ୍ରଙ୍କ ସହ କଟାଇଲୁ । ×××

## ଜୁଲାଇ ୩୦, ୧୯୭୩ ସୋମବାର

ଆଜି ସକାଳେ ଟାକ୍ସିରେ ଭୁବନେଶ୍ୱର ପଳାଇ ଆସିଲି । ଅଫିସରେ ଟିକେ କାମ କରି ବସ୍ଷ୍ଟାଣ୍ଡରେ ଯାଇ ବୁଲିଲି । ଆଜି ତିଥିକୁ, ଅନୁକୁ, ଅକ୍ଷୟକୁ, ଲକ୍ଷ୍ମଣକୁ ଚିଠି ଲେଖିଚି ଓ 'କଥାକାର'କୁ ଗପ ପଠାଇଛି । ସଞ୍ଜରେ ସୁବୋଧ ଆସିବାର ଥିଲା, ଆସିଲା ନାହିଁ । ଶିଶିର ସଙ୍ଗେ ଦେଖା । ××× କେମିତି ଏକ ସ୍ୱରରେ ପଚାରିଲା– ତୁମେ ରୀତାକୁ ବାହା ହେଉଛ ? ରୀତା କଥା କେବଳ ଥଟ୍ଟାର କଥା । ବ୍ରଜବାବୁ ଆଉ ପଞ୍ଚାନନର ଥଟ୍ଟା ଆଉ ଉପହାସ ଛଡ଼ା କଣ ଆଉ ହୋଇପାରେ ? କୌଣସି ଝିଅକୁ ବାହାହେଲେ ମୁଁ ଯେ ତାକୁ ଭୀଷଣ ସୁଖୀ କରିପାରିବି, ଏକଥା ମୁଁ ଜାଣେ । କିନ୍ତୁ ତୁମକୁ ଛାଡ଼ି କେମିତି କଣ କରିବି ? ଅସୀମାଟା ଯଦି ଏବେ ବି ଅନୁତାପ କରନ୍ତା ! ଆଜି ସଞ୍ଜରେ ଅନ୍ଧକାରରେ ଶୋଇ ଶୋଇ ଅନେକଦିନ ପରେ ଅନେକ କାନ୍ଦିଲି । ମନେମନେ ଶପଥ କଲି, ରାଣୀ ଛଡ଼ା ବୋଧହୁଏ ଆଉ କାହାରିକୁ ବାହାହେଲେ ମୋର ସତ୍ତା ରହିବ ନାହିଁ । ଖୁବ୍ ପିଲାଦିନରୁ ଯେ ମୁଁ ତାକୁ ଭଲ ପାଇଛି । ଖାଲି ବ୍ୟବହାର ଖରାପ କରୁଛି ବୋଲି ସିନା ! ତଥାପି, ସମୟ କାହାକୁ କୁଆଡ଼େ ନେଉଛି ଦେଖାଯାଉ ।

## ଡିସେମ୍ବର ୯, ୧୯୭୩ ରବିବାର

ମଣିଷକୁ ଠକି ମିଛକହି କ'ଣ ବଂଚିବାର ସୁଖ ନାହିଁ ? କେତେଦିନ ବା ବଂଚେ ମଣିଷ ? ସେଇ କେତେଦିନ ଅନ୍ୟକୁ ମିଛ କହି ହେଉ ବା ଠକିକରି ହେଉ ବଂଚିଲେ ଭଲ । ରାଣୀକୁ ମିଛ କହୁନାହିଁ ତ ? ଆଜି ଅନୁକୁ ଗୋଟିଏ ଥାପଡ଼ ମାରିଲି । ତା' ପାଖରେ ଥିବା ଫଟୋ ଚିରିଦେଲି । ସଂପର୍କ କିଛି ନାହିଁ ବୋଲି କହି ଚାଲି ଆସିଲି ।

ଅନୁ ଅନ୍ୟ ଏକ ଯନ୍ତ୍ରଣା । ଅସୀମା ପରେ ଅନ୍ୟ ଏକ ଯନ୍ତ୍ରଣାକର ଇତିହାସ । ମୋର ଲେଖକ ହେବାରେ ଏମାନେ ହିଁ ସହାୟକ । ମୁଁ ନିଶ୍ଚୟ ବଡ଼ ଲେଖକ ହେବି ।

## ଡିସେମ୍ବର ୧୦, ୧୯୭୩ ସୋମବାର

ଆଜି ବାଲେଶ୍ୱରରୁ ଆସି ଭୁବନେଶ୍ୱରରେ ପହଞ୍ଚିଲି । ଅନୁ ଶେଷରେ ଏଇଆ କହିଲା ? କହିପାରିଲା ? ମୋ' ପ୍ରତି ତାର ଅନ୍ତରଙ୍ଗତାଟା ଏତେ ଶୀଘ୍ର ଚାଲିଗଲା ? ଏତେ କ୍ଷଣସ୍ଥାୟୀ ତାର ଭଲ ପାଇବା ? ମୁଁ ନାରୀ ଚରିତ୍ର ଉପରେ ଅନେକ କଥା ଶୁଣିଛି । ମାତ୍ର ଜୀବନରେ ଅନେକ ନାରୀ ଆସିଥିଲେ ବି ଏ ଧରଣର ପରୀକ୍ଷା କାହାରିଠାରେ ପାଇ ନଥିଲି । ସମସ୍ତେ ମୋ' ପାଇଁ ଖୁବ୍ sincere । ଏ ପର୍ଯ୍ୟନ୍ତ ରାଣୀଟା ମୋ' ପାଇଁ ସବୁ ସହୁଛି । ମୁଁ ଯାହା ଚାହୁଁଛି ସବୁ ପୂରଣ କରି ଦେଉଛି । ମୁଁ ଜୀବନରେ ଅସୀମାର ଭୀଷଣ ସ୍ନେହ ପାଇଲି । ଅଜବ ଚରିତ୍ର ଅସୀମା । ଆଉ ଅସମ୍ଭବ ଚରିତ୍ର ଏ ଅନୁ । ଅନୁ, ତୁମେ ମୋ' ଆଖିକୁ ଚାହିଁ କହିଲ, ତୁମେ ମୋ' ପାଇଁ ଖୁବ୍ ବିକଳ ହୋଇ ପଡ଼ିନଥିଲ ? ଛାଡ଼, ମୁଁ ଜାଣେ, ମୋଭଳି କେହି ତୁମକୁ ଭଲ ପାଇ ପାରିବେ ନାହିଁ ।

## ଡିସେମ୍ବର ୧୬, ୧୯୭୩ ରବିବାର

ଭାବୁଛି ଗଞ୍ଜେଇ, ଭାଙ୍ଗ, ସିଗାରେଟ, ପାନ, ମଦ, ଚା, ଇତ୍ୟାଦି ଖାଇବି ନାହିଁ । କିନ୍ତୁ ସେମିତି ଅଭ୍ୟସ୍ତ ହୋଇନଥିଲେ ବି ଭଲ ଲାଗୁଛି ସେଗୁଡ଼ା । ଚେଷ୍ଟା କରିବି ନଖାଇବା ପାଇଁ ବା କମ୍ ଖାଇବା ପାଇଁ ।

## ଡିସେମ୍ବର ୧୮, ୧୯୭୩ ମଙ୍ଗଳବାର

ଆଜି 'ଶ୍ରେୟାନ'ର ଉଦ୍‌ଘାଟନ ହେଲା । ବିବେକ ଜେନା ସହ ଅନେକ ଗପିଲି । ବହୁତ ମଜା କଲି । ଖୁବ୍ ସୁନ୍ଦର ଲୋକ ସେ । ପୂର୍ବରୁ ହୋଇଥିବା ଅପମାନ ସବୁ ଭୁଲି ଯିବାକୁ ହେବ । ଆପାତତଃ ସେ ଆଜି ସୁନ୍ଦର ଓ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର କରି, ପରୋକ୍ଷରେ, ସେ ସବୁ ଅପମାନ ଇତ୍ୟାଦି କଥା ଭୁଲିଯିବାକୁ ବାଧ୍ୟକଲେ । ଛାଡ଼, ଲୋକଟାର ମୁଡ୍ ଇତ୍ୟାଦି ବୁଝିବା ମୋର କର୍ତ୍ତବ୍ୟ, ଲୋକଟା ସଙ୍ଗେ ଗପି ତନ୍ତ୍ର ଇତ୍ୟାଦି କଥା ଜାଣିନେଲି । ତନ୍ତ୍ର ଓ ପ୍ରକୃତି ଉପରେ ଲୋକଟାର ଭୀଷଣ ଆଗ୍ରହ ।

ରାତିରେ ଘରେ ଆସି ଖୁବ୍ ଅନୁ କଥା ମନେକଲି ।

## ଡିସେମ୍ବର ୧୯, ୧୯୭୩ ବୁଧବାର

ଆଜି ଅଫିସ୍‌ରେ ବିବେକ ଜେନା ମୋତେ ଡାକି କହିଲେ A.G. Magazine କରିବା କଥା । ବେଶ୍ ଚମତ୍କାର ଲୋକ ସେ । ଆଜି ସଂଜରେ ମିଟୁ ପାଖରୁ ଫେରି ଶୋଇ ଶୋଇ ଅନେକ ସ୍ୱଗତ ସଂଳାପ କଲି । ଆଜି ଅନେକ ଦିନ ପରେ ବେଶ୍ ଟିକିଏ କାନ୍ଦିବାର ଅବସର ପାଇଲି । ଅନୁ ପାଇଁ ଭୀଷଣ ଦୁଃଖ ହୁଏ ମୋ'ର ।

## ଡିସେମ୍ବର ୨୦, ୧୯୭୩ ଗୁରୁବାର

ଏ ବର୍ଷ ଚମତ୍କାର ଭାବେ ଆଉ ଆଶ୍ଚର୍ଯ୍ୟଜନକ ଭାବେ ସରି ଆସୁଛି । ଏ ବର୍ଷ ଅନୁକୁ ପାଇଲି । ତାକୁ ହରାଇବାକୁ ବାଧ ହେଲି । ଏ ବର୍ଷ A.G. ଚାକିରି ପାଇଲି । ପ୍ରତିରକ୍ଷା ବିଭାଗ ଛାଡ଼ିଲି । ଏବର୍ଷ ବାଲେଶ୍ୱର ଛାଡ଼ିଲି । ଭୁବନେଶ୍ୱର ଆସିଲି । ଏବର୍ଷ ଶାନ୍ତନୁ ଆଚାର୍ଯ୍ୟ, ବିଭୂତି ପଟ୍ଟନାୟକ, ରବି ପଟ୍ଟନାୟକ, ବିବେକ ଜେନା ଇତ୍ୟାଦିଙ୍କ ସହ ଦୋସ୍ତି ହେଲା । ଆହୁରି ବି ଅନେକ । କିଏ ଜାଣେ ଏ ସମୟ ମୋତେ ଶେଷରେ ନେଇ କେଉଁ କୂଳରେ ପହଞ୍ଚାଇବ । ସବୁ ପାହାଚରେ ଧୀରେ ଧୀରେ ଚଢ଼ି ଆସୁଛି । କିନ୍ତୁ ରାଣୀ କଥା ଭୁଲି ହେଉନାହିଁ କାହିଁକି ? ଯଦି ସେ ମୋତେ ସାମାନ୍ୟ ଟିକିଏ ବୁଝନ୍ତା, ତା' ହେଲେ ଅସୀମା ପାଇଁ, ଅନୁ ପାଇଁ ଏତେ ଚିତ୍କାର କରନ୍ତି ନାହିଁ । ପ୍ରଥମ ଥର ପାଇଁ ଏବର୍ଷ କବି ସହ ଦୋସ୍ତିରେ ଦୁଷ୍ମନି ଆସିଲା । ଏବର୍ଷ ଖୁବ୍ କମ୍ ସମୟ ପାଇଁ ଏକ ଆଶ୍ଚର୍ଯ୍ୟ ବନ୍ଧୁ ଓ ଉପଦେଷ୍ଟା କୁଞ୍ଜଭାଇଙ୍କୁ ପାଇଲି ।

ମୋର ଜୀବନରେ ଅନେକ ସ୍ଥାନ ତ୍ୟାଗ କରି କରି ଆସିଥିଲେ ମଧ ଏଇଟା କଣ ଶେଷ ସ୍ଥାନ ! ଆପାତତଃ ଏ ସ୍ଥାନ ନେଇ ମୁଁ ଖୁବ୍ ନିଶ୍ଚିନ୍ତ ଓ ଆପାତତଃ ସୁଖୀ !

## ଫେବୃଆରୀ ୨୪, ୧୯୭୫ ସୋମବାର

ତିନି ତିନି ବର୍ଷ ସଂଙ୍ଗ ସକାଳ ମଧ୍ୟାହ୍ନ ମଧରାତ୍ରି ଯାହା ପାଖରୁ ଗୋଟିଏ ବ୍ୟକ୍ତିଗତ ମୁହୂର୍ତ୍ତ କାମନା କରି ପାଇଲି ନାହିଁ– ତା' ବଦଳରେ ଅନେକ ମୁହୂର୍ତ୍ତ, ଅନେକ ଭଲପାଇବା, ଅନେକ କୋହଲୁହ ଉତ୍ସର୍ଗ କଲି, ଅଥଚ ଗଲାକାଲି ରାତିରେ ସେଇ ଜିଦ୍‌ଖୋର ଲୋକଠାରୁ ଜଣେ ଅପରିଚିତ ହଠାତ୍ ସବୁ ପାଇଗଲା । ଆଶ୍ଚର୍ଯ୍ୟ ! ମୁଁ ହାରିଗଲି, କାରଣ ମୁଁ ତା' ଇଚ୍ଛାକୁ ସମ୍ମାନ ଦେଲି, ତା'ର ନାରୀତ୍ୱର ମର୍ଯ୍ୟାଦା ଦେଲି । ଯାଉ ! ସେ ସୁଖରେ ରହୁ ।

## ମାର୍ଚ୍ଚ ୧୪, ୧୯୭୫ ଶୁକ୍ରବାର

କଟକରୁ ଭୁବନେଶ୍ୱର ବସ୍‌ରେ–

ପୁଣି ସେଇ କଥା । ସେଇ ଅନୁଭବ । ସେଇ ପ୍ରକାର । ସନ୍ଦେହ ହୁଏ, ତଥାପି ଭଲଲାଗେ । ସମୟ କଟେ । ଅନେକ କବାଟ ଝର୍କା ଖୋଲିଯାଏ । ମୁଁ ଜାଣେ ସବୁ ମିଛ । ତଥାପି ଗତିଶୀଳ ହେବାକୁ ଭଲ ଲାଗେ ।

## ମାର୍ଚ୍ଚ ୨୦, ୧୯୭୫ ଗୁରୁବାର

ଗୋଟିଏ ମାସ ଚାଲିଗଲା । ଗୋଟିଏ ବର୍ଷ ବି ଯିବ । କ୍ରମେ ଏକ ଦୁଇ ତିନି ବାର କୋଡ଼ିଏ ଚାଳିଶି ଷାଠିଏ ହୋଇ ଆମେ ଶେଷ ହୋଇଯିବା । କିନ୍ତୁ ମୋର ଶେଷ ମୁହୂର୍ତ୍ତରେ ମୁଁ ଯେମିତି କହିପାରେ, ଅସୀମା, ତୁ ଆଜିକାଲି ଭଲଅଛୁ ତ ! ମନେ

ପଡୁଛି, ଜୁନ୍ ୨୫ ରେ ଖାଉ ନଥିଲି; ସେଇ ବୀଭତ୍ସ ଦିନଟାକୁ ସ୍ମରଣ କରିବା ପାଇଁ, ଖୁବ୍ ଦୁଃଖରେ ରହୁଥିଲି । କିନ୍ତୁ ଫେବୃଆରୀ ୨୦ରେ ମୋତେ ଖୁବ୍ ଆନନ୍ଦ କରିବାକୁ ହେବ । ମୁଁ ଯେ ଖୁବ୍ ଖୁସି । କେତେଦୂର ଆଣ୍ଡାମାନ ? ପୋର୍ଟ ବ୍ଲେୟାର ଧନ୍ୟ । ଦୁଃଖ ପାଉନି ତ ସେ । ଅନେକ ଦିନ ହେଲା ତାକୁ ସ୍ୱପ୍ନ ଦେଖୁନଥିଲି । କିନ୍ତୁ ଆଜିକାଲି ପୁଣି ଦେଖୁଛି ।

## ମାର୍ଚ୍ଚ ୨୧, ୧୯୭୫ ଶୁକ୍ରବାର

ଆଜି ସଞ୍ଜରେ ମହାନ୍ତିବାବୁ ଏ ଡାଇରିଟା ଦେଲେ । କେଉଁ ଏକ ବର୍ଷରେ, ବୋଧହୁଏ ୧୯୭୧ରେ ଅସୀମା ମୋତେ ଗୋଟିଏ ଡାଇରି ଓ ଡଟ୍‌ପେନ୍ ଦେଇଥିଲା । ଏବେ ବି ମୁଁ ତାକୁ ସାଇତି ରଖିଛି । ଆହା କେତେ ଚମତ୍କାର ଥିଲା ସେ ଦିନଗୁଡ଼ିକ ! ମୋର ସବୁଦିନେ ମନେ ରହିବ; ଅନ୍ତତଃ ମନେ ରହିବା ଉଚିତ । ଏଇ କେତେଦିନ ହେଲା ମୋ' ଦେହ ଆଦୌ ଭଲ ରହୁନି । ପେଟ ରୋଗଟା ମୋତେ ଶେଷ ପର୍ଯ୍ୟନ୍ତ ଖୁବ୍ ହଇରାଣ କରିବ । ସଞ୍ଜରେ ପୀତବାସ ଆସିଥିଲା ଲେଖା ନେବା ପାଇଁ । ସମସ୍ତେ ଘରେ ସିନେମା ଗଲୁ ।

## ମାର୍ଚ୍ଚ ୨୨, ୧୯୭୫ ଶନିବାର

ସବୁଦିନେ ସେଇ ଗୋଟିଏ ପ୍ରକାର ଜୀବନ ଭଲ ଲାଗୁନାହିଁ । ଆଜି ସଞ୍ଜରେ ତାସ ଖେଳିବି ନାହିଁ ବୋଲି ବାଧ ହୋଇ ଖେଳିଲି । ଅଫିସ୍‌ରେ ବେଶୀ ସମୟ ଶୋଇ ଶୋଇ କଟାଇଲି । ବୁଲୁ ଆସିଥିଲା । ରେଣୁକୁ ଦେଖିବା ପାଇଁ । ସଞ୍ଜରେ ଭଲି ଖେଳ ଜମୁଛି । ଭାବୁଛି, ଶୀଘ୍ର ଗୋଟିଏ ଗପ ଲେଖିବି । ×××

## ମାର୍ଚ୍ଚ ୨୩, ୧୯୭୫ ରବିବାର

କାଲି ରାତିରେ ରା...କୁ ସ୍ୱପ୍ନ ଦେଖିଲି। ମୋର ସେଥିପାଇଁ ଆଗ୍ରହ ନାହିଁ କାହିଁକି!

ଆଜି ଖୁବ୍ ଭୋରରୁ ଉଠିଲି । ଖୁବ୍ ଭଲ ଲାଗିଲା । ସକାଳ ତାସ ଖେଳ । ସମରେନ୍ଦ୍ରବାବୁ । ଏଣେ ତେଣେ ବୁଲା, ଖେଳା, ମିହିର, ସିନେମା, ସଞ୍ଜରେ ଷ୍ଟେସନ, ଡ୍ରାମା, ବୁଢ଼ୀ, ପୁଣି କୁଂଜଭାଇ, ସୁରେନ୍ଦ୍ରବାବୁ ବେଶ୍ ତାତ୍ତ୍ୱିକ ଆଲୋଚନା । କୁଂଜଭାଇ ମୋ' ଗପର ନାଟ୍ୟରୂପ ଦେବେ । ଚମତ୍କାର । ଗପର ଆଇଡ଼ିଆଟା ଭଲ ଲାଗିଛି ତା'! ହେଲେ ! ×××

## ମାର୍ଚ୍ଚ ୨୪, ୧୯୭୫ ସୋମବାର

ଆଜି ସେଇ ଅଫିସ୍ । ଭଲ ଲାଗେ ନାହିଁ । ସବୁଦିନେ ଅଫିସ୍ । ସାରାଦିନ ଅଫିସ୍‌ରେ ଶୋଇ ଶୋଇ କଟାଇଲି । କୁଂଜଭାଇ ନାଟକଟା ଲେଖିବା ଆରମ୍ଭ କରି ଦେଲେଣି । ଆଉ, ଗୋଟିଏ ଦିନରେ ଏତେ ଆଗେଇ ଗଲେ ! ଆଶ୍ଚର୍ଯ୍ୟ ଲୋକ ତ !

ଶୀଘ୍ର ଦୁଇଜଣ ଫେରିଆସଲୁ । ଉପରଓଳି ଭଲି । ସଞ୍ଜରେ ସଂଗୀତ ନାଟକ ଏକାଡ଼େମୀ ଗଲୁ, ଆୟୋଜିତ ନୃତ୍ୟନାଟକ ଦେଖିଲୁ । ରାତି ଅଧରେ ଗିରୀଶ ନୟାଗଡ଼ରୁ ଆସି ପହଞ୍ଚିଲା । ତାସ ଖେଳିବା ପାଇଁ । ସକାଳେ ଉଠି ପଳେଇବ । ଆଶ୍ଚର୍ଯ୍ୟ ପିଲା ।

## ମାର୍ଚ୍ଚ ୨୫, ୧୯୭୫ ମଙ୍ଗଳବାର

କାଲି ବୁଧବାର । ପରଦିନ.... ଆହୁରି ଦୀର୍ଘ ୨ ଦିନ । ଗଲାଥର ରା.... ଉପରେ ରାଗି ଫେରିଥିଲି । ମନ ଭଲ ନାହିଁ । ସେ ରାଗିଥିବ କି !

××× ଗିରୀଶ ହାତ ଦେଖି ଠିକ୍ କହିଥିଲା, ମୁଁ ବା' ହେଇ ସାରିଛି । କିନ୍ତୁ ଥରେ ଥରେ ଭୀଷଣ ବୋର୍ ହୋଇଯାଏ । ତାକୁ ଛାଡ଼ି, ପୃଥିବୀ ଛାଡ଼ି ପଳେଇବାକୁ ଇଚ୍ଛା ହୁଏ । ପରିଣତି ? ଜାଣେ ନାହିଁ, ଜାଣେ ନାହିଁ, ଜାଣେ ନାହିଁ । ହୁଏତ ଅନ୍ଧକାର । ସକାଳେ ଗିରୀଶ ଉଠିଗଲା । ବସ୍‌ଷ୍ଟାଣ୍ଡରେ ଝିଲ୍ଲିକୁ ଦେଖିଲି, ଭଲ ଲାଗିଲା । ମାୟାଧର ବାବୁ ଛାଡ଼ିବାକୁ ଯାଇଥିଲେ । ଆଜି ଦିନଟା କଟିଗଲେ ଯାଏ । ଅରୁଣବାବୁ ଆଜି ପରୀକ୍ଷାରେ ପାସ୍ କରିଗଲେ । ଜମିଲା । ମୁଁ ଖୁବ୍ ଉଦାସ ହେଉଛି କାହିଁକି ?

## ମାର୍ଚ୍ଚ ୨୬, ୧୯୭୫ ବୁଧବାର

ସକାଳୁ ସକାଳୁ ପ୍ରସ୍ତୁତି ଥିଲା । ଅବଶ୍ୟ ଏବେ ଏଠି ବାଲେଶ୍ୱରରେ । ଅରୁଣବାବୁ ବ୍ୟାଗ୍ ନେଇ ଆଗରେ ଗଲେ । ମିହିର ତା' ପରେ ଆସିଥିଲା । ଆସିବାବେଳେ ଖୁବ୍ ଭିଡ଼ । କୁଂଜଭାଇର ଯନ୍ତ୍ରଣା । ଏପେଣ୍ଡିସାଇଟିସ୍ ନୁହେଁ ତ ! ଭଲ ଲାଗୁଛି । କୁଂଜଭାଇ ଓ ମିହିର । ପୃଥିବୀର ସବୁଠୁ ପାଖ ଦ୍ୱିତୀୟ ତୃତୀୟ ମଣିଷ । ମୁଁ କୁଂଜଭାଇ ପାଇଁ ଖୁବ୍ ବାଜେ କଥା ରାସ୍ତା ସାରା ଭାବୁଛି । ନା, କିଛି ହେବନି । ଆଶ୍ଚର୍ଯ୍ୟ ମନ ମୋର । ××× ରା... କେମିତି ଖୁବ୍ ସାନ ଦେଖାଗଲା । ଏଇ ସେଇ ଘର । ଏଇଠି ମୋର ଜୀବନର ୭ ବର୍ଷ କଟିଛି । ଏତେ ଘଟଣା ଦୁର୍ଘଟଣାର ସାକ୍ଷୀ ଏଇ ଘର ।

## ମାର୍ଚ୍ଚ ୨୭, ୧୯୭୫ ଗୁରୁବାର

ଅନେକ ପ୍ରତୀକ୍ଷିତ ମୁହୂର୍ତ୍ତ ସବୁ । ଏଇଟା କଣ ସତ୍ୟ ନା ମାୟା ? ମାୟା ଇତ୍ୟାଦି ଶବ୍ଦରେ ଅବଶ୍ୟ ମୋର ବିଶ୍ୱାସ ନାହିଁ । ଅନ୍ୟାୟଟା କ'ଣ ମାନସିକ । ପ୍ରକୃତରେ ଅନ୍ୟାୟ ବା ଅପରାଧ ବୋଲି କିଛି ନାହିଁ । ସେ ତ ସବୁ ବେଶ୍ ଗ୍ରହଣ କରୁଛି । ଖୁବ୍ ଭଲ ଦେଖାଯାଉଛି ତାକୁ । ତା ଛଡ଼ା ମୋର ଅନ୍ୟ ଗତି ନାହିଁ । ଦ୍ୱିପ୍ରହରରେ ତାସ । ସଞ୍ଜରେ ଇନ୍ଦ୍ରବାବୁଙ୍କ ଘର । ତା' ପରେ ପ୍ରେସ୍ । କିଶୋରୀ ଦାସଙ୍କ ଚିଠି ଚମତ୍କାର । ଆହୁରି ଚମତ୍କାର ତାଙ୍କ କବିତା । ବାଲେଶ୍ୱରରେ ସାହିତ୍ୟିକ ଚେତନା ବଢୁଛି । ଭଲ ଲକ୍ଷଣ । ×××

## ମାର୍ଚ୍ଚ ୨୮, ୧୯୭୫ ଶୁକ୍ରବାର

ଦିନକ ପରେ ଏଠାରେ ଏତେ କାହିଁକି ବୋର୍ ଲାଗେ ବୁଝି ପାରେନି । ସବୁଦିନର ସେଇ ତନୁଲତା । ସେଗୁଡ଼ା ବି ସେତେ ଆଉ ଭଲ ଲାଗୁନି । Sex ରେ ତୃଷ୍ଣା ଯେତେ ମାରାତ୍ମକ, ବିତୃଷ୍ଣା ବି ସେତେ ବିରକ୍ତିକର । ଭଲ ଲାଗୁନାହିଁ ଆଉ ସବୁ । ×××

## ମାର୍ଚ୍ଚ ୨୯, ୧୯୭୫ ଶନିବାର

ଆଜି ସଞ୍ଜରେ ଅଶୋକ ସିଂ ସାହିତ୍ୟ ସଭାରେ ବାସନ୍ତୀ, ପଦ୍ମ ରଥ, ଇନ୍ଦୁ ଦାସ ଆଉ ସୁ... ପଣ୍ଡାଙ୍କୁ ଭେଟିଲି । ଇନ୍ଦୁଙ୍କୁ ଭଲ ଲାଗିଲା । ଦିନସାରା ଜମେଇଲି । ଖୁବ୍ ଖୋଲା ହୃଦୟର ଝିଅଟି । ବାସନ୍ତୀ ଏତେ ସ୍ନେହୀ । ହାତରେ କମଳା ଛଡ଼ାଇ ହସ୍‌ପିଟାଲରେ ଖୁଆଇଲା । ଅସୀମା ଉପରେ ଅନେକ କଥା ପଚାରିଲା । ତାଙ୍କଠାରୁ ଜଣାଯାଏ ଅସୀମା ମୋର ସବୁ ଲେଖା ପଢୁଥିଲା । କବି ସହ ଦେଖା । ବ୍ରଜବାବୁ ଶୁଭେନ୍ଦୁବାବୁ ସହ ଜମିଲା । ×××

## ମାର୍ଚ୍ଚ ୩୦, ୧୯୭୫ ରବିବାର

ଏଠାକୁ ନଆସିଲେ ରହିପାରେନି । ଦୁଃଖ ପାଏ । ପୁଣି ଏଠାକୁ ଆସିଲେ ବି ଦୁଃଖ । ପୃଥିବୀରେ ଏମିତି କେଉଁ ସ୍ଥାନ ଅଛି ଯେଉଁଠି ଶାନ୍ତି ପାଇବି ! ସାମାନ୍ୟ କଥା । ସବୁ ଗୋଳମାଳ ହୋଇଗଲା । ରା... ମୋ' ଉପରେ କେମିତି ବିରକ୍ତ ହେଲା । ସାମାନ୍ୟ ବିରକ୍ତି ଯେ ମୁଁ ସହି ପାରେନି । ମୋ' ଭିତରେ ହଠାତ୍ ସେଇ ଦୁଃଖର ଗୁପ୍ତ ଦର୍ଜାଟା ଫିଟିଯାଏ । କିଏ ଅଛି ମୋ' ଦୁନିଆରେ । ମାସର ୨୫ ତାରିଖରେ ମୁଁ ବଞ୍ଚିଛି କି ନାହିଁ ଖୋଜାପଡ଼େ । ତେଣୁ ସାମାନ୍ୟ କଥାରେ ମୋର ସ୍ରୋତ ଆରମ୍ଭ ହୁଏ । ସତରେ ମୁଁ କେବଳ ମୋ' ପାଇଁ । ରା... ଶେଷ ରାଗିଗଲା । ଚାବି ନେଇ କାଗଜ ରଖିଦେଇ ପଳେଇଲା । ସବୁ ହେଉ, କିନ୍ତୁ ସେ ଯେମିତି ଦୁଃଖ ନପାଉ । ଖୁବ୍ ଅଭିମାନୀ ବିଚାରୀ !

## ମାର୍ଚ୍ଚ ୩୧, ୧୯୭୫ ସୋମବାର

ଆଜି ପୁଣି ଭୁବନେଶ୍ୱର । ଆସିଲାବେଳେ କେମିତି ସବୁଦିନେ କାନ୍ଦ ଲାଗେ । ବସ୍‌ରେ ସୋରୋରୁ ଯେଉଁ ଝିଅଟି ଉଠିଲା ସେଇଟା ଏତେ ଆତ୍ମୀୟ ଭଳି ମନେ ହେଉଥିଲା କାହିଁକି ! ଚାଲିଚଳନରେ କି ନିର୍ବିକାର ! ଭୁବନେଶ୍ୱରରେ କଣ୍ଡକ୍ଟର ସହ ଝମେଲା ହେଲା କଟକ ପର୍ଯ୍ୟନ୍ତ ଟିକଟ କରିଥିଲି ବୋଲି । ଗୁରୁକଲ୍ୟାଣ ସାଥିରେ ଥିଲା, କୁଂଜଭାଇ ଠିକ୍ ଥିଲେ । ମିହିର ମୋ' ଉପରେ ସାମାନ୍ୟ ବିରକ୍ତ । ବୋର୍ ହେଉଛି ସେ । ସଞ୍ଜରେ ରାଗି J.P. ପାଇଁ ବାଣୀବିହାର ଚାଲିଗଲା, କୁଂଜଭାଇ ଗଲେ ନାହିଁ । ମୁଁ ବା କେମିତି ଯାଇଥାନ୍ତି । ରାସ୍ତାରେ ବିଜୟ ମିଶ୍ର ଡେରି କରିଦେଲା । ମିହିର ମୋ'

ଉପରେ ସାମାନ୍ୟ ବିରକ୍ତ ହେଉଛି ଆଜିକାଲି । ମୁଁ ନିରୁପାୟ । ××× ଯାହାହେଉ, ହରି ମିଶ୍ର ଓ ଗିରୀଶ ଆସିଲେ । ଜମିଗଲା ।

## ଏପ୍ରିଲ ୧, ୧୯୭୫ ମଙ୍ଗଳବାର

ଆଜି J.P.ର ଦର୍ଶନ ଓ ଭାଷଣ । ହରିଭାଇନା, ଗିରୀଶ, କୁମାର ଭାଇ, ଫନୀ, ଅଶୋକ ସିଂ, ଚିନ୍ତାମଣି, ବଳିୟାର ସିଂ, ରାହାସବାବୁ, ମିହିର, ତା' ଛଡ଼ା ମୁଁ ଓ କୁଂଜଭାଇ । ସମସ୍ତେ ଏକତ୍ର । ଦ୍ୱିପ୍ରହରରେ ୧୨୯ରେ ଘମାଘୋଟ ଆଲୋଚନା । ଅଫିସରୁ ପଳେଇ ଆସିଲି । ହରିଭାଇନାର ଅନେକ ଅଭିଯୋଗ ଥିଲା ଅନାମ ପ୍ରତି । ଅଥଚ କୁମାର ଭାଇ ତାକୁ ରାସ୍ତାକୁ ନେଇ ଆସିଲା । J.P. କଥା କଣ ଆଉ କିଛିଦିନ ଲୋକେ ଶୁଣିବେ ନା ଆଉ କିଛି ନୂଆ ପନ୍ଥା । ଉତ୍କଳ ଦିବସ ଦେଖା । ଷ୍ଟେସନ ବୁଲା, ଗଞ୍ଜେଇ ଖିଆ, ତାସ ଖେଳ ସବୁ ଠିକ୍ ଠିକ୍ ଚାଲିଛି । ଗିରୀଶ ଉପନ୍ୟାସ ଲେଖୁଛି । ଚମତ୍କାର । ବୟସ ଅନେକ ହୋଇଗଲା । କିନ୍ତୁ ହେଲା କ'ଣ ? ଏଇ ସମୟ ଭିତରେ ଏଇ ପତ୍ରିକାରେ ଲେଖିବା ଛଡ଼ା ଆଉ କ'ଣ ବା କରିପାରିଲି ××× ବ୍ୟକ୍ତି ବିରକ୍ତି ମଣିଷକୁ ମାରି ଦେଇପାରେ । ମୁଁ ତ କାହାରି ସାମାନ୍ୟ ଅସୁବିଧା ହେଲା ଭଳି କଥା ବା କର୍ମ କରି ନାହିଁ ବା କରିବି ନାହିଁ ।

## ଏପ୍ରିଲ ୨, ୧୯୭୫ ବୁଧବାର

ହରି ଭାଇନା ଓ ଗିରୀଶ କଟକ ଗଲେ । ମୀନାପା ଫୋନ କରିଥିଲା । ଫୋନରେ କି ସୁନ୍ଦର ଶୁଣାଯାଉଥିଲା ସ୍ୱରଟା । ମଜାକଥା ସବୁ କହିଲା । ଏଣୁତେଣୁ ମୋ' ବା'ଘର । ଭଲ ଲାଗେ ସବୁ ଦୋଷ ସତ୍ତ୍ୱେ । ଅପେକ୍ଷାକୃତ ମନ ଖୋଲା । ପ୍ରାୟ ୧୫ ମିନିଟ କଥାବାର୍ତ୍ତା । ମୁଁ ସବୁ ସତ କହିଗଲି । ଅନ୍ୟମାନେ ସନ୍ଦେହ କଲେ । ମିହିରର ଏମିତି ପରିବର୍ତ୍ତନ କାହିଁକି ? ଗଲାକାଲି ସେମିତି ମନେହେଲା ଖୁବ୍ ବେଶି । ମୁଁ ବାଲେଶ୍ୱରରୁ ଫେରିଲା ପରେ ମିହିରର ପରିବର୍ତ୍ତନ ଲକ୍ଷ୍ୟ କରୁଛି ।

## ଏପ୍ରିଲ ୩, ୧୯୭୫ ଗୁରୁବାର

ଆଜି ସକାଳେ ପ୍ରସ୍ତୁତ ହୋଇ ଷ୍ଟେସନ ଗଲି । ନନ୍ଦନକାନନ ଯିବା କଥା । ଷ୍ଟେସନରେ ଅପେକ୍ଷା । କିନ୍ତୁ କାହିଁ ? ଟ୍ରେନ୍ ଚାଲିଗଲା । ସେଇ ଭୁଲ୍ ଟ୍ରେନ୍ । ଅସୀମା ଚଢ଼ିଯାଇଥିବା ଭୁଲ୍ ଟ୍ରେନ୍ । ଅବଶ୍ୟ ସେଦିନ ତାକୁ ଓହ୍ଲେଇ ଆଣିଥିଲି । କିନ୍ତୁ ପରେ ଧାରା, ସୁପ୍ରୀତି, ବୁଲ୍‌ବୁଲ୍, ମିହିର ଆସି ପହଞ୍ଚିଲେ । ରିକ୍‌ସାରେ ବସଷ୍ଟାଣ୍ଡ । ପୁରୀ ବସ୍‌ରେ ପୁରୀ । ଅନିର୍ଦ୍ଦିଷ୍ଟତା । ପୁଣି ଝିଅଙ୍କ ସାଙ୍ଗେ, ଭଲ ଲାଗେ । ମୁଁ ପ୍ରଥମେ ଧାରା ପାଖେ ବସିଥିଲି । କିନ୍ତୁ ପରେ ବୁଲ୍‌ବୁଲ୍ ଆସି ବସିଲା । ପରେ ଜାଣିଗଲେ । ଭଲ ହେଲା । ମୁଁ ବି ତ ଦୋଷୀ ଭଳି ମନେ କରୁଥିଲି । ଜାଣି କଣ ଜଣାଇଦେବା ଉଚିତ ନଥିଲା ? ଶେଷ ଆଡ଼କୁ ବସ୍‌ରେ ସୁପ୍ରୀତି ପାଖରେ ବସିଲି । ଧାରା ମନ୍ଦିର ଯିବନି

କହିଲା । କ'ଣ ପାଇଁ ? ଚାଲିଚାଲି ସମୁଦ୍ର କୂଳ । ନୌକା ଛାଇ, ପାଣି ଗ୍ଲାସ, ପଇଡ଼, ଅଙ୍ଗୁର, ଫଟୋ, ଢେଉ, ହାତ ଦେଖା, ହାତ ଧରା । ଧାରାର ଓଠ କି ଚମତ୍କାର । ହସଟା ସୁନ୍ଦର, ଦାନ୍ତଗୁଡ଼ା, ହାତ ପାପୁଲି ଏତେ ପରିଷ୍କାର । ଅଙ୍ଗୁର ଖାଇଲା ନାହିଁ । ମିନି ବସ୍‌ରେ ଫେରିଲା ବେଳେ ସୁପ୍ରୀତିକୁ ଅନେକ କଥା କହିଲି । ଧାରାର ହାତ ଛୁଇଁଲି । ଥରୁ ନାହିଁ । ସେ ଗଲା ପରେ ଭଲ ଲାଗିଲା ନାହିଁ । ଆଶ୍ଚର୍ଯ୍ୟ ମୋର ମନ । ସବୁ ଗ୍ରହଣ କରିବାକୁ ମନ ତାର ହାତ ବଢ଼ାଇଦିଏ ।

## ଏପ୍ରିଲ ୪, ୧୯୭୫ ଶୁକ୍ରବାର

ଆଜି ସୁଖେନ୍ଦୁବାବୁ, ଶୁଭେନ୍ଦୁବାବୁ, ଅଫିସରେ କାମ, ପ୍ରଭାତର ଫୋନ୍, ସୁରଭାଇର ଫୋନ୍, ବାଣୀବିହାର, ପ୍ରସନ୍ନ ପାଟଶାଣୀ, କୁମାର ଭାଇ, ସୁଧୀର, ଚିନ୍ତାମଣି, ବାଉରିବନ୍ଧୁ କର, ରଣବିକୁଳ, ସଞ୍ଜରେ ଡ୍ରାମା ମିଟିଂ, କେରମ୍ ଖେଳ, ରାତିରେ କିଶାନ, ରବି ମିଶ୍ର ଇତ୍ୟାଦି । ଆଜି ଧାରା କଥା ମନେପଡ଼ିବାରୁ ଖୁବ୍ ଭଲ ଲାଗୁଛି । ମନେ ହେଉଛି, ପୃଥିବୀର ସବୁ ବେଶ୍ ଠିକ୍ ଠିକ୍ ଚାଲିଛି । ତାର ଆଖିରେ ଏତେ ମମତା ଆଉ ଅସହାୟତା କାହିଁକି ? ଏଇ ସେଦିନର ଇନ୍ଦୁଦାସ, ବାସନ୍ତୀ ରଥର ସ୍ନେହ ସାନ୍ନିଧ ଭୁଲି ଆସିଲିଣି । ଯାକୁ ବି ଭୁଲିଯିବି । କିନ୍ତୁ ପୃଥିବୀରେ ଚମତ୍କାର ଏଇ ମୁହୂର୍ତ୍ତଟି । ଜୀବନ ସାରା ଜୀଅନ୍ତା ମାଛ ପାଣିରେ ପକାଇ ରଖିଲା ଭଳି ମୁଁ ଯାକୁ ବଞ୍ଚେଇ ରଖିବି । ସୁନ୍ଦର ପରିଷ୍କାର ଓଠ ଦାନ୍ତ । ଗୋଲ ହାତଗୋଡ଼ । ଅନୁଚ୍ଚ ଛାତି । ଏସବୁ କଣ sex ? Sex ହୁଏତ, କିନ୍ତୁ ତା' ଭିତରେ ଆଶ୍ଚର୍ଯ୍ୟ ଏକ ସୌନ୍ଦର୍ଯ୍ୟବୋଧ । ରାନୀର ନାକରେ ସେଇ ରିଂଟା କେତେ ଚମତ୍କାର ଦେଖାଯାଉଥିଲା ସେଦିନ ! କି ନିରୀହ ଚାହାଣି ଧାରାର ! ସୁଖରେ ରହନ୍ତୁ ଏମାନେ । ଧାରା, ବୁଲ୍‌ବୁଲ୍, ସୁପ୍ରୀତି । ଆଉ ଥରେ ଧାରାକୁ ଦେଖିବାକୁ ଚାହେଁ ।

## ଏପ୍ରିଲ ୭, ୧୯୭୫ ସୋମବାର

ଆଜି ସଞ୍ଜରେ କୁମାର ଭାଇ ଆସିଲା । ରାତିରେ ରହିଲା ନାହିଁ । କୁଞ୍ଜଭାଇର ବହୁତ ଖର୍ଚ୍ଚ ହେଉଛି । ଶୈଳପା ଘରକୁ ଗଲୁ । ଅଶୋକ ସିଂ ବି । ସେଠାରେ ହର ଥିଲା । ଜମିଲା । ରାସ୍ତାରେ କିଶୋର । ଝୁନ୍ ମୋତେ ବା' ହେବାକୁ ଚାହେଁ । କିନ୍ତୁ ମୁଁ ମଜବୁର୍ । ଅସମ୍ଭବ । ଆଜି ମୀନାପା ମୋତେ ଦୁଇଟଙ୍କା ଦେଇ କହିଲା, ଯାଅ,ସର୍ବତ୍ ପିଇନିଅ । ମୁଁ ନେଲି । କିନ୍ତୁ କୁମାର ଭାଇ ପାଇଁ ଖର୍ଚ୍ଚ ହୋଇଗଲା । ତାକୁ ପରେ ଦେଇଦେବି ।

## ଏପ୍ରିଲ ୮, ୧୯୭୫ ମଙ୍ଗଳବାର

ଆଜି ରାନୀକୁ ଗୋଟେ ଲମ୍ବା ଚିଠି ଲେଖିଛି । ସେ ଦୁଃଖ ପାଇବ ଯାହା । ଉପାୟ ନାହିଁ । ଜଗଦୀଶକୁ ବି ଲେଖିଲି ପାଣ୍ଡୁଲିପି ଧରି ଆସିବା ପାଇଁ । ବହିଟିଏ ଛପା

ହେବା ଦର୍କାର । ସୌଭାଗ୍ୟ ପଟ୍ଟନାୟକଙ୍କୁ ଲେଖିଥିଲି ଯେ ସେ ଉତ୍ତର ଦେଲାନି । କାହିଁକି ? ଶୈଳପା ଘରେ ଯାଇ ଫୋନ୍ କଲା ପ୍ରଭାତ । ରାତିରେ ଆସି କୁମାର ଭାଇ ପହଞ୍ଚିଲା । ମାଷ୍ଟର କାଣ୍ଟିନ୍ ଖାଇବାକୁ ଗଲୁ । ଅନେକ ରାତିରେ ଫେରିଲୁ ।

## ଏପ୍ରିଲ ୯, ୧୯୭୫ ବୁଧବାର

ପ୍ରତିଦିନ ସକାଳେ ଆଖି ଖୋଲିଲେ ମନେହୁଏ ମୋ'ର ଯେମିତି ଅନେକ କାମ । କିନ୍ତୁ କିଛି ସମୟ ପରେ ପୁଣି ସବୁ ଅର୍ଥହୀନ ମନେହୁଏ, ସବୁ ବୋର୍ ଲାଗିବାକୁ ଆରମ୍ଭ କରେ । ସକାଳେ ଉଠିଲି । କୁମାର ଭାଇ, କୁଞ୍ଜ ଭାଇ, ଟୁଟୁ, ଅଶ୍ୱିନୀବାବୁ ସମସ୍ତେ ଶୋଇଥିଲେ । କେବଳ ଅରୁଣ ବାବୁ ଗାଧୁଆ ଘରେ । ଏମିତି ସକାଳେ ଅନ୍ୟମାନେ ଉଠିବା ଆଗରୁ ଉଠିଲେ ମନେହୁଏ ମୋତେ ଯେମିତି କୁଆଡ଼େ ଯିବାକୁ ହେବ । ଡେରି କଲେ ବସ୍ ବା ଟ୍ରେନ୍ ଫେଲ ହୋଇଯିବି ।

କୁମାର ଭାଇ କାଲି ରାତିରେ ନଥିଲା । ମୁଁ ସବୁ ନିତ୍ୟକର୍ମ ସାରି ବାଥ୍ରୁମ୍ରେ ଦେହରେ ପାଣି ଢାଳିଲାବେଳେ ତା' କଥା ମନେପଡ଼ିଗଲା । କାଲି ତାକୁ ଲମ୍ବା ଚିଠି ଖଣ୍ଡେ ଲେଖିଛି । ଆଜି ସେ ପାଇଯିବ । ପାଇଲେ କାନ୍ଦିବନି ତ ! ଯଦି ଖୁବ୍ ବେଶୀ ଦୁଃଖପାଏ ! ତା' ଦୁଃଖ ତ ଆଜିକାଲିର ନୁହେଁ, ଦୀର୍ଘ ଆଠବର୍ଷର । ଅଶୋକ ସିଂ ଆସି ପହଞ୍ଚିଲା, କୁଞ୍ଜଭାଇ ଛଡ଼ା ସମେସ୍ତ । କ୍ୱାଲିଟି ପ୍ରେସ୍ ଗଲୁ ଅନାମର କଭର ଛପାଇବା ବ୍ୟାପାର ନେଇ । ମୁଁ ରାସ୍ତାରେ କୁମାରଭାଇଙ୍କୁ ମୋ' କୁମ୍ଭକର୍ଣ୍ଣ ଗପର ଆଇଡିଆଟା କହୁଥିଲି । ତାଙ୍କୁ ଭଲ ଲାଗିଲା । ଅନାମର ଭବିଷ୍ୟତ ବିଷୟରେ, ଓଡ଼ିଆ ସାହିତ୍ୟର ଗତି ପ୍ରଗତି ବିଷୟରେ କଥାବାର୍ତ୍ତା ହେଲା । ଅଶୋକ ସିଂ 'ସମାବେଶ'ର ପରିଚାଳନା ସଂପାଦକ ଦାୟିତ୍ୱ ନେଲା ଆଜିଠୁ । କୁମାରଭାଇଙ୍କୁ ନେଇ, ହୋଟେଲରେ ଖାଇ ଅଫିସ ଗଲି । ତାଙ୍କୁ ଟିକେ ବସାଇ ଦେଇ ଅଫିସ କାମ କଲି । କାମ ଆଦୌ କରୁନି ବୋଲି ବଡ଼ବାବୁ କହନ୍ତି । ମୋ'ର ବି ଦୋଷ କ'ଣ ! ସବୁବେଳେ ଲୋକ ଆଉ ଲେଖକଙ୍କ ଭିଡ଼ । ତା'ଛଡ଼ା ଏକ ପ୍ରକାର କାମ କରିବାକୁ ତ ମୁଡ୍ ଦରକାର । ଗୋଟାଏବେଳେ କୁମାରଭାଇ ପୁରୀ ଚାଲିଗଲେ; କୁଞ୍ଜଭାଇ ଆସି ତାଙ୍କୁ ଖୋଜିଲେ । ଆଜି କୁଞ୍ଜଭାଇ ଗୋଟେ ଗପ ଲେଖିବା ଆରମ୍ଭ କରିଛନ୍ତି । ମିହିର ଆସି ବସିଲା । 'ଏକ ବ୍ୟବଚ୍ଛେଦର ଧାରା ବିବରଣୀ' ଉପରେ ଏଣୁ ତେଣୁ ଗପିଲା ।

ଗପଟା ଅନେକଙ୍କୁ ଭଲ ଲାଗିଛି । କିନ୍ତୁ ମୋ' ମନ ମୁତାବକ ହେଉନି କାହିଁକି ? ୟା'ପରେ ସେଇ ଡାକ୍ତରାଣୀ ଚରିତ୍ର ନେଇ ଆଉ ଗୋଟିଏ ଗପ ଲେଖିବି । ଅଫିସ୍ ପରେ ମିହିର ସହ ଜୋତା ଦୋକାନକୁ ଗଲି । ଫୁଟପାଥ୍ ଚଟି । ରାସ୍ତାରେ ଧାରା ଘର । ପୁରୀ ଫଟୋ ସବୁ ମୋ' ତକିଆ ତଳେ । ତା'ର କ୍ଲୋଜଅପ୍‌ଟା ଚମତ୍କାର । ଧାରାକୁ 'ରାଧା' କହିଲେ କ୍ଷତି କ'ଣ । ଏଇସବୁ ନେଇ ବଞ୍ଚିଯିବା କଥା ଆଉ କେତେଟା ଦିନ ।

ଧାରା ସତରେ କିଛି କହିବାକୁ ଚାହୁଁଥିଲା । କହି ନପାରିଲା କାହିଁକି ! ତା'କୁ ବି କହିବାପାଇଁ ମୋ ଭିତରେ ଅନେକ କଥା ଜମିଗଲାଣି ଫିଲ୍ କରୁଛି, କହିବି ନାହିଁ କିନ୍ତୁ । ମିହିର ହୁଏତ ଆଜିକାଲି ମୋ' ଉପରେ ସେତେ ସନ୍ତୁଷ୍ଟ ନୁହେଁ । ତା'ଛଡ଼ା ଥରେ ଥରେ ମୁଁ ତା' ପାଖରେ ବେଶ୍ ଉଦାସୀନ, ଏବେ ଅର୍ଥହୀନ; ମାନେ କେମିତି କ'ଣ ଗୋଟେ ହୋଇଯାଉଛି । ଏସବୁ ତ ମୋର ପୁରୁଣା ବେମାରି ।

ଜୋତା କିଣି ଆସି ଭଲି ଖେଳିଲି । ଖେଳ ସାରି ଘରକୁ ପଶିଲାବେଳେ ଦେଖିଲି କୁଞ୍ଜଭାଇ, ଅରୁଣ ବାବୁ ବାହାରିଛନ୍ତି । ପଚାରିଦେଲି- କୁଆଡ଼େ ? ମୋ' ସ୍ୱରରେ ଖୁବ୍ ଆତ୍ମୀୟତା ଥିଲା, ମୋ'ର ମନେଅଛି ।

ଅନେକ ଦିନର ସେଇ ପୁରୁଣା ମୁହୂର୍ତ୍ତ, ସେଇ ସବୁ ପୁରୁଣା ଅନୁଭବ- ଭୁଲି ହୁଏନି । ଅନ୍ଧକାର ଆଉ ନିରୋଳା ଜାଗା ଏଇ ସମୟରେ ନହେଲେ ନଚଳେ । ବଡ଼ ପାଟିରେ କାନ୍ଦି ପାରନ୍ତି କି ! କୋକାକୋଲା ବୋତଲ ଖୋଲି ଝାଙ୍କିଦେଲେ ଯେଉଁ ଅବସ୍ଥା ମୋ'ର ସେଇ ଅବସ୍ଥା । ସେ ମୋ' ଚିଠି ପାଇ ଦୁଃଖ ପାଇଲା କି ! ଅସୀମା ଭଲ ଅଛି ତ ! ଚାରିଆଡ଼େ ସମୁଦ୍ର । ଭୟ ଲାଗୁନି ତାକୁ । ଏଇ ୨୦ରେ ଦୁଇ ମାସ ପୂରିବ । ଦୁଃଖ ପାଇଲେ ଏବେ ବି ତା' କଥା ମନେପଡ଼େ, ଆଶ୍ଚର୍ଯ୍ୟ ।

ଆଜି ସକାଳେ ମେଘୁଆ ପାଗ ଦେଖି କୁମାରଭାଇ କହୁଥିଲେ ବାଙ୍ଗାଲୋରର ସକାଳ ଭଳି ଲାଗୁଛି ଆଜି । ବାଙ୍ଗାଲୋର କ'ଣ ସବୁବେଳେ ମେଘୁଆ ଆଉ ସବୁବେଳେ ଉଦାସ କେଜାଣି ।

ମୁଁ ବୋଧହୁଏ ଏକ ବିରକ୍ତିର ବସ୍ତୁ । ଅସୀମା ଅନେକ ଦିନ ତଳେ ମୋ' ଭିତରୁ ଏଇ ଧାରଣାଟା ବାହାର କରି ଦେଇଥିଲା, ପୁଣି ସେଇକଥା ମୋ' ଭିତରେ ଖେଞ୍ଚି ପୂରାଇ ଦେଇଯାଇଛି । ଏକା ରାସ୍ତାରେ ବୁଲିଲି। ଗ୍ରନ୍ଥାଳୟରେ ବିଭୂତିବାବୁ । କ୍ଷୁଦ୍ର ଉପନ୍ୟାସ ଲେଖିବାପାଇଁ ତାଗିଦ୍ । ସେଠାରେ 'ସାରଥି'ର ସମ୍ପାଦକ । ଲେଖା ଦେବାକୁ ହେବ । ଏତେ ଚାହିଦା ମେଣ୍ଟାଇବା ମୋ' ପକ୍ଷରେ ଏବେ ଅସମ୍ଭବ । ଦେଖାଯାଉ, କ୍ଷୁଦ୍ର ଉପନ୍ୟାସଟା ଶୀଘ୍ର ଆରମ୍ଭ କରିବି । ବିଭୂତିବାବୁଙ୍କୁ ବି 'ବ୍ୟବଚ୍ଛେଦ...' ଭଲ ଲାଗିଲା ।

ହୋଟେଲରେ ଖାଇ ଘରକୁ ଫେରିଲି । କୁଞ୍ଜଭାଇ ଫେରିନାହାନ୍ତି । ଆଜି 'କୁମ୍ଭକର୍ଣ୍ଣ'ଟା ଲେଖିଦେଲେ ଭଲ ହୁଅନ୍ତା । କୁମ୍ଭକର୍ଣ୍ଣ ଶୋଇପଡୁଛି । ଆଲୁଅ ଲିଭାଇ ଦେଲି। ନିଦଟା କୁହୁଡ଼ି ଭଳି ମାଡ଼ି ଆସିଲାବେଳେ ଏଇସବୁ କଥା ମୁଣ୍ଡରେ ଥିଲା- ମୋତେ ଅନେକେ, ଅନେକ ସମୟରେ ଭଲ ପାଆନ୍ତି ନାହିଁ କାହିଁକି- ଯଦିବା ସେମାନଙ୍କୁ ମୁଁ ଭୀଷଣ ଭଲପାଏ ? କୁମାରଭାଇର ଏ ଧାରା କ'ଣ ଆଗେଇବାରେ ସାହାଯ୍ୟ କରିବ ? ମୁଁ ବିଷ୍ଣୁବ

ପରେ ତା' ପାଖକୁ ଯିବି କି ନାହିଁ ? ନଗଲେ ସେ ବେଶୀ ଦୁଃଖ ପାଇବକି ! ଏମିତି ଚିଠି ଲେଖିବା ମୋ'ର ଉଚିତ୍ ହୋଇନି ।

ମୁଁ ବୋଧହୁଏ ନିର୍ଦ୍ଦିଷ୍ଟଭାବେ କୌଣସି ନାରୀକୁ ଚାହେଁନି କିମ୍ବା ଆଉ କିଛି ଗୋଟିଏ ଆଶ୍ଚର୍ଯ୍ୟ ବସ୍ତୁ ଚାହେଁ । ସେଇଟା କ'ଣ ? ପରେ ଭାବି ଦେଖିବି ।

ସମସ୍ତେ ଫେରି ଆସିଛନ୍ତି । ଭୀଷଣ ପାଟିତୁଣ୍ଡ, ତାସ ଖେଳ । ବିରକ୍ତିକର ।

ଅନେକ ଦିନପରେ ଟିକେ ହାଲୁକା ହେଲି । ଏଇ ମୁହୂର୍ତ୍ତରେ ଯଦି ଆଉଥରେ କାନ୍ଦିପାରନ୍ତି ! ଛାଡ଼ ସବୁ ବାଜେ କଥା । ମୋତେ ଯା' ଭିତରେ ଅନେକ କାମ କରିବାକୁ ହେବ । ଜାଣେ ମୋ' ସମୟ ପାଖେଇ ଆସିଲାଣି ।

## ଏପ୍ରିଲ ୧୦, ୧୯୭୫ ଗୁରୁବାର

××× ଆଜି 'ନବରଙ୍ଗ' ପାଇଁ ଡାଇରି ଲେଖିଲି । 'ସାରଥି'ର ସଂପାଦକ ଗପ ନେବାକୁ ଆସିଲେ । ତା' ପରେ ପ୍ରଭାତ । ଅଫିସ୍‌ରୁ ପ୍ରଭାତ ମିହିର ସାଙ୍ଗରେ ଆଠନମ୍ବର । ଫେରିଲାପରେ ସୌଭାଗ୍ୟ ମିଶ୍ର ଓ ଅମରେଶ ପଟ୍ଟନାୟକ । ଅମରେଶକୁ ନେଇ କୁଂଜଭାଇ, ପୁଣି ସୌଭାଗ୍ୟ ମିଶ୍ର, ଅମରେଶ, ମିହିର, ଗଞ୍ଜେଇ, ବେଶ୍ ଆଲୋଚନା । ବିଭୂତି ପଟ୍ଟନାୟକ କହିଛନ୍ତି, ମୁଁ କୁଆଡ଼େ କହିଛି ଯେ, 'ଘରପୋଡ଼ିରୁ ରକ୍ଷା ପାଇବାର କେତୋଟି ଉପାୟ' ଗଞ୍ଜେଇ ଟାଣି ଲେଖା ହୋଇଛି । ମିଛ ବି ହୋଇପାରେ । ସେମାନେ କୁମାର ମହାନ୍ତି ଓ ଅନାମ ପାଇଁ ଆତଙ୍କିତ । ସେମାନେ ଗଲେ । ରାତିରେ 'ଅସତ୍ୟ ସହର' । ବିଜୟ ମିଶ୍ର ସଙ୍ଗେ କଥାବାର୍ତ୍ତା । ତାସ ଖେଳ । ଆଜି ରାନୀଠୁ ଚିଠି ପାଇଲି । ସୁନ୍ଦର ଚିଠି । ସେସବୁ କଥା କିଛି ମନେ କରିନି ତାହାହେଲେ । ଆଜି ସୌଭାଗ୍ୟ ମିଶ୍ର କହିଲେ, ମୋର ଆଉ କୁଂଜଭାଇର ଗପ ଯୌଥ ଭାବେ ଛାପିବା ପାଇଁ ଯଥାସାଧ ଚେଷ୍ଟା କରିବେ । ଦେଖାଯାଉ ?

## ଏପ୍ରିଲ ୧୨, ୧୯୭୫ ଶନିବାର

ଆଜି ୨ଟା ୩୦ରେ ଗୌର ପଟ୍ଟନାୟକ ଆସି ପହଞ୍ଚିଲେ ବିଷୁବକୁ ଯିବା ପାଇଁ । ତେଣୁ କୁଂଜଭାଇ ଗଲେ । ଅନ୍ୟ ସମସ୍ତେ ବସ୍‌ରେ ଗଲୁ । ×××

## ଏପ୍ରିଲ ୧୩, ୧୯୭୫ ରବିବାର

ଖୁବ୍ ସକାଳେ ମୁଁ ଉଠି ପଳେଇଲି କଟକ। କୁଂଜଭାଇ ଉଠି ନ ଥିଲେ। ଉଠିଲେ ବିରାଗ ଭାବିବେ ପରା! ମୋତେ ତ ସେଠି ଭଲ ଲାଗୁଛି । ଅନାମ କବିତା ପଢ଼ିଲି। ××× ଅନେକ ଝିଅ ସହ ପରିଚୟ ହେଲା। ଗିରିଅପା ସହ ବୁଲିଲି। ତାକୁ ଗୋବିନ୍ଦ ଦାସ, ମଧୁ ମହାନ୍ତି, ଦିଲୀପ ଦାସ, କୈଳାସ ଲେଙ୍କା, ସରୋଜ ମହାନ୍ତି, କୁମାର ମହାନ୍ତି, ହରି ମିଶ୍ର ଇତ୍ୟାଦି ଅନେକଙ୍କ ସହ ପରିଚୟ କରାଇ ଦେଲି। ×××

## ଏପ୍ରିଲ ୧୪, ୧୯୭୫ ସୋମବାର

କାଲି ରାତିରେ P.G. Hostel ରେ ଥିଲି । ସାଥିରେ ଅଶୋକ ସିଂ । ଖାଇଲା ବେଳେ ଅନେକେ ଆସି ନମସ୍କାର କଲେ । ବେଶ୍ ଭଲ ଲାଗିଲା । ସକାଳେ ବୋଲଟନ ଇତ୍ୟାଦିଙ୍କ ଭାଷଣ । ସୌଭାଗ୍ୟ ମିଶ୍ର ସହ ବେଶ୍ ଜମିଲା । ସଭାଶେଷରେ ଗତାନୁଗତିକ ହୋଟେଲ । ଜଗଦୀଶ ମହାନ୍ତି ସବୁବେଳେ ଧନ୍ଦାରେ ବ୍ୟସ୍ତ । କୃଷ୍ଣ ମିଶ୍ର ଉପନ୍ୟାସ ଛାପିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ଦେଖା କଲି । ସିନେମା ଗିରୀଶ ସହ । ତା'ପରେ ଗିରୀଶ ଓ ମୁଁ ଭୁବନେଶ୍ୱର ।

## ଏପ୍ରିଲ ୧୫, ୧୯୭୫ ମଙ୍ଗଳବାର

ଆଜି ସବୁଦିନ ଭଳି ଗଲି ଅଫିସ୍ । ଅଫିସରେ କାମ । ଆସି ତାସ ଖେଳିଲି । ଗିରୀଶଙ୍କୁ ସଂଙ୍ଗରେ ବସ୍‌ଷ୍ଟାଣ୍ଡ ଛାଡ଼ିବାକୁ ଯାଇ ଗ୍ରନ୍ଥାଳୟ ଗଲି । ବିଭୂତିବାବୁ ଅନେକ ଗପିଲେ । ଆଜିକାଲି ସେ ପୁଣି ଆତ୍ମୀୟ ଭଳି ମୋ ସହ ଗପୁଛନ୍ତି । କଥା ପ୍ରସଙ୍ଗରେ ମୋର ବହି ଗୋଟିଏ ଛାପିବାର ବନ୍ଦୋବସ୍ତ କରିଦେବେ ବୋଲି କହିଛନ୍ତି । ଦେଖାଯାଉ ! ଲୋକଟାର ଭକ୍ତ ମୁଁ କେତେ ପିଲାଦିନୁ। ପ୍ରକୃତରେ ପ୍ରଥମ ଜୀବନରେ ମୁଁ ଭଲ ପାଇଛି ତାକୁ । 'ଗଳ୍ପ' ପାଇଁ ଗପ ଲେଖିବାକୁ ହେବ। କେଉଁଝରରୁ ଗପ ମାଗିଛନ୍ତି। 'ଆସନ୍ତା କାଲି' ବି ଗପ ମାଗିଛି। ଏଥର ମୋତେ ଆଉ ଟିକେ ସ୍ପିଡ୍ ନେବାକୁ ହେବ। ××× 



# କନ୍‌ହେଇଲାଲଙ୍କୁ ଚିଠି

୧୯୭୨-୭୩ କନ୍‌ହେଇଲାଲ ଦାସଙ୍କ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ସନ୍ଧିକ୍ଷଣ । ଗୋଟିଏ ପଟେ ପରିବାରର ଘୋର ଆର୍ଥିକ ସଂକଟ ଏବଂ ଅନ୍ୟପଟେ ସାହିତ୍ୟରେ ଅନନ୍ତ ସଂଭାବନା । ତା' ସାଙ୍ଗକୁ ପ୍ରଥମ-ପ୍ରେମ ଓ ପ୍ରଥମ-ସାହିତ୍ୟର ସହର ବାଲେଶ୍ୱରଠୁଁ ବିଚ୍ଛିନ୍ନ ହେବାର ଦୁଃଖ । କନ୍‌ହେଇଲାଲଙ୍କର ମାନସିକ ସ୍ଥିତି ଓ ଯାତନା ସେଦିନ ଏପରି ଥିଲା ଯେ 'ସାହିତ୍ୟ ଛାଡ଼ିଦେବି' ବୋଲି ଗୋଟିଏ ଚିଠିରେ ସେ ଲେଖିଥିଲେ ବଂଧୁ, ସ୍ୱର୍ଗତ ପଞ୍ଚାନନ ଦାସଙ୍କୁ ।

କିନ୍ତୁ ସମୟକ୍ରମେ ସେ ପୁଣି ଫେରି ଆସିଲେ ନିଜର ପ୍ରିୟା ଓ ପ୍ରିୟବର୍ଗଙ୍କର ସହର ବାଲେଶ୍ୱରକୁ । ସବୁ ପାରିବାରିକ ଦୁଃସ୍ଥିତି ଓ ଦାୟିତ୍ୱ ସତ୍ତ୍ୱେ ପୁଣି ଆରମ୍ଭ ହେଲା ସାରସ୍ୱତ ଜୀବନର ଅଭିଯାତ୍ରା । ସେଇ ସଂକଟ ଓ ସଂଭାବନାର ରୂପଚିତ୍ର ଅଛି କନ୍‌ହେଇଲାଲଙ୍କୁ ଲେଖା ଏହି ଅନୁପମ ପତ୍ରଗୁଚ୍ଛରେ ।

ବାଲେଶ୍ୱର ନିବାସୀ ଆଡ଼ଭୋକେଟ୍ ରାମନାରାୟଣ ଦେ' ଏବଂ ତାଙ୍କର ପତ୍ନୀ ସ୍ମୃତି ଦାସଙ୍କ ସୌଜନ୍ୟରୁ ଆମକୁ ପ୍ରାପ୍ତ ହୋଇଛି ଏହି ଦୁର୍ଲଭ ପତ୍ରଗୁଚ୍ଛ । ଏଥିରେ ଏକାନ୍ତ ସହଯୋଗ ରହିଛି ପ୍ରକାଶକ ବନ୍ଧୁ କାଳୀପଦ ପଣ୍ଡା ଓ ବରିଷ୍ଠ ସାହିତ୍ୟିକ ବ୍ରଜନାଥ ରଥଙ୍କର ।

ସଂପୃକ୍ତ ସମସ୍ତଙ୍କୁ ସକୃତଜ୍ଞ ସ୍ମରଣ କରିବା ସହିତ ପାଠକ ପାଠିକାଙ୍କ ପାଇଁ ଆମର ଏହି ସ୍ୱତନ୍ତ୍ର ଉପହାର ।

ପୁଷ୍ପଗିରି, ନୂଆପାଟଣା, କଟକ
ତା ୫.୬.୧୯୭୨

ପ୍ରିୟ ଶ୍ରୀ କନ୍ହେଇଲାଲ ଦାସ,

ପ୍ରଣାମ। ଆପଣଙ୍କ ଚିଠି ଅନେକ ଦିନୁ ପାଇଥିଲେ ବି ଏଯାବତ୍ ଉତ୍ତରଟିଏ ଦେଇପାରିନି। ସମୟର ପ୍ରାଚୁର୍ଯ୍ୟ ଭିତରେ ଏମିତି ଠିକ୍ ନିୟମିତ ଭାବେ ମୁଁ ଯେ କାହିଁକି ଉତ୍ତର ଇଚ୍ଛା କରି ଦେଇପାରେନି, ତା' ମୁଁ ନିଜେ ବି ଜାଣେନି। ଅବଶ୍ୟ ଏକଥା ମୁଁ ଜାଣେ ଯେ ମୁଁ ଏକ ପ୍ରଥମ ଶ୍ରେଣୀର careless ଲୋକ। ଯାହାହେଉ, ଆପଣଙ୍କର କ'ଣ ଏ ଦୀର୍ଘ ନିରବତା କେବଳ ମୋ'ଠାରୁ କୌଣସି ଉତ୍ତର ପାଇନଥିଲେ ବୋଲି ? ତା' ଯଦି ହୋଇଥାଏ, ମୁଁ ଦୁଃଖିତ।

ଆଉ ଆପଣଙ୍କର ସମାଚାର କଣ ? ମାନେ ଲେଖାଲେଖି କିପରି ଚାଲିଛି ? 'ସମାବେଶ'ରୁ ଗୋଟିଏ ଗପ ପଢ଼ି ବେଶ୍ ଖୁସି ହୋଇଥିଲି।

ଯେଉଁ ଗଳ୍ପ ସଂକଳନ ପାଇଁ ଲେଖା ପଠାଇଥିଲେ, ସେଇଟି ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ହୋଇନି– କେବଳ ଆଜି ପର୍ଯ୍ୟନ୍ତ ୧୫ଟି ଭଲ ଗପ ଓଡ଼ିଆ ଯୁବ ଲେଖକ ଲେଖିକାମାନଙ୍କ ଠାରୁ ମିଳିପାରୁ ନାହିଁ ବୋଲି। ବଡ଼ ଦୁଃଖ ଲାଗୁଛି, ଆମ ଲେଖକଙ୍କର ମାନଦଣ୍ଡ କେତେ ଉଚ୍ଚରେ- ଏଇକଥା ଭାବି।

ଆପଣଙ୍କର ସମସ୍ତ ସମ୍ବାଦ ସହ ପତ୍ର ଦେବେ ବୋଲି ଅନୁରୋଧ।

ଆପଣଙ୍କର ସୌଜନ୍ୟମୁଗ୍ଧ
ପଙ୍କଜ

ବି.ଦ୍ରଃ ପଙ୍କଜ- ସୁପ୍ରସିଦ୍ଧ କଥାଶିଳ୍ପୀ ପଙ୍କଜ ପାଳ

ଦହମୁଣ୍ଡା, ଆରୁହାବୃତ୍ତି,
୨୦ ଅଗଷ୍ଟ, ୧୯୭୨

ସ୍ନେହର ଭାନୁ,

ମୋର ସ୍ନେହ ନେବ।

ମୁଁ ଗତୀଶ ପାଖରୁ ଶୁଣିଲି, ତୁମେ ବାଲେଶ୍ୱର ଆସିଥିଲ, ଏଇଠୁ ଚାଲିଗଲ। ଥରେ ଦେଖା କରିବାକୁ ଆସିଲନି। ବାଲେଶ୍ୱର କାହିଁକି ଆସିଥିଲ, ପତ୍ର ପାଇ ମଧ ପତ୍ର ଦେଇନ, ତେବେ ଏଠାକୁ ଆସିବାର କାରଣ କଣ– ମୁଁ ଜାଣି ପାରିଲିନି।

ନରେନ୍ଦ୍ର ମିଶ୍ର କହୁଛି, ପୂଜାରେ ଯଦି ଟଙ୍କା ନପାଏ, ତେବେ ନିଷ୍ଚୟ କେସ୍ କରିଦେବ । ହରେନ୍ଦ୍ର କମର୍ଦ୍ଦା ଯାଇଥିଲା । ହରେନ୍ଦ୍ରକୁ ଡାକି ନେଇ ତୁମେ ଯେଉଁସବୁ କଥା କହିଥିଲ, ସେ ସବୁ କଥା କହିଲା । ବାଡ଼ିଟା ବିକ୍ରି କରୁଥିଲ, ପୁଣି ମଝିରେ ବନ୍ଦ କରିଦେବା ଯୋଗୁଁ ଆଜି ମର ମର ଅବସ୍ଥା । ଇଆଡ଼େ ଧାର୍ ବହୁତ ହୋଇଗଲାଣି । ତୁମେ କେତେ ଟଙ୍କା ପଠାଇବ ଯେ ସେଥିରେ ଦେଣା ପରିଶୋଧ ହେବ ଆଉ ଖିଆ ହେବ !

ଆଉ ଏଠାରେ ଧାର୍ ମିଳୁନି । ଚାଉଳ କିଲୋ ଟ୨/- । କେହି ଦେବନି, ମୁଁ କୁଆଡୁ ଆଣିବି ? ଯଦି ବଞ୍ଚିରହିଲି, ତେବେ ତୁମେ ଆସିଲେ ସବୁ କଥା କହିବି ।

ମୋର ମଥା ଠିକ୍ ନାହିଁ । ଚାରିଆଡ଼େ ଦୁର୍ଭିକ୍ଷ, ବନ୍ୟା କି ମେଘ ହେଉନି । ଖାଇବା ପାଇଁ ଘରେ ଖଣ୍ଡିଏ ବାସନ ନାହିଁ । ପତ୍ର କାଟି ଭାତ ଖିଆ ହେଉଛି । ଯାହା ହେଉ, ଏସବୁ ତୁମ ପାଖକୁ ଲେଖି କିଛି ଲାଭ ନାହିଁ । ତୁମର ବି କିଛି କରିବାର ନାହିଁ ।

ଖୋକନର ପତ୍ର ପାଇଛ କି ନାହିଁ ? ସେ ଚାକିରି କଥା ଲେଖିଥିଲା । ତାର ଘରେ ଭୀଷଣ ଦୁଃଖରେ କାଳ କାଟୁଛନ୍ତି । ତେଣୁ ଯଦି ପାର, ଗୋଟିଏ କାମ ତା’ ପାଇଁ ଠିକ୍ କରିଦେବ ।

ରବିକୁ ଜ୍ୱର ହୋଇଛି । ବର୍ତ୍ତମାନ ମଙ୍ଗୁଳିର ସାଂଘାତିକ ଅସୁଖ । ଯେତେ ଔଷଧପତ୍ର ଖୁଆଇଲି କିଛି ଲାଭ ହେଲାନି । ତୁମେ ପତ୍ର ପାଇ ଉତ୍ତର ଦେବ । ପତ୍ର ଆସିବା ଡେରି ହେଲେ, ମନ ଭାରି ଖରାପ ହୁଏ ।

ତୁମେ ଯେଉଁ କାମରେ ଅଛ, ସେଇଟା ଭାରି ଖରାପ କାମ । ମୁଁ ଗତୀଶ ପାଖରୁ ଶୁଣିଲି, ଭୀଷଣ ଦୁଃଖରେ ଅଛ । ଏସବୁ ଶୁଣି ଆଉ ଜୀବନ ରଖିବାକୁ ଇଚ୍ଛା ହେଉନି । ତୁମେ ଯଦି ଜାଣିଥିଲ ଏପରି ଖରାପ କାମ, ତେବେ ଗଲ କାହିଁକି ? ସବୁବେଳେ ଗୋଳାବାରୁଦ ଭିତରେ ରହିଛ । ତୁମେ ସେ କାମରୁ ଅନ୍ୟକାମ ଚେଷ୍ଟା କର । ସାବଧାନରେ ଥିବ । ମୋର ମନ ତୁମ ପାଖରେ ସର୍ବଦା ।

କିପରି ଅଛ, ପତ୍ର ପାଇ ପତ୍ର ଦେବ । ରହିଲି ।

ଇତି ତୁମର

ମାଁ

ବି.ଦ୍ର: ‘ଭାନୁ’ କନ୍‌ହେଇଲାଲ୍‌ଙ୍କର ଡାକ ନାମ । ନିରକ୍ଷରା ମା’ ଶ୍ରୀମତୀ ଅନିଳା ବାଲା ଦାସ ତାଙ୍କୁ ଏଇ ସମ୍ବୋଧନରେ ଶ୍ରୁତଲିଖନ ଦ୍ୱାରା ଚିଠି ଲେଖୁଥିଲେ ।

ବାଲେଶ୍ୱର
ତା ୨୨.୮.୧୯୭୨

ବନ୍ଧୁ କନ୍‌ହେଇବାବୁ !

ତମ କଥା ରଖି ମୁଁ ଆଗ ଚିଠି ଦେଲି । ଆଜି କୁଞ୍ଜବାବୁ ଆସିଥିଲେ ଓ ତୁମ ଚିଠିଟି ମୋ' ପାଖରେ ଦେଖି ବଡ଼ ଦୁଃଖ ପ୍ରକାଶ କଲେ ଯେ ତୁମେ ଯେମିତି ପାଗଳ ପରି ପ୍ରଳାପ କରିଛ ଚିଠିଟିରେ । ଲେଖିଛ "ସାହିତ୍ୟ ଛାଡ଼ି ଦେବି ।" ସେ କହିଲେ, କିଛିଦିନ ଅନ୍ତତଃ ତୁମେ ସେଠାରେ ରହିଲେ ସେମାନେ ଚେଷ୍ଟା କରି ଯାଡକୁ ନେଇଆସିବେ । ବେକାର ହେବା ଅପେକ୍ଷା ଚାକିରିଟା ଆଗ ନା ସାହିତ୍ୟ ଆଗ ? ଏଣୁ ଯେଉଁଠିକି ଗଲେ ଚାକିରି କରିବା ସଙ୍ଗେ ଲେଖାଲେଖି ପାଇଁ ତ ବେଶ୍ କିଛି ଯନ୍ତ୍ରଣାର ଖୋରାକ ମିଳିବ !

ଏଣୁ ମୋର ଅନୁରୋଧ, ଖୁବ୍ ସ୍ୱଳ୍ପ ସମୟ ଭିତରେ ଯେଉଁ ପ୍ରତିଭା ତମ ଭିତରେ ଜନ୍ମ ନେଇଥିଲା, ତାକୁ ତମେ ଏମିତି ଅସମୟରେ, ଅଯତ୍ନରେ ନଷ୍ଟ କରନି । ତମର ବଡ଼ଭାଇ ବା ବୟସ୍କ ଭଳି ମୋର ଏକଥା ନିଶ୍ଚୟ ରଖିବ । ଚାକିରିରେ ବଦଳି ତ ରହିଛି । ଏଣୁ ଈଶ୍ୱରଙ୍କୁ ଡାକ, ସେ ନିଶ୍ଚୟ ତୁମକୁ ପୁଣି ଆମ ସହିତ ମିଶିଲା ଭଳି ସୁନ୍ଦର ଜାଗାରେ ପହଞ୍ଚାଇ ଦେବେ । ମନ ଖରାପ କରି କିଛି ଲାଭ ନାହିଁ ।

ଖୁବ୍ ସାବଧାନରେ ଚଳାଚଳି କରୁଥିବ । ପୂଜାକୁ ବେଶିଦିନ ଛୁଟିନେଇ ଆସିବାକୁ ଚେଷ୍ଟା କରିବ । ସତରେ, ତମେ ନରହିଲେ ଆଦୌ କିଛି ଭଲ ଲାଗେନି । ଯେଉଁ ଅଳ୍ପ ମୁହୂର୍ତ୍ତ ପାଇଁ ତମେ ମୋ' ନିକଟକୁ ଆସି ବିରକ୍ତ କର, ପର ମୁହୂର୍ତ୍ତରେ ମୋତେ ସେଭଳି ବିରକ୍ତ ଆଉ କେହି କରନ୍ତିନି । ଏଣୁ ମୁଁ କାହିଁକି ବେଶି ବେଶି ତମ କଥା ଚିନ୍ତା କରେ ।

ସତରେ ତମେ ଖୁବ୍ ଭଲ, ଖୁବ୍ ସୁନ୍ଦର । ପୁଅ ନହୋଇ ତମେ ଯଦି ଝିଅ ହୋଇଥା'ନ୍ତ ନା !

ହଉ ! ମୋର ଭୁଲ୍ ବା କେବେ କେମିତି କଥାର ବ୍ୟତିକ୍ରମ ପାଇଁ କିଛି ମନେ କରିବନି । ଯେଉଁ କଥା କହିଛ, ତମ କଥା ରଖି ମୁଁ ଏହି ଯନ୍ତ୍ରଣା ଭିତରେ ଏବଂ ବ୍ୟସ୍ତତା ଓ ଦାରିଦ୍ର୍ୟ ଭିତରେ ସାହିତ୍ୟକୁ ବଞ୍ଚାଇବା ପାଇଁ ଚେଷ୍ଟା କରୁଛି ।

ଆଉ ତମକୁ ମୋର ଅନୁରୋଧ, ମୋ' ପ୍ରେମିକା ସହ ଯନ୍ତ୍ରଣାର ଜୀବନକୁ ନେଇ ମୋ' ନାମଥିବା ଗପଟିଏ ଲେଖ । କୌଣସି ଖ୍ୟାତନାମା ପତ୍ରିକା 'ଝଂକାର' ବା 'ଆସନ୍ତାକାଲି' କି 'ନବରବି'ରେ ତାହାକୁ ନିଶ୍ଚୟ ପ୍ରକାଶ କରିବ ।

ହଁ, ତ୍ରିଲୋଚନ ମହାକୁଳଙ୍କ ପୂରା ଠିକଣାଟା ଦୟାକରି ନିଶ୍ଚୟ ଜଣାଇବ । ସେ ଓଡ଼ିଆ ଯୁବ ଲେଖକ ସମ୍ମିଳନୀ ପୁସ୍ତକ ପ୍ରକାଶନ ଦାୟିତ୍ୱରେ ଅଛନ୍ତି । ତେଣୁ ତାଙ୍କ ପାଖକୁ ମୋ' କଥା ଲେଖି ଚିଠି ଦେବ ।

ଇତି, ତୁମର ବନ୍ଧୁ

**ପଞ୍ଚାନନ**

**ବି.ଦ୍ରః ପଞ୍ଚାନନ- ଗୋପାଳ ଗାଁ ନିବାସୀ ସାହିତ୍ୟିକ ଓ ସାରସ୍ୱତ ସଂଗଠକ ସ୍ୱର୍ଗତ ପଞ୍ଚାନନ ଦାସ ।**

**କଟକ**

ତା୨୯.୮.୭୨

**ପ୍ରିୟ କହ୍ନାଇଲାଲ ବାବୁ,**

ନମସ୍କାର ନେବେ । ଆପଣଙ୍କର ଚିଠିଟି ପାଇ ଲେଖୁଛି । ଆପଣଙ୍କ ଠାରୁ ଏ ମାସ ପ୍ରଥମ ସପ୍ତାହ ମଧ୍ୟରେ ଏକ ସମାଜବାଦୀ ଚିନ୍ତାଧାରାର ଗଳ୍ପ ପାଇବାର ଆଶା, ବିଶ୍ୱାସ ଓ ଭରସା ରଖି ନିଶ୍ଚିନ୍ତ ରହୁଛି ।

ନିରାଶ କରିବେ ନାହିଁ । ପତ୍ରିକା ଛାପା କାମ ଆରମ୍ଭ ହେଲାଣି ।

ଇତି, ଆପଣଙ୍କର

**ଶେଷଦେବ**

**ବି.ଦ୍ରః ଶେଷଦେବ- 'ଅଗ୍ରଗାମୀ' ପତ୍ରିକାର ସଂପାଦକ ଶ୍ରୀ ଶେଷଦେବ ମଲ୍ଲିକ ।**

ବାଲେଶ୍ୱର

ତା୨୯.୮.୭୨

**ସାର୍,**

ଆପଣ ଗଲାଦିନୁ ନିରବ କାହିଁକି ? ଏଠାରେ ଥିଲାବେଳେ ତ ଗପ ପେଡ଼ି ଫିଟିଲେ ସହଜରେ ବନ୍ଦ ହୁଏନି ! ଆଉ ସେଠାରେ କିପରି ନିରବ ରହିଛନ୍ତି ? କ'ଣ ରାଗିଛନ୍ତି ? ସମୟ ହେଉନି ? ମିଛ !

ସମୟ ନିଶ୍ଚୟ ଅଛି । ଇଚ୍ଛା କଲେ ସମୟ କରିପାରିବେ, କିନ୍ତୁ ଇଚ୍ଛା ନାହିଁ ବୋଧହୁଏ । ଏଥର ଯାତ୍ରା ପରେ ସବୁ ମାୟା ମମତା କଟିଯାଇଛି, ନୁହେଁ ? ହଉ, ଆପଣଙ୍କ ଇଚ୍ଛା ! ମୋର Women's Collegeରେ Admission ହୋଇଗଲା । ଅସୀମାର ମଧ୍ୟ । ସ୍ୱାତୀର

କିନ୍ତୁ ହୋଇନି । ତା'ର ନମ୍ବର କମ୍ ବୋଲି ହେବ କି ନାହିଁ ସନ୍ଦେହ । ରାନୀର ଖବର ବିଶେଷ କିଛି ନାହିଁ ।

କ'ଣ ଲେଖିବି କିଛି ଆସୁନି । ଆପଣ Please ନିରବତା ଭାଙ୍ଗନ୍ତୁ, ମୋଟେ ଭଲ ଲାଗୁନି । ସବୁଦିନେ Post Peonକୁ ଅପେକ୍ଷା କରିବାକୁ ଇଚ୍ଛା ହେଉଛି ।

ଚିଠି ଦେବେ । ଆପଣଙ୍କ ଚିଠି ପାଇଲେ ମୁଁ ଆଗ ପରି ଚିଠି ଦେବି । ନିଶ୍ଚୟ ଦେବେ । ଯଦି ରାଗିଥାନ୍ତି, ଦୁଃଖ ପାଇଥାନ୍ତି, ଅପମାନ ପାଇଥାନ୍ତି ବା ସେପରି କିଛି କାରଣ ଯୋଗୁ ଚିଠି ଦେଇନଥାନ୍ତି, ତେବେ ଖୋଲାଖୋଲି ଭାବରେ ଲେଖିବେ । ମୋର ଏହି ଅନୁରୋଧ ।

ଇତି

ଅନୁ

**ବି.ଦ୍ର: ଅନୁ- ଅନୁରାଗିଣୀ ଛାତ୍ରୀ ତଥା ମୁଗ୍ଧପାଠିକା । କନ୍‌ହେଇଲାଲ୍‌ଙ୍କ କିଛି ଗଳ୍ପର ଚରିତ୍ର ବୋଲି ମଧ୍ୟ ଅନୁମିତ ।**

କଟକ

ତା୧୫.୯.୭୨

**ଭାଇ କହ୍ନେଇୟାଲାଲ,**

ବର୍ତ୍ତମାନ ତୁମ ଚିଠି ଆଉ ଗଳ୍ପ ପାଇଲି । ଗପଟି ପଢ଼ିଲି, କ'ଣ ଲାଗିଲା ହଠାତ୍ ମୁଁ ଜାଣିପାରିଲିନି । କିନ୍ତୁ ଏହା ତୁମର ଆତ୍ମିକ ଅସହାୟତା, ପ୍ରଶ୍ନ ଓ ପ୍ରତିବାଦର ପ୍ରକାଶ । ଯେମିତି ତୁମେ ସୀମା ଘରକୁ ଯିବା ବନ୍ଦ କରିଦେଇଥିଲ, କିନ୍ତୁ ତାର ପ୍ରତିବାଦ ଅଲକ୍ଷ୍ୟରେ ତୁମକୁ ଆଜି ଅନୁତାପ କରାଉଛି ।

ଦେବୀ କଥା ଲେଖୁନି । କାରଣ, ଆଜି ବି ତୁମେ ଦେବୀ ପରି ଝିଅ, ବାଦାମୀ ରଙ୍ଗର କାର୍, ତୁମର ସବୁଜ, ପୁଣି ତାକୁ ଅତିକ୍ରମ କରିବାକୁ, ତୁମର କାର୍ ସେ ଝିଅର କାର୍ ଗତିକୁ ଟପିଯିବ । ଦିନ ଆସିବ ଅଦୃଶ୍ୟ ବି ହେବ । ସବୁ ଜାଣିଛ, ଥରେ ଗୋଟିଏ ଝିଅର କାର୍ ପଛରେ ଗତି କଲାବେଳେ ତୁମ ଚିନ୍ତା, ଚେତନା ତାର କ୍ରମେ ନିକଟବର୍ତ୍ତୀ ହୋଇ ପୁଣି ତା' କାର୍‌କୁ ଟପିବାକୁ, ଦୂରେଇଯିବାକୁ ଚାହିଁବ ।

ଝିଅ ହେଉ ବା ପୁଅ ହେଉ; ଜଣେ ଟପି ଚାଲିଯିବ ଆଗକୁ ଆଗକୁ– ବହୁତ ଭିତରକୁ... କ୍ଷୀଣ... ଅସ୍ପଷ୍ଟ... ଅଦୃଶ୍ୟ... ମୃତ୍ୟୁ । ସେ ମୃତ୍ୟୁ ଲଭିବ ତୁମ ମସ୍ତିଷ୍କରୁ... ତୁମର ବି ମୃତ୍ୟୁ ଘଟିବ ତା'ର ଚେତନାରୁ ।

ତା'ପରେ ଲକ୍ଷ୍ୟ କଲେ ଦେଖିବ, ତୁମର ପ୍ରେମ କ୍ରମେ ଢ଼ିଲାହୋଇ ଅନ୍ୟ ବଂଧନରେ ପଡ଼ିବ । ତଥାପି ଡିମ୍ ଡିମ୍ ପିଟିବାକୁ ହେବ, ସେ ମୋର ପ୍ରେମିକା– ଏ ହେଲା ଦେବୀ କଥା ।

ତା'ପରେ ମୋ' କଥା । ମୁଁ ଆଲୁଅ ଢାଳି ଲେଖିବା ପାଇଁ ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ଚାହିଁ ଘଣ୍ଟା ଘଣ୍ଟା ବିତାଏ– କିନ୍ତୁ କିଛି କରିପାରେନି । Only pain paid and to measure the weight of the pain. ମୁଁ ସେ ଭିତରେ ଦେଖେ, ମୋତେ ସମସ୍ତେ ତାଳି ମାରି, ହୋମ କରି, ପ୍ରେମ କରି ବିବାହ କରୁଛନ୍ତି । ମୁଁ ଚାହିଁଚି । ସମସ୍ତେ ଦୂରେଇ ଯାଉଛନ୍ତି । ମୁଁ ସେମାନଙ୍କୁ ଭିଡ଼ିଧରି ପାରୁନି । ସେମାନଙ୍କର ପ୍ରେମ-ହୋଟେଲରେ Vacancy ନାହିଁ । House Full. ତୁମେ Black କରି ମଧ୍ୟ ପଶି ପାରିବନି । ସେମାନେ ହୁଏତ ତୁମପରି ଯଂତ୍ରଣାକୁ ଭଲ ପାଉଛନ୍ତି, ପ୍ରେମ କରିବା ସୁରୁ କରୁଛନ୍ତି । ତେଣୁ ଖାଲି ମୋ ସିଲହଟରେ ବି କୌଣସି ମୂର୍ତ୍ତି ଆଙ୍କି ହେଉନି । ଲେଖି ପାରୁନି ।

ପୂଜାକୁ ଯଦି ଆସ, ତେବେ କେତେ ତାରିଖରେ ଆସିବ ଲେଖିବ ।

ଚିଠିଦେବ ।

ସସ୍ନେହ

**ଗିରୀଶ**

**ବି.ଦ୍ର: ଗିରୀଶ- ଘନିଷ୍ଠ ବନ୍ଧୁ, ଅବସରପ୍ରାପ୍ତ ଅଧ୍ୟାପକ ଶ୍ରୀ ଗିରୀଶ ମିଶ୍ର ।**

ନୀଳଗିରି, ବାଲେଶ୍ୱର

ତା୨୮.୯.୭୨

**ଶ୍ରଦ୍ଧେୟ କହ୍ନେଇଲାଲବାବୁ,**

ଆପଣଙ୍କ ଚିଠି ଢ଼େଙ୍କାନାଳରେ ଥିଲାବେଳେ ପାଇଥିଲି । ଇତିମଧ୍ୟରେ ମୁଁ ଆସି ଏଠି ଏସ୍.ଡି.ଓ. ହୋଇ ଜଏନ୍ କଲିଣି । କାଲି ବାଲେଶ୍ୱର ଯାଇ ବ୍ରଜବାବୁ, ଚଣ୍ଡୀବାବୁ, ଶୁଭେନ୍ଦୁବାବୁ ଇତ୍ୟାଦିଙ୍କ ସହିତ ବିଶ୍ୱଶ୍ରୀ ପ୍ରେସ୍‌ରେ ସାକ୍ଷାତ କଲି । ଗପ ଜମିଲା । ଆପଣଙ୍କ ମାଂସଳ ଚିଠି ବ୍ରଜବାବୁ ପଢ଼ି ଶୁଣାଇଲେ ।

ଆପଣଙ୍କ 'ଲୋକାଲ୍ ପାସେଞ୍ଜର'ରେ ମୋ' ପାଇଁ ଅନ୍ତତଃ ତୃତୀୟ ଶ୍ରେଣୀ ସ୍ଥାନ ସଂରକ୍ଷିତ କରି ରଖିବେ । କିନ୍ତୁ ମୁଁ କେଉଁ ନିକଟତମ ଷ୍ଟେସନରେ ଚଢ଼ିବି ଓ କେତେ ଦୂର ଯାଏ ଟିକଟ କାଟିବି ଜଣାଇବେ ।

ଆପଣ କେବେ ବାଲେଶ୍ୱର ଆସୁଛନ୍ତି ? ଆସିଲେ ସିଧା ନୀଳଗିରି ଆସି ମୋର ଅତିଥି ହୋଇ ରହିବେ ।

ଚାକିରି ତ ପାଇଲେ, ଏଣିକି ବାହାଘର ହେଉ ! ଯାଜପୁରରେ ଗୋଟିଏ ବେଶ୍ ସୁନ୍ଦରୀ ପାତ୍ରୀ ଅଛନ୍ତି । ଢ଼େଙ୍କାନାଳରେ ମଧ୍ୟ ଏବର୍ଷ ବି.ଏ. ପରୀକ୍ଷା ଦେଇଥିବା ଜଣେ

ପାତ୍ରୀ ଅଛନ୍ତି । ସାହିତ୍ୟ ଓ କଳା ଦୃଷ୍ଟିରୁ ପ୍ରତ୍ୟେକେ ଆପଣଙ୍କୁ ସାଜିବେ । ଆପଣ ଅନୁମତି ଦେଲେ ସେମାନଙ୍କ ଅଭିଭାବକ ମାନଙ୍କୁ ଚିଠି ଲେଖିବି ।

ଶୀଘ୍ର ଚିଠି ଦେବେ

ସ୍ନେହର **ପ୍ରଶାନ୍ତ**

**ବି.ଦ୍ର: ପ୍ରଶାନ୍ତ- ଲେଖକ ତଥା ଅବସରପ୍ରାପ୍ତ ପ୍ରଶାସକ**
**ଶ୍ରୀ ପ୍ରଶାନ୍ତ ପଟ୍ଟନାୟକ (ପୀତମ୍) ।**

ବାଲେଶ୍ୱର

ତା୨୯.୯.୭୨

**ଦେଖନ୍ତୁ ସାର୍,**

ଆପଣ ନିଶ୍ଚୟ ଚିଠିର ବିଳମ୍ବ ଦେଖି ରାଗିଯାଇଛନ୍ତି । କିନ୍ତୁ ମୁଁ କଣ କରିବି କୁହନ୍ତୁ ! ଆପଣଙ୍କ ଚିଠି ମୁଁ କେତେ ଦିନରୁ ଲେଖି ସାରିଥିଲେ ବି ନନା ଆଦୌ ଲେଖୁନି । ଆଉ ମୁଁ ଯଦି ଏକା ଦେଇଦିଏ, ତେବେ ସେ କଣ କହିବ ! ଝିଅ ଯେତେବେଳେ ହୋଇଛି, ସବୁଆଡୁ ଜଗିରଖି ଚଳିବାକୁ ହେବ ।

ଆପଣ please ରାଗିବେନି । ଆପଣଙ୍କର ଯାହା ଚିଠି ଦେବାର ଦିଅନ୍ତୁ । ନନା ଚାଲିଗଲେ ଦେଖିବେ, ମୁଁ କେତେ regular ଦେବି । ଆପଣ ନିଶ୍ଚୟ ବେଶି ଛୁଟି ନେଇ ଆସିବେ । ଆପଣ ଯେତେବେଳେ ଆସୁଛନ୍ତି, ସବୁକଥା ତ କହିବି ! ଆଉ ଚିଠିରେ କଣଟା ଲେଖିବି ?

ଆପଣ please ରାନୀ ପାଖୁ ଚିଠି ଦିଅନ୍ତୁ । ମୋର ଆଜିକାଲି ତା' ଘରକୁ ଯିବା ପାଇଁ ଆଦୌ ସମୟ ହେଉନି । ସେଥିପାଇଁ ସେ ନିଶ୍ଚେ ରାଗୁଥିବ । ସ୍ୱାତୀର କଲେଜରେ admission ହୋଇଯାଇଛି । ବର୍ତ୍ତମାନ ମୋ' ପଛରେ ଅଭଦ୍ର ଜଟିଳ୍‌ଟା ଲାଗିଛି । ରାତିରେ ସୁଦ୍ଧା ୧୦-୧୨ ଥର ଚକ୍କର କାଟୁଛି । ତାକୁ ମୁଁ କଣ ଯେ କରିବି, ବୁଝିପାରୁନି ।

ଆପଣଙ୍କ ରାଗ ଶାନ୍ତ ହୋଇଛି ଶୁଣି ମୁଁ ଭାରି ଖୁସି ହେଲି । ସତରେ, ମଝିରେ ମଝିରେ ଟିକେ ଗଣ୍ଡଗୋଳ ନଲାଗିଲେ friendshipଟା ଗାଢ଼ ହୁଏନି । 'ଅମର୍ ପ୍ରେମ୍'ଟା ମିସ୍ କଲି । କଲେଜ ଓଡ଼ିଆ ମତେ ଭୀଷଣ କଷ୍ଟ ଲାଗୁଛି । କିନ୍ତୁ ପଢ଼ିବା ପାଇଁ ଆନନ୍ଦ ଲାଗୁଛି । ନିଜେ ପ୍ରଶ୍ନୋତ୍ତର ଆଦୌ କରିପାରୁନି ।

ହଁ, ଆଉ ଗୋଟିଏ କଥା । କଟ ଆପଣଙ୍କ ପାଖକୁ ଭୀଷଣ ମିଛ କଥା ଲେଖିଛି । ସତ କହୁଛି, ମୁଁ ତା' ଆଗରେ କେବେହେଲେ ଆପଣଙ୍କ ପ୍ରଶସ୍ତି ଗାଇନି ।

ଜାଗା ନାହିଁ । ବହୁତ କଥା ରହିଗଲା । ନନା ଯଦି ଚିଠି ଦିଏ, ତେବେ ମୋ ଚିଠିଟା ପାଇବେ ।

'ଅନୁ'

ବି.ଦ୍ରଃ ଅନୁ- ପୂର୍ବସୂଚିତ ଛାତ୍ରୀ ଓ ଅନୁଗତା ।

କଲିକତା
ତା୫.୧୦.୭୨

My Dearest ସାର୍,

ନମସ୍କାର । ହାଃ, ହାଃ, ହାଃ– ମୁଁ ବର୍ତ୍ତମାନ କଲିକତାରେ । ମାନେ ବହୁବଜାର, ମାନେ ଶଶିଭୂଷଣ ଷ୍ଟ୍ରୀଟ୍, ମାନେ ୭୧ନମ୍ବର ଘରେ । ଆଶ୍ଚର୍ଯ୍ୟ ହେଉଛନ୍ତି କି ? ଆରେ, ନା । ଏଠାରେ ମୋର ଦୁଇ ଦୁଇ ମାମୁ, ମାଇଁ ଅଛନ୍ତି (ଆଗରୁ କହୁଥିଲି) । ୩ ତାରିଖରେ ପହଞ୍ଚିଲି । ଅବଶ୍ୟ ଏକା । ଷ୍ଟେସନରୁ communication ମଧ୍ୟ ଜାଣି ନଥିଲି । ମାତ୍ର ପହଞ୍ଚିଗଲି । କଟର ପାନ୍ଥାଗଡ଼ risk ପରେ ମୁଁ ହଠାତ୍ କାଲ୍‌କାଟା risk ନେବି ବୋଲି ସ୍ଥିର କଲି (ଅବଶ୍ୟ ୧ ତାରିଖ ରାତିରେ) ଓ ୨ ତାରିଖରେ ପୁରୀ-ହାଓଡ଼ା ଏକ୍ସପ୍ରେସ୍‌ରେ ବାହାରି ଆସିଛି । କଟ କହିଥିଲା ୧୨ ନମ୍ବର ଟ୍ରାମ୍‌ରେ ଆସିବା ପାଇଁ । ମାତ୍ର ବୁଝିଲି ଯେ ବହୁବଜାରରୁ 35A ବସ୍ direct ଯାଉଛି । ଟ୍ରାମ୍ ନୁହେଁ । ତେଣୁ ବସ୍‌ରେ ସିଧା ଏଠାରେ ।

ସାର୍, ଆପଣ ଏଠାକୁ ଶୀଘ୍ର ଆସିବା ପାଇଁ ଚେଷ୍ଟା କରନ୍ତୁ । ମୁଁ ୧୨ ତାରିଖ ପର୍ଯ୍ୟନ୍ତ ଅଛି । ଆଗରୁ ଆସିବା ପାଇଁ ଚେଷ୍ଟା କରିବେ । ନଚେତ୍ କେବେ ଆସିବେ ଚିଠି ଦେବେ ।

ସାର୍, ଆପଣ ଆସିଲେ ବୋଧେ କଲିକତା ସହର ସାଙ୍ଗେ ସାଙ୍ଗେ ମୁଁ ମଧ୍ୟ ହସି ଉଠିବି । କାରଣ, ଏବେ ମୁଁ ବୁଲୁଚି ପାଟି ବନ୍ଦ କରି । କେବଳ ଦେଖି ଯାଉଚି । କିଛି କରି ପାରୁନି । ମାମୁଙ୍କର ସମୟ ନାହିଁ ମୋତେ ବୁଲାଇବା ପାଇଁ । ଏଣୁ ମୋତେ ଏକା ବୁଲିବାକୁ ହେଉଛି । ସାର୍, ଚେଷ୍ଟା କରନ୍ତୁ ଶୀଘ୍ର ଆସିବା ପାଇଁ । ଆସିଲେ ବୁଲିବା ଓ ଭୀଷଣ ବୁଲିବା । ଯା'ଇଛାତା' (ଆପଣଙ୍କ ଭାଷାରେ- ଯାଚ୍ଛାତା) କରିବା । ପଇସା ଖର୍ଚ୍ଚକୁ ଭୟ କରିବେ ନାହିଁ । ଭଗବାନଙ୍କ ଦୟାରୁ ମୋ ମାମୁଙ୍କ ପାଖରେ ସେତକ ଅଭାବ ନାହିଁ । ତା'ଛଡ଼ା ବୁଲିବାରେ ତ ଏଠି ବେଶି ପଇସା ଖର୍ଚ୍ଚ ନାହିଁ ।

ଶୀଘ୍ର ଚେଷ୍ଟା କରନ୍ତୁ ଓ ସବୁକଥା ଜଣାଇ ଶୀଘ୍ର ଚିଠି ଦିଅନ୍ତୁ । ରହିଲି ।

ଇତି
ବସନ୍ତ

ବି.ଦ୍ରଃ ବସନ୍ତ- ଜନୈକ ମୁଗ୍ଧ ଓ ଅନୁରକ୍ତ ଛାତ୍ର ।
ସାଙ୍ଗିଆ ବା ଅନ୍ୟ ପରିଚୟ ମିଳିନାହିଁ ।

ସ୍ନାତକୋତ୍ତର ଇଂରାଜୀ ବିଭାଗ,
ସମ୍ବଲପୁର ବିଶ୍ୱବିଦ୍ୟାଳୟ ପରିସର, ବୁର୍ଲା
ତା ୧୫.୧୧.୧୯୭୨

**ପ୍ରିୟ କନ୍ହେଇବାବୁ,**

ଚିଠି ଗତକାଲି ପାଇଲି ।

ଆଗରୁ ପରୋକ୍ଷ ପରିଚୟ ଥିଲା ଆପଣଙ୍କର ଗଳ୍ପ ପଢ଼ି ଏବଂ ବଂଧୁ ବୀର ପ୍ରଧାନଙ୍କ ଟେବୁଲ୍‌ରୁ ଆପଣଙ୍କ ଚିଠି ପଢ଼ି । ଏବେ ଆପଣଙ୍କ ଚିଠି ଆମ ପରିଚୟର ଆଉ ଏକ ନୂତନ ପରିସର । ଲେଖକ (ଯଦି ହୋଇଥାଏ !) ହିସାବରେ ମୁଁ କେବେ କିଛି କାମନା କରିନଥିଲି କିମ୍ବା ପାଇଚି ବୋଲି ମଧ ମନେ ହୁଏ ନାଇଁ । କିନ୍ତୁ ଗୋଟାଏ ଜିନିଷ ଅବଶ୍ୟ ପାଇଚି– ଯା'କୁ ମୁଁ ସବୁବେଳେ ଏକ ଅଯାଚିତ ଆଶୀର୍ବାଦ ବୋଲି ଧରିନିଏ । ତା' ହଉଚି ଆପଣ ଓ ଆପଣଙ୍କ ପରି ଅନ୍ୟ କେତେଜଣ ଆଗ୍ରହୀ ଲୋକଙ୍କ ଅକୁଣ୍ଠ ବନ୍ଧୁତ୍ୱ । କାରଣ ସେମିତି ଅତିମାତ୍ରାରେ ଖାମଖେୟାଲୀ, ସଂବେଦନଶୀଳ ବା ସତ୍ୟନିଷ୍ଠ ନହେଲେ କେହି ଲେଖାରେ ସନ୍ତୁଷ୍ଟ ହୋଇ ଲେଖକ ସହିତ ବନ୍ଧୁତା କରିବା ଓଡ଼ିଶାରେ ଅନ୍ତତଃ ସମ୍ଭବ ନୁହେଁ ବୋଲି ମୋର ବିଶ୍ୱାସ । ସେଥିପାଇଁ ତ କେବଳ ଆପଣମାନେ ଏତେ ଆପଣାର, ଏତେ ଅନ୍ତରଙ୍ଗ ମନେ ହୁଅନ୍ତି ! ଯେଉଁମାନେ ଗପ ପଢ଼ି ଗାଳ୍ପିକ ଆଡ଼କୁ ହାତ ବଢ଼େଇ ଦିଅନ୍ତି, ସେମାନଙ୍କଠୁ ଅଧିକ ଅନ୍ତରଙ୍ଗ ଆତ୍ମୀୟ ବୋଧହୁଏ ଜଣେ ଲେଖକର ଆଉ କେହି ନଥାଏ । ଆପଣ ନିଜେ ତ ଜଣେ ପ୍ରତିଭାବାନ୍ ଗାଳ୍ପିକ, ମୁଁ ବା କଣ କହିବି ?

ଆପଣ ବର୍ଦ୍ଧମାନରେ ଥିଲେ ବୋଲି ଆଗରୁ ଜାଣିଥିଲି । କିନ୍ତୁ ଏହା ଭିତରେ ବାଲେଶ୍ୱର ବଦଳି ହୋଇ ଆସିଥିବା ସମ୍ବାଦ ଶୁଣି ମୁଁ ଆତ୍ୟନ୍ତ ଆନନ୍ଦିତ । ଆପଣଙ୍କ ପ୍ରସ୍ତାବିତ ଗଳ୍ପ ସଂକଳନ ଯେ ସାଂପ୍ରତିକ ଯୁଗକୁ ପ୍ରତିନିଧିତ୍ୱ କରିବା ଭଳି ପ୍ରୟୋଗବାଦୀ, ରୁଚିଶୀଳ ହେବ, ଏ ବିଶ୍ୱାସ ମୋର ଅଛି । ଗାଳ୍ପିକଙ୍କ ସହିତ ଇଣ୍ଟରଭ୍ୟୁର ବିବରଣ ଏଥିରେ ଗ୍ରଥିତ କରିବା ଯୋଜନା ମଧ ଚମତ୍କାର । କିନ୍ତୁ ତାହାର ପ୍ରକାଶନ ପ୍ରଭୃତି ବ୍ୟାପାର ବୋଧହୁଏ କଷ୍ଟସାଧ ହେବ । ସେ ବିଷୟରେ ମୋର ଅବଶ୍ୟ କୌଣସି ଧାରଣା ନାହିଁ ।

ଆଉ ଅନୁବାଦ କଥା ! ଇଂରାଜୀରେ ଅନୁବାଦ କରିବା କଥା ମୁଁ ଆଗରୁ ଭାବିଛି । କିନ୍ତୁ ଏପର୍ଯ୍ୟନ୍ତ ମୋ ଦ୍ୱାରା ତାହା ସମ୍ଭବ ହୋଇନାହିଁ । କେବଳ ମୋର ନୁହେଁ, ଓଡ଼ିଶାର

ପ୍ରାୟ ୫/୬ଜଣ ଗାଳ୍ପିକ (ବୟସ୍କ ଓ ଯୁବ)ଙ୍କର କେତେକ ଗଳ୍ପ ଇଂରାଜୀରେ ଅନୁବାଦ କରିବାର ଯୋଜନା ମୁଁ ଆଗରୁ କରିଥିଲି । କିନ୍ତୁ ଏଠି ବରଂ ମୁଁ ସ୍ୱୀକାର କରିଯାଉଚି ଯେ ଏଯାବତ୍ ଇଂରାଜୀରେ ଅନୁବାଦ କରିପାରିବା ଭଳି ଦକ୍ଷତା ମୋର ଆସିନାହିଁ ବୋଲି ମୋର ଧାରଣା । ଏପର୍ଯ୍ୟନ୍ତ ଇଂରାଜୀ ଭାଷାକୁ ମୁଁ ନିଜ ଅକ୍ତିଆରକୁ ସନ୍ତୋଷଜନକ ଭାବରେ ଆଣିପାରିଥିବା ପରି ମନେ ହେଉନାହିଁ । ଗତ କେତେବର୍ଷ ଭିତରେ ଓଡ଼ିଶାରୁ ଇଂରାଜୀରେ ଅନୂଦିତ ଯେଉଁ କେତେକ ଗଳ୍ପ ବା କବିତା ଦେଖୁଛି, ତାକୁ ଦେଖି ଗର୍ବ କରିବା ଅପେକ୍ଷା ଲଜ୍ଜିତ ହେବାର କାରଣ ବରଂ ବେଶି । କାରଣ ଅଳ୍ପ କେତେକ ପତ୍ରିକାର ଅନୁବାଦ (ଯଥା- 'Bhubaneswar Review', 'Grey Book' ଏବଂ କେତେକାଂଶରେ 'The Chariot')କୁ ବାଦ୍ ଦେଲେ ବାକି ସବୁ ଅନୁବାଦ କେବଳ ମୂଳ ଲେଖାର ପେରୋଡ଼ି ଭିନ୍ନ ଅନ୍ୟ କିଛି ନୁହେଁ । ଯେବେ ମୁଁ ନିଜକୁ ଏ ବ୍ୟାପାରରେ ସମର୍ଥ ଓ ଉପଯୁକ୍ତ ମନେ କରିବି, ସେତେବେଳେ ଓଡ଼ିଆ ଲେଖା ଅନୁବାଦ କରି, ଇଂରାଜୀ ପାଠକମାନଙ୍କୁ ନିଶ୍ଚୟ ଯୋଗାଇବି ! ଏବେ ଅନୁବାଦ ପରୀକ୍ଷାମୂଳକ ଭାବେ ଆରମ୍ଭ କରୁଛି ! ଦେଖାଯାଉ, କଣ ହେଉଛି !

ଆପଣଙ୍କର ଅନ୍ୟ ସବୁ ଖବର ଜଣାଇବେ । ପୂଜା 'ଶାଶ୍ୱତୀ'ରେ ଏଇ ୨/୩ ଦିନ ତଳେ ଆପଣଙ୍କ ଗପ ପଢୁଥିଲି । ଆପଣଙ୍କ ଲେଖା ସହିତ ମୋର ପ୍ରଥମ ପରିଚୟ ବୋଧହୁଏ 'ତାଙ୍କ ଠିକଣା'ରୁ । ପରେ ପରେ 'ଜୀବନ ଯନ୍ତଣା ଓ ...', 'ଖେଳାଳୀ', 'କୁକୁର, ମୁଁ ଓ ଚନ୍ଦ୍ର', 'ଅବ୍ୟକ୍ତ' ପ୍ରଭୃତି । ଆପଣଙ୍କର ଗଳ୍ପଗୁଡ଼ିକର ଯେ ଏକ ନିର୍ଦ୍ଦିଷ୍ଟ, ସନ୍ତୁଷ୍ଟ ପାଠକଗୋଷ୍ଠୀ ଅଛନ୍ତି, ଏ ସଂପର୍କରେ ମୁଁ ନିଶ୍ଚିତ ।

ଆପଣ ତ ଓ.ଯୁ.ଲେ.ସ.ର ଯୁଗ୍ମ ସମ୍ପାଦକ ଅଛନ୍ତି, ଆଗାମୀ ଅଧିବେଶନରେ ତେଣୁ ନିଶ୍ଚୟ ଯୋଗଦେବେ ବୋଲି ଭାବୁଛି । ମୋର ଘର ଜୟପୁର ସହରରେ । ତେଣୁ ସମ୍ମେଳନ ଅବସରରେ ଜୟପୁରରେ ସାକ୍ଷାତ ହେବ ବୋଲି ଭାବୁଛି ।

ଆପଣଙ୍କ ବଂଧୁମାନଙ୍କୁ ମୋର ଆନ୍ତରିକତା ଜଣାଇବେ । ଚିଠି ଦେବେ । ସମ୍ବଲପୁର ଠିକଣାରେ ଚିଠି ନଲେଖି ବୁର୍ଲା ଠିକଣାରେ ଲେଖିବେ ।

ଇତି

ସତ୍ୟ

ବି.ଦ୍ର: ସତ୍ୟ- 'ବହୁବଚନ'ର ସୁପ୍ରସିଦ୍ଧ ଗାଳ୍ପିକ ସତ୍ୟ ମିଶ୍ର ।

୪୭, ଆଇନ କଲେଜ ଛାତ୍ରାବାସ, କଟକ-୩,
ତା୨୪.୧୧.୭୨

**କହ୍ନେଇ, ବଂଧୁବରେଷୁ !**

ତମ ଚିଠି ପାଇଥିଲି । ମୋ' ତରଫରୁ ଗୁରୁବାବୁ ପତ୍ର ଦେଇଥିଲେ । ତୁମେ ଦୂରରୁ ପୁଣି ନିକଟକୁ ଚାଲି ଆସିଲ ବୋଲି ଶୁଣିଲି । କଟକକୁ କେବେ ଆସୁଛ ? ହଉ, ଟଙ୍କା ସଂଗ୍ରହ କରି ଡେରିରେ ପଠାଅ । କିମ୍ୱା ଆମର ଆଗାମୀ କାର୍ଯ୍ୟକାରୀ ସମିତି ବୈଠକକୁ ଆସିଲାବେଳେ ସଭ୍ୟ ଚାନ୍ଦା ଧରି ଆସିଥିବ ।

ବୈଠକ ଡିସେମ୍ବର ପ୍ରଥମ ସପ୍ତାହରେ ବୋଧେ ଭୁବନେଶ୍ୱରରେ ହେବାର ଅଛି । ଆଜି ଭୁବନେଶ୍ୱର ଯାଉଛି । ଫେରିଲେ ବୈଠକର ସ୍ଥାନ କି ସମୟ ଆଦି ଜଣାଇଦେବି । ଆସିବାକୁ ପ୍ରସ୍ତୁତ ହୁଅ ।

ମୁଁ ୩୦ ତାରିଖରେ ଜୟପୁର ଯାଉଛି । ୩/୪ ଡିସେମ୍ବରରେ ଫେରିବି । ପୁଣି ୧୬ କିମ୍ୱା ୧୮ରେ ଯିବି । ତୁମର ସୁବିଧା ଦେଖି ମୋ' ସହିତ ଯିବା ପାଇଁ ପ୍ରସ୍ତୁତ ହୁଅ । ସମ୍ମେଳନ ପୂର୍ବରୁ ଆଗତୁରା ଯାଇ ରହିବାକୁ ହେବ । ତେଣୁ ୧୮ ଡିସେମ୍ବର ବେଳକୁ ଗଲେ ଭଲ । ତୁମ ସହ ମୋର ଖୁବ୍ ଶୀଘ୍ର ସାକ୍ଷାତ ହେବା ଉଚିତ ।

'ମୟୂରଚନ୍ଦ୍ରିକା' ପାଇଁ ସୁବୋଧବାବୁ ପାଖକୁ ଗପଟିଏ ପଠାଅ ! ଅନ୍ୟ ଲେଖାସବୁ ସଂଗ୍ରହ କରି ପଠାଅ । ବ୍ରଜବାବୁଙ୍କୁ ନମସ୍କାର । ବ୍ରଜବାବୁ ମୋତେ ପ୍ରବନ୍ଧ ଦେବା ପାଇଁ କହି ଗତଥର ଠକିଲେ । ଏଥର ବି କବିତାଟିଏ ପଠେଇ ଦେଇଛନ୍ତି । ପୁଣି ଆଲୋଚନାଟିଏ ପଠାଇବା ପାଇଁ ଅନୁରୋଧ ।

ଇତି, ତୁମର ଅନ୍ତରଙ୍ଗ
ପ୍ରସନ୍ନ

**ବି.ଦ୍ର: ପ୍ରସନ୍ନ- ସାହିତ୍ୟିକ ରାଜନେତା ଶ୍ରୀ ପ୍ରସନ୍ନ ପାଟଶାଣୀ । ଓଡ଼ିଆ ଯୁବ ଲେଖକ ସମ୍ମେଳନର ସେଦିନର ସଭାପତି ।**

ବଲାଙ୍ଗିର,
ତା୨୬.୧.୧୯୭୩

**କହ୍ନେଇ,**

ତମ ଚିଠି ପାଇ ଚିଠି ଦେଇଥିଲି, ପାଇଲ କି ନା ? ଇତିମଧ୍ୟରେ 'ଝଂକାର' ଓ 'ଦିଗଂତ'ରୁ ତମ ଗପ ପଢ଼ିଲି । ବହୁତ ଖୁସି ଲାଗିଲା । ବିଶେଷରେ 'ଦିଗଂତ'ର ଗପର ଶେଷ । 'ଝଂକାର' ଗପଟା ଭଲ, କିନ୍ତୁ ବୋଧହୁଏ 'ଦିଗଂତ'ର 'ସେ ଶିଡ଼ିରେ ଚଢ଼ିଲେ' ବେଶି ଭଲ ।

ଚିଠି ଦେଲନାହିଁ କାହିଁକି ? ସେଠା ଖବର କଣ ? କେମିତି ଲେଖାଲେଖି ଚାଲିଛି ? ଏବେ କେଉଁଠି ଅଛ ? ତମ ଯୁବଲେଖକ ସମ୍ମେଳନକୁ ଟ୬/- କି କେତେ ଚାନ୍ଦା ଦେଲି । ଖଣ୍ଡେ ପତ୍ରିକା ବି ଦେଲେ ନାହିଁ । ସେଥିପାଇଁ ମୁଁ ସେସବୁ ସମ୍ମିଳନୀକୁ ଦୂରୁ ଜୁହାର କରେ ।

ଯୁବ ଲେଖକ ସମ୍ମେଳନ ଯେଉଁ ସଭ୍ୟଚାନ୍ଦା ନିଅନ୍ତି ତାହା କଣ ପାଇଁ ? କଣ କଲେ ଯୁ.ଲେ.ସ. ବିଶେଷାଙ୍କ ପାଇହୁଏ ? ଯେଉଁମାନେ ଏହାକୁ ଲେଖା ଦିଅନ୍ତି (ମାଗି ନିଆଯାଏ) ତାଙ୍କୁ ଖଣ୍ଡେ ପତ୍ରିକା ଦେବା ବିଧି କଣ ଖରାପ କି ?

ସେଠା ଖବର ଲେଖିବ । ସୁବିଧା ହେଲେ ଯୁ.ଲେ.ସ.ର କବିତା ସଂକଳନ ଖଣ୍ଡେ ପଠେଇବ କି ? ମୁଁ ଟଙ୍କା ପଠାଇଦେବି ।

ଆଶା, ଭଲ ଅଛ । ଲେଖାଲେଖି ଖବର କ'ଣ ?

ଚିଠି ଦେବ ।

ସ୍ନେହ ସହ

**ଗିରିଅପା**

**ବି.ଦ୍ରଃ ଗିରିଅପା- କବି ଶ୍ରୀମତୀ ଗିରିବାଳା ମହାନ୍ତି ।**

**ସେତେବେଳେ ସେ ବଲାଙ୍ଗିରରେ ଅଧ୍ୟାପିକା ଥିଲେ ।**

**ବଲାଙ୍ଗିର କଲେଜ**

**ସ୍ନେହର କହ୍ନେଇ,**

ତମର ଚିଠି ଗୁଡ଼ିକ ପାଇଛି । ତମର ଅଭିନନ୍ଦନ ପତ୍ର ଘରୁ ଫେରି ପାଇଲି । ନିଜେ ଆଙ୍କିଛ କି ? ଭାରି ସୁନ୍ଦର ହୋଇଛି । ତମର ଏ ଦିଗଟା ମୋତେ ଆଦୌ ଜଣା ନଥିଲା । ସୁନ୍ଦର ଆଙ୍କିଛ । ତମେ ବଡ଼ ହୁଅ । ତମର ପ୍ରତିଭା ବିକଶିତ ହେଉ । ଏହା ହିଁ ନବବର୍ଷରେ ମୋର ହାର୍ଦ୍ଦିକ କାମନା ।

ମୁଁ ତମକୁ ଅଭିନନ୍ଦନ ପତ୍ର ପଠାଇ ପାରିନାହିଁ । ବସ୍ତୁତଃ ତମର ସେଟା ମୋ'ଠାରୁ ପ୍ରାପ୍ୟ । ମୁଁ ଲଜ୍ଜିତ ।

ଏବେ ତ ପୁଣି ପରିଚିତ ସ୍ଥାନରେ ରହୁଛ । ଘର ପାଖ । ପୁରୁଣା ବନ୍ଧୁବାନ୍ଧବ, ସାହିତ୍ୟ ଚର୍ଚ୍ଚା, ଆସର, ମଜଲିସ୍ ଏବଂ ଉପରନ୍ତୁ ଚାକିରି- ସବୁ ଅଛି । ଏହା ପରେ ମୁଁ ଚିଠି ନଦେଲେ ବ୍ୟସ୍ତ ହେବ ନାହିଁ ।

ସେଠି ଦୂରରେ ଥିଲ । ପିଲାଲୋକ । ମନ ଖରାପ ହେଉଥିଲା । ଅବଶ୍ୟ ମନ ଖରାପ ଏପରି ଏକ ସାଧାରଣ ରୋଗ ଯେ ମଣିଷ ଯଦି ନନ୍ଦନକାନନରେ ବୁଲେ, ଇନ୍ଦ୍ର ସହିତ ହାତୀରେ ଚଢ଼େ ଓ ଇନ୍ଦ୍ରାଣୀ ସହିତ ମିତ୍ରତା କରେ, ତେବେ ବି ତାହା ଗୋପନ ବ୍ୟଥା ପରି ଯନ୍ତ୍ରଣା ଦେବ ହିଁ ଦେବ । ନିଃସଂଗତା ମଣିଷକୁ କଷ୍ଟ ଦିଏ ଓ ତମେ ପିଲାଲୋକ ଓ ଘର

ଛାଡ଼ି ଯାଇଛ- ତେଣୁ ତମକୁ ଚିଠି ଦେବା ମୋର ଏକ କର୍ତ୍ତବ୍ୟ ଓ ଆନନ୍ଦ ଥିଲା । ଏବେ ତ ଆଶା କରୁଛି, ଭାରି ଭଲରେ ଅଛ । ଅନ୍ତତଃ ଥାଅ, ଏ କାମନା କରୁଛି ।

ଆଉ ତମେ ଯଦି ବଦଳି ଯାଉଥାଅ, ତେବେ ଖୁସି ହେବି । କାରଣ, ସ୍ଥାଣୁତ୍ୱ ତ ମୃତ୍ୟୁ ! ଗତି ହିଁ ଜୀବନ ! ମୁଁ ଏହାକୁ ଅଭିନନ୍ଦନ କରେ ।

ତମେ ପୁଅଟିଏ ବୋଲି କେତେ ସ୍ୱଚ୍ଛନ୍ଦରେ 'ବଦଳି ଯାଉଛ' ଲେଖିଲ । ମୋର ଲେଖିବାର ସେ ସ୍ୱାଧୀନତା ନାହିଁ । ଏପରିକି ମୋର କବିତା ଲେଖିବାର ସ୍ୱାଧୀନତା ବି ବେଳେବେଳେ କ୍ଷୁଣ୍ଣ ହୁଏ । ତେଣୁ ମୁଁ ସ୍ଥବିର ହୋଇ ପଡୁଛି । ଅନ୍ତତଃ ବାହାରେ ।

ମୋତେ ଦେଖା କରିନପାରିଥିବା ହେତୁ ବ୍ୟସ୍ତ ହେବା କଣ ଦରକାର । ମୁଁ ଘରକୁ ଏ ଭିତରେ ଦି'ଥର ଓ ବେଶ୍ ଲମ୍ବା ଛୁଟିରେ ଯାଇ ଫେରିଲିଣି । ମୁଁ ତମକୁ ଲେଖିଥିଲି, ମୁଁ ନିୟମିତ ଚିଠି ଦେଇ ପାରେ ନାହିଁ । ତମେ ବରଂ ନିୟମିତ ଚିଠି ଦେଉଥାଅ । ମନେରଖିଥିବ, ମୁଁ ଆନନ୍ଦ ଓ ଆନ୍ତରିକତା ସହ ତମ ଚିଠି ପଢୁଛି । ଯେପରି ମୋର ନିଜର ସାନଭାଇଟିଏ ଥିଲେ (ଥିଲା ଦିନେ ଓ ଥିଲେ ତମପରି ହୁଅନ୍ତାଣି- ମରିଯାଇଛି ପିଲାବେଳୁ) ତା' ଚିଠିକୁ ପଢ଼ନ୍ତି ଓ ଖୁସି ହୁଅନ୍ତି ।

ଏବେ ତମର ଭଲରେ ରହିବା କଥା । ତେଣୁ ମୁଁ ଚିଠି ଦେଉନାହିଁ ବୋଲି ବାରମ୍ବାର ବ୍ୟସ୍ତ ହୁଅନାହିଁ । ବରଂ ମୋତେ ନିୟମିତ ଆଗପରି ଚିଠି ଦିଅ । ଖୁବ୍ ଖୁସି ହେବି । ଭଉଣୀକୁ ଖୁସି କରିବା ଭାଇର ମଧ କର୍ତ୍ତବ୍ୟ । ନୁହେଁ କି ?

ଏ ଭିତରେ ତମର କିଛି ଲେଖା ପଢ଼ି ପାରିନାହିଁ; କାହିଁକି ? ଯୁବ ଲେ.ସ. ବିଶେଷାଙ୍କ ବାହାରିଛି କି ? 'ବିନ୍ଦୁ ଓ ବଳୟ' ନାମରେ ଆଉ ଗୋଟେ ପତ୍ରିକା ବାହାରିଛି କି ? ଜାଣ କି ? ଯୁବ ଲେ.ସ.ରେ ବହୁତ ମଜାକଲ ଶୁଣି ଭଲ ଲାଗିଲା ।

ତମ ଘର ଖବର କଣ ? ଏବର୍ଷ ଫସଲ କେମିତି ହୋଇଛି ? ପ୍ରେସ୍‌ରୁ କେମିତି ଜାଣିଲ ମୁଁ ଯାଇଥିଲି ବୋଲି ଘରକୁ ? ତମର ଲେଖାଲେଖି କେମିତି ଚାଲିଛି ? ମୁଁ ଚିଠି ଦେଇଛି ବୋଲି ଆନନ୍ଦରେ ବାଲେଶ୍ୱର ମହଲରେ ଗାଇ ବୁଲିବ ନାହିଁ ।

ମୋ' ଚିଠି ପଢ଼ି ରାଗିବ ନାହିଁ । ତମକୁ ଦୁଃଖ ଦେବାକୁ ଚିଠି ଲେଖୁନାହିଁ । ଯଦି କିଛି ଅବାନ୍ତର ଲେଖିଥାଏ, ରାଗିବ ନାହିଁ । ଚିଠି ଦବ । ଦେହର ଯତ୍ନ ନେବ । ତମର ଲେଖାଲେଖିର ସୁଗମତା କାମନା କରୁଛି ।

ସ୍ନେହାଧୀନ

ଗିରିଅପା

# ଶେଷ ଓ ଶ୍ରେଷ୍ଠ ପ୍ରେମଗଳ୍ପ

ଗୋଟିଏ ଦେଶରେ ଜଣେ ରାଜା ଥିଲେ। ସେ ବହି ପଢ଼ିବାକୁ ସୁଖ ପାଉଥିଲେ। ବିଭିନ୍ନ ସ୍ଥାନରୁ ଅନେକ ବହି ମଗାଇ ସେ ପଢୁଥିଲେ। ତାଙ୍କ ଦୁଇପଟରେ ଦୁଇଜଣ ପଗଡ଼ି ବାନ୍ଧି ହାତରେ ବହି ଧରି ଛିଡ଼ାହୋଇ ରହୁଥିଲେ। କେତେବେଳେ କେମିତି ରାଜା ଚାମରର ହାୱା ଖାଉ ଖାଉ ଗୋଟିଏ ଦୁଇଟି ବହିଧରି ଓଲଟାଉଥିଲେ। ଭଲ ପାଇବା ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା। ଯଦି କେବେ ସେ ଶୁଣୁଥିଲେ ରାଜ୍ୟରେ କୌଣସି ଯୁବକ କାହାରିକୁ ଭଲପାଇବାକୁ ଆରମ୍ଭ କଲାଣି, ତା'ହେଲେ ସେ ଯୁବକକୁ ଡକାଇ ତା'ଠାରୁ ପ୍ରେମଗଳ୍ପ ଶୁଣୁଥିଲେ।

ଦେଶ ବିଦେଶରୁ ଅନେକ ପ୍ରେମିକ ଆସି ସେମାନଙ୍କ ପ୍ରେମ ଗଳ୍ପ ଶୁଣାଇ ରାଜାଙ୍କଠାରୁ ଦାନ ନେଉଥିଲେ। ରାଜା ବି ଭଲ ପାଉଥିଲେ ଗାଳ୍ପିକମାନଙ୍କୁ। ଯେଉଁମାନେ ପ୍ରେମ କାହାଣୀ ଲେଖୁଥିଲେ ସେମାନେ ରାଜାଙ୍କର ସଭାସଦ୍ ହୋଇଯାଉଥିଲେ ଓ ପ୍ରେମଗଳ୍ପ ଲେଖି ରାଜାଙ୍କୁ ଶୁଣାଇ ସେମାନେ ଜୀବିକା ନିର୍ବାହ କରୁଥିଲେ।

ଥରେ ଜଣେ ଗାଳ୍ପିକ ଆସି ରାଜଦରବାରରେ ଉପସ୍ଥିତ ହେଲା। ରାଜା ତା' ଲେଖା ପ୍ରେମଗଳ୍ପ ପଢ଼ି ଭୀଷଣ ଖୁସି ହେଲେ। ତାକୁ ଦାନ ଦିଅନ୍ତେ ସେ ଗ୍ରହଣ କଲା ନାହିଁ। ରାଜା କାରଣ ପଚାରି ଜାଣିଲେ, ଗାଳ୍ପିକ ଜଣେ ସୁନ୍ଦରୀ ଯୁବତୀକୁ ପ୍ରେମ କରୁଥିଲା। ସେ ତାକୁ ପ୍ରତାରଣା କରି ଜଣେ ରାଜାଙ୍କର ପାଣି ଗ୍ରହଣ କରିଛି। ସେ କେବଳ ସେଇ କଥା ଉପରେ ଗୋଟିଏ ଶେଷ ଓ ଶ୍ରେଷ୍ଠ ପ୍ରେମଗଳ୍ପ ଲେଖିବାକୁ ଚାହେଁ।

ରାଜା କଥାଟା ଠିକ୍ ବୁଝିନେଲେ। ତାଙ୍କୁ ଜୋରକରି ସଭାସଦ୍ କରିନେଲେ। ତାକୁ ସୁନ୍ଦର ସୁନ୍ଦର ଖାଦ୍ୟ ଖାଇବାକୁ ଦେଲେ। ଗାଳ୍ପିକ କେବଳ ଖାଇଲେ ଓ ଆରାମରେ ଶୋଇଲେ। ପ୍ରେମ ଗଳ୍ପ ଲେଖା ହୋଇ ପାରିଲା ନାହିଁ । ରାଜା ବିବ୍ରତ ହୋଇ ପଡ଼ିଲେ । ମନ୍ତ୍ରୀମାନଙ୍କ ସହ ପରାମର୍ଶ କଲେ ମହାମନ୍ତ୍ରୀ । କହିଲେ କଞ୍ଚାମାଲ ନଦେଲେ ପଦାର୍ଥ ସୃଷ୍ଟି ହେବ କିପରି ? ରାଜା ତାଙ୍କ ଲୋକମାନଙ୍କୁ ପଠାଇଲେ ରାଜ୍ୟର ସବୁଠାରୁ ସୁନ୍ଦରୀକୁ ଧରି ଆଣିବା ପାଇଁ। ଲୋକମାନେ ଫେରିଆସି ଜଣାଇଲେ ରାଜକୁମାରୀ ହିଁ ସେ ରାଜ୍ୟର ସବୁଠାରୁ ସୁନ୍ଦରୀ।

ରାଜା ପ୍ରଥମେ ଇତସ୍ତତଃ ହେଲେ। କିନ୍ତୁ ପ୍ରେମଗଳ୍ପ ଶୁଣିବା ତାଙ୍କର ନିହାତି ଦରକାର। ତେଣୁ ସେ ରାଜକୁମାରୀଙ୍କୁ ଡ଼ାକି ନିର୍ଦ୍ଦେଶ ଦେଲେ। ରାଜାଙ୍କ ନିର୍ଦ୍ଦେଶରେ ଗାଳ୍ପିକଙ୍କୁ ସୁନ୍ଦର ଭାବେ ସଜା ହୋଇଥିବା ଗୋଟିଏ ଘରେ ଛାଡ଼ି ଦିଆଗଲା। ରାଜକୁମାରୀ ସେ ଝର୍କା କବାଟ ସବୁ ଭିତରପଟୁ ବନ୍ଦ କରିଦେଲେ। ସେ ଗାଳ୍ପିକ ହାତରେ ଖାତା କଲମ ଧରାଇଦେଲେ। ଭୁବନମୋହିନୀ ହସ ହସି ଏକ ବିଶେଷ ଭଙ୍ଗୀରେ ରାଜକୁମାରୀ ଗାଳ୍ପିକଙ୍କ ସାମ୍ନାରେ ବସି ରହିଲେ। ଗାଳ୍ପିକ କେବଳ ତାଙ୍କୁ ଅନାଇ ରହିଲେ। ରାଜକୁମାରୀ ଗାଳ୍ପିକଙ୍କୁ ଖାଦ୍ୟ ପରଷିଲେ। ଗାଳ୍ପିକ ଖାଇଲେ ନାହିଁ। ସେ ସୁପାତ୍ର ଧରାଇଦେଲେ। ଗାଳ୍ପିକ ପିଇଲେ ନାହିଁ। କେବଳ ଚାହିଁ ବସି ରହିଲେ। ରାଜକୁମାରୀଙ୍କ ଆଖିରେ ଲୋତକ ବିନ୍ଦୁ ଦେଖାଦେଲା। ସେ ଗଦ୍‌ଗଦ ହୋଇଉଠିଲେ।

ଏଣେ ରାଜା, ସଭାସଦ୍, ମନ୍ତ୍ରୀବର୍ଗ ଓ ପ୍ରଜାବୃନ୍ଦଙ୍କର ବାହାରେ ଅପେକ୍ଷା। କେତେବେଳେ ରାଜକୁମାରୀ ସହ ଗାଳ୍ପିକ ବାହାରିବେ, ହାତରେ ଥିବ ଶ୍ରେଷ୍ଠ ପ୍ରେମଗଳ୍ପ; କାରଣ ସୁବିଧା ସୁଯୋଗ ପାଇଲେ ମୂର୍ଖ ବି ପଣ୍ଡିତ ଆଉ କାଠୁରିଆଟିଏ କଥାକାର ହୋଇଯାଇପାରେ- ପଙ୍ଗୁ ବି ପର୍ବତାରୋହଣ କରିପାରେ- ମୂକ ବି ମୁଖ୍ୟବକ୍ତା ହୋଇପାରେ।

ଦିନେ, ଦିଦିନ, ତିନିଦିନ ଗଲା; କୋଠରିର କବାଟ ଫିଟିଲା ନାହିଁ। ଚାରିଦିନ ପରେ ରାଜା ନିଜେ ଯାଇ କବାଟ ପାଖରେ କାନ ଡ଼େରିଲେ। ଭିତରୁ କିଛି ଶବ୍ଦ ଶୁଣାଗଲା ନାହିଁ। ରାଜା ତାଙ୍କ ଲୋକମାନଙ୍କୁ କୋଠରିର କବାଟ ଭାଙ୍ଗିବାକୁ ନିର୍ଦ୍ଦେଶ ଦେଲେ। କବାଟ ଭଙ୍ଗାଗଲା। ଭଙ୍ଗା ହେବା ମାତ୍ରେ ରାଜା ଭିତରକୁ ଧାଇଁଗଲେ। ଖାତା ଉଠାଇ ଆଣି ଦେଖିଲେ ଯେ, ଉପରେ ଲେଖାଯାଇଛି 'ଶେଷ ଓ ଶ୍ରେଷ୍ଠ ପ୍ରେମଗଳ୍ପ'। ତା'ପରେ ଖାତା ଭର୍ତ୍ତି କରାଯାଇ ଲେଖାଯାଇଛି– ମୁଁ ତୁମକୁ ଭଲପାଏ, ମୁଁ ତୁମକୁ ଭଲପାଏ, ମୁଁ ତୁମକୁ ଭଲପାଏ...

ରାଜା ସଚେତନ ହୋଇ ଚାହିଁ ଦେଖିଲେ, ବିଛଣାରେ ଗାଳ୍ପିକ ଏବଂ ରାଜକୁମାରୀଙ୍କର ଶବ ପଚି କଳା ପଡ଼ିଗଲାଣି।

(ଉଦ୍‌ଗିରଣ, ଜୁଲାଇ, ୧୯୭୩)



# ନାମହୀନ ଗଳ୍ପ

(ସ୍ୱର୍ଗତ କନ୍‌ହେଇଲାଲ ଦାସଙ୍କର ଶେଷ ଅପ୍ରକାଶିତ ଗଳ୍ପ ଭାବରେ ଏହା 'କନ୍‌ହେଇ କଥାଘର'ର ପ୍ରଥମ ସଂସ୍କରଣରେ ପ୍ରକାଶ ପାଇଥିଲା । ନାମ ରଖାଯାଇଥିଲା 'ନାମହୀନ ଶେଷଗଳ୍ପ' । କିନ୍ତୁ ଆଉ ଗୋଟିଏ ଅପ୍ରକାଶିତ ହାତଲେଖା, ନାମହୀନ ଗଳ୍ପ ତାଙ୍କ ଚିଠିପତ୍ର ଭିତରୁ ମିଳିଛି । ତେଣୁ ଏହାକୁ 'ନାମହୀନ ଗଳ୍ପ' ନାମରେ ପ୍ରସ୍ତୁତ କରୁଛୁ । ଗଳ୍ପଟି ଲେଖକଙ୍କ ଶେଷ ବର୍ଷର ଦିନଲିପି ବା ୧୯୭୫ ମସିହାର ଏକ ଡାଇରିର ପ୍ରଥମ କେତୋଟି ପୃଷ୍ଠା ମଧ୍ୟରେ ଲିଖିତ । ଏହି ପୃଷ୍ଠାଗୁଡ଼ିକ ଜାନୁଆରୀ ୨ ତାରିଖ ଗୁରୁବାରଠାରୁ ଜାନୁଆରୀ ୨୪ ତାରିଖ ଶୁକ୍ରବାର । ମାତ୍ର ଗଳ୍ପଟିରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ, ଏହା ୨୭ ଜୁନ ୧୯୭୫ ମଙ୍ଗଳବାର ଦିନର ଲେଖା । ଏହି ଦିନଟି ଥିଲା କନ୍‌ହେଇଲାଲ ଦାସଙ୍କର ୨୮ ତମ ଜନ୍ମଦିନ । ଏହାର ଠିକ୍ ଗୋଟିଏ ମାସ ପରେ ୨୭ ଜୁଲାଇ ୧୯୭୫ ରବିବାର ଦିନ ଲେଖକଙ୍କର ଅକାଳ ତିରୋଧାନ ହୁଏ ।

ଗଳ୍ପଟି ରଚନା କରିବାର ପ୍ରାୟ ୧୫ ଦିନ ପରେ ଓ ମୃତ୍ୟୁର ଠିକ୍ ୧୫ ଦିନ ପୂର୍ବରୁ ୧୧-୭-୭୫ ତାରିଖ ଦିନ ଏକ ଛୋଟ ମନ୍ତବ୍ୟ ଗଳ୍ପଟି ତଳେ ଲେଖକ ଦେଇଛନ୍ତି । ସେଥିରେ ଉଲ୍ଲେଖ ଅଛି– "ଆମେ ସବୁ ପୋଷାକ ପିନ୍ଧି ଗଳ୍ପ-କବିତା ଲେଖୁଛୁ । ଖୋଲା ଦେହରେ ଯଦି ବସି ଲେଖିପାରନ୍ତୁ !"

ଗଳ୍ପଟିର କୌଣସି ନାମକରଣ ସ୍ୱର୍ଗତ ଲେଖକ କରି ନଥିଲେ । ତେଣୁ 'ନାମହୀନ ଶେଷ ଗଳ୍ପ' ଶିରୋନାମାରେ ଏହା ପରବର୍ତ୍ତୀ କାଳରେ 'ସମାବେଶ' ୧୯୮୫ ପୂଜା ସଂଖ୍ୟାରେ ମଧ୍ୟ ପ୍ରକାଶିତ ହୋଇଥିଲା । ସଂପ୍ରତି ଏହା 'କନ୍‌ହେଇ କଥାଘର'ର ଅନ୍ତିମ ଅଧ୍ୟାୟ ରୂପେ ସଂଯୋଜିତ ହେଉଛି ।)

ଏ ପର୍ଯ୍ୟନ୍ତ ରାଣୀର ଦେଖା ନାହିଁ । ମଣିଷ କେତେ ବୋର୍ ହେବ ଏମିତି ! ଆଜି ମୋର ଜନ୍ମଦିନ । ଜୁନ୍ ୨୭ । ପୁଣି ଗୋଟିଏ ବର୍ଷ ପାରି ହୋଇଗଲି ।

ମୁଁ ମହମବତିଟାକୁ ଫୁଙ୍କିଦେଇ କହିଲି–ହେପି ବାର୍ଥ ଡେ ଟୁ ଇଉ କନ୍‌ହେଇ ! ତା' ପରେ  ଅନ୍ଧକାର । ଚିତ୍ ହୋଇ ଶୋଇପଡ଼ିଲି ।

ଅନ୍ଧକାରରେ ଶୁଣିଲି, ଫ୍ୟାନ୍‌ଟା ଘୁଁ ଘୁଁ କରି ଘୂରି ଚାଲିଛି । ପତଳା ଅନ୍ଧକାରରେ କ୍ୟାଲେଣ୍ଡରଟା ହଲିବା ପରି ମୋତେ ମନେହେଲା । ବାହାରେ ଏବେବି ଯେମିତି ଟପ୍ ଟପ୍ ବର୍ଷା ପଡୁଛି । ବେଙ୍ଗଗୁଡ଼ା ଏଇ ବର୍ଷା ପାଗରେ କେଁ-କଟର ଶବ୍ଦ ନକଲେ ବର୍ଷାପାଗଟା ବର୍ଷାପାଗ ପରି ମନେ ହୁଏନି । ହୁଏତ ଏବେ ଆକାଶରେ ନକ୍ଷତ୍ର ଫୁଟି ଯାଇଥିବ । କିନ୍ତୁ ପଡ଼ିଆର ସେ କୋଣରେ କଲଭର୍ଟ ତଳ ପାଣି ତୋବାରେ ବେଙ୍ଗମାନେ କେଁକଟର ଆରମ୍ଭ କରି ଦେଇଛନ୍ତି । ତେଣୁ ମନେ ହେଉଛି ଏବେ ବି ଯେମିତି ଥପ୍ ଥପ୍ ବର୍ଷା ଚୂଇଁ ପଡୁଛି ଆକାଶରୁ ।

ବେଙ୍ଗମାନେ ଖାଆନ୍ତି କଣ ? ପାଣିବେଙ୍ଗମାନେ କଣ ମାଛ ଖାଆନ୍ତି ନା ପୋକଯୋକ ଖାଆନ୍ତି ? ସେମାନେ ହୁଏତ ବର୍ଷା ଦିନେ ସବୁଜ ପଡ଼ିଆରୁ ଝିଣ୍ଟିକା ଧରି ଖାଆନ୍ତି ।

ବର୍ଷା ରାତିରେ ବେଙ୍ଗମାନେ ଏମିତି ଚିତ୍କାର କରି ସେମାନଙ୍କ ସଙ୍ଗିନୀମାନଙ୍କୁ ଡାକନ୍ତି । ଅନ୍ୟ କେଉଁ ଏକ ଦୂର ଜଳାଶୟରେ ରହୁଥିବା ମାଈବେଙ୍ଗ କାନରେ ଏ ଆର୍ତ୍ତ ଚିତ୍କାର ବାଜେ । ସେ ହୁଏତ ସେତେବେଳେ ଉତ୍କର୍ଣ୍ଣ ହୋଇ ଅଧେ ପାଣିରେ ଦେହ ବୁଡ଼ାଇ ବସି ରହିଥାଏ । କାନ ଡେରି ଶୁଣେ, ତାକୁ କେହି ଆମନ୍ତ୍ରଣ କରୁଛି କି ନାହିଁ । ଯେତେବେଳେ ଦୂରରେ କେଉଁଠି ଅଣ୍ଡିରା ବେଙ୍ଗର ଚିତ୍କାର ଶୁଣେ ସେ ପାଣି ଭିତରୁ ସଜାଡ଼ି ହୋଇ ବସେ । ଶବ୍ଦ ଆସୁଥିବା ଦିଗକୁ ଉତ୍କର୍ଣ୍ଣ ହୋଇ ଚାହେଁ । ତା'ପରେ ପାଣି ଭିତରୁ ଲମ୍ଫ ଦେଇ ବାହାରି ଆସେ । ଉଠିଆସେ ଜଳାଶୟରୁ । ଆଖି ବୁଲାଇ ଚାରି ଆଡ଼କୁ ଚାହେଁ । ବୁଝିପାରେ ତା'ର ଏ ନୈଶ ଅଭିସାରରେ ବାଧା ଉପୁଜାଇବା ପାଇଁ ଏ ବର୍ଷା ରାତିରେ କେହି ଜଗି ବସିନାହିଁ । ସେ ଲମ୍ବା ଲମ୍ବା ଡିଆଁ ମାରି ଆଗେଇ ଆସେ ଶବ୍ଦ ଲକ୍ଷ୍ୟକରି । ରାସ୍ତାରେ ତା' ପାଦ ପାଖରୁ ଝିଣ୍ଟିକା ଗୋଟିଏ ଖପ୍ କରି ଡେଇଁ ଗଲେ ସେ ଦେହ ବୁଲାଇ ସଜାଡ଼ି ବସିଯାଏ । ଝିଣ୍ଟିକା ପାଦ ଘୋଷାରି ଆଗେଇଗଲେ ସେ ଲାଳୁଆ ଜିଭ ତା ଉପରକୁ ଫିଙ୍ଗିଦିଏ । ଉଠିଆସେ ଝିଣ୍ଟିକା । ନରମ ପର କଣ୍ଟାଳିଆ ପାଦ ସବୁକୁ ମୋଡ଼ିମାଡ଼ି ଭିତରକୁ ପଠାଇ ଦିଏ । ତେଣେ ଅଣ୍ଡିରା ବେଙ୍ଗର ଚିତ୍କାର ଦ୍ରୁତତର ହୋଇଉଠେ । କିନ୍ତୁ କିଛି ସମୟ ପାଇଁ ଝିଣ୍ଟିକାର ଛଟ୍‌ପଟ୍‌କୁ ସ୍ଥିର କରିଦେବାକୁ ସେ ବସିରହେ । ତା'ପରେ ନିଜେ ଗୋଟିଏ ଅନୁରୂପ ଚିତ୍କାର କରେ ଏବଂ ଶବ୍ଦକୁ ଅନୁସରଣ କରି ଲମ୍ଫାଡ଼ିଆଁ ମାରେ ।

ମାଈ ବେଙ୍ଗ କ'ଣ ପୁରୁଷ ବେଙ୍ଗର ଡାକ ଶୁଣିପାରେ ? ନା ଏଇଟା ଟେଲିପାଥି !

ଜୀବଜନ୍ତୁମାନେ ବେଶୀ ଟେଲିପାଥିରେ ବିଶ୍ୱାସ କରନ୍ତି । କାରଣ ସେମାନଙ୍କ ପାଇଁ ବର୍ଣ୍ଣମାଳା ନାହିଁ, ଅକ୍ଷର ଶବ୍ଦର ରୋଶଣି ନାହିଁ । ତେଣୁ ଇଚ୍ଛାଶକ୍ତି ବୋଧହୁଏ ସେମାନଙ୍କର ପ୍ରଖର ।

କେଉଁ ଏକ ଅଗ୍ନାଅଗ୍ନି ବନସ୍ତର ପାହାଡ଼ ଖୋଲରେ ଶୋଇଥାଏ ଅଜଗର । ଅନେକ ଦିନ ଖାଦ୍ୟାଭାବରୁ ସେ ବାଧ ହୋଇ ଅନଶନ କରେ । କିନ୍ତୁ ଯେଉଁଦିନ ତା' ପେଟରେ ଭୋକ ପ୍ରଚଣ୍ଡ ହୁଏ ସେଦିନ ସେ ପାଟି ମେଲା କରି ଚୁପ୍‌କରି ପଡ଼ିରହେ ଏବଂ ଇଚ୍ଛାଶକ୍ତି ପ୍ରୟୋଗ କରେ । ତାର ଇଚ୍ଛାଶକ୍ତିରେ ବଣ ଭିତରୁ ଟାଣି ହୋଇ ଆସନ୍ତି ହରିଣ ଛୁଆ, ବାର୍‌ହା ଇତ୍ୟାଦି ଜୀବ । ସେମାନେ ଶତଚେଷ୍ଟା କଲେ ବି ଘୁଞ୍ଚିଯାଇ ପାରନ୍ତି ନାହିଁ । ଅଜଗରର ମେଲା ମୁହଁରେ ଯାଇ ପଶିଯାନ୍ତି ।

ଗନ୍ଧଶକ୍ତି ବି ଜୀବଜନ୍ତୁମାନଙ୍କର ଏକ ଆଶ୍ଚର୍ଯ୍ୟ କ୍ଷମତା । ଥରେ ରାଜାଙ୍କୁ ନେଇ ହାତୀ ଚାଲିଥିଲା ଜଙ୍ଗଲରେ । ରାଜା ବସିଛନ୍ତି ହାତୀ ପିଠିରେ । ହାତରେ ବନ୍ଧୁକ । ଶିକାର କରିବେ । ଜଙ୍ଗଲର ଚଢ଼େଇ ଫଡ଼ ଫଡ଼ କରି ଖସିଆସିବ ତାଙ୍କ ପ୍ରବଳ ଗୁଳି ଚୋଟରେ । ନହେଲେ ନିରୀହ ମାଙ୍କଡ଼ କେଉଁ ଏକ ଗଛଡ଼ାଳରୁ ପ୍ରଣାମର ମୁଦ୍ରାରେ ଖସିପଡ଼ିବ ତଳକୁ । ରାଜା ଉତ୍କର୍ଣ୍ଣ । ସାଙ୍ଗରେ କେତେଜଣ ଶିକାରୀ ଅନୁଚର । ହାତୀ ଚାଲୁଛି ଝୁଲି ଝୁଲି । ରାଜା ମଝିରେ ମଝିରେ ଢୁଳେଇ ପଡୁଛନ୍ତି ବଣଫୁଲର ବାସ୍ନାରେ ।

ହଠାତ୍ ହାତୀଟା ଥମ୍ କରି ଛିଡ଼ାହୋଇ ପଡ଼ିଲା । ରାଜା ଆଖି ମେଲି ଚାହିଁଲେ । ମାହୁନ୍ତ କେଞ୍ଚିଲା । ଆଗକୁ ଯିବାପାଇଁ ସଂକେତ ଦେଲା । କିନ୍ତୁ ହାତୀ ଶୁଣ୍ଢ ଉଠାଇ ପ୍ରତିବାଦ ଜଣେଇଲା । ସେ ପଛକୁ ବୁଲିଲା । ଶୁଣ୍ଢ ଟେକିଲା, ଶଙ୍ଖ ବଜାଇଲା ପରି ଶବ୍ଦ କଲା । ହାତଗୋଡ଼ ଛାଟିପିଟି ହେଲା । ରାଜାଙ୍କର ତନ୍ଦ୍ରା ପୂରାପୂରି ତୁଟିଗଲା । ମାହୁନ୍ତ କହିଲା, ହଜୁର, ହାତୀଟା ବୋଧହୁଏ ସାମ୍ନାରେ କିଛି ବିପଦର ଆଭାସ ପାଇଛି । କିନ୍ତୁ ହାତୀ ଡାହାଣକୁ ବୁଲି ଜଙ୍ଗଲ ଭିତରେ ଦୌଡ଼ିବାକୁ ଲାଗିଲା । ଉପରେ ନଡ଼ବଡ଼ ରାଜା ଓ ମାହୁନ୍ତ । ହାତୀ ବୋଲ ମାନୁନାହିଁ । ଛୁଟିଛି ଏକମୁହାଁ । ମାହୁନ୍ତ ବୁଝିଲା, ହାତୀ ପାଗଳ ହୋଇଯାଇଛି । ଉଡ଼ାଜାହାଜରେ ନିଆଁ ଲାଗିଲେ ଯେମିତି ହୁଏ ସେମିତି । ରାଜା ପ୍ରାଣକୁ ପାଣି ଛଡ଼େଇ ବସିଛନ୍ତି । ହାତୀର ଦୌଡ଼ ଆହୁରି ବଢ଼ିଲା । ତା ଦେହର ଧକ୍‌କାରେ କେତେ ଅନାବନା ଗଛ ସବୁ ମଡ଼ ମଡ଼ ହୋଇ ଭାଙ୍ଗିପଡ଼ିଲେ । ମାହୁନ୍ତ ରାଜାଙ୍କୁ ନିର୍ଦ୍ଦେଶ ଦେଲା ଆତ୍ମରକ୍ଷା କରିବାକୁ । ସୁଯୋଗ ଦେଖି ରାଜା ଗୋଟିଏ ଗଛର ଡାଳ ଧରି ଓହଳି ପଡ଼ିଲେ । ମାହୁନ୍ତ ବି । ପାରାଚ୍ୟୁଟ ଧରି ରକ୍ଷା ପାଇଗଲେ ଯେମିତି ! ହାତୀ ତା' ରାସ୍ତାରେ ଦ୍ରୁତ ଗତିରେ ଧାଇଁ ଧାଇଁ ଜଙ୍ଗଲ ଭିତରକୁ ପଳାଇଲା । ରାଜା, ମାହୁନ୍ତ ଓ ଶିକାରୀବର୍ଗ ଫେରିଆସିଲେ ରାଜଧାନୀକୁ ।

କିନ୍ତୁ କିଛିଦିନ ପରେ ଫେରିଆସିଲା ହାତୀ । ବିନୟୀ ହୋଇ, ଅବନତ ହୋଇ ଛିଡ଼ାହେଲା ରାଜଦରବାରରେ । ରାଜା ସଂଗେ ସଂଗେ ଆଦେଶ କଲେ– "ଯାକୁ ଗୁଳି କରିଦିଅ" । କିନ୍ତୁ ମାହୁନ୍ତ ଅନୁରୋଧ କଲା ମୃତ୍ୟୁଦଣ୍ଡ ନଦବା ପାଇଁ । ରାଜା ଶୁଣିଲେ ନାହିଁ । ଯିଏ ଅଗ୍ନାଅଗ୍ନି ବନସ୍ତରେ ତାଙ୍କ ପ୍ରାଣନାଶ କରିବାକୁ ଉଦ୍ୟମ କରୁଥିଲା ତାକୁ

କୁକୁର ପରି ଗୁଳି କରି ମାରିଦବା ଉଚିତ । ମାତ୍ର ମାହୁନ୍ତ ନିବେଦନ କଲା–ମହାରାଜ, ଦୋଷ ହାତୀର ନୁହେଁ । ଛାମୁଙ୍କୁ ନେଇ ଚାଲିଥିବା ବେଳେ ହାତୀଟି ଏକ ରଜସ୍ୱଳା ମାଈହାତୀର ଗନ୍ଧ ପାଇଲା । ତା' ପରେ ଉନ୍ମାଦ ହୋଇ ଉଠିବସିଲା । ମାଈ ହାତୀର ରଜଗନ୍ଧର ଯେଉଁ ଆବାହାନ ତାକୁ କୌଣସି ହାତୀ ଏଡ଼ିପାରିନାହିଁ । ତେଣୁ ସେ ଉନ୍ମତ୍ତ ହେଲା ଏବଂ ମୈଥୁନ ଶେଷ ପରେ ସେ ଅନୁତପ୍ତ ହୋଇ ଫେରିଆସିଛି ।

ରାଜା କିନ୍ତୁ ତାଙ୍କ ବାକ୍ୟରେ ଅଟଳ । ମୃତ୍ୟୁଦଣ୍ଡାଦେଶ ବିନା ରାଜ୍ୟରେ ଅରାଜକତା ବ୍ୟାପିଯିବ । ତେଣୁ ତାଙ୍କ ଆଦେଶ ଅଲଙ୍ଘନୀୟ । ମାହୁନ୍ତ ଶେଷରେ ନିବେଦନ କଲା – ମହାରାଜ, ଯଦି ଯା'କୁ ମାରିବାକୁ ହୁଏ ତାହେଲେ ଗୁଳି କରି ନୁହେଁ, ସେ ନିଜେ ମୃତ୍ୟୁବରଣ କରୁ ।

ମାହୁନ୍ତ ହାତୀ ସାମ୍ନାରେ ଏକ ଜ୍ୱଳନ୍ତ ଲୌହପିଣ୍ଡ ରଖିଲା ଏବଂ ହାତୀକୁ ନିର୍ଦ୍ଦେଶ ଦେଲା ଗିଳିଦେବା ପାଇଁ । ବିଶ୍ୱସ୍ତ ହାତୀଟି କାଳବିଳମ୍ବ ନକରି ଜ୍ୱଳନ୍ତ ଲୌହପିଣ୍ଡଟି ଗିଳିଦେଲା ଏବଂ ମୃତ୍ୟୁବରଣ କଲା ।



# ନାମହୀନ ଶେଷଗଳ୍ପ

(ଏଇଟି ହେଉଛି କନ୍‌ହେଇଲାଲ ଦାସଙ୍କର ଶେଷ ଅପ୍ରକାଶିତ ଗଳ୍ପ । ଆମେ ଏହାକୁ ଉଦ୍ଧାର କରିଛୁ ଏ ସଂସ୍କରଣରେ ଛାପା ହୋଇଥିବା କନ୍‌ହେଇଲାଲଙ୍କୁ ଲିଖିତ ପତ୍ରଗୁଚ୍ଛ ମଧ୍ୟରୁ । ୨ ଫେବୃଆରି ୧୯୭୩, ଶୁକ୍ରବାର ଦିନ, ଅଫିସ୍‌ରେ ଥିବାବେଳେ-ଏକା ନହସରେ ଏ ଗପଟି ବା ଏ ଚିଠିଟି ଲେଖିଥିଲେ କନ୍‌ହେଇଲାଲ, କେଉଁ ଅଜ୍ଞାତ ପ୍ରେମିକାଙ୍କ ପାଖକୁ । ନାମକରଣ କରାଯାଇ ନଥିବା ଏ ହାତଲେଖା ଗପଟିକୁ ଆମେ 'ନାମହୀନ ଶେଷଗଳ୍ପ' ଭାବରେ ହିଁ ନାମିତ କରୁଛୁ ।)

ତୁମେ ଦିନେ କହିଥିଲ ଚନ୍ଦ୍ର ଉଇଁଲେ ଆସିବ
ଚନ୍ଦ୍ର ଉଇଁଲା ବୁଡ଼ିଲା ଉଇଁଲା ବୁଡ଼ିଲା
ମୁଁ, କେବଳ ଚାହିଁଛି ତୁମର ଚନ୍ଦ୍ର କେଉଁଠି ଉଇଁବ ?

❐

ମୁଁ ତୁମର ଗନ୍ଧ ପବନରେ ପାଇଲି ।
କିନ୍ତୁ ତୁମେ ତ ଆସିଲ ନାହିଁ, ଚନ୍ଦ୍ର ବୁଡ଼ିଗଲା
ତୁମର ଆସିବା ବି ମୋର ଲୋଡ଼ା ନାହିଁ ।
କାରଣ ମୁଁ ଯେପରି ଅନନ୍ତ କାଳପାଇଁ ଚନ୍ଦ୍ର ଉଇଁବାକୁ ଅପେକ୍ଷା କରେ ।

❐

ତୁ କହିଥିଲୁ ମୁଁ ସବୁବେଳେ ମନେରଖିବି ଯେ ତୁ ମୋତେ ଭଲପାଉ ବୋଲି ।
ମୁଁ ମନେରଖିଛି ।
ସବୁବେଳେ ଭାବେ ପୃଥିବୀ ଯେତେ ବଦଳିଯାଉ ପଛକେ ସେ ମୋତେ ଭଲପାଏ ।
ମୁଁ ଦିନେ ପଢ଼ିଲି ତୋର ଚିଠି ।
ତୁ ଲେଖିଛୁ ମୋ ବ୍ୟବହାରରେ ତୁ ସନ୍ତୁଷ୍ଟ ନୋହୁ ।
ଦିନେ ଦେଖିଲି ତୁ ସିନେମା ଗଲୁ,
ସାଥିରେ ମୋ ଭଳି ଆଉ ଗୋଟିଏ ପିଲା ।

ମୁଁ ବୁଝିଲି, ତଥାପି ତୁ ମୋତେ ଭଲପାଉ ।
ଦିନେ ଦେଖିଲି, ତୁ ତୋ ବଂଧୁ ସଂଗେ ରାସ୍ତାମୋଡ଼ରେ ଅଦୃଶ୍ୟ ହୋଇଯାଉଛୁ ।
ମୋତେ ଥରେ ବି ଚାହିଁଲୁ ନାହିଁ ।
ମୁଁ ବୁଝିଲି ତୁ କେତେ ଭଲପାଉ ।
ଦିନେ ଦେଖିଲି, ତୁ ସଜା ହୋଇଥିବା ଗୋଟିଏ ମଉ ରଂଗର କାର୍‌ରେ
ଗୋଟିଏ ନିଶୁଆ ପୁରୁଷ ପାଖରେ ବସିଛୁ । ମୁଣ୍ଡରେ ଚନ୍ଦନ ।
ମୁଁ ବୁଝିଲି ତୁ ମୋତେ ଭଲପାଉ ।
ଦିନେ ତୋ ସହ ବଜାରରେ ଦେଖାହେଲା,
ତୋ ହାତ ଧରିଥିଲା ତୋ ସାନ ପୁଅ ।
ମୁଁ ବୁଝିଲି ତୁ ମୋତେ ଭଲପାଉ ।
ଦିନେ ହଠାତ୍ ମୁଁ ଅନୁଭବ କଲି, ମୋର ଶେଷ ସମୟ ଉପସ୍ଥିତ ।
ମୁଁ ତୋର ନାମ ଧରି ଚିତ୍କାର କଲି,
ତୁ ଆସିଲୁ ନାହିଁ ।
ତଥାପି ବୁଝିଲି ତୁ ମୋତେ ଭଲପାଉ
କାରଣ ମୁଁ ଜାଣେ ମୁଁ ତୋତେ ଭଲପାଏ
ସେଇ ଶେଷ ସମୟ ପର୍ଯ୍ୟନ୍ତ ବି ।



ତୁମେ ଦିନେ କହିଥିଲ, ଚନ୍ଦ୍ର ଉଇଁଲେ ଆସିବ
ଚନ୍ଦ୍ର ଉଇଁଲା ବୁଡ଼ିଲା ଉଇଁଲା ବୁଡ଼ିଲା,
ମୁଁ, କେବଳ ଚାହିଁଛି ତୁମର ଚନ୍ଦ୍ର କେବେ ଉଇଁବ ?

•

# ତାଙ୍କ ଠିକଣା

ମୁଁ ଏଠାରେ ଯାହାଙ୍କ କଥା କହୁଛି, ତାଙ୍କୁ ଜୀବନରେ କେବେ ଦେଖିନାହିଁ । ତଥାପି ଯେପରି ଅନେକଥର ତାଙ୍କ ସହ ସାକ୍ଷାତ ହୋଇଛି ।

ମନେକର ମୁଁ ଈଶ୍ୱରଙ୍କୁ ବିଶ୍ୱାସ କରେନା । ମୁଁ କିନ୍ତୁ ଗୋଟାଏ କିଛି ବିଶ୍ୱାସ କରେ । କାହାରିକୁ ଗୋଟେ ସ୍ମରଣ କରେ ।

ମନେକର ଖୁବ୍ ଅନ୍ଧକାର ରାତି, ମୁଁ ଏକା । ସେଦିନ ଚିଠି ପାଇଲି, ମୋ ପ୍ରେମିକାର ବାହାଘର । ମୁଁ କେମିତି ବଞ୍ଚିବି ? ମନେକର ମୁଁ ଖୁବ୍ କାନ୍ଦିଲି, ଅନ୍ଧକାରକୁ କେତେ ବିଳାପ ବାଣ୍ଟିଲି, ଶେଷରେ ମୁଁ ତାଙ୍କୁ ସ୍ମରଣ କଲି ଓ ଧ୍ୟାନ କଲି । ସେ ଆସି ଛିଡ଼ାହେଲେ । ତାଙ୍କ ଆଖିରେ ଏକ ନିମଜ୍ଜନତାର ଭାବ– ଯେଉଁ ଭାବ ଦିନେ ଆମ କାଳି ଗାଈଠାରେ ଦେଖିଥିଲି ତା ବାଛୁରୀକୁ କ୍ଷୀର ପିଆଉଥିଲା ବେଳେ । ମୋର କୋହ ବଢ଼ିଗଲା । ଗଦ୍‌ଗଦ ହେଲି । ସେଇ ଅନ୍ଧାରରେ ହାତ ଯୋଡ଼ି ତାଙ୍କୁ ପ୍ରଣାମ କଲି । ସେଥିରେ ମୁଁ ବଞ୍ଚିଗଲି, ଯଦିବା ସେ କୌଣସି ଦେବଦେବୀ ନୁହଁନ୍ତି ।

ମନେକର ଅନ୍ୟ କୌଣସି ଏକ ବିବିକ୍ତ ମୁହୂର୍ତ୍ତ । ଚୈତ୍ରର ଏକ ଅଳସ ମଧ୍ୟାହ୍ନ । ଦିନଟି ରବିବାର । କାନ୍ଥ କ୍ୟାଲେଣ୍ଡରରେ ଉରୁ ଆଉ ସ୍ତନ ଆଉ ବିଛଣାଟି ଖୁବ୍ ନରମ । ତାଙ୍କୁ ସ୍ମରଣ କଲାମାତ୍ରେ ସେ ଆସି ଛିଡ଼ାହେଲେ ଓ କେମିତି ଏକ ଅନ୍ୟ ଆଖିରେ ଚାହିଁଲେ । ତାଙ୍କ ହାତର ସବୁଜ କାଚଚୁଡ଼ି ଭୀଷଣଭାବେ ରୁଣୁଝୁଣୁ ହେଲା । ମୋ ଦେହର କବାଟ ଖୋଲି କେତେ ବୁଲ୍‌ବୁଲ୍ ଉଡ଼ିଗଲେ । କିଛି ସମୟ ପରେ ଅନୁଭବ କଲି ଠିକ୍ ମଧ୍ୟାହ୍ନଟା ଗଡ଼ିଯାଇଛି ।

ତାଙ୍କର ଅନେକ ରୂପ, ଅନେକ ରଙ୍ଗ ।

ମୁଁ ମେରୀ କିମ୍ବା ଯଶୋଦାଙ୍କୁ ଦେଖିନାହିଁ, କିନ୍ତୁ ସେମାନଙ୍କ ନାଁ ଧରିଲେ ଯେଉଁ ଛବି ମୋ ଆଖି ସାମ୍ନାରେ ଭାସିଉଠେ, ସେତେବେଳେ ସେହି ଛବି ସହ ଅନେକ ସାମଞ୍ଜସ୍ୟ ଥାଏ ତାଙ୍କର, ଯେତେବେଳେ ନିର୍ଜନ ସ୍ଥାନରେ ମୋତେ ଡାକି କହନ୍ତି– କହ୍ନେଇରେ, ତୁ ଆଜିକାଲି ଏତେ ଶୁଖିଯାଉଛୁ କାହିଁକି ? ପୁଣି ପିଙ୍ଗଳା ବା କ୍ରିଷ୍ଟିୟାନ କିଲର୍‌ର ଦେହର ବାସ୍ନା ମୁଁ ଜାଣିନଥିଲେ ବି ହଠାତ୍ ସେଇ ବାସ୍ନାରେ ମୁଁ ଆମୋଦିତ

ହୋଇଉଠେ, ଯେତେବେଳେ ସ୍ନାନ ପରେ ସେ ମୋର ଖୁବ୍ ପାଖେ ରହି ତାଙ୍କ ଦେହ ଓ ପିଠି ଉପରର ଖୋଲା କେଶ ଶୁଖାନ୍ତି ।

ମୁଁ ତାଙ୍କୁ କାମନା କରିଛି, ପୁଣି ପ୍ରଣାମ ବି କରିଛି ।

....... ମୋର ଠିକ୍ ମନେ ଅଛି, ଚାରିଆଡ଼େ ନିଆଁ । ଏକ ନଡ଼ାଗଦା ଭିତରେ ଚୁପ୍‌ଚାପ୍ ବସି ରହିଛି ମୁଁ । ରାଣୀ ଆସି କହିଲା–ନିଆଁ ଲାଗିଗଲାଣି – ଶୀଘ୍ର ପଳେଇ ଯାଆନ୍ତୁ । ମୁଁ କିନ୍ତୁ ଦୌଡ଼ିଲି ମୋ ରୁମ୍‌କୁ । ବିରାଟ ତାଲାଟା ବନ୍ଦ କରି ମୁଁ ଅନ୍ୟଆଡ଼େ ଧାଇଁଲି । ରାସ୍ତାରେ ଅପା । ସେ କହିଲା– ସେ ତୋ ପଛରେ ଧାଇଁଛି–ଏଇଠି ଲୁଚିପଡ଼ । ମୁଁ ଗୋଟିଏ କୂଅ ଭିତରକୁ ଡିଆଁ ମାରିଦେଲି । ପାଣି ଭିତରେ ବେକ ପର୍ଯ୍ୟନ୍ତ ବୁଡ଼ାଇ ବସି ରହିଲା ପରେ ମୋର ମନେହେଲା ଯେପରି କିଏ ଡାକୁଛି । ଉପରକୁ ଚାହିଁ ଦେଖିଲି–ମା, ଅପା, ରାଣୀ, ପ୍ରଭାତ– ସମସ୍ତେ । ପ୍ରଭାତ କିନ୍ତୁ ଆଗରୁ ତ ନଥିଲା । ସେ ବୋଧହୁଏ ଖୋଜି ଖୋଜି ଆସିଛି । ମୋତେ ଖୁବ୍ ଶୋଷ ସେତେବେଳେ ମୁଁ ଉଠିଆସିଲି । କେମିତି ଉଠିଲି ଜାଣେନି । କିନ୍ତୁ ଉପରେ କେହି ନଥିଲେ; ସେ କେବଳ ଛିଡ଼ା ହୋଇଥିଲେ ନିର୍ବିକାର ଭାବରେ । ପାଣି ମାଗିଲି । ଆକଣ୍ଠ ପାନ କଲି । ଉପରକୁ ଚାହିଁ ଦେଖିଲି, ମୁଣ୍ଡ ତାଙ୍କର ଆକାଶ ସେପଟେ । ପିଠି ଉପରେ ନୀଳ କେଶ ।

ଶୃଙ୍ଗାରର ଉଦ୍ଦାମତା ଓ ପ୍ରଣିପାତର ଉତ୍କଣ୍ଠା ନେଇ ମୁଁ ପାହାଡ଼-ଝରଣା କୂଳରେ ତାଙ୍କୁ ପ୍ରଣାମ କଲି, ଚୁମ୍ବନ କଲି, ଆଲିଙ୍ଗନ କଲି...

ଦୁଇବର୍ଷ ତଳେ ଯାହାଙ୍କ ଅନ୍ୱେଷଣରେ ମୁଁ ଫେରାର ହୋଇଯାଇଥିଲି, ବର୍ତ୍ତମାନ ମୋ ଦେହର ପ୍ରତିଖୋପରେ ତାଙ୍କ ଠିକଣା ।

ଏଥର ମୁଁ ଫେରିଯିବି ।

**('ଝଙ୍କାର', ୨୨ଶ ବର୍ଷ; ୧୦ମ ସଂଖ୍ୟା, ମକର ୧୩୭୮, ଜାନୁଆରୀ ୧୯୭୧)**



# ଶଫରୀ

କେଉଁ ଏକ ଶ୍ମଶାନରେ ଏବେ ଏକ ପୁରୁଷ ଦେହର ଶେଷ ପୋଡ଼ା ହାଡ଼ର ଟୁକୁରା ଘାସ ଆଉ ଚୁଚୁଡ଼ିର ଚେର ତଳେ ମାଟିସହ କ୍ଷୟ ହୋଇ ଆସୁଥିବା କଥା, ଆଉ ଖୁବ୍ ଦୂର ଗାଁର ଏକ ଜୀର୍ଣ୍ଣ ଛପର ତଳେ ଏକ ନାରୀ ଦେହ ପୃଥିବୀର ପାଣି ପବନରେ ବାର୍ଦ୍ଧକ୍ୟ ଆଡ଼କୁ ମୁହଁକରି ଶ୍ଳଥ ହୋଇଆସୁଥିବା କଥା, ମୁଁ କେବେ ଭାବିନାହିଁ, ଯଦିବା ମୋ ଜନ୍ମର କାରଣ ସେମାନେ । ଯେତେବେଳେ ପୃଥିବୀର ବ୍ୟସ୍ତତା ଭିତରୁ କିଛି ସମୟ ପାଇଁ ଛିଟିକି ବାହାରି ଆସେ, ସେତେବେଳେ ଭିତର ଦର୍ପଣରେ ଚାରୋଟି ଆଖି କେବଳ ଜାଗିଉଠେ । ଷ୍ଟୁଡିଓର ଝାଳବୁହା ତୀବ୍ର ଆଲୋକ ତଳେ କ୍ୟାମେରା ଲେନ୍‌ସକୁ ଅନେଇ ବସିଥିବା କୌତୂହଳ ଆଖି ନୁହେଁ, ବରଂ ଏକ ଭିନ୍ନ ଧରଣର ଆଖି ।

ଖୁବ୍ ଭିତରୁ ବାପା ଶବ୍ଦଟି ଉଚ୍ଚାରଣ କଲେ କାହିଁକି ଯେ ସେଇ ଗୋଟିଏ ବିଶେଷ ଚେହେରା ମୋ ଆଖି ସାମ୍ନାରେ ଭାସିଉଠେ, ମୁଁ କହିପାରିବି ନାହିଁ । ଖୁବ୍ ଚେଷ୍ଟା କଲେ ମଧ ବାପାଙ୍କୁ ସମ୍ପୂର୍ଣ୍ଣ ଏକ ଅବୟବରେ ମୁଁ ଆଦୌ ମନେ ପକାଇ ପାରେ ନାହିଁ । ତଥାପି ଦୁଇଟି ବିଶେଷ ଆଖିସହ ଗୋଟିଏ ଅଧା କାଳ୍ପନିକ ଚେହେରା ମୋ ସାମ୍ନାରେ ଭାସିଉଠେ ।

ଶୈଶବର ସୀମାନ୍ତରେ ମୋର ବୟସ ସେତେବେଳେ ପଇଁତରା ମାରୁଥାଏ । ମୁଁ ଜାଣିନାହିଁ ହଠାତ୍ ସେ ଦ୍ୱିପ୍ରହରରେ କଣ ଗୋଟେ ଘଟିଗଲା । ମୁଁ ଦେଖିଲି, ଅନେକ ଲୋକ, ଅନେକ ପ୍ରକାର ଆଖି । ଦାଣ୍ଡ ଗଡ଼ିଆର ଆମ୍ବଗଛ ମୂଳରେ ଅନେକ ସ୍ତ୍ରୀ ଲୋକ । ସମସ୍ତଙ୍କ ଆଖିରେ ଯେପରି 'ହାୟ' ଶବ୍ଦର ପଟୁଆର । ପୋଖରୀରେ ଜାଲ, ଅନେକ ଲୋକଙ୍କର ବ୍ୟସ୍ତତା । ଶେଷରେ ମାଛ ନୁହେଁ, ଗୋଟିଏ ସାତ ଆଠବର୍ଷର ଝିଅ ଜାଲରେ ଧରା ଦେଲା । ପେଟଟି ସାଙ୍ଘାତିକ ଫୁଲିଯାଇଥିଲା ଓ ଗୋଟିଏ ଆଖି ଅସମ୍ଭବ ରକମର ବଡ଼ ହୋଇଯାଇଥିଲା । ସେ ଝିଅଟି ମୀନା, ମୋ ଭଉଣୀ । ତାପରେ ନାଲି ପଗଡ଼ି, ଅସମ୍ଭବ ଲୁହ, ଶ୍ମଶାନ ଆଡ଼େ କ୍ରନ୍ଦସୀ ପଟୁଆର । ମୁଁ ସେତେବେଳେ ଦେଖିଲି ଦାଣ୍ଡ ଗଡ଼ିଆର ଆମ୍ବଗଛ ମୂଳରେ ଦୁଇଟି ନିଷ୍ପ୍ରଭ ଆଖି, ଲୁହହୀନ, ତେଜହୀନ, ଗୋଟିଏ ମୃତ ଇଲିଶିର ଆଖିଭଳି ନିଷ୍ପଲକ । ସେ ଆଖି ଦୁଇଟି ମୋ ବାପାଙ୍କର ।

ଆଜି ଯେତେବେଳେ ବାପାଙ୍କୁ ମନେପଡ଼େ, ମନେପଡ଼େ ସେଇ ଦୁଇଟି ଭାଷାହୀନ ଆଖି । ମୁଁ ଆଜି ବୁଝିଛି ସେଇ ମୁହୂର୍ତ୍ତରେ ବାପାଙ୍କୁ ଅସମ୍ଭବ ରକମର ଭଲ ଲାଗିଥିଲା । ଜୀବନର ଅନ୍ୟ ମୁହୂର୍ତ୍ତଗୁଡ଼ିକରେ ବାପା ମୋତେ ଖୁବ୍ ଭଲ ପାଉଥିଲେ ମଧ୍ୟ ସେଇ ଗୋଟିଏ ମୁହୂର୍ତ୍ତ ବ୍ୟତୀତ ଅନ୍ୟ ମୁହୂର୍ତ୍ତରେ ଏତେ ସାଙ୍ଘାତିକ ଭଲ ପାଇପାରି ନଥିଲି । କାରଣ ଠିକ୍ ସେଇ ମୁହୂର୍ତ୍ତରେ ଅନୁଭବ କରିଥିଲି ବାପା ଠିକ୍ ନିର୍ଭୁଲ ଭାବରେ ବଞ୍ଚିଛନ୍ତି ।

ଆଉ ମା'ଙ୍କୁ ମଧ୍ୟ ସେମିତି ଗୋଟିଏ ମୁହୂର୍ତ୍ତରେ ମୋତେ ସବୁଠାରୁ ବେଶୀ ଭଲ ଲାଗିଥିଲା । ମା' କଥା ମନେ ପଡ଼ିଲେ ସେଇ ମୁହୂର୍ତ୍ତର ଛବିଟାହିଁ କେବଳ ଦେଖାଯାଏ ।

ଗାଁର ଏକ ବୀଭତ୍ସ ଅନ୍ଧକାର ରାତ୍ରି । ବାହାରେ ଝଡ଼ଟା ଅନେକବେଳୁ ଥମି ଯାଇଥିଲା । ବୃଷ୍ଟି ବି କ୍ଳାନ୍ତ ହୋଇଯାଇଥିଲା । ବାରିପଟେ କେଉଁ ଏକ ପୁରୁଣା ଡବା କିମ୍ବା ଭଙ୍ଗା ଟିଣ ଉପରେ ଚାଳରୁ ଝରୁଥିବା ଅବଶେଷ ବର୍ଷାପାଣିର ଠକ୍ ଠକ୍ ଭୌତିକ ଶବ୍ଦ । ବିଜୁଳି ଝରକା ଫାଙ୍କ ଦେଇ ମୁହଁ ଦେଖାଇ ଲୁଚି ପଡୁଥିଲା, ଆଉ ଦୂର ଦିଗ୍‌ବଳୟରେ ମେଘର ଗୁଡ଼୍ ଗୁଡ଼୍ ଶବ୍ଦ । ଝର୍କା ଉପରେ ଅଧା କଳା ପଡ଼ିଯାଇଥିବା ଧୂମାୟିତ ଲଣ୍ଠନ । ଖଟମୁଣ୍ଡ ପାଖ ଝର୍କା ଉପରେ ବିଭିନ୍ନ ରଙ୍ଗର ଔଷଧ, ପାଣିଗ୍ଲାସ । ପାଖ ମସିଣାରେ ଏଣେତେଣେ ଗୋଡ଼ ମୁଣ୍ଡ ରଖି ଶୋଇପଡ଼ିଥବା ତିନୋଟି ଭାଇଭଉଣୀ ସମେତ ମୁଁ । କେବଳ ମଶାର ଗୁଣୁଗୁଣୁ କାନ୍ଦ ଆଉ ମା'ଙ୍କର ପଣତକାନିର ଛୁଆଁ । ଦୂରରେ ତିନି ଚାରୋଟି ପଡ଼ୋଶୀ ସ୍ତ୍ରୀଲୋକ ଆଉ ସେମାନଙ୍କ ହାତରେ ବି ଧୂମାୟିତ ଲଣ୍ଠନ ଏବଂ ଖଟରେ ବାପାଙ୍କ ଦେହ । ଯେତେବେଳେ ମୁଁ ତନ୍ଦ୍ରାର ଢେଉରେ ଚହଲି ଚହଲି ଦୂରକୁ ଚାଲିଯାଉଥିଲି, ହଠାତ୍ ମା'ଙ୍କର ଚିତ୍କାର ଶୁଣି ଉଠିବସିଲି । ବାପାଙ୍କ ମୁହଁରେ କମ୍ବଳ ଘୋଡ଼ାଇ ଦିଆଯାଇଥିଲା । ଝାଳ ସରସର ମୁହଁରେ ମା' ଏକାଦିକ୍ରମେ ଦୁଇଥର ଚିତ୍କାର କରି ମୋତେ ଚାହିଁ ହଠାତ୍ ନିଶ୍ଚଳକ ହୋଇଗଲେ । ମୁଁ କିଛି କଥା ବୁଝି ପାରିଲି ନାହିଁ । କିନ୍ତୁ ଯେତେବେଳେ ସେଇ ରାତିରେ ବାରିପଟ ଆମ୍ବଗଛରେ କୁରାଢ଼ି ଚୋଟ ବସିଲା ଏବଂ ମା'ଙ୍କ ବ୍ୟତୀତ ଅନ୍ୟମାନେ ସଙ୍ଗୀତଧର୍ମୀ ଭୌତିକ କାନ୍ଦ କାନ୍ଦିବାକୁ ଲାଗିଲେ ସେତେବେଳେ ମୋ ସାମ୍ନାର ଅନ୍ଧକାରଟା ଫର୍ଚ୍ଚା ହୋଇଉଠିଲା । କିନ୍ତୁ ଆଜି ଅନେକ ଦିନ ପରେ ମା'ଙ୍କୁ ମନେ ପଡ଼ିଲେ ଝର୍କାରେ କଳା ପଡ଼ିଯାଇଥିବା ଧୂମାୟିତ ଲଣ୍ଠନ ସହ ଝାଳ ସରସର ମୁଖମଣ୍ଡଳ ଭିତରେ ଦୁଇଟି ନିଶ୍ଚଳକ ବାଷ୍ପହୀନ ଆଖି । ମୁଁ ଆଜି ବୁଝିଛି, ମା'ଙ୍କୁ ସେଇ ମୁହୂର୍ତ୍ତରେ ଯେତେ ଭଲ ପାଇଥିଲି, ଜୀବନର ଅନ୍ୟ କୌଣସି ମୁହୂର୍ତ୍ତରେ ଏତେ ଭଲ ପାଇପାରିବି ନାହିଁ । ପୃଥିବୀରେ ଯେଉଁମାନେ ଭୀଷଣଭାବେ ଚାଲବୁଲ ହେଉଛନ୍ତି, କଥାରେ କଥାରେ ସାଙ୍ଘାତିକ ହସୁଛନ୍ତି, ବିଭିନ୍ନ ଭଙ୍ଗୀ ଦେଖାଇ ବାକ୍ୟାଳାପ କରୁଛନ୍ତି, ସେମାନେ ବଞ୍ଚିଛନ୍ତି କିନା ମୁଁ ଜାଣେ ନାହିଁ । କିନ୍ତୁ ମୁଁ ବଞ୍ଚିଛି ବୋଲି ସେତେବେଳେ ଜାଣିପାରେ ଯେତେବେଳେ ଚୁପ୍‌ଚାପ୍ ବସି କାନ

ଡେରି ଶୁଣେ ମୋ ଭିତରେ ଛାପାଖାନାର ଶବ୍ଦ । ବିଭିନ୍ନ ଆକୃତିର ଅକ୍ଷର ଯୋଡ଼ାଯାଇ ଏକ ଅଦୃଶ୍ୟ ପାଣ୍ଡୁଲିପି ପ୍ରସ୍ତୁତ ହେଉଥିବାର ସୂଚନା ମୁଁ ଅନୁଭବ କରେଁ ମୋର ସ୍ନାୟୁକୋଷରେ । ଆଉ ରକ୍ତନଦୀରେ ଭାସିଯାଉଥିବା ପ୍ରତିଟି ଅକ୍ଷର ତଳେ ଯେତେବେଳେ ଯନ୍ତ୍ରଣା ଆଉ ଦୁଃଖର ଶଫରୀ ମୁଣ୍ଡ ହଲାଇ ଖେଳିବୁଲେ, ସେତେବେଳେ ମୁଁ ଅନୁଭବ କରେ ମୁଁ ବେଶ୍ ବଞ୍ଚିଛି । ହଠାତ୍ ମୋର ମନେହୁଏ, ଏ ପୃଥିବୀରେ ଜୀବନର ଯଥେଷ୍ଟ ମାନେ ଅଛି । ବାପା ମା' ପ୍ରେମିକା ଗଛଲତା ସୁନ୍ଦରୀ ତରୁଣୀ ପୁଣି ହିଂସା ଘୃଣା ସନ୍ଦେହ ଇତ୍ୟାଦିର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଅର୍ଥ ଅଛି । ପୁଣି ସେଇ ଅର୍ଥର ଅନୁଭବ ଶରୀରର ନିଭୃତତମ ଚେତନାର କେଉଁ ଅଦୃଶ୍ୟ ତାରରେ ବାଜି ଏକ ଅବ୍ୟକ୍ତ ଝଙ୍କାର ତୋଳେ । ସେ ଝଙ୍କାର ମୋର ପାଦନଖଠାରୁ ମୁଣ୍ଡବାଳ ପର୍ଯ୍ୟନ୍ତ ସମଗ୍ର ସ୍ନାୟୁକୋଷରେ ସଞ୍ଚରିତ ହୋଇ ଆଉଥରେ ପ୍ରମାଣ କରେ, ମୁଁ ବଞ୍ଚିଛି ଓ ସାଙ୍ଘାତିକଭାବେ ବଞ୍ଚିଛି । ଯେତେବେଳେ ଗାଁରୁ ଚିଠି ଆସେ ମା'ଙ୍କ ଦେହ ଖରାପ, ମୁଁ କେବଳ ଶୂନ୍ୟ ପକେଟରେ ହାତ ରଖି ଚିଠି ହିଁ ପଢ଼େ ଅଥବା ମୋ ପ୍ରେମିକାର ବାପା କଟକର କେଉଁ ଅଭିଜାତ ପରିବାରର ଠିକଣା ଲେଖି ତାଙ୍କ ଝିଅର ଫଟୋ ଆଉ ଜାତକ ପଠାଇଦିଅନ୍ତି, ସେତେବେଳେ ମୁଁ ଅନୁଭବ କରେ ଖୁବ୍ ଭିତରର ଆକାଶରୁ କଳାହାଣ୍ଡିଆ ମେଘ ଖଣ୍ଡେ ଅନେକ ଝଡ଼ ନେଇ ଉଠାଇ ଆସୁଛି । ହେମାଳ ପବନ ସଙ୍ଗେ ବିଜୁଳି ବର୍ଷା ହେବାକୁ ଆରମ୍ଭ କରୁଛି । ଭିତରର ନଈ ନାଳ ପୋଖରୀ ପୂର୍ଣ୍ଣ ହୋଇଯାଇ ପ୍ରାଣହୀନତାର ବୀଭତ୍ସ ଗହ୍ୱର ସବୁ ଲୀନ ହୋଇଯାଉଛି । କିନ୍ତୁ ଯେତେବେଳେ ସମସ୍ତ ଆତ୍ମୀୟ ଅନାତ୍ମୀୟଙ୍କ ଦେହ ସଂପୂର୍ଣ୍ଣ ସୁସ୍ଥ ଥାଏ ଅଥବା ମାସର ପ୍ରଥମାର୍ଦ୍ଧରେ ମୁଁ ସାଙ୍ଗସାଥୀ ଗହଣରେ ରେଷ୍ଟୋଁରା କାଉଣ୍ଟରରେ ବା ସିନେମା ଖିଡ଼ିକିରେ ପଇସା ବଢ଼ାଏଁ ଅଥବା କୌଣସି ଏକ ମାହେନ୍ଦ୍ରବେଳାରେ ପ୍ରେମିକାର ଦେହର ବାସ୍ନା ମୋର ପ୍ରତି ଲୋମକୂପରେ ସଞ୍ଚରିତ ହୋଇଯାଏ, ସେତେବେଳେ ମନେହୁଏ ଦେହ ଭିତରର ଛାପାଖାନାରେ ଯେପରି ଶ୍ରମିକ ଧର୍ମଘଟ ହୋଇଛି ଆଉ ରକ୍ତନଦୀରେ ଯନ୍ତ୍ରଣା ଓ ଜୀବନର ଶଫରୀ ନିସ୍ତେଜ ହୋଇ ଶୋଇଯାଇଛି ଏବଂ ମୁଁ କ୍ରମେ କ୍ରମେ ପୃଥିବୀର ସବୁ ପଦାର୍ଥର ଭିନ୍ନ ଭିନ୍ନ ଅର୍ଥ ଭୁଲି ଶବ ପାଲଟିଯାଉଛି ।

ମା', ତୁମକୁ କେମିତି ବୁଝାଇବି ଯେ ମୁଁ ବଞ୍ଚିବାକୁ ଚାହେଁ ଏବଂ ସେଥିପାଇଁ ତୁମେ ଏତେ ଦୁଃଖ ପାଉଛ । ତୁମେ ହୁଏତ କିଛି ପାପ କରିଥିଲ, ନହେଲେ ମୋର ମା' ହୁଅନ୍ତ ନାହିଁ । ତୁମେ ଯେତେବେଳେ ମାତୃତ୍ୱର ଗର୍ବ ଗୌରବକୁ ମୂଳଧନ କରି ମୋତେ ଗର୍ଭାଶୟର ନୀଳ ଅନ୍ଧକାରରେ ଲୁଚାଇ ରଖିଥିଲ ସେତେବେଳେ କଣ ଜାଣିଥିଲ ତୁମର ସମସ୍ତ ଦୁଃଖର କାରଣ ମୁଁ ହେବି ବୋଲି ? ବିଶ୍ୱାସ କର, ପୃଥିବୀରେ ଅନ୍ୟମାନଙ୍କ ନିକଟରେ ବଞ୍ଚିରହିବାର ମାନେ ଯାହା ମୋ ପାଖରେ ଆଦୌ ତାହା ନୁହେଁ । ତେଣୁ ମୋ ଜରୁଆ ମଥାରେ ତୁମର ହାତପାପୁଲି ମୁଁ ଚାହେଁନା, ତୁମେ ତୁମର ସବୁ ଭଲପାଇବା

ଦେଇ ମୋ ପାଇଁ ବ୍ୟାକୁଳ ହୁଅ । ମୋ ପାଇଁ ଯଦି ତୁମେ ଅସ୍ଥିର ହେବ ତାହେଲେ ମୁଁ ମରିଯିବି । କାରଣ ତୁମେ ଯେତେବେଳେ ମୋତେ ଅନାଇ ଅନାଇ ହାଣ୍ଡିଶାଳରେ ନିଦରେ ଝୁଙ୍କି ପଡ଼ିଛ, ମୋ ପାଇଁ ତୁମ ଆଖିରେ ଲୁହ ଜକେଇ ଆସିଛି, ସେତେବେଳେ ମୋତେ ମନେ ହୋଇଛି ମୋର ଛାପାଖାନାରେ ବଡ଼ ତାଲା ଝୁଲୁଛି ଏବଂ ମୁଁ କ୍ରମେ ବଞ୍ଚିବାର ଅର୍ଥ ଭୁଲି ଶବ ପାଲଟି ଯାଉଛି । ମୁଁ ଯେ ଯନ୍ତ୍ରଣା ଚାହେଁ । ତୁମକୁ ଭଲ ପାଇଛି ତୁମର ତୀବ୍ର ଯନ୍ତ୍ରଣାମୟ ମୁହୂର୍ତ୍ତରେ । ମୁଁ ମଧ୍ୟ ମୋତେ ଭଲ ପାଇ ବଞ୍ଚାଇରଖି ପାରିବି ସେଇ ମୁହୂର୍ତ୍ତରେ ଯେତେବେଳେ ଯନ୍ତ୍ରଣାର ଶଫରୀ ମୋର ଚେତନାସ୍ରୋତରେ ଲାଞ୍ଜ ମୁଣ୍ଡ ହଲାଇ ଖେଳିବୁଲିବେ । ମା', ତେଣୁ ବଞ୍ଚିବା ପାଇଁ ତୁମର ପଣତ ଛାଡ଼ି ସହରରେ ରହି ପଢ଼ିବା ଆଳରେ ତୁମଠାରୁ ମୁଁ ଦୂରେଇ ଆସିଲି । ଯେଉଁଠାରେ ଗୋଟିଏ ପରିପୂର୍ଣ୍ଣ ମାତୃମୂର୍ତ୍ତିପାଇଁ ସବୁବେଳେ ବ୍ୟାକୁଳ ହେଉଛି । ଗୋଟିଏ ପରିଚିତ ମସିଆ ପଣତର ହାୱାପାଇଁ ଅଣନିଶ୍ୱାସୀ ହୋଇ ଉଠୁଛି । ଏକ ହଳଦୀଲଗା ହାତ ପାପୁଲିର ସ୍ପର୍ଶ ଅଭାବରେ ମୋର ନୁଖୁରା ମୁଣ୍ଡ ନେଇ ମୁଁ ସକାଳସନ୍ଧ୍ୟା ଖରାବର୍ଷାରେ ବୁଲୁଛି । କେଉଁ ବର୍ଷଣମୁଖର ରାତିରେ ଜ୍ୱରର ଯନ୍ତ୍ରଣାରେ ଚିତ୍କାର କରି ସେଇ ଗୋଟିଏ ଅକ୍ଷରର ଶବ୍ଦ ହିଁ ଜପ କରୁଛି । ମା', ତୁମେ ପାଖରେ ଥିଲେ ତୁମ ପାଇଁ ମୋର ଏତେ ବ୍ୟାକୁଳତା ନଥାନ୍ତା । ମୁଁ ଜାଣି ନଥାନ୍ତି ତୁମେ କି ପଦାର୍ଥ । ମୋର ସ୍ନାୟୁକୋଷରେ ଶଫରୀ କଲବଲ ହୋଇ ଖେଳନ୍ତା ନାହିଁ । ମୁଁ କ୍ରମେ ବଞ୍ଚିବାର ଅର୍ଥ ଭୁଲିଯାଆନ୍ତି । କିନ୍ତୁ ମୁଁ ବଞ୍ଚିବାକୁ ଚାହେଁ । ତେଣୁ ଅନେକ ଚାକିରିର ଇଣ୍ଟରଭିୟୁରେ ମୁଁ ଜାଣିଜାଣି ପହଞ୍ଚେ ନାହିଁ ଏବଂ ଶେଷରେ ପ୍ରାପ୍ତ ଚାକିରିଟିକୁ ମଧ୍ୟ ତ୍ୟାଗକଲି କେବଳ ବଞ୍ଚିବା ପାଇଁ । ମା', ତୁମେ ଯେତେବେଳେ ମୋର ମା ହୋଇଛ, ମୋ ଅର୍ଥାଭାବରେ ବ୍ୟାକୁଳହୋଇ ଭିତର କଳକାରଖାନାର ଶବ୍ଦ ଶୁଣିବାକୁ ଚେଷ୍ଟାକର ଏବଂ ଯନ୍ତ୍ରଣାର ଶଫରୀକୁ ଉତ୍ତେଜିତ କରି ବଞ୍ଚିବାର ମୃତସଞ୍ଜୀବନୀ ସଂଗ୍ରହ କର । ବିଶ୍ୱାସକର, ମୁଁ ପାଗଳ ହୋଇଯାଇନି । କେବଳ ମୁଁ ବଞ୍ଚିବାକୁ ଚାହେଁ ସଙ୍ଘର୍ଷର ବେଦୀ ଉପରେ । ବାହାରର ଝଡ଼ଭିତରେ ଏବଂ ବନ୍ଦ କୋଠରିର ଆବଦ୍ଧ ବାୟୁରେ ମହମବତି ଜଳାଇରଖିବା ଯେ ସମାନ କାର୍ଯ୍ୟ ନୁହେଁ । ତେଣୁ ତୁମେ ଦୁର୍ଦ୍ଦଶା ଭିତରେ ବଞ୍ଚିରହି ଜୀବନର ଅର୍ଥ ବୁଝିବାକୁ ଚେଷ୍ଟାକର ଏବଂ ମୋତେ କ୍ଷମା କର ।

ଦେବି, ତୁମକୁ କେମିତି ବୁଝାଇବି ଯେ ମୁଁ ବଞ୍ଚିବାକୁ ଚାହେଁ ଏବଂ ସେଥିପାଇଁ ତୁମେ ଏତେ ଦୁଃଖ ପାଉଛ । ତୁମେ କାନ୍ଦୁଛ ସତରେ ମୋତେ ଭଲ ଲାଗୁଛି । ମୂର୍ତ୍ତି କାନ୍ଦିପାରେ ନାହିଁ । ତେଣୁ ତୁମେ ବଞ୍ଚିଛ । ମୋର କ'ଣ ଦୋଷ କୁହ ? ମୁଁ କଣ ତୁମ ସହ ପ୍ରେମ କରୁଥିଲି ଜାଣି ଜାଣି ? ତୁମେ ଯଦି ସତରେ ମୋତେ ଭଲ ପାଅ, ତାହେଲେ ପୃଥିବୀର ଶ୍ରେଷ୍ଠ ପାପ କରିଛ । ଜାଣ, ମୁଁ ଆଉ କିଛି ଚାହେଁନି, କେବଳ

ବଞ୍ଚିବାକୁ ଚାହେଁ । ତୁମଭଳି ଏମାନଙ୍କ ଭଳି ଶବ ଭଳି ବଞ୍ଚିବାର ଇଚ୍ଛା ମୋର ଆଦୌ ନାହିଁ । ତେଣୁ ତୁମେ ଯଦି ପ୍ରକୃତରେ ବଞ୍ଚିବାକୁ ଚାହଁ ତେବେ ମୋତେ କେବଳ ଭଲପାଅ । ତୁମର ମହାଧମନୀରେ ଶୋଇଯାଇଥିବା ଯନ୍ତ୍ରଣାର ଶଫରୀକୁ ଉଠାଇ ସାରା ସ୍ନାୟୁକୋଷକୁ ବଞ୍ଚିବାର ସମ୍ବାଦ ପଠାଇଦିଅ । ତୁମ ଅଭ୍ୟନ୍ତରରେ ମୋ ପାଇଁ ଉଠି ଆସୁ କଳାହାଣ୍ଡିଆ ମେଘ, ତୁମର ଲୋମକୂପରେ ବାଜିଉଠୁ ଦିଗ୍‌ବଳୟ ମେଘର ଗୁଡୁ ଗୁଡୁ ଶବ୍ଦ । ତୁମେ, ମୁଁ ଓ କୋଣାର୍କର ମୈଥୁନ ମୂର୍ତ୍ତି ଭିତରେ ପାର୍ଥକ୍ୟ ରହିଲା କ'ଣ ? ମୁଁ ଚାହେଁ ତୁମେ ମୋଠାରୁ ଦୂରେଇଯାଅ । କାରଣ ଏଠାରେ ସବୁ ଜିନିଷ ସହଜରେ ପାଇଗଲେ ମୃତ୍ୟୁ ହୋଇଯାଏ । ତେଣୁ ତୁମେ ମୋ ପାଇଁ ପ୍ରତ୍ୟାଖ୍ୟାନର ଶବ୍ଦ ଉଚ୍ଚାରଣ କର, ଘୃଣାର ପାଣ୍ଡୁଲିପି ପଢ଼ି ଶୁଣାଅ, ତୁମେ ରହସ୍ୟମୟୀ ହୋଇଯାଅ, ଦୁଷ୍ପ୍ରାପ୍ୟ ହୋଇଯାଅ, ମୁଁ ଯେପରି ସକାଳ ସଞ୍ଜରେ ତୁମକୁ କାମନା କରେ, ମଧ୍ୟାହ୍ନ ମଧ୍ୟରାତ୍ରିରେ ସ୍ମରଣ କରେ, ଆଣ୍ଠୁମାଡ଼ି ଯୋଡ଼ି ହାତରେ ଯେପରି ତୁମକୁ ପ୍ରାର୍ଥନା କରେ, ତୁମ ପାଇଁ ଯେପରି ଏ ପୃଥିବୀର ଦରିଦ୍ରତମ ଭିକ୍ଷୁକ ସାଜେ । ତାହେଲେ ଅନୁଭବ କରିବି ମୋ ଭିତରେ ଛାପାଖାନାର ଦ୍ରୁତ ଶବ୍ଦ, ଅକ୍ଷର ପରେ ଅକ୍ଷର ଯୋଡ଼ି ତୁମର ପ୍ରଶସ୍ତି ପ୍ରସ୍ତୁତ ହେଉଥିବାର ଯନ୍ତ୍ରଣା । ଦେବି, ତୁମକୁ ସବୁଠାରୁ ବେଶୀ କେବେ ଭଲ ଲାଗିଥିଲା ଜାଣ ? ସେଦିନ ନଦୀକୂଳରେ ସଂଧ୍ୟା ସମୟରେ କହିଥିଲ ତୁମେ କୁଆଡ଼େ ମୋର ଶ୍ରେଷ୍ଠ ଶିଳ୍ପକୁ ଗର୍ଭାଶୟର ନୀଳ ଅନ୍ଧକାରରେ ବଢ଼ାଇବାରେ ଲାଗିଛ ଏବଂ ମୁଁ ହସି ହସି ବେଦମ ହୋଇ ତୁମକୁ କହିଛି–ତୁମସହ ମୋର ବିବାହ କେବେ ହୋଇପାରେନା । ତୁମେ ବି ହସିଛ । କିନ୍ତୁ ଯେତେବେଳେ ନଦୀ ଭିତରେ ଭାସିଯାଉଥିବା ଖାଲି ନୌକାକୁ ଦେଖାଇ ତୁମକୁ ସବୁକଥା ବୁଝାଇ ଦେଇଛି, ସେତେବେଳେ ତୁମ ମୁହଁ ଝାଳ ସରସର ହୋଇ ଉଠିଛି ଏବଂ ତୁମେ ନିଷ୍ପଲକ ଆଖିରେ ମୋତେ ଚାହିଁରହିଛ । ସେଇ ମୁହୂର୍ତ୍ତରେ ହିଁ ତୁମକୁ ସତରେ ସାଂଘାତିକ ଭଲ ଲାଗିଛି । ଦେବି, ତୁମକୁ ଯଦି ସବୁଦିନ ପାଇଁ ନିଜର କରିନିଏ ତାହେଲେ ଏ ପ୍ରକାର ଭଲପାଇ ପାରିବିନି । ତେଣୁ ତୁମକୁ ପ୍ରକୃତରେ ଭଲପାଇବାକୁ ହେଲେ ଏବଂ ମୋତେ ବଞ୍ଚାଇ ରଖିବାକୁ ହେଲେ ତୁମେ ଦୁର୍ଲଭ ହୋଇଯିବା ଉଚିତ, ଦୁଷ୍ପ୍ରାପ୍ୟ ହୋଇଯିବା ଆବଶ୍ୟକ । ବିଶ୍ୱାସକର, ତୁମକୁ ଠକିବା ପାଇଁ ମୁଁ ଏକଥା କହୁନାହିଁ । ତୁମେ ଆଜି ନ ହେଲେ କାଲି ମା' ହୋଇଥାନ୍ତ । ତେଣୁ ସୀମନ୍ତରେ ସିନ୍ଦୂର ଗ୍ରହଣ ନ କରି ଗର୍ଭାଶୟରେ ଭ୍ରୂଣ ଗ୍ରହଣ କରିବା ଆଦୌ ପାପ ନୁହେଁ । ବରଂ ଏଥିରୁ ତୁମେ ନୂଆ ପ୍ରକାର ବଞ୍ଚିବାର ସ୍ୱାଦ ଖୋଜିପାଇବ । ମୁଁ ଚାହେଁ ତୁମେ ତୁମକୁ ଅନୁଭବ କର ଦୁଃଖ ଓ ଯନ୍ତ୍ରଣାର ସ୍ନାୟୁକୋଷ ମଧ୍ୟରେ, ଆଉ ମୋ ଭଳି ବଞ୍ଚି ରହିବାର ଉପାଦାନ ସଂଗ୍ରହ କର । ଦେବି, ମୋତେ ଭଲପାଇ ଯଦି ତୁମେ ସାଂଘାତିକ ଭୁଲ କରିଛ ବୋଲି ଭାବୁଥାଅ ତାହେଲେ ମୁଁ ଆଦୌ ଦୁଃଖିତ ନୁହେଁ ଏବଂ ଯଦି ସମ୍ଭବ ହୁଏ ମୋତେ କ୍ଷମା କରିପାର ।

ମୁଁ ନିଜକୁ ଖୁବ୍ ବେଶୀ ଭଲ ପାଇବାକୁ ଚାହେଁ କିନା କେବେ ଭଲ ଭାବେ ଭାବିନାହିଁ । ମୁଁ ଦୁଃଖ ଚାହିଁଛି, ସଂଗ୍ରହ କରି ନେଇଛି ଯନ୍ତ୍ରଣା, ଚାହିଁଛି, ଖୋଜି ବାହାର କରି ନେଇଛି–କେବଳ ବଞ୍ଚିବା ପାଇଁ । ମୋତେ ଖୁବ୍ ବେଶୀ ଭଲ ଲାଗିବାର ମୁହୂର୍ତ୍ତ ଯଦିବା କମ୍ ତଥାପି ଗୋଟିଏ ମୁହୂର୍ତ୍ତ ବେଶ୍ ମନେପଡ଼େ ।

ସେଦିନ ରାତି ଅଧରେ ଦେଖିଲି ମୁଁ ଗୋଟିଏ ପୋଲ ତଳେ ଖସି ପଡ଼ିଛି । ପୋଲ ତଳେ ପାଣି ଏବଂ ତଥାପି ମୋର ସମ୍ପୂର୍ଣ୍ଣ ମୃତ୍ୟୁ ହୋଇନାହିଁ । ପାଖରେ ମା, ବାପା, ଦେବୀ, ସାଙ୍ଗସାଥୀ, କେହି ନାହାନ୍ତି । ଗୋଟିଏ କୁକୁର କୁଆଡୁ ଆସି ମୋର କାନ କାମୁଡ଼ି ଟାଣି ନେବାର ଉପକ୍ରମ କରୁଛି ଏବଂ ପାଦ ପାଖରେ ଗୋଟିଏ ବିଲୁଆ କି କ'ଣ ପାଦର ହାଡ଼କୁ କଟ୍‌କଟ୍ କରି ଅନ୍ଧକାରରେ ଚୋବାଇବାରେ ଲାଗିଛି । କ୍ରମେ ମୋର ଗୋଟିଏ ଆଖିରେ ହାତଦେଇ ଅନୁଭବ କରୁଛି କଙ୍କାଳର ଆଖିଭଳି ମୋ ଆଖି କୋଟରଟା ସାଂଘାତିକ ବଡ଼ ଆଉ ଶୂନ୍ୟ କେବଳ କିଛି ତରଳ-ପଦାର୍ଥ । କାଦୁଅରେ ବଟକର ଥଣ୍ଟ ଚୁକ୍‌ଚୁକ୍ ଶବ୍ଦ କଲାପରି ଗୋଟିଏ ଅତିକାୟ ପକ୍ଷୀର ଥଣ୍ଟ ଆଖି କୋଟରର ତରଳ ପଦାର୍ଥକୁ ଶବ୍ଦ କରି ଶୋଷି ନେଉଛି । ଅନେକ ଗୁଡ଼ିଏ ଥଣ୍ଟ, ନଖ, ଦାନ୍ତ ମିଶି ମୋର ନାଭିଦେଶକୁ ଗର୍ତ୍ତକରି ପକାଉଛନ୍ତି । କ୍ରମେ ମୋ ପାକସ୍ଥଳୀ, ହୃତପିଣ୍ଡ, ଫୁସ୍‌ଫୁସ୍ ଇତ୍ୟାଦି ଉପାଡ଼ି ହୋଇ ବାହାରକୁ ବାହାରି ଆସୁଛି ଏବଂ ମୁଁ କ୍ରମଶଃ ପୃଥିବୀର ପଶୁପକ୍ଷୀର ପାକସ୍ଥଳୀକୁ ବଣ୍ଟା ହୋଇଯାଉଛି । ଏକ ବନ୍ଧ୍ୟା ଜରାୟୁସ୍ଥ ଭ୍ରୂଣ ଭଳି ମୁଁ କ୍ରମେ ନିଃଶେଷ ହୋଇଯାଉଛି । ଆକାଶ ଆଡ଼େ ପୋଲ ଉପରେ ଅନ୍ୟ ଏକ ମୁଁ ଛିଡ଼ା ହୋଇ ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କରି ଉଠିଛି – ଆହା ବିଚରା ! କେତେ ଭୀଷଣ ଭଲ ଏଇ ଲୋକଟା । ଝାଳ ସରସର ଦେହରେ ମୁଁ ବିଛଣାରୁ ଉଠି ପ୍ରମାଣ କରିବାକୁ ଚାହିଁଛି, ଆଲିଙ୍ଗନ କରିବାକୁ ଚାହିଁଛି, ଚୁମ୍ବନ କରିବାକୁ ଚାହିଁଛି କେବଳ ମୋତେ । ସେତେବେଳକୁ ଚେତନାର ବଳୟରେ ମୁଁ ଏକ ଓ ଅଭିନ୍ନ ।

ଠିକ୍ ସେହି ମୁହୂର୍ତ୍ତରେ ବାପା ମା'ଙ୍କୁ ଓ ଦେବୀ ଉଦ୍ଦେଶ୍ୟରେ ପ୍ରଣାମ କରିଛି ଏବଂ ଭିତର ଉପତ୍ୟକାରେ ଭୀଷଣ ଝଡ଼ ବୃଷ୍ଟି ହୋଇ ମୃତ୍ୟୁ ଗହ୍ୱର ସବୁ ସମତଳ ହୋଇ ଉଠିଛି । ମୁଁ ଭୀଷଣ ଭାବେ ଅନୁଭବ କରିଛି, ମୋ ଭିତରେ ବଞ୍ଚି ରହିବାର ଉପନ୍ୟାସ ଦ୍ରୁତ ଛପା ଚାଲିଛି । ଏବଂ ସେଇ ଆନନ୍ଦ ଓ ଯନ୍ତ୍ରଣାର ଶଫରୀ ସାଂଘାତିକ ଉତ୍ତେଜିତ ହୋଇ ମୋର ସମଗ୍ର ସ୍ନାୟୁକୋଷରେ ବଞ୍ଚିବାର ବାର୍ତ୍ତା ପହଞ୍ଚାଇ ଦେଉଛି ।

(କନ୍‌ହେଇନାମା, କନ୍‌ହେଇ ସାହିତ୍ୟ ବିଚିତ୍ରା)



# ଜୀବନଯାପନ

## (କନ୍‌ହେଇଲାଲ ଦାସଙ୍କୁ ଅନ୍ତରଙ୍ଗ ସ୍ମୃତିର ଆଲେଖ୍ୟ)

ଲେଖକ: ରତି ମିଶ୍ର

ଅଥଚ ଖୁବ୍ ଚୁପ୍‌ଚାପ୍ ଭାବରେ ଘଟଣାଟା ଘଟିଗଲା, ଖୁବ୍ ନୀରବରେ, ପଥର ଉପରକୁ ମେଞ୍ଚାଏ ଅନ୍ଧାର ଓହଳି ଆସିଲା ପରି, ସେଇ ଦୂରର ବତିଖୁଣ୍ଟର ଆଲୋକଟା ଥିର୍‌କିନା ଲିଭିଗଲା ପରି ।

କୌଣସି ଏକ ଝାପ୍‌ସା ଦ୍ୱିପ୍ରହରରେ ଆମେ ସମସ୍ତେ ଯେତେବେଳେ ନୀରବରେ ଗାଡ଼ିରେ ଯାତ୍ରା କରୁଥିଲୁ, ସିଏ ହଠାତ ଆମକୁ 'କୁହେଳି' କୁ ଖୋଜିବା କଥା କହିଲା । ଆମେ ତାକୁ ଚିହ୍ନିନୁ । କିନ୍ତୁ 'କୁହେଳି' କନ୍‌ହେଇର ଖୁବ୍ ନିଜର । ହୃଦୟର କୋଉ ସୂକ୍ଷ୍ମ ତନ୍ତ୍ରୀରେ ସିଏ ଆଘାତ କରୁଥିଲା । ଅଥଚ ଦିନେ ହଜିଗଲା ସିଏ ଏବଂ ଯା'ର ଯନ୍ତ୍ରଣା ଆରମ୍ଭ ହେଲା । ସେଇ ଯନ୍ତ୍ରଣାରେ କନ୍‌ହେଇ ନିଜକୁ ସନ୍ତୁଳି ସନ୍ତୁଳି ହଠାତ୍ କେତେବେଳେ ଏକ ଅନାମଧେୟ ଅପନ୍ତରା ରାଜ୍ୟରେ, ନିଜର ଯାତ୍ରାର ଟିକଟକୁ ନିରର୍ଥକ କରି, ଆମକୁ ନ କହି ଚୁପ୍ ହୋଇଗଲା- ଚୁପ୍ ଚାପ୍ ନୀରବରେ, ପଥର ଉପରକୁ ମେଞ୍ଚାଏ ଅନ୍ଧାର ଓହଳି ଆସିଲା ପରି । ଦୂରର ବତିଖୁଣ୍ଟର ଆଲୋକ ପରି ସେ ଲିଭିଗଲା ଥିରକିନା ।

କିଏ ଅବା ଜାଣିଥିଲା ହଠାତ୍ ଉଠିବ ଝଡ଼, ସେ ଝଡ଼ରେ କ୍ଳାନ୍ତଶ୍ରାନ୍ତ ପକ୍ଷୀପରି ସେ (ତୁ) ଉଠିବ ଉଚ୍ଚକୁ ଓ ହଠାତ୍ ଏକାକରି ସେ (ତୁ) ହୁଏତ କେବେ ଫେରିବନି ।

(ଭଗବାନ ଜୟସିଂହ)

କିନ୍ତୁ ନା । ସିଏ ନିଜେ ଜାଣିଥିଲା ଯେ ସିଏ ଦିନେ ଏମିତି ଚୁପ୍ କିନା ଗାଡ଼ିରୁ ଓହ୍ଲେଇଯିବ, ଏବଂ ଆଉ ଫେରିବନି ।

ତେଣୁ ସେ ଲେଖିଥିଲା–

* ମୋ ଅଜାଣତରେ ପେଟରେ ଏକ ଦୁରାରୋଗ୍ୟ ବ୍ୟାଧି ମାଡ଼ିବାକୁ ଆରମ୍ଭ କଲାଣି ।

* ଭିତରର ରୋଗଟାକୁ ଟିକିଏ ଶସ୍ତା ଔଷଧ ଆବିଷ୍କାର ହେଲା ପର୍ଯ୍ୟନ୍ତ ଚପେଇ ରଖିବାକୁ ପଡ଼ିବ । (ଜୀବନ ଯାପନ, ୧୯୭୪, ଜାନୁଆରୀ)

* ତୁମେ ନୂଆ ଜୀବନ ଆରମ୍ଭ ପାଇଁ ନୂଆ ଲୁଗା ପିନ୍ଧି ଚାରିଜଣ କାନ୍ଧେଇଥିବା ସବାରିରେ ଯିବା ପାଇଁ ପ୍ରସ୍ତୁତ ହୁଅ । ଆଉ ମୁଁ ନୂଆଲୁଗା ପିନ୍ଧି ଆଉ ଏକ ନୂଆ ଜୀବନର ଆରମ୍ଭ ପାଇଁ ଚାରିଜଣ କାନ୍ଧେଇଥିବା କୋକେଇରେ ଯିବାପାଇଁ ପ୍ରସ୍ତୁତ ହୁଏ । (କୌଣସି ପ୍ରେମିକାଠାରୁ କନ୍‌ହେଇ ନିଜଟକୁ ଫେରି ଆସିଥିବା, ତା'ର ଏକ ଚିଠିରୁ-୧୯୭୪)

* ଏଇ କେତେଦିନ ହେଲା ଆଉ ଦେହ ଭଲ ରହୁନି, ପେଟ ରୋଗଟା ଶେଷ ପର୍ଯ୍ୟନ୍ତ ଖୁବ୍ ହଇରାଣ କରିବ । (ଡାଏରି–ମାର୍ଚ୍ଚ ୨୧ ୧୯୭୫)

* ମତେ ଯା ଭିତରେ ଅନେକ କାମ କରିବାକୁ ପଡ଼ିବ । ଜାଣେ ମୋ ସମୟ ପାଖେଇ ଆସିଲାଣି ।

* ଏସବୁ ନେଇ ବଞ୍ଚିଯିବା କଥା ଆଉ କେତୋଟି ଦିନ । (ନବତରଙ୍ଗ, ୧୯୭୫ ଗ୍ରୀଷ୍ମ ବିଶେଷାଙ୍କରେ ଦିନଲିପରୁ)

* ମୋର ମନେହୁଏ ମୁଁ ବେଶୀ ଦିନ ବଞ୍ଚିବି ନାହିଁ । (ଅସମ୍ଭବ ମୃତ୍ୟୁ, ମାନସ ୧୯୭୩)

କେବଳ ଲେଖାରେ ନୁହେଁ, କନ୍‌ହେଇ ମୁହଁରେ ମଧ୍ୟ ସେଇକଥା ସବୁବେଳେ।

ଶୈଳ ଅପାଙ୍କୁ କହିଥିଲା-

* ଜାଣିଛ, ଘରେ ମୋ ଜାତକ ଦେଖି କହିଥିଲେ, ମୁଁ ୩୦ ବର୍ଷରୁ ଅଧିକ ବଞ୍ଚିବି ନାହିଁ।

ମୀନା ଦିଦିଙ୍କୁ ସ୍ୱପ୍ନରେ କହିଥିଲା-

* ଦିଦି, ଆର ଜନ୍ମରେ ମୁଁ ତୁମ ପୁଅ ହୋଇ ଜନ୍ମ ହେବି ।

ଏପରିକି ଅଫିସର ଜଣେ ବଂଧୁକୁ କହିଥିଲା, ମରିବାର ପ୍ରାୟ ୧୦ ଦିନ ପୂର୍ବରୁ ଏବଂ ଏଥିପାଇଁ ଗାଳି ବି ଶୁଣିଥିଲା

* ମୁଁ ରକ୍ତବାନ୍ତି କରି ମରିବି ।

ତାଙ୍କ ଅଫିସ୍‌ର କୌଣସି କର୍ମଚାରୀଙ୍କ ତିରୋଧାନ ପରେ ଚାନ୍ଦା ମାଗିଲା ବେଳେ କବି ଉଜ୍ଜ୍ୱଳ ପାଢ଼ୀଙ୍କୁ କହିଥିଲା

* "ଯା ପରେ ମୋ ପାଇଁ ଅନ୍ୟମାନଙ୍କୁ ଚାନ୍ଦା ମାଗିବାକୁ ପ୍ରସ୍ତୁତ ଥାଆନ୍ତୁ ।"

ହଁ ... ବିଶ୍ୱାସ କରି ହବନି । କିନ୍ତୁ ଆଶ୍ଚର୍ଯ୍ୟଜନକ ଭାବରେ କଥାଗୁଡ଼ା ସତ ହେଇଗଲା ।

## ଅସ୍ତ ସୂର୍ଯ୍ୟର କାହାଣୀ

ଜୁଲାଇ ୧୮ ତାରିଖ ଦିନ ସକାଳେ ଖାଇଲାବେଳେ କୁଞ୍ଜଭାଇଙ୍କୁ କହିଲା- ମୋ ଛାତିରେ ପେନ୍ ହେଉଛି ।

କୁଞ୍ଜ ଭାଇ ଅଫିସ୍ ବାହାରିଥାନ୍ତି । ତରତରରେ । ସମୟ ହେଇଯାଉଛି । ତାକୁ ଲୁଣ ଓ ଅଦା ଚୋବେଇ ଖାଇଦେଲେ ପେନ୍ କମିଯିବାର ସମ୍ଭାବନା ଅଛି ବୋଲି କହି ପ୍ୟାଣ୍ଟ ପିନ୍ଧିବାକୁ ଆରମ୍ଭ କଲେ ।

ନା, ଯନ୍ତ୍ରଣା କମିଲାନି ।

ଅଫିସ୍ ଟାଇମ୍ ହେଇ ଯାଉଛି । କୁଞ୍ଜଭାଇ ସାର୍ଟ ପିନ୍ଧିଲେ ଏବଂ ବାହାରି ଗଲେ; ଅଫିସକୁ ନୁହେଁ; ଡାକ୍ତରଖାନାକୁ- କନ୍‌ହେଇକୁ ରିକ୍‌ସାରେ ବସେଇ ।

ସୁବିଖ୍ୟାତ ଭୁବନେଶ୍ୱର (ଯାହା ଓଡ଼ିଶାର ରାଜଧାନୀ ନାମରେ ଖ୍ୟାତ) ଡାକ୍ତର-ଖାନାର ଡାକ୍ତର ମହୋଦୟମାନେ ବିଭିନ୍ନ ପ୍ରକାର ପରୀକ୍ଷା କଲେ ଏବଂ ଔଷଧ ଲେଖି ଦେଲେ । ଇଂଜେକ୍‌ସନ୍ ଠାରୁ ଆରମ୍ଭ କରି ବଟିକା ପର୍ଯ୍ୟନ୍ତ ।

ସଂଧ୍ୟା ବେଳକୁ ଆମେ ୨।୧୨୯ରେ ପହଞ୍ଚିଲୁ । ଏ. ଜି. କଲୋନିର ଏଇଟା ଆମ ମଠ । ସେଦିନ ପହଞ୍ଚି କନ୍‌ହେଇର ଦେହ ଖରାପ ସମ୍ବାଦ ଶୁଣିଲୁ । ଆମେ, ମାନେ ମୁଁ, ନାରାୟଣ ବାବୁ, ମିହିର, କୁଳମଣି, କିଶୋର ସ୍ୱାଇଁ, ମୀନା ଅପା ଓ ଶୈଳ ଅପା ଇତ୍ୟାଦି । କୁଞ୍ଜଭାଇ ପ୍ରାୟ ସବୁ ଔଷଧ କିଣି ଖୋଇବାର ବ୍ୟବସ୍ଥା କରୁଥାନ୍ତି । ଆମେ କିନ୍ତୁ ପ୍ରଥମରୁ ଭାବିପାରିଲୁ ନି ଯେ, ଏଇଟା ସତରେ ଗୋଟାଏ ରୋଗୀ। ଡାକ୍ତର ଅଭୟ ଦେଇଥାନ୍ତି– କିଛି ହବନି । ମାତ୍ର ୨।୩ ଦିନରେ ଭଲ ହୋଇଯିବ ।

କିନ୍ତୁ ୨୧ ତାରିଖ ପର୍ଯ୍ୟନ୍ତ କନ୍‌ହେଇର କିଛି ଉନ୍ନତି କିମ୍ବା ଅବନତି ଦେଖାଗଲା ନାହିଁ। ବାଧ୍ୟ ହେଇ ରକ୍ତ, ମଳ, ମୂତ୍ର ଇତ୍ୟାଦି ପରୀକ୍ଷା କରାଗଲା । ଔଷଧ ବଦଳେଇ ଦିଆଗଲା । ମୀନା ଅପାଙ୍କ କାନ୍ଦ ବଢ଼ିଗଲା । ଶୈଳଅପାଙ୍କ ଉଦ୍‌ବିଗ୍ନତା ବି । ମିହିର୍ ସେଇଦିନଠୁ ସେଇଠି ବସି ରହିଲା ।

ତଥାପି କିଛି ପରିବର୍ତ୍ତନ ଘଟିଲାନି– ୨୬ ତାରିଖ ସକାଳ ୯ଟା ପର୍ଯ୍ୟନ୍ତ । ତାକୁ ଆଉ ଥରେ ଡାକ୍ତରଖାନା ନିଆଗଲା । ଡାକ୍ତରମାନେ ଆଉ ଥରେ ପରୀକ୍ଷା (?) କରି ମତଦେଲେ ଯେ, ଏହା ଏଣ୍ଟ୍ରିକ୍ ଫିଭର ହେଇପାରେ । ତେଣୁ କିଛି ଔଷଧ ଦେଇ ଶୁଆଇ ଦେଲେ, ଭଲ ହେଇଯିବାର ନିଶ୍ଚିତ ପ୍ରତିଶ୍ରୁତି ଦେଇ । ସେ ଶୋଇ ରହିଲା ନଂ ୪୯ ବିଛଣାରେ ।

ଆମେ ଚୁପ୍‌ଚାପ୍ ବସି ରହିଲୁ । ହଠାତ୍ ଦିନ ସାଢ଼େ ବାରଟା ବେଳକୁ ତା ଗଳା ପଡ଼ିଗଲା । ନିଶ୍ୱାସ ନେବା ଛଡ଼ା ଆଉ କିଛି କରିବାକୁ ଖୁବ୍ କଷ୍ଟ ହେଉଥାଏ । ଇନ୍‌ଜେକ୍‌ସନ୍ ଦିଆଗଲା । ସନ୍ଧ୍ୟାବେଳକୁ ଟିକିଏ କଥାକହି ପାରିଲା– । କଥା ଖୁବ୍ ଅସ୍ପଷ୍ଟ ଓ କ୍ଷୀଣ ।

ଫେରି ଆସିଲୁ ।

ମାତ୍ର ରାତିକୁ ଟିକିଏ ସତେଜ ଦେଖାଗଲା କନ୍‌ହେଇ । ଡାକ୍ତର "ଭୟର କିଛି କାରଣ ନାହିଁ, ଆପଣମାନେ ଯାଇ ବିଶ୍ରାମ ନେଇ ପାରନ୍ତି" ଅଭୟ ବାଣୀ ଶୁଣାଇ ଦେଲେ ଓ ଆମେ ସମସ୍ତେ, ଯୋଉମାନେ କେହି ପ୍ରାୟ ତିନି ରାତି ହେଲା ଶୋଇବା ଏବଂ ଖାଇବା ଭୁଲିଯାଇଥିଲୁ, ଟିକିଏ ନିଶ୍ୱାସ ମାରିଲୁ ।

ଶୈଳଅପାଙ୍କ ଘର ଡାକ୍ତରଖାନା ପାଖରେ । ସେ ତାଙ୍କ ଫୋନ୍ ନମ୍ବର ଡାକ୍ତରଙ୍କୁ ଦେଲେ, ଘରର ନମ୍ବର ବି । ଏବଂ ଦରକାର ବେଳେ ସାଙ୍ଗେ ସାଙ୍ଗେ ଖବର ପାଇବାର ପ୍ରତିଶ୍ରୁତି ନେଇ ଆମେ ଫେରି ଆସିଲୁ ।

ସିଏ କାଳେ ରାତିରେ ଉଠିଲା । ଖୁବ୍ ପ୍ରଫୁଲ୍ଲ ଦେଖାଯାଉଥିଲା । ବେଡ୍‌ରୁ ତଳକୁ, ତଳୁ ପଦାକୁ ଆସିଲା । ଯୋଉ ଦରୱାନମାନେ ତାସ୍ ଖେଳୁଥିଲେ ସେଠି ଠିଆ ହେଲା । ତାସ ଖେଳ ଦେଖିଲା ଏବଂ ବିଛଣାକୁ ଫେରିଆସିଲା । ମୁଣ୍ଡ କୁଣ୍ଡେଇଲା ପାନିଆରେ । ଦାଢ଼ିରେ ହାତ ମାରିଲା- ବଢ଼ିଯାଇଥିବା ଦାଢ଼ି । ପାଣି ମାଗିଲା ପିଇବାକୁ । ପିଇଲା । ଏବଂ—

ଛାତିରେ କଷ୍ଟ ଅନୁଭବ କଲା । ବାନ୍ତି କଲା । ମେଞ୍ଚାଏ ରକ୍ତ । ତା'ପରେ ନୀରବ ହେଇଗଲା, ନିଷ୍ଚଳ ହେଇଗଲା । ପଥର ଖଣ୍ଡେ ପରି ଲିଭିଗଲା ଦୂରର ଆଲୋକ ପରି !

ଆଉ ଆମେ ତା ପାଖରେ ଥାଇ ବି ରହିପାରିଲୁନି । କିଛି କରିପାରିଲୁନି ତା ପାଇଁ; କିଛି ଟିକେ ବି ନୁହେଁ ।

୨୬ ତାରିଖର ସେଇ ରାତିର ଶେଷ ପ୍ରହରରେ ଫୋନପାଇ ଶୈଳଅପା ଆସି କୁଞ୍ଜଭାଇଙ୍କୁ ଡାକିଲେ । ସ୍କୁଟରରେ ପ୍ରାୟ ତିନି ମିନିଟ୍ ଭିତରେ ଯାଇ ଡାକ୍ତରଖାନାରେ ପହଞ୍ଚିଲାବେଳକୁ... ସବୁ ସ୍ଥିର ହେଇଯାଇଥିଲା ପଥର ଖଣ୍ଡେ ପରି । ସବୁ ଲିଭିଯାଇଥିଲା ଦୂରର ଆଲୋକ ପରି... । ସକାଳେ କୁଞ୍ଜଭାଇଙ୍କ ଚିଠିଟା ଆମେ ବାଣୀବିହାରରେ ପାଇଲୁ । କିଛି କରିବାର ନଥିଲା । କିଛି ତ କରିପାରି ନଥିଲୁ ତା' ଲାଗି... କେବଳ ଶେଷକର୍ମ ।

ଏଇ ହାତରେ "ଚାରିଜଣ କାନ୍ଧେଇଥିବା କୋକେଇରେ ନେଇ ତା' ନୂଆ ଜୀବନର ପ୍ରସ୍ତୁତି ପାଇଁ" ଓ ଲଡ୍ ଟାଉନ୍ ଶ୍ମଶାନରେ କନ୍‌ହେଇକୁ ଜଳାଇ ଆସିଲୁ । ସବୁ ସ୍ମୃତିକୁ ସେଇ 'ଅଲିଭା ସଳିତା'ର ନିଆଁ ଭିତରକୁ ଫୋପାଡ଼ି ଦେଇ ଆସିଲୁ । ସବୁ ଲୁହକୁ ସେଇ ନିଆଁରେ ଆହୁତି ଦେଇଦେଲୁ । କିନ୍ତୁ କନ୍‌ହେଇ ଜଳିବାର ନୁହେଁ ସେ ହୃଦୟରେ ରହିଗଲା । ସ୍ମୃତି ମରିବାର ନୁହେଁ; ମନରେ ରହିଗଲା ଓ ସେ ଲୁହ ସରିବାର ନୁହେଁ; ଆଖିରେ ରହିଗଲା ସେମିତି... ।

ସେଦିନ ୨୭ ତାରିଖ, ଜୁଲାଇ ମାସ । ୧୯୭୫ ମସିହାର ସକାଳର ସୂର୍ଯ୍ୟ ପୃଥିବୀରେ ହାଜିର ହେବା ପୂର୍ବରୁ ଆମ ପୃଥିବୀର ସୂର୍ଯ୍ୟ ଲିଭିଗଲା ।

**ଜନ୍ମ**

ଅଥଚ ଆଶ୍ଚର୍ଯ୍ୟଜନକ ଯେ କନ୍‌ହେଇ ସେଇ ୨୭ ତାରିଖରେ ଏଇ ପୃଥିବୀର ପ୍ରଥମ ସୂର୍ଯ୍ୟାଲୋକ ଦେଖିଥିଲା । ଅବଶ୍ୟ ଜୁନ ମାସରେ, ୨୬ ବର୍ଷ ତଳେ ।

## ଏକ ଅଣଓଡ଼ିଆ ନାଁର ଇତିହାସ

ଶୁଣାଯାଏ, କନ୍‌ହେଇର ଘର ପାଖରେ ଏକ ସନ୍ତାନବିହୀନ ମାରୁଆଡ଼ି ଦମ୍ପତି ବାସ କରୁଥିଲେ । କନ୍‌ହେଇ ଏଇ ଦୁଇ ପରିବାରର ପ୍ରଥମ ଆକାଂକ୍ଷିତ ସନ୍ତାନ । ଏବଂ ସେଇ ଦମ୍ପତିଙ୍କର ଅନୁରୋଧରେ, ସେଇ ଦୁଇ ପରିବାରର ଅନ୍ତରର ପ୍ରଥମ ସନ୍ତାନର ନାମକରଣ ଏପରି କରାଯାଇଥିଲା ।

ଅବଶ୍ୟ ବର୍ତ୍ତମାନ ସେ ଏକ ଅଶ୍ରୁସଜଳା ବିଧବା ମା', ଦୁଇଟି ଭଉଣୀ ଏବଂ ସାନ ଭାଇଟିର ଦାୟିତ୍ୱ ତା' (ସୌଭାଗ୍ୟବାବୁଙ୍କ ଆଦରର ଭଗିଆ) ଉପରେ ଛାଡ଼ି ଯାଇଛି ।

**ତା' ପ୍ରେମର ଇତିହାସ**

କୁଞ୍ଜଭାଇ ଥରେ କନ୍‌ହେଇକୁ କହିଥିଲେ, "ଏ ପ୍ରେମ ଫ୍ରେମ ଛାଡ଼ । ପ୍ରେମ ବିନା ପୃଥିବୀରେ ବହୁତ କଞ୍ଚାମାଲ ଅଛି ଯାହାକୁ ନେଇ ସୁନ୍ଦର ଗପ ଲେଖିହବ ।"

**ଗଳ୍ପ**

ଶ୍ରୀ ବିଭୂତି ପଟ୍ଟନାୟକ କହନ୍ତି

"ଗଳ୍ପରେ ପ୍ରକାଶ ପାଇଁ ପଠାଇଥିବା ତା'ର ଦୁଇ ତିନୋଟି ଗଳ୍ପକୁ ମୁଁ ସେତେବେଳକୁ ନୃଶଂସ ଆତତାୟୀ ଭଳି ନାଲି କାଳିରେ କାଟି ଅମନୋନୀତ କରି ଫେରାଇ ଦେଇଥିଲି ।"

ଏବଂ ଅନ୍ୟ ଅନ୍ତରଙ୍ଗମାନେ ଗାଳି ବି ଦେଉଥିଲେ (ଖାଲି ପ୍ରେମକୁ ନେଇ ଗଳ୍ପ ଲେଖୁଥିବାରୁ) ଫଳ ହେଲା ଯେ, କନ୍‌ହେଇ 'ଜୀବନ ଯାପନ', 'ଫଳ', 'ପ୍ରଭୁ ଭାରସାମ୍ୟ ରକ୍ଷାକଲେ', 'ଉତ୍ତାନପାଦ', 'ଧୃତରାଷ୍ଟ୍ରର ଆଖି' ଓ 'ବ୍ୟବଚ୍ଛେଦ' ଇତ୍ୟାଦି ଗପ ଲେଖିବା ଆରମ୍ଭ କରିଥିଲା ।

ଅବଶ୍ୟ ଏଇ ଗଳ୍ପମାନଙ୍କର ଗପ କହିବା ମୋର ଲକ୍ଷ୍ୟ ନୁହେଁ । ମୋ ଗପ ଆରମ୍ଭ ହେଉଛି ଠିକ୍ ଯା ପୂର୍ବ ଗପମାନଙ୍କରୁ- ଯେଉଁ ଗପମାନଙ୍କର ନାୟକ ସେ ନିଜେ, ସିଏ– "ଏକ ବିଷଣ୍ଣ, ଅସହାୟ, ନିଃସଙ୍ଗ, ପ୍ରେମାତୁର, ସ୍ନେହ କାଙ୍ଗାଳ" – ଯିଏ ଚାହିଁଥିଲା କେବଳ ପ୍ରେମ ଭିତରେ ଜୀବନର ସବୁ ଦୁଃଖକୁ ଭୁଲିଯାଇ ପାରିବ ।"

(କୁଞ୍ଜ ରାୟ)

ତେଣୁ ସେ ଭାବୁଥିଲା–

"ବୋଧହୁଏ ସାହିତ୍ୟ ମତେ ଦୁଃଖରୁ ଅସମ୍ଭବ ମୁକ୍ତି ହେଉଛି । ମୁଁ ଜାଣେ ମୋର ପାର୍ଥିବ ସମ୍ପତ୍ତି ବା ପଦାର୍ଥ କିଛି ନାହିଁ । ମୁଁ ସ୍ୱପ୍ନ ସମ୍ରାଟ ।"

(ଡାଏରି ୧୬-୧-୧୯୭୩)

My heart aches, and drowsy numbness pains
My sense, as though of hemlock I had drunk...

(Ode to Nightingale, Keats)

ଓ ଯାରି ଭିତରେ ସେ ବଂଚିଯିବାକୁ ଚାହୁଁଥିଲା, ସ୍ୱପ୍ନର ସମ୍ରାଟ ପରି । କାରଣ ତା ପାଇଁ– Heard melodies are sweet, but those unheard are sweeter.

ତା ପ୍ରେମର ଇତିହାସ କହିବାକୁ ଯାଇ, ମୁଁ ତା' ଗପ କଥା କହିବାକୁ ଆରମ୍ଭ କରି ଦେଇଛି । ଅବାଟରେ ମୁଁ ଯାଇନି, ଅବଶ୍ୟ ଟିକିଏ ଦୂରକୁ ଚାଲିଯାଇଛି । ଏଇ ବର୍ତ୍ତମାନ ଠିକ୍ ଜାଗାକୁ ଫେରିଆସୁଛି ।

ବର୍ତ୍ତମାନ ମୋ ପାଖରେ କନ୍‌ହେଇର ଚାରି ବର୍ଷର ଡାଏରି, ୩୨ଟି ଚିଠି (ଯା ଭିତରୁ ୪ଟି ତା'ର ଫେରସ୍ତ ଚିଠି) ଏବଂ ୧୫୭ଟି ଫଟୋ ଗଚ୍ଛିତ ଅଛି ।

## ୧. ଡାଏରି

ଏଇ ଡାଏରି ମାନଙ୍କରେ କନ୍‌ହେଇ ଏକ ଅଲଗା ମଣିଷ । କାକରଭିଜା ଜହ୍ନ ରାତିରେ ସ୍ୱପ୍ନ ବୁଣୁଥିବା କନ୍‌ହେଇଠାରୁ, ଯନ୍ତ୍ରଣାରେ / ଦୁଃଖରେ / ପ୍ରେମରେ / ଯୌନଚିନ୍ତାରେ, ଜର୍ଜରିତ କନ୍‌ହେଇଠାରୁ ସେ ସଂପୂର୍ଣ୍ଣ ଅଲଗା; ଏକ ଭିନ୍ନ ଆବେଗର ମଣିଷ ।

ଆପଣଙ୍କର ବେଶ୍ କିଛି ବର୍ଷ ଧରି 'କାଉଲ' ନାମକ ଜଣେ ଲୋକ ସହିତ ପରିଚୟ ଥିବ । ଏବଂ ଆପଣ ନିଶ୍ଚୟ ଜାଣିଥିବେ "He is a moon and has a dark side and he shows it to everybody."

କିନ୍ତୁ ସେଇ କାଉଲଙ୍କୁ ଦେଖିଲା ବେଳକୁ ଆପଣଙ୍କ ମନରେ ନିଶ୍ଚୟ ସନ୍ଦେହ ହେଉଥିବ ଯେ ଏ ପ୍ରକାର ଚରିତ୍ର କ'ଣ ଏଇ ମାଟିରେ ସମ୍ଭବ ? ଏବଂ ବହୁତ ଲୋକ ଏକ ନିଶ୍ଚିତ ନାସ୍ତିବାଚକ ଶେଷ ସିଦ୍ଧାନ୍ତରେ ପହଞ୍ଚି ଯାଉଥିବେ । କିନ୍ତୁ ନା; ଏ ପ୍ରକାର ଚରିତ୍ର ଏ ମାଟିରେ ସମ୍ଭବ ।

ଏହା ନିଶ୍ଚିତଭାବେ ସମ୍ଭବ ଏବଂ ମୁଁ ତାକୁ ଏଇ ଡାଏରିମାନଙ୍କ ଭିତରୁ ଆବିଷ୍କାର କରିଛି–

ଅସମ୍ଭବ ହସଖୁସିରେ ବୁଲୁଥିବା ଜନ୍‌ହେଇ ଅତି କରୁଣ ଭାବେ କାନ୍ଦି ଉଠେ ରାତିରେ, ଅଂଧାରରେ ଆଉ ଏଇ ଡାଏରିର ଶବ୍ଦମାନଙ୍କ ଭିତରେ, ନିଜ ପାଇଁ ଓ ଅନ୍ୟ ମାନଙ୍କ ପାଇଁ ।

ଦିନର ଆଲୋକରେ ପାପର ଧୂଳିଧୂସରିତ ଜନ୍‌ହେଇ, ରାତିରେ ଅନୁତାପ କରେ ।

"ଅସମ୍ଭବ ଘୃଣା ସତ୍ତ୍ୱେ ପୃଥିବୀର ସମସ୍ତଙ୍କୁ ଭଲପାଏ ଓ ନିଜ ଦୁଃଖରେ ନିଜେ ସନ୍ତୁଳି ହୋଇ ବଞ୍ଚିଯାଏ ।"

"ମୁଁ ଜାଣେ ମତେ ସମସ୍ତେ ପ୍ରଥମେ ଖୁବ୍ ଭଲ ପାଆନ୍ତି । କିନ୍ତୁ ପରେ କାହିଁକି କେଜାଣି, ଅଭିନୟରେ ହେଉ ବା ବାସ୍ତବରେ ହେଉ, ମୋଠାରୁ ଦୂରେଇ ଯାଆନ୍ତି ।"

(୩.୧.୧୯୭୩ର ଡାଏରି)

ଆଲୋକରେ ସ୍ୱପ୍ନ ବିଞ୍ଚୁଥିବା ଜନ୍‌ହେଇ ଏକ ଭିନ୍ନ ମଣିଷ ଅଂଧାରରେ । ଡାଏରିର ପ୍ରତ୍ୟେକ ପୃଷ୍ଠାରେ ତାର ପ୍ରଚ୍ଛନ୍ନ ପ୍ରତିଫଳନ ।

ନିଜର ଦୁଃଖକୁ ଘୋଡ଼େଇବା ପାଇଁ ସେ ବହୁବାର କାନ୍ଦି ଉଠିଛି । ଏ ଦୁଃଖ ତା ପ୍ରେମର, ତା ଦାରିଦ୍ର୍ୟର, ତା ପରିବାର ପାଇଁ ।

ତା ଦାରିଦ୍ର୍ୟ ପାଇଁ ଯେତେବେଳେ ସିଏ ସମତାଳରେ ଆଗକୁ ପାଦ ବଢ଼େଇ ପାରିନି, ତା ପରିବାରକୁ ଯେତେବେଳେ ସିଏ ସନ୍ତୁଷ୍ଟ କରି ପାରିନି ଏବଂ ପ୍ରେମ ଯେତେବେଳେ ମାୟାମୃଗ ପରି ତା ଆଗରୁ ଅପସରି ଯାଇଛି, ସେତେବେଳେ ଏକ ନିଃସଂଗ ଏବଂ ଅସହାୟ ବ୍ୟକ୍ତିର ଆତ୍ମା ଏକ ଡାଏରି ଭିତରେ ବାହୁନି ଉଠିଛି ।

ଡାଏରିରେ ଲେଖିଥିବା ଅଧିକାଂଶ ଘଟଣାକୁ ସାମାନ୍ୟ ଶବ୍ଦର ପ୍ରଲେପ ଦେଇ ସେ ସାହିତ୍ୟ କରି ଦେଇଛି । ତେଣୁ ତା' ଗପର ଅଧିକାଂଶ କାହାଣୀହିଁ ସତ୍ୟ ଘଟଣାର ସାମାନ୍ୟ ରୂପାନ୍ତର ମାତ୍ର ।

ପ୍ରତି ମାସର ୨୫ ତାରିଖ ତା ଜୀବନର ଏକ ବିଶିଷ୍ଟ ଦିନ । ଏଇ ତାରିଖରେ ସେ ପ୍ରଥମେ ଚାକିରି କରିବାକୁ ଭୁବନେଶ୍ୱର ଆସିଥିଲା, ବାଲେଶ୍ୱରରୁ ।

ଏଇ ତାରଖରେ ତା'ର ପ୍ରିୟତମା ପ୍ରେମିକା ତା'ଠାରୁ ଦୂରେଇ ଯାଇଥିଲା, "ନୂଆ ଲୁଗା ପିନ୍ଧି, ଚାରିଜଣଙ୍କ କାନ୍ଧର ସବାରି ଚଢ଼ି" ।

ଏବଂ ଡାଏରିର ପ୍ରତି ପୃଷ୍ଠାରେ ହଜିଯାଇଥିବା ପ୍ରେମର ସ୍ମୃତି ରୋମନ୍ଥନ– ପ୍ରଥମ ପ୍ରେମର; ଯାହାକୁ ଆମେ 'ପାଚେରି' ଗପର ନାୟିକା "ସ୍ମୃତି" ବୋଲି ଚିହ୍ନିଛୁଁ ।

**୨. ଚିଠି**

ଏଇଠି ଥିବା ୩୨ ଖଣ୍ଡ ଚିଠି ଦେହରୁ ୪ ଖଣ୍ଡ ତା ନିଜର । ଏକ ପରସ୍ତ ଉତ୍କଳୀୟ ସୈନିକର (ଯାହାର ଛାତିରେ ଅସ୍ତ୍ରାଘାତ ହେଇଥାଏ, ପଛରେ ନୁହେଁ) ସ୍ୱର ସ୍ପଷ୍ଟ ଏଥିରେ ।

ଅନ୍ୟ ଚିଠିମାନଙ୍କ ମଧ୍ୟରୁ ଅଛି କିଛି ପାରିବାରିକ ଓ କିଛି ସାହିତ୍ୟିକ ବଂଧୁଙ୍କର ପ୍ରଶଂସା ପତ୍ର । କୌଣସି ଜଣେ ଅପାଙ୍କର ଉପଦେଶ ସହ ବଞ୍ଚିବାର ପାଥେୟ ପାଇଁ ଉତ୍ସାହପୂର୍ଣ୍ଣ ଚିଠି ଏହା ସହ ସାମିଲ ।

ଆଉ ସମସ୍ତ ଚିଠି ପ୍ରେମର; ପ୍ରେମିକାମାନଙ୍କର । ଆପଣ ଏ ସମସ୍ତଙ୍କୁ ଚିହ୍ନିଛନ୍ତି କନ୍‌ହେଇର ଗଳ୍ପରେ ।

**ପ୍ରଥମ ଝିଅ :** ସ୍ମୃତି– ଯିଏ ନିକଟରେ ଏକ୍‌ରେ ଏକ ମିଶେଇ ଏକ୍ ହୋଇ ଯାଇଛି । ଏକ ଉପହସିତ ଦାରିଦ୍ର୍ୟ ନେଇ, ସ୍ମୃତିକୁ ପାଥେୟ କରି, ସ୍ମୃତିର ବିବାହ ତାରିଖକୁ ଲାଲ ଅକ୍ଷରରେ ଲେଖୁଥିଲା କନ୍‌ହେଇ ।

**ଦ୍ୱିତୀୟ ଝିଅ :** ତିଥି– ସାମାଜିକ ଶୃଙ୍ଖଳାର ତିନି ଗାରକୁ ପାରହୋଇ ସେ ଆଗକୁ ଆସିପାରିଲାନି ।

**ତୃତୀୟ ଝିଅ :** ଅଶ୍ରୁ– ଦୌଲତରେ ପ୍ରାଚୁର୍ଯ୍ୟର ଭିତରେ 'କଳା'କୁ ଭଲପାଇ ବସିଥିଲା। ପ୍ରାଚୁର୍ଯ୍ୟର ସମସ୍ତ ଆବରଣ ଖୋଲି ଦେଇଥିଲା। (ଏପରିକି, କନ୍‌ହେଇ କହେ, ଧଳା ଶାଢ଼ି ପିନ୍ଧିବା ଆରମ୍ଭ କରିଥିଲା, ଅଳଙ୍କାର ପିନ୍ଧିବା ମଧ ଛାଡ଼ି ଦେଇଥିଲା, କନ୍‌ହେଇ କଥା ମାନି) ଏବଂ ଶେଷ ପର୍ଯ୍ୟନ୍ତ ଅପେକ୍ଷା କରିଥିଲା। (କନ୍‌ହେଇ! ମୁଁ ଜାଣିନି ମୋର ସ୍ୱର ତୁମ ପର୍ଯ୍ୟନ୍ତ ପହଞ୍ଚି ପାରିବ କି ନାହିଁ, ଗଲା ବେଳକୁ ତମ ପ୍ରେମିକାକୁ ପାସ୍ କରେଇ ଦେବାକୁ ତୁମେ ସମସ୍ତଙ୍କୁ ଅନୁରୋଧ କରିଥିଲ। ଶୁଣ! ସିଏ ପାଶ୍ କରିଛି।

**ଏବଂ ଅଶ୍ରୁ**– ମୁଁ ତୁମକୁ ଚିହ୍ନିନି, ଦେଖିନି ଏବଂ ଜାଣିନି । ତମେ ବର୍ତ୍ତମାନ କିପରି ଦିନ କାଟୁଥିବ । କନ୍‌ହେଇ ଗଲା ପରେ ତମର ଅବସ୍ଥା କ'ଣ ହେଇଥିବ ମୁଁ ଲକ୍ଷ୍ୟ କରିନି ! କିନ୍ତୁ ମୁଁ ଶୁଣିଛି, ପ୍ରେମର ଅସମ୍ଭବ ସମ୍ମୋହିନୀ ଶକ୍ତି ଥାଏ । ପ୍ରେମ ବୋଇଲେ ଯାହା ବୁଝାଯାଏ, କନ୍‌ହେଇ ପାଖରୁ ତମ ବିଷୟରେ ସେଇଆ ଶୁଣିଛି । ତେବେ ତମର ସେଇ ପ୍ରେମର ଅସମ୍ଭବ ଆକର୍ଷଣୀ ଶକ୍ତି ନେଇ ତମେ ତାକୁ ଏଇ ପୃଥିବୀକୁ ଫେରାଇ ଆଣି ପାରିବନି ।

**୩. ଫଟୋ**

ଏଇ ଫଟୋମାନଙ୍କ ଭିତରେ କାହାର ଫଟୋ ନାହିଁ !

**ଲେଖା-କଥା**

କନ୍‌ହେଇର ଅସମ୍ଭବ ଇଚ୍ଛାଥିଲା ନିଜର ଗୋଟାଏ ଗଳ୍ପ ସଂକଳନ ପ୍ରକାଶ କରିବ । ଏଥିପାଇଁ ସୌଭାଗ୍ୟ ବାବୁଙ୍କୁ, ବିଭୂତିବାବୁଙ୍କୁ ଅନୁରୋଧ କରିଥିବା କଥା ତା ଡାଏରିରେ ଲିପିବଦ୍ଧ ହେଇଛି । ଗଲାବେଳକୁ ନିଜର ସବୁ ଗପକୁ ସିଏ 'ମାନସାଙ୍କ',

'ସାଙ୍କେତିକ', 'ଜୀବନ ଯାପନ', 'ଏବଂ ଯାହା ଯେମିତି ହୁଏ' ନାମକ ୪ଟି ସଂକଳନ ଆକାରରେ ପ୍ରକାଶ କରିବାକୁ ଭାଗ କରି ଦେଇ ଯାଇଛି । ଶେଷ ଗଳ୍ପ 'ନିଃସଙ୍ଗ'କୁ ମଧ୍ୟ ବାଦ୍ ଦେଇନି । ଉପନ୍ୟାସ 'ଦୁର୍ଘଟଣା', ଯାହାକୁ ସିଏ ତା'ର ୧୯୭୦ ମସିହା ଡାଏରିରେ ଲେଖି ୨୯-୮-୭୪, ଗୁରୁବାର ଦିନ ୯.୫ରେ ସାରିଛି, 'ଆସନ୍ତାକାଲି'ର ପୂଜାସଂଖ୍ୟା ପାଇଁ ଛାଡ଼ିଯାଇଛି ।

ତା' ସାହିତ୍ୟ ସଂପର୍କରେ ସଂପୂର୍ଣ୍ଣ ଅଲଗା ପ୍ରବନ୍ଧ ଲେଖାଯାଇପାରେ ଏବଂ ଏହାର ପ୍ରଥମ ଲେଖକ ତ ଶ୍ରୀ ସୌଭାଗ୍ୟ ମିଶ୍ର !

କନ୍‌ହେଇକୁ ଯେଉଁମାନେ ଚିହ୍ନିଥିଲେ, ଜାଣିଥିଲେ, ସେମାନେ ଭାବନ୍ତି, କନ୍‌ହେଇ କେବଳ ତାଙ୍କର ସବୁଠାରୁ ଅନ୍ତରଙ୍ଗ ବା ସେମାନେ କନ୍‌ହେଇର ସବୁଠାରୁ ଅନ୍ତରଙ୍ଗ । ଏଇ ଧାରଣାରୁହିଁ କନ୍‌ହେଇର ବ୍ୟକ୍ତିତ୍ୱ ଉବୁକି ଉଠେ ।

## କନ୍‌ହେଇ ସଂପର୍କରେ ଶେଷ ଖବର

କନ୍‌ହେଇକୁ ବୋଧହୁଏ ସବୁଠାରୁ ବେଶୀ ଭଲ ପାଉଥିଲେ ଶ୍ରୀମତୀ ଶୈଳବାଳା ମହାନ୍ତି । ଦୁଇ ଦିନ କାଳ ଅଖିଆ ଅପିଆ କାନ୍ଦିଥିବାର ମୁଁ ନିଜେ ଦେଖିଛି । ତାଙ୍କୁ ସେ ଆବେଗରେ ଲେଖିଛନ୍ତି "ମୁଁ ତମ ଗପ ଆଉ ପଢ଼ିପାରୁନି, ବୋଧହୁଏ ପଢ଼ି ପାରିବିନି" ।

ମୀନା ଅପା ସ୍ୱପ୍ନ ଦେଖିଥିଲେ, କନ୍‌ହେଇ କହୁଛି "ମୁଁ ତୁମ ପୁଅ ହେଇ ଆର ଜନ୍ମରେ ଜନ୍ମ ହେବି" ।

ପ୍ରଫୁଲ୍ଲ ତ୍ରିପାଠୀ ଖବର ଶୁଣି କୁଞ୍ଜରାୟଙ୍କୁ ଲେଖିଥିଲେ–

"କନ୍‌ହେଇ ଯଦି ଆତ୍ମହତ୍ୟା କରିଥାନ୍ତା କିମ୍ବା ତା ଉପରେ ଯଦି ଗୋଟେ ଚୋରା ମାଲ ବୋଝେଇ ଟ୍ରକ ମାଡ଼ିଯାଇଥାନ୍ତା, କିମ୍ବା ତା ଛାତିରେ ଯଦି କିଏ ଛୁରୀ ଭୁସି ଦେଇଥାନ୍ତା, ତାହେଲେ ମୁଁ କୌଣସି ପ୍ରଶ୍ନ ନ ପଚାରି ତା'ର ଅସ୍ୱାଭାବିକ, ଅସାମୟିକ ମୃତ୍ୟୁକୁ ଗହଣ କରି ନେଇଥାନ୍ତି । ××× କିନ୍ତୁ ଗୋଟିଏ ପ୍ରଶ୍ନ କୁଞ୍ଜବାବୁ – କନ୍‌ହେଇ କ'ଣ ସତରେ ଆଉ ନାହିଁ ? ନା ଏ ସବୁ ଗୋଟେ ଟ୍ରିକ୍ ? 'ମୁଁ ମରିଗଲା ପରେ କିଏ କ'ଣ କହୁଛନ୍ତି' ବୋଲି ଜାଣିବା ପାଇଁ କନ୍‌ହେଇ ସତରେ ନମରି କେଉଁଠି ଆତ୍ମଗୋପନ କରିଛି ? ଆପଣ ଦେଖିଛନ୍ତି ତା'ର ଶବ ?"

ଅଶ୍ୱିନୀକୁମାର ମିଶ୍ର ଲେଖିଛନ୍ତି–

ମୁଁ ବିଶ୍ୱାସ କରିପାରୁନି କୁଞ୍ଜଭାଇ, ମୋ ଛାତି ଥରୁଛି, ପରୀକ୍ଷା ଆରମ୍ଭ ହେବାକୁ ମାତ୍ର ତିନି ଦିନ । ପଢ଼ି ପାରୁନି, କନ୍‌ହେଇର ସ୍ମୃତି ଭାସି ଉଠୁଚି, ତାର ହସହସ ମୁହଁ, ଛଳନା ବିହୀନ ବ୍ୟକ୍ତିତ୍ୱ, ମୋ ଆଖିରେ ଲୁହ ରହୁନି, ଓଃ । ଭଗବାନ୍ !"

ପୂର୍ଣ୍ଣ ମହାପାତ୍ର ଲେଖିଛନ୍ତି–

ଏକ ଅପରିପକ୍ୱ ଜୀବନର ପୂର୍ଣ୍ଣଚ୍ଛେଦ କିଏ ବା ବିଶ୍ୱାସ କରି ପାରନ୍ତା । କନ୍‌ହେଇ ଆମକୁ ଭସେଇ ଦେଇଯାଇନି, ବୁଡ଼େଇ ଦେଇ ଗଲା । ପତ୍ରିକାମାନଙ୍କର ସଂପାଦକୀୟ, ଖବରକାଗଜ ଓ ରେଡ଼ିଓରେ ସମ୍ବାଦ ଆପଣମାନେ ଶୁଣିଥିବେ । ସେକଥା ଲେଖିବା ଦରକାର ନାହିଁ ଏବଂ ତା ପରିବାରର ପ୍ରତିକ୍ରିୟା ବର୍ଣ୍ଣନା କରିବାର ସାହସ ମୋର ନାହିଁ । ଶେଷରେ ତା ପାଇଁ ମୋର କିଛି କହିବାର ନାହିଁ । ସେଦିନ ରାତିରେ ମୋର ଯେମିତି ମନେ ହେଲା–

He has out soared the shadow of our night,
Envy and calumny and hate and pain
And that unrest which men miscall delight
Can touch him not and torture not again
He is portion of the loveliness
Which once he made more lovely.
(Shelly's Adonais :
An Elegy on the Death of Keats)

(ନବରଙ୍ଗ, ପୂଜାସଂଖ୍ୟା ୧୯୭୫)



# ଶେଷ ଚିଠି

## ସ୍ୱର୍ଗତ କନ୍‌ହେଇଲାଲ ଦାସଙ୍କୁ ଅଧ୍ୟାପକ ବିଶ୍ୱରଂଜନଙ୍କ ପତ୍ରାର୍ଘ୍ୟ

**କହ୍ନେଇରେ,**

"ପୃଥିବୀରେ ଅନେକ ଫୁଲ ଫୁଟିବା ଆଗରୁ ଝରିଯାଏ। ଅନେକ କାହାଣୀ ଆରମ୍ଭ କରିବା ପୂର୍ବରୁ ଶେଷ ହୋଇଯାଏ ।" (ଗତ ଡିସେମ୍ବର ସଂଖ୍ୟା 'ସୁଚରିତା'ରେ ପ୍ରକାଶିତ ତୋ'ରି ଗଳ୍ପର ଅବିକଳ ଭାଷା ଇଏ) ତୋ'ରି କଥା କେତେ ଶୀଘ୍ର ସତରେ ତୋ' ଜୀବନରେ ପ୍ରମାଣିତ ହୋଇଗଲା ! ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି। ତୋ'ର ଅନେକ ସଦ୍ୟଲେଖା ଗପର ଶବ୍ଦ-ପ୍ରତିଶବ୍ଦମାନଙ୍କୁ ଜୀବନ୍ତ ଭାବରେ ଛାପା ଅକ୍ଷରରେ ଆଖି ପୂରେଇ ଦେଖିବା ପୂର୍ବରୁ ତୁ ଆଖି ବୁଜିଦେଲୁ। ଏ ପୃଥିବୀରେ ଫୁଲ ହୋଇ ଫୁଟି ଆସିଲା ବେଳକୁ ଝରିପଡ଼ିଲୁ । ଅସରନ୍ତି କାହାଣୀର ପସରା ମେଲେଇ ଓଡ଼ିଆ କଥା ସାହିତ୍ୟର ବିପଣୀ ଭିତରେ ନିଜର ଜାଗାଟିଏ ବାଛି ନେଲାବେଳକୁ କାହାଣୀ ତୋର ଶେଷ ହୋଇଗଲା। ମନ୍ଦିର ମାଟିରେ ମିଶିଗଲା। କେବଳ ରହିଗଲା ମୁଖଶାଳା- ତୋର ଅନେକ ଜୀବନ୍ତ କଥା-ଉପକଥାର ବୈଚିତ୍ର୍ୟମୟ ବର୍ଣ୍ଣିଳ, ବର୍ଣ୍ଣମାଳା ଭିତରେ ଅନେକ ଦିଏଯାଏ ରହିବ । ମୁଖଶାଳାର ଶୋଭା ଦେଖି ସମସ୍ତେ ତୋର ଶିଳ୍ପୀ ଜୀବନର କରୁଣ ସ୍ମୃତିକୁ ସ୍ମରଣ କରିବେ। ଆଖିର ଲୁହରେ ଭଙ୍ଗା କୋଣାର୍କର ଇତିହାସ ପଢ଼ିବେ ।

କହ୍ନେଇ, ଏ ପୃଥିବୀରୁ ତୋ'ର ଅଦୃଶ୍ୟ ହେବାର ଘଟଣା ବା ଦୁର୍ଘଟଣା ଆଜିକୁ କେତେଦିନ ବା କେତେମାସ ହେଲା ? ତିଥି, ବାର ବା ତାରିଖ କିଛି ମୋର ମନେନାହିଁ । ଜାଣି ଜାଣି ମନେ ରଖିନାହିଁ । ଜୁଲାଇ ମାସର କୌଣସି ଏକ ସନ୍ଧ୍ୟା ହେବ- ଅନାମିକା ପାଖରେ ତାଙ୍କରି ଘରେ ବସିଥିଲି । ଓହୋ ! ଅନାମିକା କିଏ ? ଜାଣିବାକୁ ତୋ'ର କୌତୂହଳ ହେଉଛି ନା ? ଅନାମିକା ହେଉଛି ତୋ'ର ହୃଦୟର ଦେବୀ ବା ଧାରା ବା ପ୍ରତିମାର ନାମାନ୍ତର ଅନ୍ୟ ଏକ ଦେବୀ ମୋ ହୃଦୟର, ପ୍ରତିମା ମୋ' ପ୍ରୀତିର ବା ଧାରା ମୋର ଜୀବନ-ନଦୀର । ମୋ' ପାଇଁ କୌଣସି ନିର୍ଦ୍ଦିଷ୍ଟ ନାଁ ତା'ର ନାହିଁ- ସେଥିପାଇଁ କୁହେ ଅନାମିକା । ପ୍ରତି ସନ୍ଧ୍ୟାର ଅନେକ ମୂଲ୍ୟବାନ ମୁହୂର୍ତ୍ତ ମୋର ସେତେବେଳେ ସେଇ ଅନାମିକା

ପାଖରେ ହିଁ ଖର୍ଚ୍ଚ ହୋଇଯାଉଥିଲା- ପ୍ରାୟ ଅଧିକାଂଶ ସମୟ ଏକ ଅସ୍ୱାଭାବିକ ନିରବତା ଭିତରେ । ତୋ'ରି ଭାଷାରେ କହି ବସିଲେ- "ନିରବରେ ଶବ୍ଦ ବିନିମୟ । ଚାରିପଟେ କୌତୁହଳୀ ପୃଥିବୀ ।" ମୁଁ ଗୋଟିଏ ପୁଅ ଆଉ ମୋରି ପାଖରେ ବସିଥାଏ ସେ ଏକ 'ଝିଅ' । ଏହା ହିଁ ବୋଧେ ଆମର ପ୍ରକୃତ ପରିଚୟ । ଆଉ ଯେତେସବୁ ଜଣାଶୁଣା ସାମାଜିକ ସମ୍ପର୍କର ସଂଜ୍ଞା ବା ପରିଚୟ ଅଛି ଆମ ଭିତରେ- ତା'ର ବା କି ମୂଲ୍ୟ ଅଛି ? ସେସବୁ ଅବାନ୍ତର, ମୂଲ୍ୟହୀନ ଓ କୃତ୍ରିମ । କହ୍ନେଇରେ- ତୋ'ର ସ୍ମୃତିଚାରଣ କରୁ କରୁ ଅନାମିକାର ସ୍ମୃତି ବି ମୋର ମନପ୍ରାଣକୁ ବେଶ୍ ଆଚ୍ଛନ୍ନ କରି ପକାଇଲାଣି । ପ୍ରତିଟି ସନ୍ଧ୍ୟାରେ ମୋ'ଠାରୁ ନିରବତାର ଅନେକ ଅର୍ଥପୂର୍ଣ୍ଣ ସଂଳାପ ଶୁଣିବା ଲାଗି ସେ ଆଉ ଏ ସହରରେ ନାହିଁ ।

ହଁ, ଗତବର୍ଷ ଜୁଲାଇର ସେଇ ସନ୍ଧ୍ୟାରେ- ଅନାମିକା ପାଖରେ ବସି ନିରବତାର ଶବ୍ଦ ବିନିମୟ କଲାବେଳେ ସମ୍ବାଦପତ୍ର ଉପରେ ଦୃଷ୍ଟି ପରିକ୍ରମା କରୁଥିଲି । ହଠାତ୍ ଦୃଷ୍ଟି ମୋର ସ୍ଥିର ହୋଇଗଲା- ଗୋଟିଏ ଛୋଟ ସମ୍ବାଦ ଉପରେ । ତୋ'ରି ସମ୍ବାଦ । ତୁ ଭୀଷଣ ଅସୁସ୍ଥତାର ଶିକାର ହୋଇ ରାଜଧାନୀର ହସ୍‌ପିଟାଲ୍‌ରେ ଶଯ୍ୟାଶାୟୀ ହୋଇଛୁ । ସମ୍ବାଦ ତଳେ ତୋ'ର ଠିକଣା ବି ଲେଖାଥିଲା । ସାଙ୍ଗେ ସାଙ୍ଗେ ମୋ' ଡାଏରୀରେ ଟିପିନେଲି । ଭାବିଲି, ପରଦିନ ସକାଳେ ତୋର ଆରୋଗ୍ୟ କାମନା କରି ଚିଠିଟିଏ ଲେଖିବି । ପୁରୀ ଗଲାବେଳେ ଭୁବନେଶ୍ୱରରେ ଓହ୍ଲାଇ ତତେ ଦେଖିଦେଇଯିବି । ମାତ୍ର ଏତେଦୂର ଯିବାକୁ ପଡ଼ିନଥିଲା । ଚିଠିଟିଏ ଲେଖିବା ଲାଗି ସମୟ ଗଡ଼ିଯାଇଥିଲା । ପ୍ରସ୍ତୁତ ହେଉ ହେଉ ପୃଥିବୀରେ ଅନେକ ସମୟ ବହିଯାଏ । ହାତରେ ସମ୍ବାଦପତ୍ରଟି ଧରି ସେଇଠି ବସିଛି- ମାତ୍ର କେତୋଟି ମୁହୂର୍ତ୍ତର ବ୍ୟବଧାନ ପରେ କଟକ ଆକାଶବାଣୀରୁ ଭାସିଆସିଲା- ସମ୍ବାଦଦାତାଙ୍କର ଗମ୍ଭୀର କଣ୍ଠସ୍ୱର- ଶୋକ ସମ୍ବାଦଟିଏ, ତରୁଣ କଥାକାର କହ୍ନେଇଲାଲ୍ ରାଜଧାନୀର ହସ୍‌ପିଟାଲରେ ଗତରାତିରେ ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି । ସହଜରେ ମୁଁ ମୋର କାନ ଦୁଇଟିକୁ ବିଶ୍ୱାସ କରିପାରିଲି ନାହିଁ । ଅନାମିକାକୁ ଚାହିଁଲି- ତା' ଦୃଷ୍ଟିରେ ବିସ୍ମୟ- ନିଜର ଶ୍ରବଣେନ୍ଦ୍ରିୟ ପ୍ରତି ତା'ର ବି ସେଇ ଅନାସ୍ଥାଭାବ । ଅଥଚ ସେ ବି ଠିକ୍ ସେଇ ଏକା କଥା ଶୁଣିଛି । ତୋ' ଜୀବନର ସେଇ ଚରମ ନିଷ୍ଠୁର ସତ୍ୟଟିକୁ ଆକାଶବାଣୀର ସମ୍ବାଦଦାତାଜଣକ ଆମ ଦୁହିଁଙ୍କ କାନରେ ପହଞ୍ଚାଇ ଦେଇଛନ୍ତି । ଅବିଶ୍ୱାସ କରିବାର କିଛି ନଥିଲା । ତଥାପି ବି ମନ ବୁଝୁନଥିଲା ।

ତେବେ ସତରେ କ'ଣ ଛାତିରେ ଅସହ୍ୟ ଯନ୍ତ୍ରଣା ନେଇ ମୃତ୍ୟୁ ସହିତ ସଂଗ୍ରାମ କରୁ କରୁ ତୁ ଶେଷରେ ହାରିଗଲୁ ? ପରାସ୍ତ ସୈନିକର ଗ୍ଲାନି ନେଇ କ୍ଳାନ୍ତ ଶ୍ରାନ୍ତ ହୋଇ ସବୁଦିନ

ପାଇଁ ସେଇ ହସ୍‌ପିଟାଲର ବେଡ୍‌ରେ ଶୋଇପଡିଲୁ ? ଅସହ୍ୟ ନିଥର ମୁହୂର୍ତ୍ତ । ନିରବରେ ଶବ୍ଦ ବିନିମୟ... ଚାରିପଟେ କୌତୁହଳୀ ପୃଥିବୀ । ମୋ ହୃଦୟର ସବୁ ରୁଦ୍ଧ ଆବେଗ ଓ ଅପ୍ରକାଶିତ ଭାବର ଭାଷା ଆଖିକୋଣରେ ଦୁଇବୁନ୍ଦା ଲୁହ ହୋଇ ଝରିପଡ଼ିଲା । ପ୍ରଥମଥର ପାଇଁ ଡାଏରୀରେ ଟିପା ହୋଇଥିବା ଅନେକ ଠିକଣା ଭିତରୁ ସଦ୍ୟ ଲେଖା ହୋଇଥିବା ତୋ'ରି ଠିକଣାକୁ ନାଲିକାଳିରେ ସେଇ ମୁହୂର୍ତ୍ତରେ କାଟିଦେବାକୁ ପଡ଼ିଲା । ଏ ପୃଥିବୀରୁ ସବୁଦିନ ଲାଗି ହଜିଗଲା ତୋ'ର ଠିକଣା- ଲୁଚିଗଲା ତୋର ହସ ହସ, ନିଷ୍କପଟ ଓ ସରଳ ପ୍ରୀତିର ଆବେଗରେ ଛଳଛଳ, ସତେଜ, ସୁନ୍ଦର ମୁହଁଟି ।

"ଫୁଟିବା ଆଗରୁ ଅନେକ ଫୁଲ ଝରିଗଲା । ଆରମ୍ଭ କରୁ କରୁ ଅନେକ କାହାଣୀ ଶେଷ ହୋଇଗଲା ।" ତୋ'ର ଭାବ ଓ ଅନୁଭବର ଭାଷା । ଏ ପୃଥିବୀରେ ତୋ'ର ସମୟ ଯେ ଖୁବ୍ ଶୀଘ୍ର ଶେଷ ହୋଇ ଆସୁଛି- ଏଇ ସତ୍ୟକୁ ତୁ ହୁଏତ ଠିକ୍ ଆବିଷ୍କାର କରି ନେଇଥିଲୁ । ମାତ୍ର ଜୀବନର ସକଳ ବ୍ୟଥା ଓ ବ୍ୟର୍ଥତା, କ୍ରନ୍ଦନ ଓ ଯନ୍ତ୍ରଣା ସତ୍ତ୍ୱେ ଏ ପୃଥିବୀରୁ ତୁ ପଳେଇ ଯିବାକୁ ଚାହିଁ ନଥିଲୁ । ତା'ର କାରଣ ହୁଏତ ସମଗ୍ର ପୃଥିବୀଟାକୁ ତୁ ଭଲପାଇ ବସିଥିଲୁ । ମାଟିର ସବୁ ମଣିଷଙ୍କ ସହିତ ମିତ ବସିବାକୁ ଚାହିଁଥିଲୁ। ସେମାନଙ୍କର ଭାବ-ଅଭାବର ଅନୁଭୂତିକୁ ନିଜର କରିବାକୁ ମନ କରିଥିଲୁ । "ମୁଁ ଜାଣେ ମୁଁ ଦିନେ ମରିବି । କିନ୍ତୁ ଏତେ ଶୀଘ୍ର କେବେ ମରିବାକୁ ଚାହିଁନାହିଁ । ବର୍ତ୍ତମାନ ତ ପୃଥିବୀରେ ଅନେକ ସହଜ, ସୁଲଭ ଅନୁଭୂତିରୁ ଅନୁଭବ କରିନାହିଁ ।" (ତୋ ଗପ- 'ଅସମ୍ଭବ ମୃତ୍ୟୁ') ତଥାପି ତୋ'ର ମନେ ହୋଇଥିଲା, ତୁ ଖୁବ୍ ବେଶିଦିନ ବଞ୍ଚିବୁ ନାହିଁ । ସବୁବେଳେ ସ୍ୱପ୍ନରେ ଦେଖିଲୁ ସେଇ ଗୋଟିଏ ଦୃଶ୍ୟ- ଘର ଖଣ୍ଡିକ ତୋର କେମିତି ଜଳିପୋଡ଼ି ପାଉଁଶ ହୋଇଯାଉଛି । ଅସହାୟ ଅବସ୍ଥାରେ କେବଳ ଛଟପଟ ହୋଇ ଏଣେତେଣେ ତୁ ଦୌଡ଼ିବାରେ ଲାଗିଛୁ । କେତେବେଳେ ବା ପିନ୍ଧିଥିବା କଳାକୋଟ୍‌ରେ ନିଆଁ ଚରିଯାଉଛି- ପକେଟ୍‌ଟା ଜଳି ଯାଉଛି । "କୋଟ୍‌ର ନିଆଁ ମୋ' ଛାତିରେ ଚରିଯାଉଛି । ଜଳିଯାଉଛି- ଛାତି ଲୋମ, ଜଳି ଉଠୁଛି- ମୋର ହାତ, ଗୋଡ଼, ମୁଣ୍ଡ ପେଟ, ଆଖି କାନ, ନାକ । ××× ଆଖି ବନ୍ଦ କରି ଅନୁଭବ କଲି ମୋ' ଉପରେ ଗୋଟିଏ କ'ଣ ଜଳୁଛି ଦିନରାତି ରାବଣର ଚିତା ଭଳି । ଛାତି ଉପରେ ସବୁବେଳେ ଯେଉଁ କିରାସିନିର ଡିବିରିଟା ନିଭୃତରେ ଦିକିଦିକି ହୋଇ ଜଳୁଥିଲା, ସେଇଟା ଯେମିତି ଓଲଟି ପଡ଼ିଛି । ଛାତିରେ ଚାରିଆଡ଼େ ଚରିଯାଇଛି କିରାସିନି । ଚରିଯାଇଛି ଡିବିରିର ନିଆଁ।

(ଗୋଟିଏ ଘରପୋଡ଼ିର ଦୃଶ୍ୟ)

ସବୁ ସ୍ୱପ୍ନ ସତ ହୁଏନାହିଁରେ କହ୍ନେଇ । କେବଳ ଦୁଃସ୍ୱପ୍ନ ଗୁଡ଼ାକ ହିଁ ବୋଧେ ସତ ହୁଏ । ସେଇଥିପାଇଁ ଏ ପୃଥିବୀରେ ତୋ'ର ଘର ତୋଳିବାର ସ୍ୱପ୍ନ ଆକାଶର ଧୂଆଁ ହୋଇ

ମିଳେଇଗଲା ସିନା- ଘରପୋଡ଼ି ଯାଉଥିବାର ସ୍ୱପ୍ନ ଅତି ନିଷ୍ଠୁର ଭାବରେ କିନ୍ତୁ ସତ ହୋଇଗଲା । ଏହି ଦୁଃସ୍ୱପ୍ନ ଯେ ତୋ' ପାଇଁ ସତ ହେବ ଏକଥା ତୁ ହୁଏତ ନିଶ୍ଚିତ ଭାବେ ଜାଣିପାରିଥିଲୁ । ସେଇଥିପାଇଁ ତୋ'ର ସେଇ ଗଳ୍ପରେ (ଗୋଟିଏ ଘରପୋଡ଼ିର ଦୃଶ୍ୟ) ସମସ୍ତଙ୍କୁ ଗୁଡ଼୍‌ବାଏ କରିଦେଇଗଲୁ- ତୋର ଖଟ ଓ ଖଟ ଉପରେ ମେଲା ହୋଇଥିବା ଲୋଚାକୋଚା ମଇଳା ବିଛଣା ଚାଦରକୁ, ବହି ଓ ଅସମ୍ପୂର୍ଣ୍ଣ ଗପରେ ଛଟପଟ ହେଉଥିବା ଶବ୍ଦମାନଙ୍କୁ, ତୋ'ର ବିଛଣାରେ ତୋ' ରକ୍ତ ସମ୍ପର୍କର ଛାରପୋକ ଓ ଆତ୍ମଗୋପନ କରିଥିବା ମଶାମାନଙ୍କୁ, କାନ୍ଥ କ୍ୟାଲେଣ୍ଡରରେ ହସୁଥିବା ସେଇ ହସକୁରି ଝିଅଟାକୁ- ସମସ୍ତଙ୍କୁ କହିଦେଇ ଆସିଲୁ ଗୁଡ଼୍‌ବାଏ । ବିଦାୟ ବନ୍ଧୁ ବିଦାୟ ! ଶେଷରେ କାନ୍ଥରେ ଥିବା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତିକୁ ଚାହିଁ ସେମାନଙ୍କ ବିରୁଦ୍ଧରେ ତୋ'ର ଯେଉଁ କାତର ଅଭିଯୋଗ, ଆକୁଳ କଣ୍ଠର ଚିତ୍କାର- "ତୁମେ ସବୁ ମୋର ରିଲେଟିଭ୍ ଥାଉ ଥାଉ ପୃଥିବୀ ଉପରେ ପାଦ ରଖିବାପାଇଁ ମୋର ନିଜସ୍ୱ ଇଞ୍ଚେ ବି ଜାଗା ନାହିଁ" ଏବେ ବି ମୋର କାନରେ ପ୍ରତିଧ୍ୱନି ତୋଳୁଛି । ତୋର ଅଦୃଶ୍ୟ ହେବାର ବହୁଦିନ ପରେ ବି ଗପ ଭିତରୁ ଏବେ ତୋ'ର ସେଇ ବିଦାୟକାଳୀନ କରୁଣ ମୁହଁର ପ୍ରତିଛବି କଳ୍ପନାରେ ଆଙ୍କି ମୁଁ ମୋ' ଛାତିରେ ଭୀଷଣ ଯନ୍ତ୍ରଣା ଅନୁଭବ କରୁଛି ।

ମନେପଡୁଛି ତୋର ! ସେଇ ଡିସେମ୍ବର ୩୧ ତାରିଖ ରାତିର କଥା ! ଶୀତ ରାତିରେ ଠିକ୍ ବାରଟାବେଳେ ଆମେ ସବୁ ଏକାଠି ହୋଇଥିଲେ- କବିବନ୍ଧୁ ଫନୀ ମହାନ୍ତିର ଡାକରାରେ, ରାଜଧାନୀ ରାଜମହଲ ଛକ ଉପରେ- ନୂଆବର୍ଷ (୧୯୭୫)କୁ ସ୍ୱାଗତ ଜଣାଇବା ଲାଗି । ରାଜଧାନୀର କବିବନ୍ଧୁମାନେ ଥିଲେ । ଗାଳ୍ପିକ ଅଖିଳମୋହନ ପଟ୍ଟନାୟକ, ମହାପାତ୍ର ନୀଳମଣି ସାହୁ ଓ ମଧୁ ମହାନ୍ତି ଆସିଥିଲେ । ତୁ ଥିଲୁ । ପୁରୀରୁ ମୁଁ ଓ କୁମାର ମହାନ୍ତି ପ୍ରଭୃତି ଯାଇଥିଲୁ । ସମସ୍ତେ ସେଇ ଶୀତ ରାତିରେ ସାରା ରାତି କବିତା ପଢ଼ିଥିଲୁ- ଗୀତ ଗାଇଥିଲୁ- ମନର ସବୁ ଗଣ୍ଠି ଓ ଅଡୁଆ ସୂତାକୁ ଫିଟେଇ ଦେଇଥିଲୁ । ଛଳନାର ଘୋଡ଼ଣୀ ସବୁକୁ ଦେହ ଓ ମନ ଉପରୁ କାଢ଼ି ଦୂରକୁ ଫିଙ୍ଗି ଦେଇଥିଲୁ । ରାତିକ ପାଇଁ ଅନ୍ତତଃ ବେଶ୍ ସହଜ ଓ ସରଳ ହୋଇ ଯାଇଥିଲୁ । ସାରା ରାତି ଗାଇଥିଲୁ। ମନଖୋଲି କଥା ହୋଇଥିଲୁ । ମୋର ମନେ ହୋଇଥିଲା ଆମେ ସମସ୍ତେ ଯେମିତି ଗୋଟିଏ ଘରର, ଗୋଟିଏ ପରିବାରର- ବିଭିନ୍ନ କାର୍ଯ୍ୟ ଉପଲକ୍ଷେ ପରସ୍ପର ଠାରୁ ଦୂରେଇ ଯାଇଥିଲୁ । ଆଜି ସୁବିଧା ଓ ସୁଯୋଗ ପାଇ ପୁଣି ଏକାଠି ହୋଇଯାଇଛୁ । ସେଇ ମନଖୋଲା ଭାବ ଓ ଭାଷାର ବିନିମୟ । ହସଖୁସି, ଗୀତ ଓ କବିତାର ଆସର ଭିତରେ ରାତି କେତେବେଳେ ପାହି

ଯାଇଥିଲା । ଚାରିଆଡ଼େ ଶୁଭ୍ର, ସତେଜ ଆଲୁଅର ଫୁଲ ବିଞ୍ଚିଦେଇ ନୂଆବର୍ଷର ପ୍ରଥମ ସୂର୍ଯ୍ୟଙ୍କୁ ପ୍ରଣାମ କରିଥିଲେ । ପରସ୍ପରର ଶୁଭ ମନାସି ବିଦାୟ ନେଇଥିଲେ । ମୋର ମନେପଡୁଛି- ଯିବା ପୂର୍ବରୁ ହାତରେ ମୋର ହାତ ମିଳେଇ ତୁ କହିଯାଇଥିଲୁ; ଦେଖିବେ ସାର୍ (ବୟସରେ ବଡ଼ ଥିଲି ଓ ଅଧ୍ୟାପକ ଥିଲି ବୋଲି ବୋଧେ ମୋତେ 'ସାର୍' ସମ୍ବୋଧନ କରୁଥିଲୁ) ଏଇ ଜାନୁଆରିରୁ ମୋର କଲମ ଏଥର ଅବାରିତ ଗତିରେ ଲେଖି ଚାଲିବ । ଏ ବର୍ଷ ବିଭିନ୍ନ ପତ୍ରପତ୍ରିକା ଉପରେ ଟିକିଏ ଦୃଷ୍ଟି ରଖିଥିବେ । ଯେପରି ମୋର କୌଣସି ଗଳ୍ପ ଆପଣଙ୍କ ଦୃଷ୍ଟିରୁ ବାଦ୍ ପଡ଼ିନଯାଏ ।" ମୋତେ ବି ଚେତେଇ ଦେଇ ଯାଇଥିଲୁ- ମୁଁ ଯେମିତି ଲେଖାଲେଖିରେ ଆଉ ହେଳା ନକରେ ।

ମୋର ଆନନ୍ଦ ଓ ବିସ୍ମୟର ସୀମା ରହିଲା ନାହିଁ- ଯେତେବେଳେ ମୁଁ ଦେଖିଲି ସେଇ ନୂଆବର୍ଷର ପ୍ରଥମ ମାସରେ ହିଁ 'ନବରବି', 'ଆସନ୍ତାକାଲି' ଓ 'ଝଙ୍କାର' ପ୍ରଭୃତି ପତ୍ରପତ୍ରିକାରେ ତୋର ଗୋଟିଏ ଲେଖାଏଁ ଗଳ୍ପ ପ୍ରକାଶ ପାଇଛି । ସେହି ନୂଆବର୍ଷରୁ ହିଁ ଓଡ଼ିଆ ଗଳ୍ପଭଣ୍ଡାରକୁ ନୂତନ ବିଭବରେ ଋଦ୍ଧିମନ୍ତ କରିବାର ପ୍ରୟାସ ନେଇ ବହୁପୂର୍ବରୁ ବୋଧେ ତୁ ତୋର କଲମ ସଜାଡ଼ି ପ୍ରସ୍ତୁତ ହୋଇଥିଲୁ। ତା'ପରେ ଜୁଲାଇର ସେଇ ଶେଷ ରାତି ପର୍ଯ୍ୟନ୍ତ ଛାତିର ଯନ୍ତ୍ରଣାକୁ ଗୋପନ ରଖି ଅଣନିଶ୍ୱାସୀ ହୋଇ ତୁ ଲେଖିଚାଲିଲୁ ଏବଂ ପ୍ରକାଶିତ ହେଲୁ । ମାତ୍ର ଭାଗ୍ୟର କି ନିଷ୍ଠୁର ଉପହାସ ! ଛ'ଓ୍ୱରୀର ନୂଆ ସୂର୍ଯ୍ୟ ଉଇଁବା ପୂର୍ବରୁ ଜୀବନ-ସୂର୍ଯ୍ୟ ତୋର ଅସ୍ତମିତ ହୋଇଗଲା । ମନ ଓ ମୁନ ତୋର ବେଶ୍ ମଜବୁତ୍ ହୋଇ ଆସିଲାବେଳକୁ କାଳ ତୋ ସହିତ ଦାଉ ସାଧିଲା । ଲିଭିବୁ ବୋଲି ବୋଧହୁଏ ଏତେ ଜୋର୍‌ରେ ଜଳି ଉଠିଥିଲୁ- ତୋର ସମସ୍ତ ଆଲୁଅକୁ ଚାରିଦିଗରେ ବିଚ୍ଛୁରିତ କରି ।

ତା'ପରେ ତୋ ସହିତ ପୁଣି ଦେଖା କଟକରେ- 'ଅନାମ'ଙ୍କ ମେଳଣରେ- 'ଶ୍ରୀରାମଚନ୍ଦ୍ର ଭବନ'ରେ । ତାହା ହିଁ ବୋଧେ ଶେଷଦେଖା । ସଭା ମଉଳିବା ପୂର୍ବରୁ ଆମେ କେତେଜଣ ଚାଲି ଆସିଥିଲେ ବସ୍‌ଷ୍ଟାଣ୍ଡକୁ ଯିଏ ଯାହା ବସ୍ ଧରିବୁ ବୋଲି । ସୁବୋଧ, ଚିନ୍ତାମଣି, ନେତ୍ରାନନ୍ଦ ବୋଧେ ସାଙ୍ଗରେ ଥିଲେ । ତୁ ରାଜଧାନୀ ଓ ମୁଁ ପୁରୀ ଫେରିବାର କଥା । ବସ୍‌କୁ ଅପେକ୍ଷା କରି ଠିଆ ହେଲେ । ବସ୍ କିନ୍ତୁ ଆସୁ ନଥିଲା- ବୋଧେ ଶେଷଥର ପାଇଁ ମନଖୋଲି ଭଲକରି ଗପିନେବା ପାଇଁ ଆମ ଦୁହିଁଙ୍କୁ ସୁଯୋଗ ଦେବାଲାଗି । 'ଅନାମ-୧୧'ରେ ଅନେକ କବିତା ଭିତରେ ତୋର ବି କବିତାଟିଏ ପ୍ରକାଶ ପାଇଥିଲା । ସେଇଟି ପ୍ରଥମେ ପଢ଼ିଥିଲି- କାରଣ ତାହା ଥିଲା ଜଣେ ଗଳ୍ପ ଲେଖକର ସ୍ୱତଃସ୍ଫୂର୍ତ୍ତ ଭାବୋଚ୍ଛ୍ୱାସର କବିତା । ମନକୁ ବେଶ୍ ଛୁଇଁଥିଲା । ସେଇକଥା ତତେ ଜଣେଇଦେବା ମାତ୍ରେ ତୁ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଥିଲୁ । "ମୋ କବିତା ସତରେ ଆପଣଙ୍କ ମନକୁ ପାଇଛି !" ଏତିକି

କହି ସ୍ଥାନ କାଳ ସବୁ ଭୁଲି ସେଇ ବସ୍‌ଷ୍ଟାଣ୍ଡରେ ନିଜ କଣ୍ଠରେ ଆବୃତ୍ତି କରିଥିଲୁ ବେଶ୍ ଭାବବିହ୍ୱଳ ହୋଇ ତୋର ସେଇ ଭଲ ପାଇବାର ଗୀତଟି-

"ଭଲରେ ଭଲ- ଭଲରେ ଭଲ । କେବଳ ଭଲପାଇବା ଭଲ

× × ×

ତୋଅର ଭଲ ମୋର ପାଇବା / ମୋଅର ଭଲ ତୋର ପାଇବା

ଭଲ ପାଇବା- ଭଲ ପାଇବା / ତାକ୍ ଧିନାଧିନ୍ ଭଲ ପାଇବା

ଭଲ ପାଇବା- ଭଲ ପାଇବା / ପାଇଲେ ଭଲ ସବୁ ପାଇବା"

କବିତା ସରିଆସିଲାବେଳକୁ ତୋ' ପାଦ ବି ସ୍ୱର ସହିତ ତାଳ ମିଳେଇବାକୁ ଆରମ୍ଭ କରିଥିଲା । ମୁଁ ଖାଲି ଭାବୁଥିଲି- ସମସ୍ତଙ୍କର ସଙ୍ଗ ଲୋଡୁଥିବା, ସମସ୍ତଙ୍କୁ ଭଲ ପାଇପାରୁଥିବା ଓ ସେଇ ଭଲ ପାଇବାର ଅଜସ୍ର କାହାଣୀ, କବିତା ଲେଖୁଥିବା, ସଙ୍ଗଲୋଭୀ, ତରୁଣ ପ୍ରେମିକଟିକୁ ମୁଁ ସାହିତ୍ୟିକର ସ୍ୱୀକୃତି ଦେବି ନା ସାମାନ୍ୟ ପୁରସ୍କାର ଓ ସ୍ୱୀକୃତି ଲାଭର ଆଶାରେ ପରସ୍ପରକୁ କାଦୁଅ ଫିଙ୍ଗାଫିଙ୍ଗି ହେଉଥିବା ଏବଂ ନିଜର କଲମ ଓ କଳ୍ପନାର ଶକ୍ତିକୁ ଅନ୍ୟର କୁତ୍ସାରଟନାରେ ନିୟୋଜିତ କରୁଥିବା ବହୁ ଗ୍ରନ୍ଥର ସ୍ରଷ୍ଟା ଭାବରେ ସୁପରିଚିତ କବି- କଥାକାରମାନଙ୍କୁ ସାହିତ୍ୟିକ ବୋଲି ସମ୍ମାନ ଦେବି !

ବସ୍ ତଥାପି ଆସି ନଥିଲା । ତୁ ପ୍ରସ୍ତାବ ଦେଲୁ- ଚାଲନ୍ତୁ, ଆଜି ରାତିଟା ସୁବୋଧ ଘର ଛାତରେ ଖୋଲା ଆକାଶକୁ ଚାହିଁ ଗପ କରି ବିତେଇଦେବା ! ତୋର ଅନେକ ଭଲଗୁଣ ଥିଲା- ଯାହା ମୋର ନଥିଲା । ଯେ କୌଣସି ବିଷୟରେ ତୁ ଚଟାପଟ୍ ନିଷ୍ପତ୍ତି ନେଇପାରୁଥିଲୁ ଏବଂ ଭୁଲ୍ ହେଉ କି ଠିକ୍ ହେଉ, ସେଥିରୁ ସୁଫଳ ମିଳୁ ବା ନମିଳୁ- ନିଷ୍ପତ୍ତି ନେବା ମାତ୍ରେ ତୁ ଆଗେଇ ଯାଉଥିଲୁ । କ'ଣ ନହେଲା, ସେଥିଲାଗି ଶୋଚନା କରୁ ନଥିଲୁ କି କ'ଣ ହେବ ସେଥିଲାଗି ଲମ୍ବା ଯୋଜନା କରୁ ନଥିଲୁ । ସେଥିପାଇଁ ଅନେକ ଦୁଃଖରେ ବି ତୁ ସବୁବେଳେ ହସି ପାରୁଥିଲୁ ଏବଂ ସାଧାରଣ କୌଣସି ଘଟଣାରେ ଦୁଃଖ ଓ ଚିନ୍ତାର ବିଶେଷ କାରଣ ନଥାଇ ବି ଗଭୀର ଦୁଃଖ ଓ ଚିନ୍ତାରେ ପଡ଼ି ମୁଁ ସନ୍ତୁଳି ହେଉଥିଲି । ବ୍ୟକ୍ତିତ୍ୱର ଏ ଭିନ୍ନତା ସତ୍ତ୍ୱେ ଅନୁଭୂତିରେ କିନ୍ତୁ ଅନେକ ସାମଞ୍ଜସ୍ୟ ଥିଲା ଆମ ଦୁହିଁଙ୍କ ଭିତରେ । ମୋର ବିଭିନ୍ନ ଗଳ୍ପ ପଢ଼ି ତୁ ମୋତେ ଜଣେ ପ୍ରଥମ ଶ୍ରେଣୀର ପ୍ରେମିକ ବୋଲି ଧରି ନେଇଥିଲୁ ଏବଂ ଖାସ୍ ସେଇଥିପାଇଁ ମୋତେ ବେଶ୍ ସମ୍ମାନ ଦେଉଥିଲୁ। ତୋ' ମତରେ ଅକୁଣ୍ଠ ଚିତ୍ତରେ ଆପଣାର ହୃଦୟକୁ ଯେ ଅନ୍ୟମାନଙ୍କ ଭିତରେ ବାଣ୍ଟି ଦେଇପାରେ, ସେ ହିଁ ଶକ୍ତିଶାଳୀ, ଭାଗ୍ୟବାନ୍ ପୁରୁଷ । ସେହି ଦୃଷ୍ଟିରୁ ମୁଁ ତତେ ହତଭାଗ୍ୟ ଓ ଅଭିଶପ୍ତ ବୋଲି ବିଚାରିବି

କାହିଁକି ? ବରଂ ଆମମାନଙ୍କ ଭିତରେ ପ୍ରଥମରୁ ହିଁ ବାରି ହୋଇ ପଡୁଥିଲୁ ଏବଂ ସବୁଦିନ ଯାଏ ସେମିତି ବାରିହୋଇ ରହିଗଲୁ । ଭବିଷ୍ୟତରେ ଅଧିକ ପ୍ରତିଷ୍ଠିତ ହୋଇ ସମ୍ମାନ ଓ ସରକାରୀ ସ୍ୱୀକୃତି ଲାଗି ଯାବତୀୟ ଅସାହିତ୍ୟିକ କାର୍ଯ୍ୟରେ ଲିପ୍ତ ଥିବା ତଥାକଥିତ ସାହିତ୍ୟିକଙ୍କ ମେଳରେ ଜଣେ ହୋଇ ମିଶିଯିବା ପୂର୍ବରୁ ଖସି ପଳେଇଲୁ । ସବୁଦିନ ପାଇଁ ସମସ୍ତଙ୍କ ଠାରୁ ତୁ 'ଅଲଗା' ଓ ବ୍ୟତିକ୍ରମ ହୋଇ ରହିଗଲୁ ।

ହଁ- ସେଦିନ ପୁରୀ ଯିବି କି ନଯିବି ଦ୍ୱନ୍ଦ୍ୱରେ ପଡ଼ି ଶେଷରେ ମୁଁ ତୋ'ଠାରୁ ଖସି ପଳାଇଲି । ଗଲାବେଳେ କହିଥିଲୁ- ତୋ ପାଖକୁ ନିୟମିତ ଚିଠି ଲେଖିବା ଲାଗି । ଅନୁଗୁଳରେ ପହଞ୍ଚି ଅନେକ ଥର ମୁଁ ତୋ' ପାଖକୁ ଚିଠି ଲେଖିବି ବୋଲି ଭାବିଛି । କାଗଜ କଲମ ସଜାଡ଼ି ବସିଛି, ମାତ୍ର ଲେଖିପାରି ନାହିଁ । ଯେଉଁମାନଙ୍କୁ ମୁଁ ଖୁବ୍ ଭଲପାଏ ଓ ଭଲ କରି ଚିଠି ଖଣ୍ଡିଏ ଲେଖିବି ବୋଲି ମନସ୍ଥ କରିଥାଏ, ସେମାନଙ୍କୁ ଆଦୌ ସହଜରେ ଚିଠି ଲେଖି ହୁଏନାହିଁ । ଅବଶ୍ୟ ଏବେ ସେ ଅଭ୍ୟାସକୁ ପରିବର୍ତ୍ତନ କରିବାକୁ ଚେଷ୍ଟା କରୁଛି । ତା' ନହେଲେ ଅନେକ କ୍ଷେତ୍ରରେ ଭୁଲ୍ ବୁଝାମଣାର ଶିକାର ହେବାକୁ ପଡୁଛି । ଏଇ ତ ଅନାମିକା ଚିଠି ଲେଖିଛି- ଚିଠିର ପ୍ରତ୍ୟେକଟି ଶବ୍ଦ ତା' ଆଖିର ଲୁହ ଓ ଆହତ ହୃଦୟର ଅଭିମାନରେ ଓଜନିଆ ଜଣାପଡୁଛି । ଅଭିମାନର କାରଣ ମୋରି ଚିଠିପାଇଁ ତା'ର ପ୍ରତିଦିନ ବ୍ୟାକୁଳ ପ୍ରତୀକ୍ଷା ଓ ପରିଣାମରେ କେବଳ ହତାଶା ଓ ବ୍ୟର୍ଥତା ।

ଜାଣିଲୁ କହ୍ନେଇ, ଏଇ ଅଭିମାନିନୀ ଅନାମିକା ସହିତ ଦୀର୍ଘ ଦୁଇବର୍ଷର ସମ୍ପର୍କ ମୋର । ତା' ଆଖିରେ ମୋ' ଆଖି ମିଳେଇଛି । ମନରେ ମୋ ମନ ଯୋଡ଼ିଛି । ହୃଦୟର ଦିଆନିଆ ହୋଇଛି, ହେଲେ ଯେଉଁ ଗୀତଟି ମୁଁ ତା' ଆଗରେ ଗାଇ ପାରିନଥିଲି ଓ ଯେଉଁ କଥା ପଦକ କହି ପାରିନଥିଲି, ସେଇ କଥାଟି କହିବା ଲାଗି ତୋର 'ଭଲ ପାଇବା'ର ସେଇ କବିତାଟି ମୋ' ମନରେ ଅଦ୍ଭୁତ ଶକ୍ତି ଓ ସାହସ ଭରିଦେଲା । ବେଶ୍ ସଫଳତାର ସହ ମୁଁ ତା' ପାଖରେ ଆବୃତ୍ତି କଲି ତୋର ସେଇ କବିତାଟି- ବିଶେଷକରି ସେଇ ପଦକ-

ଦୁଇଦିନର ଦୁନିଆଟାରେ / ମୁଁ ଖୋଲିଛି ତୁ ଖୋଲି ଦେ /
ଛାତି ଖୋଲି ଦେ ଛାତିକୁ ମିଶା / ଛାତିରେ ମୋର, ଛାତିକୁ ତୋର /
ତୋହର ଛାତି ମୋହରି ଛାତି / ମିଶାଇ ଦେବା, ଭଲ ପାଇବା- ପାଇବା ଭଲ ।

ଛଳନାର ସବୁ ଆବରଣ ଖୋଲିଗଲା, ଛାତିରେ ଛାତି ମିଶିଲା । ପବିତ୍ର ସମ୍ପର୍କ ଆମର ପୂର୍ଣ୍ଣତାର ପ୍ରାପ୍ତିରେ ଆହୁରି ସୁନ୍ଦର ଓ ପବିତ୍ରତର ହେଲା ।

ତୋ' କବିତାର ସଫଳ କାର୍ଯ୍ୟକାରିତା ଓ ଅଦ୍ଭୁତ ଯାଦୁକରୀ ଶକ୍ତି ଲାଗି ଚିଠି ଲେଖି ତତେ ପୁଣି ଥରେ ବଧେଇ ଜଣାଇବା ପୂର୍ବରୁ ତୁ କୁଆଡ଼େ ଅଦୃଶ୍ୟ ହୋଇଗଲୁ । ତୁ ଏ ପୃଥିବୀରେ ବଞ୍ଚିଥିଲାବେଳେ ତତେ ଚିଠି ଖଣ୍ଡିଏ ଲେଖିପାରି ନଥିଲି ବୋଲି ମୋର ଯେଉଁ ଅବଶୋଷ, ତାକୁଇ ମେଣ୍ଟାଇବା ଲାଗି ମୁଁ ଆଜି ତୋ' ପାଖକୁ ଦୀର୍ଘ ଚିଠିଟିଏ ଲେଖି ବସିଛି । ମାତ୍ର ସବୁବେଳେ ମନରେ ଗୋଟିଏ ଭାବନା, ଏ ଚିଠି ତୋ' ପାଖରେ ସତରେ ପହଞ୍ଚିବ ତ ! ତୋର ସେଇ ଅନ୍ୟ ପୃଥିବୀର ଠିକଣା ତ ମୋତେ ଜଣାନାହିଁ ! କାହାକୁ ପଚାରିବି ? ଈଶ୍ୱରଙ୍କୁ ଦେଖିଲେ ପଚାରନ୍ତି । ମାତ୍ର ତାଙ୍କ ସହିତ କ'ଣ ସତରେ ମୋର ସାକ୍ଷାତ ହେବ ? ତୋର ସେଇ ନୂଆ ପୃଥିବୀରେ ଈଶ୍ୱରଙ୍କୁ କେବେ ଭେଟିଲୁଣି ? ତାଙ୍କ ସହିତ ମିତ ବସିଲୁଣି ? ଛାତିରେ ଛାତି ମିଳେଇ ଭଲ ପାଇବାର ଗୀତ ଗାଇଲୁଣି ? ମୋର କ'ଣ ମନେହୁଏ ଜାଣୁ କହ୍ନେଇ ? ସେଇ କପଟୀ ଈଶ୍ୱର ହିଁ ତତେ ଜାଣିଶୁଣି, ଜୋର କରି ଏ ପୃଥିବୀରୁ ନେଇଗଲେ । ୧୯୭୫ର ଆରମ୍ଭରେ ଈଶ୍ୱରଙ୍କୁ ହତ୍ୟା କରିବା ଲାଗି ଷଡ଼ଯନ୍ତ୍ରର ପ୍ଲଟ୍ ତିଆରି କରିଥିଲୁ ନା ? (ତୋ ଗପ ଗୋଟିଏ ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର) ପୁଣି ଘୋଷଣା କଲୁ, "ଏ ପୃଥିବୀ ଛାଡ଼ି ଅନ୍ୟ ଏକ ସୁନ୍ଦର ପୃଥିବୀରେ ମୁଁ ତୁମକୁ ଖୁବ୍ ଆରମ୍ଭରୁ ଭକ୍ତି କରିବା ଶିଖିବି ।" ତୋର ଷଡ଼ଯନ୍ତ୍ରକୁ ଭଣ୍ଡୁର କରିଦେଇ ତୋ'ଠାରୁ ତାଙ୍କର ପ୍ରାପ୍ୟ 'ପ୍ରେମ' ଓ 'ଭକ୍ତି' ଟିକକ ଆଦାୟ କରିନେବା ଲାଗି ସେ ତତେ ନିଜ ପାଖକୁ ବୋଧେ ନେଇଗଲେ । ଈଶ୍ୱର ବି ସତରେ ବଡ଼ ପ୍ରେମ ପାଗଳ । ନୁହେଁ ? କିନ୍ତୁ ପ୍ରକୃତ ଭକ୍ତ ଓ ପ୍ରେମିକର ଜଣେ ଚିହ୍ନରା ଗ୍ରାହକ । ତତେ ସେ ନେଇଗଲେ କେବଳ ନିଜ ମନର ଅଭାବ ଓ ଅସନ୍ତୋଷକୁ ପୂରଣ କରିବା ଲାଗି । ତୋ' ପ୍ରେମର ଅଭାବରେ ନିଜ ପୃଥିବୀରେ ସେ ସ୍ଥିର ହୋଇ ରହିପାରିଲେ ନାହିଁ ବୋଧେ । ମନ ତାଙ୍କର ଉଚ୍ଛନ୍ନ ହେଲା, ହୃଦୟ ବ୍ୟାକୁଳ ହେଲା- ତୋ'ଠାରୁ ଭଲପାଇବାର ଗପଗୀତ ଶୁଣିବା ଲାଗି । ଯେଉଁମାନଙ୍କୁ ସେ ବେଶି ଭଲ ପାଆନ୍ତି, ସେହିମାନଙ୍କ ଉପରେ ବୋଧେ ତାଙ୍କର ଶୀଘ୍ର ଶୁଭଦୃଷ୍ଟି ପଡ଼େ । ଅଥଚ ଆମେ ଯେଉଁମାନେ ତାଙ୍କୁ ସବୁବେଳେ ଭଲପାଉ ଓ ଭକ୍ତି କରୁ ବୋଲି ନାନା ବାହାନା କରୁ- ଦେହରେ ପାଟପଟନି ପିନ୍ଧି, ମଥାରେ ଚିତା ଚଇତନ ମାରି, ହାତରେ ମାଳା ଜପି ମଠ-ମନ୍ଦିରରେ, ଧର୍ମର ସଭାସମିତିରେ ନାନା ଛଇଛଟକ ଦେଖାଇ, ସମସ୍ତେ ଦେଖିପାରିଲା ଭଳି ଉଚ୍ଚା ପିଣ୍ଡାରେ ବସି ପୂଜା ପାରାୟଣ କରୁ- ଗଳା ଫଟାଇ ସ୍ତୋତ୍ର-ମନ୍ତ୍ର ପଢୁ, ଭଜନ-ଜଣାଣ ଗାଉ, ଅଥଚ ହୃଦୟର ଗମ୍ଭୀରି ଘରଟିରେ ତାଲାଚାବି ପକେଇ ତାକୁ ନିବୁଜ କରିଦେଇଥାଉ, ବାହାରର ଚଳନ୍ତି ବିଷ୍ଣୁ ପ୍ରତିମାକୁ ଦୂରକୁ ଠେଲି ଦେଇ ଘର ଭିତରେ କାଚବନ୍ଧେଇ ବିଷ୍ଣୁ ପ୍ରତିମାକୁ ମୁଣ୍ଡିଆ

ମାରିବାରେ ଲାଗିଥାଉ- ଈଶ୍ୱର ସେମାନଙ୍କୁ ଠିକ୍ ଠଉରେଇ ନିଅନ୍ତି । ଠିକ୍ ଭକ୍ତ ଓ ଠକ ଭକ୍ତଙ୍କୁ ବେଶ୍ ଅଲଗା କରିଦେଇ ପାରନ୍ତି ।

କହ୍ନେଇରେ, ଅନ୍ୟ ପୃଥିବୀକୁ ଚାଲିଗଲୁ ବୋଲି ମୁଁ ତେଣୁ ଆଉ ଦୁଃଖ କରୁନାହିଁ । ବରଂ ଈଶ୍ୱରଙ୍କ କରୁଣାରୁ ତୁ ସେଠି ବେଶ୍ ଭଲରେ ଥିବୁ । ଆପଣା ଇଚ୍ଛାରେ ବୁଲି ପାରୁଥିବୁ, ଗପି ପାରୁଥିବୁ, ପ୍ରେମ କରୁଥିବୁ । ସେଠି କୌଣସି 'ପ୍ରେମିକା'କୁ ନିଜର କଲୁଣି ନା ନାହିଁ ? ସେଠା ଖବର ଅନ୍ତର ଲେଖି ଚିଠି ଖଣ୍ଡେ ଦେବାକୁ କ'ଣ ତୋର ମନ ବଳେନାହିଁ ? ଏଠି ଥିଲାବେଳେ ସମସ୍ତଙ୍କୁ ନିୟମିତ ଚିଠି ଲେଖିବାରେ ତୁ ତ ବେଶି ଆନନ୍ଦ ପାଇଥିଲୁ । ଏ ପୃଥିବୀର କଥା କ'ଣ ଆଉ ଟିକିଏ ହେଲେ ମନେପଡ଼େ ନାହିଁ ? ତୋର ପ୍ରିୟ ଲେଖକବନ୍ଧୁମାନେ କ'ଣ ଏବେ ଲେଖୁଛନ୍ତି, ମନର ମିତମାନେ କ'ଣ କରୁଛନ୍ତି ବା ପ୍ରୀତିର ପ୍ରତିମାମାନେ କିପରି ଅଛନ୍ତି ? କିଛି ମନେପଡ଼େ ନାହିଁ ? ଅନ୍ୟ ପୃଥିବୀକୁ ଚାଲିଗଲୁ ବୋଲି ଏ ପୃଥିବୀର କଥା କ'ଣ ଏତେ ଶୀଘ୍ର ସତରେ ଭୁଲିଗଲୁ ?

ମନେପଡୁଛି ପୁଣି ତୋରି ଲେଖାର କେତୋଟି ଧାଡ଼ି, "ଆଜିଠୁ ଅନେକ ଦିନ ପରେ ହୁଏତ ମୁଁ ନଥିବି । ...ପୃଥିବୀର ରଙ୍ଗ ଅନ୍ୟ ପ୍ରକାର ହୋଇଯାଇଥିବ । କିନ୍ତୁ ମୁଁ ଜାଣେ, ପ୍ରେମର ରଙ୍ଗ ସବୁଦିନ ସେଇ ଏକା ପ୍ରକାର ।" (ତୋ ଗପ-ମୁଖଶାଳାର ଭାଷା) କହ୍ନେଇରେ, ଥରେ ହେଲେ ଆସି ଦେଖିଯା'ନ୍ତୁ, ସତକୁ ସତ ଏ ପୃଥିବୀର ରୂପରଙ୍ଗ କେମିତି ଅତି ଆଶ୍ଚର୍ଯ୍ୟଜନକ ଭାବରେ ବଦଳିବାରେ ଲାଗିଛି । ପ୍ରେମର ରଙ୍ଗ କାହିଁ ? ନିଜର ସାମାନ୍ୟ କ୍ଷତ ଓ କ୍ଷତି ପାଇଁ ପ୍ରତିହିଂସା ଓ ପ୍ରତିଶୋଧ ନେବାର ମନୋବୃତ୍ତି ଭୀଷଣ ଆକାର ଧାରଣ କରୁଛି । ନିଜର ପ୍ରଭୁତ୍ୱକୁ ଅନ୍ୟ ଉପରେ ଜୋର୍ କରି ଲଦି ଦେବାର ବାସନା ମଣିଷ ଭିତରେ ମୁଣ୍ଡ ଟେକୁଛି । ତୋ' ଭଳି ସବୁବେଳେ ଭଲପାଇବାର ଗୀତ ଗାଉଥିବା ପ୍ରେମିକ ଓ ସାହିତ୍ୟକୁ 'ମୁଖ୍ୟତଃ ଏକ ଭଲ ପାଇବାର ଧନ୍ଦା' ବୋଲି ଧରି ନେଇଥିବା ସାହିତ୍ୟ (ଚିତ୍ତ ରଞ୍ଜନ ଦାସ) କେତେ ସଂଖ୍ୟାରେ ବା ଅଛନ୍ତି ଏ ପୃଥିବୀରେ ? ମଣିଷର ଶୈତାନୀ ବୁଦ୍ଧି-ବୃତ୍ତିରେ ଈଶ୍ୱରକୃତ ଏ ସୁନ୍ଦର ପୃଥିବୀ କ୍ରମେ କ୍ରମେ କଦାକାର ଓ ଅସୁନ୍ଦର ହୋଇଯାଉଛି । ଖାଣ୍ଟି ମଣିଷ ସବୁ ନିର୍ବାସିତ ହେବାରେ ଲାଗିଛନ୍ତି ।

କହ୍ନେଇରେ, କାହିଁକି ତୋ' ପାଖକୁ ଏତେ ଲେଖି ଦେଇଗଲି ଜାଣେନା । କିନ୍ତୁ ତୋ' ପାଖକୁ ଏ ଚିଠି ଲେଖିଦେଲା ପରେ ମୋତେ ଏଥର ବେଶ୍ ହାଲ୍କା ଲାଗୁଛି ।

ବହୁଦିନର ରୁଦ୍ଧ ଆବେଗଗୁଡ଼ାକ ବେଶ୍ ସହଜରେ ତୋ' ନିକଟରେ ଖୋଲିଦେଇ ପାରିଲି ବୋଲି । ଖାଲି ମୋ' ଚିଠି ନୁହେଁ, ଆହୁରି ସାତଟି ଚିଠି ମଧ୍ୟ ସଂଗ୍ରହ କରି ଏକାଠି ଗୁନ୍ଥି ତୋ' ପାଖକୁ ପଠାଇଲି, ସୁପରିଚିତ ଶିଳ୍ପୀମାନଙ୍କର ଜୀବନ-ପତ୍ର, ପ୍ରେମପତ୍ର । ପଢ଼ିବୁ, କେମିତି ଲାଗିଲା, ଚିଠି ଲେଖି ଜଣାଇବୁ । କ'ଣ ଲେଖିବୁ ତ ? ଜାଣେ, ମୋର ଏ ପ୍ରଶ୍ନର କୌଣସି ଉତ୍ତର ନାହିଁ । ତଥାପି ମଣିଷ ମନର ସ୍ୱାଭାବିକ ଦୁର୍ବଳତା ନେଇ ପଚାରିଦେଲି ।

ଆଜି ପାଇଁ ଏତିକି । ତୁମ ପୃଥିବୀର ସମ୍ରାଟଙ୍କ ଉଦ୍ଦେଶ୍ୟରେ ମୁଁ ଭକ୍ତିପୂର୍ଣ୍ଣ ପ୍ରଣତି ବାଢ଼ୁଛି । ତୋ' ଲାଗି ଓ ତୋ'ର ସେ ନୂଆ ପୃଥିବୀର ସବୁ ମିତ ମିତଣୀଙ୍କ ଲାଗି ହୃଦୟର ପ୍ରୀତି ଓ ଶୁଭେଚ୍ଛା ପଠାଇ ରହିଲି ।

ଇତି

ବିଶ୍ୱରଞ୍ଜନ

(ଅଧ୍ୟାପକ ବିଶ୍ୱରଂଜନଙ୍କ ସଂପାଦିତ 'ଚିଠି', ୧୯୭୬)

# ପ୍ରଥମ ସଂସ୍କରଣର ମୁଖବନ୍ଧ

## (‘କନ୍‌ହେଇ କଥାଘର’ର ପ୍ରଥମ ସଂସ୍କରଣ (୧୯୮୬)ରେ ‘କଥନିକା’ ଶୀର୍ଷକରେ ପ୍ରକାଶ ପାଇଥିଲା ଏହି ମୁଖବନ୍ଧ)

୧୯୭୫ ମସିହା ଜୁଲାଇ ୨୭ ତାରିଖ ରବିବାର ଭୋର୍ ୩ଟା ୪୫ ମିନିଟ୍‌ରେ ଭୁବନେଶ୍ୱରଠାରେ କନ୍‌ହେଇଲାଲ ଦାସଙ୍କର ପରଲୋକ ହୋଇଗଲା । ସେତେବେଳକୁ ଆମେ ସଦ୍ୟ ଆଇ.ଏ. ପାସ୍ କରି ବି.ଏ. ଶ୍ରେଣୀରେ ନାମ ଲେଖାଇଥାଉ । ରହୁଥାଉ ଭୁବନେଶ୍ୱରରେ, ସାହିତ୍ୟ ପଢ଼ିବାକୁ ଭଲ ପାଉଥାଉ; ମାତ୍ର ସାହିତ୍ୟକୁ ନେଇ କିଛି କରିବୁ, ଏ ଚିନ୍ତା ମନକୁ ପ୍ରାୟ ଆସି ନଥାଏ । ତେଣୁ ଆଜିଠୁଁ ଠିକ୍ ୧୧ବର୍ଷ ତଳେ, ମାତ୍ର ୨୮ବର୍ଷ ବୟସରେ କନ୍‌ହେଇଲାଲ ଦାସଙ୍କର ଯେତେବେଳେ ପରଲୋକ ହୋଇଗଲା, ସେତେବେଳେ ଆମେ ସ୍ୱପ୍ନରେ ବି ଭାବି ନଥିଲୁ ଯେ ଶେଷକୁ ଏଇ କନ୍‌ହେଇ-ରଚନା-ସମଗ୍ରଟି ଆମକୁ ହିଁ ସଂଯୋଜନା କରିବାକୁ ପଡ଼ିବ ।

ଆଜିଠୁଁ ପ୍ରାୟ ଦଶବର୍ଷ ତଳର କଥା । ବାଲେଶ୍ୱର ‘ଫକୀରମୋହନ ସାହିତ୍ୟ ପରିଷଦ’ରୁ ପ୍ରକାଶ ପାଇଲା, କନ୍‌ହେଇଲାଲ ଦାସଙ୍କ ସମ୍ପର୍କରେ ଏକ ସ୍ମରଣୀୟ ସ୍ମୃତି-ଅର୍ଘ୍ୟ ‘କନ୍‌ହେଇନାମା’ । ସେତେବେଳକୁ ଜୀବିତ ଥାଆନ୍ତି ‘ଚୁମ୍ବକ’ ସମ୍ପାଦିକା ଶୈଳବାଳା ମହାନ୍ତି । ଇତିମଧ୍ୟରେ ସେ ଓଡ଼ିଶାର ପ୍ରାୟ ସବୁ ସମ୍ବାଦପତ୍ର ତଥା କେତେକ ପତ୍ରପତ୍ରିକାରେ ନବଗଠିତ ‘କନ୍‌ହେଇଲାଲ ସ୍ମୃତିରକ୍ଷା କମିଟି’ ପକ୍ଷରୁ ବିବୃତିମୂଳକ ସମ୍ବାଦଟିଏ ପ୍ରକାଶ କରିସାରି ଥାଆନ୍ତି ଯେ କନ୍‌ହେଇଲାଲ ଦାସଙ୍କର ସମଗ୍ର ରଚନାବଳୀରେ ସମୃଦ୍ଧ ଏକ ସଂକଳନ ଯଥାଶୀଘ୍ର ପ୍ରକାଶ ପାଇବ । ଯେଉଁମାନେ ଏହି ସଂକଳନର ଅଗ୍ରୀମ ଗ୍ରାହକ ହେବେ ସେମାନେ ଦଶଟଙ୍କା ଦେଇ ନିଜନିଜର ନାମ ରେଜିଷ୍ଟ୍ରୀଭୁକ୍ତ କରିବେ ଏବଂ ପ୍ରକାଶ ପାଇବା ପରେ ସଂକଳନଟିର ମୂଲ୍ୟ ଯଥେଷ୍ଟ ଅଧିକ ହେଲେ ମଧ୍ୟ ସେଇ ଦଶଟଙ୍କାରେ ହିଁ ସେମାନଙ୍କୁ ତାହା ଯୋଗାଇ ଦିଆଯିବ । କହିବା ବାହୁଲ୍ୟ, କନ୍‌ହେଇଲାଲ ଦାସଙ୍କର ନିକଟତମ ବନ୍ଧୁମାନଙ୍କ ମନରୁ କନ୍‌ହେଇ ମୃତ୍ୟୁର ଶୋକଛାୟା ସେତେବେଳ ପର୍ଯ୍ୟନ୍ତ ପୂରାପୂରି ଯାଇନଥାଏ । ଆଉ, କନ୍‌ହେଇପ୍ରେମୀ ପାଠକ ପାଠିକା ତ ତଥାପି ଝୁରି ହେଉଥାଆନ୍ତି ଅକାଳରେ ଝରିଯାଇଥିବା ଏଇ ଯୁବ କଥାଶିଳ୍ପୀଟିକୁ ! ତେଣୁ ଏଇ ସମୟୋପଯୋଗୀ

ସୁକାର୍ଯ୍ୟଟି ପାଇଁ ସାଧୁବାଦ କେବଳ ମିଳିଲା ନାହିଁ; ଅର୍ଥ ବି ଆଦାୟ ହେଲା ବେଶ୍ । କିନ୍ତୁ ଆଦାୟ ହୋଇଥିବା ସେହି ଅର୍ଥର ସଦୁପଯୋଗ ହେଲାନାହିଁ । ଫଳରେ 'କନ୍‌ହେଇଲାଲ ସ୍ମୃତିରକ୍ଷା କମିଟି' କନ୍‌ହେଇଲାଲ ଦାସଙ୍କର ସ୍ୱର୍ଗତ ଆତ୍ମାକୁ ତଥା ଓଡ଼ିଶାର ସମଗ୍ର ସାହିତ୍ୟରାଜ୍ୟକୁ ଉପହାର ଦେଲା 'ଜୀବନଯନ୍ତ୍ରଣା ଓ ଯାହା ଯେମିତି ହୁଏ' ନାମରେ ମାତ୍ର ପାଞ୍ଚଟଙ୍କା ମୂଲ୍ୟର ଏକ ଅସଂପୂର୍ଣ୍ଣ ଓ ଦୟନୀୟ ଗଳ୍ପ ସଂକଳନ । ତାହା ଥିଲା କନ୍‌ହେଇଲାଲ ଦାସଙ୍କର ତଥାକଥିତ ପାଖଲୋକମାନଙ୍କ ପ୍ରତି ଆମର ଥିବା ବିଶ୍ୱାସ ମୂଳରେ ପ୍ରଥମ କୁଠାରାଘାତ ।

କିନ୍ତୁ, ତଥାପି ମଧ୍ୟ ଆମେ ଆଶା କରିଥିଲୁ ଯେ, କନ୍‌ହେଇଲାଲ ଦାସଙ୍କର ଅନ୍ତରଙ୍ଗ ବନ୍ଧୁମାନେ ଏଥର ଅନ୍ତତଃ ସେମାନଙ୍କ କନ୍‌ହେଇ ପାଇଁ କିଛି କରିବେ । ୧୯୭୬ରୁ ୧୯୮୧– ଆମର ଅପେକ୍ଷା ଭିତରେ ଦୀର୍ଘ ପାଞ୍ଚବର୍ଷ ବିତିଗଲା । ଏଇ ପାଞ୍ଚବର୍ଷ ଭିତରେ କନ୍‌ହେଇଲାଲ ଦାସଙ୍କର ଅନ୍ତରଙ୍ଗ ବନ୍ଧୁମାନେ ତାଙ୍କ କଥା ମନେ ରଖିଥିଲେ କି ନାହିଁ ଆମେ ଜାଣୁନା; କିନ୍ତୁ ଆମେ ଲକ୍ଷ୍ୟ କରିଥିଲୁ ଯେ ସେମାନେ ନିଜନିଜର ଜଞ୍ଜାଳ ଓ କଦବା କେମିତି ନିଜନିଜର ସାହିତ୍ୟକୁ ନେଇ ଏତେ ବ୍ୟସ୍ତ, ବିବ୍ରତ ଓ ବ୍ୟଥିତ ଯେ ସେମାନେ ଆଉ କିଛି କରିପାରିବେ ନାହିଁ । ଏସବୁ ସତ୍ତ୍ୱେ, ଯାହା ବା ଟିକିଏ ଆଶାର ଆଲୋକ ଥିଲା, ତାହା ଶୈଳବାଳା ମହାନ୍ତିଙ୍କ ତିରୋଧାନ ସହିତ ଅନ୍ତର୍ହିତ ହୋଇଗଲା ।

ଫଳରେ, ଆମେ ନିଷ୍ପତ୍ତି କଲୁ, କନ୍‌ହେଇଲାଲ ଦାସଙ୍କ ପାଇଁ ଆମେ କିଛି କରିବୁ । ଏ ଦିଗରେ ପ୍ରାଥମିକ କାର୍ଯ୍ୟ ଆମେ ଆରମ୍ଭ କଲୁ ଆମର ଛୋଟ ଲାଇବ୍ରେରୀଟି ମାନଙ୍କରୁ । ବିଭିନ୍ନ ଛୋଟବଡ଼ ପତ୍ରିକା ଓ ସାମୟିକ ଗଳ୍ପ ସଂକଳନରୁ ଖୋଜି ବାହାର କରି ସାଇତା ହେଲା କନ୍‌ହେଇଲାଲ ଦାସଙ୍କର ପ୍ରକାଶିତ ରଚନାମାନ । ତେବେ, ତାହା ସଂଖ୍ୟାରେ ଥିଲା ସୀମିତ ଏବଂ କନ୍‌ହେଇଲାଲଙ୍କ ସାମଗ୍ରିକ କୃତିର ତାହା ପ୍ରତିନିଧିତ୍ୱ କରୁନଥିଲା । ତେଣୁ ଦିନେ ବଡ଼ିସକାଳୁ ଆମେ ଯାଇ ପହଞ୍ଚିଲୁ ଆମର ଜଣେ ଅନୁଜପ୍ରତିମ ବନ୍ଧୁ ଅଜିତ କୁମାର ଦାଶ ମହାପାତ୍ରଙ୍କ ପାଖରେ । ଶୈଳବାଳା ମହାନ୍ତିଙ୍କ ଘର ସହିତ ତାଙ୍କର ଭଲ ସମ୍ପର୍କ ଥିଲା । ତେଣୁ ତାଙ୍କୁ ଭେଟିବାର ଉଦ୍ଦେଶ୍ୟ ଥିଲା, ଶୈଳବାଳା ମହାନ୍ତିଙ୍କ ଘରୁ କନ୍‌ହେଇଲାଲ ଦାସଙ୍କର ଲେଖାଗୁଡ଼ିକ ଥିବା ଫାଇଲ୍‌ଟି ଉଦ୍ଧାର କରିବା । ସେଠାରୁ ଫାଇଲ୍‌ଟି ଅବଶ୍ୟ ମିଳିଲାନାହିଁ; କିନ୍ତୁ ପରେ ଅଜିତଙ୍କ ମାର୍ଫତରେ ସ୍ୱର୍ଗତା ଶୈଳବାଳା ମହାନ୍ତିଙ୍କ କନ୍ୟାଙ୍କଠାରୁ ସମ୍ବାଦ ମିଳିଲା ଯେ, ଶୈଳବାଳାଙ୍କ ମୃତ୍ୟୁର କିଛିଦିନ ପରେ କନ୍‌ହେଇଲାଲଙ୍କର ଜନୈକ ବନ୍ଧୁ ଫାଇଲଟି ମାଗିନେଇ ଆଉ ଫେରାଇ ନାହାନ୍ତି । ସେଦିନଠାରୁ ଆଜିପର୍ଯ୍ୟନ୍ତ ଉକ୍ତ ବନ୍ଧୁଙ୍କୁ ଆମେ ଅନେକ ଗୁଡ଼ିଏ ଚିଠି ଲେଖିଛୁ, ମାତ୍ର ଦୁଃଖର ସହିତ କହିବାକୁ ପଡୁଛି ଯେ, ପାଣ୍ଡୁଲିପି ଫାଇଲ୍‌ଟି ତ ଦୂରର କଥା, ସୌଜନ୍ୟ ଖାତିରରେ ସାମାନ୍ୟ ଉତ୍ତର ଖଣ୍ଡିଏ ବି

ଆମକୁ ସେ ଫେରାଇ ନାହାନ୍ତି । କେବଳ ତାଙ୍କୁ ନୁହେଁ, କୁଞ୍ଜ ରାୟଙ୍କ ସମେତ କନ୍‌ହେଇଲାଲ ଦାସଙ୍କର ବହୁ ବନ୍ଧୁ ଓ ସମ୍ପର୍କୀୟଙ୍କୁ ଆମେ ସେହି ଫାଇଲ୍‌ଟି ସମ୍ପର୍କରେ ପଚାରିଛୁ, ମାତ୍ର ସତେଯେପରି ତାହା ଏବେ ବି ଅଛି ଅଜ୍ଞାତବାସରେ ନିରୁଦ୍ଦିଷ୍ଟ ।

ତେବେ, ଏଇଠି ଉଲ୍ଲେଖ ଆବଶ୍ୟକ ଯେ ଏହି ରଚନା-ସମଗ୍ରରେ ଥିବା ଅନେକ ଲେଖା ଆମେ ପାଇପାରି ନଥାନ୍ତୁ, ଯଦି କନ୍‌ହେଇଲାଲଙ୍କର ଅଳ୍ପ କେତେଜଣ ସହୃଦୟ ବନ୍ଧୁ ଓ ଶୁଭେଚ୍ଛୁ ଆମକୁ ସାହାଯ୍ୟ କରିନଥାନ୍ତେ । ସେମାନଙ୍କ ମଧ୍ୟରୁ ସର୍ବାଗ୍ରେ ସ୍ମରଣୀୟ ବ୍ରଜନାଥ ରଥ । ତାଙ୍କ ବ୍ୟତୀତ ଯେଉଁମାନେ ଲେଖାଗୁଡ଼ିକ ପାଇବାରେ ଆମକୁ ଯଥାସମ୍ଭବ ସାହାଯ୍ୟ କରିଛନ୍ତି, ସେମାନେ ହେଉଛନ୍ତି- ରବୀନ୍ଦ୍ର ନାଥ ଦାସ, ନାରୁ ମହାନ୍ତି, ଅଭିନ୍ନ ଚନ୍ଦ୍ର ସାହୁ, ରତି ମିଶ୍ର, ଅଞ୍ଜଳି ପାଢ଼ୀ, ଚୌଧୁରୀ ରଞ୍ଜନ କୁମାର ଦାଶ ଓ ପ୍ରକାଶ ପଟ୍ଟନାୟକ ପ୍ରମୁଖ । 'କନ୍‌ହେଇ କଥାଘର'ର କଳେବର ବୃଦ୍ଧି ସହିତ ଗୌରବ ବୃଦ୍ଧିରେ ମଧ୍ୟ ଏମାନେ ସହାୟକ ହୋଇଛନ୍ତି। ଏମାନଙ୍କର ସାଧୁ ସୁକୃତିର ପ୍ରତିଦାନ କାହିଁ ।

ନିଜ ପାଇଁ କିଛି କରୁ ବା ନକରୁ, ବୃହତ୍ତର କ୍ଷେତ୍ରରେ ଆମେ କିଛି କରୁ ଏବଂ ଆଉ ପାଞ୍ଚଜଣଙ୍କ ପରି ନହୋଇ ଟିକିଏ ଅଲଗା ବା ଟିକିଏ ବିଶେଷତ୍ୱପୂର୍ଣ୍ଣ ହୋଇ ଦୁନିଆରେ ଠିଆ ହେଉ; ସବୁବେଳେ ଆମ ପାଇଁ ଏହାହିଁ ଯେଉଁ ଦୁଇଜଣ ଚାହିଁଛନ୍ତି, ସେ ଦୁଇଜଣ ହେଉଛନ୍ତି ନାନୀ ବିଷ୍ଣୁପ୍ରିୟା ଓତା ଓ ଅପା ରେଣୁବାଳା ଦାସ । ଏ ରଚନା-ସମଗ୍ରଟିର ପ୍ରାଥମିକ ପରିକଳ୍ପନାଠାରୁ ପ୍ରତିଟି ଅଗ୍ରଗତିର ଟିକିନିଖି ଖବର ସବୁ ସମୟରେ ସେମାନେ ହିଁ ପ୍ରଥମେ ନେଇଛନ୍ତି ଓ ପ୍ରତିଟି ମୁହୂର୍ତ୍ତରେ ଆମ ଭିତରେ ପ୍ରଚୁର ସ୍ୱାଭିମାନ, ସ୍ପୃହା ଓ ପ୍ରେରଣା ଭରି ଦେଇଛନ୍ତି । ତେଣୁ, ଏ ବହିଟିର ଯାହାକିଛି ଗୌରବ, ତାହା ଆମେ ସେ ଦୁହିଁଙ୍କୁ ଅର୍ପଣ କରୁଛୁ।

ସ୍ୱର୍ଗତ ଡକ୍ଟର କ୍ଷେତ୍ରବାସୀ ନାୟକ, ସୌଭାଗ୍ୟ କୁମାର ମିଶ୍ର, ବିଜୟକୃଷ୍ଣ ମହାନ୍ତି, ବୀରବର ଓତା, ବିଭୂତି ପଟ୍ଟନାୟକ, ସରୋଜ ରଞ୍ଜନ ମହାନ୍ତି, ଶଙ୍କରଲାଲ ପୁରୋହିତ, ସୁଷମା ମହାନ୍ତି, ପୁଷ୍ପାଞ୍ଜଳି ନାୟକ, ନିର୍ମଳା ମହାନ୍ତି, ପ୍ରଫୁଲ୍ଲତା ମହାପାତ୍ର, ରଜନୀକାନ୍ତ ମହାନ୍ତି ଓ ପଞ୍ଚାନନ ଦାଶ ପ୍ରମୁଖ ବହୁ ବନ୍ଧୁ ଓ ଶୁଭେଚ୍ଛୁ ମଧ୍ୟ ଏହି ରଚନା-ସମଗ୍ରଟି ସଂଯୋଜନା କରିବା ଦିଗରେ ଆମକୁ ବହୁଭାବରେ ଉତ୍ସାହିତ କରିଛନ୍ତି । ଏମାନଙ୍କୁ ଧନ୍ୟବାଦ ନଜଣାଇବା ଆମର ଅପରାଧ ହେବ।

ଏଇଠି, ଅବଶ୍ୟ କୃତଜ୍ଞତା ଜଣାଇବାକୁ ହେବ, ସ୍ୱର୍ଗତ କନ୍‌ହେଇଲାଲ ଦାସଙ୍କର ପୁତ୍ରଶୋକବିଧୁରା ମା', ଭଉଣୀ, ସାନଭାଇ ଓ ପରିବାରର ଅନ୍ୟମାନଙ୍କୁ । କନ୍‌ହେଇଲାଲଙ୍କର ଲେଖାଗୁଡ଼ିକ ସଂଗ୍ରହ କରି ଆମେ ପୁସ୍ତକାକାରରେ ପ୍ରକାଶ କରିବା ସମ୍ବାଦରେ ସେମାନଙ୍କର ଯେଉଁ ଶିଶୁସୁଲଭ ଆନନ୍ଦ ତାହା ସବୁଦିନେ ଆମର ସ୍ମରଣ ରହିବ ।

ଏହି କାର୍ଯ୍ୟଟି କରିବା ଦିଗରେ ସେମାନେ ସେମାନଙ୍କର ସଦିଚ୍ଛା କେବଳ ପ୍ରକାଶ କରିନାହାନ୍ତି, ପ୍ରତ୍ୟାଶାରହିତ ଆଗ୍ରହରେ ଏଥିପାଇଁ ଆମକୁ ସାନନ୍ଦ ଅନୁମତି ମଧ୍ୟ ଦେଇଛନ୍ତି । ଏଥିପାଇଁ କୃତଜ୍ଞତା ଜଣାଇବା ସଙ୍ଗେସଙ୍ଗେ ଆମେ ନିଷ୍ପତ୍ତି କରିଛୁ ଯେ ଏହି ପୁସ୍ତକର ବିକ୍ରୟଲବ୍ଧ ସମସ୍ତ ରୟାଲ୍‌ଟି କେବଳ ସେମାନଙ୍କର ହିଁ ପ୍ରାପ୍ୟ ହେବ । ଅସୀମ ବସୁଙ୍କୁ କୃତଜ୍ଞତା ଜଣାଇବା ପାଇଁ ଆମର ଭାଷା ନାହିଁ । ସେ ପୁସ୍ତକଟିର ପ୍ରଚ୍ଛଦ କେବଳ ଆଙ୍କି ନାହାନ୍ତି, ଏହାର ସାମଗ୍ରିକ ସୌନ୍ଦର୍ଯ୍ୟ ପାଇଁ ବହୁ ଶ୍ରମ, ସମୟ ଓ ପରାମର୍ଶ ମଧ ଦେଇଛନ୍ତି । ଏଥିପାଇଁ ଆମେ ତାଙ୍କ ନିକଟରେ ଋଣୀ ରହିଲୁ ।

ଏଇଠି ଅବଶ୍ୟ ଧନ୍ୟବାଦ ଦେବା ଆବଶ୍ୟକ ସହଦେବ ପ୍ରଧାନଙ୍କୁ । ଆମକୁ ବାରମ୍ବାର ତାଗିଦ କରି ଏହି ରଚନା-ସମଗ୍ରର ସଂଯୋଜନାକୁ ସେ କେବଳ ତ୍ୱରାନ୍ୱିତ କରିନାହାନ୍ତି; ଆଗ୍ରହର ସହିତ ଏହାର ପ୍ରକାଶ ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ରୁଚିପୂର୍ଣ୍ଣ ପ୍ରକାଶନପାଇଁ ଯଥାସମ୍ଭବ ସମସ୍ତ ସ୍ୱାଧୀନତା ଆମକୁ ଦେଇଛନ୍ତି ।

ଶେଷରେ, ସ୍ୱୀକାର କରୁଛୁ ଯେ, ଏହି ରଚନା-ସମଗ୍ରଟି ତଥାପି ପୂର୍ଣ୍ଣାଙ୍ଗ ନୁହେଁ । କନ୍ହେଇଲାଲ ଦାସଙ୍କର ସଂକ୍ଷିପ୍ତ ଜୀବନୀଟିଏ ଏଥିରେ ସଂଯୋଜିତ କରିବାର ଅଭିଳାଷ ଆମର ଥିଲା । ମାତ୍ର ଚେଷ୍ଟା କରି ମଧ ଶେଷସୁଦ୍ଧା ଆମେ ତାଙ୍କର ଜନ୍ମ ମୃତ୍ୟୁ ତାରିଖ ଓ ସନ, ଗ୍ରାମନାମ, ପିତାମାତାଙ୍କ ନାମ ଇତ୍ୟାଦି ବ୍ୟତୀତ ବେଶିକିଛି ତଥ୍ୟ ପାଇଲୁ ନାହିଁ । କନ୍ହେଇଲାଲଙ୍କର ଘନିଷ୍ଠ ସମ୍ପର୍କରେ ଆସିଥିବା କେତେଜଣ ବନ୍ଧୁଙ୍କୁ ବାରମ୍ବାର ଚିଠି ଲେଖି ମଧ କୌଣସି ପ୍ରକାର ସାହାଯ୍ୟ ମିଳିଲାନାହିଁ । ତେବେ, ଏହି ଅପୂର୍ଣ୍ଣତା ପରବର୍ତ୍ତୀ ସଂସ୍କରଣରେ ପୂରଣ କରିବାର ବାସନା ରହିଲା ।

ପରିଶେଷରେ ଉଲ୍ଲେଖ ଆବଶ୍ୟକ ଯେ ଏହି ରଚନା-ସମଗ୍ରରେ ଥିବା ଲେଖାଗୁଡ଼ିକ ବ୍ୟତୀତ କନ୍ହେଇଲାଲ୍ ଦାସଙ୍କର ଆହୁରି ଅନେକ ରଚନା ତଥାପି ଆମେ ପାଇପାରିନାହୁଁ । କେହି ସହୃଦୟ ବ୍ୟକ୍ତିବିଶେଷ ବା ଅନୁଷ୍ଠାନ ଯଦି ସେ ସବୁର ସନ୍ଧାନ ପାଆନ୍ତି, ଦୟାକରି ଆମକୁ ଜଣାଇଲେ, ଆମେ ତାହା ସଂଗ୍ରହ କରିନେବୁ ଓ ପରବର୍ତ୍ତୀ ସଂକଳନରେ ପତ୍ରସ୍ଥ କରିବୁ । ତେବେ, ସେପର୍ଯ୍ୟନ୍ତ ଏହାହିଁ କନ୍ହେଇ-ରଚନା-ସମଗ୍ର ଭାବରେ ସାହିତ୍ୟାନୁରାଗୀମାନଙ୍କ ଦ୍ୱାରା ଗୃହୀତ ହେଉ ! କିମଧିକମ୍ !

**ଅସିତ ଓ ପ୍ରଦୀପ୍ତ**

ନେତ୍ରୋତ୍ସବ, ୧୯୮୬

# ଆକାଶର ଛାଇ

## (‘କନ୍‌ହେଇ କଥାଘର’, ପ୍ରଥମ ସଂସ୍କରଣର ଉନ୍ମୋଚନ ଉତ୍ସବରେ ପ୍ରଦତ୍ତ ଅଭିଭାଷଣ)

**ସୀତାକାନ୍ତ ମହାପାତ୍ର**

ତା’ ସହିତ ମାତ୍ର ଥରେ ଦେଖା ହୋଇଥିଲା । କୋଡ଼ିଏରୁ ତିରିଶ ମିନିଟ୍ । ମୋ’ ‘ଖରାବେଳ’ କବିତା, ଯୋଉଥିରେ ମୃତ୍ୟୁ ଅତିଥି ଭାବରେ ଆସି ପହଞ୍ଚିଛି, ଏକୁଟିଆ ଘରେ ଥିବା ବୁଢ଼ାଟିର ଶେଯ ପାଖରେ ଉଦୁଉଦିଆ ଖରାବେଳେ, ଆଉ ବୁଢ଼ାଟି ଅସ୍ତବ୍ୟସ୍ତ ଯେ ସୁଦାମା ଘରେ କୃଷ୍ଣ ପହଞ୍ଚିଲାବେଳକୁ ସେ ଅକ୍ଷମ; କେହି ନାହାନ୍ତି ଏମିତିକି ପାଣିଢ଼ାଳେ ଦବାକୁ, ପୋଡ଼ିଯାଇଥିବା ସିଝିଯାଇଥିବା ହାତମୁହଁ ଧୋଇବାକୁ, ଆଉ ବୁଢ଼ାର ବ୍ୟସ୍ତତା ଦେଖି ‘ସେ’ କହିଛନ୍ତି– ଥାଉ, ଆଉ କେବେ ଆଉଦିନେ ସେ ବନ୍ଧୁସଙ୍ଗୋଳା– ଆଜି ଟିକେ ତରତର ଅଛି, ଚାଲ ବେଇଗି ବାହାରିଯିବା, ଆଉ ବୁଢ଼ାଟି ବି ସେମିତି ବାହାରିପଡ଼ିଛି । କହିଛି– ହଉ ଚାଲ, ମତେ ବି ବସି ବସି ଚିଟା ଲାଗିଲାଣି ।

ତାକୁ ସେ କବିତା ଭାରି ଛୁଇଁଥିଲା, ଉଦ୍‌ବେଳିତ କରିଥିଲା । ସେତିକି ଥିଲା ତା’ର କହିବା କଥା । ଲେଖକଟିକୁ, କବିଟିଏକୁ ଜାଣିବା ପାଇଁ ସେତିକିବେଳ କେତେ ଅପର୍ଯ୍ୟାପ୍ତ, କେତେ ସଂକ୍ଷିପ୍ତ । ସେ ଦୃଷ୍ଟିରୁ ମୁଁ କ’ଣ ବ୍ୟକ୍ତିଗତ ସ୍ତରରେ କହ୍ନେଇକୁ ଜାଣିଥିଲି ? କିନ୍ତୁ ମୁଁ କ’ଣ ଜାଣିଥିଲି କି, ଏମିତି ବି ଭେଟିଥିଲି କି କେବେ ଜଗନ୍ନାଥ ଦାସେଙ୍କୁ, ସେକ୍‌ସପିଅରଙ୍କୁ, ରିଲ୍‌କେଙ୍କୁ ?

ଆଉ ନ ଜାଣି ବି ୧୯୭୫ ଜୁଲାଇ ୨୭ ତାରିଖ ସେଇ କଳା ରବିବାର ସକାଳେ ତା’ର ପରଲୋକ ଖବର ଶୁଣି ଲାଗିଥିଲା- ସାନ ଭାଇଟିଏ, ଗେହ୍ଲା ସାନଭାଇଟିଏ, ମରମୀ ମଣିଷଟିଏ ଗଲା ଚାଲି । କେଜାଣି ତା’ରି ମନୋନୀତ ମନପସନ୍ଦ କେଉଁ ରାଜ୍ୟକୁ । ଏମିତି ଅନୋଉ ଅନୋଉ ୧୧ ବର୍ଷ ବିତିଗଲାଣି । ଆଉ ଆଜି ଶ୍ରଦ୍ଧେୟ ଅସିତ ଓ ପ୍ରଦୀପ୍ତ ତା’ରି କଥାଘରଟିକୁ ତୋଳି ଆମ ସାମ୍ନାରେ ଛିଡ଼ା କରେଇଛନ୍ତି ।

କାଠ, ବାଉଁଶ, ମାଟି, କାଠି, କୁଟା ସବୁ ଜମାକରି ପକେଇଦେଇ ବଢ଼େଇ ନିଜେ ଚାଲିଗଲା ଉତ୍ତାରୁ ଏଇ ମରମୀ ସାହିତ୍ୟପ୍ରେମୀ ବନ୍ଧୁ ଦିଓଟି ତା'ର ଆହୁରି ଅନେକ ସମଧର୍ମୀଙ୍କ ସହାୟତାରେ ଗଢ଼ିଦେଇଛନ୍ତି ଏଇ କଥାଘର । ଉଦାସୀନତାରେ ଗଢ଼ା ଓଡ଼ିଆ ସାହିତ୍ୟ ପରିବେଶରେ ସେମାନଙ୍କର ଏଇ କାମ ଯେ କେତେ ମନଛୁଆଁ, ତା' ସବୁ ବିଦଗ୍ଧ ସାହିତ୍ୟରସିକ ନିଷ୍ଟୟ ଅନୁଭବ କରୁଥିବେ ।

କନ୍‌ହେଇର ଦିନରାତି ପଛରେ କ'ଣ ସବୁ ଅନୁଭବ ବିରାଜୁଥିଲା ? କ'ଣ ସେ ଖୋଜୁଥିଲା ? ସବୁ ଅନୁଭବକୁ ମନେହୁଏ ସେ ଆଁ କରି ପିଇଯାଇଥିଲା– ଅଗସ୍ତି ସମୁଦ୍ର ଚଲୁ କଲାପରି । ତା'ର ସବୁ ଇନ୍ଦ୍ରିୟଜ ଅନୁଭବ, ଆବେଗ, ମନ, ବୁଦ୍ଧି, ଅହଙ୍କାର, ଆତ୍ମା, ହୃଦୟ– ସକଳର ଦ୍ୱାର ଯେମିତି ସଂପୂର୍ଣ୍ଣ ଖୋଲା, ଉନ୍ମୁକ୍ତ । ସେ ଯେମିତି କୋଳେଇ କାଖେଇ ନେଉଥିଲା ପ୍ରତି ମୁହୂର୍ତ୍ତକୁ । ପ୍ରତି ମୁହୂର୍ତ୍ତର ସୂକ୍ଷ୍ମତମ, ଦାରୁଣତମ ଅନୁଭବକୁ । ଦେଖୁଥିଲା ନିଜ ବାଗରେ, ରକ୍ତରେ, ସ୍ନାୟୁରେ, ଚେତନାରେ ! ଉଚ୍ଛକିତ ହେଉଥିଲା, ଆଚ୍ଛନ୍ନ ହେଉଥିଲା । କାନ୍ଦୁଥିଲା, ହସୁଥିଲା, ଜୀବନ-ମରଣ ସହ ଲୁଚକାଳି ଖେଳୁଥିଲା, ଯନ୍ତ୍ରଣା ସହ ଯୁଝୁଥିଲା ।

କ'ଣ ସତେ ସେ ଖୋଜୁଥିଲା ? 'କିଛି ହଜେଇଥିବା ଜିନିଷ ଯାହା ମିଳେନି ।' କିଛି ଅର୍ଥ ଯାହା ମୁହୂର୍ତ୍ତରେ ଲାଗେ 'ହେଇ ପାଇଗଲି', ଆର ମୁହୂର୍ତ୍ତକୁ ଲାଗେ– ନା' ଇଏ ନୁହଁ' । ମନ୍ଦିରର ବାସ୍ନାଘେରା ପିଲାଦିନରୁ ସେ ହୁଏତ ଉତ୍ତୀର୍ଣ୍ଣ ହୋଇ ଆସିଥିଲା କୈଶୋରର ନିଛାଟିଆ ସଞ୍ଜର ନଈକୂଳ ଓ ନୀରବ ଆକାଶର ସ୍ମୃତିକୁ । ତା'ପରେ ପୁଣି ସ୍ନେହ, ପ୍ରେମ, କୋଉ ଦେବୀ, ରାଧା, ଅସୀମା, ଚାକିରି, ସମୟ, ଜୀବନ, ଯନ୍ତ୍ରଣା, ମୃତ୍ୟୁ । ଏ ସବୁକୁ ମିଶେଇ ଦେଖିବାକୁ କେତେ ଜଲ୍‌ଦି କେଡ଼େ ଓସ୍ତାଦି ଢଙ୍ଗରେ ସେ ଅଭ୍ୟାସ କରୁଥିଲା । ଯେମିତି ଓଳିଆରୁ ପଡ଼ି ଗଳା ! ଅଥଚ, ଅଥଚ ଚାଲିଯିବାକୁ କଅଣ ଏଡ଼େ ତରତର ଥିଲା; କେଜାଣି ? ଖୁବ୍ ନିରୋଳାରେ, ଖୁବ୍ ନିର୍ଜନରେ, ଖୁବ୍ ନିର୍ଭୟରେ ସେ ଗଲା ଚାଲି ।

"ମଇଁଷି ପିଠିରେ କିଏ ଚଢ଼ି ଆସେ, ମୋ ଦୁଆରେ ଧକ୍‌କା ମାରେ । ତଥାପି ମୋତେ ବା' ଭୟ କାହାକୁ ? ମୁଁ ଭୀଷଣ ଭାବେ ସୁରକ୍ଷିତ, କାରଣ ମୋ ବାଆଁରେ ତୁମ ନୀଳ ଆଖିର ଅଭିଶାପ ଓ ଡାହାଣରେ ଗୋଲ ଆଖିର ଆଶୀର୍ବାଦ ।" ଅଭିଶାପ ଓ ଆଶୀର୍ବାଦ ଏକାକାର ଠିକ୍ ଯନ୍ତ୍ରଣା ଓ ଆନନ୍ଦ ପରି । ତଥାପି ନିର୍ଭୟରେ ଜୀବନର ହଳାହଳ ଶିଶୁସୁଲଭ ଉତ୍ସୁକତା, କୁତୂହଳ ସହିତ ପିଇଯିବା ହିଁ ଯେମିତି ଜୀବନର ବୈଶିଷ୍ଟ୍ୟ !!

ନିର୍ଜନତା ଓ ପବିତ୍ର ଆନନ୍ଦ ଏକାଠି ଉପଭୋଗ କରିପାରେ ସେଇ ଲୋକ ଯିଏ ଜୀବନକୁ ଭଲପାଏ ଓ ପ୍ରତ୍ୟେକ ଅନୁଭବକୁ ନିଷ୍ଠାର ସହିତ ଛାତି ତଳେ ଦେଖିପାରେ । ଯୋଡ଼ିଏ ଉଦ୍ଧୃତିରୁ ଅନୁଭବର ସ୍ୱରୂପ ଦେଖାଯାଇପାରେ:



ପ୍ରଥମ ସଂସ୍କରଣର ପ୍ରଚ୍ଛଦ, ଶିଳ୍ପୀ: ଅସୀମ ବସୁ

"କ୍ରମେ ସୂର୍ଯ୍ୟ ଅସ୍ତ ହୁଏ । ପୃଥିବୀ ଉପରୁ ସୂର୍ଯ୍ୟର ଶେଷ ଚୁମା ଉଭେଇଗଲା ପରେ ପୂର୍ବ ଆକାଶରେ ଖୁବ୍ ସଂଗୋପନରେ ଗୋଟିଏ ନକ୍ଷତ୍ର ଜଳୁଥିବାର ମୁଁ ଦେଖେ । ଅପଲକ ଆଖିରେ ଚାହିଁରହେ ମୁଁ । ତା' ସହ ମୋ ଜୀବନର ସାମଞ୍ଜସ୍ୟ ଅନୁଭବ କରି ତାକୁ ଗେଲ କରିବାକୁ ମନହୁଏ ।" ('ଆହତ ସ୍ୱପ୍ନ' କନ୍‌ହେଇ କଥାଘର) । ହଁ ତାରାକୁ ଗେଲ କରିବାକୁ ମନେହୁଏ– ନିର୍ଜନ ତାରାକୁ ।

ଆଉ ସକାଳ ଏମିତି ଆସେ :

"ସକାଳେ ଏମିତି ଶୋଇ ରହି ଅର୍ଦ୍ଧଚେତନ ଅବସ୍ଥାରେ ଚାରିଆଡ଼େ ଜାଗି ଉଠୁଥିବା ଶବ୍ଦ ଶୁଣିବାକୁ ଭଲ ଲାଗେ । ବୁଝିହୁଏ ଏଇଟା ପୃଥିବୀର ଶବ୍ଦ । ପୃଥିବୀର ଜାଗି ଉଠିବାର ଶବ୍ଦ । କ୍ରମେ ସମସ୍ତେ ଜାଗ୍ରତ ହୋଇଗଲେ ପୃଥିବୀର ମୌଳିକ ଶବ୍ଦ ଚାପା ପଡ଼ିଯାଏ । ଘୋ ଘା ଭିତରେ ହଜିଯାଏ ସୁନ୍ଦର ଶବ୍ଦ-ଧ୍ୱନି-ସ୍ୱର । ଠିକ୍ ଏଇ ଜାଗି ଉଠିବା ମୁହୂର୍ତ୍ତରେ ମନେହୁଏ ପୃଥିବୀଟା ଖୁବ୍ ସୁନ୍ଦର ଓ ପବିତ୍ର ହୋଇଯାଇଛି ।"

ଏ ସବୁ ଅନୁପ୍ରେରଣା ସତ୍ତ୍ୱେ କିନ୍ତୁ ଡାଇରି ପୃଷ୍ଠାରୁ ଉକୁଟି ଉଠେ ନିର୍ଜନତାର ସ୍ୱର, ଦୁଃଖର ଆତ୍ମିକ ଅନୁଭୂତି:

"ମୋ ପାଇଁ ଅନେକ ଯନ୍ତ୍ରଣା କେଉଁଠି ଅଜଣାରେ ଅପେକ୍ଷା କରି ବସିଛି ।" (୧ ଜାନୁଆରୀ, ୧୯୭୩) ।

"ମୁଁ ଚାହେଁ ମୁଁ ଯେପରି କାହାରି ପାଇଁ ଜୀବନସାରା ଦୁଃଖ ପାଏ । ସେଥିରେ ମୋର ପରିତୃପ୍ତି... । ମୁଁ ଜାଣେ ମୋତେ ସମସ୍ତେ ପ୍ରଥମେ ପ୍ରଥମେ ଖୁବ୍ ଭଲ ପାଆନ୍ତି, କିନ୍ତୁ ପରେ କାହିଁକି କେଜାଣି, ଅଭିମାନରେ ହେଉ ବା ଯନ୍ତ୍ରଣାରେ ହେଉ, ମୋଠାରୁ ଦୂରେଇ ଯାଆନ୍ତି ।" (ଜାନୁଆରୀ ୩, ୧୯୭୩) ।

"ଚାହିଁଲେ ମଧ୍ୟ ଗପ ଲେଖି ହୁଏ ନାହିଁ । ଦୁଇ ତିନିଦିନ ଧରି ମୁଁ ବେଶ୍ ଚେଷ୍ଟା କରୁଛି; କିନ୍ତୁ ପାରୁନି । କିପରି ଏକ ଫାଙ୍କା ନିଷ୍ଫଳ ଭାବ ଆସୁଛି । ଗପ ଲେଖିପାରୁନି ।" (ଜାନୁଆରୀ ୫, ୧୯୭୩) ।

"ସକାଳେ ନିଦ ଭାଙ୍ଗିଲେ ମନଟା କେମିତି ଉଦାସ ହୋଇଯାଏ । ଆଜିକାଲି ଆଉ ଶୀତ ନାହିଁ । ବସନ୍ତ ବି ଯେମିତି ଚାଲିଗଲାଣି । ବସନ୍ତ ସକାଳଟା କେମିତି ଗୋଟିଏ ପ୍ରକାର ଅର୍ଥହୀନ ମନେହୁଏ । ମୋର ତ ଆଗରୁ ଅନେକ ଭାବପ୍ରବଣତା ଥିଲା । ଆଜିକାଲି ଅନୁଭବ କରୁଛି ଆଗ ପରି ମୋର ଆଉ ଭାବପ୍ରବଣତା ନାହିଁ । ଆଗେ ଯେପରି ଅସୀମା ଆଗରେ ଚଟ୍ କରି କାନ୍ଦି ପକାଉଥିଲି, ଆଜି ଆଉ କାନ୍ଦି ପାରୁନି କାହିଁକି ? କାନ୍ଦି ପାରୁଥିଲି ବୋଲି ବୋଧେ ସେତେବେଳେ ଭଲ ଲେଖି ପାରୁଥିଲି" (ଜାନୁଆରୀ ୧୦, ୧୯୭୩) । ରୁଷ୍ ଦେଶର ନାରୀକବି ଆନ୍ନା ଆଖ୍‌ମାତୁଲିନାଙ୍କ ଗୋଟିଏ କବିତା ଯାହାର ମୂଳକଥା 'କାହିଁକି ମୁଁ ଲେଖିପାରୁନି' ଠିକ୍ ଏଇ ସମାନ କଥା କହିଛି । ଭିତରର ଆତ୍ମା ଶୋକ ଜର୍ଜରିତ ନ ହେଲେ କାବ୍ୟର ଉଚ୍ଚାରଣ ନିର୍ମଳ ହୁଏନି । ବ୍ୟକ୍ତିଗତ ଶୋକ ଜାଗତିକ ଶୋକରେ ପରିଣତ ହେଲେ ମହାକାବ୍ୟ ଜନ୍ମନିଏ । ଲୁହ ପରି ପବିତ୍ର ଆଉ ବା କ'ଣ ଥାଇପାରେ, ସ୍ୱାଭାବିକ କ'ଣ ଥାଇପାରେ ।

ଆଉ ଗୋଟିଏ ଧାଡ଼ି ଡାଇରିରୁ- "ସବୁଦିନେ ସେଇ ଗୋଟିଏ ପ୍ରକାର ଜୀବନ ଭଲ ଲାଗୁନି ।" ଆଉ ଜୀବନର ଛନ୍ଦରେ ଇନ୍ଦ୍ରିୟଜ ଅନୁଭୂତିର ଦ୍ୱନ୍ଦ୍ୱ ବି ଅନେକ । ଲେଖକ ସନ୍ନ୍ୟାସୀ, ଲେଖକ ବି ସଂସାରୀ । ଖାଲି ଗୋଟିଏ ହୋଇଥିଲେ ସାହିତ୍ୟ ସୃଷ୍ଟି ହୋଇ ପାରନ୍ତାନି ।

"ଭାବୁଛି ଗଞ୍ଜେଇ, ଭାଙ୍ଗ, ସିଗ୍ରେଟ୍, ପାନ, ମଦ, ଚା' ଇତ୍ୟାଦି ଖାଇବି ନାହିଁ । କିନ୍ତୁ ସେମିତି ଅଭ୍ୟସ୍ତ ହୋଇ ନ ଥିଲେ ବି ଭଲ ଲାଗୁଛି ସେଗୁଡ଼ା ।"

"୧୯୭୧ରେ ଅସୀମା ମୋତେ ଗୋଟେ ଡଟ୍‌ପେନ୍ ଓ ଡାଇରି ଦେଇଥିଲା । ଏବେ ବି ସାଇତି ରଖିଚି ତାକୁ । ଆହା କେଡ଼େ ଚମତ୍କାର ଥିଲା ସେ ଦିନଗୁଡ଼ିକ ।"

ପୁଣି ମନେପଡ଼ିଛି ଧାରାର ଓଠ, "କି ନିରୀହ ଚାହାଣି- ଧାରାର", "ରାନୀର ନାକରେ ସେଇ ରିଙ୍ଗ୍‌ଟା କେଡ଼େ ଚମତ୍କାର ଦେଖାଯାଇଥିଲା ।" ଇତ୍ୟାଦି ଇତ୍ୟାଦି ।

କେତେ ଲେଖକ ବନ୍ଧୁ, ପଡ଼ୋଶୀଙ୍କୁ ସେ ମନେ ପକେଇଛି । ନାଁ ନେଇଛି । ସେଥିରୁ ତା' ସହିତ କେତେ ବି ଗଲେଣି ବିଦାୟ ନେଇ । ଯେମିତି ବିବେକ ଜେନା, ମଧୁ ମହାନ୍ତି, ଶୈଳ ଅପା, ଅଖିଳ ମୋହନ । ଆଉ ବିବେକ ଉପରେ ଟିପ୍‌ପଣୀ କେଡ଼େ ଆନ୍ତରିକ । "ଖୁବ୍ ସୁନ୍ଦର ଲୋକ ସେ । ପୂର୍ବରୁ ହୋଇଥିବା ଅପମାନ ସବୁ ଭୁଲି ଯିବାକୁ ହେବ । ଆପତତଃ ସେ ଆଜି ସୁନ୍ଦର ଓ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର କରି ପରୋକ୍ଷରେ ସେ ସବୁ ଅପମାନ ଇତ୍ୟାଦି କଥା ଭୁଲିଯିବାକୁ ବାଧ୍ୟ କଲେ । ଛାଡ଼, ଲୋକଟାର ମୁଡ୍ ଇତ୍ୟାଦି ବୁଝିବା ମୋର କର୍ତ୍ତବ୍ୟ । ଲୋକଟା ସଙ୍ଗେ ଗପି ତନ୍ତ୍ର ଇତ୍ୟାଦି କଥା ଜାଣିନେଲି । ତନ୍ତ୍ର ଓ ପ୍ରକୃତି ଉପରେ ଲୋକଟାର ଭୀଷଣ ଆଗ୍ରହ ।"

ସବୁ ଗଳ୍ପ, ୨ଟି ଯାକ ଉପନ୍ୟାସ, କେଇଟି କବିତା ଓ ଅଳ୍ପ କେତେ ଦିନର ଡାଇରି- ଏ ସବୁ ଭିତରୁ ଦୃଶିଯାଏ ଗୋଟିଏ ମରମୀ କିଶୋର । ଯିଏ ବଡ଼ ହୋଇନି ଆହୁରି । ପଦେ ପଦେ ରକ୍ତ ଝରୁଛି- କଥା ପଦକରେ, ଅଭିମାନରେ, ଦୁଃଖରେ, ଯନ୍ତ୍ରଣାରେ । ସ୍ନେହୀ, ଅନୁରାଗୀ, ସ୍ନେହକାଙ୍ଗାଳ ମଣିଷଟିଏ ଖୋଜି ବୁଲୁଛି ହଜେଇଥିବା ଦରବଟିଏ ଅଥଚ ଜାଣିନି କ'ଣ ସେ ଦରବଟି । କବି ୟେଟ୍‌ସ ଠିକ୍ କହିଥିଲେ- "We make with the quarrel with others rhetoric, with the quarrel with ourselves poetry."

କୋଉଠି କୋଉଠି ଲାଗିବ ଯେମିତି କଞ୍ଚା ହାତର କାମ । କାଟଛାଣ୍ଟ ଟିକେ ହେଇନି, ଯେମିତି ଇଚ୍ଛା ହେଲା, ଯୋଉ ବାଗରେ ଇଚ୍ଛା ହେଲା, ଯାହା ମନକୁ ଛୁଇଁଲା ଆନ୍ଦୋଳିତ କଲା ସବୁ ଗାରେଇ ଚାଲିଛି । କିନ୍ତୁ ଅନୁଭୂତିର ତୀବ୍ରତା, ଆତ୍ମ ପ୍ରକାଶନର ସ୍ୱଚ୍ଛନ୍ଦ ସାବଲୀଳତା, ଶିଶୁସୁଲଭ ସରଳତା ଓ ଚପଳତା- ଏ ସବୁ ମିଶି ଏତେ ମର୍ମସ୍ପର୍ଶୀ ସେ ଲେଖାସବୁ ଯାହାକୁ ପଢ଼ିଲା ବେଳେ ସେଇ ପ୍ରଶ୍ନ ମନକୁ ମନ ଦୋହରାଇ ହୋଇଯାଏ- "ସତରେ କ'ଣ ଈଶ୍ୱର ଯାହାକୁ ଭଲ ପାଆନ୍ତି ଆଗ ତାକୁହିଁ କୋଳକୁ ଟେକି ନିଅନ୍ତି ।"

ଆସକ୍ତି ଓ ବୈରାଗ୍ୟ, ସ୍ନେହ ଓ ଯନ୍ତ୍ରଣା, ପଡ଼ୋଶୀ ଓ କାଳିଶି, ସ୍ୱପ୍ନ ଆଉ ରୁକ୍ଷ ବାସ୍ତବତା ଯା'ରି ଭିତରେ ହିଁ ସବୁ ମରମୀ କଳାକାରର ପୃଥିବୀ । କନ୍‌ହେଇ, ସେଇ ପୃଥିବୀର ଅନ୍ତରଙ୍ଗ ଅନ୍ତେବାସୀ- ଏ କଥା ତା'ର ରଚନାର ଛତ୍ରେ ଛତ୍ରେ ପ୍ରତିଧ୍ୱନିତ । ସନ୍ଦେହ, ସଂଶୟ, ବ୍ୟଥା, ହତାଶା, ସ୍ୱପ୍ନ ଓ ଆଶା ସବୁ ମିଶି ସେଠି ଏକାକାର ।

ତା'ର ଗଳ୍ପ ଭିତରୁ ମୋର ଅତିପ୍ରିୟ ଗଳ୍ପ ହେଉଛନ୍ତି ଏଇ ଚାରୋଟି- 'ତାଙ୍କ ଠିକଣା', 'ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର', 'ଗୋଟିଏ ଘରପୋଡ଼ିର ଦୃଶ୍ୟ'

ଏବଂ "ଧୃତରାଷ୍ଟ୍ରର ଆଖି" । 'ତାଙ୍କ ଠିକଣା'ରେ 'ସେ' କିଏ ଏକଥା କେଉଁଠି କୁହାଯାଇନି । 'ସେ' କିନ୍ତୁ ଏମିତି ଏକ ସର୍ବନାମ ଯାହା ସମସ୍ତଙ୍କ ପ୍ରଯୋଜ୍ୟ । ଯାହାକୁ ଆତ୍ମା ଖୋଜେ, ଜୀବକୋଷ ରକ୍ତସ୍ରୁଅରେ ଯାହାପାଇଁ ଡାକରା ଶୁଭେ, 'ସେ' ସେଇ ।

"ମୁଁ ଏଠାରେ ଯାହାଙ୍କ କଥା କହୁଛି ତାଙ୍କୁ ଜୀବନରେ କେବେ ଦେଖିନାହିଁ, ତଥାପି ଯେପରି ଅନେକଥର ତାଙ୍କ ସହ ମୋର ସାକ୍ଷାତ ହୋଇଛି ।" "ମୁଁ ଗୋଟେ କାହାରି ପ୍ରତୀକ୍ଷାରେ ଛଟପଟ ହେଲି, ଯଦିବା କାହାର ଆସିବାର ନ ଥିଲା । ଶେଷରେ ତାଙ୍କୁହିଁ ସ୍ମରଣ କଲି, ସେ ଛିଡ଼ା ହେଲେ...ମୋ ଦେହର କବାଟ ଖୋଲି କେତେ ବୁଲ୍‌ବୁଲ୍ ଉଡ଼ିଗଲେ । କିଛି ସମୟ ପରେ ଅନୁଭବ କଲି ଠିକ୍ ମଧ୍ୟାହ୍ନଟା ଗଡ଼ିଯାଉଛି, ବାହାରେ ହାଲୁକା ଉତ୍‌ଫୁଲ୍ଲ ଅପରାହ୍‌ଣ । ତାଙ୍କର ଅନେକ ରୂପ, ଅନେକ ରଙ୍ଗ ।" "ମୁଁ ତାଙ୍କୁ ପ୍ରଣାମ କରିଛି; ପୁଣି କାମନା ବି କରିଛି ।" "ନିବିଡ଼ ଆଲିଙ୍ଗନରେ ତାଙ୍କ ଦେହରେ ସମ୍ପୂର୍ଣ୍ଣ ଭାବେ ଲୀନ ହୋଇଯିବା ପୂର୍ବରୁ ମୁଁ ଅନୁଭବ କଲି ମୋ ଦେହର ପ୍ରତି ଖୋପରେ ଅସଂଖ୍ୟ ଚିଠି ଏବଂ ପ୍ରତି ଚିଠି ଉପରେ ତାଙ୍କ ଠିକଣା- ଯାହାଙ୍କ କଥା ମୁଁ ଏଠାରେ କହୁଛି ।" (ତାଙ୍କ ଠିକଣା, କନ୍‌ହେଇ କଥାଘର)

ଆଉ 'ପ୍ରଯୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର' ପ୍ରଥମ ପ୍ରକାଶନ ପରେ ମୋତେ ବେଶ୍ ଛୁଇଁଥିଲା । ତା'ର ଇଂରେଜୀ ଅନୁବାଦ ମୁଁ ନିଜେ କଲି । 'ଇଣ୍ଡିଆନ ଲିଟରେଚର୍' ରେ ଛପାହେଲା । ଅନେକ ଅଣଓଡ଼ିଆ ବନ୍ଧୁ ଗପଟି ଖୁବ୍ ଭଲପାଇ ଚିଠି ଲେଖିଥିଲେ । ଏଯାବତ୍ ବି ଏ ଗପଟି ମୋର ଅନ୍ୟତମ ପ୍ରିୟ ଗଳ୍ପ । ବିଶେଷ କରି ଈଶ୍ୱରଙ୍କ ପ୍ରତି ଆସକ୍ତିମୂଳକ ସେଇ ଶ୍ଳେଷୋକ୍ତିସବୁ ଓ ତାଙ୍କ ସହ ଅଭୁଲା ସେ ଭେଟାଭେଟି ।

"ତୁମକୁ କେତେ ବର୍ଷ ହେଲା ଈଶ୍ୱର ! ତୁମେ ନିଶ୍ଚୟ ମୋଠୁଁ ସାନ । ଏବେ ମୋର ପଚିଶ ବର୍ଷ ଚାଲିଲା । ତୁମର ଗୋଟିଏ ଛଳନା ତୁମେ ନିରାକାର ଓ ସର୍ବବ୍ୟାପୀ । ତୁମେ ଗୋଟିଏ ମଣିଷ ହୁଅନ୍ତ କି ! ଠିକ୍ ମୋ ଭଳି ଗୋଟିଏ ମଣିଷ ହୁଅନ୍ତ କି ! ମଜା ବୁଝନ୍ତ । ତା' ନାହିଁ, ଅଦୃଶ୍ୟରେ କେଉଁଠି ଲୁଚିଛ । କ'ଣ ନା ଈଶ୍ୱର ।" ପୁଣି "ମୁଁ ଏ ଘରେ ବର୍ତ୍ତମାନ ଏକା । ତୁମେ ଆସି ଠିକ୍ ଏଇ ମୁହୂର୍ତ୍ତରେ କବାଟ ଖଟ୍‌ଖଟ୍ କରନ୍ତ । ମୁଁ ଯାଇ କବାଟ ଖୋଲି ଦିଅନ୍ତି । ତୁମେ ମୋତେ ନମସ୍କାର କରି କହନ୍ତ- ମୁଁ ଈଶ୍ୱର । ମୁଁ ବି ତୁମକୁ ନମସ୍କାର କରନ୍ତି- ଆରେ ଈଶ୍ୱରବାବୁ ଯେ ! ଆସନ୍ତୁ । ଅନେକଥର ଆପଣଙ୍କ ନାଁ ଶୁଣିଛି ! ତୁମେ ଟିକେ ହସନ୍ତ । ଭିତରକୁ ଆସନ୍ତ । ମୁଁ କହନ୍ତି- ଏକା ଏକା ବୋର୍ ହେଉଥିଲି । ଆସିଲ ଯାହାହେଉ ଭଲହେଲା । ତୁମେ ମୋ ଖଟ ଉପରେ

ବସନ୍ତ । ମୁଁ ଖଟଉପରେ ପଡ଼ିଥିବା ବହି ଲୁଙ୍ଗି ଅଣ୍ଡରୱେୟାର ଘୁଞ୍ଚାଇ ଦେଇ ତୁମର ବସିବାପାଇଁ ଜାଗା କରି ଦିଅନ୍ତି । ତୁମେ ଟିକେ ଥକା ମାରିବା ଭଙ୍ଗୀରେ ପଚାରନ୍ତ– ଆଉସବୁ କେମିତି ଚାଲିଛି ? ସବୁ ଭଲ ତ ? ମୁଁ କହନ୍ତି– ଭଲ ଆଉ କ'ଣ ? ଭଲମନ୍ଦ ମିଶାମିଶି । ତା' ପରେ ମୁଁ ଉଠିଯାଆନ୍ତି । ଜଗନ୍ନାଥକୁ ପଠାନ୍ତି ଗାନ୍ଧୀ ଦୋକାନରୁ ଚା' ଆଉ ରାମକୃଷ୍ଣ ପାଖରୁ ଜର୍ଦ୍ଦାଦିଆ ପାନ ଆଉ ଚାରମିନାର ଆଣିବାକୁ । ମୋ ପାଖରେ ପଇସା ନିଅଣ୍ଟ ହୁଅନ୍ତା । ମୁଁ ବ୍ୟସ୍ତ ହୋଇ ମୋ ପକେଟ୍ ଖୋଜନ୍ତି । ତକିଆତଳେ ଖୋଜନ୍ତି । ତୁମେ ତୁମ ପକେଟରୁ ଟଙ୍କିକିଆ ନୋଟ୍‌ଟିଏ ବାହାର କରି ଜଗନ୍ନାଥକୁ ବଢ଼େଇ ଦେଇ କହନ୍ତ– ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଦେଉଛି । ଆମର କଥାବାର୍ତ୍ତା ଚାଲନ୍ତା । ଆମେ ଆପଣରୁ ତୁମେକୁ ଓହ୍ଲେଇ ଆସନ୍ତେ । ଜଗନ୍ନାଥ ହେଣ୍ଡଲ୍ ଭଙ୍ଗା କପ୍‌ରେ ଚା' ଆଣି ଦିଅନ୍ତା । ପାନ ଚୋବାଇ, ଝର୍କା ରେଲିଂ ଦେଇ ପାନପିକ ବାହାରକୁ ପକେଇ, କହନ୍ତି–ଟିକେ ଚୂନ ଲାଗିଲା ।"

କି ଅଦ୍‌ଭୁତ ପରିବେଶ । ଈଶ୍ୱର ମଣିଷ ଘରେ, ମଣିଷ ଭାବରେ । ଜାଣିଥିଲି, କାହିଁକି ମୋ 'ଖରାବେଳ' କବିତା କହ୍ନେଇକୁ ଛୁଇଁଥିଲା; ତା' ଭାଷାରେ "ଧରିଥିଲା" ।

ଆଉରି ଈଶ୍ୱରଙ୍କ ପାଇଁ କେତୋଟି ମନ୍ତବ୍ୟ !

"ତୁମେ କେବେ ଗଞ୍ଜେଇ ଟାଣିଛ ଈଶ୍ୱର, କେବେ ମଦ ପିଇଛ ? କେବେ ବେଶ୍ୟାଘରକୁ ଯାଇଛ ? ତୁମର ପ୍ରେମିକା ଅଛନ୍ତି ? ଈଶ୍ୱର, ତୁମର କେହି ନାହିଁ । ତୁମେ କେବେ କିଛି କରିପାରିବ ନାହିଁ । ଶୁଣିଛି ସ୍ୱର୍ଗରାଜ୍ୟ ଖୁବ୍ ନିଃସଙ୍ଗ । ତୁମେ ଯଦି ସେମିତି ଏକ ରାଜ୍ୟରେ ଥାଅ, ତା'ହେଲେ ଖୁବ୍ ନିଃସଙ୍ଗ ହୋଇପଡୁଥିବ, ନୁହେଁ ? ତୁମେ କ'ଣ ଥରେ ଥରେ ନିର୍ଜ୍ଜନରେ ବସି କାନ୍ଦ ? ବେଶୀ ନିଃସଙ୍ଗ ହେଲେ ମୋ ଭଳି କ'ଣ ସିଗ୍ରେଟ୍ ଟାଣ ?"

"ତୁମେ କେବେ ମରିବ ମୁଁ ଜାଣେ । ଯେଉଁଦିନ ମୋର ସବୁ ଅନୁଭବ ଶକ୍ତି ଲୋପ ପାଇବ । ସେଇ ଯେଉଁଦିନ ଚାରୋଟି ବାଉଁଶ ଉପରେ ପକେଇ ଲୋକମାନେ ତୁମକୁ ଡାକି ଡାକି ମୋତେ ମଶାଣି ଆଡ଼େ ନେଇଯିବେ, ସେଦିନ ତୁମକୁ ମୋ ସହ ଯିବାକୁ ହେବ ଯେ !"

ଭଗବାନ କ'ଣ ସତରେ ସବୁ ମୃତ୍ୟୁରେ କ୍ଷୀଣତର ହୋଇଯାଆନ୍ତି ଆଉ ସବୁ ଜନ୍ମରେ ବୃହତ୍ତର ?

ଏମିତିଆ ମଣିଷଟେ ଥିଲା କହ୍ନେଇ । ସୃଜନଶୀଳତାର ସବୁ ପରିଚୟ ତା ଲେଖାରୁ ସ୍ପଷ୍ଟ ବାରି ହୋଇପଡ଼େ । ଅନୁଭୂତି ପ୍ରତି ପ୍ରଗାଢ଼ ନିଷ୍ଠା, ଅନୁଭୂତିକୁ ଗୁରୁତ୍ୱ ଦେଇ ସେଇ ପ୍ରକାରେ କାବ୍ୟକାରର ଜୀବନ ବଞ୍ଚିବା ଆଉ ଜୀବନର ସାମ୍ନା କରିବା ସବୁ

ସେ ଶିଖି ଚାଲିଥିଲା ଖୁବ୍ ଶୀଘ୍ର । କିନ୍ତୁ ହଠାତ୍ ସବୁ ବନ୍ଦ ହେଲା, ତାକୁ ଯିବାକୁ ପଡ଼ିଲା । ଆମେ ଆଉଜଣେ ସମଧର୍ମା, ଜଣେ ମରମୀ ଲେଖକକୁ ହରେଇଲୁ । ଭାବିବାକୁ ବାକି ରହିଗଲା ଯେ ଏ ଅସମାପ୍ତ ଛନ୍ଦ କାହିଁକି, କେତେ ତ ଏମିତି ଅତି କଅଁଳିଆ ବୟସରୁ ଲେଖନୀ ବନ୍ଦକରି ଚାଲିଯାଇଛନ୍ତି । ତା' ଭିତରେ ସେ ଆଉ ଜଣେ ହେଲା ।

ଆଉ ଆଜି "କନ୍‌ହେଇ କଥାଘର" ବହିଟିକୁ ବିଜ୍ଞ ପାଠକଙ୍କ ସାମ୍ନାକୁ ଆଣି ଅସିତ-ପ୍ରଦୀପ୍ତ ଯୋଡ଼ି ଓଡ଼ିଆ ସାହିତ୍ୟର କେଡ଼େ ଉପକାର କରିଛନ୍ତି ସେ କଥା କହିବା ନିଷ୍ପ୍ରୟୋଜନ ।

ଏ ବହିଟି ଖାଲି ବହି ନୁହେଁ । ଗୋଟିଏ ଦରଦୀ ଲେଖକର ଆତ୍ମାର କାହାଣୀ । ଇଏ ସେମିତିଆ ବହି ଯାହାକୁ ଛୁଇଁଲେ ଲେଖକର ହୃତ୍‌ପିଣ୍ଡର ସ୍ପନ୍ଦନ ସିଧା ବାରିହୁଏ । ସେଠି ଥିବା ହତାଶା, କ୍ଷୋଭ, ଆଶା, ଆନନ୍ଦ, ନିରାନନ୍ଦ, ସ୍ୱପ୍ନ, ବୈରାଗ୍ୟ ସବୁ ମନକୁ ଆବୋରି ବସେ ।

(କଥା, ପ୍ରଥମବର୍ଷ, ତୃତୀୟ ସଂଖ୍ୟା, ଏପ୍ରିଲ୍, ୧୯୮୭)



# ଫୁଙ୍ଗୁଳା ଦେହରେ ଗପଲେଖୁଥିବା ଏକଲା ମଣିଷର ଖୋଲା ଡାଇରି ଅଥବା 'କନ୍‌ହେଇ କଥାଘର'

**ଗୌରହରି ଦାସ**

"ଉତ୍ତମାଶା, ମୋର ସେଇଠି ଚିତ୍କାର କରିବାକୁ ଇଚ୍ଛା ହଉଥିଲା– ଆପଣ କେମିତି ଜାଣିବେ, ମୋ ମା ଗାଧୋଇ ଆସି ହଳଦିଲୁଗା ପିନ୍ଧି ତୋରାଣି ଆଉ ପିଆଜ ଖାଏ । ଆପଣ କେମିତି ଜାଣିବେ ମୋ ସାନଭାଇଟି ସକାଳେ ମୂତୁରା କନ୍ଥାରେ ଶୋଇ କିପରି ଖାଇବାକୁ ମାଗେ । ଆପଣ କେମିତି ଜାଣିବେ ମୋ ବିଧବା ଭଉଣୀ ଅନ୍ୟଘରେ ଅଇଁଠା ବାସନ ମାଜୁମାଜୁ କିପରି ହାତ ପାପୁଲିର ପିଠିରେ ମୁହଁର ଝାଳ ପୋଛେ । ଆପଣ କିପରି ଜାଣିବେ ମୋ ସବା ସାନଭଉଣୀ ଅନ୍ୟର କଲମ ଚୋରି କରି ମାଡ଼ଖାଏ । ଆପଣ କିପରି ଜାଣିବେ କାହାର ଚୁଡ଼ିଭରା ହାତ ମୋର ଲୁହ ପୋଛି ଏକ ସୁସମୟକୁ ଅପେକ୍ଷା କରେ । ଉତ୍ତମାଶା, ଓଡ଼ିଶାର ସୁବିଖ୍ୟାତ ସାହିତ୍ୟିକ, ଉଚ୍ଚପଦସ୍ଥ ଅଫିସରଙ୍କ କବାଟ ବନ୍ଦ ପରେ ମୋର ଇଚ୍ଛା ହେଉଥିଲା ଗୋଟିଏ ଚାପୁଡ଼ାରେ ଏ ସମାଜର ବଡ଼ବଡ଼ ଅଫିସରଙ୍କ ଖାମଖେୟାଲି ଆଚରଣକୁ ଉଡ଼ାଇ ଦିଅନ୍ତି ।"

(କନ୍‌ହେଇ କଥାଘର, ନୂଆଠିକଣା)

ଏବଂ

"କୁନିଅପା, ମୁଁ ଜାଣେନି ତୁମେ ଏବେ କେଉଁଠି । ××× ଘରର ଚାରିକାନ୍ଥ ଭିତରେ ତୁମର ପୁଅ ଝିଅ, ଶାଶୁ ଶ୍ୱଶୁର, ସ୍ୱାମୀ ଦିଅର ସମସ୍ତଙ୍କୁ ନେଇ ଭୀଷଣ ବ୍ୟସ୍ତ ଥିବ । ଯଦି କେବଳ ଝର୍କା ଦେଇ ଦୂର ଦିଗନ୍ତକୁ ଚାହଁ, ତା'ହେଲେ ଦେଖିବ ଅନେକ ଅନାବନା ଗଛର ସିଲହଟ୍ ଯେଉଁଠି ଆକାଶ ଆଉ ପୃଥିବୀର ସୀମାରେଖା ନିର୍ଣ୍ଣୟ କରୁଛି ସେଇଠି ସମସ୍ତଙ୍କୁ ଟପିଯାଇ ଗୋଟିଏ ନିଃସଙ୍ଗ ତାଳଗଛ ଛିଡ଼ା ହେଇଛି । ×××

(ଉପନ୍ୟାସ 'ଆହତସ୍ୱପ୍ନ', କନ୍‌ହେଇ କଥାଘର)

**ଏବଂ**

"ଶାନ୍ତନୁ ! ମୋ ଲୁଗା କାନିରେ ସୋରିଷ, ମୋ ବିଛଣାତଳେ ଲୁହାକଣ୍ଟା, ଗୁଣିଆର ମନ୍ତ୍ର ! କେହି ତୁମର ଗତିରୋଧ କରିପାରିବେ ନାହିଁ । ମୁଁ ଜାଣେ, ଯଦି ମୁଁ ବାରମ୍ବାର କୁହେ– ମୁଁ ତୁମକୁ ଘୃଣାକରେ, ଭୀଷଣ ଘୃଣାକରେ, ତୁମେ କେବଳ୍ ମୋର ଅପରିପକ୍ୱ କୁମାରୀ ଜୀବନର ହୁଗୁଳା ମନର ଏକ ଖେୟାଲ ଭିନ୍ନ ଆଉ କିଛି ନୁହଁ, ତାହେଲେ ?" (ଗୋଟିଏ ଗଳ୍‌ପର ଗଳ୍‌ପ)

ଦାରିଦ୍ର୍ୟ, ଅସହାୟତା, ହୀନମନ୍ୟତା, କ୍ଷତାକ୍ତ ଅଭାବବୋଧ, ଅନୁଉରିତ ଅଭିଯୋଗ ଓ ଚାରିପାଖର ନିସ୍ତବ୍‌ଧ କୋଳାହଳ– ବାରମ୍ବାର ପ୍ରେମିକାର ବୈଠକଘରେ ଧରାପଡ଼ି ଅପମାନିତ ହେଉଥିବା ଅସଫଳ ପ୍ରେମିକ, ଏକ ନିଦା କର୍ମବାଦୀର ବର୍ତ୍ତମାନସର୍ବସ୍ୱ ସ୍ଥିତିବାଦ ଠାରୁ ଅସହାୟ ଭାଗ୍ୟବାଦୀର ଅନ୍ଧାରୀ ଭବିଷ୍ୟତ ଯାଏ ଛାଟିପିଟି ହେଉଥିବା ଓ ନିମ୍ନ ମଧ୍ୟବିତ୍ତ ପରିବାରର ଜଞ୍ଜାଳକୁ ଓଟ ପରି ବୋହି ବୋହି ଚାଲୁଥିବା ଅଥଚ ଧରାବନ୍ଧା ରୁଟିନର ନିୟମକାନୁନକୁ ଅଜବ ଖିଆଲରେ ଡେଇଁ ଚାଲିଯାଉଥିବା ବୋହେମିଆନ ଯାଯାବର, ତତ୍ତ୍ୱସନ୍ଧାନୀ, ସୌନ୍ଦର୍ଯ୍ୟବୋଧର ଉପାସକ ଠାରୁ ବିଶ୍ୱ-ବିଦ୍ୱେଷୀ, ନାରୀବିଦ୍ୱେଷୀ ଏବଂ ସର୍ବୋପରି ଫ୍ରକ୍‌ପିନ୍ଧା ସ୍କୁଲଝିଅଟିକୁ ଦେଖି ଅଟକି ଯାଉଥିବା କେବେକେବେ ସୁନ୍ଦର ଗୋଲାପ ଫୁଲର ପାଖୁଡ଼ାକୁ ଏକ ଜାନ୍ତବ ଈର୍ଷା, ବିଦ୍ୱେଷ ଓ ରୁଗ୍‌ଣ ମାନସିକତାର ଶିକାର ପାଇଁ ଟିକିଟିକି କରି ମାଡ଼ିମକଚି ଚାଲିଯାଉଥିବା ଉନ୍ମାଦ; ସଜଳ ସକାଳର ପବିତ୍ର ଧୂପବାସ୍ନାରେ ଆମୋଦିତ ଗଭୀର ଈଶ୍ୱରବିଶ୍ୱାସୀ ଆସ୍ତିକ ଅଥଚ ଗଂଜେଇ, ଚରସ, ବିଡ଼ି, ସିଗ୍ରେଟ୍‌ର ବିଷାକ୍ତ ଧୂଆଁ କୁଣ୍ଡଳି ଭିତରେ ସମୟକୁ ପୋଡ଼ିଜାଳି ପାଉଁଶ କରିଦଉଥିବା ନିଶାସକ୍ତ; ପ୍ରବୃତ୍ତି ଓ ନିବୃତ୍ତିର ନିକିତି ତାଲାରେ ବାରମ୍ବାର ଭାରସାମ୍ୟ ହରଉଥିବା ଅସହାୟ ବଟକରା, ଊର୍ଦ୍ଧ୍ୱଗ ଚେତନା ଓ ନିମ୍ନଗାମୀ କାମନାର ଦୋଛକି ମୋଡ଼ରେ ବାରମ୍ବାର ବାଟଭୁଲୁଥିବା ମଣିଷଟିଏର ନିର୍ଭେଜାଲ ଡାଏରି 'କନ୍‌ହେଇ କଥାଘର'। ଏଥିରେ ଫୁଟିଉଠିଛି ପୃଷ୍ଠା ପୃଷ୍ଠା ବ୍ୟାପୀ ପ୍ରଚୁର ଅଭିଯୋଗ, କାହାରିକୁ ବୁଝେଇ ନପାରିବାର ଅସହାୟତା, କାହାରି ପାଖେ ନିଜକୁ ସମର୍ପି ଦେଇନପାରିବାର ନିପାରିଲାପଣିଆ ଓ ଅଜସ୍ର ପ୍ରାପ୍ତି ଭିତରେ କିଛି ଗୋଟାଏ ହଜେଇ ଦେବାର ଚରମ ଅବସୋସ। କନ୍‌ହେଇଲାଲ କେବଳ ଛୋଟିଆ ସ୍ୱପ୍ନଟିଏ ଦେଖିଥିଲେ, କାହାର ଉଷୁମ କୋଳ ଉପରେ ପଣତ ଢାଙ୍କି ହେଇ ଚୁପ୍‌ଚାପ୍ ସ୍ୱପ୍ନ ଦେଖୁଥିବ, ସ୍ୱପ୍ନ ଦେଖିଥିବ, ଗପ ଲେଖୁଥିବ, ଗପ ଲେଖୁଥିବ ଏବଂ କହୁଥିବ, ଯେତେଦିନ ଏ ପୃଥିବୀ ଅଛି, ଏ ମାଟି ଅଛି, ଏ ପାଣି-ପବନ-ଗଛଲତା-ପାହାଡ଼-ଝରଣା, ଜହ୍ନରାତି, ବେଳାଭୂଇଁ, ମନ୍ଦିର ଓ ମଶାଣି ଅଛି ସେତେଦିନ ପ୍ରେମ ଥିବ, ଭଲପାଇବା ଥିବ, ଉଷୁମ କୋଳର ନିର୍ଭର ପ୍ରତିଶ୍ରୁତିଟିଏ ଥିବ, ପେଟଭରି ଗଣ୍ଡିଏ ଖାଇବାର, ଅଳସ ଦେହ ଅଜାଡ଼ି ଆଖିମୁଦିବାର

ଜାଗାଖଣ୍ଡେ ଥିବ ଆଉ ସେଇମିତିକା ପରିବେଶ ଭିତରେ ଥାଇ ସେ ଘୋଷଣା କରି କହୁଥିବ– ମଣିଷ ବଞ୍ଚୁଛି, ବଂଚିଲା ପରି ବଞ୍ଚୁଛି ଏବଂ ପ୍ରେମ ଯଦି ବଞ୍ଚୁଛି, ମଣିଷ ବଞ୍ଚୁନି କେମିତି ଯେ !!

ଦେହସର୍ବସ୍ୱ ପ୍ରେମ ଓ କଳ୍ପନା ବିଳାସ ଠାରୁ ଆରମ୍ଭ କରି ସଂପୂର୍ଣ୍ଣ ବାସ୍ତବବାଦୀ ସାମାଜିକ ପ୍ରତିବଦ୍ଧତା ପର୍ଯ୍ୟନ୍ତ ବିଭିନ୍ନ ଦିଗକୁ ନେଇ ବ୍ୟସ୍ତ ରହିଥିଲେ ଗାଳ୍ପିକ କନ୍‌ହେଇଲାଲ । ବିବିଧ ସ୍ୱର ହିଁ ସଂକଳନର ମର୍ମସ୍ୱର । ସେଠି ଫୁଲ ଅଛି, ଫଗୁଣ ଅଛି, ଶୃଙ୍ଗାର ଅଛି, ମୈଥୁନ ଅଛି, ପୁଣି ଧର୍ଷଣ ଓ ହତ୍ୟା ଅଛି, ଭାଙ୍ଗିରୁଜି ଟିକ୍‌ଟିକ୍ କରିଦେବାର ପୈଶାଚିକ ପ୍ରବୃତ୍ତିର ସ୍ପଷ୍ଟ ଇସ୍ତାହାର ମଧ୍ୟ ରହିଛି ।

କେବଳ ଅନୁସନ୍ଧାନୀ କୌତୂହଳୀ ପାଠକଟିଏ ନୁହେଁ, କନ୍‌ହେଇ ଗଳ୍ପର ଅନ୍ଧ ସ୍ତାବକଟିକୁ ମଧ୍ୟ ସ୍ୱୀକାର କରିବାକୁ ପଡ଼ିବ ଯେ କନ୍‌ହେଇଲାଲ ଦାସଙ୍କ ଗଳ୍ପଗୁଡ଼ିକ ବେଶୀ ଆତ୍ମଜୀବନୀଧର୍ମୀ, କମ୍ ନିରୋଳା ଗଳ୍ପ-ସାହିତ୍ୟ । ସବୁ ଗଳ୍ପର ପ୍ରାୟ ମୁଖ୍ୟ ଚରିତ୍ର ନିଜେ ଗାଳ୍ପିକ । ଘଟଣା, ପରିବେଶ ଓ ଚରିତ୍ର ସବୁ ସମସାମୟିକ ଓ ଆପାତତଃ ସତ୍ୟାଶ୍ରିତ ଏବଂ ଯେଉଁଥିପାଇଁ ଗୋଟାଏ ପ୍ରକାର ଘଟଣା ବାରମ୍ବାର ଘଟେ । ପ୍ରେମିକା ଅଧାବାଟରୁ ସବୁ ପ୍ରତିଶ୍ରୁତି ଭୁଲି ଅନ୍ୟପୁରୁଷର ହାତଧରି ଚାଲିଯାଏ, ପ୍ରେମିକ କନ୍‌ହେଇଲାଲ (ଗଳ୍ପର ନାୟକ) ନୀରବରେ ଅଶ୍ରୁପାତ କରେ । ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥା ଉପରେ ଅକାରଣରେ ଅଭିଶାପ ବର୍ଷଣ କରେ । ପିଛିଲା ଦିନଗୁଡ଼ିକୁ ଝୁରୁଝୁରି ନିଃଶେଷିତ ହୋଇଯିବାକୁ ଦିଏ ନିଜକୁ ଏବଂ ଶେଷରେ ବସବାସ ସେସବୁକୁ ଗପର ରୂପଦିଏ ।

ଏବଂ ସ୍ୱୀକାର କରିନେବାକୁ ହେବ ଯେ 'କନ୍‌ହେଇ କଥାଘର'ର ଗାଳ୍ପିକ ବିଶ୍ୱାସ କରେନାହିଁ ଜୀଇଁବା ପାଇଁ ଭଲ ପାଇବାକୁ; ବରଂ ସେ ଗ୍ରହଣ କରିନିଏ ସେମିତିକା ଗୋଟାଏ ତତ୍ତ୍ୱ- 'ଭଲପାଇବା ପାଇଁ ଜୀଇଁବାକୁ । ସୁତରାଂ ଯେଉଠି ଗୋଟିଏ ପ୍ରେମିକା ସହ ଦୀର୍ଘଦିନର ନିବିଡ଼ ସଂପର୍କର ସମାଧି ତିଆରି ହୁଏ, ଠିକ୍ ସେଇଠୁ ଏବଂ ସେହି ମୁହୂର୍ତ୍ତକୁ ହିଁ ଆଉ ଗୋଟିଏ ନୂଆ ସଂପର୍କର ମୂଳଦୁଆ ପଡ଼ିଯାଏ ନାଟକୀୟ ଭାବରେ। ଏଇ ସଂପର୍କ ସବୁର ଚିତ୍ରଣ ହିଁ କନ୍‌ହେଇଲାଲଙ୍କ ଅଧିକାଂଶ ଗଳ୍ପର ମୁଖ୍ୟ ଆଖ୍ୟାନଭାଗ ।

ଅଥଚ କେଡ଼େ ସୁନ୍ଦର ବାଗରେ, ସଜଡ଼ା ଭଙ୍ଗୀରେ, ମରମକୁ ଛୁଇଁଲା ପରି କଥା ଗୁଡ଼ାକ କୁହାନଯାଇଛି ଏଥିରେ! ସବୁ ନୀତି ଓ ନୈତିକତା, ସବୁ ଆଦର୍ଶ ଓ ଦର୍ଶନର ଧ୍ୱଜାଧାରୀ ବଡ଼ପଣ୍ଡାମାନଙ୍କର ଉଚ୍ଚ ପିଣ୍ଡା ଡେଇଁ ଲଙ୍ଗଳା ସ୍ନେହକାଙ୍ଗାଳ ଶିଶୁଟିଏ ଯେପରି ଏ କୋଳରୁ ସେ କୋଳ, ସେ କୋଳରୁ ଆଉ ଗୋଟିଏ କୋଳକୁ ଚାଲିଯାଉଛି, ନିର୍ବିବାଦରେ ଅଛନ୍ତି ନିଃସଂକୋଚରେ ଆଖି ବୁଜିଦେଉଛି ନୀତି, ଆଦର୍ଶ ଓ ତୁଚ୍ଛା ଉପଦେଶ ଭର୍ତ୍ତି ପ୍ରାଚୀରପତ୍ର, ସଂହିତା ଓ ପୁରାଣର ଅନ୍ତଃସାରଶୂନ୍ୟତା ଆଡ଼େ । ଏଇ

ସରଳ ଓ ନିଷ୍କପଟ ଆତ୍ମବୟାନର ସାହସିକତା ପାଇଁ ଏବଂ ମଣିଷ ମନର ଅନ୍ଧାରିଗୁମ୍ଫାରେ ଫଣା ଟେକି ଉଠୁଥିବା ଅଜଗରୀ ମନର ମାନଚିତ୍ରକୁ ଠିକ୍ ଠିକ୍ ଆଙ୍କିପାରିଥିବା ପାଇଁ ହିଁ କନ୍‌ହେଇଲାଲ ଆମମାନଙ୍କ ପାଖରେ ରହିଥିବେ ସ୍ମରଣୀୟ ହୋଇ । ଏକା ଧରଣର ଘଟଣା ଓ ଚରିତ୍ରମାନଙ୍କର ପୁନରାବର୍ତ୍ତନ ଏବଂ ଏକ ସ୍ପର୍ଶକାତର ଅଭିମାନୀ ପ୍ରେମିକ ପୁରୁଷଟିର ଦୀର୍ଘ ସ୍ୱଗତ ଓ ସଂଳାପସବୁର ପ୍ରଚୁର ପୁନରାବୃତ୍ତି ସତ୍ତ୍ୱେ 'କନ୍‌ହେଇ କଥାଘର'ର ଅନେକ ଗଳ୍ପ ତଥାପି ବିଶେଷ ଆଲୋଚନା ତଥା ଅନ୍ତରଙ୍ଗ ଦୃଷ୍ଟିପାତର ଅପେକ୍ଷା ରଖନ୍ତି ।

କନ୍‌ହେଇଲାଲ ଗଳ୍ପର 'ଥିମ୍'କୁ ନେଇ ଯେ କେବଳ ବାରମ୍ବାର ଏକ୍‌ସପେରିମେଣ୍ଟ କରିଛନ୍ତି ତା' ନୁହେଁ, ଗଳ୍ପର 'ଫର୍ମ'କୁ ନେଇ ମଧ୍ୟ ଅନେକ ପରୀକ୍ଷାନିରୀକ୍ଷା କରିଛନ୍ତି । ଭାବିବସିଲେ ଆଶ୍ଚର୍ଯ୍ୟ ଲାଗେ ଯେ, ତାଙ୍କର ସମସାମୟିକ ଗାଳ୍ପିକମାନଙ୍କ ଅପେକ୍ଷା ସାଂଘାତିକ ଭାବରେ ସଫଳତା ଅର୍ଜନ କରିପାରିଛନ୍ତି । ତାଙ୍କର ସଫଳ ଓ ସ୍ମରଣୀୟ ଗଳ୍ପମାନଙ୍କ ତାଲିକାରେ ମୁଖ୍ୟତଃ ରହିବେ 'ଝର୍କା ପାଖରେ ସାରାଦିନ' (କବିତାଧର୍ମୀ ଗଳ୍ପ) 'ଅଫେରା ଚାରୋଟି ପାଦର ମୁକ୍ତ ରଙ୍ଗିନ ଆକାଶ ପାଇଁ ବେଳାଭୂମିର ବେଲୁନ୍‌ବାଲା ଓ ଚଣା ବିକାଳୀ ଝିଅ (ଦୀର୍ଘ ଶିରୋନାମା ଓ ଦୀର୍ଘ ପାରାଗ୍ରାଫ) (ଗୋଟିଏ ଗପ-ଗୋଟିଏ ପାରାଗ୍ରାଫ), 'ବିଶେଷ ସମ୍ବାଦ' (ସମ୍ବାଦ ଗଳ୍ପ) 'ଏକ ବିଗ୍ରହହୀନ ମନ୍ଦିର ସାମ୍ନାରେ ମାଲ୍‌ବୋଝେଇ ଲରିଟାର କିଛି ସମୟ ଅଟକି ଯାଉଥିବାର ଦୃଶ୍ୟ' (ଗୋଟିଏ ଗଳ୍ପ- ଗୋଟିଏ ପାରାଗ୍ରାଫ), 'ଏକ ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର' (ନାଟକଧର୍ମୀ), 'ଗୋଟିଏ ଘରପୋଡ଼ିର ଦୃଶ୍ୟ' (ଆଭାସଗଳ୍ପ) ଇତ୍ୟାଦି । ଏମାନଙ୍କ ମଧ୍ୟରୁ 'ଏକ ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର', 'ବିଶେଷ ସମ୍ବାଦ' ଓ 'ଧୃତରାଷ୍ଟ୍ରର ଆଖି' ଉଲ୍ଲେଖଯୋଗ୍ୟ । 'ବିଶେଷ ସମ୍ବାଦ' ଗଳ୍ପଟି ସାଂପ୍ରତିକ ସମାଜରେ ସାହିତ୍ୟ ଓ ସମ୍ବାଦପତ୍ରର ଘଟଣାମାନଙ୍କ ଭିତରେ ଥିବା ଆପାତ ସାମଞ୍ଜସ୍ୟର ଏକ ଫଟୋଗ୍ରାଫିକ୍ ରିପ୍ରେଜେଣ୍ଟେସନ । ଏ ଗଳ୍ପରେ ଥିମ୍ ଅପେକ୍ଷା ଫର୍ମହିଁ ବେଶି ଉଲ୍ଲେଖଯୋଗ୍ୟ । ଗଳ୍ପଟିର ପରିସମାପ୍ତିରେ ଗାଳ୍ପିକ ଲେଖନ୍ତି, "ମୁଁ ନିରୁପାୟ ହୋଇ ଆଲୁଅ ଲିଭାଇ ଶୋଇଯିବା ପୂର୍ବରୁ ଦେଖିଲି ପ୍ରଶାନ୍ତିର ସୁନ୍ଦର ଗୋରାଦେହ ଗୋଟିଏ ଖବରକାଗଜ ହୋଇଯାଇଛି ଏବଂ ଅସଂଖ୍ୟ ତିଳଚିହ୍ନ ଭଳି ବସିଥିବା ମଶାମାନେ ଅକ୍ଷର ହୋଇଯାଇଛନ୍ତି ।"

'ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର' ଗଳ୍ପଟିରେ ଆଧିଭୌତିକ ସ୍ତରର ଈଶ୍ୱରୀୟ ସତ୍ତାଟିକୁ ଏକ ସାଧାରଣ ରକ୍ତମାଂସର ମଣିଷ ଭାବେ ଇ ରୂପାନ୍ତରିତ କରିବା ସହ ଅନୌପଚାରିକ କଥାବାର୍ତ୍ତା ହେବାର ଆଇଡ଼ିଆ ଅତି ଚମତ୍କାର ! ମଣିଷ ସୁଲଭ

ସବୁ ଦୋଷଦୁର୍ବଳତା ତା' ଭିତରେ ଜାଗରୁକ କରାଇ ତାକୁ ହତ୍ୟା କରିବାର ଆବଶ୍ୟକତା ସୃଷ୍ଟି କରିବା ଭଳି ନାଟକୀୟତା ମଧ୍ୟ ଏକ ବିଶେଷ ଧରଣର ନିରୀକ୍ଷା-

"ତୁମକୁ କେତେବର୍ଷ ବୟସ ହେଲା ଈଶ୍ୱର ?"

"ତୁମେ ମୋଠାରୁ ନିଶ୍ଚୟ ବୟସରେ ସାନ।"

"ମୁଁ ଆଜି ତୁମକୁ ଜୀବନ୍ୟାସ ଦେବି। ତୁମକୁ ମଣିଷ କରି ଗଢ଼ିବି । ତା' ପରେ ଖୁବ୍ ଅସହାୟ କରି ତୁମକୁ ଖୁନ୍ କରିବି।"

× × ×

"ତୁମେ ମଣିଷ ବନିଗଲାପରେ ମୋ ସହ ଦୋସ୍ତି କରିବ ? କେହି ତୁମକୁ ମୋ ସହ ପରିଚୟ କରେଇବା ଦରକାର ନାହିଁ । ମୁଁ ଏ ଘରେ ବର୍ତ୍ତମାନ ଏକା । ତୁମେ ଆସି ଠିକ୍ ଏଇ ମୁହୂର୍ତ୍ତରେ କବାଟ ଠକ୍ ଠକ୍ କରନ୍ତ । ମୁଁ ଯାଇ କବାଟ ଖୋଲି ଦିଅନ୍ତି ।

ତୁମେ ମତେ ନମସ୍କାର କରି କହନ୍ତ "ମୁଁ ଈଶ୍ୱର ।

ମୁଁ ବି ତୁମକୁ ନମସ୍କାର କରନ୍ତି - 'ଆରେ ଈଶ୍ୱର ବାବୁ ଯେ, ଆସନ୍ତୁ, ଅନେକ ଥର ଆପଣଙ୍କ ନାଁ' ଶୁଣିଛି ।" ବିଭିନ୍ନ କାରଣରୁ ଏ ଗଳ୍ପଟି ଓଡ଼ିଆ ଗଳ୍ପ ସାହିତ୍ୟରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବିକରେ ।

'ଧୃତରାଷ୍ଟ୍ରର ଆଖି' ଏ ସଂକଳନର ଶେଷତମ ଗଳ୍ପ ଓ ଏହା କନ୍‌ହେଇଲାଲ ଦାସଙ୍କର ଗାଳ୍ପିକ ଜୀବନର ମୋଡ଼ ପରିବର୍ତ୍ତନର ସୁସ୍ପଷ୍ଟ ସଙ୍କେତ । ସ୍ୱର୍ଣାତୁର କଳ୍ପନା ବିଳାସ, ଜୈବିକ କ୍ଷୁଧା, ଯୌନପ୍ରବୃତ୍ତି, ଅବଦମିତ କାମନା ଓ ପଳାୟନପନ୍ଥୀର ଭୀରୁ ନିଷ୍ଫଳ ଆକ୍ରୋଶ ଏ ଗଳ୍ପର ଦିଗ୍‌ବଳୟରେ ସଂପୂର୍ଣ୍ଣ ନିଖୋଜ । ସାମାଜିକ ଅଙ୍ଗୀକାର, ସାହିତ୍ୟିକ ଦାୟବଦ୍ଧତା, ଶ୍ରେଣୀ ସଚେତନତା ଓ ସର୍ବୋପରି ସମୟବୋଧର ସ୍ୱର ବାରି ହୋଇପଡ଼େ ଏଥିରୁ । ଏ ଗଳ୍ପଟି କନ୍‌ହେଇଲାଲ ଦାସଙ୍କର ମୃତ୍ୟୁ ପରେ ପ୍ରକାଶିତ ବୋଧହୁଏ ତାଙ୍କ ଜୀବନର ସର୍ବଶେଷ ଗଳ୍ପ । ସ୍ୱତଃ ଆଶା କରିବା ସ୍ୱାଭାବିକ ଯେ ଏ ଗଳ୍ପଟି ତାଙ୍କର ରୋମାଣ୍ଟିକ ଚେତନାର ଉପସଂହାର ଓ ସାମାଜିକ ବାସ୍ତବତାର ଉପକ୍ରମଣିକା ଭାବେ ତାଙ୍କ ଗଳ୍ପପୁରୁଷର ଭିନ୍ନ ଶୃଙ୍ଗାରୋହଣର ସଙ୍କେତ । ସଂକଳନରେ ସନ୍ନିବେଶିତ ଦୁଇଟି ଯାକ ଉପନ୍ୟାସ 'ଆହତ ସ୍ୱପ୍ନ' ଓ 'ଦୁର୍ଘଟଣା' ବହୁ ବହୁ କାରଣରୁ ଦୀର୍ଘ ଗଳ୍ପ ପର୍ଯ୍ୟାୟରେ ପଡ଼ିବେ ।

ତେବେ ସଂକଳିତ କତିପୟ କବିତାମାନଙ୍କ ମଧ୍ୟରେ 'ସୁରକ୍ଷା' ଓ 'ଆଣ୍ଡାମାନ' ଦୁଇଟି ସଫଳ କବିତା । ଅଧିକନ୍ତୁ 'ସୁରକ୍ଷା' 'କବିତାଟି ଗାଳ୍ପିକ କନ୍‌ହେଇଲାଲ ଦାସଙ୍କୁ କବିର ସ୍ୱୀକୃତି ଦେବପାଇଁ ଏକ ଯୁକ୍ତିସଂଗତ ଦାବିପତ୍ର–

"ମୋର ବା ଭୟ କାହାକୁ ?
ମୁଁ ଭୀଷଣ ଭାବେ ସୁରକ୍ଷିତ,

କାରଣ ମୋର ବାଁରେ ତୁମ ନୀଳ ଆକ୍ଷିର ଅଭିଶାପ
ଓ ଡାହାଣରେ ଗୋଲ ଆକ୍ଷିର ଆଶୀର୍ବାଦ ।”

ଆଜୀବନ ନାରୀର ପ୍ରେମରେ ଜୀବନର ସାର୍ଥକତାକୁ ଖୋଜି ହେଉଥିବା ମଣିଷଟି ପୁଣି ଏଡ଼ିକି ଈଶ୍ୱର ବିଶ୍ୱାସୀ (ଗୋଲ ଆକ୍ଷି : ଜଗନ୍ନାଥ) ହୋଇପାରେ !

ଏ ସଂକଳନର ସର୍ବଶେଷ ତଥା ସର୍ବଶ୍ରେଷ୍ଠ ଗଳ୍ପ ଭାଷା ଏବଂ ଡାଏରିର ଭାଷା ଭିତରେ ଆଦୌ ପ୍ରଭେଦ ନାହିଁ । ପୁଣି ଏଥିରେ ସଂଯୋଜିତ କନ୍‌ହେଇଲାଲଙ୍କ ଡାଏରି ମଧ୍ୟ ଅନେକ ଦିଗରୁ ସୃଜନଶୀଳ ସାହିତ୍ୟର ଚରିତ୍ର ହାସଲ କରିଥିବା ପରି ମନେହୁଏ ।

ତାଙ୍କ ଡାଏରି– ଚରିତ୍ର, ନୈତିକତା ଓ ଆଦର୍ଶ ପରି ବଡ଼ ବଡ଼ ଶବ୍ଦ ବ୍ୟବହାର କରୁଥିବା ମଣିଷମାନଙ୍କ ପାଇଁ ଏକ ନିର୍ଭୀକ ସାହିତ୍ୟିକ ଜବାବ୍ ।

ଏବଂ ସବାଶେଷରେ, ଆବଶ୍ୟକ ନଥିଲେ ମଧ୍ୟ ଉଲ୍ଲେଖ କରିବାରେ ଦ୍ୱିଧା ନାହିଁ ଯେ, ଏଭଳି ଏକ ସଂକଳନ ପ୍ରକାଶ କରିବାର ଗୁରୁଦାୟିତ୍ୱକୁ ସ୍ୱେଚ୍ଛାକୃତ ଓ ନିଃସ୍ୱାର୍ଥପର ଭାବରେ ଗ୍ରହଣ କରିଥିବା ହେତୁ ସଂଯୋଜକ ଦ୍ୱୟ ଅନେକ ଅନେକ ସାଧୁବାଦ ଓ ଅଭିନନ୍ଦନର ହକ୍‌ଦାର ।

(ରବିବାର ‘ସମ୍ବାଦ’, ୧୪ ଜୁନ୍ ୧୯୮୭)



ପରିଶିଷ୍ଟ ॥ ୭



# କନ୍ହେଇ ସୃଷ୍ଟି-ମାନସ

# ଅନିନ୍ଦ୍ୟ ଟାପୁ ଓ ଅଂଧାରି ବେଢ଼ା : କନ୍‌ହେଇ ସୃଷ୍ଟି ମାନସ

ରଜନୀକାନ୍ତ ମହାନ୍ତି

॥ ଏକ ॥

**ପ୍ରଣୟ ଶୃଂଗାର ଦୀପ୍ତିମଂତ ଆରୋହ ଓ ଭିଜା ପ୍ରେମର ଭିନ୍ନ ଚଉତରା :**

"ମୋର ସେଇ ବେମାରି ଥରେ ଥରେ ଦେଖାଦିଏ । ଦେବୀର ପାଦରେ ଚୁମା ଦେବାର ବେମାରି । ମୁଁ ସେଦିନ ତାର କପାଳ ଚୁଂବନ କଲି । ଆନିତମ୍ବ କେଶ ଝୁଲାଇ ଦେବୀ ଆଖି ବଂଦ କରି ଛିଡ଼ାହେଇ ରହିଲା । ମୋ ଭିତରେ ତାକୁ ପ୍ରଣାମ କରିବାର ଇଚ୍ଛା ଧୀରେ ଧୀରେ ଜାଗି ଉଠୁଥିଲା । ସେତେବେଳେ ତୁମର ସେଇ ବାସ୍ନା ପାଇଲି । ଖୁବ୍ ଥଣ୍ଡା ସ୍ନିଗ୍ଧ ବାସ୍ନା । ତୁମେ ବୋଧହୁଏ ଆମର ଖୁବ୍ ପାଖଦେଇ ଚାଲିଗଲ । ମୁଁ ତୁମକୁ ମୋର ସ୍ନାୟୁରେ ଅନୁଭବ କଲି ଏବଂ ଦେବୀର ପାଦ ଛୁଇଁ ପ୍ରଣାମ କଲି ।"(୧)

"ଶୃଙ୍ଗାରର ଉଦ୍ଦାମତା ଓ ପ୍ରଣିପାତର ଉତ୍‌କଂଠା ନେଇ ମୁଁ ସେ ପାହାଡ଼ି ଝରଣାକୂଳରେ ତାଙ୍କୁ ଚୁମ୍ବନ କଲି, ପ୍ରଣାମ କଲି, ଆଲିଂଗନ କଲି ।"(୨)

"ମୁଁ ଯଦି ତୋତେ ମୋର ଦୁଇହାତ ଭିତରେ ପାଇଯାଏ, ତା'ହେଲେ କୋଣାର୍କର ମୈଥୁନମୂର୍ତ୍ତି ଓ ତୋ' ମୋ' ଭିତରେ ପାର୍ଥକ୍ୟ କଣ ? ତେଣୁ କ୍ରମେ ତୁ ଦୂରକୁ ଘୁଂଚିଯା, ପ୍ରତ୍ୟାଖ୍ୟାନର ଶବ୍‌ଦ ମୋ ପାଇଁ ଉଚ୍ଚାରଣ କର, ଘୃଣାର ପାଣ୍ଡୁଲିପି ମୋତେ ପଢ଼ି ଶୁଣାଇ ଦେ । ମୁଁ ଯେପରି ସକାଳ ସଂଜରେ ତୋତେ କାମନା କରେ, ମଧ୍ୟାହ୍ନ ମଧ୍ୟରାତ୍ରୀରେ ସ୍ମରଣ କରେ, ତୋ ପାଇଁ ପୃଥିବୀରେ ଯେପରି ଦରିଦ୍ରତମ ଭିକ୍ଷୁକ ସାଜେ । ××××ମୁଁ ଚାହେଁ ତୁ ଦୁର୍ଲଭ ହେଇଯା, ଦୁଷ୍ପ୍ରାପ୍ୟ ହେଇଯା, ରହସ୍ୟମୟୀ ହେଇଯା ।"(୩)

---

୧. ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର, କନ୍‌ହେଇ କଥାଘର

୨. ତାଙ୍କ ଠିକଣା, କନ୍‌ହେଇ କଥାଘର

୩. ଜୀବନ ଯନ୍ତ୍ରଣା ଓ ଯାହା ଯେମିତି ହୁଏ, କନ୍‌ହେଇ କଥାଘର

ପ୍ରେମିକା ସହ ଶୃଂଗାରବଦ୍ଧ ହେଇ ଚୁଂବନ କରିବା ଓ ତାର ପାଦ ଛୁଇଁ ପ୍ରଣାମ କରିବା ଏବଂ ପ୍ରେମିକାକୁ ହାତପାହାନ୍ତାରେ ଧରି ରଖିବା ପରିବର୍ତ୍ତେ ସେ ଦୁର୍ଲ୍ଲଭ, ଦୁଷ୍ପ୍ରାପ୍ୟ ହେଇଯିବା ପାଇଁ ବ୍ୟାକୁଳ ହେଇଉଠିବା; ପ୍ରେମର ଏଭଳି ଅସାଧାରଣ, ବୈଚିତ୍ର୍ୟପୂର୍ଣ୍ଣ ଓ ଗଭୀର ଚେତନାର ସାହିତ୍ୟ କନ୍‌ହେଇଲାଲ ବ୍ୟତୀତ କିଏ ଦେଇଚି ଆଧୁନିକ ଓଡ଼ିଆ ସାହିତ୍ୟକୁ ? ପ୍ରେମିକାକୁ ଦେବୀସ୍ତରକୁ ନିଆଯାଇଛି, କିଂତୁ ହୃଦୟର ଦେବୀ ପର୍ଯ୍ୟନ୍ତ। କନ୍‌ହେଇଲାଲ ପ୍ରେମିକାକୁ ଦେବୀସ୍ତରରେ ଥୋଇଛନ୍ତି ଆତ୍ମାର ମହାଲୋକିତ କୋଠରିରେ। ପ୍ରେମିକାର ସ୍ମୃତିକୁ ଜହକିଆ ରଖିବାପାଇଁ, ପ୍ରେମକୁ, ପ୍ରଣୟଚେତନାକୁ ଉର୍ଦ୍ଧ୍ୱତର, ମହତ୍ତର ଏବଂ ସଂପୂର୍ଣ୍ଣ ସ୍ୱତନ୍ତ୍ର ଭାବରେ ପ୍ରତିଷ୍ଠା କରିବାଲାଗି କିଏ ସେ ପ୍ରେମିକ କହିଛି ପ୍ରେମିକାକୁ - ତୁ ମୋର ହାତପାହାନ୍ତାରେ ନରହି ଦୁର୍ଲ୍ଲଭ ହେଇଯା, ତୋ ପାଇଁ ମୁଁ ଯେମିତି ଦରିଦ୍ରତମ ଭିକ୍ଷୁକ ସାଜେ ବୋଲି ! କନ୍‌ହେଇଲାଲଙ୍କର ଏଭଳି ଉଚ୍ଚାରଣ କେବଳ ଏକ ଚମତ୍କାରିତା ନୁହେଁ ବରଂ ଅତ୍ୟନ୍ତ ଆତ୍ମାନ୍ୱିତ। ପ୍ରାଣମୟ ଗଭୀରତାରେ ଏଭଳି ପ୍ରେମ ଜାଗତିକ ଓ ଜୈବିକ ପ୍ରେମର ଊର୍ଦ୍ଧ୍ୱକୁ ଉଠି ଉପଲବ୍ଧି ସ୍ତରରେ ସତ୍ତାବାନ୍ ହୋଇଉଠିଛି। ଏଭଳି ପ୍ରଣୟଚେତନାର ଉତ୍ତରଣ କନ୍‌ହେଇଲାଲଙ୍କୁ ମହାପ୍ରେମିକ ସ୍ତରରେ ଦେଇଛି ପରିଚିତି ଓ ଓଡ଼ିଆ ସାହିତ୍ୟର ଐତିହାସିକ କୀର୍ତ୍ତି। ପ୍ରେମିକାକୁ ପାଇବାର ବ୍ୟାକୁଳତା ଅପେକ୍ଷା ହରାଇବାର ବ୍ୟାକୁଳତା, ହରେଇ ଝୁରିହେବାର ବ୍ୟାକୁଳତା ଆଉ କାହାଠି ଅଛି କନ୍‌ହେଇଲାଲ ବ୍ୟତୀତ ? ବିଶ୍ୱବିଶ୍ରୁତ ରାଧାକୃଷ୍ଣ ପ୍ରେମରେ ବି ଏଭଳି ଚେତନା ଦୁର୍ଲ୍ଲଭ। ପ୍ରେମର ଏହି ଭିନ୍ନ ଅମୂର୍ତ୍ତଚେତନା ଓଡ଼ିଆ ସାହିତ୍ୟର ଅନ୍ୟତମ ଦିଗ୍‌ବାରେଣୀ, ଉତ୍ତରଣ, ଯାହାର ଚିତ୍ର ଓ ଚେତନା ଭାରତୀୟ ସାହିତ୍ୟରେ ସ୍ୱାତନ୍ତ୍ର୍ୟ ଦାବିରଖେ। ପ୍ରେମର ଏହି ଉତ୍ତାଳ ପଲ୍ଲବନରେ କନ୍‌ହେଇଲାଲ ଅଗ୍ରଦୂତ। କେବଳ ସେତିକି ନୁହେଁ, ପ୍ରେମିକାର ପାଦ ଛୁଇଁ ପ୍ରଣାମ କରିବାର ଛଳନାହୀନ ନୈସର୍ଗିକ ସଂପର୍କ ମଧ୍ୟରେ ଥିବା ପ୍ରେମର ଆରାଧନା ସ୍ତର ଅଗ୍ରଗତି କରି ନୀରାଜନା ସ୍ତରରେ ବାସ୍ତବ ଅଭିକ୍ରିୟାତ୍ମକତାରେ ପହଂଚିଛି "ପ୍ରେମିକାର ପଦ ଚୁଂବନ କରିବାଠାରେ"। ଆହତ ସ୍ୱପ୍ନ ଉପନ୍ୟାସିକାରେ ଲେଖନ୍ତି କନ୍‌ହେଇଲାଲ- "ମୋର କେବଳ ଗୋଟିଏ ଇଚ୍ଛା ଅଛି। ସେତକ ପୂରଣ ହେଇଗଲେ ମୁଁ ସବୁଠାରୁ ସୁଖୀ ହେଇଯିବି। ଥରେ ତୋ ପାଦରେ ଚୁମା ଦେବି । ...ତାପରେ ଦେବୀର ପାଦ ଚୁଂବନ କଲି । ସେ ମୋତେ ପ୍ରଣାମ କଲା । ସବୁଦିନ ପାଇଁ ବିଦାୟ ନେଇ ସେ ରିକ୍‌ସାରେ ବସିଲା ।"(୪) ପ୍ରେମିକାକୁ ଅନ୍ତିମ ବିଦାୟ ଦେଇଥିବା ସମୟରେ ପ୍ରେମିକର ଶେଷଇଚ୍ଛା 'ପ୍ରେମିକାର ପଦ ଚୁଂବନ କରିବା' ବାସ୍ତବରେ ଆତ୍ମିକ ପ୍ରେମର କେତେ ଯେ ଗାଢ଼ସ୍ତର ! ପାଦ ଚୁଂବନ କରିବା କେବଳ ପ୍ରେମ-ପୂଜାର ଚେତନା ନୁହେଁ, କପାଳ, ଗଣ୍ଡଦେଶ ଭଳି ପ୍ରେମିକାର ଯେକୌଣସି ଅବୟବ ଚୁଂବନୀୟ

୪. ଆହତ ସ୍ୱପ୍ନ, କନ୍‌ହେଇ କଥାଘର

ଏଭଳି ଜୈବିକୋତ୍ତର ସ୍ତରକୁ ଗତି କରିବା କେତେ ଯେ ଅନନ୍ୟ ! ମୋ ମତରେ ପ୍ରେମ ଓ ପ୍ରଣୟ ଚେତନା (ରୋମାଣ୍ଟିସିଜ୍‌ମ୍ ନୁହେଁ) ର ଉପଲବ୍ଧି ସ୍ତରକୁ ଭିନ୍ନ ଉଚ୍ଚତାରେ ପ୍ରତିଷ୍ଠା କରିବା ସଂଗେ ସଂଗେ ପ୍ରେମ ଓ ପ୍ରଣୟ ଚେତନାର ପାରଂପରିକ ଧାରାକୁ ଭାଂଗି ବୈପ୍ଳବିକ ଭାବକକ୍ଷ ପ୍ରତିଷ୍ଠା କରିବାରେ କନ୍‌ହେଇଲାଲ ଏକନିଷ୍ଠ ମୌଳିକ ଅବଦାନ ଦେଇଛନ୍ତି । ଓଡ଼ିଆ ସାହିତ୍ୟର ପ୍ରେମଧାରାକୁ ପ୍ରଦାନ କରିଛନ୍ତି ଶକ୍ତି ଓ ଅଂତରଂଗତା । ପ୍ରେମର ଆଧୁନିକ ବିବର୍ତ୍ତନ ଉତ୍ସକୁ ବାସ୍ତବ ଚିତ୍ରିତ କରିବା ସଂଗେ ସଂଗେ ସୂକ୍ଷ୍ମ ଜଟିଳ ଅନୁଭୂତିକୁ ଜାଗରିତ କରିଛନ୍ତି । ପ୍ରେମିକା ଦୁଷ୍ପ୍ରାପ୍ୟ ହେଉ, ଦୁର୍ଲ୍ଲଭ ହେଉ ବୋଲି କାମନା କଲାବେଳେ ସଚ୍ଚା ପ୍ରେମିକର ଛାତିରେ, ଆଖିରେ, ଆତ୍ମାରେ ଯେ କିଭଳି ରୁଦ୍ଧ କୋହ, ଅବଦମିତ ଦୀର୍ଘଶ୍ୱାସ ସେ କଥା ପ୍ରେମିକ ହିଁ ଜାଣେ । ଏ କ୍ଷେତ୍ରରେ ଯେଉଁ ସ୍ୱାଭାବିକ ଭାବପ୍ରବଣତାର ଭାଷା ଓ ଆବେଗ ବହିଯିବା କଥା ତାହା ତାଙ୍କ ଗଳ୍ପରେ ଅନୁପସ୍ଥିତ । ଭାବପ୍ରବଣତା ପ୍ରେମଗଳ୍ପରେ ବାସ୍ତବତାକୁ ତରଳ କରିଦିଏ । ତାହା ହେଇଥିଲେ ପ୍ରଣୟ ଚେତନାର ଏହି ଉର୍ଦ୍ଧ୍ୱଶୀଳ ଭାବକକ୍ଷ, ଶୈଳ୍ପିକତା ହରାଇବା ସଂଗେ ସଂଗେ ମୂର୍ତ୍ତ ହେବାରୁ ବଂଚିତ ଥାଆନ୍ତା । ଓଡ଼ିଆ ସାହିତ୍ୟରେ ଏଣୁ ପ୍ରେମ ଓ ପ୍ରଣୟ ଚେତନାର ଉଚ୍ଚତା କହିଲେ କନ୍‌ହେଇଙ୍କର ପ୍ରେମ ଓ ପ୍ରଣୟ ଚେତନାହିଁ ଗ୍ରହଣ କରାଯିବା ଯଥାର୍ଥ । କେବଳ ସେତିକି ନୁହେଁ, କନ୍‌ହେଇଲାଲଙ୍କ ପ୍ରେମଗପଗୁଡ଼ିକରେ ସେ ଯଥେଷ୍ଟ ଆତ୍ମବିଶ୍ୱାସ ଓ ନିଷ୍ଠାର ସହ ଅଗ୍ରସର ହୁଅନ୍ତି । ଉଭୟ ବ୍ୟକ୍ତିଗତ ତଥା ଗପର ଶିଳ୍ପସତ୍ତା ଓ ଅବବୋଧରେ ସେ ପ୍ରେମିକରୁ ପ୍ରେମସାଧକ ସ୍ତରକୁ ଉତ୍ତୀର୍ଣ୍ଣ ହେଇଛନ୍ତି । ତାଙ୍କର ୨୪।୩।୭୩ ତାରିଖ ଡାଏରିରେ ସେ ଲେଖନ୍ତି : "ମୁଁ ଚାହେଁ ଜଣେ ସର୍ବତୋଭାବେ ମୋର ହୋଇ ମୋତେ ତା ଦେହର ସବୁ ଅଂଗ ଧରାଇଦେବ । ଆଖିରେ, ଓଠରେ ଶବ୍ଦ ନ ଉଠାଇ ବି କହିବ– "ଗ୍ରହଣ କର' ।

ମୁଁ ××× ଜବରଦସ୍ତ ଭଲପାଏ ନାହିଁ । ଦେହ ସଂଭୋଗ ଭଲ ପାଏଁ ଯୌଥଭାବେ ।"

'ପ୍ରେମ ରଂକୁଣା'ରୁ 'ପ୍ରେମ-ପୂଜା'ର ଆରୋହଣ ତାଙ୍କ ପ୍ରଣୟ ଚେତନାକୁ ଏକ ଆଧ୍ୟାତ୍ମିକ ବିପ୍ଳବ ସ୍ତରରେ ଛୁଆଁଇ ଦେଇଛି, ଯେଉଁଠି କ୍ଷଣିକ ଯୌନ ଉତ୍ତେଜନାର ଅକାରଣ ପ୍ରଲଂବୀକରଣ ନାହିଁ । ପାରଂପରିକ ଭାବେ କନ୍‌ହେଇ ଚେତନା ପ୍ରେମଭିକ୍ଷା କରିନାହିଁ, କରିଛି ପ୍ରେମ-ତପସ୍ୟା । ଗପଗୁଡ଼ିକରେ ତରଳତା ଅପେକ୍ଷା ବରଂ ରହିଛି ଦାର୍ଶନିକତା ଓ ରହସ୍ୟବାଦୀ ଅଭିଯାନ । ଏହି ପ୍ରେମ ତପସ୍ୟାରେ କନ୍‌ହେଇଲାଲ୍‌ଙ୍କ ପ୍ରେମିକାମାନେ କିଂତୁ ସାଧାରଣ ନାରୀ, ଯେଉଁମାନେ ଅତିବେଶିରେ sex-sublimation ସ୍ତରକୁ ଯାଇଛନ୍ତି ସିନା କିଂତୁ ନାରୀଶ୍ୱର ସ୍ତରକୁ ଆସିପାରିନାହାନ୍ତି, ତେଣୁ ପ୍ରତ୍ୟାଖ୍ୟାନ, ପ୍ରତାରଣା, ଛଳନା ପର୍ଯ୍ୟାୟକୁ ଆଦରିଯାଇଛନ୍ତି । ପ୍ରକାରନ୍ତରେ ଏହି ପ୍ରେମିକାମାନେ

କନ୍ହେଇ ପ୍ରେମର ବଳୟରେ ବଳିପଡ଼ିଯାଇଛନ୍ତି ଏବଂ କନ୍ହେଇ ପ୍ରେମମାନସ ଏକ ଯୁଗପତ୍ ବୈଚିତ୍ର୍ୟ ଓ ଆହ୍ୱାନ ହେଇ ରହିଯାଇଛି ଯାଂତ୍ରିକ ଜୀବନ ଭୋଗୁଥିବା ମଣିଷ ସାମ୍ନାରେ। ତେଣୁ ବସନ୍ତ ଶତପଥୀ ଲେଖନ୍ତି– "ତାର ପ୍ରତି ପ୍ରେମ ଗପ ଗୋଟେ ଗୋଟେ Committment"।[୫] କନ୍ହେଇ ଗପ ମାନସରେ ପ୍ରେମର ଏ ବିନ୍ୟାସର ବାସ୍ତବତା ଉଭୟ ଓଡ଼ିଆ ସାହିତ୍ୟ ଓ ପ୍ରେମଧାରାକୁ ଦେଇଛି ଜୀବନ୍ୟାସ । ଅଠେଇଶି ବର୍ଷ ବୟସ ସୀମା ମଧ୍ୟରେ ଜୀବନ ଜୀଇଁଥିବା ଏହି ତରୁଣ ଗଳ୍ପକାରଙ୍କ ବ୍ୟକ୍ତି ଜୀବନର ପ୍ରେମ ଓ ପ୍ରଣୟର ଭାବୁକତା ଓ ବାସ୍ତବତା ମଧ୍ୟ ଠିକ୍ ତାଙ୍କ ଗଳ୍ପର ପ୍ରଣୟ ଚେତନା ଭଳି ନିଦା, ସ୍ୱଚ୍ଛ ଓ ଅନମନୀୟ । ପ୍ରେମର ଏହି ହୃଦୟଶୀଳ ବାଂଛା ତାଙ୍କର ବ୍ୟକ୍ତିଜୀବନକୁ ଘାରିଥିଲା । ତାଙ୍କର ବ୍ୟକ୍ତିଜୀବନ ପ୍ରେମର ଏ ଦୁରଂତ, ଅକଳ୍ପନୀୟ ସତ୍ତାର ପରୀକ୍ଷାବେଦୀରେ ବଳି ପଡ଼ିଗଲା । ତାଙ୍କର ସାହିତ୍ୟ ତାଙ୍କ ଜୀବନରୁ ପଳାୟନ ନୁହେଁ, ପରଂତୁ ତାଙ୍କର ସାହିତ୍ୟଚେତନା ଓ ବ୍ୟକ୍ତିଗତ ଜୀବନଯାତ୍ରା ଏକମୁଖୀ ଏବଂ ଜୀବନଯାତ୍ରାର ପ୍ରତିଟି ପାଦ ତାଙ୍କର ସାହିତ୍ୟିକ ଚେତନା ଦ୍ୱାରା ବଳୟିତ । ବ୍ୟକ୍ତିଗତ ଜୀବନରେ କନ୍ହେଇଲାଲ ସାମାଜିକ ଓ ଲୌକିକତାର ତଥାକଥିତ ଛଳନା ବିମଣ୍ଡିତ ଭଦ୍ରଲୋକର ଆଟୋପର ବାହାରେ ଏକ ହୃଦୟକାତର ଓ ବଂଦନୀୟ ପ୍ରେମ ଅନ୍ୱେଷୀ ହିଁ ଥିଲେ । 'କନ୍ହେଇ କଥାଘର'ରେ ସଂଯୋଜିତ 'କନ୍ହେଇ ଦିନଲିପି'ରୁ ତାଙ୍କର ବ୍ୟକ୍ତିସତ୍ତା, ସୃଷ୍ଟିସତ୍ତାର ଯେଉଁ ବୈଭବ ମିଳେ ସେଥିରୁ ଏହା ସ୍ପଷ୍ଟ । "ବ୍ୟକ୍ତିଗତ ଜୀବନବୃତ୍ତରେ ପରିକ୍ରମାରତ ଥିଲେ ହେଁ ସେଇ ପରିକ୍ରମା (ଦିନଲିପି) ଓ ବ୍ୟକ୍ତିମାନସିକତାର ବିଭିନ୍ନ ଆଲୋଡ଼ନ ମଧ୍ୟରୁ ସୃଷ୍ଟି ହୋଇଛି ଅଦ୍ଭୁତ ଏ ଗଳ୍ପଭୂମି ।"[୬] ୧ ଜାନୁଆରୀ ୧୯୭୩ ଠାରୁ ୧୫ ଏପ୍ରିଲ ୧୯୭୫ ଯାଏ କନ୍ହେଇ କଥାଘରରେ ସଂଯୋଜିତ ଦିନଲିପିଗୁଡ଼ିକରେ ପ୍ରେମ, ପ୍ରଣୟ, ପ୍ରତାରଣା ଓ ପ୍ରେମିକାମାନଙ୍କର କଥାହିଁ ଉଲ୍ଲେଖ କରନ୍ତି କନ୍ହେଇଲାଲ । ଏବଂ ସେଇ "ନାରୀ ମାନଙ୍କୁ ଆମେ କନ୍ହେଇଲାଲ ଦାସଙ୍କ ଗଳ୍ପ ଉପନ୍ୟାସରେ ବହୁପୂର୍ବରୁ ଦେଖିସାରିଛୁ ।"[୭] ତାଙ୍କ ଗଳ୍ପ ଉପନ୍ୟାସରେ ଥିବା ଅସୀମା, ଅନୁ, ଦେବୀ, ରାଣୀ ଚରିତ୍ରଗୁଡ଼ିକ ତାଙ୍କ ବ୍ୟକ୍ତିଜୀବନର ଦିନଲିପିରେ ମଧ୍ୟ ଉପସ୍ଥିତ । ପ୍ରେମ ଓ ପ୍ରଣୟ ଚେତନାର ମୌଳିକ ବଂଦନୀୟ ବୈଭବ କେତେ ନିଷ୍ଠା ଓ ଅନ୍ତରଂଗତାର ସହ ତାଙ୍କ ଜୀବନ-ଇଲାକାରେ ସମର୍ପିତ ହେଇନଥିଲା ସତେ । କିଂତୁ ହାୟ, "ଆଜି ଦ୍ୱିପ୍ରହରରେ ଯେତେବେଳେ ରାଣୀ ଘରେ ଗାଧୋଇ ଅନୁଘରକୁ ଖାଇବାକୁ ଯାଉଥିଲି, ନିମଛକରେ ଅସୀମାକୁ ଦେଖିଲି । ବୁବୁ ସଙ୍ଗେ ଯାଉଥିଲା । ତାକୁ ଦେଖିଲାମାତ୍ରେ ମୋ ଭିତରଟା

୫. ଫୁଲ, କନ୍ହେଇ ସ୍ମୃତି ସଂସଦ ସ୍ମରଣିକା, କମର୍ଦ୍ଦା

୬. କନ୍ହେଇ ଦିନଲିପି, କନ୍ହେଇ କଥାଘର

୭. ତତ୍ରୈବ

କେମିତି ଗୋଟେ ହୋଇଗଲା । ମୁଁ ଅନୁଘର ସାମ୍ନାରେ ସାଇକେଲ ରଖି ଆସି ଛକରେ ଛିଡ଼ାହେଇ ଦେଖିଲି । ସେ ଆଉ ମୋତେ ଚାହିଁଲା ନାହିଁ । କେବଳ ପଛକୁ ଛେପ ମେଂଚାଏ ପକାଇଲା । ମୁଁ ବି ଏଥର ଛେପ ପକାଇବା ବ୍ୟକ୍ତିର ପର୍ଯ୍ୟାୟକୁ ଆସିଗଲି । ସାବାସ୍ । ଆଜି ଅସୀମା, ଯିଏ ଦିନେ ଅନେକ କିଛି ମୋ ପାଇଁ କରୁଥିଲା, ସେ ମୋ ପାଇଁ ଛେପ ପକାଇ ପାରିଲା। କିସ ପୁଣି ଦେଖା ନଯାଏ...? ଅସୀମା କଣ ସତରେ ମୋତେ ଘୃଣା କରେ ନା ଘୃଣା କରେ ବୋଲି ଦେଖେଇ ହୁଏ ?[୮]

॥ ଦୁଇ ॥

**ସେଇ ନାରୀ :**

**ଚମତ୍କୃତ ବାସ୍ତବତାର ଭିନ୍ନଭିଟା :**

ନିଚୋଳ ଓ ଆତ୍ମାନ୍ୱିତ ପ୍ରେମ ବହୁଧା ବିଭକ୍ତ ସମାଜରେ ପ୍ରତିନିୟତ ହିଁ ବିଦ୍ଧ ହୁଏ । ଅର୍ଥନୈତିକ, ସାମାଜିକ, ଧର୍ମଗତ, ଜାତିଗତ ଓ ଭାଷାଗତ ବିଭକ୍ତି ନିଚୋଳ ପ୍ରେମକୁ ନିଜ ନିଜ ଦୃଷ୍ଟିରେ ଦେଖେ ଏବଂ ନିଜ ଆଡ଼କୁ ଘୋଷାରିବାରେ ଲାଗେ । ପରିଣତିରେ ପ୍ରେମ ବିଷ ବଳୟ ମଧରେ ଆହ୍ଲାଦିତ ହୁଏ, ମୁକ୍ତି ବ୍ୟାକୁଳ ହୁଏ ସିନା କିଂତୁ ପ୍ରେମିକ ପ୍ରେମିକାଙ୍କର ବ୍ୟକ୍ତିସତ୍ତା ଏହି ବିଭକ୍ତ ସମାଜର ଅସ୍ତିତ୍ୱରେ ପୀଡ଼ିତ ହେଇପଡ଼େ । ସେତେବେଳେ ପ୍ରେମସତ୍ତା ଉଭୟ ପ୍ରେମିକ ଓ ପ୍ରେମିକାଙ୍କୁ ପ୍ରଶ୍ନ କରିବାରେ ଲାଗେ କିଂତୁ ତାର କୌଣସି ଉତ୍ତର ପାଏ ନାହିଁ । ସେଇଠୁ ହିଁ ଜନ୍ମନିଏ ଘୃଣା, ଈର୍ଷା, ଛଳନା ଓ ପ୍ରତାରଣାର ସତ୍ତା ସବୁ । କନ୍‌ହେଇଲାଲ ପ୍ରତାରିତ ହେଇଛନ୍ତି, ଆଘାତ ଓ ଯନ୍ତ୍ରଣାରେ ଜଡ଼ସଡ଼ ହେଇଛନ୍ତି କିଂତୁ କେବେହେଲେ ନାରୀକୁ ଛଳନାମୟୀ, କପଟୀ, ପିଶାଚୀ, ଅସୁରୀ ସ୍ତରକୁ ନେଇନାହାନ୍ତି । କୌଣସି ଗଳ୍ପରେ ନାରୀକୁ ସେ ଅସମ୍ମାନ କରି ନାହାନ୍ତି । ତାଙ୍କ ଗପ ମାନସରେ ନାରୀର ସ୍ଥାନ ସବୁବେଳେ ମାନବୀ ଓ ସ୍ନେହବୋଳା ଦେବୀ ସ୍ତରରେ। ଏହା ତାଙ୍କ ବ୍ୟକ୍ତି ଓ ସୃଜନ ମାନସର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ନାରୀ ପ୍ରଗତି, ନାରୀ ଜାଗରଣ, ନାରୀ ଶକ୍ତି, ନାରୀ ସମ୍ମାନ ପ୍ରଭୃତି ପୁରୁଷ ପୋଷିତ ସମାଜର ଛଳନାତ୍ମକ ସ୍ଲୋଗାନର ଉର୍ଦ୍ଧ୍ୱରେ କନ୍‌ହେଇଙ୍କର ଏହି ମହନୀୟ ନାରୀ ସତ୍ତା କେତେ ପ୍ରଗତିଶୀଳ ଅଥଚ କେତେ ବାସ୍ତବ। ତାଙ୍କ ପ୍ରତି ଛଳନା ଓ ପ୍ରତାରଣା କରିଥିବା ନାରୀମାନଙ୍କୁ ହୁଏତ ନିଚୋଳ ପ୍ରେମର ସର୍ତ୍ତ, ଦ୍ୱାହି ଓ ସ୍ୱାଭାବିକତାରେ ସେମାନଙ୍କୁ ସେ କ୍ଷମା କରିଦେଇଛନ୍ତି କାରଣ ସେ ଜାଣନ୍ତି ନିଚୋଳ ପ୍ରେମର ଅମୂର୍ତ୍ତ ଚେତନା ଏଥିପାଇଁ ଅପରାଧୀ ନୁହେଁ । ସମାଜର ବହୁବିଧ ବିଭକ୍ତିର ଶିକାର ପ୍ରେମିକ ଓ ପ୍ରେମିକାଙ୍କର ବ୍ୟକ୍ତିସତ୍ତା ହିଁ ବଳି ପଡ଼ିଥାଏ । ପ୍ରେମସତ୍ତା ଏହି ବିଭକ୍ତ ପରିପ୍ରେକ୍ଷୀରେ ନିଜେହିଁ ଛଳନା, ପ୍ରତାରଣା ମାଧ୍ୟମରେ ମୂର୍ତ୍ତ-ଅସ୍ତିତ୍ୱ ଜାହିର ରଖିଥାଏ। କନ୍‌ହେଇଲାଲଙ୍କ

୮ କନ୍‌ହେଇ ଦିନଲିପି, ୧୩.୦୧.୭୩ - କନ୍‌ହେଇ କଥାଘର

ଚେତନାସ୍ତରରେ ନାରୀ ପୁରୁଷର ଦାସୀ ନୁହେଁ, ଅଧୀନା ନୁହେଁ। ପୁରୁଷର ଅଧିକାରଭୁକ୍ତ ବସ୍ତୁ ନୁହେଁ । ନାରୀ ହିଁ ନାରୀ । ନାରୀସତ୍ତା ସ୍ୱତନ୍ତ, ସ୍ୱାଧୀନ। ପ୍ରେମରେ ସେ କାମିନୀ, ମୋହିନୀ କିଂତୁ ପ୍ରଳୟକାରୀ, ରାକ୍ଷସୀ ରୂପରେ ସେ ପ୍ରତିଭାତ ହୋଇନାହିଁ। ତା' ହେଇଥିଲେ କନ୍‌ହେଇ ଗପ-ମାନସ ନାରୀକୁ ପ୍ରଣାମ ଜଣାଇନଥାନ୍ତା, ତାର ପଦ ଚୁଂବନ ପାଇଁ ବ୍ୟାକୁଳତା ପ୍ରକାଶ କରିନଥାନ୍ତା। ଏଭଳି ଦୃଷ୍ଟିଭଂଗୀ କନ୍‌ହେଇଙ୍କ ଆଦର୍ଶର ପ୍ରଚାର ବା ଇଚ୍ଛାକୃତ ଶୈଳୀକରଣ ନୁହେଁ । କନ୍‌ହେଇ ଜୀବନସତ୍ତା ଓ ଭାବ ମାନସ ସମସାମୟିକ ସମାଜ ବ୍ୟବସ୍ଥା ଓ ରାଷ୍ଟ୍ରୀୟ ସମାଜ ଆଚରଣ ବିଧିଠାରୁ ଭିନ୍ନ ଓ ଉର୍ଦ୍ଧ୍ୱତର । ଗଳ୍ପରେ ତାର ପ୍ରତିଫଳନ ତେଣୁ ଭିନ୍ନ ଚଉତରା ଭିନ୍ନ ବୈଚିତ୍ର୍ୟ ପ୍ରଦାନ କରେ । 'ନୂତନ ଉତ୍ସବ'ରେ ସେ ଯଥାର୍ଥରେ ହିଁ ଲେଖନ୍ତି - "ମୁଁ ମୋର ଜୀବନ ଦର୍ଶନକୁ ଠିକ୍ ଠିକ୍ ମାନି ଚାଲିଥିଲି ।"[୯] ତେଣୁ ତାଙ୍କର ପ୍ରେମବୋଧ ଓ ପ୍ରେମର ବାସ୍ତବ ଆଚରଣ ଅଗତାନୁଗତିକ ଅଥଚ ଫୁଲର ପାଖୁଡ଼ାରେ ଆଂଗୁଠି ଛୁଇଁଗଲା ଭଳି, ଆତ୍ମାକୁ ଆଉଁଶି ଦେଇଗଲା ଭଳି ଅନୁଭୂତି, ତୀବ୍ର ଓ ଚମତ୍‌କୃତ । ପୁରୁଷାଶ୍ରିତ ସମାଜର ନାରୀ ସତ୍ତାର ଚେତନାବଳୟଠୁଁ ମୁକ୍ତସ୍ୱାଧୀନ ନାରୀ ସତ୍ତାର ଚେତନା ବଳୟ ସଂପର୍କ-ଅନ୍ୱିତ କନ୍‌ହେଇ ମାନସର ନାରୀ, ପ୍ରଣୟ ଓ କାମ ସ୍ୱାତନ୍ତ୍ର୍ୟ ତେଣୁ ଦାବି କରେ । "ଯେତେ ପୁରୁଣା ହେଲେ ବି ପ୍ରେମ ଗଳ୍ପ ସମସ୍ତେ ପଢ଼ିବାକୁ ଭଲ ପାଆନ୍ତି । ତେଣୁ ମୁଁ ଲେଖେଁ । ଆଉ ମୋ ଜୀବନରେ ପ୍ରେମର ଅନୁଭୂତି ତ ବଡ଼ ବିଚିତ୍ର । ତେଣୁ ପ୍ରେମ ଗଳ୍ପ ନ ଲେଖିବି କାହିଁକି ? "ବଲଂଗ ଦାମୋଦର ନଦୀର କେତୋଟି ମୁହୂର୍ତ୍ତ" ଗପରେ ଲେଖନ୍ତି ସେ ।[୧୦] "ଅଫେରା ଚାରୋଟି ପାଦର ମୁକ୍ତ ରଂଗିନ ଆକାଶ ପାଇଁ ବେଳାଭୂମିର ବେଲୁନବାଲା ଓ ଚଣାବିକାଳୀ ଝିଅ" ଗଳ୍ପରେ ପ୍ରାଚୁର୍ଯ୍ୟଭରା ପ୍ରେମ ଓ ଅଂତରଂଗତା ପାଇଁ ବ୍ୟାକୁଳତା, "ବଳଂଗ ଦାମୋଦର ନଦୀର କେତୋଟି ମୁହୂର୍ତ୍ତ" ଗଳ୍ପରେ ପ୍ରେମିକା ଅସୀମାର ଅସ୍ତିତ୍ୱକୁ ଉପଲବ୍ଧି କରିବାପାଇଁ ବହୁ ତରୁଣୀଙ୍କ ସହ ସଂପର୍କ, ଅନ୍ତିମରେ ସେଇ ଅସୀମାର ଝିଅ 'ତିଳା' ଠାରେ ଅସୀମାର ଅସ୍ତିତ୍ୱକୁ ଉପଲବ୍ଧିକରି ତାକୁ ଚୁମ୍ବନ କରିବା– ବାସ୍ତବିକ ଶତାବ୍ଦୀର ଶେଷ ବୟସ ଗୁଡ଼ିକରେ ମଣିଷର ମନସ୍ତତ୍ତ୍ୱ, ବହୁ ଯନ୍ତଣାବିଦ୍ଧ ଜଟିଳତାର ଅନ୍ତର୍ବୋଧ ମଧ୍ୟରେ ନିହିତ ଅନ୍ତରଂଗ ପ୍ରେମକୁ ବିଂବିତ କରାଏ । ପ୍ରେମିକାର ଅସ୍ତିତ୍ୱକୁ ଖୋଜି ହେଉଥିବା, ଝୁରିହେଉଥିବା ପ୍ରେମିକ ପ୍ରେମିକାର କନ୍ୟାଠାରେ ପାଇଯିବା ହୁଏତ ତଥାକଥିତ ପରଂପରାବାଦୀମାନଙ୍କ ନାସିକା କୁଂଚନ କରିପାରେ, କିଂତୁ ଅନୁଭୂତିର ସ୍ୱଚ୍ଛତା, ଛଳନାହୀନ ସତ୍ୟଶୀଳ ସାହିତ୍ୟର ପୃଷ୍ଠଭୂମିରେ ଏ ଗଳ୍ପର ମୂଲ୍ୟ ଅମୂଲ୍ୟ ।

୯. ନୂତନ ଉତ୍ସବ, କନ୍‌ହେଇ କଥାଘର
୧୦. ବଳଙ୍ଗ ଦାମୋଦର ନଦୀର କେତୋଟି ମୁହୂର୍ତ୍ତ, କନ୍‌ହେଇ କଥାଘର

କନ୍‌ହେଇଲାଲଙ୍କ ଗଳ୍ପଗୁଡ଼ିକରେ ପ୍ରେମର କାହାଣୀ ନାହିଁ, କିଂତୁ ଅଦ୍‌ଭୁତ ଅନୁଭୂତି ଯାହା ସଂଚରିଯାଏ ହୃଦୟକୁ, ଚେତନାକୁ । ଗଳ୍ପର ଗୋଟେ ଗୋଟେ ଚିତ୍ର ଅଭିଭୂତ କରି ରଖିଦିଏ ସଚେତନ ପାଠକ ମାନସକୁ ଘଂଟା ଘଂଟା ଧରି । "ଉଜାଣି" ଗଳ୍ପରେ ସେ ଲେଖନ୍ତି - 'ମୁଁ ଚାହେଁ, ଦେବୀ ଦିନେ ଆସି ହଠାତ୍ କହିବ - ତୁମେ ଯେଉଁଥିପାଇଁ ମୋ ପଛରେ ଏତେଦିନ ଲାଗି ଆସିଛ, ଆଜି ତାହା ଆଦାୟ କରିନେଇପାର । କିଂତୁ ମୁଁ କହିବି - ନା, ତୁ ଚେୟାରରେ ବସିବୁ । ମୁଁ ତୋ ପାଦତଳେ ବସିବି । ତୁ ମୁଣ୍ଡରେ ହାତ ବୁଲାଇଦେବୁ ଏବଂ ମୋ ଆଖିର ଲୁହ, ଆଉ ମୁହଁରେ ଝାଳ ଦେଖି ତୋର ପଣତରେ ମୁହଁ, ଆଖି ପୋଛିଦେବୁ ଏବଂ କହିବୁ– ଭୋକ ଲାଗିବଣି, ଚାଲ ଖାଇବ । ମୁଁ କିନ୍ତୁ କିଛି ବିଶେଷ କାରଣ ନ ଥାଇ ବି ଧକେଇ ହେଇ କାଂଦିବା ଆରଂଭ କରିବି ।"[୧୧] ଏଠାରେ ଚିରାଚରିତ ପ୍ରେମ ଗଳ୍ପର ଆସ୍ୱାଦ ଠାରୁ ପାଠକ ଧକ୍‌କା ଖାଏ ସିନା କିଂତୁ ଏକ ଚମତ୍‌କାର ମାନବିକ ସଂବେଦନା, କାରୁଣ୍ୟ ଓ ହୃଦୟଦ୍ୟୋତକ ଅନୁଭୂତିର ଶିକାର ହେଇପଡ଼େ ପାଠକ । ପାରଂପରିକ ପ୍ରେମ, ପ୍ରସ୍ତାବନା ଓ ସମର୍ପଣର ଅବର୍ତ୍ତମାନରେ ପାଠକୀୟ ଅନୁଭୂତି ଢ଼ଡ଼ସଡ଼ ହେଇପଡ଼େ । ନାରୀ କନ୍‌ହେଇ ମାନସରେ କାମନା ଓ ବାସନାର ଦ୍ରବ୍ୟ ନ ହେଇ ହୃଦୟୋଲ୍ଲାସ ଓ କାରୁଣ୍ୟର ସମର୍ପିତ ଦେବୀଭାବରେ ମହନୀୟ ହେଇଉଠିଛି । ଦେଇଛି ଭିନ୍ନସ୍ୱାଦ । ଏଭଳି ଅନୁଭୂତିର ଚିତ୍ର କନ୍‌ହେଇଲାଲଙ୍କୁ କଥାକାର, କାହାଣୀକାରଠୁଁ ଭିନ୍ନ କରିନେଇ କବିତାର ନିକଟବର୍ତ୍ତୀ କରାଇଦିଏ । କିଂତୁ ଗଳ୍ପଚେତନା, ଗଳ୍ପର ପ୍ରୟୋଗଧାରାଠୁଁ ବିଚ୍ଛିନ୍ନ କରାଏନା ।

ନାରୀର ଦେହ ପରିଚୟ ପାଇଁ ସେ ବ୍ୟାକୁଳ କିଂତୁ ନାରୀ ଯେତେବେଳେ ସେଥିପାଇଁ ଧରା ଦେଇଛି, ସେଇଠି କନ୍‌ହେଇର ସ୍ୱପ୍ନ ଫୁରନ୍ତ ବ୍ୟାକୁଳତାଟି ଆଘାତ ପାଇ ଖିନ୍‌ଭିନ୍ ହେଇଛି ଏବଂ ସ୍ୱପକାଂଗାଳ ସରାଟି ଫେରିଯାଉଛି ସେହି ଭୂମିକୁ ଯେଉଁଠି ଦେହ-ଶୋଷ ତାକୁ ଘାରି ରଖିଛି । ଏକ ବହମାନ ଶୋଷ ଓ ସ୍ୱପ୍ନର ତୀର୍ଥଙ୍କର କନ୍‌ହେଇ ଚେତନା । ଦ୍ୱନ୍ଦ୍ୱ ଜର୍ଜରିତ ବାସ୍ତବତା ଓ ପୁଲକର ଏକାନ୍ତ ବିଶ୍ୱସ୍ତ କଥା ଶିଳ୍ପ ତାଙ୍କର ଗଳ୍ପ ।

ପ୍ରେମର ନିକଟବର୍ତ୍ତୀ ହେବାପାଇଁ ମାନବୀୟ ଛଳନାକୁ ବିନା ବିରୋଧରେ ସ୍ୱୀକୃତି ଦିଅନ୍ତି କନ୍‌ହେଇଲାଲ । ତାହା କେବଳ ପ୍ରେମର ଅସ୍ତିତ୍ୱ ନୁହେଁ, ମାନବୀୟ ଅସ୍ତିତ୍ୱ ମଧ୍ୟ । 'ଖେଳାଳୀ' ଗପରେ ସେଇ ବାସ୍ତବତାକୁ ଉଜାଗର କରି ଗଳ୍ପ ନାୟକ ପ୍ରୀତି (ଯେଉଁ ଝିଅର ନିକଟବର୍ତ୍ତୀ ହେବାକୁ ଗଳ୍ପ ନାୟକ ଇଚ୍ଛା କରିଛି)ର ଭାଇର ହାତ ଭାଂଗିଯିବା ଘଟଣାରେ ଅତ୍ୟଧିକ ଛଳନାତ୍ମକ ସମବେଦନା ପ୍ରକାଶ କରିଛି, ଯେମିତି ଡାକ୍ତରଖାନାରେ ପିଲାଟିର ହାତଭଂଗା ବିଷୟରେ ଅତ୍ୟଧିକ ଚଂଚଳ ହେଇ ଡାକ୍ତରଙ୍କ ସହ ଇଂରାଜୀରେ କଥାବାର୍ତ୍ତା ହେବା, ବ୍ୟାଣ୍ଡେଜ୍ ବଂଧାରେ ନର୍ସମାନଙ୍କୁ ସାହାଯ୍ୟ କରିବା, ଇଂଜେକ୍‌ସନ୍ ଫୋଡ଼ିଲା ବେଳେ ଏପରିଭାବେ ମୁଖ କୁଂଚିତ କରିବା ଯେପରିକି ଗଳ୍ପ

୧୧. ଉଜାଣି, କନ୍‌ହେଇ କଥାଘର

ନାୟକଙ୍କୁ ହିଁ ଇଂଗ୍ରେଜ୍‌ସନ୍ ଫୋଡ଼ାଯାଉଛି । ବିରହ ଭାବକୁ ପ୍ରଦର୍ଶନ କରିବା ପାଇଁ ଦାଢ଼ି ବଢ଼େଇବା ବା ପ୍ରଣୟପାଶରେ ଆବଦ୍ଧ ଟ୍ୟୁସନ୍ ମାଷ୍ଟର ଓ ଛାତ୍ରୀଙ୍କ ପ୍ରଣୟଲୀଳାକୁ ସତର୍କତାର ସହ ଗଳ୍ପ ନାୟକ ଲକ୍ଷ୍ୟ କରିବା କଥା ଟ୍ୟୁସନ ମାଷ୍ଟର ଅଜୟ ଓ ଛାତ୍ରୀ ପ୍ରୀତି ଜାଣିପାରି ଛଳନାରେ ସତର୍କଭାବରେ ରାଖି ବାଂଧିବା ପ୍ରଭୃତି ଛଳନାବୋଧର ଯେଉଁ ମାନବିକ ସଂବେଦନା ରହିଛି ତାହା ଜୀବନ ବେଦୀରେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଓ ବାସ୍ତବ । ପ୍ରେମ ଓ ପ୍ରଣୟ ବ୍ୟାପାରର ନିଚ୍ଛକ, ବାସ୍ତବ ଉପଲବ୍ଧିରୁ ପଳାୟନ ନ କରି ବରଂ ଅକୁଣ୍ଠଭାବରେ ଛଳନା, ପ୍ରତାରଣାର ମାନବୀୟ ଦିଗକୁ ଜାଗରିତ କରି ତାର ଶୈଳ୍ପିକ ମୁଦ୍ରା ପ୍ରଦାନକରନ୍ତି କନ୍‌ହେଇ ।

ପ୍ରଣୟ ଓ ସମାଜ ମନସ୍ତତ୍ତ୍ୱର ସୂକ୍ଷ୍ମାତିସୂକ୍ଷ୍ମ ଅବଗାହ ତୀବ୍ର ଅନୁଭୂତି ବିନା କଥାଶିଳ୍ପ ଶୌର୍ଯ୍ୟ ପ୍ରାପ୍ତହୁଏ ନାହିଁ । କିଂତୁ ଯୌନତାର ସ୍ନାୟଭିତ୍ତିକ କାମନା ଓ ପରଭରସନର ଊର୍ଦ୍ଧ୍ୱରେ ତାଙ୍କର ଶିଳ୍ପୀମାନସ ଅଗ୍ରସର ହୋଇଛି । ୨୮ ମାର୍ଚ୍ଚ ୧୯୭୫ରେ ସେ ଯଥାର୍ଥରେ ତାଙ୍କ ଡାଏରିରେ ଲେଖନ୍ତି– "ସେକ୍‌ସର ତୃଷ୍ଣା ଯେତେ ମାରାତ୍ମକ, ବିତୃଷ୍ଣା ବି ସେତେ ବିରକ୍ତିକର । ଭଲ ଲାଗୁନାହିଁ ଆଉ ସେ ସବୁ ।"[୧୨] ପରଂତୁ ପ୍ରେମିକାର ପଦ ଚୁଂବନ କରିବାର ଆଗ୍ରହ ଏକ ପୁରୁଷ ପ୍ରଧାନ ସମାଜର ଅହଂକାର ଓ ଆଧିପତ୍ୟକୁ ଧ୍ୱଂସ କରିଦେଇଛି । ବୈପ୍ଳବିକ ଚେତନାର ଅଂତରଂଗ ସ୍ୱରଲିପିକୁ ଦେଇଛି ଶକ୍ତି, ଆବେଗ ଓ ଇଣ୍ଟେଲେକ୍ଟ ।

## ।। ତିନି ।।

**ପୋଷାକ ନ ପିଂଧି ଗପ ଲେଖିବାର କ୍ରାନ୍ତି :**

ସ୍ୱପ୍ନକୁ ବାସ୍ତବତାର ବଳୟ ମଧ୍ୟରେ ଉଜାଗର କରି ଜୀଉଁଥିବା କଥାଶିଳ୍ପୀର ବ୍ୟକ୍ତି-ଜୀବନ ଓ ଲେଖକ-ଜୀବନ ମଧ୍ୟରେ କୌଣସି ଫରକ୍ ବା ଅସଂଲଗ୍ନତାକୁ ରାସ୍ତା ଛାଡ଼ିନଥାଏ । ଜୀବନରୁ ଶିଳ୍ପୀସତ୍ତାକୁ ପଳାୟନ ବା ଶିଳ୍ପୀସତ୍ତାରୁ ଜୀବନକୁ ପଳାୟନ ହେବା ଅସଂଭବ ହୋଇପଡ଼ିଥାଏ । ତେଣୁ ସାହିତ୍ୟବେଦୀରେ ବ୍ୟକ୍ତି ବଳିପଡ଼ିଥାଏ ଠିକ୍ ଯେମିତି କନ୍‌ହେଇଲାଲ ତାଙ୍କର ଶିଳ୍ପୀଚେତନାରେ ନିଜକୁ ବଳି ଦେଇଛନ୍ତି । ତେଣୁ ସେ ନିଜେ ହିଁ ତାଙ୍କ ସୃଷ୍ଟ ଗଳ୍ପ ଓ ଉପନ୍ୟାସର ନାୟକ । ପ୍ରତିଟି ଗଳ୍ପ ଓ ଉପନ୍ୟାସରେ ଗଳ୍ପନାୟକ ମୁଁ କନ୍‌ହେଇ ମାନସର ପ୍ରତିନିଧି, ଯେଉଁ ମୁଁ ଭିତରେ ନିହିତ କନ୍‌ହେଇ ବ୍ୟକ୍ତି ଚେତନା ଯାହା ସାର୍ବଜନୀନ ଅବବୋଧକୁ ପ୍ରତିବିଂବିତ କରୁଛି ସୃଜନଶୀଳ ପ୍ରକ୍ରିୟାରେ । ଏଠାରେ ମୁଁ ହୁଏ ପୃଥିବୀ ଓ ପୃଥିବୀର ପ୍ରତିବିଂବ ହୁଏ ମୁଁ । ଅନ୍ୟ ଜୀବନ, ଅପରଜୀବନକୁ ଆତ୍ମୀକରଣକରି ଶିଳ୍ପ-ଅବବୋଧରେ ରୂପଶ୍ରୀ, ଚିତ୍ରଶ୍ରୀ କରିବାଠାରୁ ଆତ୍ମଜୀବନ ଅର୍ଥାତ୍ ଶିଳ୍ପୀର ସଂବେଦନଶୀଳ ସ୍ୱର୍ଣକାତର ଜୀବନ ଯେ ସମସାମୟିକ

୧୨. କନ୍‌ହେଇ ଦିନଲିପି, ୨୮.୦୩.୭୫, କନ୍‌ହେଇ କଥାଘର

ସମୟ, ସଭ୍ୟତା ଓ ସଂସ୍କୃତିର ବାସ୍ତବ ପ୍ରତିନିଧି, ଏଭଳି ଉପଲବ୍ଧି ଥିଲା କନ୍‌ହେଇଲାଲଙ୍କର । ତାହାହିଁ ବ୍ୟକ୍ତି ଜୀବନ, ସମାଜଜୀବନର ପୃଷ୍ଠାକୁ ଅଂତରଂଗତାର ସହ ଖୋଲିପାରିବାର ସାମର୍ଥ୍ୟ ବହନ କରିପାରିବାର ଦୃଢ଼ ଧାରଣା ଥିଲା ତାଙ୍କର । ଓଡ଼ିଆ ଗଳ୍ପର ସପ୍ତମଦଶକରେ ଏହି ଧାରା ଥିଲା ପ୍ରବଳ ଓ ପ୍ରଚ୍ଛନ୍ନ । ବ୍ୟକ୍ତି ଚେତନା ଓ ସୃଷ୍ଟି ଚେତନାର ଏହି ଅଭେଦ୍ୟମିଳନ ପ୍ରକ୍ରିୟା ଲେଖକର ବ୍ୟକ୍ତିଗତ ଜୀବନକୁ, ଅନୁଭୂତିକୁ ଏକାଂତରେ ଅତି ତୀବ୍ର ଭାବରେ ଖୋଲିଦିଏ ଏବଂ ସ୍ରଷ୍ଟା ଆତ୍ମ-ଜୀବନକୁ ଗଭୀରଭାବରେ ଭେଟେ ଏବଂ ଖୋଲା ହେଇଯାଏ । ୧୧ ଜୁଲାଇ ୧୯୭୫ ତାରିଖରେ ଡାଏରିରେ ଲେଖନ୍ତି କନ୍‌ହେଇଲାଲ - "ଆମେ ସବୁ ପୋଷାକ ପିଂଧି ଗଳ୍ପ କବିତା ଲେଖୁଛୁ । ଖୋଲା ଦେହରେ ଯଦି ଲେଖିପାରଂତୁ ।[୧୩] ପ୍ରକୃତରେ ଖୋଲା ଦେହରେ ହିଁ ଲେଖିଛନ୍ତି ସେ, କୌଣସି ଆବରଣ, ଅଯଥା ଆଦର୍ଶର ଅତ୍ୟାଚାର କରିନାହାନ୍ତି । ମଣିଷମେଳରେ ଥିବା ମଣିଷଠାରୁ ନିଭୃତ ସ୍ନାନାଗାର ବା ନିର୍ଜନ ଶୟନକକ୍ଷର ମଣିଷ ଭିନ୍ନ । ଏକାନ୍ତତା ଅନ୍ୟାର୍ଥରେ ନିଜ-ମନସ୍କତା ଓ ଅପରାର୍ଥରେ ନିଜ ସଂପର୍କରେ ଅକପଟ ସତ୍ୟଭାଷଣ ।[୧୪] ଏହି ଅକପଟ ଆତ୍ମିକ ସତ୍ୟଭାଷଣ କିଂତୁ ସାମାଜିକ ପରିମଣ୍ଡଳ (Social milien) ସହ ସ୍ୱତଃ ସଂପର୍କିତ ତେଣୁ ଶବ୍ଦ ସ୍ୱୟଂ ହିଁ ସାମାଜିକତା ।

ବ୍ୟକ୍ତିସତ୍ତା ଓ ସମାଜସତ୍ତା ଭିତରେ କୌଣସି ପାଚେରି ରଖିନଥିବା କନ୍‌ହେଇଲାଲଙ୍କ ସାହିତ୍ୟର ବୀକ୍ଷଣ ଓ ଉଦ୍‌ଭାସନ ପାଇଁ ତେଣୁ ଜରୁରୀ ତାଙ୍କର ସମଗ୍ର ବ୍ୟକ୍ତିସତ୍ତା ଓ ଜୀବନୀ । ଏଥିପାଇଁ ଯେ ନିଜକୁ ଓ ନିଜର ସାହିତ୍ୟକୁ ସମାଜର ପ୍ରତିନିଧିଭାବରେ ଗ୍ରହଣ କରିନେଉଥିବା ଲେଖକ ସମସାମୟିକ ପୂର୍ଣ୍ଣ ସମାଜର ପୂର୍ଣ୍ଣପ୍ରତିନିଧି ଭଳି ଅନୁଭବ କରିନିଏ । ସେ ଏକ କଳାକାର ହେଇଥିବା ଯୋଗୁଁ ଗୋଟେ ଆସ୍‌ଥେଟିକ୍ ବିଶ୍ୱରେ ବାସକରେ, କଳ୍ପନା କରେ, ଅନୁଭୂତିରେ ବୁଡ଼ିଯାଏ । ବ୍ୟକ୍ତି ଜୀବନରେ ଶୂନ୍ୟତାର ଅନୁଭବ ତାପାଇଁ ବିଶ୍ୱରେ ଶୂନ୍ୟତାର ଅନୁଭବ ଆଣିଦିଏ । ଏହି ଅନୁଭବକୁ ଜୀବନର ଭୟଙ୍କରତାର ସେ ସାମ୍ନାସାମ୍ନି ହୁଏ ଏବଂ ଆସ୍‌ଥେଟିକ ବିଶ୍ୱପାଇଁ ବ୍ୟାକୁଳ ହେଇପଡ଼େ । ଏହି ବ୍ୟାକୁଳତା ଲେଖକଙ୍କୁ ଜୀବନାମୋଦୀ କରିଛାଡ଼େ, ଜୀବନକୁ ବିକ୍ଷିପ୍ତ କରିଦିଏ ଏବଂ ଲେଖକ ସାମାଜିକ ଶୃଂଖଳା, ବିଭକ୍ତିର ବାଡ଼ଡେଇଁ ଚାଲେ । ଠିକ୍ ଯେମିତି କନ୍‌ହେଇଲାଲ । ଏକ ଆସ୍‌ଥେଟିକ୍ ବିଶ୍ୱ ପାଇଁ, ସମାଜର ଅଙ୍କୁଶବିହୀନ ସ୍ୱାଧୀନ ମଣିଷର ଜୀବନ ଜୀଇଁବା ପର୍ଯ୍ୟାସରେ ହିଁ ସେ ଜୀଇଁଥିଲେ ଏବଂ ବାରଂବାର ଲହୁଲୁହାଣ, ଆକ୍ରାମାକ୍ରା ହେଇଥିଲେ । ଅସ୍ତିତ୍ୱବାଦୀମାନଙ୍କ ନିକଟତର ପର୍ଯ୍ୟାୟର, ନିଜେହିଁ ନିଜର ଭାଗ୍ୟ ଓ ପରିଣତି । ଅସ୍ତିତ୍ୱବାଦୀମାନେ

---

୧୩. 'କନ୍‌ହେଇ ଦିନଲିପି'ର ସଂପାଦକୀୟ, କନ୍‌ହେଇ କଥାଘର

୧୪. 'ନାମହୀନ ଗଳ୍ପ'ର ସଂପାଦକୀୟ ବକ୍ତବ୍ୟ, କନ୍‌ହେଇ କଥାଘର

ଗୋଟେ ମଣିଷ, ଗୋଟେ ପୃଥିବୀ, ଭିନ୍ନଭିନ୍ନ ମଣିଷ - ଭିନ୍ନ ଭିନ୍ନ ପୃଥିବୀ ବୋଲି ଗ୍ରହଣ କରିନେଇଥିବାବେଳେ କନ୍‌ହେଇଲାଲ ନିଜେ ସମସାମୟିକ ପୃଥିବୀର ପ୍ରତିନିଧି ବୋଲି ଗ୍ରହଣ କରିଛନ୍ତି, ଏହାହିଁ ତଫାତ୍ ।

ତାଙ୍କର ବ୍ୟକ୍ତିଗତ ଜୀବନଚର୍ଯ୍ୟା ସଂପର୍କରେ ତାଙ୍କ ଡାଏରିରୁ ଏବଂ ତାଙ୍କର ବଂଧୁ ଓ ଘନିଷ୍ଠମାନଙ୍କଠାରୁ ଯେଉଁ ଉପାଦାନ ମିଳେ ତାହା ତାଙ୍କର ସୃଜନଶୀଳ ମାନସର ଝର୍କା ଖୋଲିବାରେ ନିଶ୍ଚୟ ସହାୟକ ।

[୧୫]କଥାକାର କନ୍‌ହେଇ ପ୍ରେମ ପାଇଁ କାଂଗାଳ ହୋଇଥିଲା । ପ୍ରେମ କରୁଥିବା କେବଳ କଥା ପାଇଁ । ତଥାପି ସେ ପ୍ରେମ ପାଗଳ ।[୧୬] ××× ଅଧିକାଂଶ ଗଳ୍ପ ପ୍ରେମ ଉଦ୍ଦେଶ୍ୟରେ ଲେଖିଥିଲା । ପ୍ରେମ ପ୍ରତି ଅଂଗୀକାର ଥିଲା ।

[୧୭]ତାର ପ୍ରତି ପ୍ରେମ ଗଳ୍ପ ଗୋଟେ ଗୋଟେ କମିଟ୍‌ମେଂଟ୍ । ×× ଯଦି ତାର ଏଠିକାର ପ୍ରେମିକାମାନଙ୍କୁ ଦାରିଦ୍ର୍ୟ ଭିତରେ ପାଇ ନଥାନ୍ତା ତେବେ ବୋଧେ ସେ ଲେଖି ପାରିନଥାନ୍ତା ।

[୧୮]ଗୋଟିଏ ଗପକୁ ହଳେ ଜାମା : କନ୍‌ହେଇର ଦୈନ୍ୟ କହିଲେ ଆଖିକୁ ଲୁହ ଆସେ । ଚାକିରି ପାଇବା ପୂର୍ବରୁ ଟିଉସନ କରି ପେଟ ପୂରାଉନଥିଲା ଯେତିକି ପ୍ରେମକରି ମନ ପୂରାଇ ନେଉଥିଲା ତାଠୁ ଅଧିକ । ମୁଁ ଜାଣିଛି ଥରେ ତାର ଜଣେ ମାରୁଆଡ଼ି ବଂଧୁ କନ୍‌ହେଇକୁ ଗପ ଲେଖିଦେବା ପାଇଁ କହିଲେ । ଯଦ୍ଦ୍ୱାରା ମାରୁଆଡ଼ି ବଂଧୁ ଜଣକ କନ୍‌ହେଇ ଗପକୁ ନିଜ ନାଁରେ ଛାପି ନିଜ ସମ୍ମାନର ଅଭିବୃଦ୍ଧି ଘଟାଇଲେ । ସେଇଆ ହେଲା । ମାତ୍ର ସର୍ତ୍ତ ଗୋଟିଏ - "ମୋର ପ୍ୟାଣ୍ଟ, ଶାର୍ଟ ନାହିଁ, ହଳେ ଜାମା ଦେଲେ ମୁଁ ଗପ ତୁରଂତ ଲେଖିଦେବି । ଗପ ଲେଖାହେଲା । କନ୍‌ହେଇ ଜାମା ପିଂଧିଲା । ମାରୁଆଡ଼ି ସମ୍ମାନ ପାଇଲା ।"

[୧୯]କନ୍‌ହେଇ ର ଅତଂରଂଗ ଅଗ୍ରଜ, ଆଲୋଚକ ଶୁଭେନ୍ଦୁ ମୋହନ ଦାସ କନ୍‌ହେଇ ସଂପର୍କରେ କହନ୍ତି - "ସେ ଅତ୍ୟନ୍ତ ସରଳ, ଅଥଚ ଅତ୍ୟନ୍ତ ଯାଯାବରୀ ଥିଲା । ସାଂଗମାନଙ୍କ ମେଳରେ ବସି ଗପ କରୁ କରୁ ହଠାତ୍ ସେ ଚାଲିଯିବ ବିଲ ମଝିକୁ ଏବଂ ଘଂଟା ଘଂଟା ପାଣି କାଦୁଅର ହିଡ଼ରେ ବସି କ'ଣ ନାହିଁ କଣ ଭାବୁଥିବ । ଯେମିତିକି ମଣିଷ, ତାର କ୍ରିୟାକଳାପ ଓ ସମାଜ ତାକୁ ଛୋଟ, ସୀମିତ ଜଣାପଡ଼େ ।

୧୫. ବିଶ୍ୱାଳ ଗଂଗାଧର, ସଂପାଦକୀୟ, ଫୁଲ, କନ୍‌ହେଇ ସ୍ମୃତି ସଂସଦ ସ୍ମରଣିକା
୧୬. ରଥ ବ୍ରଜନାଥ, ତତ୍ରୈବ
୧୭. ଶତପଥୀ ବସନ୍ତ କୁମାର, ତତ୍ରୈବ
୧୮. ଜେନା ଗଦାଧର - ତତ୍ରୈବ
୧୯. ସାକ୍ଷାତକାର, ୦୧.୦୧.୮୫, ମହାନ୍ତି ରଜନୀକାନ୍ତ ଓ ଦାସ ଶୁଭେନ୍ଦୁ ମୋହନ

[୨୦]ଅନୁ ତା ଡାଏରିରେ ଲେଖିଛି, ୧ ତାରିଖ ଦିନପାଇଁ ଭବିଷ୍ୟତରେ ତାକୁ ଦୁଃଖ ମିଳିପାରେ । ଆଶ୍ଚର୍ଯ୍ୟ, ଝିଅମାନେ ଦୁଃଖପାଇଁ ଏତେ ଡରନ୍ତି କାହିଁକି ? ମୁଁ ଚାହେଁ, ମୁଁ ଯେପରି କାହାରିପାଇଁ ଜୀବନସାରା ଦୁଃଖ ପାଏଁ । ସେଥିରେ ମୋର ପରିତୃପ୍ତି । ଆଉ ୨ ତାରିଖ ଦିନ ଅନୁ ଲେଖିଛି "ମୁଁ କିପରି ତା ହାତରୁ ମୁକ୍ତି ପାଇବି ?" ଅନୁ । ତୁମେ ଏଇ କଥା କିଂବା ଏଇ ଧରଣର କଥା ମୋତେ କହିଦେଲେ ତ ଭଲ ହୁଅନ୍ତା । ମୁଁ ତୁମଠାରୁ ଅନେକ ଦୂରକୁ ପଳାଇଯାଇ ପାରନ୍ତି । ×××

[୨୧]ଲକ୍ଷ୍ମୀ ପାଇଁ ବ୍ରସ୍ ଏକ୍ ଟଂକାର ଆଣିଦେଇ ଅଣୀ ପଇସା ମାରିନେଲି ଏବଂ ସେଥିରେ କୋଲ୍‌ଗେଟ୍ କିଣି ଆଣିଲି ।

[୨୨]ଅନୁସହ ×× ଚୁମା ଖାଇଲି ××। ଅନୁ ଯଦି ଅସୀମା ହେଇଥାନ୍ତା । ଅସୀମାଟା ମୋର ସତରେ ହଜିଗଲା, ମୋତେ ଭୁଲ୍ ବୁଝିଲା । ବୁଝୁ । ଆଜି ବି ମୁଁ ତାକୁ ଭଲପାଏ ।

[୨୩]ଆଜିକାଲି ଅନୁଭବ କରୁଚି ଆଗପରି ମୋର ଆଉ ଭାବପ୍ରବଣତା ନାହିଁ । ଆଗେ ଯେପରି ଅସୀମା ଆଗରେ ଚଟ୍‌କରି କାନ୍ଦି ପକାଉଥିଲି, ଆଜିକାଲି ଆଉ କାନ୍ଦିପାରୁନି କାହିଁକି ? କାନ୍ଦିପାରୁଥିଲି ବୋଲି ସେତେବେଳେ ବୋଧେ ଭଲ ଲେଖିପାରୁଥିଲି । ଚାକିରି କଲା ଦିନରୁ ମନେ ହେଉଛି, ଲେଖାଲେଖି ଠିକ୍ ରୂପେ ହୋଇପାରୁନି ।

[୨୪]ଅସୀମା କଣ ସତରେ ମୋତେ ଘୃଣା କରେ ନା ଘୃଣାକରେ ବୋଲି ଦେଖେଇ ହୁଏ ?

[୨୫]ମୁଁ ଜାଣେ ମୁଁ ଦରିଦ୍ର । କିଂତୁ ଦାରିଦ୍ର୍ୟ କଥା ମୁଁ ମନେ କରିପାରେନି କାହିଁକି ? ବୋଧେ ସାହିତ୍ୟ ମୋତେ ଦାରିଦ୍ର୍ୟରୁ ଅସଂଭବ ମୁକ୍ତି ଦେଉଛି । ମୁଁ ଜାଣେ ମୋର ପାର୍ଥିବ ସଂପତ୍ତି ବା ପଦାର୍ଥ କିଛି ନାହିଁ । ମୁଁ ସ୍ୱପ୍ନ ସମ୍ରାଟ । ମନେ ମନେ ଅସୀମାକୁ, ଅନୁକୁ, ରାଗିଣୀକୁ, ରାଣୀକୁ ନେଇ କେଉଁ ଏକ ସିନେମାରେ ଦେଖା ସୁନ୍ଦର ମହଲରେ ବୁଲାଏଁ ଓ ଗେଲ କରେ । କିଂତୁ ମୋ ପାଦତଳେ, ମାଟି ଉପରେ ମୋର ବୋଲି ଚାଖଣ୍ଡେ ଜମି ନାହିଁ । ଯଦି ମୁଁ ହଠାତ୍ ମରିଯାଏ, ତା'ହେଲେ ପରିବାରଟାର କ'ଣ ହେବ ? ଭଗବାନ, ମୋତେ ଏ ଭାବପ୍ରବଣ ଜଗତରେ ଆଉ କିଛିଦିନ ବଂଚାଇରଖ ।

---

୨୦. କନ୍ହେଇ ଦିନଲିପି - ତା. ୩.୧.୭୩ - କନ୍ହେଇ କଥାଘର
୨୧. ତତ୍ରୈବ - ତା. ୦୪.୧.୭୩
୨୨. ତତ୍ରୈବ - ତା. ୦୭.୧.୭୩
୨୩. ତତ୍ରୈବ - ତା. ୧୦.୧.୭୩
୨୪. ତତ୍ରୈବ - ତା. ୧୩.୧.୭୩
୨୫. ତତ୍ରୈବ - ତା. ୧୬.୧.୭୩

[୨୬]ଅନୁବୋଉ ଅନୁକୁ ଯାଚ୍ଛାତା ଗାଳି ଦେଇଛନ୍ତି । ଗାଳି ଦେବା ଉଚିତ । ଆମେ ଯେଉଁ ପ୍ରକାର ଆଗେଇ ଯାଉଥିଲେ ସେଥିରେ ଏ ଧରଣର ବାଧା ସ୍ୱାଗତଯୋଗ୍ୟ ।

[୨୭]ମୁଁ ଜାଣେ, କେବଳ ଚୁମା ଖାଇବା, ଛାତିରେ, ବେକମୂଳରେ ମୁଣ୍ଡରଖିବା, ଆଲିଂଗନ ଖରାପ ସଂପର୍କ ନୁହେଁ । ତଥାପି ସମାଜ । ଏ ସମାଜକୁ ଭାଂଗିବାକୁ ହେବ ।

[୨୮]ମୁଁ 'ବୀରଭୋଗ୍ୟା ବସୁଂଧରା' ଥିଓରୀରେ ବିଶ୍ୱାସ କରେନା ।

[୨୯]ମଣିଷକୁ ଠକି ମିଛ କହି କ'ଣ ବଂଚିବାରେ ସୁଖନାହିଁ ? କେତେ ଦିନ ବା ବଂଚେ ମଣିଷ ? ସେଇ କେତେଦିନ ଅନ୍ୟକୁ ମିଛ କହି ହେଉ ବା ଠକି ହେଉ ବଂଚିଲେ ଭଲ । ରାଣୀକୁ ମିଛ କହୁନାହିଁ ତ ? ଆଜି ଅନୁକୁ ଗୋଟେ ଥାପ୍ପଡ଼ ମାରିଲି । ତା'ପାଖରେ ଥିବା ଫଟୋ ଚିରିଦେଲି । ଅନୁ ଅନ୍ୟ ଏକ ଯନ୍ତ୍ରଣା । ଅସୀମା ପରେ ଅନୁ ଅନ୍ୟ ଏକ ଯନ୍ତ୍ରଣାର ଇତିହାସ । ମୋର ଲେଖକ ହେବାରେ ଏମାନେ ହିଁ ସହାୟକ । ମୁଁ ନିଶ୍ଚୟ ବଡ଼ ଲେଖକ ହେବି ।

[୩୦]××× ରାଣୀ କଥା ଭୁଲି ହେଉନାହିଁ କାହିଁକି ? ଯଦି ସେ ମୋତେ ସାମାନ୍ୟ ଟିକେ ବୁଝନ୍ତା, ତା'ହେଲେ ଅସୀମା ପାଇଁ, ଅନୁ ପାଇଁ ଏତେ ଚିତ୍କାର କରନ୍ତି ନାହିଁ ।

[୩୧]ପ୍ରକୃତରେ ଅନ୍ୟାୟ ବା ଅପରାଧ ବୋଲି କିଛି ନାହିଁ ।

ଏତକ ଦିନଲିପି ଭିନ୍ନ ଅନେକ ଦିନଲିପି ସଂଯୋଜିତ 'କନ୍ହେଇ କଥାଘର' ପୁସ୍ତକରେ । ଡାଏରି ଓ ଆତ୍ମଜୀବନୀ ଜୀବନର ସଂପୂର୍ଣ୍ଣ ବାସ୍ତବତା ଓ ସତ୍ୟକୁ କେତେକ କ୍ଷେତ୍ରରେ ଗ୍ରହଣ କରିପାରେ ନାହିଁ । ଲିପିକାରର ବିବେକବୋଧ ଓ ଭାବପ୍ରବଣତାକୁ ସ୍ଲାନିତ କରିଥାଏ । ତେଣୁ ଆପେକ୍ଷିକ ହେଇପଡ଼େ । ଘଟଣା ଶେଷ ହେଇଯିବା ପରେ ଲିପିକାରର ଜାଗରିତ ବିବେକବୋଧ ଓ ସଚେତନତା ପ୍ରବଣ ହେଇଉଠେ । ବେଳେବେଳେ କୁଣ୍ଠିତ ସତ୍ୟ ଆତ୍ମପ୍ରକାଶ କରେ । ତୁ ଅନୁଭବ ପରେ ଆତ୍ମସତର୍କତା ଡାଏରିର ପୃଷ୍ଠାକୁ କବଳିତ କରିବାକୁ ଅଗ୍ରସର ହେଇଯାଏ । ତେବେ ଲିପିକାରର ମୂଢ଼୍ ଭଳି ଅମୂର୍ତ୍ତ ବୋଧକୁ ତୋଳିଧରେ । କିଂତୁ କନ୍ହେଇଲାଲଙ୍କ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଏହି ଯେ ସେ ଡାଏରି ଲେଖିବାରେ ଆଦୌ ଛଳନା କରିନାହାନ୍ତି, ଘଟଣା ସହ ବିବେକବୋଧକୁ ଯୋଡ଼ି

---

୨୬. କନ୍ହେଇ ଦିନଲିପି - ତା. ୧୯.୧.୭୩ - କନ୍ହେଇ କଥାଘର
୨୭. ତତ୍ରୈବ - ତା. ୨୩.୦୩.୭୩
୨୮. ତତ୍ରୈବ - ତା. ୨୪.୦୩.୭୩
୨୯. ତତ୍ରୈବ - ତା. ୦୯.୧୨.୭୩
୩୦. ତତ୍ରୈବ - ତା. ୨୦.୧୨.୭୩
୩୧. ତତ୍ରୈବ - ତା. ୨୩.୦୩.୭୫

ତାଏରି ଲେଖିନାହାନ୍ତି । ଜୀବନାଂଶକୁ ଲୁକ୍‌କାୟିତ କରି ରଖିବାରେ ତଥାକଥିତ ଆଦର୍ଶବୋଧର ପୋଷାକ ପିଂଧିନାହାନ୍ତି । ପରଂତୁ ତାଙ୍କ ସୃଷ୍ଟ ଗପ ଓ ଉପନ୍ୟାସ ସହ ଆତ୍ମଲିପିର ଅଦ୍ଭୁତ, ନିବିଡ଼ ସଂପର୍କ ।

କନ୍‌ହେଇ ବ୍ୟକ୍ତିମାନସ ସ୍ୱଭାବବାଦୀ ଜୀବନର ମାନବବାଦୀ ଦୃଷ୍ଟିଭଂଗୀ, ପ୍ରେମ ପାଇଁ ଦେହର ବିକାରହୀନତା ଓ ଆତ୍ମବଳିର ଅପୂର୍ବ ଉତ୍ତାପ ଓ ଆବେଗ, ଜୀବନ ପାଇଁ ଛଳନା ଓ ଅପରାଧର ସାମାଜିକ ସୀମାର ଅସ୍ୱୀକୃତି ପ୍ରମୁଖ ବଂଦନୀୟ ଆବେଦନରେ ପୁଷ୍କଳ । ପ୍ରେମରେ ଦେହର ଆବଶ୍ୟକତା ଅନିବାର୍ଯ୍ୟ, କିଂତୁ ଅଦ୍ଭୁତ ଯେ କନ୍‌ହେଇ ମାନସରେ ନାରୀର ଦେହ ଜୈବିକ କାମନା ବାସନାର ଯୂପକାଷ୍ଠରେ ବଳିପଡ଼ିନାହିଁ । ସେଠି ଫ୍ରୟେଡ୍ ଆତ୍ମସନ୍ତୋଷରେ ହସିପାରୁ ନାହାନ୍ତି । ବରଂ ପ୍ରେମ ଆବେଗ ଓ ମାନବିକ ବୋଧର ଉଚ୍ଚାଟନରେ ଝଲସୁଛି । ପ୍ରେମିକାର ଅସ୍ତିତ୍ୱକୁ ସେ ଅନ୍ୟଠାରେ ଖୋଜିଛନ୍ତି । ତେଣୁ ବାରଂବାର ସେ ପ୍ରେମ ଆର୍ତ୍ତନାଦ କରିବାକୁ ବାଧ୍ୟ । ପ୍ରେମିକାର ଅହରହ ସ୍ମୃତିଟି ତାର ଜୀବଂତ ଉପସ୍ଥିତି । ସେହି ଉପସ୍ଥିତିକୁ ଅନ୍ୟନାରୀଠି ଆବିଷ୍କାର କରିବା ଏକ ବିଫଳତା, ଏକ ସଂପୂର୍ଣ୍ଣହୀନତା । ତାହା ପୀଡ଼ାଜନକ । ଏବଂ ସେଇ ପୀଡ଼ାହିଁ ପ୍ରେମିକାର ସ୍ମୃତିକୁ ମଜ୍‌ଭୁତ୍ କରେ । ପ୍ରେମିକା ଓ ଅନ୍ୟ ନାରୀ ଉଭୟ ବ୍ୟକ୍ତିକ ସ୍ତରରେ ଭିନ୍ନ ଅସ୍ତିତ୍ୱ ବହନ କରନ୍ତି । ତେଣୁ ପ୍ରେମିକ ଉଭୟ କ୍ଷେତ୍ରରେ ହୁଏ ନିରାଶ । ଅନ୍ୟପକ୍ଷରେ ପ୍ରେମିକା ଓ ଅନ୍ୟନାରୀ ହେଇପଡ଼ନ୍ତି ନୈରାଶ୍ୟର କେନ୍ଦ୍ରବିନ୍ଦୁ, ଜୀବନ ଚଉତରା । କନ୍‌ହେଇଙ୍କ ଜୀବନରେ ପ୍ରେମିକା ଓ ଅନ୍ୟନାରୀମାନଙ୍କ ବୃତ୍ତ ବେଶ୍ ସତେଜ ଓ ସଂଘର୍ଷମୟ । ଏହାର ଏକମାତ୍ର କାରଣ କନ୍‌ହେଇଙ୍କର ପ୍ରେମପ୍ରତି ଗଭୀର ଅଂତରଂଗତା, ନିଷ୍ଠା ଓ ତପସ୍ୟା ।

ଦିନଲିପିରେ ସେ ଉଲ୍ଲେଖ କରନ୍ତି ଯେ ଅନ୍ୟାୟ ବା ଅପରାଧ ବୋଲି କିଛି ନାହିଁ । ଏବଂ ସେ ବୀରଭୋଗ୍ୟା ବସୁଂଧରା ଥିଓରୀରେ ବିଶ୍ୱାସ କରନ୍ତି ନାହିଁ । ଅନ୍ୟାୟ ବା ଅପରାଧ ଏକ ସମୟ ସୀମାବଦ୍ଧ ସମାଜର ଦୃଷ୍ଟି ଯାହାର ବାରଂବାର ସଂଜ୍ଞା ନିରୂପିତ ହୁଏ । ପୁଣି ବ୍ୟକ୍ତି ଜୀବନରେ ଏହି ସଂଜ୍ଞା ନିରର୍ଥକ, ଯେଯାଏ ସେ ମାନବିକତାର ଶିରଚ୍ଛେଦ କରିନାହିଁ । କନ୍‌ହେଇ ମାନସରେ ଅନ୍ୟାୟ ବା ଅପରାଧ ନିଷ୍ଠୁରତା ନୁହେଁ, ନୁହେଁ ବି ବଳାତ୍କାର ପାଶବିକତା । ସେ ନିତ୍‌ସେଙ୍କର 'ଅତିମାନବ'କୁ ସ୍ୱୀକୃତି ଦିଅନ୍ତି ନାହିଁ । ବିବେକ, ନୈତିକବୋଧର ଉଷ୍ମତା ତାଙ୍କର ଦିନଲିପି ଓ ଗପମାନଙ୍କରେ ବେଶ୍ ଉଜାଗର । ଛଳନାହୀନ ଆତ୍ମସ୍ୱୀକାରୋକ୍ତି, ମାନବିକ୍ ବୋଧ, କରୁଣା, କଥିତ ଭାଷାରେ ଆବେଗ ଓ ବାସ୍ତବତାର ଶୈଳୀକରଣ, ଐତିହାସିକ ଚରିତ୍ର ବା ପୌରାଣିକ ମିଥ୍‌ର ଆଶ୍ରୟ ନନେଇ ଜୀବନ ସଂଯୁକ୍ତ ଓ ସଂକଳିତ ଅନୁଭୂତି ଉଭୟ କନ୍‌ହେଇ ସୃଷ୍ଟି ଓ ଦିନଲିପିକୁ ଦେଇଛି ଦିନାନ୍ତର ମର୍ଯ୍ୟାଦା ।

ଜୀବନର ତୀବ୍ର ଉପଲବ୍ଧି ଯେପରି ତାଙ୍କର ଗଳ୍ପ, ସେମିତି ବାସ୍ତବ ଅନୁଭୂତିର ସତ୍ୟସିଦ୍ଧ ଉଚ୍ଚାରଣ ତାଙ୍କର ଡାଏରି । ଡାଏରିରୁ ସିଧା ଗପର ସରହଦକୁ, ଗପରୁ ସିଧା ଡାଏରିର ପୃଷ୍ଠାକୁ ପାଠକ ଅନାୟାସରେ କୌଣସି ବିସ୍ମୟ ନରଖି ଗତିକରିପାରିବ । କନ୍ହେଇଙ୍କ ଗପ ଓ କନ୍ହେଇଙ୍କ ଡାଏରି ଅଭେଦ୍ୟ, ଅବିଚ୍ଛିନ୍ନ । ବିଶେଷତ୍ୱ ହେଉଛି, ନାରୀ ଓ ପୁରୁଷର ସଂପର୍କ, ତାର ସ୍ଥିତି ଓ କ୍ରିୟା ପ୍ରତିକ୍ରିୟା ହିଁ ମାନବ ଜୀବନର ସମସ୍ତ ଦିଗର ସୂକ୍ଷ୍ମତର, ଆବେଗତର ପ୍ରତିବିଂବ । ପୁରୁଷ ଓ ନାରୀର ସଂପର୍କର ଚଉତରା ହିଁ ସଭ୍ୟତା, ସଂସ୍କୃତିର ଅଂତରଂଗ ନିର୍ଯାସ । ଦିନଲିପିମାନଙ୍କରେ ଜୀବନ୍ୟାସିତ ରାଣୀ, ଅସୀମା, ଅନୁ, ରାଗିଣୀ– ଏମାନେ ଆତଯାତ ତାଙ୍କର ପ୍ରତିଟି ଗପରେ, ଉପନ୍ୟାସରେ, ଠିକ୍ ସେଇ ଠାଣୀରେ, ସେଇ ପଲକରେ, ସେଇ ଛଳନାରେ ଏବଂ ସେଇ ପ୍ରେମର ଅକାତକାତ ଅନୁଭବରେ। ସତରେ କେହି କାହାରିକୁ ଛଳନା କରୁନାହାନ୍ତି କାରଣ ପ୍ରେମରେ ଛଳନା ହିଁ ରାସ୍ତା, ଯାହାକୁ ଉଭୟ ପ୍ରେମିକ ପ୍ରେମିକା ବୁଝିପାରନ୍ତି । ଏବଂ କନ୍ହେଇ ଉପଲବ୍ଧି କରିଛନ୍ତି– ପ୍ରେମରେ ଅଧିକାର ଜାହିର କରିବା ପ୍ରେମର ଶତ୍ରୁ ପାଲଟିଯିବା । ପ୍ରତି ପ୍ରେମିକା ତେଣୁ ଦେହଜ ଓ ସାମାଜିକ ବଂଧନ ବା ସ୍ୱୀକୃତିର ବାହାରେ ବିଚରଣଶୀଳ ସତ୍ତା। ଏକ ବହମାନ ସ୍ୱପ୍ନ ନିରନ୍ତର ଧାରକ, ଏକ ସମୟହୀନ ହାହାକାରର ଉଚ୍ଛ୍ୱାସର ନିରବଧି ଅନ୍ୱେଷା କନ୍ହେଇ ଚେତନାରେ ଚିର ଜାଗ୍ରତ ଯେତେବେଳେ ଅତି ଆକୁଳ ସ୍ୱରରେ, ଅଂତରଂଗ କଳାତ୍ମକ ଭାବରେ, ମେଟା ଫିଜିକାଲ୍ ଶୈଳୀରେ ସେ ପ୍ରେମିକାର ମୁହଁରେ ଆତ୍ମଭାଷାର ଉଚ୍ଚାରଣ କରନ୍ତି– "ତୁମକୁ ମୁଁ ଏ ଚିଠି ଲେଖୁଛି ମୋର ଜନ୍ମଜନ୍ମାନ୍ତର ବିଚ୍ଛେଦ ପାଇଁ ।"[୩୨] ଜନ୍ମଜନ୍ମାନ୍ତର ମିଳନ ପାଇଁ ତ୍ୟାଗ, ପୂଜାର ବାଣୀ ସିନା ଝରୁଥାଏ ସ୍ୱାଭାବିକ ଭାବରେ ଜଣେ କବି, ଲେଖକର ଆତ୍ମାକୁ କିଂତୁ ଜନ୍ମଜନ୍ମାନ୍ତର ବିଚ୍ଛେଦ ପାଇଁ ଆକୁଳତା ଜାଗିଛି କାହା ସାହିତ୍ୟରେ, କେଉଁ କବିର ଆତ୍ମାରେ ସମଗ୍ର ଭାରତୀୟ ସାହିତ୍ୟରେ କୁହନ୍ତୁ ତ ! ମୁଁ (ଆତ୍ମସତ୍ତା), ପାଣିକଳ (ଜୀବନଯାନ୍ତିକତା), ହାତଘଂଟା (ସମୟ ଓ ସମୟହୀନତା), ଅସୀମା (ନାରୀ ଓ ପ୍ରେମ ସତ୍ତା) ଇତିହାସର ଆଉ ଏକ ଅଲେଖା ଅଧ୍ୟାୟ (ଜନ୍ମ ଜନ୍ମାନ୍ତରର ବିଚ୍ଛେଦ)– ଏସବୁ ଏକ ଇତିହାସୋତ୍ତର ଇତିହାସ ବା ଆଦ୍ୟ ଇତିହାସର ଅଭିଲେଖ । ପ୍ରେମର ମୁହୂର୍ତ୍ତ ହିଁ ସମୟହୀନତା । ପ୍ରେମର ମୁହୂର୍ତ୍ତରେ ଏଣେ ଜାଗତିକ ପୃଥିବୀର ବୟସ ବଢ଼ିଯାଏ । କିଂତୁ ଆତ୍ମିକ ମୁହୂର୍ତ୍ତ ସମୟ ଚେତନାର ବାହାରେ ସଂଚରୁଥାଏ । ପ୍ରେମର ଗୋଟେ ମୁହୂର୍ତ୍ତ ମଧ୍ୟରେ ପୃଥିବୀ ପୃଷ୍ଠରେ ବର୍ଷ ବର୍ଷ କାଳ ବିତି ଯାଇଥାଏ । ଯେମିତି ପ୍ରେମିକର ସ୍ୱପ୍ନିଳ ଚାହାଣିର ମୁହୂର୍ତ୍ତ ଭିତରେ ଅଠର ବର୍ଷର ତରୁଣ ପାଲଟି ଯାଇଛି

୩୨. ମୁଁ, ପାଣିକଳ, ହାତଘଂଟା ଓ ...., କନ୍ହେଇ କଥାଘର

ଜାଗତିକ ପୃଥିବୀରେ ଏକ ଅଢ଼ତିରିଶ ବର୍ଷର ସମୟ ବୟସ୍କା ନାରୀ । ଅର୍ଥାତ୍ ପ୍ରେମ-ଚାହାଣିର ପୁଲକ ମୁହୂର୍ତ୍ତଟି ଜାଗତିକ ପୃଥିବୀରେ କୋଡ଼ିଏ ବର୍ଷ ସମୟକୁ ବୋହି ନେଇଯାଇଛି । ଏଇ କୋଡ଼ିଏ ବର୍ଷ ସମୟ ଭିତରେ ପୃଥିବୀରେ ବହୁ ଇତିହାସ ସୃଷ୍ଟି ହେଇସାରିଥାଏ କିଂତୁ ପ୍ରେମର ଇତିହାସ ସେଇ ପ୍ରେମର ଗୋଟେ ମୁହୂର୍ତ୍ତ ଯାହା ଏକ ଭିନ୍ନ ଓ ଅନନ୍ୟ ଇତିହାସ ହେଇ ଝୁଲେ । ପ୍ରେମର ଇତିହାସ ପ୍ରେମ, ଭୂଗୋଳ ପ୍ରେମ, ପରିମାପକ ପ୍ରେମ, ପରିତ୍ରାଣ ପ୍ରେମ ନହେଲେ ଜନ୍ମଜନ୍ମାନ୍ତର ବିଛେଦ ପାଇଁ ବ୍ୟାକୁଳତା ଆସିବ କେମିତି ? ଜାଗତିକ ପୃଥିବୀ ବିନା ପ୍ରେମର ସ୍ୱୟଂସଂପୂର୍ଣ୍ଣ ସତ୍ତା ଏକ ଅଚିନ୍ତନୀୟ, ଅମୂର୍ତ୍ତ ଅବବୋଧ । ଏବଂ ଯେହେତୁ ପ୍ରେମିକ ପ୍ରେମିକା ଜାଗତିକ ପୃଥିବୀର ଅଂଶବିଶେଷ ତେଣୁ ପ୍ରେମ ପ୍ରତି ମୁହୂର୍ତ୍ତ-ନିୟତ ମିଳନ ଆକାଂକ୍ଷା ସହ ବିଛେଦ ବାସ୍ତବତାର ଦହନ ଭୋଗୁଥାଏ । 'ବିଛେଦ'ର ଏଇ ସ୍ୱତନ୍ତ୍ର ସତ୍ତାର ଉପଲବ୍ଧିକୁ କନ୍‌ହେଇଲାଲ ଚିରନ୍ତନତା ପ୍ରଦାନ କରିଛନ୍ତି । ଏହି ବିଛେଦ ସ୍ୱାଭାବିକ ମିଳନଠାରୁ ଏକ ଉଚ୍ଚତର ସମର୍ପଣ । ଅନ୍ୟାର୍ଥରେ ସଂପୂର୍ଣ୍ଣ ମିଳନର ଏକ ପ୍ରକ୍ରିୟା ।

କନ୍‌ହେଇଙ୍କ ଚେତନାରେ ନାରୀ ଓ ସୌନ୍ଦର୍ଯ୍ୟବୋଧ ଏକ ଇନ୍ଦ୍ରିୟଗତ ଅନୁଭବ ସ୍ତରର ବାସ୍ତବତା ଓ ସତ୍ୟ ନୁହେଁ । ସୂକ୍ଷ୍ମ ରହସ୍ୟଜଗତର ସୌନ୍ଦର୍ଯ୍ୟ । କବିର ସୌନ୍ଦର୍ଯ୍ୟ। ଯେମିତି ରାତିର ଶେଷପ୍ରହରର ମାଛିଅଂଧାର, ଉତ୍ତର ଗୋଧୂଳିର ନୁଆଁଣିଆ ଭୁଆସୁଣୀ ସଂଜ ବା ଜହ୍ନରାତିରେ ଗଛ ମୂଳର ଅଂଧାର ଭଳି କଅଁଳ, ପବିତ୍ର, ଯେଉଁଠି ଲୋକଟିର ଅସ୍ତିତ୍ୱକୁ ବାରିହବ ଅଥଚ ତାକୁ ସ୍ପଷ୍ଟ ଚିହ୍ନି ହେବ ନାହିଁ । 'ଆହତ ସ୍ୱପ୍ନ' ଉପନ୍ୟାସରେ ଲେଖନ୍ତି କନ୍‌ହେଇଲାଲ - "ମୁଁ ଜାଣେ ରାତି ଆସିଲେ ଅଂଧକାର ଆସେ, ଅଂଧକାର ଆସିଲେ ନିଦ ଆସେ, ନିଦ ଆସିଲେ ସ୍ୱପ୍ନ ଆସେ, ସ୍ୱପ୍ନ ଆସିଲେ ତୁ ଆସୁ । ସ୍ୱପ୍ନ କେଡ଼େ ସୁନ୍ଦର । ତାଠୁ ସୁନ୍ଦର ସ୍ୱପ୍ନରେ ତୋର ସଂପୂର୍ଣ୍ଣ ଅବୟବ । ପୃଥିବୀରେ ଯାହା ସୁନ୍ଦର ତାହା ହିଁ କାମ୍ୟ । ପୁଣି କାମ୍ୟବସ୍ତୁ ନ ମିଳିଲେ ତାର ସୌନ୍ଦର୍ଯ୍ୟ ବୃଦ୍ଧିପ୍ରାପ୍ତ ହୁଏ । ତୁ ଏ ପୃଥିବୀରେ ମୋ ପାଇଁ ଏକମାତ୍ର କାମ୍ୟବସ୍ତୁ । ତୁ ଅଂଧକାରରେ ବିଧବା ଭଳି ଛିଡ଼ା ହୋଇଥିଲୁ । ଅଂଧକାରରେ ତୋ ଓଠରେ ହସ ବି ଦେଖିପାରିଲି ନାହିଁ । ମନେହେଉଛି ତୋତେ ପରିଷ୍କାର ଭାବରେ ଦେଖିଥିଲେ ତୁ ଏତେ ସୁନ୍ଦର ଦେଖାଯାଇ ନଥାନ୍ତୁ । ତୋତେ ଦେଖି ବି ଦେଖିପାରିଲି ନାହିଁ ବୋଲି ମନେ ହେଉଛି ତୁ ପୃଥିବୀର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟର କେନ୍ଦ୍ରବିନ୍ଦୁ ।"[୩୩]

ବା "ଜହ୍ନଟା କ୍ରମେ କୋଠାଗୁଡ଼ିକର ପଛ ପାଖକୁ ଓହ୍ଲେଇଯାଏ । ଘରର ଛାଇଗୁଡ଼ା ଭୌତିକ ହେଇ ଖୁବ୍ ଦୂରକୁ ଲଂବିଥାଏ । ପୃଥିବୀ ଟିକେ ବେଶି ଅଂଧକାରାଚ୍ଛନ୍ନ

୩୩. 'ଆହତ ସ୍ୱପ୍ନ', କନ୍‌ହେଇ କଥାଘର

ହୋଇଯାଇଛି ବୋଲି ମୁଁ ସଚେତନ ହୁଏ । ଅଧା ଅଂଧାରର ଆଲୋକଟା କେମିତି ଖୁବ୍ ପବିତ୍ର ଓ ନିଃସଂଗ ।"(୩୪)

ଏ ସୌନ୍ଦର୍ଯ୍ୟବୋଧର ବାସ୍ତବତା ଅତି ନିବିଡ଼ ସତ୍ୟ କିଂତୁ ସୁଲଭ ନୁହେଁ । ଏଭଳି ସୌନ୍ଦର୍ଯ୍ୟବୋଧର ଅନ୍ୱେଷାରେ ବିଂଶ ଶତାବ୍ଦୀର ପୀଡ଼ିତ, ବିରକ୍ତିକର ବାସ୍ତବତାରୁ ମୁକ୍ତିବ୍ୟାକୁଳ ପ୍ରତିଟି ସୃଜନଶୀଳ ସ୍ରଷ୍ଟା । କିନ୍ତୁ କନ୍‌ହେଇଲାଲଙ୍କ ଭଳି ପ୍ରଚଣ୍ଡ ପ୍ରତିଭାସଂପନ୍ନ ଶିଳ୍ପୀ ହାତରେ ଏଭଳି ଅବବୋଧ ଧରାପଡ଼ିଯାଏ । ଚରିତ୍ର, ଅନୁଭୂତି ଓ ଚେତନାକୁ ଲଂଗଳାକରି ପ୍ରତିଟି ଗଳ୍ପରେ ଉଭା କନ୍‌ହେଇ କେଡ଼େ ସତ୍ୟଶୀଳ, ଅକପଟ ! 'କୁକୁର, ମୁଁ ଓ ଚନ୍ଦ୍ର' ଗପର ପ୍ରଥମ ତରଂଗରେ ନିଜ ଆଶ୍ରୟଦାତା ଗଦାଧରର ବାକ୍‌ସରୁ ଟଂକା ନେଇଯାଇ ପାହାଡ଼, ଝରଣା, ଜଂଗଲ ଭିତରେ ଘୂରିବୁଲିବା ଏବଂ ଗଦାଧର ତାକୁ ସନ୍ଦେହ ନ କରି ଚାକରପିଲାକୁ ସନ୍ଦେହକରି ମାଡ଼ ମାରିବା ଓ ଗଳ୍ପନାୟକ ଏ ଦୃଶ୍ୟରେ ମାନବିକ ସଂବେଦନାରେ ଅଭିଭୂତ ହେଇପଡ଼ି ଏଭଳି କାର୍ଯ୍ୟ କେବେ କରିବନାହିଁ ବୋଲି ପ୍ରତିଜ୍ଞା କରିବା, ପୁଣି ଦ୍ୱିତୀୟ ତରଂଗରେ ସେଇ ଆଶ୍ରୟଦାତା ଗଦାଧରର ପ୍ରେମିକା ଅନିମାର ଅଂଗରେଖା କଥା ଚିନ୍ତା କରି ଉତ୍‌ଫୁଲ୍ଲ ହେବା ଏବଂ ଅନିମା ଚେତାଶୂନ୍ୟ ଅବସ୍ଥାରେ ଗଦାଧର ଡାକ୍ତରଙ୍କୁ ଡାକିବା ପାଇଁ ବାହାରକୁ ଯାଇଥିବା ଅବସ୍ଥାରେ ଗଳ୍ପନାୟକ ଚେତାହୀନ ଅନିମାକୁ ରମଣ କରିବା ଏବଂ ପରେ ବିବେକବୋଧରେ ତାର ଆତ୍ମା ବିଳାପକରି ଉଠିବା ମଣିଷର ମନଅଭ୍ୟନ୍ତରର କାମନା ଓ ବାସନା (Libido) ର ଅକୃପଣ ଗଳ୍ପଛାପ କନ୍‌ହେଇଙ୍କ ସୃଷ୍ଟିରେ ସାହସିକତା ଅର୍ଜନ କରିଛି । ତତ୍‌ସହିତ ନୈତିକ ଓ ମାନବିକ ଉପଲବ୍‌ଧିରେ ପାପବୋଧ ଓ ଯୌନାତିରିକ୍ତ ସଂବେଦନାରେ ଉଚ୍ଛୁଳି ଉଠିଛି । ସବୁଠୁଁ ଗୁରୁତ୍ୱପୂର୍ଣ୍ଣ ଯେ ଆଶ୍ରୟଦାତା ଗଦାଧରର ଟଂକାକୁ ଗଳ୍ପନାୟକ ନେଇଯାଇଥିଲେ ବି କନ୍‌ହେଇଲାଲ ଏହାକୁ ଚୋରି ବୋଲି କହିନାହାନ୍ତି କି ଗଦାଧରର ବାଗ୍‌ଦତ୍ତାକୁ ରମଣ କରିବାକୁ ଧର୍ଷଣ ବୋଲି ଉଲ୍ଲେଖ କରିନାହାନ୍ତି । ଯେଉଁ ପ୍ରତିକ୍ରିୟା ଗାଳ୍ପିକଙ୍କର ସୃଷ୍ଟି ହୋଇଛି ତାହା ମାନବିକ ସଂବେଦନାର, ପାପ ବା ଅପରାଧବୋଧର ଅନୁଶୋଚନା ନୁହେଁ । ମଣିଷର ସ୍ୱାଭାବିକ କାମନା, ଇଚ୍ଛାକୁ ନିଷ୍ଠୁରତାର ବେଡ଼ିରେ ଶୃଙ୍ଖଳିତ କରିନାହାନ୍ତି ଏବଂ ସେଭଳି ସତ୍ତାକୁ ସେ ଦେଇଛନ୍ତି ସ୍ୱୀକୃତି । ଏଠାରେ କାହାଣୀ ବା ଚରିତ୍ର ମୁଖ୍ୟ ନୁହେଁ, ମୁଖ୍ୟ ହେଉଛି ମାନବୀୟ ସତ୍ତା ଓ ସଂବେଦନା । ପାଠକର ପାରଂପରିକ ଆଦର୍ଶ ଏଭଳି ଗପଠାରେ ଧକ୍‌କା ଖାଏ ସତ କିଂତୁ ଆଟୋପହୀନ ଅନୁଭୂତିର ସତ୍ୟଶୀଳତାକୁ, ବ୍ୟକ୍ତି ବାସ୍ତବତାକୁ ବେଶ୍ ଚିହ୍ନେଇଦିଏ । ପ୍ରତି ଗପରେ କନ୍‌ହେଇ ଚେତନା ବେଶ୍ ଯୁଝୁଛି ପାରଂପରିକ ଚେତନାର ଚୌହଦିକୁ । ଏହି ବ୍ୟକ୍ତି ବାସ୍ତବତା କନ୍‌ହେଇଙ୍କ ସୃଷ୍ଟିଶିଳ୍ପରେ ସମସାମୟିକତାରୁ ଚିରନ୍ତନତା ଲାଭକରି ସାର୍ବଜନୀନ

୩୪. ଉପନ୍ୟାସ 'ଆହତ ସ୍ୱପ୍ନ', କନ୍‌ହେଇ କଥାଘର

ବିଶ୍ୱପ୍ରେକ୍ଷୀରେ ସମାହିତ ହୋଇଯାଇଛି । "ଅଫେରା ଚାରୋଟି ପାଦର ମୁକ୍ତ ରଂଗିନ ଆକାଶ ପାଇଁ ବେଳାଭୂମିର ବେଲୁନବାଲା ଓ ଚଣାବିକାଳୀ ଝିଅ" ଗପରେ ସେ ଲେଖନ୍ତି "ଏଠାରେ ବଂଚିବାର ଯଥେଷ୍ଟ ଉପାଦାନ ଖୁଂଦି ହୋଇ ରହିଛି । ଭିକମାଗି ହେଉ ବା ଚୋରିକରି ହେଉ ବଂଚି ଜାଣିଲେ ଖୁବ୍ ଆନନ୍ଦରେ ବଂଚି ଯାଇହେବ ।"[୩୫] ଜୀବନ ପ୍ରେମୀ କନ୍‌ହେଇଙ୍କ ଏହି ପ୍ରାଣପୂର୍ଣ୍ଣ ଆଶାବାଦୀ ଆହ୍ୱାନ ଏକ ନିୟମ-ନିଗଡ଼-ବଂଧା, ରୁଦ୍ଧ ସାମାଜିକ ମୃତ୍ୟୁସ୍ପର୍ଶୀ ଜୀବନ ବିରୁଦ୍ଧରେ କେଡ଼େ ତୀବ୍ର ପ୍ରତିବାଦ ନୁହେଁ ଯେ! ବଂଚିବାକୁ ହେବ ପ୍ରାଣମୟ ମହକ ତରଂଗରେ, ଭିକମାଗି ହେଉ ବା ଚୋରିକରି ହେଉ । ଜୀବନବାଦ ସପକ୍ଷରେ କେଡ଼େ ଉଦାତ୍ତ ସେ କଂଠ ।

## ।। ଚାରି ।।

**ଆତ୍ମକୈନ୍ଦ୍ରିକତାରୁ ଆତ୍ମସଚେତନତା, ମୃତ୍ୟୁ ଓ ଭୟଙ୍କରତା, ପ୍ରେମ ଓ ଅଧିକାରବାଦ ବିଚ୍ଛିନ୍ନତାବୋଧ ଓ ଅସ୍ତିତ୍ୱର ଉଜାଗର ଫର୍ଦ୍ଦ :**

କନ୍‌ହେଇଙ୍କ ଗପଗୁଡ଼ିକରେ ଗପନାୟକ ନିଜେ ହିଁ କନ୍‌ହେଇଲାଲ । ଏହି ଆତ୍ମକୈନ୍ଦ୍ରିକ ଜୀବନବୃତ୍ତ ତେଣୁ ଅତୀତ କାଳର ଶୈଳୀରେ ଉଦ୍‌ଭାସିତ । ଏହି ଗପ ଗୁଡ଼ିକରେ କାର୍ଯ୍ୟଜଗତ (Subjectivity), ଚିନ୍ତାଜଗତ (Objectivity) ର ଏକ ସମନ୍ୱୟ ରହିଛି । ତେଣୁ ଗପ ଲେଖିବା ପାଇଁ ବା ସୃଷ୍ଟିପାଇଁ ଗପ ଲେଖାଯାଇନାହିଁ, ଲେଖି ହେଇଯାଇଛି । ବ୍ୟକ୍ତି-ଜୀବନ ହିଁ ହେଇଛି ଗପ, ଉପନ୍ୟାସ । ଗପନାୟକ ଏକ ସ୍ୱପ୍ନାଦର୍ଶକୁ ବାସ୍ତବ ଜୀବନରେ ରୂପାୟିତ କରିବାକୁ ଅଗ୍ରସର ହେଲାବେଳେ ବିଭିନ୍ନ ଚରିତ୍ର, ପରିବେଶ ଓ ପ୍ରେମିକାମାନେ ପାରଂପରିକତାର ଗଣ୍ଡିରୁ ମୁକୁଳି ପାରୁନଥିବାରୁ ଗପନାୟକ କନ୍‌ହେଇଲାଲ କାର୍ଯ୍ୟଜଗତକୁ ବାରଂବାର ନିରୀକ୍ଷଣ କରୁଛନ୍ତି, ତଉଲୁଛନ୍ତି, ସ୍ୱପ୍ନ ଓ ଚିନ୍ତାଜଗତରେ । ଏବଂ ଆତ୍ମସଚେତନ ହେଇପଡ଼ୁଛନ୍ତି ଗପନାୟକ । ବାତାବରଣ, ପ୍ରେମିକା ଓ ଚରିତ୍ରମାନଙ୍କ ପାଇଁ ଗୋଟେ ଗୋଟେ condition ସାଇତି ଯାଉଛନ୍ତି । ସେ condition ଟି ବୃହତ୍ତର ମାନବିକ ସ୍ୱାଧୀନତାର, ସ୍ୱତିର ଉତ୍ତରଣ ପର୍ବର । ପୁଣି ଏହି ଉତ୍ତରଣ ଏକ ବୈରାଗ୍ୟ ଉତ୍ତରଣ ନୁହେଁ, ପରଂତୁ ଘଟଣାଗ୍ରସ୍ତ ମାନବୀୟ ଉତ୍ତରଣ । ଲେଖକଙ୍କର ଟ୍ରାଫିକ୍‌ବିହୀନ ଇଗୋ (Ego) ତାଙ୍କର ସାରା ସୃଷ୍ଟି ପ୍ରକ୍ରିୟାକୁ ମହକିତ କରିଛି, ଯାହା ଅସ୍ତିତ୍ୱବାଦୀ ଚେତନାଦର୍ଶର କଥା । ମଣିଷର ଅସ୍ତିତ୍ୱ (Human existance) ଓ ବ୍ୟକ୍ତି ଅସ୍ତିତ୍ୱ (Personal existance) କୁ ନିଦା ଭାବରେ ଚିହ୍ନାଇବା ପାଇଁ ସେ 'ଦୁର୍ଘଟଣା' ଉପନ୍ୟାସରେ ଲେଖନ୍ତି– "ମୋର ଇଚ୍ଛା ହେଉଥିଲା ସେଇ ଲୋକଟା ଆମ ପାଖରେ ବହେ କାନ୍ଦନ୍ତା କି । ମୁଁ ତାର ପିଠି ଆଉଁଶି ଦିଅନ୍ତି। କହନ୍ତି, ଦୁର୍ଘଟଣାକୁ ବେଖାତିରକରି ବସ୍‌ରେ ଚଢ଼ିବା ଉଚିତ ନୁହେଁ । ବଂଚିବା ତ ଗୋଟେ ବଡ଼

୩୫. ଅଫେରା ଚାରୋଟି ପାଦର..., କନ୍‌ହେଇ କଥାଘର

ଦୁର୍ଘଟଣା । ଦୁଃସ୍ୱପ୍ନ ଦେଖିଲେ କେବଳ ଦୁର୍ଘଟଣା ଘଟେ ନାହିଁ । ଦୁଃସ୍ୱପ୍ନ ଗୋଟିଏ ଦୁର୍ଘଟଣା। ଦୁର୍ଘଟଣା ନଘଟିବାଯାଏ ସମୟକୁ ଜାଣିହୁଏ ନାହିଁ । କେବଳ ସେତେବେଳେ ସମୟ ଜାଣିହୁଏ ଯେତେବେଳେ ଟେବୁଲ ଉପରକୁ ନୂଆ ତାରିଖ ଫେରିଆସେ, ଅଫିସ୍‌ରେ ଦରମା ମିଳେ, ପୁରୁଣା କ୍ୟାଲେଣ୍ଡର ବହିର ମଲାଟ ହେଇଯାଏ । ସେତେବେଳେ ବୁଝିହୁଏ ଗଲା, ସମୟ ଚାଲିଗଲା । ଅନୁଭୂତିଶୂନ୍ୟ ହୋଇ ସମୟ ପଳାଇଲା, ଘଟଣାହୀନ ହୋଇ ଦିନ ଗଡ଼ିଗଲା । ତେଣୁ ସମୟ ଓ ଜୀବନ ଜାଣିବା ପାଇଁ ଦୁର୍ଘଟଣାର ସାମ୍ନା ହେବା ଉଚିତ ।[୩୬]

ଏକ ମାପଚୁପ, ଶୃଙ୍ଖଳିତ, ପ୍ରତିକ୍ରିୟାହୀନ ସ୍ଥିତପ୍ରଜ୍ଞର ଜୀବନ ସଭ୍ୟତା, ସଂସ୍କୃତି ପାଇଁ ଏକ ବାଧକ, ଏକ ପରାଧୀନତା କନ୍‌ହେଇ-ମାନସରେ। ଅଂତରଂଗତା, ପ୍ରାଣପ୍ରାଚୁର୍ଯ୍ୟ ଓ ଗଭୀର ମାନବିକବୋଧରେ ମଣ୍ଡିତ ମଣିଷର ଅନ୍ୟନାମ ଦୁର୍ଘଟଣାର ମଣିଷ । ବିଶ୍ୱଯୁଦ୍ଧ ପରବର୍ତ୍ତୀ ସ୍ୱାଧୀନୋତ୍ତର ଭାରତୀୟ ମଣିଷର ଜଟିଳ ଜୀବନର ପ୍ରତିଟି ମୁହୂର୍ତ୍ତ ହେଉଛି ଦୁର୍ଘଟଣାର ମୁହୂର୍ତ୍ତ । ଉଦ୍‌ବେଗ, ଆବେଗ, ଖର ନିଶ୍ୱାସ ଓ ଉତ୍ତେଜନା ହେଉଛି ମଣିଷର ସହଚର, ପ୍ରକାରାନ୍ତରେ ମାନବିକବୋଧର ନିର୍ଯାସ । 'ଦୁର୍ଘଟଣା' ଉପନ୍ୟାସରେ ସେ ଲେଖିଛନ୍ତି- "ମୁଁ ପ୍ରକୃତରେ ଲୋକମାନଙ୍କୁ ଭଲପାଏଁ ସେମାନେ କରୁଣ କରୁଣ ଦେଖାଗଲେ । ସେମାନଙ୍କୁ ଭଲଲାଗେ ସେମାନଙ୍କ ଦୁର୍ଦ୍ଦଶାଗ୍ରସ୍ତ ମୁହୂର୍ତ୍ତରେ । ତେଣୁ ମୁଁ ବୋଧହୁଏ ମଇଳାଲୁଗା ପିଂଧେ । ଦାଢ଼ି ବଢ଼ାଇ ରଖେ । ଦର୍ପଣରେ ଯେତେବେଳେ କରୁଣ ମୁହଁ ଦେଖେ, ସେତେବେଳେ ମୋ ପ୍ରତି ମୋର ମମତା ବଢ଼ିଯାଏ । ନିଜକୁ ଭଲପାଇବାକୁ ଆରଂଭ କରେ ।"[୩୭] ସେଇ ଉପନ୍ୟାସରେ ନାୟକର ସାନଭଉଣୀ ଲୁସି ପାଣିରେ ବୁଡ଼ିଯାଇ ମରିବା ପରେ ବାପାଙ୍କ ମୁହଁର କାରୁଣ୍ୟ ଓ ଦାଢ଼ିର ଛାପ ନାୟକର ଚିରସ୍ମୃତି ପାଲଟିଛି । ଏବଂ କନ୍‌ହେଇଲାଲ କହନ୍ତି– "ମୁଁ ଆଜି ବୁଝୁଛି ସେଇ ଦିନମାନଙ୍କରେ ବାପାଙ୍କୁ ଯେତେ ଭଲପାଉଥିଲି କେବେ ଆଉ ସେତେ ଭଲ ପାଇପାରିବି ନାହିଁ ।[୩୮] ମଣିଷର ଦୁଃଖ ଓ କାରୁଣ୍ୟହିଁ ତାର ମାନବିକବୋଧର ନିବିଡ଼ତମ ପରିପ୍ରକାଶ କନ୍‌ହେଇ ମାନସରେ ଏବଂ ସେଭଳି କାରୁଣ୍ୟ ହିଁ ଦୁର୍ଘଟଣାର ଫଳଶ୍ରୁତି । କାରୁଣ୍ୟରେ ଅଭାବରେ ମଣିଷର ଅନୁଭବ ଓ ମାନବିକତା ଦରିଦ୍ର । କନ୍‌ହେଇ ଚେତନାଜଗତରେ ଏ ଜଟିଳତମ ପରିପ୍ରକାଶ ପ୍ରଥମେ ମଣିଷର ସ୍ଥିତିକୁ, ମାନବିକବୋଧର ଅସ୍ତିତ୍ୱକୁ ଜାହିର କରେ । ଏକ ଜୀବନବାଦୀ ଦାର୍ଶନିକ ସତ୍ତାର ମୂର୍ତ୍ତ ପରିପ୍ରକାଶ ଘଟିଛି କନ୍‌ହେଇଙ୍କ ଉପନ୍ୟାସରେ ସତ କିଂତୁ ଦାର୍ଶନିକତାର ବ୍ୟାଧି ଘାରିନାହିଁ । 'ଆହତ ସ୍ୱପ୍ନ' ଉପନ୍ୟାସରେ

୩୬. ଉପନ୍ୟାସ 'ଦୁର୍ଘଟଣା', କନ୍‌ହେଇ କଥାଘର

୩୭. ତତ୍ରୈବ

୩୮. ତତ୍ରୈବ

ଲେଖନ୍ତି ସେ– 'ମୋର ଫିଲୋସଫି ନଥିଲା କିଂବା ମୁଁ କେବେ ଦର୍ଶନ ପଢ଼ିନି । ମୁଁ ଗୂଢ଼ତତ୍ତ୍ୱ ବିଷୟରେ କେବେ ଭାବେନା । ମୋ ପାଖରେ ଅନୁଭବ ହିଁ ସବୁକିଛି ।"(୩୯) ଏଥିରୁ ସ୍ପଷ୍ଟ ଉପଲବ୍‌ଧି କରିହେବ ତାଙ୍କ ସୃଷ୍ଟିମାନସ ଉଭୟ ଆତ୍ମଲୁପ୍ତି ଓ ଆତ୍ମ ସଚେତନତା ମଧ୍ୟଦେଇ ଉଭା ପହରା ।

ପୂର୍ବରୁ ସୂଚିତ ହେଇଚି ଯେ ତାଙ୍କ ମାନସରେ ଖଳ ବା Devil ର କିଛି ଅସ୍ତିତ୍ୱ ନାହିଁ, ନାହିଁ ବି କୌଣସି ଚରିତ୍ରର ପାପ ଓ ଅପରାଧବୋଧ । ଯାହାକିଛି ପାପ ବା ଅପରାଧବୋଧ ପାଠକ କୁ ଛୁଏଁ ତାହା କିଂତୁ କନ୍‌ହେଇ ମାନସର ଜୀବନ ବୃତ୍ତରେ ସମାବିଷ୍ଟ । ତାଙ୍କ ବ୍ୟକ୍ତିଜୀବନରେ ବହୁ ଅଭାବ ଓ ଯନ୍ତ୍ରଣାର ବେଦୀରେ ସେ ସିଝୁଥିଲେ ମଧ୍ୟ ଅଭାବବୋଧ ତାଙ୍କର ନ ଥିଲା । କୌଣସି ଚରିତ୍ରକୁ ସେ ତାଙ୍କର ସୃଷ୍ଟିରେ ଭର୍ତ୍ସନା ବା ଦୋଷାରୋପ କରିନାହାନ୍ତି କି କୌଣସି ଚରିତ୍ର ବିରୁଦ୍ଧରେ ତାଙ୍କର କୌଣସି ଅଭିଯୋଗ ନାହିଁ । ପୁନଶ୍ଚ ତାଙ୍କ ସୃଷ୍ଟିଗୁଡ଼ିକ ଆତ୍ମ-ଚରିତ୍ରାଙ୍କିତ । ଏବଂ ଅନ୍ୟ ଚରିତ୍ରଗୁଡ଼ିକ ତାଙ୍କ ଗପ ଉପନ୍ୟାସଗୁଡ଼ିକୁ ଜୀବଂତ କରିଛନ୍ତି । ସେମାନେ କନ୍‌ହେଇଙ୍କ ଆତ୍ମ-ଚରିତ୍ରକୁ ନିରୀକ୍ଷଣ ଓ ତାଙ୍କ ବୌଦ୍ଧିକମାନସକୁ ଉଜାଗର କରିବାରେ ହିଁ ନିବିଷ୍ଟ ରହିଛନ୍ତି । ଅନ୍ୟ ଚରିତ୍ର ବିନା ଆତ୍ମ-ଚରିତ୍ରର ସଂଧାନ ଯେ ଅସଂଭବ। ନିଷ୍କପଟ ସତ୍ୟ ଯେ, ସେ ନିଜକୁ 'ଦାୟୀ'ର ଯୂପକାଷ୍ଠରେ ବଳିଦେଇ ଉତ୍ତେଜନାରେ ଥରିଛନ୍ତି । ଭୟଙ୍କରତାର ଅନୁଭବରେ ଜଡ଼ସଡ଼ ହେଇଛନ୍ତି । ଏକ ଉତ୍ତରିତ ଅଧ୍ୟାତ୍ମବୋଧରୁ ଅତିବାସ୍ତବତା (Surrealism)ର ସରଣୀରେ ଆତଯାତ କନ୍‌ହେଇ ମାନସ ପ୍ରତିମୁହୂର୍ତ୍ତରେ ଭୟଙ୍କରତାର ସାମ୍ନା କରୁଛି । କାରଣ, କନ୍‌ହେଇଙ୍କର ପ୍ରତିଟି ମୁହୂର୍ତ୍ତ 'ଅନ୍ୟଜୀବନ' ସହ ସଂଯୁକ୍ତ ହେଇରହିଛି । ଅଥଚ ଶିଳ୍ପୀସତ୍ତାଟି ଆତ୍ମ-ନିରୀକ୍ଷଣରେ ବ୍ୟସ୍ତ । ଏହି ଅତି ଜଟିଳ କ୍ରିୟା ସୃଜନ କ୍ଷେତ୍ରରେ ତେଣୁ ଏକ ବିଚିତ୍ର ଶୈଳୀ ଏବଂ ଟେକ୍‌ନିକ୍‌ର ଉଦ୍ଭାବନ କରିଛି । 'ଅନ୍ୟ-ନିର୍ଭର ଜୀବନ' ଓ 'ଆତ୍ମ-ନିରୀକ୍ଷଣ-ସୃଜନ'ର ଏକ ସଦ୍‌ଭାବୀ ମିଳନ ପରିବର୍ତ୍ତେ ସଂଘର୍ଷ ନଥିବାରୁ ଏହି ଉଭୟ ଜୀବନ ଓ ସୃଜନଶୀଳତା ପରସ୍ପରକୁ ଭୟଙ୍କରତାର ବେଦୀରେ ହିଁ ଚାହିଁ ରହିଛନ୍ତି । ରିକ୍ତ, ପୀଡ଼ିତ ମଣିଷର ବାସ୍ତବ ଜୀବନ କଳାର ସୃଜନପୀଢରେ ହେଇଉଠେ ଆହୁରି ଭୟଙ୍କର । ଜାଗତିକ, ସାମାଜିକ ଓ ବ୍ୟକ୍ତି ଜୀବନର ଅସହାୟବୋଧ, ଏକାକୀପଣିଆ, 'ମୋର କେହି ନାହିଁ, କିଛି ନାହିଁ' ଭାବରୁ ଆଧ୍ୟାତ୍ମିକ ଉତ୍ତରଣ ବା ମୁକ୍ତିର ପରବର୍ତ୍ତୀ ସତ୍ତା ପୁନର୍ବାର ସେଇ ଆଖି ପାଉନଥିବା ଯନ୍ତ୍ରଣାର ବେଦୀକୁ ହୋଇ ଆସିବାହିଁ କନ୍‌ହେଇ ମାନସର ଭୟଙ୍କରତା । କନହେଇଲାଲ ଯେଉଁ ଭୟଙ୍କରତାର ସାମ୍ନାସାମ୍ନି ହେଇଥିଲେ ତାହା ସାମାଜିକ ଭୟଙ୍କରତା, ଆଧ୍ୟାତ୍ମିକ ଭୟଙ୍କରତା ନୁହେଁ, ଯେଉଁ ଭୟଙ୍କରତା ସହ ସଂଘର୍ଷ କରି ଉତ୍ତୀର୍ଣ୍ଣ ହେବାର ପରିଣତି ତାଙ୍କ 'ଧୃତରାଷ୍ଟ୍ରର

୩୯. 'ଆହତ ସ୍ୱପ୍ନ', କନ୍‌ହେଇ କଥାଘର

ଆଖି' ଗଳ୍ପ (ଏ ସଂପର୍କରେ ପରେ ବିଶେଷ ଆଲୋଚନା ହୋଇଛି) । ଆଧ୍ୟାତ୍ମିକ ଭୟଂକରତାର ଅନୁଭବ ଥିଲେ ପ୍ରେମର ଏଭଳି ଐକାନ୍ତିକ ଓ ଅଂତରଂଗ ସମ୍ରାଟ ସେ ହୋଇପାରିନଥାନ୍ତେ ।

ଏହି ଭୟଂକରତା (Horror) ର ଅନୁଭବ ସହ ମୃତ୍ୟୁବୋଧ ଓ ପ୍ରେମ ନିରବଚ୍ଛିନ୍ନ ଭାବରେ ସହଯୁକ୍ତ । ପ୍ରେମହିଁ ମୃତ୍ୟୁଂଜୟ । ପ୍ରେମରୁ ଧକ୍କା ଖାଇବା, ବଂଚିତ ହୋଇଯିବାର ମୁହୁର୍ମୁହୁଃ ଆଶଂକା ମୃତ୍ୟୁଭୟର କୁହେଳି ଭିତରେ କନ୍ହେଇଲାଲଙ୍କୁ ଛଟପଟ କରିଛି ଏବଂ ମୃତ୍ୟୁ ବୋଧହିଁ ପ୍ରେମକୁ କରିଛି ଗଭୀର ଆକୁଳ । 'ଅସଂଭବ ମୃତ୍ୟୁ' ଗପରେ ମୃତ୍ୟୁଚେତନା ପ୍ରେମିକା ଦେବୀର ସହଚରୀ ହୋଇ ଉଭା ହୋଇଚି ଏବଂ ମୁହୁର୍ମୁହୁଃ ଏକ ଜାଗ୍ରତ ଯମଦୂତ ପରି କନ୍ହେଇ ମାନସକୁ ଆଚ୍ଛାଦିତ କରି ଭୟ ପ୍ରଦର୍ଶନ କରିଚାଲିଛି । ମୃତ୍ୟୁ-ମୁକ୍ତି-ପ୍ରୟାସୀ ଆତ୍ମା ବ୍ୟାକୁଳଭାବରେ ଦେବୀର ପ୍ରେମକୁ ଆଉଜାଇ ହୋଇ ପଡ଼ିଛି । ଦୁଇଟି ବିପରୀତ ଅଥଚ ସହୋଦରୀ ଚେତନା ଆବେଗଗତ ସ୍ତରରେ କନ୍ହେଇ ମାନସକୁ ଭୟଙ୍କରତାରେ ଛଡ଼ାଇ ରଖିଛି ।

ପ୍ରେମରେ ମିଳନର ଦାବି ରହିଛି, ବିଚ୍ଛେଦ ଓ ସନ୍ଦେହର ଦାବି ବି ରହିଛି କିଂତୁ ଅଧିକାର ନାହିଁ । ଅଧିକାର ଜାହିର କରିବା ହିଁ ପ୍ରେମକୁ ଜଡ଼ରେ ପରିଣତ କରିବା, ପ୍ରେମିକକୁ ଦାସ ବା ପ୍ରେମିକାକୁ ଦାସୀ ସ୍ତରରେ ଅବତୀର୍ଣ୍ଣ କରାଇବା । ପ୍ରେମ ଏକ ଚୈତନ୍ୟଶୀଳ ଆଭା ହୋଇଥିବାରୁ ପ୍ରେମିକ ବା ପ୍ରେମିକା ପ୍ରେମକୁ ଏକ ଆୟୁଧ କରି ଜଣେ ଆର ଜଣକ ଉପରେ ଅଧିକାର ଜାହିର କରିବା ପ୍ରେମ ପ୍ରତି ଏକ ଅପମାନ, ଏକ ଦୁର୍ବଳ ଅବବୋଧ । କନ୍ହେଇଲାଲଙ୍କର ବ୍ୟକ୍ତିସତ୍ତା ପ୍ରେମପର୍ବରେ କାହାରି ଉପରେ ଅଧିକାର ଜାହିର କରିନାହାନ୍ତି ।

ତାଙ୍କର ଏକ ବହୁଚର୍ଚ୍ଚିତ ଗପ 'ଅଫେରା ଚାରୋଟି ପାଦର ମୁକ୍ତ ରଂଗିନ ଆକାଶପାଇଁ ବେଳାଭୂମିର ବେଲୁନବାଲା ଓ ଚଣା ବିକାଳୀ ଝିଅ'ରେ ଗପ-ନାୟକ ବେଲୁନବାଲା ପ୍ରେମର ଆବେଗଗତ ଅଧିକାରକୁ ଜାହିର କରିବାକୁ ଯାଇ ହରାଇଛି ଚଣାବିକାଳୀ ଝିଅକୁ । ବେଲୁନବାଲାର ବହୁ ସଂଚିତ ପ୍ରେମର ପ୍ରତୀକ ରଂଗିନ ବେଲୁନଟିକୁ ସେ ନିଜେ ଫୁଟାଇଦେଇଛି, ନିଜ ଅଜଣା ଆବେଗରେ । ଅନ୍ୟ ଏକ ଶ୍ରେଷ୍ଠ ଗପ 'ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର' ରେ ପ୍ରେମର ନୈତିକ ଅଧିକାର ସାବ୍ୟସ୍ତ କରିବାକୁ ଯାଇ ପ୍ରେମିକ ଆତ୍ମହତ୍ୟା କରିଛି ।

କନ୍ହେଇ ପ୍ରେମସତ୍ତା ପ୍ରେମର ଅଧିକାରକୁ ସ୍ୱୀକାର କରିବା ତ ଦୂରର କଥା, ପ୍ରେମର ଜୀବଂତ, ବୈଚିତ୍ର୍ୟପୂର୍ଣ୍ଣ, ଆଧ୍ୟାତ୍ମିକ ସତ୍ତାକୁ ଖୋଜି ଚାଲିଛି ନିରନ୍ତର ଏବଂ ସେଇ ଅନ୍ୱେଷା ପର୍ବରେ ଜଣକ ପରେ ଜଣେ ନାରୀ (ପ୍ରେମିକା) ନିଃଶେଷ ହୋଇଯାଇଛନ୍ତି । 'ଦୁର୍ଘଟଣା' ଉପନ୍ୟାସରେ ସେ ସ୍ପଷ୍ଟ ଉଲ୍ଲେଖ କରନ୍ତି– "ପୃଥିବୀରେ

ସମୟ ଖୁବ୍ ଅଳ୍ପ । ଏଇ ସମୟ ମଧ୍ୟରେ ଅନେକ କାର୍ଯ୍ୟ କରିଯିବାକୁ ହେବ। ଅନେକ କଥା ଜାଣିଯିବାକୁ ହେବ ।

ମୁଁ ମେନକାର ଘଂଟାକୁ ଚାହିଁଲି ଓ ବୁଝିପାରିଲି– ପ୍ରକୃତରେ ମୁଁ ନିର୍ଦ୍ଦିଷ୍ଟଭାବେ କୌଣସି ନାରୀକୁ ଚାହେଁ ନାହିଁ । କେବଳ ଖୋଜେ, ଗାଁ ଗଣ୍ଡା, ସହର ନଗର ଛାଡ଼ି ଜଂଗଲ ପାହାଡ଼ ପର୍ବତ ଭିତରେ ଅଦୃଶ୍ୟ ଝରଣାର ଅନୁସଂଧାନ। ସୀମା, ନମୁନ୍ୟ, ମେନକା ସେଇ ଅନୁସଂଧାନର ଗୋଟିଏ ଗୋଟିଏ ଚିହ୍ନ ।"(୪୦)

ପ୍ରେମ ଅନ୍ୱେଷା ହିଁ ଆତ୍ମ-ଅନ୍ୱେଷାର ଅନ୍ୟତମ । କୂଳ ପରେ କୂଳ ଖୋଜି ଖୋଜି ନଦୀ ଧାଇଁଯାଉଥିବା ପରି କନ୍‌ହେଇଙ୍କର ପ୍ରେମ ବହୁ ପ୍ରେମିକାଙ୍କର ସତ୍ତାକୁ ଛୁଇଁ ଛୁଇଁ ଯାଇଛି ସତ, କିଂତୁ ପ୍ରତିଟି ପ୍ରେମିକାର ନିଜସ୍ୱ ଅନୁଭୂତି ଓ ସ୍ୱପ୍ନର ପୃଥିବୀ ରହିଛି । ସେ କ୍ଷେତ୍ରରେ ପ୍ରେମିକ ଧକ୍‌କା ଖାଇବା ସ୍ୱାଭାବିକ । ଦୁଇଟି ସ୍ୱାଧୀନ ସତ୍ତା ବା ପରସ୍ପରକୁ ସ୍ୱାଧୀନତା ପ୍ରଦାନ କରୁଥିବା ପ୍ରେମିକ ପ୍ରେମିକାଙ୍କର ଏକତ୍ର-ସହାବସ୍ଥାନ ଯେପରି ସଂଭବ ଏକତ୍ର-ବିଚ୍ଛିନ୍ନ ହେବା ମଧ୍ୟ ସେପରି ସଂଭବ । ପୁଣି, ପ୍ରେମରେ ଅନ୍ୱେଷା ଏକ ବଳୀୟାନ ଶକ୍ତି ହେଇଥିବାରୁ ଏହା ପ୍ରେମିକ ଓ ପ୍ରେମିକାଙ୍କୁ ପ୍ରେମ ସହ ପ୍ରେମାତିରିକ୍ତ ଅନୁଭବକୁ ତର୍ଜମା କରେ । ଏବଂ ତର୍ଜମା ହିଁ ଉଭୟ ପ୍ରେମିକ ଓ ପ୍ରେମିକାଙ୍କୁ ବିଚ୍ଛିନ୍ନ କରେ । କନ୍‌ହେଇ ଚେତନାସ୍ତର ଏକ ବହମାନ ଅନ୍ୱେଷାର ସତ୍ତା ହୋଇଥିବାରୁ ପ୍ରେମ ଅନ୍ୱେଷା ହିଁ ଜୀବନ-ଅନ୍ୱେଷାରେ ପରିଣତ ହୋଇଛି । ଏ ପରିପ୍ରେକ୍ଷୀରେ ଐକାନ୍ତିକ ପ୍ରେମ କାରୁଣ୍ୟର ଢେଉରେ ସନ୍ତୁଳିତ ହେଉଥାଏ, ଦୃପ୍ତ ପିପାସାର ପରିଧିରେ ଆଉଟି ପାଉଟି ହେଉଥାଏ । ଆହ୍ୱାନ ଦେଇ ଚାଲିଥାଏ ପ୍ରେମ-ଅନ୍ୱେଷାର ଏହି ହିଁ ଚଉତରା । ଏବଂ ନିରନ୍ତର ଅନ୍ୱେଷାରୁ ଯେଉଁ କୂଳମାନଙ୍କରେ ସେ ଆଘାତ ପାଉଥାଏ ତାହା ହତାଶା, ଅସହାୟବୋଧ ଓ ବିଚ୍ଛିନ୍ନତାବୋଧ । କନ୍‌ହେଇ ଚେତନାରେ ଏହି ବିଚ୍ଛିନ୍ନତାବୋଧର ଚିରନ୍ତନୀ ସ୍ୱଭାବଟି ସ୍ପଷ୍ଟ ହେଇଉଠେ ଯେତେବେଳେ ସେ ଲେଖନ୍ତି– 'ପୃଥିବୀରେ କୌଣସି ଜିନିଷର ଅଧିକାର ଦୀର୍ଘଦିନ ସ୍ଥାୟୀ ହୁଏ ନାହିଁ । ତୋ ଘର ଦକ୍ଷିଣପଟରେ ଯେଉଁ ଘର ଦେଖୁଛୁ ସେ ଘର ଦିନେ ଗୋଟିଏ ମଣିଷର ଥିଲା, ତାହା ଆଜି ଉଦ୍ଭିଦର, ବାୟା ଚଢ଼େଇର, ସରୀସୃପର । ତେଣୁ ମୁଁ ତୋର– ଏକଥା ଭାବିବା ମୂର୍ଖତା । ମୁଁ ଚାହେଁ, ତୁ ଦୁର୍ଲ୍ଲଭ ହେଇଯା, ଦୁଷ୍ପ୍ରାପ୍ୟ ହେଇଯା, ରହସ୍ୟମୟୀ ହେଇଯାଆ । କେଉଁ ଏକ ଘନଘୋର ରାତିରେ ଶ୍ମଶାନର ସାହାଡ଼ାଗଛ ମୂଳେ ଛିଡ଼ାହୋଇ ଯେପରି ତୋଅରି ନାମଧରି ମୁଁ ଚିତ୍‌କାର କରେ, କେଉଁ ଏକ ବିଷୁବ ମଧ୍ୟାହ୍ନରେ ଭୀଷଣ ବାଲିଝଡ଼ ମଧ୍ୟରେ ତୋତେ ଯେପରି ଅନ୍ୱେଷଣ କରେ । ତା'ହେଲେ ମୋର ଭଲ ପାଇବା ସାର୍ଥକ ହେବ ଏବଂ ମୁଁ ଅନୁଭବ କରିବି ପ୍ରକୃତରେ ବଂଚିରହିଚି ବୋଲି ।

୪୦. 'ଦୁର୍ଘଟଣା' କନ୍‌ହେଇ କଥାଘର

ତୁ ବି ଏଭଳି ଯନ୍ତ୍ରଣା ମଧ୍ୟରୁ ବଂଚିବାର ଉପାଦାନ ସଂଗ୍ରହ କର ଏବଂ ମୋତେ ଭଲପାଇ ତୁ ଯଦି ସାଂଘାତିକ ଭୁଲ କରିଛୁ ବୋଲି ଭାବିନେଉ, ତା'ହେଲେ ମୁଁ ଆଦୌ ଦୁଃଖିତ ନୁହେଁ ଏବଂ ଯଦି ସଂଭବ ହୁଏ ତୁ ମୋତେ କ୍ଷମା କରିପାରୁ ।"[୪୧] ଲକ୍ଷ୍ୟ କରିବାର କଥା, ଏହା ଏକ ସମାଜତତ୍ତ୍ୱବିତ୍ ବା ଦାର୍ଶନିକ ବା ମନସ୍ତତ୍ତ୍ୱବିତ୍‌ର ଗବେଷଣା-ଲବ୍ଧ ବ୍ୟାଖ୍ୟା ନୁହେଁ, ପ୍ରେମ-କ୍ରାନ୍ତିର ନାୟକ କନ୍‌ହେଇ ଚେତନାରେ ବିଚ୍ଛିନ୍ନତାବୋଧର ଆତ୍ମିକ ବିଭବ ଯେତିକି ଆବେଗମୟ, ସେତିକି ବୌଦ୍ଧିକ । Self-exploration ର ଜୟଯାତ୍ରା । ପ୍ରେମରେ କେବଳ ଆବେଗ ଧର୍ମଟି ଚେତନାର, ବ୍ୟକ୍ତିସତ୍ତାର ଅନ୍ୟ ସମସ୍ତ ବୈଶିଷ୍ଟ୍ୟକୁ ଘୋଡ଼ି ପକାଇ ନଷ୍ଟ କରିପକାଏ । ଚେତନାର ଦୁର୍ବଳସ୍ଥିତିକୁ ହାଜିର କରାଇଦିଏ । ଅନୁଭବଗୁଡ଼ିକ ଉପଲବ୍ଧି ସ୍ତରରେ ସମାର୍ଜିତ ହେବାରୁ ବଂଚିତ ହୁଏ । କିଂତୁ କନ୍‌ହେଇ ପ୍ରେମସତ୍ତା ତାରଲ୍ୟ ଆବେଗରୁ, କାମୁକର ଚାଟୂକ୍ତିରୁ ପ୍ରେମକୁ ସ୍ୱାଧୀନକରି ମୁକ୍ତିଦେବା ପରିପ୍ରେକ୍ଷୀରେ ଉଭୟ ପ୍ରେମିକ ପ୍ରେମିକା ଆତ୍ମ-ସତ୍ତାର ତୀବ୍ର ତାଡ଼ନାରେ, ବିଚ୍ଛିନ୍ନତାର ଅନୁଭବରେ, ନିଜସ୍ୱ ଟାପୁରେ ଦୀପଲଗ୍ନା। ପୃଥିବୀ, ମଣିଷର ଅଧିକାରବୋଧ, ବସ୍ତୁସମୂହର ଭଂଗୁରତା ଓ କ୍ଷଣଶୀଳତା ହିଁ ବିଚ୍ଛିନ୍ନତାବୋଧର ସେତୁ ରୂପେ କନ୍‌ହେଇ ମାନସରେ ଗଭୀର ଆସ୍ଥାନ ଜମେଇଛି । ବସ୍ତୁତତ୍ତ୍ୱ ଅନୁଯାୟୀ ପ୍ରତିଟି ବସ୍ତୁର ମୌଳିକ ଉପାଦାନ ଗୋଟିଏ ଓ ଅଭିନ୍ନ । କିଂତୁ ସଚରାଚର ବସ୍ତୁ ସମୂହ ନିଜସ୍ୱ ଗୁଣ, ଉପାଦାନ ଓ ପ୍ରବୃତ୍ତିରେ ପରସ୍ପରଠାରୁ ଭିନ୍ନ ହେଇ ସ୍ୱତନ୍ତ୍ର ସ୍ଥିତିଦାର ଭାବରେ ବିଚ୍ଛିନ୍ନ ହେଲାଭଳି କନ୍‌ହେଇଙ୍କର ବିଚ୍ଛିନ୍ନତାବୋଧ । ଜୀବନର ଭଂଗୁରତାର ଅନୁଭବରୁ ଜନ୍ମ କାରୁଣ୍ୟ କନ୍‌ହେଇଙ୍କୁ ଅଧିକ ପ୍ରେମ-ପନ୍ଥୀ କରିଛି । ତାଙ୍କ ସୃଜନମାନସରେ ବିଚ୍ଛିନ୍ନତାବୋଧ ପୀଡ଼ାର ତୀବ୍ରତାକୁ ଅନୁଭବ କରିହୁଏ ଏହି ଦୃଷ୍ଟିରୁ ଯେ ପ୍ରଥମ ପୁରୁଷରେ ଲିଖିତ ତାଙ୍କ ଗପଗୁଡ଼ିକରେ ପ୍ରଥମ ପୁରୁଷ ତୃତୀୟ ପୁରୁଷର ଆସ୍ଥାନରେ ହିଁ ଅଭିବ୍ୟକ୍ତ ଓ ବିନ୍ୟାସିତ ହେବାର ଶୈଳୀ ଗ୍ରହଣ କରିଛି । ଅର୍ଥାତ୍ ବ୍ୟକ୍ତି-କନ୍‌ହେଇ ସ୍ରଷ୍ଟା-କନ୍‌ହେଇର ଆବେଗ ଓ ପରିବେଶରେ ହେଇଛନ୍ତି ମୁକ୍ତ-କନ୍‌ହେଇ ।

## ।। ପାଂଚ ।।

**ଆଧ୍ୟାତ୍ମିକ ଉତ୍ସାହର ପଲ୍ଲବନ :**

କନ୍‌ହେଇ ସୃଜନ-ମାନସ ଆଧ୍ୟାତ୍ମିକ ଉତ୍ତରଣରେ ନିର୍ଦ୍ଦିଷ୍ଟ ହେଇନାହିଁ ବରଂ ଆଧାତ୍ମିକ-ପୀଡ଼ାରେ ଥରିଛି । ସେଥିପାଇଁ ତ ପରବର୍ତ୍ତୀ ପର୍ଯ୍ୟାୟରେ କନ୍‌ହେଇ ମାନସ ସମାଜବାଦୀ-ବାସ୍ତବତାର ତୀବ୍ର ଆବେଦନ ସ୍ତର ସହ ସଂପର୍କିତ ହେଇପାରିଛି। ବ୍ୟକ୍ତିବୋଧ ଓ ଆତ୍ମନିରୀକ୍ଷାର କ୍ରମଅସନ୍ତୋଷରୁ ଆଧ୍ୟାତ୍ମିକ ଉତ୍ସାହ, ପୁଣି ଆଧ୍ୟାତ୍ମିକ ଉତ୍ସାହରୁ ସମାଜବାଦୀ ବାସ୍ତବତା : ଏହି ତ୍ରିଏକକୀୟ ଓ ତ୍ରିସଂଧି ମଧରେ ଯେଉଁ ଦୁଇଟି ଚେତନା ସଂକଟ ରହିଛି, ତାକୁ ସୃଜନଶୀଳ ଶକ୍ତି ଅତିକ୍ରମ କରିବା, ପୁଣି ମାତ୍ର ଅଠେଇଶି ବର୍ଷ

୪୧. ଜୀବନ ଯନ୍ତ୍ରଣା ଓ ଯାହା ଯେମିତି ହୁଏ, କନ୍‌ହେଇ କଥାଘର

ବୟସ ସୀମା ମଧ୍ୟରେ, ବାସ୍ତବିକ ଏକ ବିରଳ ପରିଚୟ । ଅସ୍ତିତ୍ୱବାଦର ଅନ୍ୟତମ ପ୍ରବକ୍ତା ସାର୍ତ୍ତ୍ର ମଧ୍ୟ ଏହିଭଳି ଦ୍ୱିସଂକଟ ପାରିହେଇଛନ୍ତି ।

ବ୍ୟକ୍ତିବୋଧରୁ ବ୍ୟକ୍ତିର ନିଃସଂଗତା, ଏକାକୀତ୍ୱ ତଥା ଭୟ ଓ ମୃତ୍ୟୁବୋଧରୁ ଆଧ୍ୟାତ୍ମିକ ଆଶ୍ରୟ ପାଇଁ ବ୍ୟାକୁଳତା ପାରଂପରିକ ଭାରତୀୟ ସଂସ୍କୃତିର ଧାରା । କିଂତୁ କ୍ୱଚିତ୍ ବ୍ୟକ୍ତିବୋଧର ପୀଡ଼ାରୁ, ଆଧ୍ୟାତ୍ମିକ ଅନ୍ୱେଷାରୁ, ନୈତିକ ଅବବୋଧର ଜାଗୃତିରେ ମହୀୟାନ୍ ହେଇଥାନ୍ତି । ଓଡ଼ିଆ ସାହିତ୍ୟରେ ସାରଳା, ଫକୀରମୋହନ, ଗୋପୀନାଥ, ଭଗବତୀ ଓ ସୁରେନ୍ଦ୍ର ଏହିଭଳି ଚେତନାର କ୍ରାନ୍ତିକାରୀ ସ୍ରଷ୍ଟା । ଆଧ୍ୟାତ୍ମିକତାର ସୁଲଭ-ସୌଭାଗ୍ୟ ଅପେକ୍ଷା ନୈତିକତାର ଟାପୁରେ ସେମାନେ ଜ୍ୱଳନ୍ତ । ଭଗବତୀ ଯଦିଓ ଏହି ପର୍ଯ୍ୟାୟର ସ୍ରଷ୍ଟା, ତେବେ ତାଙ୍କର ନୈତିକ ଅବବୋଧ ବ୍ୟକ୍ତିବୋଧ ଓ ଆଧ୍ୟାତ୍ମିକ ସଂତୁଳନ ପର୍ଯ୍ୟାୟରୁ ଉର୍ଦ୍ଧ୍ୱକୁ ନ ଉଠି ବରଂ ବ୍ୟକ୍ତିର ସମାଜ-ଅସ୍ତିତ୍ୱରୁ ଉତ୍‌କୀର୍ଣ୍ଣ ହୋଇଛି ।

କନ୍‌ହେଇଲାଲଙ୍କ "ଏକ ବିଗ୍ରହହୀନ ମନ୍ଦିର ସାମ୍ନାରେ ମାଲବୋଝେଇ ଲରୀଟାର କିଛି ସମୟ ଅଟକି ଯାଇଥିବାର ଦୃଶ୍ୟ" ଓ "ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର" ଗପ ଦୁଇଟି ତାଙ୍କର ଆଧ୍ୟାତ୍ମିକ ଅନ୍ୱେଷାର ବିସ୍ମୃତ ଅଥଚ ଅଦ୍ଭୁତ ଚିତ୍ର ବହନ କରେ । "ଏକ ବିଗ୍ରହହୀନ ମନ୍ଦିର..." ଗପଟି ଆଧୁନିକ ଓଡ଼ିଆ ଗପ ଜଗତରେ ଏକ ସ୍ମରଣୀୟ ଗପ । ସମଗ୍ର ଗପରେ ଆତ୍ମାର ବାସ୍ତବସ୍ଥିତିରୁ ଆଧ୍ୟାତ୍ମିକ ଉତ୍ତରଣ ଅବସ୍ଥାରେ ବିଚିତ୍ର ବିଚରଣ ଓ ଉପଲବ୍‌ଧିର କଳାତ୍ମକ ପରିପ୍ରକାଶ । ଏଥିରେ ଚରିତ୍ର ନାହିଁ, ଘଟଣା ନାହିଁ, ରହିଛି ଏକ ବହମାନ ଅମୂର୍ତ୍ତ ସୂକ୍ଷ୍ମ ଚେତନାର ନିରୀହ ଆଧ୍ୟାତ୍ମିକ ଅବବୋଧ । 'ବିଗ୍ରହହୀନ ମଂଦିର' ଆଧାତ୍ମିକ ସଂତୁଳନର ପ୍ରତୀକ ଓ 'ମାଲବୋଝେଇ ଲରୀ' ଏକ ରୁକ୍ଷ, ବିରକ୍ତିକର, କର୍କଶ, ଜାଗତିକତା ବା 'ଦେହ'ର ପ୍ରତୀକ ରୂପେ ବ୍ୟବହୃତ । "ଥାକ ଥାକ କୋଠାର ଜଂଗଲରେ କେଉଁ ଏକ କୋଠାର କେଉଁ ଏକ ନିର୍ଜନ ଖୋପରେ ଚୁପ୍‌ଚାପ୍ ଆଖି ବଂଦ କରି ବସିଥିବା ଗୋଟିଏ ନିଃସଂଗ ପାରା କଥା ମୁଁ ମନେ ପକାଏ । ହଠାତ୍ ମୁଁ ଖୁବ୍ ସଂକୁଚିତ ହୋଇ ଶେଷରେ ଗୋଟିଏ ଆଲୋକ ବିଂଦୁ ହୋଇଯାଏ । ସେ ଆଲୋକ ପୃଥିବୀର ସର୍ବତ୍ର ବ୍ୟାପିଯାଏ । ଦେଖେ, ଖୁବ୍ ଦୂରରେ ସବୁ ମଣିଷର ଅଲକ୍ଷ୍ୟରେ ଏକ ଜ୍ୟୋତିର୍ମୟ ପୁରୁଷ ଅବସ୍ଥାପିତ, ଯାହା ଦେହରୁ ଆଲୋକର ନଦୀ ବହିଆସି ପୃଥିବୀର ଅଂଧାରକୁ ଦୂର କରୁଛି । ସତତ ପ୍ରସନ୍ନ ସେଇ ମୂର୍ତ୍ତିକୁ ସ୍ମରଣ କରି ମନେହୁଏ ମୁଁ ଯେପରି ଖୁବ୍ ଆଲୋକିତ ହୋଇ ଉଠିଛି । ଜହ୍ନଟା କ୍ରମେ କୋଠାଗୁଡ଼ିକର ପଛପାଖକୁ ଓହ୍ଲେଇଯାଏ । ଘରର ଛାଇଗୁଡ଼ା ଭୌତିକ ହୋଇ ଖୁବ୍ ଦୂରକୁ ଲଂବିଯାଏ । ପୃଥିବୀଟିକେ ବେଶି ଅଂଧକାରାଚ୍ଛନ୍ନ ହୋଇଯାଇଛି ବୋଲି ମୁଁ ସଚେତନ ହୁଏ । ଅଧା ଅଂଧାରର ଆଲୋକଟା ଯେମିତି ଖୁବ୍ ପବିତ୍ର ଓ ନିଃସଂଗ । ସବୁ ହଠାତ୍ ଅବାନ୍ତର ହେବାକୁ ଆରଂଭ କରେ । ବାୟୁ ମଣ୍ଡଳରେ ଭାସିବୁଲୁଥିବା ସେଇ ଅଦୃଶ୍ୟ ବ୍ଲେଡ୍‌କୁ ମୁଁ ଅପେକ୍ଷା କରେ ।"[୪୨]

୪୨. ଏକ ବିଗ୍ରହହୀନ ମନ୍ଦିର ସାମ୍ନାରେ..., କନ୍‌ହେଇ କଥାଘର

ଆତ୍ମାପୁରୁଷର ଏଇ ଉତ୍ତରିତ ଆଧ୍ୟାତ୍ମିକ ବିଚରଣ ଓ ପୁନର୍ବାର ସଚେତନତାର ପୃଥିବୀର ବାସ୍ତବତା ଏକ ସଂଘର୍ଷର ସୂତ୍ରପାତ ନ କରି ବରଂ ହୁଅନ୍ତି ସହଯାତ୍ରୀ । ନାୟକର ବ୍ଲେଡ୍‌ଟି ଜାଗତିକ ଗପ-ନାୟକକୁ ନିଷ୍କ୍ରାନ୍ତ କରିବା, ମାଲବୋଝେଇ ଲରୀଟା ବିଗ୍ରହହୀନ ମନ୍ଦିର ସାମ୍ନାରୁ ଅପସରିଯିବା ଭଳି ପ୍ରତୀକାତ୍ମକତା ଆଧ୍ୟାତ୍ମିକ-ପୀଡ଼ାକୁ ହିଁ ଚିତ୍ରିତ କରେ ।

କନ୍‌ହେଇ-ସୃଜନ ଆତ୍ମାର କ୍ରନ୍ଦନହିଁ ତାର ମୁକ୍ତିର କରୁଣାସିକ୍ତ ପ୍ରତିକ୍ରିୟା । "ଏକ ବିଗ୍ରହହୀନ..." ଗପରେ ତେଣୁ ଲେଖନ୍ତି କନ୍‌ହେଇଲାଲ "କେଉଁ ଏକ ଅଦୃଶ୍ୟ ପ୍ରାପ୍ତିର ଅଭାବରେ ଚିତ୍କାର କରି କାନ୍ଦିବାକୁ ଇଚ୍ଛା ହୁଏ । ଯାହା ସହ ଯେପରି ନିବିଡ଼ଭାବେ ସଂଲଗ୍ନ ହେବାପାଇଁ ମୁଁ ଅଣନିଶ୍ୱାସୀ ହେଇଉଠେ । ମୋ ଆଖିରୁ ଲୁହ ବୋହିଯାଏ । ମୋ ଭିତରେ ନୀରବରେ ଚିତ୍‌କାର କରି ଆତ୍ମା-ପୁରୁଷ କାଂଦୁଥିବାର ମୁଁ ପରିଷ୍କାର ଜାଣିପାରେ ।"[୪୩] ସେହିପରି 'ଆହତ ସ୍ୱପ୍ନ' ଉପନ୍ୟାସିକାରେ ଗପନାୟକ ତାର ଆତ୍ମାର ପୀଡ଼ାକୁ ଲିପିବଦ୍ଧ କରୁଛି "ଯନ୍ତ୍ରଣା ଦୂର ପାଇଁ ମୁଁ ସାଧାରଣତଃ ଦୁଇଟି କାର୍ଯ୍ୟ କରେ । ପ୍ରଥମତଃ ଖୁବ୍ ନିର୍ଜନ ସ୍ଥାନକୁ ଯାଇ ବଡ଼ପାଟିରେ କାନ୍ଦେ ଆଉ ଅନେକ ସଂଳାପ ଉଚ୍ଚାରଣ କରେ । ଦ୍ୱିତୀୟତଃ ଏଣୁତେଣୁ କାଗଜରେ ଅନେକ କିଛି ଲେଖି ପକାଏଁ ।"[୪୪] କାଗଜରେ ଏଣୁତେଣୁ ଲେଖିପକାଇବା ଏକ ବିବ୍ରତ ଅବସ୍ଥାର-ସୃଜନାତ୍ମକ ପ୍ରତିକ୍ରିୟା, ଯାହା ଆତ୍ମାର କ୍ରନ୍ଦନର ଅନ୍ୟରୂପ । ବାସ୍ତବରେ କନ୍‌ହେଇ ଆତ୍ମାର ଏହି ମୁକ୍ତି ବ୍ୟାକୁଳତା ତାଙ୍କର ଆଧ୍ୟାତ୍ମିକ ପୀଡ଼ା, ପରୋକ୍ଷରେ ଆଧ୍ୟାତ୍ମିକ ସତ୍ତାର ଉନ୍ମୀଳନ ।

କିଂତୁ "ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର" ଗପରେ କନ୍‌ହେଇ ଗପ-ମାନସ ର ଆଧ୍ୟାତ୍ମିକ ସତ୍ତା ପ୍ରେମ ସତ୍ତାର ଏକ ଅଂତରଂଗ ପଡ଼ୋଶୀ ଅଥଚ ପ୍ରତିସ୍ପର୍ଦ୍ଧୀର ଜଟିଳତମ ପରିଚୟ । ସେଇ ଗପରେ କନ୍‌ହେଇଲାଲ ଲେଖନ୍ତି- "ଈଶ୍ୱର, ଯିଏ ଯାହା କରଂତୁ ପଛକେ ମୁଁ ଜାଣେ ତମେ ମୃତ । ମୁଁ ଆଜି ତୁମକୁ ଜୀବନ୍ୟାସ ଦେବି । ତୁମକୁ ମଣିଷ କରି ଗଢ଼ିବି । ତାପରେ ଖୁବ୍ ଅସହାୟ କରି ନିଜ ହାତରେ ତୁମକୁ ଖୁନ୍ କରିବି । ତା'ହେଲେ ବୁଝିବ ମଣିଷର ଦୁଃଖ କେତେ, ଯନ୍ତ୍ରଣା କେତେ । ମଣିଷ କେଡ଼େ ନିଃସଂଗ, ଆଉ କେତେ ଅସହାୟ ।"[୪୫]

ଅସ୍ତିତ୍ୱବାଦୀ ଚେତନାରେ ମଣିଷହିଁ ଈଶ୍ୱର ଗଢ଼ିଛି, ଈଶ୍ୱର ଆଗରେ ନିଜର କ୍ଷୁଦ୍ର ସ୍ଥିତିକୁ ସମର୍ପଣ କରିବାକୁ ନୁହେଁ, ଏକ ସର୍ବନିୟନ୍ତାର ଅନୁଭବରେ ନୁହେଁ ବରଂ ନିଜ ଉଚ୍ଚତାର ପରିମାପକ ଭାବେ । କିଂତୁ ସେଇ ଉଚ୍ଚତାର ପରିମାପକ ଈଶ୍ୱର ଉଭା ହୁଅନ୍ତି

୪୩. ତତ୍ରୈବ

୪୪. 'ଆହତ ସ୍ୱପ୍ନ' କନ୍‌ହେଇ କଥାଘର

୪୫. ପ୍ରୟୋଜନୀୟ ହତ୍ୟାକାଣ୍ଡପାଇଁ ଷଡ଼ଯନ୍ତ୍ର, କନ୍‌ହେଇ କଥାଘର

ପ୍ରତିଦ୍ୱନ୍ଦ୍ୱୀ ଭାବେ ଏହି ହେତୁରୁ ଯେ ଈଶ୍ୱରଙ୍କ ସ୍ଥିତି-ବିଶ୍ୱାସ ପୁରାତନ ପାରଂପରିକ ଧାରଣାରୁ ଜନ୍ମ ହେଇଥିଲେ ମଧ ଅସ୍ତିତ୍ୱବାଦୀଙ୍କ ଠାରେ ତାହା ଆତ୍ମନିଷ୍ଠ ଚେତନାର କ୍ରୀଡ଼ାକ୍ଷେତ୍ରଠି ହିଁ ସୀମାବଦ୍ଧ । ତେଣୁ ଈଶ୍ୱର ଦୋଳାୟମାନ । ଅତଏବ ବ୍ୟକ୍ତିଗତ ଅବବୋଧରେ ଈଶ୍ୱର ନିରୀଶ୍ୱର ସ୍ଥିତିକୁ ଖସି ଆସି ସତ୍ତା ହରାଇଦିଅନ୍ତି ।

"ପ୍ରୟୋଜନୀୟ ହତ୍ୟାକାଣ୍ଡ ପାଇଁ ଷଡ଼ଯନ୍ତ୍ର" ଗପରେ ହିଁ ଈଶ୍ୱର ନାୟକର ଚେତନାରେ ମାନବୀୟ ଗୁଣର ସଜବାଜରେ ସେହି ଗଳ୍ପ ନାୟକର ଦ୍ୱିତୀୟ ସ୍ଥିତି ପାଲଟିଛନ୍ତି। ନାୟକ ଦ୍ୱିତୀୟ ସ୍ଥିତି ମାଧ୍ୟମରେ ହିଁ ଆତ୍ମ ନିରୀକ୍ଷଣ କରିଛି ନିଜକୁ। ପରିଶେଷରେ ଦ୍ୱିତୀୟ ସ୍ଥିତି ଆତ୍ମ-ସ୍ଥିତିରେ ବିଲୀନ ହେଇଯାଇଛି ନାୟକର ପ୍ରେମସତ୍ତାରେ।

ଏଠାରେ ସ୍ମରଣୀୟ ଯେ ପ୍ରେମରେ ଏକ ସୁନ୍ଦରତର ଈର୍ଷା ରହିଛି, ଯାହା ପ୍ରେମକୁ ଗଭୀରତର କରିଥାଏ ଏବଂ ପ୍ରେମ ନାୟକର ବହୁ ବିଭକ୍ତ ସତ୍ତାଗୁଡ଼ିକୁ କେନ୍ଦ୍ରୀଭୂତ କରିନେଇଥାଏ । କନ୍‌ହେଇ ପ୍ରେମ-ସତ୍ତା ଏହି ଦୃଷ୍ଟିରୁ ଅବିଭକ୍ତ ଓ ଅମଳିନ । ତାଙ୍କର ଦ୍ୱିତୀୟ ସତ୍ତା ବା ଈଶ୍ୱର ସେଇ ପ୍ରେମ ସତ୍ତା ଠିଁ ବଳି ପଡ଼ିଯାଇଛନ୍ତି । ପ୍ରେମ ବ୍ୟତୀତ ଈଶ୍ୱର ବା ଅହଂକାରକୁ ଆଉ କିଏ ଜୟ କରିପାରିବ ?

କନ୍‌ହେଇ କାହାଣୀକାରର ବାହାଦୁରୀ ନେବା ପାଇଁ ଗପ ଲେଖିନାହାନ୍ତି, ଆତ୍ମାର ଅନ୍ୱେଷାକୁ ଦେଇଛନ୍ତି ଶିଳ୍ପ ମୂଲ୍ୟ ଏବଂ ତାହାରି ମାଧ୍ୟମରେ ଅନୁଭୂତି ଓ ଉପଲବ୍‌ଧିର ଚେତନାକୁ ଉଦ୍ଭାସିତ, ସଂକଳିତ କରିଯାଇଛନ୍ତି ଏବଂ ବାସ୍ତବତାର କଳାବୋଧକୁ ଉପେକ୍ଷା କରି ଆଧ୍ୟାତ୍ମିକତାର ସ୍ୱର୍ଣ ସାହିତ୍ୟକୁ ପ୍ରାଣବାନ୍ କରିବାରେ ପୂର୍ଣ ସମର୍ଥ ନୁହେଁ; ଏଭଳି ଚୈତ୍ୟ ତାଙ୍କର ତୀବ୍ର ଓ ଶାଣିତ ।

**ପରିଣତ ନିର୍ଯାସ : ନୈତିକବୋଧ ଓ ସମାଜବାଦୀ ବାସ୍ତବତା :**

ଆଗରୁ କୁହାଯାଇଛି ସପ୍ତମ ଦଶକରେ ଓଡ଼ିଆ ଗାଳ୍ପିକମାନେ ବ୍ୟକ୍ତି ଚେତନା ଓ ଆତ୍ମବୋଧ, ଆତ୍ମ ଅନ୍ୱେଷା ଓ ଅନୁଭୂତିର ଚିତ୍ର ପ୍ରଦାନ ପାଇଁ ନିଜକୁ, 'ମୁଁ' କୁ ହିଁ ସଫଳ ପ୍ରୟାସର ଦିଗନ୍ତ ବୋଲି ଗ୍ରହଣ କରିଥିଲେ । ଅର୍ଥାତ୍ ଗଳ୍ପ ନାୟକ ନିଜେ ହିଁ ଗାଳ୍ପିକର ଭୂମି ଓ ଚେତନା । ସଂସ୍କୃତିର ଚୈତନିକ ବିକାଶ ଶିଳ୍ପୀର ଆତ୍ମ-ଶକ୍ତି ଓ ଚେତନା ନିର୍ଭର ଥିଲା । ପ୍ରତିଟି ମଣିଷର ସ୍ୱତନ୍ତ୍ର ପୃଥିବୀକୁ ଦିଆଯାଇଥିଲା ସ୍ୱୀକୃତି । ଅତଏବ ଶିଳ୍ପୀର ଚେତନା ଓ ଆବେଗହିଁ ସବୁଠୁଁ ବଳୀୟାନ୍ ଭାବରେ ଶିଳ୍ପୀର ଆତ୍ମଗଳ୍ପ ହିଁ ବେଶି ଅଂତରଂଗ, ସ୍ୱଚ୍ଛ ଓ ଗଭୀର ହେବାର ତତ୍ତ୍ୱ ଗୃହୀତ ହୋଇଥିଲା ।

କିଂତୁ ପରବର୍ତ୍ତୀ ପର୍ଯ୍ୟାୟରେ ଏହି ଗାଳ୍ପିକମାନଙ୍କର ଉପଲବ୍‌ଧିରେ ଆସିଲା ବିଶେଷ ପରିବର୍ତ୍ତନ । ଆତ୍ମନିଷ୍ଠ ଚେତନା ଗଭୀର ସ୍ତରରେ ଆତ୍ମ ମନସ୍ତତ୍ତ୍ୱକୁ ଯେତେ ହଣ୍ଡାଳିଲା, ନିଜ ଅଂଧାରର କୋଠରିମାନ କେବଳ ଖୋଲା ହେଇଗଲା ସିନା ପଡ଼ୋଶୀ ମଣିଷ ସହ ସଂବେଦନଶୀଳତାର ଅଭାବ ଅନୁଭୂତ ହେଲା । ନିଜ ବ୍ୟତୀତ ଅନ୍ୟ

ମଣିଷଟି, ପୃଥିବୀରେ ଆତଯାତ ଅନ୍ୟ ଅନେକ ଚରିତ୍ର ବଂଚିତ ହେଇଉଠିଲେ । ଝର୍କାଖୋଲି ବାହାରକୁ ଅଂତରଂଗ ଆଖିରେ ଚାହିଁବାର ଉତ୍ସୁକତା ବଢ଼ିଗଲା । ସବୁ ବସ୍ତୁର ମୌଳିକ ବସ୍ତୁ ଗୋଟିଏ ହେଲେ ବି ତାର ସ୍ଥିତି, ଗତି ଓ ବ୍ୟବହାରରୁ ବହୁବିଧ ବସ୍ତୁ ପରସ୍ପରଠାରୁ ବହୁବିଧ ଗୁଣରେ ବିଭିନ୍ନ ଅସ୍ତିତ୍ୱ ଜାହିର ରଖୁଥିବା, ପ୍ରତିଟି ମଣିଷ ଭିନ୍ନ ଓ ଅଲଗା ହେଲେ ବି ମାନବିକ ସଂବେଦନା ଓ ଜୀବନବୋଧ ଏକ ସର୍ବମୌଳିକ ସ୍ଥିତି, ତାହାର ବିଭିନ୍ନତା ନାହିଁ, ଏହି ତତ୍ତ୍ୱରୁ ଗାଳ୍ପିକର ଉପଲବ୍ଧିରେ ଆତ୍ମ-କୈନ୍ଦ୍ରିକତା ହିଁ ସାହିତ୍ୟ ସୃଜନ ବେଦୀରେ ଏକତରଫା ଓ ସୀମାବଦ୍ଧତା । ତା'ବାହାରେ ଅନ୍ୟ ଅନେକ ଚରିତ୍ର, ଅନୁଭୂତି ଓ ଚେତନା କ୍ରୀୟାଶୀଳ ଯାହାଦ୍ୱାରା ଗାଳ୍ପିକ ପ୍ରତି ମୁହୂର୍ତ୍ତରେ ଆକ୍ରାନ୍ତ । ଅନ୍ୟ ବିନା ନିଜର ସ୍ଥିତି ନାହିଁ, ଏପରିକି ଆତ୍ମକୈନ୍ଦ୍ରିକତା ଆତ୍ମସୀମା ମଧ୍ୟରେ ବି ସଂଭବ ନୁହେଁ । ଏକ ସାର୍ବଜନୀନ ମାନବବୋଧର ସ୍ଥିତି କ୍ରମଶଃ ସୁଦୃଢ଼ ହେବାରୁ ଲେଖକଙ୍କର ଆବେଗସ୍ତରଟି ପୁଲକିତ ହେଇଉଠିବା ଓ ପରିଣତିରେ ମଣିଷର ଦୁଃସ୍ଥିତି, ମାନବିକ ପୀଡ଼ନ, ସାମାଜିକ ଶୋଷଣର ତୀବ୍ର ଅନୁଭବ ଗାଳ୍ପିକକୁ ଦେଲା ପ୍ରଚଣ୍ଡ ନୈତିକ ଜୁଆର । ଆଧ୍ୟାତ୍ମିକ ଆଶ୍ରାରେ ଟହଲୁଥିବା ଗାଳ୍ପିକର ସତ୍ତା ଉଜ୍ଜୀବିତ ହେଇଉଠି ମାନବିକତାର ଚିତ୍ରକର ହେଇଉଠିଲା । ଆଧ୍ୟାତ୍ମିକ ସତ୍ତାଟି ନୈତିକସତ୍ତାରେ ପ୍ରାଣବାନ୍ ହେଇଉଠିଲା । ଠିକ୍ ସେଇ ମୁହୂର୍ତ୍ତରେ ଲେଖକ ଅନୁଭବ କରେ ଏକ ଭିନ୍ନ ମୁକ୍ତି, ଭିନ୍ନ ଶକ୍ତି । ଆତ୍ମଦହନ, ଅବଶୋଷ, ଭୟ ଓ ନିଃସଂଗତାରୁ ସେ ମୁକ୍ତି ପାଇଯାଉଥିବାର ଅନୁଭବରେ ସେ ଜାଗରିତ ହୋଇଉଠେ । ଅନ୍ୟ ମଣିଷଟି ସେଠି ହେଇଉଠେ ଆତ୍ମାର ମଣିଷ । ଅଂତରଂଗତା ଓ ଆବେଗର ବଳୟଭିତରକୁ ସ୍ୱତଃ ଚାଲିଆସେ ଅନ୍ୟମଣିଷଟି, ଚରିତ୍ରଟି ଏବଂ ତାର ମୁକ୍ତିପାଇଁ ଲେଖକର ଆତ୍ମଚେତନା, ଅନଭୂତି ସଂଗଠିତ ହେଇଉଠେ, ବୌଦ୍ଧିକ ଦୃଷ୍ଟିଭଂଗୀ ହୁଏ ଶାଣିତ, ସମାଜବାଦୀ ବାସ୍ତବତା ସ୍ୱରର ହୁଏ କଂପନ । ବିଂଶ ଶତାବ୍ଦୀ ଏକ ରାଜନୈତିକ ବିଶ୍ୱର ସମ୍ମୁଖୀନ ହୋଇଥିବା ଯୋଗୁଁ ରାଜନୈତିକ ଓ ଅର୍ଥନୈତିକ ଅସମଂଜସଗୁଡ଼ିକ ଏହି ସମାଜବାଦୀ-ବାସ୍ତବତା ସ୍ୱରର ଆୟୁଧ ଓ ଅଂକନ ହେଇଉଠିଲା । ଏହି ପରିବର୍ତ୍ତିତ କଳାତ୍ମକ ଦୃଷ୍ଟିଭଂଗୀ ଯେଉଁ କ୍ୱଚିତ୍ ଓଡ଼ିଆ କଥାଶିଳ୍ପୀ-ମାନଙ୍କ ଚେତନାରେ କ୍ରମ-ଦୃଢ଼ୀଭୂତ ହେଇଉଠିଥିଲା, ସେମାନଙ୍କ ମଧ୍ୟରୁ କନ୍ହେଇଲାଲ ଜଣେ । ଚେତନା ଜଗତରେ ପ୍ରେମ-ପ୍ରଣୟ ଚେତନାର ଗଭୀର ରୂପକାର, ଆତ୍ମନିଷ୍ଠ ଚେତନାର ସ୍ରଷ୍ଟା ଅନ୍ତିମରେ ଉଭାହେଲେ ସମାଜବାଦୀ ଚେତନାର ବଳିଷ୍ଠ କଥାଶିଳ୍ପୀ ଭାବରେ, 'ଧୃତରାଷ୍ଟ୍ରର ଆଖି'ର ସଫଳ ସ୍ରଷ୍ଟା ଭାବେ । "... ସୌଖୀନ ନିଃସହାୟତା । ପ୍ରେମ ଜୟ କରିବା ପାଇଁ, ଅନ୍ୟମାନଙ୍କୁ ଦେଖାଇବାପାଇଁ ତିଆରି ଯନ୍ତ୍ରଣା"[୪୬]ର ଅନୁଭବରେ ଆତ୍ମସଚେତନ କନ୍ହେଇଲାଲ ଧୃତୁରା (ଧୃତରାଷ୍ଟ୍ର) ଚରିତ୍ରର ଅକାତକାତ

୪୬. କନ୍ହେଇ କଥାଘର

ଜୀବନ-ଚେତନାକୁ ଆତ୍ମୀକରଣ କରିଗଲେ । ସାଂପ୍ରତିକ ବିଶ୍ୱର ରାଜନୈତିକ ଦୁଃସ୍ଥିତି ଓ ତାର ଅନ୍ତିମ ପରିଣତି ଅଂଧ ଧୁତୁରାର ଭିକ୍ଷାବୃତ୍ତି, ଧୁତୁରାକୁ ବାଟ କଢ଼େଇ ନେଉଥିବା ତଥା ଭିକ୍ଷାର ଅଂଶୀଦାର ଚୁଟିଆର ପ୍ରବଂଚନା (ଧୁତୁରାର ତାଟିଆରେ ପଇସା ପଡ଼ିବା ପୂର୍ବରୁ ଚୁଟିଆ ହାତ ବଢ଼ାଇ ସେ ପଇସାକୁ ନେଇଯାଉଥିବା), ଦେଶର ସୁବିଧାବାଦୀ, ଶୋଷକ ଶାସକର ଚକ୍ରାନ୍ତକାରୀ ତଥାକଥିତ ବିପ୍ଳବ (କନ୍‌ହେଇଙ୍କ ଭାଷାରେ ବିପ୍ଳବ କରିବା ଏମାନଙ୍କ ବ୍ୟବସାୟ)ର ସର୍ବଶେଷ ନିର୍ଯାସ ମାନବିକତାର ହତ୍ୟା (ଧୁତୁରାର କରୁଣତମ ମୃତ୍ୟୁ) ଓ ଗଳ୍ପର ଅନ୍ତିମରେ ସ୍ରଷ୍ଟାର ସତ୍ୟ ସଂଧାନ ଏହି ଗଳ୍ପକୁ ଓଡ଼ିଆ ଗଳ୍ପସାହିତ୍ୟରେ ସମାଜବାଦୀ ବାସ୍ତବତାର ଏକ ବିଶେଷ ଆସ୍ଥାନ ପ୍ରଦାନ କରିଛି ।

ଦୃଢ଼ନୈତିକ ଆବେଗ, ତୀବ୍ର ମାନବିକ ସଂବେଦନା ଓ ଆତ୍ମୀକରଣର ସମସାମୟିକ ଭାରତୀୟ କରୁଣ ଜନ ଜୀବନର ପ୍ରତିବିଂବକୁ କଳାଶକ୍ତିରେ ପ୍ରତିନିଧିତ୍ୱ କରି କନ୍‌ହେଇଲାଲ ତିନି ପର୍ଯ୍ୟାୟର ଉତ୍ତୁଂଗ ଚେତନାର ଏକ ବ୍ୟତିକ୍ରମ ସ୍ରଷ୍ଟା ।

**ଗୁଂଫନ ଓ ବିନ୍ୟାସର**
**ବୈଶିଷ୍ଟ୍ୟ :**

କଥା, କାହାଣୀ ଓ ଗପ ଭିତରୁ କନ୍‌ହେଇଲାଲ ଗପ ହିଁ ସୃଷ୍ଟି କରିଛନ୍ତି । ତାଙ୍କର ଗପର ଆରଂଭକୁ ପଢ଼ି ପରିସମାପ୍ତିଟି ଏୟା ହିଁ ହବ ବୋଲି ପାଠକ କଳ୍ପନା କରିପାରିବ ନାହିଁ । କିଂବା ଗପର ଶେଷ ପର୍ଯ୍ୟାୟକୁ ପଢ଼ି କେହି ତାର ଆରଂଭ ସଂପର୍କରେ ଚିନ୍ତା କରିପାରିବ ନାହିଁ । ଚେତନାର ବିଂଦୁ ବିଂଦୁ ସ୍ଥିତି ଓ ସ୍ରୋତ ହିଁ ତାଙ୍କର ଗପ ।

ତାଙ୍କ ଗପଗୁଡ଼ିକର ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଭବ ରହିଛି । ତନ୍ମଧ୍ୟରୁ (କ) ତାଙ୍କ ଗପକୁ ପଢ଼ି ଜଣେ ଅନ୍ୟଜଣକୁ ସେ ଗପଟି କହିପାରିବ ନାହିଁ, ଅଥଚ କହିବ କହିବ ହେଉଥିବ କାରଣ ଗପର ଅନୁଭବ ଓ ଅନ୍ତରଂଗତାର ତୀବ୍ରତାକୁ ଗଭୀର ଭାବରେ ଉପଲବ୍ଧି କରୁଥିବ । (ଖ) ଗପଗୁଡ଼ିକରେ ଆତ୍ମ-ବିନ୍ୟାସ ଶୈଳୀ ଓ ଚେତନା ଐଶ୍ୱର୍ଯ୍ୟରେ ଏଭଳି ନିଦା ଓ କବିତାର ଏତେ ନିକଟବର୍ତ୍ତୀ ଯେ ପାଠକ ଗୋଟେ ଗପର ଅଧାରୁ ଆରଂଭ କରି ଶେଷ କରିଦେଲେ ବି ଏକ ପୂର୍ଣ୍ଣାଂଗ ଆଧୁନିକ ଗପର ମର୍ଯ୍ୟାଦାକୁ, ସ୍ୱର୍ଗୀୟ ସନ୍ତୋଷକୁ ଅନୁଭବ କରିପାରିବ । ଚରିତ୍ର ଅପେକ୍ଷା ଚେତନାର ବେଢ଼ିରେ ଆହତ ହେଉଥିବା କନ୍‌ହେଇଲାଲଙ୍କ ଗପ ସୃଷ୍ଟିରେ ଏହା ହିଁ ସଂଭବ ।

**ଉପସଂହାର :**

କନ୍‌ହେଇଲାଲଙ୍କ ଗପ ଓଡ଼ିଆ ସାହିତ୍ୟର ଅନବଦ୍ୟ ଶ୍ରୀଫଳ । ତାଙ୍କ ଗପକୁ ଛାଡ଼ି ଓଡ଼ିଆ ଗପ ସାହିତ୍ୟରେ ସ୍ରୋତ ବିଚ୍ଛିନ୍ନ ଓ ଓଡ଼ିଆ ସାହିତ୍ୟର ଇତିହାସ ଅସଂପୂର୍ଣ୍ଣ । କବି ଡଃ ସୀତାକାନ୍ତ ମହାପାତ୍ରଙ୍କ ଭାଷାରେ ଓଡ଼ିଆ ଭାଷାରେ ସୃଷ୍ଟ ଏକ ଡଜନ ଉତ୍କୃଷ୍ଟ ଗପ ଯଦି ବାଛିଦିଆଯାଏ, ତା'ହେଲେ କନ୍‌ହେଇଲାଲଙ୍କ ସ୍ଥାନ ସେଥିରେ ସୁରକ୍ଷିତ ।

ପ୍ରବଂଧକାର ଓ କଥାଶିଳ୍ପୀ ଚନ୍ଦ୍ରଶେଖର କହନ୍ତି– "କନ୍‌ହେଇ ଆଉ କିଛିଦିନ ବଂଚିଥିଲେ ଆମ ସମସ୍ତଙ୍କୁ ମଳିନ କରିଦେଇଥାଆନ୍ତେ ।" ଏଭଳି ବକ୍ତବ୍ୟର ଏକ ଉତ୍ସାହପ୍ରଦ ସ୍ଥିତି ରହିଛି । କାରଣ କନ୍‌ହେଇଲାଲ ଜୀବନ ପାଇଁ ଜୀବନକୁ ଫୋପାଡ଼ି ଦେଇଛନ୍ତି । ତାଙ୍କଠାରେ ପୃଥିବୀ ଓ ମଣିଷ ଅଭିନ୍ନ । ସପ୍ତମ ଦଶକରେ ପୃଥିବୀର ଯେକୌଣସି ଭାଷାରେ ଲିଖିତ ଗପ ସାମ୍ନାରେ ମର୍ଯ୍ୟାଦାପୂର୍ଣ୍ଣ ଭାବରେ ଛିଡ଼ା ହେବାପାଇଁ ସମର୍ଥ କନ୍‌ହେଇଲାଲଙ୍କ ଗପ, ପ୍ରବଂଚନା ଗର୍ଭରୁ ଓଡ଼ିଆ ସାହିତ୍ୟର ମୌଳିକ ଦୀପ୍ତିକୁ ଉଦ୍ଧାର କରିଥିବା ଅସିତ୍ ମହାନ୍ତି ଓ ପ୍ରଦୀପ୍ତ ଶ୍ରୀଚଂଦନଙ୍କ ସଂକଳିତ 'କନ୍‌ହେଇ କଥାଘର' । ତାଙ୍କ ସୃଜନମାନସ ଓ ଚେତନାସ୍ତର ସହ ମୋର ମିତ୍ରଯୋଗରୁ ହିଁ ଏ ଆଲୋଚନାର ଉଦ୍ଭାସନ । ଅଂତରଂଗତା ଓ ଚରିତ୍ରଗୁଡ଼ିକୁ ନିଜ ମାନବିକ ସଂବେଦନାରେ କ୍ଷମା କରିଦେଇଥିବାର ମହନୀୟତା କଥା କରୁଣାର ଅନିନ୍ଦ୍ୟଟାପୁ ହିଁ କନ୍‌ହେଇଲାଲଙ୍କ ସୃଷ୍ଟି ସମଗ୍ର ।

ଆଲୋଚନାଟିର ରଚନାକାଳ ମେ' ୧୯୯୦
(୧୯୯୮ ମହାପୂଜା ପର୍ବ ଚନ୍ଦ୍ରଭାଗାରେ ପ୍ରକାଶିତ ।)



